# ବସନ୍ତ ଫେରିବ

ସମ୍ପାଦନା :

ସରଳା ବେହେରା

ପ୍ରକାଶକ :

ବନ୍‌ପ୍ରଭା ସାହିତ୍ୟ ସଂସଦ

ସୁନାବେଡ଼ା-୭୬୩ ୦୦୨

Digitized by srujanika@gmail.com



ସମ୍ପାଦନା : **ସରଳା ବେହେରା**

ସହ-ସମ୍ପାଦନା : **ବାବାଜୀ ଚରଣ ଜେନା, ମାନଗୋବିନ୍ଦ ଦାସ**

ପ୍ରକାଶକ : **ବନପ୍ରଭା ସାହିତ୍ୟ ସଂସଦ,** ସୁନାବେଡ଼ା-୭୬୩ ୦୦୨

ଅକ୍ଷର : ବିନୟ କୁମାର ପଣ୍ଡା

ମୁଦ୍ରଣ : ବିଜୟଲକ୍ଷ୍ମୀ ପ୍ରିଣ୍ଟର୍ସ, କଟକ

ପ୍ରଥମ ପ୍ରକାଶ : ସରସ୍ୱତୀ ପୂଜା, ୨୦୧୩

**ମୂଲ୍ୟ : ୩୦୦ ଟଙ୍କା**

---

**BASANTA BAIBHABA**

Edited : **Sarala Behera**

Asst. Editor : **Babaji Charan Jena & Mana Gobinda Das**

Published by : Banaprabha Sahitya Sansad, Sunabeda-2

Type setting : Binaya Ranjan Panda

Printed at : Bijayalaxmi Printers, Cuttack

1st Edition : Saraswati Puja, 2013

**Price : Rs. 300.00**

*Digitized by srujanika@gmail.com*

# ଉତ୍ସର୍ଗ

ଡକ୍ଟର ବସନ୍ତ କିଶୋର ସାହୁଙ୍କୁ
ଆନ୍ତରିକତାର ସହିତ
ଭଲ ପାଉଥିବା
ଓ
ଭଲ ନ ପାଉଥିବା
ସମସ୍ତ ମଣିଷମାନଙ୍କୁ ।।

ବନପ୍ରଭା ସାହିତ୍ୟ ସଂସଦ ପରିବାର

Digitized by srujanika@gmail.com

# ସୂଚିପତ୍ର

## ବସନ୍ତ କିଶୋରଙ୍କ ସୃଷ୍ଟି ଓ ସମୀକ୍ଷା



Digitized by srujanika@gmail.com

## କୃତି ଓ କୃତିତ୍ୱ



Digitized by srujanika@gmail.com

## କିଛି ସ୍ମୃତି କିଛି ଅନୁଭୂତି ୨୭୫



Digitized by srujanika@gmail.com

Digitized by srujanika@gmail.com



Digitized by srujanika@gmail.com

# ସଂପାଦକୀୟ ...

ଶ୍ରୁତଂ ପ୍ରଜ୍ଞାନୁଗଂ ଯସ୍ୟ ପ୍ରଜ୍ଞା ଚୈବ ଶ୍ରୁତାନୁଗା
ଅସଂଭିନାର୍ଥ ମର୍ଯ୍ୟାଦଃ ପଣ୍ଡିତାଖ୍ୟାଂ ଲଭତେ ସଃ ।।

ଅର୍ଥାତ୍ ଯାହାର ବିଦ୍ୟା ବୁଦ୍ଧିକୁ ଅନୁସରଣ କରିଥାଏ ଏବଂ ବୁଦ୍ଧି ବିଦ୍ୟାକୁ ଅନୁସରଣ କରିଥାଏ, ଯେ ଶିଷ୍ଟ ଜନର ମର୍ଯ୍ୟାଦାକୁ ଲଙ୍ଘନ କରି ନଥାଏ, ସେହି ବ୍ୟକ୍ତି ପଣ୍ଡିତ ପଦକୁ ଲାଭ କରିଥାଏ । ବାସ୍ତବରେ ଡକ୍ଟର ବସନ୍ତ କିଶୋର ସାହୁ ସେହି ସମ୍ମାନର ପ୍ରକୃତ ଅଧିକାରୀ ବୋଲି ସ୍ୱୀକାର କରିବାକୁ ହେବ ।

ମାଟିରୁ ମହାକାଶ ପର୍ଯ୍ୟନ୍ତ ମହମହ ବାସ୍ନାରେ ବସୁମତିକୁ ବାସ୍ନାୟିତ କରି ଯନ୍ତ୍ରଣାର ଜତୁ ଗୃହରେ ଜର୍ଜରିତ ହୋଇ ଜୀବନର ମହାକାବ୍ୟ ଲେଖୁଥିବା ବସନ୍ତ କିଶୋର କେବଳ କୁସୁପୁରର ମମତାଞ୍ଚଳରେ ସୀମିତ ହୋଇ ରହିନାହାନ୍ତି, ବରଂ ସମୟର ଶିଳ୍ପୀ ସେଇ ନମନୀୟ ମୃତ୍ତିକାକୁ ସୁନ୍ଦର ସ୍ୱପ୍ନର ସ୍ପର୍ଶରେ ଜୀବନ୍ୟାସ ଦେଇ କୋଟିଏରୁ ଗୋଟିଏ କରି ଆମ୍ଭମାନଙ୍କୁ ଭେଟି ଦେଇଛି ଶ୍ରଦ୍ଧାରେ । ଛନ୍ଦରେ ଛନ୍ଦ ତୋଳି କୋରାପୁଟର ଅଗଣାରେ ନାଚୁଥିବା ଅଳସୀ କ୍ଷେତକୁ ମନଭରି ଭଲ ପାଇଛନ୍ତି ସେ । ଭଲପାଇଛନ୍ତି ଡଙ୍ଗର ପାହାଡ଼ର ବଣମୂଲକକୁ-ଆଉ ସେଠାରେ ମୁକ୍ତ ଜୀବନ ଜୀଉଁଥିବା ବଣୁଆ ଜନଜାତିକୁ । ନିର୍ବାକ୍ ନିସ୍ପନ୍ଦ ଓଠରେ ଭରି ଦେଇଛନ୍ତି ପ୍ରଗଲ୍‌ଭତା ।

ଭୂମିରୁ ଭୂମା ପର୍ଯ୍ୟନ୍ତ ଭାବମୟ ଭାବନାରେ ବାନ୍ଧି ପକେଇବାର ପ୍ରବଳ ପ୍ରାବଲ୍ୟରେ ଜଡ଼ସଡ ହେଉଥିବା ମଣିଷଟିକୁ ଖୁବ୍ ନିକଟରୁ ନିରିଖେଇ ଦେଖିଲେ ଅନୁଭବି ହୁଏ ତାଙ୍କ ନିଆରା ପଣିଆକୁ । ଜନ୍ମମାଟିରୁ ସାଉଁଟି ଆଣିଥିବା ସାଧକତମଙ୍କ ସାଧନା ସ୍ମୃତିକୁ ନିଜ ଭିତରେ ଆବଦ୍ଧ କରି ରଖିବାକୁ ଚାହିଁ ନାହାଁନ୍ତି ସେ । ବରଂ ସ୍ୱଚ୍ଛ ମନ୍ଦାକିନୀର ପ୍ରବହମାନ ଧାରା ପରି ଛଳଛଳ କଳକଳ ନାଦରେ ଛୁଇଁବାକୁ ଚେଷ୍ଟା କରିଛନ୍ତି ପ୍ରତ୍ୟେକଟି ହୃଦୟକୁ । କୁଢକୁଢ ଭଲ ପାଇବାକୁ ପାଥେୟ କରି ପାନ୍ଥର ପଥିକକୁ ଭେଟି ଦେଇଛନ୍ତି ଆଞ୍ଜୁଳାଭରି ସ୍ୱପ୍ନ । ପଲ୍ଲୀ ପ୍ରାଣର ପ୍ରାଚୁର୍ଯ୍ୟ ଭିତରେ ପଲ୍ଲବିତ ହେଉଥିବା ପ୍ରଗାଢ଼ ଚିନ୍ତା ଓ ଚେତନାର ଅମୃତଧାରାକୁ ସେ ବାଣ୍ଟି ଚାଲିଛନ୍ତି ସମସ୍ତଙ୍କ ହୃଦୟରେ । ସାଧନାସିଦ୍ଧ ପ୍ରତିଭାରେ ସମ୍ମୋହିତ ହୋଇଛି ସମୟ । ଗ୍ରୀଷ୍ମର ପ୍ରଚଣ୍ଡ ଉତ୍ତାପ ହେଉ କି ମନ୍ଦ୍ର ମେଘର ଝୁ ଝୁ ବାରିପାତ ହେଉ ଅଥବା ଜରତି ଶୀତର ଥୁରୁଥୁରୁ ପଣରେ କେବେ ଭୁଲିଯାଇ ନାହାଁନ୍ତି ନିଜର କର୍ତ୍ତବ୍ୟକୁ । ସହ ଭାବରେ ସାହିତ୍ୟକୁ ସଜେଇ ମଜେଇ ସୃଷ୍ଟି କରିଛନ୍ତି ସୁନ୍ଦର ସରଣୀ । ନିରଳସ ସାଧନା ଭିତରେ ସାଧକଙ୍କ

Digitized by srujanika@gmail.com

ପରି ହୋଇଛନ୍ତି ଆତ୍ମସ୍ଥ । ସିଦ୍ଧି ଲାଭର ଅମୃତମୟ ସ୍ୱାଦ ସେ କେବଳ ଏକା ଚାଖୁନାହାଁନ୍ତି, ଆମ ସମସ୍ତଙ୍କୁ ବି ଚଖେଇଛନ୍ତି । ବାସ୍ତବରେ କହିବାକୁ ଗଲେ ସେ ଏକ ସାଧନା ସିଦ୍ଧ ପ୍ରତିଭା ।

ସମୟର ନିଃଶବ୍ଦ ପାହୁଣ୍ଡ ଭିତରେ ହଜିଯାଇଛି ନିର୍ଦ୍ଧାରିତ ସମୟ । ଚେଇଁ ଚେତେଇ ଦେଉଛି ଅବସର ନେବାର ଅବକାଶ । ଅବସର କାହିଁ ? କାହାର ବା ଅବସର ! ! ! ଭାବନାରୁ କ'ଣ ଅବସର ମିଳେ ? ନା ସପ୍ନରୁ ? ସାଧକଟିଏ କ'ଣ ତାର ଆରାଧନାରୁ ଅବସର ନେଇପାରେ ? ଜନ୍ମରୁ ଯୁଇ ଯାଏ ତ ସାଧନାର ପଥ । ଆଉ ଯିଏ ଏକାତ୍ମ ହୋଇଯାଇଛନ୍ତି ସାହିତ୍ୟ ଆଉ ସାଧନା ଭିତରେ-ସେ କାହାକୁ ବା ଛାଡ଼ି ରହିପାରିବେ କିପରି ? ଇଏତ ଜୀବନର ଗୋଟିଏ କମା-ପୂର୍ଣ୍ଣଚ୍ଛେଦ ନୁହେଁ । ତେବେ ଏଇ କ୍ଷଣିକ ବିଶ୍ରାମରେ ମନେ ପଡନ୍ତି ବନଫୁଲ, ବନପ୍ରଭା, ଉତ୍କଳ ସାଂସ୍କୃତିକ ପରିଷଦ, ଓଡ଼ିଆ ଲେଖକ ପାଠକ ସମ୍ମେଳନ, ସ୍ୱର୍ଣ୍ଣକ୍ଷେତ୍ର ଆଉ ସ୍ମରଣୀୟ ସ୍ମରଣିକା ସବୁ । ଆଉ ମନେ ପଡେ ବଗଲାବଗୁଲୀ ଠାରୁ ଆରମ୍ଭ କରି ଖରାବରଷା ଗୀତ ପର୍ଯ୍ୟନ୍ତ । ଆପଣା ପ୍ରିୟଜନଙ୍କ ଆଖିର ଟୋପା ଟୋପା ଲୁହରେ, ହୃଦୟର କୋହର ଆବେଗରେ, ସେ ସ୍ମୃତି ସବୁ ସାଇତା ହୋଇ ରହିବ ଚିରକାଳ ପାଇଁ ।

ଦୀର୍ଘ ତିରିଶ ବର୍ଷ ଅବଧିର ସାଧନା, ଅନ୍ୱେଷା ଜୀଗିଷା ମୋତେ ଅଭିଭୂତ କରିଛି । ବସନ୍ତ ସାର୍‌ଙ୍କର ସୁନାବେଡ଼ା ପ୍ରତି ଅତୁଳନୀୟ ମମତା ଓ ଓଡ଼ିଆ ବାଣୀଭଣ୍ଡାରକୁ ଅଜସ୍ର ଅବଦାନ ପାଇଁ ତାଙ୍କୁ ଦେଲାଭଳି ଜିନିଷ ଆମ ପାଖରେ କିଛି ନାହିଁ । ତେଣୁ ବନପ୍ରଭା ସାହିତ୍ୟ ସଂସଦ ତରଫରୁ ତାଙ୍କ ଉଦ୍ଦେଶ୍ୟରେ ଗୋଟିଏ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ କରିବାର ପରିକଳ୍ପନା କଲୁ । ଲେଖା ପାଇଁ ମୁଁ ଯେତେବେଳେ ସମସ୍ତଙ୍କ ସହିତ ସଂପର୍କ ସ୍ଥାପନ କଲି, ସେତେବେଳେ ଜାଣିଲି ବସନ୍ତ ସାର୍‌ଙ୍କ ଲୋକପ୍ରିୟତା ଓ ଲୋକ ସମ୍ପର୍କ । ପ୍ରତ୍ୟେକ ଜିଲ୍ଲାର କୋଣ ଅନୁକୋଣରୁ ପ୍ରତ୍ୟୁତ୍ତର ମିଳିଲା । କୁଢେଇ ହୋଇ ପଡିଲା ଅଜସ୍ର ଭଲପାଇବା । ତାଙ୍କ ବ୍ୟକ୍ତିସତ୍ତାକୁ ଆକଳନ କରିପାରିଲି ନାହିଁ । ମୋତେ ଲାଗିଲା ସେ ବ୍ୟକ୍ତି ନୁହଁନ୍ତି, ଗୋଟିଏ ଅନୁଷ୍ଠାନ । ଅଜସ୍ର ଲୋକ ତାଙ୍କ ଦ୍ୱାରା ବିଭିନ୍ନ ଭାବରେ ଉପକୃତ ହୋଇଛନ୍ତି । ବିଶାଳ ବଟବୃକ୍ଷର ଛାୟା ସଦୃଶ ସମସ୍ତଙ୍କୁ ଭଲପାଇବା ସେ ବାଣ୍ଟିଛନ୍ତି । ଏ କଥା ମୁଁ ଅନୁଭବ କଲି ସେହି ଆପଣାର ଲୋକମାନଙ୍କ ଲେଖାରୁ । ସେଇମାନଙ୍କ ଆନ୍ତରିକତାରୁ । ଆଚାର୍ଯ୍ୟ ହରିହରଙ୍କ ବିଷୟରେ ଲୋକମାନେ କୁହାକୁହି ହେଉଥିଲେ- 'ଏ ଲୋକ ଏତେ ବଡ଼ ଥିଲା ବୋଲି ଜଣା ପଡୁ ନଥିଲେ ।' ଠିକ୍ ସେହିପରି ବସନ୍ତ ସାର୍‌ଙ୍କର ସାଦାସିଧା ଜୀବନ ଶୈଳୀ, ମପାଚୁପା କଥାବାର୍ତ୍ତାରୁ ତାଙ୍କ ହୃଦୟର ବିଶାଳତାକୁ ବାହାରୁ ଆକଳନ କରିହୁଏ ନାହିଁ ।

ଜୀବନ ସାର୍ଥକ ନୋହେ ଶତବର୍ଷ ମାସେ
ଜୀବନ ସାର୍ଥକ ସିନା ମୁହୂର୍ତ୍ତ ପ୍ରକାଶେ ।

Digitized by srujanika@gmail.com

ସତରେ ଆୟୁଷ କରେ ନାହିଁ ମଣିଷକୁ ଆୟୁଷ୍ମାନ । ଧନରତ୍ନ ବି ସୁଖ ଦିଏନା । ଅହଙ୍କାର ପିନ୍ଧାଏ ନାହିଁ ବିଜୟ ମୁକୁଟ । ବୁଦ୍‌ବୁଦ୍‌ ପରି କ୍ଷଣିକ ଜୀବନ ମଧ୍ୟ ମଣିଷକୁ କୀର୍ତ୍ତିମାନ କରେ, ଯାହା ସମସ୍ତଙ୍କ ମନରେ ଅପାସୋରା କରି ରଖେ ।

ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ଲେଖା ଆମ ପାଖରେ ପହଞ୍ଚିଛି । କିନ୍ତୁ ପୁସ୍ତକର କଳେବର ଦୃଷ୍ଟିରୁ ଏଥିରେ ସେ ସବୁ ସ୍ଥାନିତ କରି ପାରି ନଥିବାରୁ ଆମେ ଦୁଃଖିତ । ତତ୍‌ ସହିତ ଆହୁରି ଅନେକ ତାଙ୍କର ପ୍ରିୟ ବ୍ୟକ୍ତି ଠିକ୍‌ ସମୟରେ ଲେଖା ଦେଇ ନପାରି ଦୁଃଖ ପ୍ରକାଶ କରିଛନ୍ତି । ସେଥିପାଇଁ ସେମାନଙ୍କ ନିକଟରେ ମଧ୍ୟ ଆମେ କ୍ଷମାପ୍ରାର୍ଥୀ । ଅନେକ ବ୍ୟକ୍ତି ମଧ୍ୟ ଏବେ ଲେଖା ଲେଖୁଛନ୍ତି ବୋଲି ଫୋନ୍‌ରେ କହୁଛନ୍ତି । ସେମାନଙ୍କ ବସନ୍ତ ପ୍ରିୟତା ପାଇଁ ସେମାନଙ୍କୁ ସାଧୁବାଦ ଜଣାଉଛୁ ଓ ଲେଖାଗୁଡିକ ପୂର୍ଣ୍ଣାଙ୍ଗ କରି ଆମ ପାଖକୁ ପଠାଇବାକୁ ଅନୁରୋଧ କରୁଛୁ । ଯାହା ଲେଖା ରହିଗଲା ଓ ଯେଉଁମାନେ ଲେଖା ଦେବେ ତାହା ଏକତ୍ର କରି ପରବର୍ତ୍ତୀ ସମୟରେ ପ୍ରକାଶ କରିବାକୁ ପ୍ରତିଶ୍ରୁତି ପ୍ରଦାନ କରୁଛୁ । ତତ୍‌ ସହିତ ବହୁ ପ୍ରତିଷ୍ଠିତ ସ୍ରଷ୍ଟା, ସାହିତ୍ୟିକଙ୍କ ଚିଠିପତ୍ରକୁ ମଧ୍ୟ ଗ୍ରନ୍ଥରେ ସଂଯୋଜିତ କରିବୁ ବୋଲି ଲକ୍ଷ୍ୟ ରଖିଥିଲୁ । ତାହା ମଧ୍ୟ ପୁସ୍ତକର କଳେବର ପାଇଁ ପୂରଣ ହୋଇପାରିଲା ନାହିଁ । ଆଶା ପରବର୍ତ୍ତୀ ସମୟରେ ତାହା କାର୍ଯ୍ୟକାରୀ କରିବୁ । ଲେଖା ସଂଗ୍ରହ କାଳରେ ଆମକୁ ଶ୍ରୀଯୁକ୍ତ ସୂର୍ଯ୍ୟମଣି ସାମନ୍ତରାୟ ଓ ଶ୍ରୀଯୁକ୍ତ ସୁକୁମାର ସାମଲ ଅନେକ ସହାୟତା ପ୍ରଦାନ କରିଛନ୍ତି । ଏହି ଅବସରରେ ସେମାନଙ୍କ ସାହାଯ୍ୟ ସହଯୋଗ ପାଇଁ କୃତଜ୍ଞତା ଜଣାଉଛି ।

ଶେଷରେ ବସନ୍ତ ସାର୍‌ ସମସ୍ତଙ୍କ ସ୍ନେହ ସଦିଚ୍ଛା ଓ ଭଲ ପାଇବାକୁ ପୁଞ୍ଜି କରି ବାଟ ଚାଲୁଥାଆନ୍ତୁ ଓ ଆହୁରି ସର୍ଜନଶୀଳ ହୁଅନ୍ତୁ । ପ୍ରଭୁ ଜଗନ୍ନାଥ ତାଙ୍କ ଅବସର ଜୀବନକୁ ନିରାମୟ କରନ୍ତୁ । ଶେଷରେ ଏତିକି କହିବି-

ଜୀବେମ ବସନ୍ତଃ ଶତମ୍‌
ପଶ୍ୟେମ ବସନ୍ତଃ ଶତମ୍‌
ଶୃଣୁୟାମ ବସନ୍ତଃ ଶତମ୍‌ ॥

ଜୟ ଜଗନ୍ନାଥ ।

ମୀରଜା ବେହେରା

Digitized by srujanika@gmail.com

# ସାଧାରଣ ସମ୍ପାଦକଙ୍କ କଲମରୁ...

ଓଡ଼ିଆ ସାହିତ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ବହୁ ପରିଚିତ ନାମ । ଉପାନ୍ତ ଅଞ୍ଚଳ ସୁନାବେଡ଼ା ତଥା ଅବିଭକ୍ତ କୋରାପୁଟ ଜିଲ୍ଲାର ସାହିତ୍ୟିକଙ୍କ ପାଇଁ ସେ ପ୍ରେରଣାର ଉତ୍ସ । ତାଙ୍କ ଚେଷ୍ଟାରେ ସୁନାବେଡ଼ାର ଯାନ୍ତ୍ରିକ ଜୀବନ ହୋଇଛି ଚଳଚଞ୍ଚଳ । ପ୍ରବାହିତ ହୋଇଛି ଏଠି ସାହିତ୍ୟର ବନ୍ୟା । ଜଣେ ସଫଳ ଶିଶୁ ସାହିତ୍ୟିକ, ସୁସମ୍ପାଦକ, ଦକ୍ଷ ସଂଗଠକ, ପ୍ରାବନ୍ଧିକ, ଗାଳ୍ପିକ, କବି, ପ୍ରକାଶକ, ଛାତ୍ରବତ୍ସଳ ଅଧ୍ୟାପକ, ଗବେଷକ ତଥା ଗବେଷଣାର ମାର୍ଗଦର୍ଶକ ଆଦି ବିଭିନ୍ନ କ୍ଷେତ୍ରରେ ସେ ନିଜର ପାରଦର୍ଶିତା ପ୍ରଦର୍ଶନ କରି ଓଡ଼ିଆ ଭାଷା ସାହିତ୍ୟକୁ କରିଛନ୍ତି ଋଦ୍ଧିମନ୍ତ ଓ ସମୃଦ୍ଧ । ବୃତ୍ତି-ପ୍ରବୃତ୍ତି, ଆଶା ଆଉ ସ୍ୱପ୍ନ ସବୁଠି ସେ ଦେଖିଛନ୍ତି ଓଡ଼ିଆ ଭାଷା ସାହିତ୍ୟର ସମୃଦ୍ଧି ଓ ବିକାଶ । ଉପାନ୍ତରେ ସେ ଭାଷା ସୁରକ୍ଷାର ଜାଗ୍ରତ ପ୍ରହରୀ । ସମତଳରେ ଜଣେ ନିରଳସ ତଥା ନୀରବ ସାଧକ । ଓଡ଼ିଶାର କୋଣ ଅନୁକୋଣରେ ତାଙ୍କର ଅନେକ ପ୍ରଶଂସକ ଓ ପ୍ରିୟ ବ୍ୟକ୍ତି । କାରଣ ସେ ନିଜେ କେବଳ ସୃଜନ କର୍ମରେ ମଗ୍ନ ରହିନାହାନ୍ତି, ଅନ୍ୟମାନଙ୍କୁ ମଧ୍ୟ ମତୁଆଲା କରିଛନ୍ତି ।

ଦୀର୍ଘ ତିନି ଦଶନ୍ଧି ଧରି ସୁନାବେଡ଼ାରେ ଅବସ୍ଥାନ କରି ସେ କୋରାପୁଟର ସମସ୍ତଙ୍କୁ କରିଛନ୍ତି ମୋହାଚ୍ଛନ୍ନ । ସଳ୍ପଭାଷୀ, ସାହିତ୍ୟପ୍ରାଣ, ପରୋପକାରୀ ଏହି ସରଳ ଅମାୟିକ ମଣିଷଟି ଆସନ୍ତା ମାର୍ଚ୍ଚ ମାସରେ ନିଜ ବୃତ୍ତିଗତ ଜୀବନରୁ ଅବସର ନେବେ । ପୁଣି ଅବସର ଜୀବନ ଜନ୍ମମାଟି କୁସୁପୁରରେ କଟାଇବାକୁ କରିଛନ୍ତି ମନସ୍ଥ ଓ ସଂକଳ୍ପ, ଯେଉଁଠି ସେ କଟାଇଛନ୍ତି ବାଲ୍ୟ, କୈଶୋର ଓ ତାରୁଣ୍ୟ । ଯେଉଁ ମାଟି ତାଙ୍କ ହାତରେ ଧରାଇଛି କଲମ । ସେଇଠି ରହି ସାହିତ୍ୟ ସାଧନା କରିବେ ଅବଶିଷ୍ଟ ଜୀବନ ।

ଏହିପରି ଜଣେ ପ୍ରଥିତଯଶା ବ୍ୟକ୍ତିଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବା ପାଇଁ ବନପ୍ରଭା ସାହିତ୍ୟ ସଂସଦ ଏକ କ୍ଷୁଦ୍ର ପୁସ୍ତକ ପ୍ରକାଶର ଯୋଜନା କରିଥିଲା । କିନ୍ତୁ ତାଙ୍କ ଲୋକପ୍ରିୟତା ଏକ ବିରାଟ ଗ୍ରନ୍ଥ ପାଇଁ ବାଟ ଖୋଲି ଦେଲା । ଶହେ କି ଦୁଇ ଶହ ନୁହେଁ ଦୀର୍ଘ ପାଞ୍ଚଶହ ପୃଷ୍ଠାର ଅଭିନନ୍ଦନ ଗ୍ରନ୍ଥ ପ୍ରମାଣ କରେ ତାଙ୍କ ଲୋକପ୍ରିୟତା । ଆହୁରି ଅନେକ ଲେଖା ରହିଗଲା ପ୍ରକାଶ ନପାଇ । ସେଥିପାଇଁ ସଂପୃକ୍ତ ଲେଖକଙ୍କ ନିକଟରେ ଆମେ କ୍ଷମା ପ୍ରାର୍ଥୀ । ପୁସ୍ତକଟି ଉଭୟ ବସନ୍ତ କିଶୋରଙ୍କୁ ଶ୍ରଦ୍ଧା କରୁଥିବା ଓ ଶ୍ରଦ୍ଧା ନକରୁଥିବା ଲୋକଙ୍କୁ ଆନନ୍ଦ ଦେଇ ପାରିଲେ ଆମର ଶ୍ରମ ସାର୍ଥକ ହେବ ଓ ଏହା ଜଣେ ନିରଳସ ସାଧକଙ୍କ ପ୍ରତି ଉପଯୁକ୍ତ ସମ୍ମାନ ବୋଲି ମନେ କରାଯିବ ।

ଶେଷରେ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ସେ ତାଙ୍କୁ ଦୀର୍ଘ ନିରାମୟ ତଥା ସାଧନାମୟ ଜୀବନ ପ୍ରଦାନ କରନ୍ତୁ । ଜୟ ଜଗନ୍ନାଥ ।

ଜାନକୀ ଜେନା

ସାଧାରଣ ସମ୍ପାଦକ, ବନପ୍ରଭା ସାହିତ୍ୟ ସଂସଦ

Digitized by srujanika@gmail.com

ବସନ୍ତ କିଶୋରଙ୍କ

# ସୃଷ୍ଟି ଓ ସମୀକ୍ଷା



ଗ୍ରନ୍ଥକାର ଠାରୁ ସଦା ବଡ ଆଲୋଚକ
ଦୁର୍ଲ୍ଲଭ ମାତ୍ରକ ଦେଶେ ଗ୍ରନ୍ଥର ପାଠକ ।।
-ନନ୍ଦକିଶୋର

Digitized by srujanika@gmail.com

# ବସନ୍ତ କିଶୋର ରଚନାବଳୀ

ଡକ୍ଟର ବସନ୍ତ କିଶୋର ସାହୁ



Digitized by srujanika@gmail.com



ଜାଣେ ନାହିଁ କେତେ ବାଟ
ଚାଲି ମୁଁ ଆସିଲି
ଆଜି ଏଇ ସ୍ମୃତି ପୀଠେ ବସି
ସ୍ମୃତି ସବୁ ଉଠଇ ଚହଲି ॥

ଆସିବ ଆସିବ ବୋଲି
ଏମିତି ଦିନଟିଏ
କେତେ କାଳୁ କରିଥିଲି
ନିରବ ପ୍ରତୀକ୍ଷା
ମୋ ଜୀବନ ଛବି ଖାଲି ଭରିଯିବ
ତୁମ ହାତ ପ୍ରୀତି ଲେଖା ॥





ଧୂଳିଘର ଛାଡ଼ି ଏବେ
ନୂଆ ନୂଆ ଦେଖୁଛି ସପନ
ପକ୍ଷୀରାଜ ଘୋଡ଼ା ଚଢ଼ି
ଉଡ଼ିବାକୁ ଚାହେଁ ମନ୍ଟୁ ॥

Digitized by srujanika@gmail.com





ଆମେ ଦୁହେଁ ଦୁଇ ଆଖି
ବାବା ଆଉ ମାଆର
ସ୍ନେହ ସବୁ ସାଉଁଟିବା
ତୋର ଆଉ ମୋର ॥



ମନେ ପଡେ ଜୀବନରଯେତେ ସବୁ
ଅପାସୋରା କଥା
ନିଃସର୍ତ୍ତରେ ସମର୍ପିତ ତୁମେ
ପ୍ରତିଶ୍ରୁତି ଖାଲି ନିରବତା ॥

ତୁମ ସାଥେ ସାଥୀ ହୋଇ
ଭୁଲି ଗଲି ଯେତେ ଅବସୋସ
ମୋ ମନର ଅଭିସାର
ତୁମଠୁ ଆରମ୍ଭ ଓ ଶେଷ ॥





ସାତ ରଙ୍ଗ ଫିକା ପଡିଯାଏ
ଭଲ ଲାଗେ ଜୀବନର ରଙ୍ଗ
ଯାଚି ଦେବି ତୁମ ପାଇଁ
ସମସ୍ତ ଆୟୁଷ
ଛାଡ଼ିବନି କେବେ ମୋର ସଙ୍ଗ ॥

Digitized by srujanika@gmail.com



ରାକ୍ଷୀ ନୁହେଁ ଭାଇ ଏ ତ
ସେନେହର ଡୋରି
ମନ ତଳେ ରଖିଥିବୁ ମୋତେ
ନଯିବୁ ପାସୋରି ॥

କୁନି କୁନି ତୁମେ ଦୁଇ କଳି
ଆମ ପ୍ରାଣ ହୃଦୟ ସ୍ପନ୍ଦନ
ଶାନ୍ତି ଘାଟେ ଶାନ୍ତି ଟିକେ ପାଇଁ
ହେ ରାମ ! ପଶୁଛି ଶରଣ ॥





ବୋଉ ଲୋ !
ତୋ ପଣତ
ମୋ ମଥାର ମଥାନ
ମମତାର ମହୋଦଧି
ପୂଣ୍ୟତୋୟା ବାରିଧି
ତୋ ପାଦତଳେ
କୋଟି ନିଧି ॥

Digitized by srujanika@gmail.com

ସଞ୍ଜ ସକାଳରେ
ଆରତି କରଇ
ଶଙ୍ଖ ହୁଳହୁଳି ଦେଇ
ଜୀବନ ସଳିତା ଜାଳି
ଦେଇ ମାଗେ ଆଶିଷ ଟିକିଏ
ତୁମରି ପାଇଁ ।।






ତୋ ମନ୍ଦିର ମୂଳଦୁଆ ତଳେ
କେତେ କେତେ ଲୋକଙ୍କର
ପୂଜାମନ୍ତ୍ର ପ୍ରତିଧ୍ୱନିତ
କେତେ ଦୁଃଖୀ ଆରତଙ୍କ
ଲୁହ ଲହଡି ଅନୁରଣିତ
କେଉଁଟା ତୋ କାନରେ
ବାଜେ ତୁ ଜାଣୁ ।।

ମୋ ଆଖିରେ ନୁହେଁ
ଏବେ ଏବେ ତୋ ଆଖିରେ ମୁଁ
ସପନ ଦେଖୁଛି...



Digitized by srujanika@gmail.com



ତୁ ମୋର ଏମିତିକା ସାଥୀ-
ହାତ ବଢ଼େଇଲେ
ଛୁଇଁ ହୁଏ ତୋତେ
ବିତିଯାଏ ତୋ ସାଥୀରେ
କେତେ ଦିନରାତି ।।



ଲେଖୁଛି ମୁଁ ଲେଖି ଚାଲିଥିବି
ଏ ଜୀବନ ଥକି ଯିବା ଯାଏ
କିଏ ପ୍ରଶଂସା କରୁ କି ନକରୁ
ମୋର କିଂବା ଯାଏ ।।



ସମ୍ମାନ ନୁହେଁ ସେ ତ ସ୍ମୃତି ସନ୍ତକ
ସାଇତିବି ମନ ତଳେ ଝୁରିବାକୁ
ଜୀବନଟା ଯାକ ।।

Digitized by srujanika@gmail.com



ସାହିତ୍ୟ ଓ ସାଧନାକୁ
ଜୀବନର ବ୍ରତ ମୋ କରିଛି
ଯେତେ ଯେତେ ପୁରସ୍କାର ସବୁ
ଚଳାପଥେ ପ୍ରେରଣା ଭରିଛି ।।




ମଣିଷ ବୁଢ଼ା ହୁଏନି ସରିଗଲେ ସଂଖ୍ୟାର ଆୟୁଷ,
ତଥାପି ତ ଚାଲିଥାଏ ,ଜୀବନର ଛକା ପଞ୍ଝା ଖେଳ
ଅବଲୁପ୍ତ ସମୟର ଇତିହାସ ତଳୁ ,ଖୋଜିହୁଏ ଟୋପାଏ ପୀୟୂଷ ।।





ଓଡ଼ିଆ ଲେଖକ-ପାଠକ ସମ୍ମେଳନ
ଜ୍ଞାନୀ, ଗୁଣୀ, ବିଜ୍ଞ ଜନଙ୍କର
ଏ ମହାମିଳନ ।।

Digitized by srujanika@gmail.com







ଶୀତ ଯେବେ ନଇଁ ଆସେ ପାହାଡ଼ ଛାତିରେ
ଚୁପି ଚୁପି ବନପ୍ରଭା କହେ
କେତେ କଥା 'ତୁମ ପାଇଁ' ଉଚ୍ଛୁଳା ପ୍ରୀତିରେ ॥



ବରଷକୁ ଥରେ ଆସେ
ବନପ୍ରଭା ବାର୍ଷିକ ଉତ୍ସବ
ପୁସ୍ତକ ଉନ୍ମୋଚନ ପୁଣି
ଆଲୋଚନା ଚକ୍ର
ଅବସର ମିଳେ
କବିତାରେ କହିଦେବା ପାଇଁ
ହୃଦୟର ଭାବ ॥

Digitized by srujanika@gmail.com

ହେ ଅତିଥି ଗଣ !
ତବ ଆଗମନେ
ଧନ୍ୟ ହେଲା ପ୍ରାଣ,
ଆଜି ପରା 'ଛାଗଳ ସ୍ମୃତି'ର
ଲୋକାର୍ପଣ ॥






ଆମେ ପରା ବନପ୍ରଭା ପରିବାର
ଏକାନ୍ତ ନିଜର
ଜନମ ଦିନରେ ଘେନା କର
ଶ୍ରଦ୍ଧା ସୁମନର ॥



ହେ କବି ! ତୁମେ ସୃଷ୍ଟି କରିଚାଲ
ଆହୁରି ଆହୁରି
ତୁମ ଲେଖନୀ ମୁନରେ
ଟିକିଏ ପ୍ରେରଣା ପାଇଁ
ବନପ୍ରଭାର ସମ୍ମାନ
ତୁମରି ହାତରେ ॥

Digitized by srujanika@gmail.com

# ସାରସ୍ୱତ ସାଧକ ବସନ୍ତ କିଶୋର:
# ଏକ ଶୂନ୍ୟସଂଚାରୀ ଦୃଷ୍ଟିପାତ

**ପ୍ରଫେସର ବୈଷ୍ଣବ ଚରଣ ସାମଲ**

ଡକ୍ଟର ବସନ୍ତ କିଶୋର ସାହୁ ମାହାଙ୍ଗାର ସାରସ୍ୱତ କ୍ଷେତ୍ର ଓ ସାଂସ୍କୃତିକ ପ୍ରାଣକେନ୍ଦ୍ରରୁ ପ୍ରାକୃତିକ ସୁଷମା ମଣ୍ଡିତ ପ୍ରାଚୀନ ଇତିହାସର ଲୀଳାଭୂମି ସରଳ ଆଦିବାସୀ ଅଧ୍ୟୁଷିତ କୋରାପୁଟ ଅଞ୍ଚଳକୁ ଯାଇ ସୁନାବେଡ଼ା ମହାବିଦ୍ୟାଳୟରେ ଅଧ୍ୟାପନା କେବଳ କରିନାହାନ୍ତି; ସେହି ଅଞ୍ଚଳର ସମାଜ, ସଂସ୍କୃତି, ଜୀବନଧାରା, ନୃତ୍ୟ, ଗୀତ, ପର୍ବପର୍ବାଣି, ଜୀବନ-ଜୀବିକା ସହିତ ନିଜକୁ ନିଜକୁ ମିଶାଇ ଦେଇଛନ୍ତି ଓ ସେହି ଜୀବନ୍ତ ଅନୁଭୂତିକୁ ରୂପ ଦେଇଛନ୍ତି ଶିଶୁ ସାହିତ୍ୟ ଠାରୁ ଆରମ୍ଭ କରି ନାନା ତାତ୍ତ୍ୱିକ ରଚନାରେ । ଅପରନ୍ତୁ ମାହାଙ୍ଗା ମାଟିର ବରପୁତ୍ର କବିଯୋଗୀ ଗୌରୀଶଙ୍କର, ଆଦିନାଟ୍ୟକାର ଜଗନ୍ମୋହନ ଲାଲ, ଉତ୍କଳ-ସାହିତ୍ୟର ସଂପାଦକ ବାଗ୍ମୀ ବିଶ୍ୱନାଥ କର, ପଲ୍ଲୀକବି ନନ୍ଦକିଶୋର ବଳ, ସଂସ୍କାରକ ପ୍ୟାରୀମୋହନ ଆଚାର୍ଯ୍ୟ, ଶିକ୍ଷାଗୁରୁ ବିଦ୍ୟାଧର ବର୍ମା, ଗଣକବି ବୈଷ୍ଣବ ପାଣି, ନାଟ୍ୟକାର ରାମଶଙ୍କର ରାୟ, ଔପନ୍ୟାସିକ ପ୍ରାଣକୃଷ୍ଣ ସାମଲ, କବି ଓ ଔପନ୍ୟାସିକ ଜ୍ଞାନୀନ୍ଦ୍ର ବର୍ମା ପ୍ରମୁଖ ବହୁ ସାରସ୍ୱତ ସାଧକଙ୍କର ଅଶରୀରୀ ପ୍ରେରଣା ତାଙ୍କ ଭିତରେ ସୃଷ୍ଟି କରିଛି ଭାଷା ଓ ସାହିତ୍ୟକୁ ଭଲପାଇବା ଓ କିଛି ଲେଖାଲେଖି କରିବା ପାଇଁ । ସେ ନିଜେ ନିରଭିମାନ ଓ ଆତ୍ମପ୍ରଚାର ବିମୁଖ । ପୁଣି ସେ, କଟକ/ଭୁବନେଶ୍ୱର ପାଣିପାଗରୁ ବହୁଦୂରବର୍ତ୍ତୀ । ତଥାପି ସେ ଲେଖୁଛନ୍ତି ନୀରବ ସାଧକ ଭାବରେ । କିଏ କଣ କହିଲା କିମ୍ବା ନାହିଁ ସେଥିପ୍ରତି ଆଦୌ ନିଘା ନ ରଖି ସେ ଲେଖି ଚାଲିଛନ୍ତି ଦୀର୍ଘ ଚାଳିଶ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି । ସେ ପ୍ରଥମତଃ ନନ୍ଦକିଶୋର ବଳ ଓ ନନ୍ଦକିଶୋର ସାମଲଙ୍କ ଶିଶୁ କବିତା ବା ଶିଶୁ-ସାହିତ୍ୟ ଦ୍ୱାରା ଛାତ୍ରଜୀବନରୁ ଅନୁପ୍ରାଣିତ ହୋଇ ସେହି ଛାତ୍ରାବସ୍ଥାରେ ମାତୃଭୂମିକୁ ଲେଖା ପଠାଇଛନ୍ତି ଓ ତାହା ପ୍ରକାଶ ପାଇଲା ପରେ ଉତ୍ସାହିତ ହୋଇ ଲେଖିଚାଲିଛନ୍ତି ଏ ଯାବତ୍ । ସେ ମଧ୍ୟ ରଚନା କରିଛନ୍ତି ପରିଣତ ଅଭିଜ୍ଞତାକୁ ନେଇ କେତେ ପ୍ରବନ୍ଧ, କେତେ ସମାଲୋଚନାତ୍ମକ ଗ୍ରନ୍ଥ; ସଂକଳନ ମଧ୍ୟ କରିଛନ୍ତି କେତେ କେତେ ଉପାଦେୟ ପୁସ୍ତକ । ସର୍ବତ୍ର ତାଙ୍କର ପ୍ରତିଭା ପ୍ରୋଜ୍ଜ୍ୱଳ । ସେ ଗୋଟିଏ କଥା ଜାଣନ୍ତି ଯେ ଯିଏ ତାର ମାଟି, ମଣିଷ ଓ ସଂସ୍କୃତି ପ୍ରତି ଶ୍ରଦ୍ଧାଶୀଳ, ସିଏ ହୁଏ ସାର୍ଥକ



Digitized by srujanika@gmail.com

ସାରସ୍ୱତ ସେବକ । ଯିଏ ଆପଣାର ମାଟି, ମଣିଷ ଓ ସଂସ୍କୃତି ଠାରୁ ଦୂରେଇ ଯାଇ କେବଳ ବୌଦ୍ଧିକ କସରତ କରନ୍ତି ଓ ବାହାର ଜିନିଷକୁ ଆଣି ଆରୋପ କରି ଦେଇ ସାମୟିକ ହଟଚମଟ ଦେଖାନ୍ତି ସିଏ ଯଥାର୍ଥ ସାହିତ୍ୟିକ ହୋଇପାରେନା । ତେଣୁ ବସନ୍ତ ବାବୁ ଶ୍ରଦ୍ଧାଶୀଳ ହୋଇ ଉଠିଛନ୍ତି ମାଟି ପ୍ରତି, ମଣିଷ ପ୍ରତି ଓ ଆପଣାର ସଂସ୍କୃତି ପ୍ରତି । ସେ ପୁଣି ମନେ କରିଛନ୍ତି ଶିଶୁମାନଙ୍କ ଜୀବନ-ଜିଜ୍ଞାସାର ଉତ୍ତର-ସାଧନ ଓ କୌତୁକ-ଉତ୍କଣ୍ଠାର ପ୍ରଶମନ ପାଇଁ କିଛି ଲେଖିବା ପାଇଁ ଓ ସେ ଦିଗରେ ଲେଖନୀ ଚାଳନା କରି ଅପୂର୍ବ କୃତିତ୍ୱ ଅର୍ଜନ କରିଛନ୍ତି । ସିଏ ଯେତେବେଳେ ସାହିତ୍ୟର ଯେଉଁ ବିଭାଗରେ ହାତ ଦେଇଛନ୍ତି ସେଥିରେ ସଫଳ ହୋଇଛନ୍ତି । ତାଙ୍କର ସାରସ୍ୱତ ସାଧନା ପାଇଁ ସେ ପାଇଛନ୍ତି ଅନେକ ସମ୍ମାନ ଓ ପୁରସ୍କାର । ଏପରି ଜଣେ ବହୁମୁଖୀ ପ୍ରତିଭାଧର ସାରସ୍ୱତ ସାଧକଙ୍କ ସଂପର୍କରେ କିଞ୍ଚିତ୍ ସୂଚନା ଦେବା ଏଇ ପ୍ରବନ୍ଧର ଲକ୍ଷ୍ୟ ।

## ଶିଶୁ-ସାହିତ୍ୟ କ୍ଷେତ୍ରରେ ଭୂମି ଓ ଭୂମିକା :

ଶିଶୁ-ସାହିତ୍ୟ ଆଦୌ ଗୌଣ ନୁହେଁ; ବରଂ ଅନେକ ଦୃଷ୍ଟିକୋଣରୁ ତାହା ମହତ୍ତ୍ୱପୂର୍ଣ୍ଣ । ଯେ କେହି ଶିଶୁ-ସାହିତ୍ୟ ରଚନା କରି ପାରେ ନାହିଁ । ଜଣଙ୍କର ପାଣ୍ଡିତ୍ୟ ଥିଲେ ଯେ ସେ ଶିଶୁ-ସାହିତ୍ୟ ରଚନା କରିପାରିବ; ଏହା ନୁହେଁ । ଯିଏ ମନ, ବିଚାର ଓ ଆଚରଣରେ ଶିଶୁ ପରି ହୋଇଯାଏ, ଶିଶୁର ଭାଷାକୁ ଆୟତ୍ତ କରିନିଏ, ଶିଶୁ ଜୀବନରେ ଭାବାନ୍ତର ଆଣିବା ପାଇଁ ସଂକଳ୍ପ ନେଇପାରେ ସେହି ହିଁ ଶିଶୁ-ସାହିତ୍ୟ ରଚନା କରିବାକୁ ସମର୍ଥ ହୁଏ । ସେ ନିଜେ ଶିଶୁ ସ୍ତରକୁ ଅବତରି ଆସେ ଓ ନିଜେ ଶିଶୁ ଭାବ ନେଇ ଶିଶୁଙ୍କ ଉପଯୋଗୀ କବିତା କାହାଣୀ ସୃଷ୍ଟି କରେ । ସେଥିରେ କୌତୁକ ଥାଏ, ଉତ୍କଣ୍ଠା ଥାଏ । ଶିଶୁର ସୌନ୍ଦର୍ଯ୍ୟବୋଧ ମଧ୍ୟ ପ୍ରକାଶ ପାଏ । ଶିଶୁ ପାଖରେ ସବୁ କିଛି ସୁନ୍ଦର । ଫୁଲ ସୁନ୍ଦର । ବୃକ୍ଷଲତା ସୁନ୍ଦର । ପଶୁ ପକ୍ଷୀ ସୁନ୍ଦର । ତାର ଶତ୍ରୁ ମିତ୍ର ନଥାଏ । ସମସ୍ତେ ତାର ଆପଣାର । ଏହି ଭାବକୁ ନେଇ ଶିଶୁ ସାହିତ୍ୟିକ ସାହିତ୍ୟ ସୃଷ୍ଟି କରେ । 'ସେ କେବଳ ଆନନ୍ଦ ଦେବାରେ ବା ଶିଶୁର ଉତ୍କଣ୍ଠା ସୃଷ୍ଟି କରିବାରେ ଅଟକି ଯାଏ ନାହିଁ । ଶିଶୁର ମାନସିକ ଶକ୍ତିର ସୃଷ୍ଟି ବିକାଶ ଦିଗରେ ଯତ୍ନବାନ ହୁଏ । ନୀତି ନୈତିକତା ଓ ଆଦର୍ଶର କଥା କୁହେ । ଏହି ଦୃଷ୍ଟିରୁ ଓଡ଼ିଆ ଶିଶୁ-ସାହିତ୍ୟ ଆପଣାର ପ୍ରଭା ବିଚ୍ଛୁରିତ କରି ଆସିଛି ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଏ ଯାବତ୍ । ଭକ୍ତକବି ମଧୁସୂଦନ ରାଓ, ଫକୀରମୋହନ ସେନାପତି, ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଠାରୁ ଆରମ୍ଭ କରି ପଣ୍ଡିତ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ଜାତୀୟ କବି ବୀରକିଶୋର ଦାସ, ବିନୋଦ କାନୁନ୍‌ଗୋ, ରାମକୃଷ୍ଣ ନନ୍ଦ, ରାମପ୍ରସାଦ ମହାନ୍ତି, ନନ୍ଦକିଶୋର ସାମଲ, ମହେଶ୍ୱର ମହାନ୍ତି, ମନୀନ୍ଦ୍ର ମହାନ୍ତି ଇମିତି ଅନେକଙ୍କୁ ଆମେ ଦେଖୁ ଶିଶୁ ସାହିତ୍ୟରେ ନୂତନ ନୂତନ କ୍ରାନ୍ତି ସୃଷ୍ଟି କରିବା ଲେଖକମାନଙ୍କୁ । ବସନ୍ତ କିଶୋର ସାହୁ ଏହିମାନଙ୍କ ଭିତରେ ଅନ୍ୟତମ କେବଳ ନୁହନ୍ତି; ଅନେକ ଦୃଷ୍ଟିକୋଣରୁ ଅତ୍ୟନ୍ତ ପ୍ରଭାବଶାଳୀ ମଧ୍ୟ ।



Digitized by srujanika@gmail.com

ସେ ବିଦଗ୍ଧ ସାହିତ୍ୟ ଲେଖିଛନ୍ତି, ପ୍ରବନ୍ଧ ଓ ସମାଲୋଚନା ଲେଖିଛନ୍ତି ମାତ୍ର ଶିଶୁ-ସାହିତ୍ୟ ହୋଇଯାଇଛି ତାଙ୍କର ମୁଖ୍ୟ ସାରସ୍ୱତ ସମ୍ପଦ ।

ବସନ୍ତ ବାବୁ ଅନେକ ଶିଶୁ ସାହିତ୍ୟର ସ୍ରଷ୍ଟା । ଇଞ୍ଚିଡି ମିଞ୍ଚିଡି, ବିଲୁଆ ନନାର ବଣଭୋଜି, ଉଦୁଉଦୁମା, ଗାଇଦିଅ ପଦେ ଗୀତ, ଖରା ବରଷା ଗୀତ, କାଳିଆ ବଳଦ ଗଳାରେ ଗଳା, ହାତଦେବା ଭଲ କାମେ, ଫୁଲ ଆମେ ଫୁଲ, ଅଗଡ଼ ବଗଡ଼ ଝାଇଁକି ଝୁମ୍ପା, ଗଛ ଆମ ଜୀବନ ଆଦି ନାନା ପୁସ୍ତକ ଶିଶୁ କବିତା ମାନଙ୍କର ରମ୍ୟ ସଂକଳନ । ବସନ୍ତ ବାବୁଙ୍କ ଶିଶୁ ସାହିତ୍ୟ ଅଧ୍ୟୟନ କଲେ ସେଥିରୁ ତାଙ୍କର ଦୃଷ୍ଟିକୋଣ ସ୍ପଷ୍ଟ ଫୁଟି ଉଠେ । ଯେଉଁ ଶିଶୁ ବା ଅଳ୍ପ ବୟସର ପିଲାମାନେ କଳ କାରଖାନା, ହୋଟେଲ, ଦୋକାନ ବା ବଡ଼ଲୋକଙ୍କ ଘରେ ଜୀବନ-ବଞ୍ଚିବା ପାଇଁ କାର୍ଯ୍ୟ କରନ୍ତି, ମାଡ଼ ଗାଳି ଖାଆନ୍ତି, ନିର୍ଯ୍ୟାତନା ସହନ୍ତି ସେମାନଙ୍କ ପ୍ରତି ଅନ୍ତରର ସହାନୁଭୂତି ପ୍ରକାଶ କରିବା ସହିତ ସେମାନଙ୍କ ଜୀବନର ଉତ୍ତୋଳନ ପାଇଁ ପ୍ରେରଣା ଦେଇଛନ୍ତି । ଏଥିରେ ଶିଶୁମାନଙ୍କୁ ଫୁଲ ପରି କୋମଳ, ଲଳିତ ଓ ମଧୁର ଭାବରେ ଚିତ୍ରଣ କରିବା ସହିତ ସେମାନଙ୍କ ଭିତରେ ଭ୍ରାତୃଭାବ ପ୍ରତିଷ୍ଠା, ଜୀବନରେ ବଡ଼ ହେବାର ସଂକଳ୍ପ, ପାଠ ପଢ଼ିବା ପାଇଁ ଶ୍ରଦ୍ଧା, ମାଟିକୁ ମାଆ ପରି ସମ୍ମାନ ଦେବା, ସ୍ୱାବଲମ୍ବନଶୀଳ ହେବା ଓ ଭଲ କାମ କରିବା ପାଇଁ ସେ ଯେପରି ସରଳ ଭାଷାରେ ଗୀତିମୟ ରୂପରେ ଲେଖିଛନ୍ତି ତାହା ଏକାନ୍ତ ହୃଦ୍ୟ ଓ ଭାବଗର୍ଭକ । ଯାବତୀୟ ଦୁଃଖ ନିର୍ଯ୍ୟାତନା ସହି ନିଃସ୍ୱ ପିଲାଟି ମନକୁ ମନ ପ୍ରଶ୍ନ କରେ-

କାହିଁକି ଏମିତି ହୁଏ
କହିକି ପାରିବ କିଏ
ସଭିଏଁ ତ ଆମେ ମଣିଷ ଯଦିରେ
ଭେଦଭାବ କଲା କିଏ ।
କିଏ ସେ କହୁଛି ଧନୀ
କିଏ ସେ କହୁଛି ମାନୀ
ଆଉ କିଏ କହେ ଗରିବ ବିଚରା
କିଏ କହେ ସିଏ ଦାନୀ ।

ବସନ୍ତ ବାବୁ ଅତି ସଚେତନ ଭାବରେ ଶିଶୁ ଭିତରେ ନାନା ପ୍ରଶ୍ନ ଉଠାଇ ସମାଜରେ ଜାତି ଅଜାତି, ଧନୀ ଗରିବ, ଉଚ୍ଚ ନୀଚ ଭେଦଭାବ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ଓ ଶିଶୁଙ୍କ ମୁଖରେ ଶୁଣାଇଛନ୍ତି-



Digitized by srujanika@gmail.com

ଆସ ସବୁ ହସି ହସି
ଯିବା ଆମେ ମିଳିମିଶି
ଭେଦଭାବ କଥା ମନରୁ ଦୂରେଇ
ଭରି ଦେବା ହସ ଖୁସି ।
ରଖିବାନି ବଡ଼ ସାନ
ନଥିବ ମାନ ଅପମାନ
ସଭିଙ୍କର ପରା ସବୁ ଅଧିକାର
ଭଗବାନଙ୍କର ଦାନ ।
ଭେଦାଭେଦ ହେବ ଦୂର
ନଥିବ ଆପଣା ପର
ସଭିଏଁ ପାଇବେ ସମାନ ସୁବିଧା
ହସିବ ସୁନା ସଂସାର ।

ଦରିଦ୍ର ପିଲାଟିଏ ଯେତେବେଳେ ପେଟ ପାଇଁ ପର ଘରେ କାମ କରେ, ମାଡ଼ ଗାଳି ଖାଏ ସେତେବେଳେ ତା' ଭିତରେ ବାରମ୍ବାର ପ୍ରଶ୍ନ ଉଠେ - ସିଏ କ'ଣ ପିଲା ନୁହେଁ ? ତାର କଣ ଅଧିକାର ନାହିଁ ଖେଳିବାରେ ? କିଏ ତାର ପିଲାଦିନର ଆନନ୍ଦକୁ ହରଣ କରିନେଲା ? ଏଥିପାଇଁ ଦାୟୀ କିଏ ? ଶିଶୁ ଶ୍ରମିକ ପ୍ରଥାକୁ ବସନ୍ତ ବାବୁ ବିରୋଧ କରି ସାମାଜିକ ସଚେତନତା ସୃଷ୍ଟି କରିଛନ୍ତି । ଶିଶୁମାନଙ୍କ ଭିତରେ ବଡ଼ ହେବାର ସଂକଳ୍ପଟିଏ ଭରି ଦେଇଛନ୍ତି । ପରଦୁଃଖରେ ଦୁଃଖି ହେବାକୁ, ଗରିବ ଲୋକଙ୍କ ପ୍ରତି ସହାନୁଭୂତି ଦେଖାଇବାକୁ, ପର ଆପଣା ଭେଦ ଦୂର କରି ସମସ୍ତଙ୍କୁ ନିଜର ମନେ କରିବାକୁ, ନିଜକୁ ଛୋଟ ମନେ ନ କରି ବାଜିରାଉତ ଓ ଧରମା ପରି ହେବାକୁ, ପାଠ ପଢ଼ି ନୂଆ ଦୁନିଆ ଗଢ଼ିବାକୁ, ମାଦକ ଦ୍ରବ୍ୟ ସ୍ପର୍ଶ ନ କରିବାକୁ, ସତ୍ୟ ଓ ଅହିଂସା ପଥରେ ଚାଲିବାକୁ, ଶୋଷକ ଓ ଶୋଷଣ କବଳରୁ ମୁକ୍ତ ହେବାକୁ ଯେପରି କବି ପ୍ରେରଣା ଦେଇଛନ୍ତି ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏଥି ସହିତ ବିଜ୍ଞାନର କଥାକୁ ନେଇ ସେ ରଚନା କରିଛନ୍ତି କବିତା । ଖରା ଓ ବର୍ଷାର ସମ୍ପର୍କ, ଧାନ ଫସଲର ମହତ୍ତ୍ୱ, ଧନୀ ଲୋକର ଅର୍ଥ ପାଇଁ ଚିନ୍ତା, ନିର୍ଦ୍ଧନ ଲୋକର ଦୟା ଭାବ ଇତ୍ୟାଦି ନାନା କଥା ତାଙ୍କ କବିତାମାନଙ୍କରେ ପ୍ରକାଶିତ । ତାଙ୍କର ଶିଶୁମାନଙ୍କୁ ଉପଦେଶ- 'ହିଂସା ଆଉ ଲୋଭ ପାଶୋରି ପକାଇ ହାତ ଦେବା ଭଲ କାମେ' ଖରା, ବର୍ଷା, ଶୀତ, ପ୍ରକୃତି ସବୁ କିଛି ବସନ୍ତଙ୍କ କବିତାରେ ନେଇଛି ଭବ୍ୟ ରୂପ । ବାଇଚଢ଼େଇ, ବେଙ୍ଗୁଲୀ ନାନୀ, କୋଇଲି ନାନୀ, ଶଙ୍ଖଚିଲ ଭାଇ ଆଦି କବିତାମାନଙ୍କରେ ଜୀବଜନ୍ତୁ ପ୍ରତି ଶିଶୁ ହୃଦୟର ମମତା ପ୍ରକାଶ ପାଇଅଛି । ଗାଁକୁ ଭଲ ପାଇବା ଓ ନିଜ ଘରକୁ ପରିଷ୍କାର ରଖିବା, ବୃକ୍ଷଲତାକୁ ଆଦର କରିବା, ପରିବେଶକୁ ସୁନ୍ଦର ରଖିବା ଇତ୍ୟାଦି ନାନା କଥା ମଧ୍ୟ ତାଙ୍କ କବିତାମାନଙ୍କରେ ପ୍ରକାଶିତ । ପିଲାମାନଙ୍କୁ


Digitized by srujanika@gmail.com

ସେ ପୁଣି ଉପଦେଶ ଛଳରେ କହନ୍ତି-

ଉଦୁଉଦୁମା ତାଳ ଗୋଟମା
ହିସାବ ନ କରି ଖରଚ ଜମା
ଆଗତ କଥା ଏବେ ଠୁ ଚିନ୍ତ
ଗୋଟିକୁ ଗୋଟି ପଇସା ସଞ୍ଚ ॥

ଶିଶୁମାନଙ୍କୁ କବି ଭଲ ପାଇଛନ୍ତି ନିବିଡ଼ ଭାବରେ । ତେଣୁ ସେ କହନ୍ତି- 'ଛୋଟ ଶିଶୁ ହସିଦେଲେ ଦୁଃଖ ଯାଏ ଉଭେଇ/ମନେ ହୁଏ ହସିବାକୁ ତାଙ୍କ ଆଡେ ଅନେଇ' । ଶିଶୁ ନିଷ୍ପାପ । ଶିଶୁ ଅମୃତର ନିର୍ଝର । କବି-ହୃଦୟ ଶିଶୁ ଭାବରେ ଏପରି ପୂର୍ଣ୍ଣ ହୋଇଯାଇଛି ଯେ ଶିଶୁମାନେ ତାଙ୍କୁ ଅମୃତ ପରି ମନେ ହୋଇଛନ୍ତି ।

ସେହିମାନଙ୍କ ଭିତରୁ ସବୁ ଭେଦଭାବ, କ୍ଷୁଦ୍ରତା ଓ ସଂକୀର୍ଣ୍ଣତାକୁ ଦୂରେଇ ଏକ ମଣିଷ ଭାବନାରେ ଉଦ୍‌ବୁଦ୍ଧ ହେବାକୁ ପ୍ରେରଣା ଦେଖାଇଛନ୍ତି । ତାଙ୍କର ଉପଦେଶ-

ସ୍ନେହ ମମତାରେ ସବୁ କଥା ସମ୍ଭବ
ଭାଙ୍ଗି ତୁଟିଯାଏ ସଦା ଦମ୍ଭ ଗରବ ।

ତାଙ୍କର ପୁନଶ୍ଚ ଉପଦେଶ-

ବେଳ କାଳ ଭଲଥିଲେ ହୁଏ ସବୁ କାମ
ଭଲ କାମ ପାଇଁ ସଦା ମିଳଇ ସୁନାମ ।
ସୁନାମର କଥା ସଦା ମନୁ ଦେଇ ପୋଛି
କାମ କର ପର ପାଇଁ ଜୀବନ ମୁରୁଛି ।

x x x

ପାପ କାମ କଲେ ବଢ଼ଇ ଦୁଃଖ
କେହି ଚାହାନ୍ତିନି ପାପୀର ମୁଖ ।

x x x

ମରିବା ପାଇଁକି ନ କରି ଭୟ
ଭଲ କାମେ ସଦା ଲଗାଅ ଲୟ ।

x x x

ଅନ୍ତରୁ ଝରାଅ ମମତା ସ୍ନେହ
ମିଠା କଥା କହି ମନଟି ନିଅ ।
କାହାରି ମନରେ ଦିଅନା ଦୁଃଖ
ତେବେ ଯାଇ ତୁମେ ପାଇବ ସୁଖ ॥



Digitized by srujanika@gmail.com

ଏହିପରି ନାନା କବିତାରୁ ବହୁ ଦୃଷ୍ଟାନ୍ତ ପ୍ରଦାନ କରାଯାଇପାରେ । ବସନ୍ତ ବାବୁଙ୍କ ପ୍ରତ୍ୟେକ ଶିଶୁ-କବିତା ବଡ଼ ହୃଦୟସ୍ପର୍ଶୀ । ସେଥିରେ ଯେପରି ଧ୍ୱନ୍ୟାତ୍ମକ ଶବ୍ଦ ବିନ୍ୟାସ କରାଯାଇ ତାହାକୁ ଶ୍ରବଣ ସୁଖଦାୟୀ କରାଯାଇଛି ସେହିପରି ପିଲାମାନଙ୍କ ମନରୁ ଯାବତୀୟ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ଦୂରେଇ ଦେବା ପାଇଁ ଆହ୍ୱାନ ରହିଛି । ଜାତି, ବର୍ଣ୍ଣ, ଧର୍ମ, ଧନୀ ନିର୍ଦ୍ଧନ ନିର୍ବିଶେଷରେ ସମସ୍ତଙ୍କୁ ସମାନ ମଣିବା, ପ୍ରକୃତିକୁ ଭଲ ପାଇବା, ଦରିଦ୍ରଙ୍କ ପ୍ରତି ସହାନୁଭୂତି ପ୍ରକଟ କରିବା, ଜୀବଜନ୍ତୁଙ୍କୁ ଆପଣାର ମନେ କରିବା, ସ୍ୱାବଲମ୍ବନଶୀଳ ହେବା, କର୍ମକୁ ଈଶ୍ୱର ମନେ କରିବା, ଗାଁକୁ ଭଲ ପାଇବା ଓ କୃଷି ପ୍ରତି ସମ୍ମାନ ଜଣାଇବା, ସତ୍ୟ ଓ ଧର୍ମ ପଥରେ ଜୀବନ ବିତାଇବା, ଗୁରୁ ଗୁରୁଜନ ଓ ପିତାମାତାଙ୍କୁ ଭକ୍ତି କରିବା, ସାନମାନଙ୍କୁ ସ୍ନେହ ଦେବା, ପରିବେଶ ନିର୍ମଳ ରଖିବା, ଅସହାୟ ଓ ଦୁର୍ବଳ ଲୋକକୁ ସାହାଯ୍ୟ କରିବା, ବିଦ୍ୟା ଅଧ୍ୟୟନ କରିବା ଆଦି ନାନା ପ୍ରସଙ୍ଗ ବସନ୍ତଙ୍କ ଶିଶୁ କବିତାରେ ଯେପରି ପ୍ରକାଶ ପାଇଛି ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ । ସେ ମଧ୍ୟ ଶିଶୁମାନଙ୍କ ପାଇଁ ଲେଖିଛନ୍ତି ନାନା କାହାଣୀ । ମାରିନେଲେ ମହାପାତ୍ରେ ଗଳ୍ପରେ ଯେମିତି ଟାଉଟରମାନଙ୍କ ପ୍ରତି ବିଦ୍ରୂପ କରିଛନ୍ତି ସେହିପରି 'ମହରଗପୁର ମହିଳା କଲେଜ' ଗଳ୍ପରେ କଲେଜ ପ୍ରତିଷ୍ଠା ନାମରେ ଚାଲୁଥିବା କାରସାଦି ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । 'ନିଜେ କାମ କଲେ ସୁନାମ ବଢ଼େ', 'ପିମ୍ପୁଡି ମାରଣ ଯଜ୍ଞ', 'ସତ କେବେ ଲୁଚି ରହେନା', 'ଅନାଥକୁ ଦଇବ ସାହା', 'ଦୀପୁ ହେଲା ଭଲ ପିଲା', 'ସାପ ମଲା କିନ୍ତୁ ବାଡ଼ି ଭାଙ୍ଗିଲା ନାହିଁ' ଆଦି ଗଳ୍ପରୁ ଲେଖକଙ୍କ ସାମାଜିକ ଦୃଷ୍ଟିକୋଣ ବାରି ହୋଇଯାଏ । କବିତା ଓ ଗଳ୍ପ ଭିତର ଦେଇ ଦେଶର ଅଗାମୀ ଭବିଷ୍ୟତ ଶିଶୁମାନଙ୍କୁ ମାନସିକ ସ୍ତରରେ ପ୍ରସ୍ତୁତ ହେବାକୁ ଲେଖକ ଯେପରି ପ୍ରେରଣା ଦେଇଛନ୍ତି ତାହା ତାତ୍ପର୍ଯ୍ୟପୂର୍ଣ୍ଣ ।

**ସମାଲୋଚନା ଓ ପ୍ରବନ୍ଧ ସାହିତ୍ୟକୁ ଅବଦାନ :**

ବସନ୍ତ ବାବୁ ମୁଖ୍ୟତଃ ଶିଶୁ ସାହିତ୍ୟିକ । ଶିଶୁ-ସାହିତ୍ୟ ପାଇଁ ସେ ଅଙ୍ଗୀକାରବଦ୍ଧ । ତଥାପି ସେ ପ୍ରବନ୍ଧ ଲେଖିଛନ୍ତି; ଲେଖିଛନ୍ତି ମଧ୍ୟ ସମାଲୋଚନା । ନିଜେ ଜଣେ ଶିଶୁ ସାହିତ୍ୟିକ ହୋଇଥିବାରୁ ଶିଶୁ ସାହିତ୍ୟ ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପାଇଛନ୍ତି । ତାଙ୍କର ସନ୍ଦର୍ଭଟି ହେଉଛି 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ ।' ଏହା ମୁଖ୍ୟତଃ ଓଡ଼ିଆ ଭାଷାରେ ଲୋକସମାଜରେ ପ୍ରଚଳିତ ଢଗଢମାଳି, ପ୍ରବାଦ ପ୍ରବଚନ, ଗଳ୍ପ ଇତ୍ୟାଦିକୁ ନେଇ ପ୍ରସ୍ତୁତ ହୋଇଅଛି । ଏଥିପାଇଁ ସେ କ୍ଷେତ୍ର ଅଧ୍ୟୟନ ଉପରେ ଗୁରୁତ୍ୱ ଦେଇଛନ୍ତି । ସାରା ଓଡ଼ିଶାରୁ ସଂଗ୍ରହ କରିଛନ୍ତି ଉପାଦାନ । ଏହାଛଡ଼ା ଓଡ଼ିଆ ସମାଲୋଚନା ସାହିତ୍ୟକୁ ତାଙ୍କର ବିଶିଷ୍ଟ ଅବଦାନ । 'ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା', 'ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ', 'କୋରାପୁଟର ପର୍ବପର୍ବାଣି', 'କୋରାପୁଟର ଲୋକକଥା', 'ଆମ କୋରାପୁଟ' ଆଦି



Digitized by srujanika@gmail.com

ବିଭିନ୍ନ ଗ୍ରନ୍ଥ । 'ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା' ଗ୍ରନ୍ଥର ଭୂମିକାରେ ସେ କହନ୍ତି- 'ଓଡ଼ିଆ ଶିଶୁ ସାହିତ୍ୟ ଏକ ଅର୍ବାଚୀନ କଳା । ସଂପ୍ରତି ସୃଜନଶୀଳ ଶିଶୁ-ସାହିତ୍ୟ ଯଥା- ଗଳ୍ପ ଓ କବିତା ସଂଖ୍ୟାଧିକ ପରିମାଣରେ ସୃଷ୍ଟି ହେଉଥିଲେ ହେଁ ତନ୍ମଧ୍ୟରୁ ମୌଳିକ ଲେଖା, ସଂଖ୍ୟାରେ ସେତେ ଯଥେଷ୍ଟ ନୁହେଁ । ତଥାପି, ଯେତେ ମୌଳିକ ଲେଖା ସୃଷ୍ଟି ହୋଇଛି ସେଥିରେ କବିତାର ସଂଖ୍ୟା ସର୍ବାଧିକ । ଶିଶୁ ନାଟକ, ଶିଶୁ ଉପନ୍ୟାସ ଆଦିର ସଂଖ୍ୟା ଖୁବ୍ ସୀମିତ । ପ୍ରବନ୍ଧ, ଆଲୋଚନାର ସଂଖ୍ୟା ମଧ୍ୟ ସେତେ ଅଧିକ ନୁହେଁ । କାରଣ, ଶିଶୁ ସାହିତ୍ୟ ପ୍ରତି ଏବେ ମଧ୍ୟ ପ୍ରକାଶକ, ବୁଦ୍ଧିଜୀବୀ ଓ ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କର ଏକ ଭ୍ରମ ଧାରଣା ରହିଛି । ଡକ୍ଟର ସାହୁ ଯାହା କହିଛନ୍ତି ତାହା ସତ୍ୟ । ଶିଶୁ ସାହିତ୍ୟ ଏବେ ମଧ୍ୟ ଉପଯୁକ୍ତ ସମ୍ମାନ ପାଇନାହିଁ । ତଥାପି ଶିଶୁ ସାହିତ୍ୟ ଲେଖକମାନଙ୍କର ସମ୍ମିଳିତ ଚେଷ୍ଟାରେ ସଂପ୍ରତି ମର୍ଯ୍ୟାଦା ଲାଭ କରିପାରିଛି । ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା ଗ୍ରନ୍ଥରେ ଡକ୍ଟର ସାହୁ ଶିଶୁ ସାହିତ୍ୟର ସଂଜ୍ଞା ସରୂପ, ଉନ୍ମେଷ ବିକାଶ ଉପରେ ଆଲୋକପାତ କରି ପୃଥିବୀର ବିଭିନ୍ନ ଭାଷାରେ ତଥା ଭାରତୀୟ ଭାଷାମାନଙ୍କରେ ଶିଶୁ ସାହିତ୍ୟର ଉନ୍ମେଷ ଓ ବିକାଶ ସଂପର୍କରେ ସୂଚନା ପ୍ରଦାନ କରିଅଛନ୍ତି । ଓଡ଼ିଆ ଭାଷାରେ ପୂର୍ବ କାଳରେ କୌଣସି ରଚିତ ଶିଶୁ ସାହିତ୍ୟ ନଥିଲା । ତାହା ଥିଲା ଭୂତପ୍ରେତ ବୁଢ଼ୀ ଅସୁରୁଣୀ ଆଦି ନାନା କଳ୍ପିତ ଉଦ୍‌ଭଟ କାହାଣୀ । ଏହା ଶିଶୁର ମାନସିକ ବିକାଶ ଘଟାଇ ପାରେନାହିଁ । ସଂପ୍ରତି ଶିଶୁ ଅଧିକ ଜିଜ୍ଞାସୁ ହୋଇ ଉଠିଛି । ତା' ଭିତରେ ସୃଷ୍ଟି ହେଉଥିବା ଜିଜ୍ଞାସା ଓ ନାନା ପ୍ରଶ୍ନର ଉତ୍ତର ସାଧନ ପାଇଁ ନୂତନ ଭାବରେ ଶିଶୁ ସାହିତ୍ୟ ସୃଷ୍ଟି ହେଉଅଛି । ଶିଶୁ ସାହିତ୍ୟ ଶିଶୁ ହୃଦୟଗ୍ରାହୀ ଭାଷାରେ କେବଳ ରଚିତ ହୁଏ ନାହିଁ, ଶିଶୁର ଦର୍ଶନେନ୍ଦ୍ରିୟକୁ ଆକର୍ଷଣ କରିବା ପାଇଁ ସେଥିରେ ନାନା ଚିତ୍ର ରହିଥାଏ । ଏଥିରେ ମଧ୍ୟ ଥାଏ ହାସ୍ୟ, କୌତୁକ, କଳ୍ପନା ଓ ସର୍ବପ୍ରାଣବାଦ । ଶିଶୁ ସାହିତ୍ୟ ସଂପର୍କରେ ଡକ୍ଟର ସାହୁ ନାନା ଦୃଷ୍ଟିରୁ ଆଲୋଚନା କରିଅଛନ୍ତି । ଶିଶୁ ସାହିତ୍ୟ ପ୍ରତି ତାଙ୍କର ଆନ୍ତରିକ ଶ୍ରଦ୍ଧା ତାଙ୍କ ଆଲୋଚନାମାନଙ୍କରୁ ଜଣାଯାଇଥାଏ ।

କୋରାପୁଟର ପର୍ବପର୍ବାଣି ଓ ଯାନିଯାତ୍ରା ବିଷୟରେ ଆଲୋଚନା କରିବା ଏ ପ୍ରସଙ୍ଗରେ ସେ ବିବିଧ ଆଦିବାସୀ ସଂପ୍ରଦାୟର ନାନାବିଧ ପର୍ବପର୍ବାଣି ଗୀତ ନୃତ୍ୟ ଓ ସରଳ ବିଶ୍ୱାସ ସମ୍ପର୍କରେ ମଧ୍ୟ ସୂଚନା ଦେଇ ଅଛନ୍ତି । କୋରାପୁଟକୁ ସେ ଓଡ଼ିଶାର ଭୂସ୍ୱର୍ଗ ବୋଲି ମାନ୍ୟତା ଦେଇଛନ୍ତି । ସେ ମଧ୍ୟ ଅନେକ ଗ୍ରନ୍ଥ ସମ୍ପାଦନା କରି ନିଜ ଦକ୍ଷତାର ପରିଚୟ ଦେଇଛନ୍ତି । ବସନ୍ତ ବାବୁ ଦୀର୍ଘ ଚାରି ଦଶନ୍ଧି ଧରି ରଚନା କରି ଆସିଛନ୍ତି ଶିଶୁ ସାହିତ୍ୟ ସହିତ ଗଳ୍ପ, ପ୍ରବନ୍ଧ, ଆଲୋଚନା ଓ ରମ୍ୟରଚନା ଇତ୍ୟାଦି । ତାଙ୍କର ଅନ୍ୟାନ୍ୟ ଅନେକ ଆଲୋଚନା ଭିତରେ 'କୃଷ୍ଣ ସିଂହଙ୍କ ଚୌପଦୀରେ ରତି ଓ ପ୍ରୀତି', 'ସାଂପ୍ରତିକ କବିତାର ସାମାଜିକ ରୂପରେଖ'; 'ଓଡ଼ିଆ କବିତାରେ ବ୍ୟଙ୍ଗ', 'ଓଡ଼ିଆ ଲୋକ ଗୀତ : ଏକ ଅଧ୍ୟୟନ', ଆଦି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ମଧ୍ୟ ରଚନା



Digitized by srujanika@gmail.com

କରିଛନ୍ତି କେତେକ ଚିନ୍ତାମୂଳକ ପ୍ରବନ୍ଧ । 'ମୂଲ୍ୟବୋଧଭିତ୍ତିକ ଶିକ୍ଷାର ବିକାଶରେ ଭାଷା ଶିକ୍ଷକଙ୍କ ଭୂମିକା', 'ବହିପଢ଼ା ଅଭ୍ୟାସ', 'ନବକୃଷ୍ଣ ଚୌଧୁରୀ ଜଣେ ନିଆରା ମଣିଷ', 'ନନ୍ଦକିଶୋର ତ୍ରୟୀଙ୍କ କବିତାରେ ପଲ୍ଲୀଚିତ୍ର', 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଭୂମିକା', 'ଗାନ୍ଧିଜୀ ଓ କୁଷ୍ଠ ନିରାକରଣ ଇତ୍ୟାଦି ପ୍ରବନ୍ଧଗୁଡ଼ିକ ଅତ୍ୟନ୍ତ ଉପାଦେୟ । 'କାହାକୁ କହିବା' ପରି ପ୍ରବନ୍ଧରେ ସେ କହନ୍ତି- 'ଆଜି ଯେଉଁ ପରିବର୍ତ୍ତନର ହାଓ୍ୱା ଚାରିଆଡେ ବହୁଛି ତାହା ଯେତିକି ହତଚକିତ କରୁଛି, ତା' ଠାରୁ ଅଧିକ ଶୋଚନା ଓ ଶଙ୍କା ମଧ୍ୟକୁ ଟାଣି ନେଉଛି । ସମୟର ପରିବର୍ତ୍ତନ ସହିତ ସବୁ ଆଜି କେମିତି ବଦଳି ଯାଉଛି । ଆମର ମେରୁଦଣ୍ଡ ଗ୍ରାମ୍ୟ ସଭ୍ୟତା ଆଜି ଧ୍ୱଂସ ଆଉ ବିପର୍ଯ୍ୟୟର ପାଦଦେଶରେ । ସେଠି ଆଉ ପୂର୍ବର ଏକାନ୍ନବର୍ତ୍ତୀ ପରିବାର, ଉତ୍ତମ ବୁଝାମଣା, ପରସ୍ପର ଭିତରେ ଥିବା ଆପଣାପଣ, ଭାଇଚାରା ଭାବ କି ସ୍ନେହ ଶ୍ରଦ୍ଧା ଓ ମମତାର ମନ୍ଦାକିନୀ ଧାରା ପ୍ରବାହିତ ହେଉନାହିଁ । ଶ୍ରୀ ସାହୁ ପରିବର୍ତ୍ତନକୁ ସ୍ୱାଗତ କରିଛନ୍ତି ମାତ୍ର ପରିବର୍ତ୍ତନ ନାମରେ ସ୍ୱେଚ୍ଛାଚାରିତା ଓ ବିଭତ୍ସତାକୁ ପସନ୍ଦ କରିନାହାନ୍ତି । ଆଧୁନିକ ବସ୍ତୁବାଦୀ ଓ ଉପଭୋଗବାଦୀ ସଭ୍ୟତାର ଆଘାତରେ ଗାଁ କିପରି ଶ୍ରୀହୀନ ହୋଇଯାଉଛି, ପରସ୍ପର ପ୍ରତି ଥିବା ସ୍ନେହ ମମତା କିପରି ବିଲୋପ ହୋଇଯାଉଛି, ରାଜନୀତି କିପରି ଗ୍ରାମର ସଂହତିକୁ ନଷ୍ଟ କରିଦେଉଛି ତାହାକୁ ଉଲ୍ଲେଖ କରିବା ସହିତ ବେଳହୁଁ ସାବଧାନ ହେବାକୁ କହିଛନ୍ତି । 'ଆମ ଜୀବନ ରାସ୍ତାର ହାଲ୍‌ଚାଲ' ମଧ୍ୟ ତାଙ୍କ ଅନୁଚିନ୍ତାର ଏକ ମାର୍ମିକ ଆଲେଖ୍ୟ । ଓଡ଼ିଶାର ଭୂସ୍ୱର୍ଗ କୋରାପୁଟ, କୋରାପୁଟର ପରଜା ସଂସ୍କୃତି:ଏକ ସଂକ୍ଷିପ୍ତ ପରିଚୟ, ଅବିଭକ୍ତ କୋରାପୁଟର କେତେକ ଲୋକପ୍ରିୟ ଲୋକନୃତ୍ୟ, ଆଦିବାସୀଙ୍କ କୃଷିଭିତ୍ତିକ ପର୍ବପର୍ବାଣି, ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀଙ୍କ ଦେବାଦେବୀ, ରାୟଗଡ଼ାର କନ୍ଧ ସଂସ୍କୃତି ଏକ ସଂକ୍ଷିପ୍ତ ଦୃଷ୍ଟିପାତ, ବଣ୍ଡା ସମ୍ପ୍ରଦାୟର ଜୀବନଚିତ୍ର, କୋରାପୁଟର ନୃତ୍ୟ ଓ ସଙ୍ଗୀତ, କୋରାପୁଟର ଚଇତିପର୍ବ ଆଦି ପ୍ରବନ୍ଧଗୁଡ଼ିକରୁ ତାଙ୍କର ଆଦିବାସୀ ସମାଜ ଓ ସଂସ୍କୃତି ପ୍ରତି ଥିବା ଗଭୀର ଶ୍ରଦ୍ଧାକୁ ଉପଲବ୍ଧି କରିହୁଏ । 'କାହାକୁ କହିବା' ତାଙ୍କର ରମ୍ୟରଚନାର ମନୋଜ୍ଞ ସଂକଳନ । ବର୍ତ୍ତମାନର ଅବକ୍ଷୟ ସଂସ୍କୃତି ଓ ବିଚାରବୋଧରେ ଯେଉଁମାନେ ଅଧିକ କ୍ଷତିଗ୍ରସ୍ତ ହେଉଛନ୍ତି ସେଇମାନଙ୍କ ଭିତରେ ନାନାବିଧ ପରିସ୍ଥିତି ସମ୍ପର୍କରେ ସଚେତନତା ସୃଷ୍ଟି କରିବା ପାଇଁ ଲେଖକ ଏହି ପୁସ୍ତକରେ ଯୁଗୋପଯୋଗୀ ଉପାଦାନଗୁଡ଼ିକୁ ଉପସ୍ଥାପନା କରିଛନ୍ତି । ତାଙ୍କର ବକ୍ତବ୍ୟ- 'ସବୁ କିଛି ହଜିଗଲାଣି ଆମର । ଭାଇଚାରା ଭାବ, ପରୋପକାର, ନିଃସ୍ୱାର୍ଥପର ସେବା । ସତ୍ୟ-ଧର୍ମ-ନ୍ୟାୟର ପଥ । ହଠାତ୍ ଧନୀ ହେବାର ଦୁର୍ବାର ଅଭିଳାଷରେ ଆମ ମାନସିକତା ବନ୍ଧା । ସେଠି ସ୍ୱର୍ଗୀୟ ଜୀବନ ଆସିବ କେଉଁଠୁ ? 'ଆମ ରାସ୍ତାଘାଟ ହାଲଚାଲ', 'ଛାତ୍ରପୂଜା', 'ସର୍ପରେ ଜାତ କଲୁ ମୋତେ', 'ଆପେ ମରି ସଙ୍ଗ ଲୋଡ଼ି', 'ଛୁଞ୍ଚିମୁହାଁଙ୍କ ସମ୍ପର୍କରେ', 'ତୁଣ୍ଡବାଇଦ', 'ନ ଦେଖିଲା ଓଳ', 'ଗୋଦରା କୋଡେ ଯେତେ ମାଡେ



Digitized by srujanika@gmail.com

ସେତେ', 'ହାଁଜୀ', 'ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ', 'ସୁବିଧାବାଦୀ ସପକ୍ଷରେ', 'ସତ କହିବାକୁ କିଆଁ ଡରିବି' ଆଦି ରମ୍ୟରଚନା ତାଙ୍କ ମୁକ୍ତ ବିଚାରଧାରା ଓ ସମାଜନିଷ୍ଠତାର ପରିଚୟ ଦିଏ । ସେ କହନ୍ତି- ' ସତରେ, ସତ କହିବାକୁ ଯେମିତି ଆଜି କାହାରି ସାହସ ନାହିଁ-ଯିଏ ସତ କହିଲା, ସିଏ ତିନି ପାଞ୍ଚିରୁ ଗଲା । କାରଣ ସତ୍ୟ, ଧର୍ମ ଓ ନ୍ୟାୟର ସଂଜ୍ଞା ଆଜି ବଦଳି ଗଲାଣି । ଆପଣ କ'ଣ ଶୁଣି ନାହାନ୍ତି ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ।' (ଆମ ରାସ୍ତାଘାଟ ହାଲଚାଲ) । ସେ ପୁଣି କହନ୍ତି- 'ଇଏ ହେଲା କଳି କାଳ । ମିଛ, ହିଂସା, ଶଠତା ଓ ଅଧର୍ମର ଭୂତ ଆଜି ସବୁ ମଣିଷଙ୍କ କାନ୍ଧରେ ସବାର ହୋଇଛି । ପର ଧନ ଓ ବିନା ପରିଶ୍ରମରେ ରାତାରାତି କୋଟିପତି ହେବାର ନିଶା ସମସ୍ତଙ୍କୁ ଘାରିଛି । ରାତିକେ କେମିତି ହାତୀଏ ଆଣିବେ ସେଇ ନିଶାରେ ଆଜି ସମସ୍ତେ ପାଗଳ ।'(ସର୍ପରେ ଜାତ କଲୁ ମୋତେ) । 'ତୁଣ୍ଡ ବାଇଦ'ପ୍ରବନ୍ଧରେ ସେ ଉଲ୍ଲେଖ କରିଛନ୍ତି- 'ଏଇ ତୁଣ୍ଡ ବାଇଦ ମାଧ୍ୟମରେ ଗୋଟିଏ ଭଲ କଥା, ଗୁରୁତ୍ୱପୂର୍ଣ୍ଣ କଥା ଯେତେ ଶୀଘ୍ର ପ୍ରଚାରିତ ନହୁଏ-ଖରାପ କଥା ମୂଲ୍ୟହୀନ କଥାଟିଏ ସେତେ ଶୀଘ୍ର ସେତେ ଅଧିକ ଦୂରଯାଏ ପ୍ରଚାରିତ ହୋଇଯାଏ-ଏହାକୁ କୁହନ୍ତି ଗୁଜବ-ଏହାର କାରଣ କ'ଣ ଜାଣନ୍ତି- ଆମର ସବୁ କଥାକୁ ସହଜରେ ବିଶ୍ୱାସ କରିବାର ପ୍ରବୃତ୍ତି ।' ପ୍ରାୟ ସମସ୍ତ ରମ୍ୟରଚନାରେ ଡକ୍‌ଟର ସାହୁ ସମକାଳୀନ ଆମ ସାମାଜିକ ଓ ସାଂସ୍କୃତିକ ଜୀବନ ପ୍ରତି ତିର୍ଯ୍ୟକ ଦୃଷ୍ଟିପାତ କରିବା ସହିତ ଏବର ଗଣତାନ୍ତ୍ରିକ ରାଜନୀତି କିପରି ଶାନ୍ତି ଓ ସହାବସ୍ଥାନକୁ ବ୍ୟାହତ କରି ଲୋକଙ୍କୁ ଭାଗ ଭାଗ କରି ଦେଇଛି ତାହାକୁ ଦର୍ଶାଇ ଦେଇଛନ୍ତି । ପ୍ରକୃତରେ ଏହି ପ୍ରବନ୍ଧଗୁଡ଼ିକ ସ୍ରଷ୍ଟା ପୁରୁଷଙ୍କର ବିବେକ ବାଣୀ ।

ଡକ୍‌ଟର ସାହୁ ମଧ୍ୟ ରଚନା କରିଛନ୍ତି ନାନା ଗଳ୍ପ । ପ୍ରତ୍ୟେକ ଗଳ୍ପ ମାନବିକ ସମ୍ବେଦନା ଓ ମାନବ ମନୀଷାର ଉତ୍ତରଣର ସଙ୍କେତ ଦିଏ । ବାସ୍ତବିକ ଡକ୍‌ଟର ବସନ୍ତ କିଶୋର ସାହୁ ନିଷ୍ଠାପର ସାରସ୍ୱତ ସେବକ । ସାହିତ୍ୟ ତାଙ୍କର ଜୀବନ ଓ ପ୍ରବୃତ୍ତି । ସାହିତ୍ୟ ମାଧ୍ୟମରେ ସମାଜର ଉତ୍ତୋଳନ ତାଙ୍କର ଆକାଂକ୍ଷା । ତେଣୁ ସାଧାରଣ ଭାଷାରେ ସେ ରଚନା କରିଛନ୍ତି ତାଙ୍କର ସାରସ୍ୱତ ସୃଷ୍ଟି ସମ୍ଭାର । ଶିଶୁ ସାହିତ୍ୟକୁ ସେ କରିନେଇଛନ୍ତି ଅତ୍ୟନ୍ତ ଆପଣାର । କାରଣ ସେ ଚାହିଁଛନ୍ତି ଶିଶୁମାନଙ୍କୁ ଠିକଣା ମାର୍ଗରେ କ୍ରମ ଉତ୍ତରଣ ପଥରେ ଆଗେଇ ନେଲେ ଓ ସେମାନଙ୍କର ମାନସିକ ସତ୍ତାକୁ ପରିମାର୍ଜିତ କରି ଦେଇ ପାରିଲେ ସେହିମାନେ ହିଁ ହେବେ ଭବିଷ୍ୟତରେ ସୁନାଗରିକ ଓ ସାଂପ୍ରତିକ ଅବକ୍ଷୟରୁ ଦେଶ ରକ୍ଷା ପାଇପାରିବ । ଏହି ଦୃଷ୍ଟିରୁ ବସନ୍ତ ବାବୁଙ୍କର ଆଧୁନିକ ଓଡ଼ିଆ ସାହିତ୍ୟରେ ଯେ ଏକ ସ୍ୱତନ୍ତ୍ର ସ୍ଥାନ ରହିବ; ଏହା କହିଲେ ବୋଧହୁଏ ସତ୍ୟର ଅପଳାପ ହେବ ନାହିଁ ।



ନୂଆବଜାର, କଟକ



Digitized by srujanika@gmail.com

# ବସନ୍ତ କିଶୋର ସାହୁଙ୍କ ଶିଶୁ କବିତାର ଗତି ଓ ପ୍ରକୃତି

ଡକ୍ଟର ସୁନାମଣି ରାଉତ

ସାଂପ୍ରତିକ ଓଡିଆ ଶିଶୁ ସାହିତ୍ୟ ଜଗତରେ ଡ଼କ୍ଟର ବସନ୍ତ କିଶୋର ସାହୁ ଏକ ଶ୍ରଦ୍ଧାଶୀଳ ଉଚ୍ଚାରଣ । ସାହିତ୍ୟ ସର୍ଜନା, ସଂପାଦନା, ସଂଗଠନ, ସଂପ୍ରୀତି ଓ ସହୃଦୟତା ହେଉଛି ତାଙ୍କ ବ୍ୟକ୍ତି ଚେତନାର ଗୋଟିଏ ଗୋଟିଏ ଦିଗ । ବିଂଶ ଶତକରେ ଉତ୍ତର ସତୁରୀରୁ ଆରମ୍ଭ ହୋଇଥିବା ତାଙ୍କର ଏହି ସାରସତ ଗାଁ କୁସୁପୁରରେ ଜନ୍ମ ଗ୍ରହଣ କରି କୋରାପୁଟର ସୁନାବେଡାକୁ ନିଜର କର୍ମଭୂମି ଭାବେ ବାଛି ନେଇଥିବା ଏହି କର୍ମନିଷ୍ଠ ସ୍ରଷ୍ଟା ନିଜର ସାଧନା ଓ ସିଦ୍ଧିରେ ବିପୁଳ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇ ପାରିଛନ୍ତି ।

ବସନ୍ତବାବୁ ଶିଶୁ କବିତା ଲେଖିବାରେ ଖୁବ୍ ଧୁରୀଣ ଓ ଧୁରନ୍ଧର । କବିତାରୁ ହିଁ ତାଙ୍କ କବି ଜୀବନର ଆୟମାରମ୍ଭ ହୋଇଥିଲା । ଦଶମ ଶ୍ରେଣୀର ଛାତ୍ର ଥିବା ବେଳେ କବିତା ଲେଖିବାର ଝୁଙ୍କ୍ ତାଙ୍କ ମନକୁ ଆଚ୍ଛନ୍ନ କରି ରଖିଥିଲା । ସେ ସ୍ୱୀକାର କରି ଲେଖିଛନ୍ତି -" ଦଶମ ଶ୍ରେଣୀର ଘଟଣା । ସାହସ ସଞ୍ଚୟ କରି କବିତାଟିଏ ପୋଷ୍ଟକାର୍ଡରେ ଲେଖି 'ମାତୃଭୂମି'ର 'କିଶୋର ଫଉଜ'କୁ ପଠାଇଦେଲି । ସେତେବେଳେ 'କିଶୋର ଫଉଜ' ଶନିବାର ପ୍ରକାଶ ପାଉଥାଏ । ସୋମବାର ସ୍କୁଲ୍‌ରେ ପହଞ୍ଚି ଦେଖିଲି ପଢାସାଥୀ ସତ୍ୟାନନ୍ଦ ମାତୃଭୂମିଟିଏ ଧରି ମୋ ପାଖକୁ ଧାଇଁ ଆସିଲା । ସେଥିରେ ମୋର ପ୍ରଥମ ଲେଖା ପ୍ରକାଶ ଖବର ଶୁଣି ମୁଁ ଖୁସିରେ ଆତ୍ମହରା ହୋଇ ପଡିଲି । ସେ ଆନନ୍ଦ ଆଜିବି ମୋ ଭିତରେ ସ୍ମୃତି ହୋଇ ରହିଛି । xxx ତା'ପରେ ଆଉ ପଛକୁ ଫେରି ଚାହିଁନାହିଁ ।" -ବସନ୍ତ କିଶୋର ରଚନାବଳୀ (୧ମ ଭାଗ),ବସନ୍ତ କିଶୋର ସାହୁ, ସରସତୀ ପବ୍ଲିକେଶନ,ଜଗତପୁର, କଟକ । ପୃ-ମୁଖବନ୍ଧ- ବସନ୍ତ ବର୍ଣ୍ଣାଳୀ କାହିଁକି ?

ତାଙ୍କର ସେଇ ପ୍ରଥମ ପ୍ରକାଶିତ କବିତାଟି କେତେ ଅନ୍ତରଙ୍ଗ ଓ ଅଙ୍ଗୀକାରବଦ୍ଧ ତାହା ଲକ୍ଷ୍ୟ କରିବାର କଥା -

" ବରଷକେ ଆଜି ଆସିଛି ବସନ୍ତ ଋତୁରାଜ
ହୋଇ ନାନାରଙ୍ଗେ ସଜବାଜ ।



Digitized by srujanika@gmail.com

ବନଉପବନ ଦିଶୁଛି ସୁନ୍ଦର
ନବ ପଲ୍ଲବେ ପଲ୍ଲବିତ,
ଦିଶୁଛି ସୁନ୍ଦର ଧରଣୀ ରାଣୀ
ଫୁଲରେ ହୋଇ ସଜ୍ଜିତ ।
x x x
ସଭିଏଁ ତୁମକୁ ସ୍ୱାଗତ କରୁଛୁ
ଗାଇ ତୁମ ଗୀତ ମଧୁର ତାନେ
ଆସ ଧରା ପରେ ଋତୁରାଜ ତୁମେ
ହସାଅ, ରସାଅ ଏ ବିଶ୍ୱଜନେ ॥

-କିଶୋର ଫଉଜ(ତା ୧୧।୦୩।୧୯୭୨)

-ବସନ୍ତ କିଶୋର ରଚନାବଳୀ (୧ମ ଭାଗ)ବସନ୍ତ କିଶୋର ସାହୁ- ପୃ-୧

ଛାତ୍ର ଜୀବନରୁ ସୌନ୍ଦର୍ଯ୍ୟବୋଧ ଓ ବିଶ୍ୱଜନ ପ୍ରୀତି ତାଙ୍କ କବିମାନସକୁ ଉଦ୍‌ବୁଦ୍ଧ କରିଥିଲା ବୋଲି ଏଥିରୁ ସ୍ପଷ୍ଟ ଅନୁଭୁତ ହୁଏ । ପରବର୍ତ୍ତୀ କାଳରେ ତାଙ୍କ ଶିଶୁ କବିତା ବିଭିନ୍ନ ଦିଗକୁ ସ୍ପର୍ଶକରି ଆମ ଶିଶୁ ସାହିତ୍ୟକୁ ବହୁ ଭାବରେ ଋଦ୍ଧିମନ୍ତ ଓ ରସାଣିତ କରିପାରିଛି । ଏଥର ସେହି ଦିଗ ସବୁକୁ ବିଚାର କରାଯାଉ ।

ବସନ୍ତ କିଶୋରଙ୍କ ଶିଶୁ କବିତାକୁ ନିରୀକ୍ଷଣ କଲେ ଦେଖାଯାଏ ଯେ ତାହା ଏକମୁଖୀ ନୁହେଁ, ବହୁମୁଖୀ । କେତେବେଳେ ପ୍ରାକୃତିକ ଶୋଭା ରାଜିରେ ତାହା ଛଳଛଳ ତ, କେତେବେଳେ ମାନବିକ ମୂଲ୍ୟବୋଧରେ ଊର୍ଜସ୍ୱଳ । ପୁଣି କେତେବେଳେ ବିଜ୍ଞାନର କରାମତିରେ ମହୀୟାନ । ଏହି ସବୁ ଦିଗକୁ ସ୍ପର୍ଶକରି ବସନ୍ତ କିଶୋରଙ୍କ ଶିଶୁ କବିତା ହୋଇଛି ସାବଲୀଳ ଓ ସୁଖପାଠ୍ୟ । ସେ ସବୁର ପଟାନ୍ତର ନାହିଁ ।

ବସନ୍ତ କିଶୋରଙ୍କ ପ୍ରକାଶିତ ଶିଶୁ ପୁସ୍ତକଗୁଡିକ ମଧ୍ୟରେ ଫୁଲ ଆମେ ଫୁଲ, ଅଗଡ ବଗଡ ଝାଇଁକି ଝୁମ୍ପା, କାଳିଆ ବଳଦ ଗଲାରେ ଗଲା, ଉଦୁଉଦୁମା, ଇଞ୍ଚିଡି ମିଞ୍ଚିଡି, ଆଇଁଷି ମନ୍ତର କାଇଁଶି ମନ୍ତର, ଗାଇଦିଅ ପଦେ ଗୀତ, ଖରାବରଷା ଗୀତ ପ୍ରଭୃତି ପୁସ୍ତକରେ ତାଙ୍କ ସ୍ରଷ୍ଟାମାନସର ପ୍ରତିଫଳନ ଖୁବ୍ ସ୍ପଷ୍ଟ ହୋଇଉଠିଛି । ତାଙ୍କ ଶିଶୁ କବିତାକୁ ପର୍ଯ୍ୟାୟ କ୍ରମେ ବିଭିନ୍ନ ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡିକ ହେଲା - ୧), ପଲ୍ଲୀ ପ୍ରକୃତି, ୨) ଦେଶାତ୍ମବୋଧ, ୩) ସମସ୍ୟାମୂଳକ, ୪) ମାନବିକ ମୂଲ୍ୟବୋଧ, ୫) ହାସ୍ୟରସାତ୍ମକ, ୬) ବିଜ୍ଞାନ ଭିତ୍ତିକ, ୭) ବିବିଧ ପ୍ରଭୃତି ପ୍ରଧାନ । ଏଠାରେ ସେ ସବୁର ପର୍ଯ୍ୟାଲୋଚନା କରାଯାଉ -

**୧) ପଲ୍ଲୀ ପ୍ରକୃତି**



Digitized by srujanika@gmail.com

ପ୍ରଥମରୁ କୁହାଯାଇଛି କୁସୁପୁର ପରି ଏକ ସାରସତ ଗାଆଁରେ ବସନ୍ତ କିଶୋରଙ୍କ ଜନ୍ମ । ଯେଉଁ ଗାଁରେ ଜନ୍ମ ନେଇଥିଲେ ପଲ୍ଲୀକବି ନନ୍ଦ କିଶୋର ବଳ ଓ ନନ୍ଦ କିଶୋର ସାମଲ । ସେଇ ଗାଁର ବଣ ବିଲ, ତୋଟା ପଡିଆ, ସକାଳ ସଂଜ ପ୍ରଭୃତି କବି ଚେତନାକୁ ନିଶ୍ଚୟ ବିଭୋର କରିଥିବ । ବସନ୍ତ କିଶୋରଙ୍କ ଶିଶୁ କବିତାରେ ତାର ପ୍ରତିଫଳନ ଲକ୍ଷ୍ୟ କରନ୍ତୁ -

"ଝଡିଝଡି ପଡେ କଦମ୍ବ ଫୁଲଲୋ
ପୋଖରୀର ନୀଳ ଜଳେ
ସରିସରି ଆସେ ଆଶ୍ୱିନ ମାସଟା
ପାଣି କମେ ନଈ ନାଳେ ।
ନଈ କଡେ କଡେ କାଶତଣ୍ଡୀ ଫୁଲ
କି ସୁନ୍ଦର ଶୋଭା ବହେ
କୁଳୁକୁଳୁ ସ୍ୱରେ ଗୀତ ଗାଇ ନଈ
ଅକୁହା ବାରତା କୁହେ ।"

-କିଶୋର ମହଲ, ସ୍ୱରାଜ୍ୟ, ତା୨୭।୧୦।୧୯୭୨
ବସନ୍ତ କିଶୋର ରଚନାବଳୀ (୧ମ ଭାଗ)-ପୃ-୯

ସେହିପରି ନିଜର ପ୍ରିୟ ଗାଁକୁ ନେଇ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇଉଠିଛି । ସେ ଲେଖିଛନ୍ତି -

"ଶାନ୍ତ ସରଳ ରମ୍ୟ ମଧୁର
ଚିର ସବୁଜ ଗାଆଁଟି ମୋର
ଆଖିକୁ ଦିଶେ ଭାରି ସୁନ୍ଦର
କୁସୁପୁର ନାଆଁଟି ତା'ର ।"

x x x

ହଳଦୀ ଗୁରୁଁଗୁରୁ ଧାନ କିଆରୀ
ମଗୁଶିରେ ଯେବେ ଉଠଇ ହସି
ଧୀର ପବନରେ ଲହରୀ ଭାଙ୍ଗି
କୃଷକର ଗୀତ ଆସଇ ଭାସି ॥ -ତତ୍ରୈବ-ପୃ-୫୦

## ୨) ଦେଶାତ୍ମବୋଧ

ଶିଶୁମାନଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରି ଏକ ସୁସ୍ଥ ସୁନ୍ଦର ଦେଶ ଗଢିବାର ସ୍ୱପ୍ନ ବସନ୍ତ କିଶୋରଙ୍କ ଅନେକ କବିତାରେ ଦେଖାଯାଏ । ଦେଶ ପାଇଁ ପ୍ରାଣବଳି ଦେଇଥିବା ମହାମନୀଷୀମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ସେ ବହୁ କବିତାରେ ଶିଶୁମାନଙ୍କୁ ଆହ୍ୱାନ ଦେଇଛନ୍ତି । ଭାରତର କଷ୍ଟଲବ୍ଧ ସ୍ୱାଧୀନତାକୁ ଅକ୍ଷୁର୍ଣ୍ଣ



Digitized by srujanika@gmail.com

ରଖିବା ପାଇଁ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇଉଠିଛି ।

"ସ୍ୱାଧୀନ ଦେଶର ସନ୍ତାନ ଆମେରେ
ସ୍ୱାଧୀନ ଆମର ଦେଶ
ମରିବା ପଛକେ ଡରିବାନି କେବେ
ରଖିବାକୁ ତା'ର ଯଶ ।
x x x
କୃଷକ ହୋଇ ଶ୍ରମିକ ହୋଇ
କରିବା ଦେଶର ସେବା
ନୂତନ ଆଲୋକ ଦେଖାଇ ଦେବାରେ
ଜଗତକୁ କରି କାବା ।।"

-ସ୍ୱାଧୀନ ଦେଶର ସନ୍ତାନ ଆମେରେ,କିଶୋର ଫଉଜ
(ମାତୃଭୂମି)ତା୩।୬।୧୯୭୨
ବସନ୍ତ କିଶୋର ରଚନାବଳୀ, ୧ମ ଭାଗ,ପୃ-୨

ସେହିପରି ଏକତା, ଭ୍ରାତୃଭାବ ଓ ବିଶ୍ୱମୈତ୍ରୀର ସ୍ୱର ତାଙ୍କର ଅନେକ କବିତାରେ ଅନୁରଣିତ ହୋଇଛି । ତାର ଗୋଟିଏ ଝଲକରୁ ସ୍ପଷ୍ଟ ବାରିହୁଏ ।

"ହିମାଳୟ ଠାରୁ ସୀମାଚଳ ଯାଏ
ଗୋଟିଏ ମାଆର ସନ୍ତାନ ଆମେ
ବଂଗାଳୀ, ଓଡିଆ, ପଞ୍ଜାବୀ, ଆସାମୀ
ଭାଇ ଭାଇ ପରା ଏ ଧରା ଧାମେ ।
x x x
ଅଖଣ୍ଡ ଭାରତ ଦିଖଣ୍ଡ ନହେଉ
ଏହାହିଁ ହେଉ ଆମରି ନୀତି
ଏକତାର ହାତ ମିଳାଇ ଦେବାରେ
ମନୁ ପୋଛି ସବୁ ଭୟ ଭ୍ରାନ୍ତ ।।" -ତତ୍ରୈବ - ପୃ-୧୨୧

### ୩) ସମସ୍ୟା ମୂଳକ

ପିଲାଦିନରୁ ଏ ଯାବତ୍ କବି ବସନ୍ତ କିଶୋର ବହୁ ସମସ୍ୟାକୁ ଦେଖିଛନ୍ତି ଓ ଅଙ୍ଗେ ନିଭାଇଛନ୍ତି । ଏକ ପ୍ରବଂଧରେ ସେ ସମାଜର ସମସ୍ୟା ସଂପର୍କରେ ଉଲ୍ଲେଖ କରିଛନ୍ତି "ଜୀବନ ରାସ୍ତାରେ ଚାଲିବା ଖୁବ୍ କଠିନ-ପଦପଦରେ ବିପଦ । ଲୋଭ, ହିଂସା, ଗର୍ବ, ଅହଙ୍କାର ଓ ପରଶ୍ରୀକାତରତା ଆଦି ଆସୁରିକ ପ୍ରବୃତ୍ତି ସହିତ ସ୍ନେହ, ମମତା, ଦୟା, କ୍ଷମା ଆଦି ଦେବ ସୁଲଭ ଗୁଣରେ ଏହି ରାସ୍ତା ଭରପୂର । ଏହି ରାସ୍ତାରେ ହାତେ ମାପି ଚାଖଣ୍ଡେ ନ ଚାଲିଲେ, କେଉଁଠି ଯେ ଆମର ପାଦ ଖସି ଯିବ ନିଜେ ବି



Digitized by srujanika@gmail.com

ଜାଣି ପାରିବା ନାହିଁ ।"

-ଆମ ଜୀବନ ରାସ୍ତାର ହାଲ୍‌ଚାଲ,ବସନ୍ତ କିଶୋର ରଚନାବଳୀ ( ୨ୟ ଭାଗ) ପୃ୯୧

ତାଙ୍କର କେତେକ ଶିଶୁ କବିତାରେ ଏହି ସମସ୍ୟାର ସ୍ୱର ମଧ୍ୟ ଶୁଣିବାକୁ ମିଳେ -

"କାମଧନ୍ଦା ଆଜି ଗାଁରେ,ନାହିଁ
ପେଟକୁ ମିଳୁନି ଖାଇବା ପାଇଁ
ଚାଷ ଜମି ସବୁ ଗଲାଣି ଫାଟି
ଖୋଜିଲେଣି ଲୋକେ କାମ ପାଇଟି
ଚାରିଆଡେ ହା ହା କାର,
କିଏ କାହା କଥା ବୁଝିବ ଏଠାରେ
କାନ୍ଦିଲେ ବି ବାରବାର ॥"

-ମରୁଡି ହୋଇବ ଦୂର, ବସନ୍ତ ବର୍ଣ୍ଣାଳୀ - ପ.୧୧୫

ଏହାଛଡା ସମାଜରେ ଦେଖାଦେଇଥିବା, ଶିଶୁ ଶ୍ରମିକ ପ୍ରଥା, ଶିଶୁର ବହୁବିଧ ସମସ୍ୟା ବସନ୍ତ କିଶୋରଙ୍କ କବିତାକୁ କରିଛି ଅଧିକ ରସାଣିତ ଓ ସମୃଦ୍ଧ ।

## ୪) ମାନବିକ ମୂଲ୍ୟବୋଧ

ସଂପ୍ରତି ସମାଜରେ ଦେଖା ଦେଇଥିବା ମାନବିକ ମୂଲ୍ୟବୋଧର ଅବକ୍ଷୟରେ କ୍ଷୋଭ ପ୍ରକାଶ କରିଛନ୍ତି କବି । ଏବେକାର ଶିଶୁମାନଙ୍କ ବ୍ୟବହାର ଓ କବିଙ୍କ ପିଲାଦିନ ସମୟ ମଧ୍ୟରେ ଥିବା ତାରତମ୍ୟକୁ ସେ କବିତାରେ ପ୍ରକାଶ କରିଛନ୍ତି -

"ସିନେହ ମମତା ଭାଇଚାରା ଭାବ
ଥିଲା ସବୁ ଆମ ବେଳରେ
ଏକ ମନ ସଙ୍ଗେ ଏକ ପ୍ରାଣ ଥିଲା
ପାଠପଢା ଆଉ ଖେଳରେ ।
x x x
ଯୁଗ ଉପଯୋଗୀ ଶିକ୍ଷା ମିଳୁଥିଲା
ହେଉଥିଲୁ ଆମେ ମଣିଷ
ଧନ୍ୟ ସେଇ ଗୁରୁ ଗଢୁଥିଲେ ଯିଏ
ମଣିଷ ପରିକା ମଣିଷ ॥"

-ଆମ ପିଲାଦିନ କୁଆଡେ ଗଲା, ତତ୍ରୈବ-ପୃ-୧୧୩

ଶିଶୁମାନଙ୍କ ମନରେ କର୍ମପ୍ରବଣତା ସୃଷ୍ଟି ଓ ଚାରିତ୍ରିକ ବିକାଶ ଘଟାଇବା ପାଇଁ ସେ ଲେଖିଛନ୍ତି -

"ଭୋକ ଉପାସରେ ରହେ ନାହିଁ କେହି
ଯଦି ହୋଇଥାଏ କାମିକା


Digitized by srujanika@gmail.com

ଚରିତ୍ର ନଥିଲେ ପଚାରେନି କେହି
ପିନ୍ଧିଲେ ବି ବାସ ଦାମିକା ।
ଭଲ ମନ୍ଦ ପରା ଦୁନିଆର ନୀତି
ଭଲକୁ ମିଳଇ ଆଦର
ଭଲ ଭାବେ ସଦା ପୂଜା ଉପହାର
ମନ୍ଦ ପାଏ ହତାଦର ।" - ତତ୍ରୈବ, ପୃ-୯୮

**୫) ହାସ୍ୟରସାତ୍ମକ**

ହାସ୍ୟରସ ମାଧ୍ୟମରେ ପିଲାମାନଙ୍କୁ ମନୋରଞ୍ଜନର ଖୋରାକ ଯୋଗାଇ ବସନ୍ତ କିଶୋର ତାଙ୍କର ଶିଶୁ କବିତାଗୁଡ଼ିକୁ ସହଜ ଓ ସୁଖପାଠ୍ୟ କରାଇଛନ୍ତି । ସେ ଅନୁଭବ କରିଛନ୍ତି ଶିଶୁମାନେ ହିଁ ହସ ପ୍ରିୟ । ତେଣୁ ଅଜା, ଆଈ ଓ ସେହିପରି ବିଭିନ୍ନ ହାସ୍ୟରସାତ୍ମକ ପ୍ରସଙ୍ଗ ଭରିଆରେ ତାଙ୍କର ଶିଶୁ କବିତାଗୁଡ଼ିକ ଶିଶୁ ମନଲାଖି ହୋଇପାରିଛି ।

"ଅଶି ବରଷର ଅଜାଟି ଆମ ହାତରେ ଧରି ବାଡ଼ି
ଗାଁ ଏମୁଣ୍ଡୁ ସେମୁଣ୍ଡ ଯାଏ ଛାଡୁ ଅଛନ୍ତି ହୁରି ।
ଆସରେ ନାତି ଆସ ନାତୁଣୀ ଖେଳିବା ଆସ ହୋରି
ଘରକୁ ଘର ପଶିଣ ଅଜା ସଙ୍ଗେ ନିଅନ୍ତି ଧରି ।
ପିଲାଏ ସବୁ ଘରୁ ବାହାରି ବଜାଇ ଢୋଲ ବାଜା
ରଙ୍ଗ ପାଣିରେ ଖେଳିଲେ ହୋରି କରିଣ କେତେ ମଜା ।"
-ଅଜାଙ୍କ ହୋରି ମଜା, ବସନ୍ତ କିଶୋର ରଚନାବଳୀ, ୧ମ ଭାଗ, ପୃ-୭୯

ସେହିପରି ଅନ୍ୟ ଏକ କବିତାରେ ବାସ୍ତବତା ଓ କଳ୍ପନାକୁ ସଂଯୋଗ କରି ସେ ହାସ୍ୟରସ ଉଦ୍ରେକ କରିଛନ୍ତି । ମାଙ୍କଡ଼ଟି ଭାବିଛି କିଛି ଫଳକୁ ମଣିଷ ପୋଡ଼ି ଖାଇବା ଦ୍ୱାରା ଯଦି ଆନନ୍ଦ ପାଉଛି, ତେବେ ସେ ବି ଫଳକୁ ପୋଡ଼ି ଖାଇବ, ତେଣୁ ଜଙ୍ଗଲରୁ ଶୁଖିଲା କାଠ ଆଣି ନିଆଁ ଲଗାଇ ଫଳ ପୋଡ଼ିଲା ଓ ଖେଳ ଖେଳିଲା । ଇତି ମଧ୍ୟରେ ଫଳଗୁଡ଼ିକ ପୋଡ଼ି ପାଉଁଶ ହୋଇଗଲା । ଫଳକୁ ନ ପାଇ ମାଙ୍କଡ଼ଟି ରାଗିଗଲା ଓ ସେଇ ପାଉଁଶକୁ ମୁହଁରେ ବୋଳି ଦେଲା । ଏଇ ପ୍ରସଂଗକୁ ନେଇ ସେ ଲେଖିଛନ୍ତି -

"ରାଗିକରି ସେଇ କଳା ପାଉଁଶ
ବୋଳିଲା ମୁହଁରେ ହୋଇ ହତାଶ ।
ସେହି ଦିନଠାରୁ ମାଙ୍କଡ଼ ମୁହଁ
କଳା ହୋଇଗଲା ସତକି କୁହ ।"
-ତତ୍ରୈବ, ପୃ -୬୦


Digitized by srujanika@gmail.com

ଏହିପରି ରାଶିରାଶି କବିତାରେ ବସନ୍ତ କିଶୋର ହାସ୍ୟରସ ସୃଷ୍ଟି କରି ଆମର ଅବୋଧ ଶିଶୁ ମାନଙ୍କ ମନରେ ଖୁସି ଓ ଆନନ୍ଦ ଭରିଦେବାକୁ ଯତ୍ନ କରିଛନ୍ତି ।

## ୬) ବିଜ୍ଞାନ ଭିତ୍ତିକ

ସାଂପ୍ରତିକ ଯୁଗ ହେଉଛି ବିଜ୍ଞାନର ଯୁଗ । ବିଜ୍ଞାନ ମାଧ୍ୟମରେ ବର୍ତ୍ତମାନ ସମସ୍ତ ସୁଖସୁବିଧା ଉପଲବ୍ଧ । ବିଦ୍ୟୁତ୍ ଶକ୍ତି, କମ୍ପୁଟର, ଟେଲିଫୋନ, ରେଳଗାଡ଼ି ପ୍ରଭୃତି ବିଜ୍ଞାନର ଗୋଟିଏ ଗୋଟିଏ ଅବଦାନ । ଏହି ପ୍ରସଙ୍ଗକୁ ଭିତ୍ତିକରି ସେ ଅନେକ ଶିଶୁ କବିତା ରଚନା କରିଛନ୍ତି । ଏହାର କେତୋଟି ଉଦାହରଣରୁ ସ୍ପଷ୍ଟ ଅନୁମେୟ ।

ଲୋଡ଼ା ନାହିଁ ଆଜି ଖରା ଦିନେ ଆଉ ତାଳପତ୍ରର ବିଞ୍ଚଣା
ରୋଷେଇ ବାସକୁ ଘସି ଗୁଣ୍ଡା ଆଉ କାଠ ଚୁଲି ଖେଞ୍ଚଣା
ଯେଉଁ ଆଡେ ଯାଅ ସବୁ ଆଡେ ଆଜି ବିଜୁଳିର କରାମତି
ତୋଫା ଆଲୁଅରେ ହସୁଅଛି ଗାଁ ଜଳୁଛି ବିଜୁଳି ବତୀ ।

-ସବୁ ବିଜୁଳି ବଳରେ, ବସନ୍ତ କିଶୋର ରଚନାବଳୀ (୧ମ ଭାଗ)-ପୃ-୪୨

ସେହିପରି 'ରେଳଗାଡ଼ି ଯାଏ ଗଡ଼ିରେ' କବିତାରେ ସେ ଲେଖିଛନ୍ତି-

"ଇନ୍ଧନ କୋଇଲା ଡିଜେଲ ବିଜୁଳି
ଖରା ବରଷାକୁ ନାହିଁ ତା ଖାତିରି
ଚାଲିଯାଏ ସିଏ ହୁଇସିଲ ମାରି
ସତେକି ଗୋଟିଏ ଦାନବର ପରି
ଗରଜନ କରି ଲୁହା ଧାରଣାରେ
ଗୀତ ଗାଇ ଗଡି ଗଡିରେ ।"

ତତ୍ରୈବ -ପୃ - ୮୩

ଏହି ପରି ଟେଲିଫୋନ, ଆଜିକାର ଭାବନା, ଗଛ ଲଗାଇବା ଆସ ପ୍ରଭୃତି କବିତାରେ ବିଜ୍ଞାନର ତତ୍ତ୍ୱ ଓ ଉପଦେଶ ଇତ୍ୟାଦି ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ଏହା ଖୁବ୍ ଶିକ୍ଷଣୀୟ ।

## ୭) ବିବିଧ

ପିଲାଙ୍କ ମନକୁ ଛୁଇଁବା ପରି ବିଭିନ୍ନ ପ୍ରସଙ୍ଗକୁ ଆଧାର କରି ବସନ୍ତ କିଶୋର ଲେଖନୀ ଚଳାଇଛନ୍ତି । କେତେବେଳେ ସେ ପିଲାଙ୍କ ପାଇଁ କାଗଜ ଡଙ୍ଗା ଭସେଇଛନ୍ତି ତ କେତେବେଳେ ସେମାନଙ୍କୁ ରଥଯାତରା ଦେଖାଇଛନ୍ତି । ପୁଣି କେତେବେଳେ ଏଇ ମାଟି ପରେ, ସୁଲୁସୁଲିଆ ବାଆରେ, ଗାଁ ସଡକରେ ଧୂଳି ଉଡାଇଛନ୍ତି । ସେହିପରି ଟିକି ଚଢେଇ, ଟିକି ଝରଣା, ଚକାଚକା ଭଉଁରୀ, ଠିଆ ପୁଚି ନାରଙ୍ଗ, ରହରେ ବାଇଆ ରହ, ଫକର ଫକର ଡାକୁର ପ୍ରଭୃତି କବିତାରେ ତାଙ୍କର ପାରିବାପଣ ଖୁବ୍ ସ୍ପଷ୍ଟ



Digitized by srujanika@gmail.com

ହୋଇଉଠିଛି । ତାର କେତୋଟି ନମୁନା ଏଠାରେ ଉଲ୍ଲେଖ ଯୋଗ୍ୟ -

" ଟିକି ଚଢେଇ ଲୋ ଟିକି ଚଢେଇ
କେଉଁ ଠାରେ ତୋର ଘର,
କେଉଁ ଆଡେ ଯାଉ ମନ ଆନନ୍ଦରେ
ହୋଇ ସଦା ତରତର ।
x x x
ତାକୁ ଅଛି ଆଜି ହେବୁ ମୋ ସଙ୍ଗାତ
ପୁଣି ମୋର ଖେଳ ସାଥି
ମିଠା ମିଠା ଫଳ ଖାଇବାକୁ ଦେବି
ଖେଳିବା ଆନନ୍ଦେ ମାତି ।"

ବସନ୍ତ କିଶୋର ରଚନାବଳୀ (୧ମ ଭାଗ), ପୃ -୧୧୨

ସେହିପରି କୁଆପଥର ସଂପର୍କରେ ଅନ୍ୟ ଏକ କବିତାରେ ସେ ଲେଖିଛନ୍ତି -

" ସରଗସୂତା ଗଜମୁକୁତା ଆକାଶୁ ପଡେ ଖସି
କେଉଁଠୁ ଆସେ କେମିତି ଖସେ ବବୁଲୁ ଭାବେ ବସି ।
x x x
ପିଲାଏ ସବୁ ଅଣ୍ଟିରେ ଧରି କହନ୍ତି ଡେଇଁ ଡେଇଁ
ଇନ୍ଦର ରାଜା ପଠାଇଛନ୍ତି ଏହା ତାଙ୍କରି ପାଇଁ ।"

ତତ୍ରୈବ, ପୃ-୯୪

ଏହିପରି ରାଶିରାଶି କବିତାରେ ବସନ୍ତ କିଶୋରଙ୍କ କବିତ୍ୱ ଓ ଶିଶୁ ସୁଲଭ ଚପଳତା ନିଖୁଣ ଭାବେ ପ୍ରତିଫଳିତ । ବୃତ୍ତିରେ ସେ ଜଣେ ଅଧ୍ୟାପକ ହେଲେ ମଧ୍ୟ ପ୍ରବୃତ୍ତିରେ ସେ ଖୁବ୍ ସରଳ ଶାନ୍ତ କିଶୋର । ତାଙ୍କର ଶିଶୁ କବିତା ହିଁ ତାଙ୍କର ଅସଲ ପରିଚୟ । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ ମଧ ଶିଶୁ କବିତା ରଚନାରେ ସେ ଅଧିକ ସଫଳ ଓ ଲୋକପ୍ରିୟ । ସୀମିତ ସମୟ ଓ ପରିସର ମଧରେ ତାଙ୍କ ଶିଶୁ କବିତାର ଏହା ସବିଶେଷ ଆଲୋଚନା ନୁହେଁ, ଏକ ପ୍ରାରମ୍ଭିକ ପଦକ୍ଷେପ ମାତ୍ର । ବସନ୍ତ କିଶୋରଙ୍କ ଶିଶୁ କବିତାର ସରହଦ୍ ଖୁବ୍ ବ୍ୟାପକ ଓ ବିସ୍ତୃତ । ସେ ସବୁ ବହୁ ବର୍ଣ୍ଣ ବିଭାରେ ଉଦ୍‌ଭାସିତ । ତାଙ୍କର ଚଳଚଞ୍ଚଳ ଲେଖନୀ ଆମ ଶିଶୁ ସାହିତ୍ୟର ଗନ୍ତାଘରକୁ ଆହୁରି ପରିପୁଷ୍ଟ ଓ ରୁଦ୍ଧିମନ୍ତ କରୁ-ଏହାହିଁ ଆଜିର କାମନା !!

✪ ... ପାଠ...
...ାଳରେ ପଲ୍ଲୀ ଜୀବନ ଚିତ୍ର... ...କ୍ଷ-୮



Digitized by srujanika@gmail.com

# ନନ୍ଦ କିଶୋର : ନନ୍ଦ କିଶୋର ଓ ବସନ୍ତ କିଶୋର-ଏକ ବିମୁଗ୍ଧ ଆକଳନ

**ଡକ୍ଟର ଭୁବନାନନ୍ଦ ସାହୁ**

। ଏକ ।।

"ଆମ ଗାଆଁର ପଲ୍ଲୀକବି ନନ୍ଦକିଶୋର, ଶିଳ୍ପୀଗୁରୁ ବିମ୍ବାଧର ବର୍ମା, ଜ୍ଞାନୀନ୍ଦ୍ର ବର୍ମା, ରାଜେନ୍ଦ୍ର ବର୍ମା, ଲବଙ୍ଗଲତା ଦେବୀ ବିଦୁଷୀ ସେତେବେଳକୁ ପ୍ରତିଷ୍ଠିତ। ହାଇସ୍କୁଲରେ ଛାତ୍ରଥିବା ସମୟରେ ଶିକ୍ଷକ ତଥା ସାହିତ୍ୟିକ ନନ୍ଦକିଶୋର ସାମଲଙ୍କର ଗୁଣ୍ଡୁଚି ମୂଷାର ପିଠିରେ ଗାର ଓ ଗୌରାଙ୍ଗ ଚରଣ ଧଳଙ୍କ ଏକ ଉପନ୍ୟାସ (ନାଁ ମନେ ନାହିଁ) ପ୍ରକାଶ ପାଇ ସ୍କୁଲ ଓ ଗାଁରେ ଚର୍ଚ୍ଚାର ବିଷୟ ହୋଇଥାଏ।"

"ଏହି ଘଟଣା ମୋ ଭିତରର କବିପଣକୁ ଅଧିକ ଉଚ୍ଚାଟିତ କଲା। ଚେଷ୍ଟା କଲି କବିତା ଲେଖିବାକୁ। ଦଶମ ଶ୍ରେଣୀର ଘଟଣା। ସାହସ ସଞ୍ଚୟ କରି କବିତାଟିଏ ପୋଷ୍ଟକାର୍ଡ଼ରେ ଲେଖି ମାତୃଭୂମିର କିଶୋର ଫଉଜକୁ ପଠାଇଦେଲି। ସେତେବେଳେ କିଶୋର ଫଉଜ ଶନିବାର ପ୍ରକାଶ ପାଉଥାଏ। ସୋମବାର ସ୍କୁଲରେ ପହଞ୍ଚି ଦେଖିଲି ପଢାସାଥୀ ସତ୍ୟାନନ୍ଦ ମାତୃଭୂମିଟିଏ ଧରି ମୋ ପାଖକୁ ଧାଇଁ ଆସିଲା। ସେଥିରେ ମୋର ପ୍ରଥମ ଲେଖା ପ୍ରକାଶ ଖବର ଶୁଣି ମୁଁ ଖୁସିରେ ଆତ୍ମହରା ହୋଇପଡିଲି।" (ବସନ୍ତ ବର୍ଣ୍ଣାଳୀ କାହିଁକି ?- ବସନ୍ତ କିଶୋର ରଚନାବଳୀ, ୧ମ ଖଣ୍ଡ)

ଶିଶୁ ସାହିତ୍ୟିକ ବସନ୍ତ କିଶୋରଙ୍କ ଏ ସ୍ୱୀକାରୋକ୍ତି ତାଙ୍କୁ ପରବର୍ତ୍ତୀ କାଳରେ ଶିଶୁ ସାହିତ୍ୟ ସ୍ରଷ୍ଟା କରିବାର ନେପଥ୍ୟ କାହାଣୀ। ତା'ପରେ ନିୟମିତ ଭାବରେ ମାତୃଭୂମି, ସ୍ୱରାଜ୍ୟ ଓ କଳିଙ୍ଗରେ ଲେଖାମାନ ପ୍ରକାଶ ପାଇଛି। ୧୯୭୩ରେ ମାତୃଭୂମି ପକ୍ଷରୁ ପାଇଛନ୍ତି କିଶୋରଶ୍ରୀ ଉପାଧି। ଜଣେ କିଶୋର ସାହିତ୍ୟ ସ୍ରଷ୍ଟା ଏହାଠୁଁ ଅଧିକ କ'ଣ ଗୌରବ ଆଶା କରିପାରନ୍ତା ?

।। ଦୁଇ ।।

...ୟୀ ପଲ୍ଲୀକବି ନନ୍ଦକିଶୋର ବଳ ଓ ଶିକ୍ଷକ ତଥା ...ବ ଯେ କବି ବସନ୍ତ କିଶୋରଙ୍କ ସାରସ୍ୱତ



Digitized by srujanika@gmail.com

ଜୀବନକୁ ଦିଶା-ଦର୍ଶନରେ ସହାୟକ ହୋଇଛି -ଏହା ନିର୍ବିବାଦରେ କୁହାଯାଇ ପାରିବ। ପଲ୍ଲୀକବି ନନ୍ଦ କିଶୋର ଓ ଶିଶୁ ସାହିତ୍ୟିକ ନନ୍ଦ କିଶୋରଙ୍କ ସାହିତ୍ୟ ଅନୁଶୀଳନରେ ଏହା ଅଧିକରୁ ଅଧିକ ସୁସ୍ପଷ୍ଟ ହୋଇଉଠିବ।

ପଲ୍ଲୀକବି ନନ୍ଦକିଶୋର ବଳ(୧୮୭୫-୧୯୨୮)ଙ୍କ ଜନ୍ମ ବସନ୍ତ କିଶୋରଙ୍କ ଅନେକ ଆଗରୁ। ଏପରିକି କବି ବଳଙ୍କ ଦେହାନ୍ତର ୨୭ବର୍ଷ ପରେ ବସନ୍ତଙ୍କ ଜନ୍ମ (୧୯୫୫)। ପଲ୍ଲୀକବି ଭାବରେ ତାଙ୍କ କୃତିତ୍ୱ ବସନ୍ତଙ୍କ ପ୍ରଥମ କବିତା ରଚନା ସମୟ (୧୯୭୨)କୁ ସମଗ୍ର ଓଡ଼ିଶାରେ ସ୍ୱୀକୃତ ହୋଇ ସାରିଥିଲା। 'ବସନ୍ତ କୋକିଳ' କବିତାରେ ପଲ୍ଲୀକବି ନନ୍ଦକିଶୋର ଲେଖିଥିଲେ-

ଗାଉ 'କୁହୁ' 'କୁହୁ' ପିକ,କି ଅପୂର୍ବ ତାନେ !
ଜୀବନ-ଜାହ୍ନବୀଧାରା ବହେ ବିଶ୍ୱପ୍ରାଣେ।
× × ×
ପିକ ତୋର 'କୁହୁ' ଧ୍ୱନି ସ୍ୱର୍ଗ ମନ୍ଦାକିନୀ,
ତା' ନୀର କରନ୍ତି ପାନ ସୁର ସୀମନ୍ତିନୀ।

ବସନ୍ତ କିଶୋରଙ୍କ ପ୍ରଥମ କବିତାରେ ଏହାର ମୃଦୁ୍ୟ ପଦପାତ ଲକ୍ଷ୍ୟ କରାଯାଇପାରେ। ତାଙ୍କ କବିତାର ପଂକ୍ତିଟିଏ ଦେଖନ୍ତୁ-

କି ସୁନ୍ଦର ଗାଉଅଛି ପିକ
ଆମ୍ରକୁଞ୍ଜେ ଛପିଛପି ମଞ୍ଜୁଳ
ବସନ୍ତ ଆସିଛି ଆଜି ସୁରଭିତ
ଲୁଚିଲୁଚି ବହେ ମନ୍ଦ ସମୀର।
(ବରଷକେ ଆଜି ଆସିଛି ବସନ୍ତ)

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଯାଏ ଓଡ଼ିଶାର ସଂସ୍କୃତି ଥିଲା ପଲ୍ଲୀ କୈନ୍ଦ୍ରିକ। ରାଧାନାଥୀୟ ସାହିତ୍ୟର ଅପସଂସ୍କୃତି ବିରୋଧରେ ପ୍ରଥମ କରି ପଲ୍ଲୀକବି ନନ୍ଦକିଶୋର ବିଦ୍ରୋହାଚରଣ କରିଥିଲେ ତାଙ୍କର 'ପଲ୍ଲୀଚିତ୍ର' କବିତା ଗୁଡ଼ିକ ମାଧ୍ୟମରେ। ପଲ୍ଲୀର ନିସର୍ଗ ସୁନ୍ଦର ପ୍ରକୃତି, ତା'ର ସୁନ୍ଦର ପରିବେଶ, ପଲ୍ଲୀ ଜୀବନ, ଋତୁ ସମ୍ଭାର, ବନ-ଉପବନ, କ୍ଷେତବାଡ଼ି, ନଦୀ ପୁଷ୍କରିଣୀ, ପର୍ବ ପର୍ବାଣି, ଖେଳ କୌତୁକ, ବୁଢାବୁଢୀ, ନାଥ ଯୋଗୀର କେନ୍ଦରା, ସ୍ନାନରତା ନାରୀ, ତାଳବନ ଏପରିକି ଘର ଚଟିଆ, ପାରା, ବଣି, କାଉ ପରି ପକ୍ଷୀ ଭିତରେ ଗ୍ରାମ୍ୟ ଜୀବନର ଛବି ସେ ଆଙ୍କି ବସିଲେ। ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ତିଆରି କଲେ ନୂତନ କାବ୍ୟମାର୍ଗ - ପଲ୍ଲୀ କବିତାର ମାର୍ଗ। ଏ ମାର୍ଗରେ ଯାଇ ନନ୍ଦ କିଶୋର ହେଲେ ପଲ୍ଲୀକବି। ନନ୍ଦ କିଶୋର ସାମଲ ଓ ପରେ ବସନ୍ତ କିଶୋର ସାହୁ ଶିଶୁ କବିତା ରଚନା କାଳରେ ପଲ୍ଲୀ ଜୀବନ ଚିତ୍ର ଅଙ୍କନ କରି



Digitized by srujanika@gmail.com

ଏହି ମାର୍ଗକୁ ଆପଣାର କରି ବସିଛନ୍ତି ।

ପଲ୍ଲୀକବି ନନ୍ଦ କିଶୋରଙ୍କ 'କାକ ବାରତା'(ନିର୍ଝରିଣୀ) ବା 'ଡାମରା କାଉ' ଓଡ଼ିଆ କାବ୍ୟ ସାହିତ୍ୟରେ ଚମତ୍କାରିତା ଅର୍ଜନ କରେ ପଲ୍ଲୀପ୍ରାଣତା ପାଇଁ । ପଲ୍ଲୀକବି ଏଇ କବିତା ଦ୍ୱୟରେ ଜୀବନ ଦର୍ଶନର କଥା ବି କହିଛନ୍ତି -

ଡାମରା କାଉରେ ଡାମରା କାଉ
ଉଞ୍ଚ ପରବତେ ବୋବାଉଥାଉ ।
ଉଞ୍ଚ ପରବତ କୁଞ୍ଚିକୁଞ୍ଚିକା
ତହିଁରେ ବସିଛି ତିନି ମଞ୍ଜିକା ।
× × ×
ସଂସାର ଅଟଇ ବିଷମ ମାୟା
କାୟା ଛଳେ ତାହା ଅସାର ଛାୟା ।
ଡାମରା କାଉରେ ଡାମରା କାଉ
ସତ ମିଛ କହି କି ଯଶ ପାଉ ?
(ନନ୍ଦ କିଶୋର ବଳ, କାକ ବାରତା)

ନନ୍ଦ କିଶୋର ସାମଲ ବି ଲେଖିଛନ୍ତି 'କା କା ଡାକୁ କାଉ' କବିତା । ପଲ୍ଲୀକବି ନନ୍ଦ କିଶୋର ବଳଙ୍କ ପ୍ରଭାବ ଏ କବିତାକୁ ରସସିକ୍ତ କରିଛି । ବସନ୍ତ କିଶୋର ସାହୁ ସମାନ ଶୀର୍ଷକ 'ଡାମରା କାଉ'କୁ ନେଇ କବିତା ରଚନା କରିଛନ୍ତି । 'କା କା ଡାକୁ କାଉ' କବିତାକୁ ଦେଖନ୍ତୁ –

କା କା ଡାକୁ କାଉ
ତୋ ପାଖକୁ ମୁଁ ଖେଳିବାକୁ ଗଲେ
କାହିଁକି ପଳେଇ ଯାଉ ?
କା କା ଡାକୁ କାଉ
ଏ ଗାଆଁ ସେ ଗାଆଁ ଉଡି ବୁଲିବୁଲି
କେତେ କଥା ଦେଖୁ ନାଉଁ ?
(ନନ୍ଦ କିଶୋର ସାମଲ)

ବସନ୍ତ କିଶୋରଙ୍କ 'ଡାମରା କାଉ'କୁ ପଢନ୍ତୁ-

ଉଡ଼ି ଉଡ଼ି ଯାଆ ଡାମରା କାଉରେ
ଉଡ଼ି ଉଡ଼ିକା ତୁ ଯାଆ ।
ମାମୁ ମାଇଁଙ୍କର ପାଖରୁ ମୋହର
ଖବର ନେଇକି ଆ ।



Digitized by srujanika@gmail.com

× × ×

ଘଉଳ ମୁଠିଏ ରଖିଲି ତୋ ପାଇଁ
ଉଡ଼ି ଉଡ଼ିକା ତୁ ଯାଆ ।
ସହଳ ସହଳ ଖବର ଆଣିକି
ଘଉଳ ମୁଠିକ ଖାଆ ।

ପଲ୍ଲୀ ଜୀବନ କଥାକୁ ନେଇ ନନ୍ଦ କିଶୋର ବଳ ଲେଖିଛନ୍ତ ଅନେକ କବିତା ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତ ଓ ବସନ୍ତ ପଲ୍ଲୀକବିଙ୍କ କବିତ୍ୱାରେ ରୂପାୟିତ ହୋଇଛି । ବାୟା ଚଢେଇ, ପୋଷା କୁକୁର, ବିଲେଇନାନୀ, ବେଙ୍ଗୁଲୀ ରାଣୀ, ବିଲୁଆ ଭାଇ ବି 'ନାନାବାୟା ଗୀତ'ରେ ସ୍ଥାନିତ ହୋଇଛି । ପଲ୍ଲୀ ଜୀବନକୁ ନେଇ ଲେଖାଯାଇଥିବା ଏ ସବୁ କବିତା ବସନ୍ତ କିଶୋରଙ୍କ ସୃଷ୍ଟିରେ ଏକ ଏକ ସାର୍ଥକ ଶିଶୁ କବିତାରେ ହୋଇଛି ପରିଣତ । ପଲ୍ଲୀକବିଙ୍କ 'ବିଲୁଆ ଭାଇ'ର ଦୃଷ୍ଟାନ୍ତ ଦେଖନ୍ତୁ -

ବିଲୁଆ ଭାଇରେ ବିଲୁଆ ଭାଇ,
ହୁକେ ହୁକେ ଛଡ଼ା ଗୀତ କି ନାହିଁ ?

× × ×

ବିଲୁଆ ନନାରେ ବଲୁଆ ନନା
ଘର ପୋଡ଼ିଗଲା ପଛକୁ ଅନା ।

ବସନ୍ତ କିଶୋରଙ୍କ 'ବିଲୁଆ ନନା' କବିତାରେ ନନ୍ଦ କିଶୋର ବଳଙ୍କ ଅନୁରୂପ ସ୍ୱର ଶୁଣିବାକୁ ମିଳିଛି । ଦୃଷ୍ଟାନ୍ତଟିଏ ଦେଖନ୍ତୁ –

ବିଲୁଆ ନନା ହେ ବିଲୁଆ ନନା
ଥରେ ହେଲେ ତୁମେ ପଛକୁ ଅନା ।
ରାତି ଅଧଟାରେ କୁଆଡ଼େ ଧାଅଁ
ଏମିତି କାହିଁକି ସଙ୍ଗୀତ ଗାଅ ।

ସବୁ ସମୟରେ କବି ଓ ଲେଖକଗଣ ପୂର୍ବସୂରୀମାନଙ୍କୁ ଅନୁସରଣ କରିଥାନ୍ତି । ନିଜ ସୃଜନୀ ଶକ୍ତିରେ ସେମାନଙ୍କ ସୃଷ୍ଟି ହୋଇଥାଏ ସମୃଦ୍ଧ । ସମଗ୍ର ବିଶ୍ୱ ହେଉଛି କାବ୍ୟମୟ । ସେଥିରୁ ଉପାଦାନ ସାଉଁଟି ଥାଏ ସ୍ରଷ୍ଟା । ଶକ୍ତିମତ୍ତା ଯୋଗୁ ପୁରାତନ ବିଷୟ, ଘଟଣା ବା ଚିତ୍ର ନୂତନ ରସରେ ହୁଏ ପରିପୁଷ୍ଟ । ଜୀବନ ଓ ପୃଥିବୀର ବୈଚିତ୍ର୍ୟ ହୁଏ ପ୍ରକାଶିତ । ପଲ୍ଲୀକବି ନନ୍ଦ କିଶୋରଙ୍କ ଉପରେ ଟେନିସନ୍, କାଉପର, ସେକସ୍‌ପିଅର, ସେଲି, ଓ୍ୱାର୍ଡ଼ସୱ୍ୱଥ, କିଟ୍‌ସଙ୍କ ପ୍ରଭାବ ପଡ଼ିଥିଲେ ହେଁ ଅପଣାର ସୃଜନୀ ବଳରେ ସେ ଓଡ଼ିଆ ପଲ୍ଲୀ କବିତା ରଚନା କରି ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି । 'କୁସୁପୁର' ମାଟି ସେଥିଯୋଗୁ ସାରସ୍ୱତ ଜଗତ ପାଇଁ ଉର୍ବର ମୃତ୍ତିକାର ମାନ୍ୟତା ପାଇଛି । ସେଇ ମାଟିରେ ଜନ୍ମ ନେଇଛନ୍ତି ଆଉ ଜଣେ ନନ୍ଦ କିଶୋର (ସାମଲ) । ତାଙ୍କ ଜନପ୍ରିୟତା



Digitized by srujanika@gmail.com

'ଗୁଣ୍ଡୁଚି ମୂଷାର ପିଠିରେ ଗାର'ଠୁଁ 'ସରଗଫୁଲ', 'ମୁଁ କହିବି କଥାଟିଏ ତୁ କହିବୁ ହୁଁ', 'ମୋତେ ଯେତେବେଳେ ଦଶ ବରଷ', 'ଆମେ ଏ ମାଟିର ସୁନା ଫରୁଆ', 'ଅଜା ପଗ୍ଗରିଲେ ଆଇକି' ଶୀର୍ଷକ କବିତା ଗ୍ରନ୍ଥରେ ପରିଦୃଷ୍ଟ ହୁଏ । ଆଉ ଦୁଇ ନନ୍ଦ କିଶୋରଙ୍କ ସୁଯୋଗ୍ୟ ଦାୟାଦ ହେଉଛନ୍ତି ଶିଶୁ ସାହିତ୍ୟିକ ବସନ୍ତ କିଶୋର । ତାଙ୍କ ପ୍ରତିଭାର 'ଝଲକ' ଏଇ ପ୍ରବନ୍ଧରେ ଆଲୋଚିତ ହୋଇଛି ।

॥ ତିନି ॥

ଶିଶୁ ସାହିତ୍ୟିକ ବସନ୍ତ କିଶୋରଙ୍କ କବିତାଗୁଡ଼ିକର ସଂକ୍ଷିପ୍ତ ବିସ୍ତାର କରିବା ଏ ପ୍ରବନ୍ଧର ଲକ୍ଷ୍ୟ । ବିଶେଷ କରି ବସନ୍ତ କିଶୋର ରଚନାବଳୀ ପ୍ରଥମ ଖଣ୍ଡରେ ସନ୍ନିବେଶିତ ଏକଶତ ଓ୍ବଳିଶିଟି କବିତାର ଭାବଭୂମି ଏ ଆଲୋଚନାରେ ଗୃହୀତ ହୋଇଛି । ପଲ୍ଲୀ ପ୍ରେମିକ କବି ବସନ୍ତ କିଶୋର ଭଲ ପାଇଛନ୍ତି ପ୍ରକୃତିକୁ । ପ୍ରକୃତି ରାଣୀ ପୁଲକିତ ହୋଇଛି ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତ ଓ ବସନ୍ତର ମଧୁର ସ୍ପର୍ଶରେ । ଋତୁ ପରେ ଋତୁ ଆସିଛି-ଛାଡ଼ି ଯାଇଛି ଧରାପରେ ତା'ର ପଦଚିହ୍ନ । ବର୍ଷାକୁ ନେଇ କବି ରଚନା କରିଛନ୍ତି ଅନେକ କବିତା । କେତେବେଳେ ବଉଦ ରଥ ଚଢି ଆସୁଛି ବର୍ଷା, ଝିପିଝିପି ସେ ବର୍ଷା, ମେଘ ଡାକିଲାଣି ଧରାରେ । ବର୍ଷା ଆସେ, ଆସେ ନଈ ବଢି, ପିଲାଏ ଭେଳା ଭସାଇ ଦିଅନ୍ତି, ଜାତିଜାତିକା ଫୁଲ ଫୁଟି ଉଠେ ଆଉ ସାଧବ ବୋହୂ ନାଲିଆ ଶାଢୀ ପିନ୍ଧି ବୁଲୁଥାଏ ଏ ପ୍ରାନ୍ତରୁ ସେ ପ୍ରାନ୍ତର । 'ବରଷା ଧାରା ଝରିଲା'ରେ କବି ବସନ୍ତଙ୍କ ସୁମଧୁର ସ୍ୱର ଶୁଣିବା ହେଉ-

କଳା କଳା ମେଘ ଆକାଶେ ଭାସେ
ଚପଳା ସୁନ୍ଦରୀ ତା' ସାଥେ ହସେ ।
ବେଙ୍ଗୁଲୀ ରାଣୀ କନିଆ ବେଶେ
କଟର କଟର ସଙ୍ଗୀତ ଘୋଷେ ।
ଜୁଳୁଜୁଳା ଜାଳି ରୋଷଣୀ ଆଲୁଅ,
ଅନ୍ଧାର ଦୂର କରିଲା
ବରଷା ଧାରା ଝରିଲା ।

ବର୍ଷା ଶେଷରେ ଆସେ ଶରତ । ପୃଥିବୀର ଶୋଭାରେ ଆସେ ନୂତନତା । ସବୁଜିମାରେ ଧରଣୀ ରାଣୀ ଶୋଭାବନ୍ତ ହୋଇଉଠେ । ନଈ ପଠାରେ କାଶତଣ୍ଡୀର ଧବଳ ରୂପଶ୍ରୀ । କଇଁ, ହେନା, ସେବତୀ, ମାଳତୀରେ ପୃଥିବୀ ଭରିଯାଏ । କବି ବସନ୍ତ କିଶୋରଙ୍କ 'ଶରତ ଆସେ'ର ପଂକ୍ତିସବୁ ପଢନ୍ତୁ-

ନଈପଠାରେ ବିଲ ପାଟ୍‌ରେ
ଫୁଟଇ କାଶତ୍‌ଣ୍ଡୀ,


Digitized by srujanika@gmail.com

ହେନା ସେବତୀ କଇଁ ମାଳତୀ
ଫୁଟେ ଧରାକୁ ମଣ୍ଡି ।
× × ×
ଶରତ ଦେଶେ ଦଶରା ଆସେ
ଆସଇ ଦୁର୍ଗାପୂଜା,
ସବୁରି ଘରେ ଆନନ୍ଦ ଭରେ
ହୁଅଇ ବଡ଼ ମଜା ।

ବସନ୍ତ ଆସିଲେ ବହେ ମଳୟ ପବନ । ନାନା ଜାତି ଫୁଲରେ ଭରିଯାଏ ପୃଥିବୀ । ଶୀତରେ ଥରଥର ହେଉଥିବା ଅଜାବୁଢ଼ା ହସି ଉଠନ୍ତି ବସନ୍ତର ପବନରେ । କବି ବସନ୍ତଙ୍କ କବିତାରେ ପ୍ରକୃତି ସହିତ ଜୀବନ ହୋଇଉଠିଛି ଏକାତ୍ମ । ଉଦାହରଣ ଦେଖନ୍ତୁ 'ବସନ୍ତ ପବନ' କବିତାରୁ-

ଫଗୁଣ ମାସ ତ ଅଇଲା
ଆମ୍ବଗଛ ଫାଙ୍କେ କୋଇଲି ନାନୀ
କୁହୁ କୁହୁ ଗୀତ ଗାଇଲା
ବସନ୍ତ ପବନ ବହିଲା ।
× × ×
ଚମ ଧୁଡୁ ଧୁଡୁ ଅଜାବୁଢ଼ା ମୋର
ପାକୁଆ ପାଟିକୁ କଥା ଥରଥର
ପାରନ୍ତିନି ଚାଲି ସଦା ଧରଧର
ଶୀତେ ହେଉଥିଲେ ଖାଲି ହରବର
କିରିକିରି ହୋଇ ହସିଲେଣି ଏବେ
ଶୀତରତୁ ଯେବେ ସଇଲା
ବସନ୍ତ ପବନ ବହିଲା ॥

ବାର ମାସରେ ତେର ଯାତ ଆମ ଓଡ଼ିଶାର ସାଂସ୍କୃତିକ ପରମ୍ପରାକୁ ସୂଚିତ କରିଥାଏ । କୃଷିଭିତ୍ତିକ ରଜ ପର୍ବ ଆସେ ଜ୍ୟେଷ୍ଠ ମାସ ଶେଷରେ । ପହିଲି ବର୍ଷାରେ ଗାଁ ଦାଣ୍ଡ ପୂରିଉଠେ । ତା ପରେ ପରେ ଆସେ ଆଷାଢ଼ରେ ରଥଯାତ୍ରା । ଭାରତ ବର୍ଷର ସବୁ ଧର୍ମ-ଜାତିର ଲୋକ ପୁରୀରେ ଠୁଳ ହୁଅନ୍ତି । ସାର୍ବଜନୀନ ମୈତ୍ରୀ-ପ୍ରୀତିର କଥା କହେ ଏଇ ରଥଯାତ୍ରା । 'ରଥଯାତ' ଶୀର୍ଷକ କବିତାରେ କବି ବସନ୍ତ କିଶୋର ଲେଖିଛନ୍ତି-

ରଥଯାତ ବଡ଼ଯାତ ଓଡ଼ିଶାର ଗରବ
ଆସିଥାନ୍ତି ଭକ୍ତକେତେ ଦେଖିବାକୁ ପରବ ।
ଭାରତର ସବୁଠାରୁ ଆସିଥାନ୍ତି ଲୋକ


Digitized by srujanika@gmail.com

ହିନ୍ଦୁ ଜୈନ ଖ୍ରୀଷ୍ଟିଆନ ଆହୁରି ଅନେକ।
ନାହିଁ ହିଂସା ନାହିଁ ଦ୍ୱେଷ ନାହିଁ ଅହଙ୍କାର
ଏକ ମନ ଏକ ଚିତ୍ତ ସବୁ ଭକ୍ତଙ୍କର।

ଗଣେଶ ପୂଜା, ରାକ୍ଷୀ ପୂର୍ଣ୍ଣିମା, ଦଶହରା, ଦୀପାବଳୀ, କାର୍ତ୍ତିକ ପୂର୍ଣ୍ଣିମା, ହୋଲି ପର୍ବ ଓଡ଼ିଶାର ଗଣପର୍ବରେ ପରିଣତ ହୋଇଛି। ମା' ଏ ଧରାଧାମକୁ ଅବତରି ଆସନ୍ତୁ ବୋଲି କବି ଆହ୍ୱାନ ଦେଇଛନ୍ତି। ଫଳରେ ଦେଶ ହେବ ଶସ୍ୟ-ଶ୍ୟାମଳା, ପୂର୍ଣ୍ଣହେବ ଧନଧାନ୍ୟରେ। ସଂହାରକାରିଣୀ ମା' ସ୍ନେହ-ପ୍ରେମ-ମୈତ୍ରୀ ଡୋରିରେ ଧରାକୁ ପୂର୍ଣ୍ଣ କରିଦେବେ। ଶିଶୁ ମନସ୍ତତ୍ତ୍ୱର ପ୍ରୟୋଗ କରି କବି ଜୀବନ ଓ ଜଗତ ସହିତ ଯୋଡ଼ି ଦେଇଛନ୍ତି ଓଡ଼ିଶାର ପର୍ବପର୍ବାଣିକୁ।

ଖେଳ କୌତୁକର ଚମତ୍କାର ବର୍ଣ୍ଣନା କବି ବସନ୍ତ କିଶୋରଙ୍କ କବିତାର ଅନ୍ୟ ଏକ ନୈପୁଣ୍ୟ। ଝିପିଝିପି ବରଷାର ନଈରେ ଚପଳମତି କିଶୋର ଭସେଇଦିଏ କାଗଜ ଡଙ୍ଗା। ଖେଳ କୌତୁକରେ ମାତି 'କଣ୍ଢେଇ ବାହାଘର' କରୁଥିବା କିଶୋର-କିଶୋରୀ ଅଜା-ଆଈଙ୍କୁ ନେଇ ଖେଳ ତାମସାରେ ମାତିଥାଏ। 'ବୁଢ଼ିଟିଏ ଥିଲା ପାକେଇ' ଓ 'ଅଜାଙ୍କ ହୋରି ମଜା' ଏମିତି ଏକ ଏକ ମଜା କବିତା। 'ଆଖିନାହିଁ କାନ ନାହିଁ' ଖେଳରେ ମାତିଥିବା ବାଳକ-ବାଳିକାର ଚପଳ ମନକଥାକୁ ସୂଚାଇଦିଏ-

ଆଖି ନାହିଁ କାନ ନାହିଁ   ବାଜିଗଲେ ଦୋଷ ନାହିଁ
ଗୀତ ଗାଅ, ଗପ କୁହ   ସତ କଥା ସଦା କୁହ
ବହିନିଅ, ଖାତାନିଅ   ପଢ଼ିବାକୁ ଆଗ ହୁଅ
ଆଖି ନାହିଁ କାନ ନାହିଁ   ପାଠ ନାହିଁତ କିଛି ନାହିଁ।

ଦେଶପ୍ରେମ ଭାବନା ସରଳ ପିଲାମାନଙ୍କୁ ଜାତୀୟତା ଭାବରେ ଆଛନ୍ନ କରେ। ଆମେ 'ସ୍ୱାଧୀନ ଦେଶର ସନ୍ତାନ', 'ଗୋଟିଏ ମାଆର ସନ୍ତାନ ଆମେ' ଶୀର୍ଷକ କବିତା ବସନ୍ତ କିଶୋରଙ୍କ ସ୍ୱଦେଶ ବାତ୍ସଲ୍ୟକୁ ପ୍ରକାଶ କରେ। ସମଗ୍ର ଭାରତ ଜାତି-ଧର୍ମ-ବର୍ଣ୍ଣର ବିବିଧତା ସତ୍ତ୍ୱେ ଏକ ଓ ଅଭିନ୍ନ। ଶାନ୍ତି, ମୈତ୍ରୀ ଓ ପ୍ରଗତିର ପ୍ରତୀକ ହେଉଛି ଆମ ତ୍ରିରଙ୍ଗା ପତାକା। ଗାନ୍ଧୀ, ଜବାହର ଓ ଅଶୋକଙ୍କ ବାଣୀ ଏକତା ଓ ଅଖଣ୍ଡତାର କଥା କହେ-

ହିମାଚଳଠାରୁ ସୀମାଚଳ ଯାଏ
    ଗୋଟିଏ ମାଆର ସନ୍ତାନ ଆମେ।
ବଙ୍ଗାଳୀ, ଓଡ଼ିଆ, ପଞ୍ଜାବୀ, ଆସାମୀ
    ଭାଇ ଭାଇ ପରା ଏ ଧରାଧାମେ॥

କିଶୋର ବୟସର କବି ବସନ୍ତ କିଶୋର! ଷୋଳ ସତର ବର୍ଷ ମାତ୍ର ବୟସ। ମାତ୍ର


Digitized by srujanika@gmail.com

'ଜନ୍ମଭୂମି' ପ୍ରତି ଭରପୂର ମମତା। କଳିଙ୍ଗର 'ଉଦୟ ଭାନୁ' ପୃଷ୍ଠାରେ ସେ ସେଦିନ (୭/୬/୧୯୭୨) ଲେଖିଥିଲେ 'ଜନ୍ମଭୂମି' କବିତା-

ଭାରତ ମୋର ଜନମ ଭୂଇଁ
ସରଗଠାରୁ ବଡ଼
ତାହାରି ପାଣି ପବନ ପାଇ
ହୋଇଛି ମୁହିଁ ବଡ଼।
× × ×
ଗଙ୍ଗା ଯମୁନା ଏହାରି କୋଳେ
ସତ୍ୟର ଗୀତ ଗାଏ
ହିମାଳୟ ତା ଉତ୍ତରେ ରହି
ଶତ୍ରୁ ଦୂରେଇ ଦିଏ।

ଓଡ଼ିଶା ରାଜ୍ୟର କିଶୋର ପ୍ରାଣରେ ମହାଭାରତୀୟତା ଦେଶପ୍ରେମୀ କବି ବସନ୍ତଙ୍କ ଜାତି-ଦେଶ ପ୍ରେମର ମଧୁର ମୂର୍ଚ୍ଛନାରେ ଯେପରି ତରଙ୍ଗାୟିତ ହୋଇଉଠିଛି, ତାହା ନିଶ୍ଚୟ ତତ୍‌କାଳରେ ଅନନ୍ୟ ବିସ୍ମୟ ରୂପେ ସ୍ୱୀକୃତ ହେବ।

ଦେଶ ପ୍ରେମିକ କବି ବସନ୍ତ କିଶୋରଙ୍କ ପ୍ରତିଭାର ଅନ୍ୟ ଏକ ଦିଗ ହେଲା ପ୍ରତିଭା ପୂଜା। 'ପଲ୍ଲୀକବି ସ୍ମରଣେ' କବି ନନ୍ଦ କିଶୋରଙ୍କ ପ୍ରତି ଏକ ଶ୍ରଦ୍ଧାଞ୍ଜଳି କବିତା। 'କବି ଓ ଶିଳ୍ପୀ' କବିତାରେ ନନ୍ଦ କିଶୋର ଓ ବିଦ୍ୟାଧରଙ୍କ ପ୍ରତି ଶ୍ରଦ୍ଧାର୍ଘ୍ୟ ବାଢ଼ିଛନ୍ତି କବି ବସନ୍ତ କିଶୋର। 'ମୁକୁଟ ବିହୀନ ରାଜା' କବିତାରେ ଗୋପବନ୍ଧୁଙ୍କୁ ପରିଚିତ କରିଛନ୍ତି ଶିଶୁମାନଙ୍କ ନିକଟରେ। ବଢ଼ି, ମରୁଡ଼ିରେ ସେ ଦୁଃଖୀ ଦୁଃଖରେ ଲୁହ ଝରାଉଥିଲେ, ଚୁଡ଼ା ଚାଉଳ ଧରି ପହଞ୍ଚୁଥିଲେ ଦରିଦ୍ର ନିପୀଡ଼ିତଙ୍କ ପାଖରେ। ବସନ୍ତ କିଶୋରଙ୍କୁ ଶୁଣନ୍ତୁ-

ମରଣ ମୁଖରେ ଗୋଟିଏ ପୁଅକୁ
ଘରେ ଛାଡ଼ିଗଲେ ଚାଲି
କୋଟିଏ ପୁଅର ସେବା ଶୁଶ୍ରୂଷାରେ
ନିଜ ପରିବାର ଭୁଲି।
ଆଣ୍ଠୁ ଲୁଚିଲାନି ପିନ୍ଧିଲେ ସେ ଖଦି
ହୋଇଲେ ଫକୀର ବେଶ
ଦାଢ଼ି ମେଞ୍ଚା ମେଞ୍ଚା ମୁହଁରେ ରଖିଲେ
ମୁଣ୍ଡେ ଅସଜଡ଼ା କେଶ।
× × ×
ଛୁରିଅନା କୁଞ୍ଜେ ବନ ବିଦ୍ୟାଳୟ
ହସିଲା ତାଙ୍କରି ପାଇଁ



Digitized by srujanika@gmail.com

ଶହ ଶହ ଛାତ୍ର ମଣିଷ ହୋଇଲେ

ତାଙ୍କ ଆଦରଶ ନେଇ ।

'ଝୁରେ କୋରାପୁଟ ମାଟି'ରେ ସହିଦ ଲକ୍ଷ୍ମଣ ନାୟକ, 'ଅନୁଶୋଚନାର ଗୀତ'ରେ ଗଣକବି ବୈଷ୍ଣବ ପାଣିଙ୍କୁ ଓ 'ଝୁରୁଛି ମାତୃଭୂମି' କବିତାରେ ବାଳକୃଷ୍ଣ କରଙ୍କ ସ୍ମୃତିଚାରଣ କରିଛନ୍ତି କବି । ଏ ଶ୍ରଦ୍ଧାଞ୍ଜଳି ବିନା ଏ ଜାତି ଭୁଲିଯିବ ତାର ବୀର ପୁରୁଷମାନଙ୍କୁ, ଯେଉଁମାନଙ୍କ ମହତ ଦାନରେ ଏ ଦେଶ ଓ ଜାତି ହୋଇଛି ପରିପୁଷ୍ଟ ।

ବସନ୍ତ କିଶୋରଙ୍କ ପ୍ରତିଭାର ସର୍ବଶ୍ରେଷ୍ଠ ନିଦର୍ଶନ ପଲ୍ଲୀ ଜୀବନକୁ ନେଇ ରଚିତ କବିତା ଗୁଡ଼ିକରେ ପରିଦୃଷ୍ଟ ହୁଏ । ଆମ୍ବ ବଉଳର ମହକ ଯେପରି ତାଙ୍କର କିଶୋର ପ୍ରାଣକୁ ବିଭୋର କରିଥିଲା ସେପରି ତାଳ ତମାଳ ଘେରା ତୋଟା, ବନ ତାଙ୍କୁ କରିଥିଲା ମୋହାଚ୍ଛନ୍ନ । ଗାଁ ଧୂଳିମାଟି, ନଈ, କଅଁଳ ଖରା, ଝରଣା, ଚଢେଇ ଏମିତି ବାଡ଼ି ବଗିଚାର କାଙ୍କଡ଼ ଆଉ କାକୁଡ଼ି ତାଙ୍କ କବି ମନକୁ ଆଚ୍ଛାଦିତ କରି ରଖିଥିଲା । ଅନ୍ତୁଡ଼ିରୁ ମଶାଣିଯାଏ ତାଙ୍କ କବିତା ବିସ୍ତାରିତ । ଡାମରା କାଉ, ବିଲୁଆ ନନା, ପୁଷି ବିଲେଇମାନେ କବିତାର ଛତ୍ରେ ଛତ୍ରେ ଦୃଶ୍ୟମାନ । ବହଳ ତୋଟାରେ ଶିଶୁମାନେ ଖେଳୁଥାନ୍ତି ନାନା ଜାତି ଖେଳ । ବାଣୁଆ ନଳ ଯୋଖି ପକ୍ଷୀ ଧରାରେ ମଗ୍ନଥାଏ । ପଥିକ ହାଲିଆ ହୋଇ ବିଶ୍ରାମ ନିଏ ଗଛ ଛାଇରେ । କବିଙ୍କ ବର୍ଣ୍ଣନାରୁ ଦୁଇଟି ପଙ୍‌କ୍ତି ଉଦ୍ଧାରଯୋଗ୍ୟ ମନେହୁଏ-

ଗହଳ ପତର ବହଳ ତୋଟା
ଆମ୍ବ ଫଳିଥାଏ ଗୋଟାକୁ ଗୋଟା ।
ମଳୟ ପବନ ସଧୀରେ ବହେ
ମଧୁର ସୁରରେ କୋଇଲି ଗାଏ ।
ସାଙ୍ଗ ସାଥୀ ମେଳେ ପିଲାଏ ଆସି
ଜାତିଜାତି ଖେଳ ଖେଳନ୍ତି ହସି ।
ହାରିଲେ ଖେଳରେ ଲଗାନ୍ତି କଳି
ଫେରିଲା ବେଳକୁ ଯାଆନ୍ତି ମିଳି ।

ଗାଁ ନଈ, ବିଲବଣ ବସନ୍ତ କିଶୋରଙ୍କ ମନରେ ଜଗାଏ ଅଫୁରନ୍ତ ଆବେଗ । ବଣ ରାଇଜରେ ବିଲୁଆ ନନା ରାଜା ହୁଏ, ପୁଷି ନାନୀ ଘର ଭିତରେ ମାଛ ମାଉଁସ ଖାଇ ପାଟି ସୁଆଦ କରୁଥାଏ । 'ନାଆଁଟି ଆମର ପୁଷି' କବିତାରେ ପୁଷିନାନୀଙ୍କ ଚମତ୍କାରିତା ଦେଖନ୍ତୁ-

ନାଆଁଟି ଆମର ପୁଷି
ପାଇଲେ କେବେ ଦୁଧ ଘିଅ କି ମାଛ ମାଉଁସ
ହୋଇଣ ଯାଉ ଖୁସି ।



Digitized by srujanika@gmail.com

ନାଆଁଟି ଆମର ପୁଷି
ରାତିରେ ଆମେ ଶିକାର କରୁ ବୁଲିବୁଲିକା
ଖୋଜିଣ ମୂଷାମୂଷି ।

ପଲ୍ଲୀ ଜୀବନକୁ ନେଇ ସରସ ସୁନ୍ଦର କବିତା ଲେଖିଛନ୍ତି ବସନ୍ତ କିଶୋର । ଏ କାବ୍ୟବିଭା ପଲ୍ଲୀକବି ନନ୍ଦକିଶୋରଙ୍କ ପ୍ରଭାବର କମନୀୟ ପରିପ୍ରକାଶ ଭିନ୍ନ ଅନ୍ୟକିଛି ନୁହେଁ ।

॥ ଘରି ॥

ବସନ୍ତ କିଶୋରଙ୍କ କବିତାର ଭାଷା ସରଳ ଓ ପ୍ରାଣସ୍ପର୍ଶୀ । ସାଧାରଣ ମଣିଷର କଥୋପକଥନ ଉପଯୋଗୀ ଗ୍ରାମ୍ୟଭାଷା ସେ କବିତା ଗୁଡ଼ିକରେ ବ୍ୟବହାର କରିଛନ୍ତି । ପଦ୍ୟାତ୍ମକ ଶିରୋନାମା କବିତାର ମାଧୁର୍ଯ୍ୟ ବୃଦ୍ଧିରେ ହୋଇଛି ସହାୟକ । ସବୁ ବର୍ଗର କବିତା ଶୀର୍ଷକରୁ କେତୋଟି ମାତ୍ର ଉଲ୍ଲେଖ କରାଯାଇପାରେ । ଯେପରି- ହେମନ୍ତ ଆସିଛି ଆଜି, ଆଷାଢ଼ୀ କନ୍ୟା ଅଇଲା, ଝିପିଝିପି ପଡ଼େ ବରଷା, ହୋଲି ଆସିଛି ହୋଲି, ଆସ ମାଆ ଅବତରି, ଦକ୍ଷିଣା ପବନ ବହିଲା, ସାଧୀନ ଦେଶର ସନ୍ତାନ ଆମେ, ଝୁରେ କୋରାପୁଟ ମାଟି, ଭୂଇଁ ତଳେ ଗଲେ ଜହ୍ନା, ବୁଢୀଟିଏ ଥିଲା ପାକେଇ, ସରଗ ସୁତା ଗଜ ମୁକୁତା, ବୋଉ କରୁଥିଲା ପିଠା, କାଉ ଡାକ ଦେଲା କାଆ, ଫକର ଫକର ଭାକୁର, ଉଡ଼ିଗଲେ ଗେଣ୍ଡାଳିଆ ପ୍ରଭୃତି ।

ଲୋକ ପ୍ରଚଳିତ ଶବ୍ଦର ବ୍ୟବହାର ଯୋଗୁ କବିଙ୍କ କବିତା ରସପୂର୍ଣ୍ଣ ରୂପ ଲାଭ କରିଛି । ହୁଳହୁଳି, କନିଆ, ବଉଦ, ସବାରି, ଗିରି କନ୍ଦର, ଚରଣ, ଡଙ୍ଗା, ବାପୁଡ଼ା, ଟୋକା, ବଉଳ, ଶେଯ, ସରୁଯ, ସାଧବାଣୀ, ଫଉଜ, ଯାତରା, ଭକତି, ଶକତି ପରି ଶବ୍ଦ ସହିତ ଧାଇଁଲା, ପାଇଲା, ଘାରିଲା, ସରିଲା, ଝଡ଼ିଲା, ଝାଡ଼ିଲା, ରଡ଼ିଲା, ପଡ଼ଇ, ଗଡ଼ଇ, ଝରିଲା, ଭରିଲା କ୍ରିୟାପଦର ବ୍ୟବହାର ବସନ୍ତଙ୍କ ସରଳ ପଦ ଯୋଜନାକୁ ସୁଠାମ ଲାବଣ୍ୟ ପ୍ରଦାନ କରେ । ଯୋଡ଼ ଶବ୍ଦ ଝଲିମିଲି, ଥିରିଥିରି, ଥରିଥରି, କୁଲୁକୁଲୁ, ସରସର, ଫରଫର, ଠୁକୁଠୁକୁ, ଫିକଫିକି, କଟର କଟର, ଭଟର ଭଟର, ଟପର ଟପର, ହକର ହକର, ଚକର ଚକର୍ ପ୍ରଭୃତିର ପ୍ରୟୋଗ କ୍ବି ବସନ୍ତ କିଶୋରଙ୍କ କବିତାକୁ ଛନ୍ଦୋମୟ ଲାଳିତ୍ୟ ଦାନ କରେ ।

'ଭାଷା' କେବଳ ଭାବର ବାହକ ନୁହେଁ, ସାହିତ୍ୟର ସୌନ୍ଦର୍ଯ୍ୟ ନିର୍ଭର କରେ ସାହିତ୍ୟିକଙ୍କ ଭାଷା ପ୍ରୟୋଗର ଯାଦୁ ଉପରେ । ତତ୍ସମ, ତଦ୍ଭବ ଓ ଦେଶଜ ଶବ୍ଦ ପ୍ରୟୋଗ କରି କବି ବସନ୍ତ କିଶୋର ଶିଶୁ କବିତାଗୁଡ଼ିକୁ ସାବଲୀଳ ଭାବଗର୍ଭକ ସୌନ୍ଦର୍ଯ୍ୟ ପ୍ରଦାନ କରିଛନ୍ତି ।

ଶିଶୁ ମନସ୍ତତ୍ତ୍ୱକୁ ନେଇ ଶିଶୁମନସ୍କ ହେବା ଓ ଶିଶୁ ସାହିତ୍ୟ ରଚନା କରିବା


Digitized by srujanika@gmail.com

ଏକ ସାଧାରଣ କଥା ନୁହେଁ । ଆଜିର ଶିଶୁ ହେବ କାଲିର ନାଗରିକ । ଶାରୀରିକ ବିକାଶ ସହିତ ତା' ମନର ବିକାଶ ଘଟିବା ଏକାନ୍ତ ଜରୁରୀ । ଖେଳ କୌତୁକ ସହିତ ତା'ର ଦରକାର ଉତ୍ତମ ଶିଶୁ ସାହିତ୍ୟ ଅଧ୍ୟୟନ । ସୁସ୍ଥ ଶରୀର ଓ ସୁସ୍ଥ ମନ (Sound mind in a sound body) ପାଇଁ ଶିଶୁ ସାହିତ୍ୟ ପଠନ ଅପରିହାର୍ଯ୍ୟ ।

କବି ବସନ୍ତ କିଶୋର ଶିଶୁ କବିତା ରଚନାରେ ଶିଶୁ ମନସ୍ତତ୍ତ୍ୱକୁ ଗଭୀର ଭାବରେ ଅନୁଶୀଳନ କରିଛନ୍ତି । ପଲ୍ଲୀ ପ୍ରକୃତିର ଚିତ୍ର ଅଙ୍କନ କରିବା ସହିତ ପଲ୍ଲୀ ଜୀବନକୁ ନେଇ ଲେଖିଛନ୍ତି କବିତା । ଖେଳ କୌତୁକ କଥା ଗୀତରେ ଗୀତରେ ଗାଇବା ସହିତ ଦେଶପ୍ରେମର ବାର୍ତ୍ତା ଦେଇଛନ୍ତି ଶିଶୁକୁ ସୁନାଗରିକ ଭାବେ ଗଢ଼ି ତୋଳିବା ପାଇଁ । ପୂଜ୍ୟପୂଜା କଥା ଲେଖି ମହାପୁରୁଷଙ୍କ ପଦାଙ୍କ ଅନୁକରଣ କରିବାକୁ ଆହ୍ୱାନ ଦେଇଛନ୍ତି । ଓଡ଼ିଆର ଧର୍ମ-ସଂସ୍କୃତିର ଗଣ୍ଡି ଭିତରେ ଥାଇ କବିତାରେ କବିତାରେ କହିଛନ୍ତି ସଂସ୍କୃତିର କଥା, ଉନ୍ନତ ଜୀବନ ଜିଇବାର ରହସ୍ୟ କରିଛନ୍ତି ଉନ୍ମୋଚନ ।

କବି ସମାଜର ଜାଗ୍ରତ ପ୍ରହରୀ, ସମାଜ ସଂସ୍କାରକ । ଜାତୀୟ ଜୀବନ ଗଠନର ଗୁରୁ ଦାୟିତ୍ୱ କବି ହିଁ ବହନ କରେ । ନିଜେ ସେ ଘେନିଥାଏ ଏ ଦାୟିତ୍ୱ । ଶିଶୁ ଅବସ୍ଥାଚକ୍ରରେ ବଡ଼ ହୁଏ, ସାହିତ୍ୟ ତା' ମନରେ ଜଗାଏ ଆଶା, ସ୍ୱପ୍ନ ଓ ପରିପୂର୍ଣ୍ଣ ଜୀବନ ଗଢ଼ିବାର ଅସୁମାରି ଇଚ୍ଛା । କବି ବସନ୍ତ କିଶୋରଙ୍କ ଶିଶୁ ସାହିତ୍ୟ ଏହି ଲକ୍ଷ୍ୟ ସାଧନର ସାମର୍ଥ୍ୟ ହାସଲ କରିଛି- ତାଙ୍କ ରଚନାର ଗଭୀର ଅନୁଶୀଳନ କଲେ ଏହା ସୁସ୍ପଷ୍ଟ ହୋଇଉଠେ ।



ପ୍ରାଧ୍ୟାପକ, ଓଡ଼ିଆ ଭାଷା-ସାହିତ୍ୟ ବିଭାଗ
କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ
କେନ୍ଦ୍ରାପଡ଼ା-୭୫୪୨୧୧
୯୪୩୯୩୭୬୧୫୩



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ଶିଶୁ କବିତା : ଏକ ସମୀକ୍ଷାତ୍ମକ ଅଧ୍ୟୟନ

ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ

ସ୍ୱାଧୀନତା ପ୍ରାକ୍ କାଳରେ ଆଧୁନିକ ଓଡିଆ ଶିଶୁ ସାହିତ୍ୟର କବିତା ବିଭାଗଟି ମୁଖ୍ୟତଃ ପରିବେଶ ପରିସ୍ଥିତିକୁ ନେଇ ପରିପୁଷ୍ଟ ହୋଇ ଉଠିଥିଲା । ନୀତିଶିକ୍ଷା ତଥା ଈଶ୍ୱର ଭକ୍ତି ଏହାର ମୁଖ୍ୟ ଅନ୍ତଃସ୍ୱର ଥିଲା । ମାତ୍ର ସ୍ୱାଧୀନତାର ପରବର୍ତ୍ତୀ କାଳରେ ଏହି ବିଭାଗଟି ଅଧିକ ମାତ୍ରାରେ ବ୍ୟାପକ ହୋଇଉଠିଲା । ନିଜର ଜନ୍ମଭୂମି ପ୍ରତି ସମ୍ମାନ, ସାମାଜିକ ସ୍ତରରେ ଦେଖା ଯାଉଥିବା ଧନୀ ଦରିଦ୍ରର ଅସମାନତା, କୁସଂସ୍କାର, ଶିଶୁ ମନୋବିଜ୍ଞାନକୁ ଆଧାରିତ, ହାସ୍ୟରସାତ୍ମକ, ତଥା ବିଜ୍ଞାନଭିତ୍ତିକ କବିତାମାନ ରଚିତ ହୋଇ ଶିଶୁ ହୃଦୟଗ୍ରାହୀ ହୋଇପାରିଲା । ଶିଶୁ କବିତାର ବିକାଶଧାରାରେ ନିଜକୁ ସାମିଲ୍ କରି ନିରବଚ୍ଛିନ୍ନ ଭାବରେ ଯେଉଁ କେତେ ଜଣ ଶିଶୁ ସାହିତ୍ୟିକ ଶିଶୁକବିତାକୁ ପରିପୁଷ୍ଟ କରାଇବାରେ ସମର୍ଥ ହେଲେ, ସେମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ ।

ଓଡିଆ ଶିଶୁ ସାହିତ୍ୟର ଗବେଷକ ତଥା ସଫଳ ସ୍ରଷ୍ଟା ଭାବରେ ଡକ୍ଟର ସାହୁଙ୍କର ଦାନ ଅବିସ୍ମରଣୀୟ । ଶିଶୁର ଜ୍ଞାନବୃଦ୍ଧି ତଥା ମନୋରଞ୍ଜନ ନିମିତ୍ତ ସେ ବହୁ କବିତା, ଗଳ୍ପ, ମହାପୁରୁଷଙ୍କର ଜୀବନୀ ପୁସ୍ତକ ରଚନା କରିଛନ୍ତି । ଏ ଯାବତ୍ ତାଙ୍କ ଲିଖିତ ଶିଶୁ କବିତା ପୁସ୍ତକ ୯ଟି, ଗୋଟିଏ ଶିଶୁ ଗଳ୍ପ ଓ ଗୋଟିଏ ମହାପୁରୁଷଙ୍କ ଜୀବନୀ ସମ୍ବଳିତ ପୁସ୍ତକ ଆତ୍ମପ୍ରକାଶ କରି ପାଠକୀୟ ଶ୍ରଦ୍ଧା ଲାଭ କରିଛି । ଏ ପ୍ରବନ୍ଧଟି ତାଙ୍କ ଲିଖିତ କବିତା ପୁସ୍ତକଗୁଡିକୁ ଆଧାର କରି ରଚିତ ।

ଜନ୍ମସ୍ଥାନ କଟକ ଜିଲ୍ଲା କୁସୁପୁର । ପଲ୍ଲୀକବି ନନ୍ଦ କିଶୋର ବଳଙ୍କର ଗାଁରେ ଜନ୍ମ ଲାଭ କରିଥିବା ଏହି ସଫଳ ସ୍ରଷ୍ଟାଙ୍କର କବିତ୍ୱର ବିକାଶ ଘଟେ ଛାତ୍ରାବସ୍ଥାରୁ । ୧୯୭୨ ମସିହାରେ ଦଶମ ଶ୍ରେଣୀରେ ଅଧ୍ୟୟନ କଲାବେଳେ ସେ ଯେଉଁ କବିତାଟି ଲେଖିଥିଲେ, ତାହା ତତ୍କାଳୀନ 'ମାତୃଭୂମି' ଖବରକାଗଜରେ 'କିଶୋର ଫଉଜ'ରେ ସ୍ଥାନ ପାଇଥିଲା । ବାସ୍ ତା'ପରଠାରୁ ସେ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ନିଜର ଶିକ୍ଷାଗୁରୁ ନନ୍ଦକିଶୋର ସାମଲଙ୍କ ପ୍ରଚ୍ଛନ୍ନ ପ୍ରେରଣା ଲାଭ କରି ତାଙ୍କ ମନଗହନରେ ସୁପ୍ତ ହୋଇଥିବା କବିତ୍ୱର ଧାରାଟି ଶାଖାପ୍ରଶାଖା ମେଲି ପଲ୍ଲବିତ ହୋଇଛି । ୧୯୯୨ରୁ



Digitized by srujanika@gmail.com

୨୦୦୯ ମଧ୍ୟରେ ନଅଟି ଶିଶୁ କବିତା ସଂକଳନ ପ୍ରକାଶ ପାଇଛି । ଫୁଲ ଆମେ ଫୁଲ (୧୯୯୨), ଅଗଡ ବଗଡ ଝାଇଁ କି ଝୁମ୍ପା(୧୯୯୩), କାଳିଆ ବଳଦ ଗଳାରେ ଗଲା (୨୦୦୦), ଉଦୁ ଉଦୁମା(୨୦୦୩), ଇଞ୍ଚିଡି ମିଞ୍ଚିଡି(୨୦୦୭), ବିଲୁଆ ନନାର ବଣ ଭୋଜି(୨୦୦୮), ଖରା ବରଷା ଗୀତ(୨୦୦୮), ଗାଇଦିଅ ପଦେ ଗୀତ (୨୦୦୮), ହାତଦେବା ଭଲ କାମେ (୨୦୦୯) ।

ଏହି ନଅଟି କବିତା ସଂକଳନରେ ଯେଉଁ ସବୁ କବିତା ସ୍ଥାନ ପାଇଛି ସେଗୁଡିକ ସଂଖ୍ୟା ନିମ୍ନରେ ଦେବା ସମୀଚୀନ ହେବ । ୧. ଫୁଲ ଆମେ ଫୁଲ -୧୩ଟି, ୨. ଅଗଡ ବଗଡ ଝାଇଁ କି ଝୁମ୍ପା -୧୭ଟି, ୩. କାଳିଆ ବଳଦ ଗଳାରେ ଗଲା -୧୫ଟି, ୪. ଉଦୁ ଉଦୁମା -୧୭ଟି, ୫. ଇଞ୍ଚିଡି ମିଞ୍ଚିଡି - ୧୪ଟି, ୬. ବିଲୁଆ ନନାର ବଣ ଭୋଜି -୯ଟି, ୭. ଖରା ବରଷା ଗୀତ - ୧୨ଟି, ୮. ଗାଇଦିଅ ପଦେ ଗୀତ -୧୪ଟି, ୯. ହାତଦେବା ଭଲକାମେ -୧୧ଟି କବିତା ସ୍ଥାନ ପାଇଛି । ଏହି ସମସ୍ତ କବିତା ନିମ୍ନ ଲିଖିତ ପାଞ୍ଚଟି ବିଭାଗରେ ବିଭକ୍ତ କରାଯାଇପାରେ । ଯଥା :- ୧. ଋତୁ ସମ୍ବନ୍ଧୀୟ, ୨. କାହାଣୀଭିତ୍ତିକ, ୩. ଶିଶୁ ମନସ୍ତାତ୍ତ୍ୱିକ, ୪. ହାସ୍ୟ ରସାତ୍ମକ, ୫. ମୌଖିକ ଶିଶୁ ଗୀତ ପ୍ରଭାବିତ । ଏ ସବୁ ବିଭାଗକୁ ତନ୍ନ ତନ୍ନ କରି ସମୀକ୍ଷା କଲେ ଜଣାଯାଏ କବିତ୍ୱ ଧାରା ଏଥିରେ ଯେପରି ଭାବରେ ଛଳ ଛଳ ହୋଇ ପ୍ରବାହିତ ହୋଇଛି ଜଣେ ଗବେଷକଙ୍କର ଗବେଷଣାର ଫଳଶ୍ରୁତି ଭାବରେ ଏଗୁଡିକ ଘଷିମାଜି ହୋଇ ସୁନା ପାଲଟି ଯାଇଛନ୍ତି ।

**୧- ଋତୁ ସମ୍ବନ୍ଧୀୟ**

ବର୍ଷକ ମଧ୍ୟରେ ବିଭିନ୍ନ ଋତୁର ଚିତ୍ର କବିମାନସକୁ ଆଲୋଡିତ କରେ । ତାହାର ରୂପଚିତ୍ରକୁ ଦେଖି କବି ଅତ୍ମହରା ହୁଏ । ତେଣୁ ସେହି ପ୍ରକୃତିର କମନୀୟ ରୂପ ସମ୍ଭାରକୁ କବିତାରେ ପ୍ରକାଶ କରିବାକୁ କବି ବ୍ୟାକୁଳ ହୋଇଉଠେ । ଏହି ପରିପ୍ରେକ୍ଷୀରେ ଡକ୍ଟର ସାହୁଙ୍କର ଏହି ଧରଣର କବିତା ଫୁଲ ଆମେ ଫୁଲ ସଂକଳନରେ ସର୍ବମୋଟ ସାତଟି ଏବଂ ଖରାବରଷାର ଗୀତ ସଂକଳନରେ ସମସ୍ତ କବିତା ଅନ୍ତର୍ଭୁକ୍ତ । ପହିଲି ବରଷାର ଟପଟପ ମେଘ ଧରାପୃଷ୍ଠର ଗ୍ରୀଷ୍ମର ପ୍ରଖର କିରଣ, ବୈଶାଖର ଖରା, ଅଥବା ଫଗୁଣର ମୃଦୁମଳୟ ପବନ, ଏସବୁ କବିଙ୍କୁ ଆନମନା କରିଛି । ପହିଲି ବରଷାର ଚିତ୍ର ଦେବାକୁ ଯାଇ ସେ ଲେଖିଛନ୍ତି -

ମେଘ ବରଷିଲା ଟପର ଟପର
ବେଙ୍ଗ ଡାକ ଦେଲେ କଟର କଟର
ଗାଆଁ ସଡକଟା ପଚର ପଚର
ଗୋଡ ଟିପି ଟିପି ବାଟୋଇ ଚାଲନ୍ତି
ମନ ତାଙ୍କ ଘର ଧରିଲା
ପହିଲି ବରଷା ଝରିଲା ॥


Digitized by srujanika@gmail.com

(ପହିଲି ବରଷା ଝରିଲା, ଫୁଲ ଆମେ ଫୁଲ, ପୃ:୬)

ଖରାଦିନର ମଜା କଥା ଉଲ୍ଲେଖ କରିବାକୁ ଯାଇ ସେ ଲେଖିଛନ୍ତି ।

ତାଳ ସଜ କଥା ଶୁଣିଲେ
ପିଲା କଥା ଛାଡ଼, ବୁଢାମାନେ ପରା
ଖାଇବାକୁ ସୁଖ ମଣିଲେ ॥
(ଖରାଦିନ କେଡ଼େ ମଜାରେ, ଖରା ବରଷା ଗୀତ, ପୃ: ୧୪)

ତେବେ ଖରାବରଷା ଗୀତ ସଂକଳନଟିରେ କେବଳ ଖରାକୁ ନେଇ ଛଅଟି କବିତା ଓ ବରଷାକୁ ନେଇ ଛଅଟି କବିତା ସ୍ଥାନ ପାଇଛି । ଏପରି ଏକ ନିଆରା ମନୋଜ୍ଞ ଋତୁ ଭିତ୍ତିକ କବିତା ସଂକଳନ ଅନ୍ୟ ଲେଖକଙ୍କ ଠାରେ ମିଳେ ନାହିଁ ।

**୨- କାହାଣୀ ଭିତ୍ତିକ :**

ଆମ ପିଲାମାନେ କାହାଣୀ ଶୁଣିବାକୁ ଭଲ ପାଆନ୍ତି । ସେହି କାହାଣୀ ଯଦି ଗୀତ ଆକାରରେ ପରିବେଷଣ ହୁଏ, ତେବେ ତାହା ଅଧିକ ମନଛୁଆଁ ହୋଇଉଠେ । ସେହିପରି ଏକ କାହାଣୀ ଭିତ୍ତିକ କବିତା ସଂକଳନ ହେଲା-ବିଲୁଆ ନନାର ବଣଭୋଜି, ଏଥିରେ ଥିବା ବଗ ଓ ଗଧିଆ, ବିଲୁଆ ନନାର ବଣଭୋଜି, ଭଲା ବାହାଘର ହେଲାରେ, ପିଲାଟିଏ ସେତ ପିଲାଟିଏ ଆଦି ସଂପୂର୍ଣ୍ଣ କାହାଣୀ ଧର୍ମୀ ହୋଇ ଉଠିଛି । ଏଥିରେ ଥିବା ନୀତି ଶିକ୍ଷା ହିଁ ପିଲାଙ୍କୁ ଉଚିତ୍ ମାର୍ଗରେ ପରିଚାଳିତ କରାଇବାରେ ସହାୟକ ହୁଏ । ବୀର ବାଳକ ବାଜି ରାଉତର ଆତ୍ମବଳି କଥାକୁ ଡକ୍ଟର ସାହୁ ସୁନ୍ଦର ଭାବରେ ଉପସ୍ଥାପନ କରି ଶିଶୁ ମନରେ ଦେଶପ୍ରେମର ଭାବଧାରା ଖେଳାଇ ଦେଇଛନ୍ତି । ତାର ଅମର ଗାଥା, ସଭ୍ୟତା ଥିବା ଯାଏ ମନୁଷ୍ୟ ମନେ ପକାଉଥିବେ । ତେଣୁ ସେ ଲେଖିଛନ୍ତି -

ପିଲାଟିଏ ସେତ ପିଲାଟିଏ
ତାହା ପରି ଆଉ କାହିଁ କିଏ
ଯେତେ ଦିନ ଥିବ ଆମରି ସଭ୍ୟତା
ମନେ ପଡୁଥିବ ତାର ଗୁଣ ଗାଥା
ହୋଇଥାଉ ପଛେ ସ୍ମୃତିଟିଏ ।
(ପିଲାଟିଏ ସେତ ପିଲାଟିଏ,ବିଲୁଆ ନନାର ବଣଭୋଜି, ପୃ: ୨୯)

ଉପକାରୀର ଉପକାର କଥା ମନେ ନ ରଖିଲେ ପରବର୍ତ୍ତୀ କାଳରେ ଲୋକ ହଟହଟା ହେବା ସାର ହୁଏ । ଏହି ନୀତିବାଣୀ 'ବଗ ଓ ଗଧିଆ' କବିତାରେ ରୂପାୟିତ ହୋଇଛି । ଏପରି ଗଳ୍ପରେ ଥିବା ଏହି କାହାଣୀକୁ ଆଧାରକରି ଏ କବିତାଟି ରଚିତ ହୋଇଛି । ତେବେ ଏ ସବୁ କବିତାରେ ପ୍ରଚ୍ଛଦପଟରେ କାହାଣୀ କହିବାର ଧାରାଟି ଲୁକ୍‌କାୟିତ ହୋଇ ରହିଥିବାରୁ ତାହା ଶିଶୁ ମନଛୁଆଁ ହୋଇପାରିଛି ।



Digitized by srujanika@gmail.com

### ୩- ଶିଶୁ ମନସ୍ତତ୍ତ୍ୱ ଭିତ୍ତିକ:

ଶିଶୁ ଭଲମନ୍ଦ କିଛି ବିଚାର କରେନା । ତାକୁ ଯାହା ଭଲ ଲାଗେ, ସେ ତାହା ପ୍ରତି ସ୍ୱତଃ ଆକର୍ଷିତ ହୋଇଉଠେ । ଶିଶୁ ମନସ୍ତତ୍ତ୍ୱକୁ ଲକ୍ଷ୍ୟ କରି କବିତା ରଚନା କରାଗଲେ, ତାହା ତା' ପାଇଁ ବେଶ୍ ଆକର୍ଷଣୀୟ ହୋଇଉଠେ । ତେବେ ଶିଶୁ ମନସ୍ତତ୍ତ୍ୱରେ ପରିଚୟବୋଧ, ଶିଶୁ କଳ୍ପନା, ମାନବତ୍ୱ ଆରୋପ ଭଳି ଉପାଦାନ ରହିବା ସର୍ବାଦୌ ଆବଶ୍ୟକ । ଡକ୍ଟର ସାହୁଙ୍କର କବିତାରେ ଶିଶୁ ମନସ୍ତତ୍ତ୍ୱର ଧାରାଟି ପୂର୍ଣ୍ଣ ରୂପେ ପ୍ରତିଫଳିତ ହୋଇଛି । ଡକ୍ଟର ସାହୁ ଶିଶୁର ଜ୍ଞାନବୃଦ୍ଧି ପାଇଁ ତା' ପରିବେଶରେ ଥିବା ଚିହ୍ନା କଥା, ଜୀବଜନ୍ତୁ, ଗଛଲତା, ପଶୁପକ୍ଷୀକୁ ନେଇ କବିତାମାନ ରଚନା କରିଛନ୍ତି । ଗାଇଦିଅ ପଦେ ଗୀତରେ ଥିବା ସାଧବ ବୋହୂ, ବାଇଚଢେଇ, ତାମରା କାଉ, ଶଙ୍ଖଚିଲ ଭାଇ, ବିଲୁଆ ନନା, ଆଦି କବିତା ତା'ର ପ୍ରକୃଷ୍ଟ ଉଦାହରଣ । ସତେ ଯେପରି ପିଲାଟି ନିଜର ପରି ପଚାରୁଛି -

ନାଲି ଗୁଲୁ ଗୁଲୁ ସାଧବ ବୋହୂ
କେଉଁ ସାଧବର ଅଟୁ ତୁ ବୋହୂ
ଧାଇଁ ଧାଇଁ ଆଉ ନ ଯାଇ କାହିଁ
ମୋତେ ଖାଲି ଟିକେ ଦେ ତୁ କହି ।
(ସାଧବବୋହୂ, ଗାଇଦିଅ ପଦେ ଗୀତ, ପୃ:୬)

ଶିଶୁ କଳ୍ପନାକୁ ଆଧାର କରି ସେ ମଧ୍ୟ ଅନେକ କବିତା ଲେଖିଛନ୍ତି । "କାହିଁକି ଏମିତି ହୁଏ" ଏହି କଳ୍ପନାର ଅନ୍ତର୍ଭୁକ୍ତ । ତା' ଚତୁଃପାର୍ଶ୍ୱରେ ଥିବା ପଶୁପକ୍ଷୀ, ଗଛଲତାକୁ ମଣିଷ ପରି ଭାବି ବ୍ୟବହାର କରେ । ଏପରି କବିତାରେ ମାନବତ୍ୱ ଆରୋପିତ ହୋଇଥାଏ । ଏଇ ଯେମିତି କୋଇଲି ନାନୀ, ଶଙ୍ଖଚିଲ ଭାଇ, ବେଙ୍ଗୁଲି ନାନୀ, ନିଦମାଉସୀ ସାଜିଛି, ବେଙ୍ଗୁଲୀ ନାନୀକୁ ଇନ୍ଦ୍ରର ରାଣୀ ବୋଲି କଳ୍ପନା କରି ସେ ଲେଖିଛନ୍ତି -

ବେଙ୍ଗୁଲୀ ନାନୀତ ଇନ୍ଦର ରାଣୀ
ଗାଇ ଦେଲେ ଗୀତ ବରଷେ ପାଣି ।
(ବେଙ୍ଗୁଲୀ ନାନୀ, ଗାଇଦିଅ ପଦେ ଗୀତ, ପୃ:୧୧)

### ୪- ହାସ୍ୟ ରସାତ୍ମକ:

ଶିଶୁ ମନରେ ହସର ଧାରା ଖେଳି ଗଲେ ସେ ନ ହସି ରହି ପାରେନା । ଶିଶୁକୁ ହସାଇବା ପାଇଁ କବି ଯେଉଁ ମଉଜିଆ କଥାବସ୍ତୁକୁ ଗ୍ରହଣ କରେ, ତାହା ପାଠ କଲା ମାତ୍ରେ ଶିଶୁ ହସି ହସି ବେଦମ ହୋଇଯାଏ । ଡକ୍ଟର ସାହୁଙ୍କର କବିତାରେ ଯେଉଁ କିଛି କବିତା ହାସ୍ୟରସରେ ଭରପୂର, ତାହା ଶିଶୁ କାହିଁକି ଯେ କେହି ପାଠକ ପ୍ରାଣରେ ନିରୁତା



Digitized by srujanika@gmail.com

ହସର ଖୋରାକ ଯୋଗାଇଥାଏ ।

ଏହି ହାସ୍ୟରସାତ୍ମକ କବିତା ମଧ୍ୟରେ ଫୁଲ ଆମେ ଫୁଲରେ, ପଲେଇର କଟକ ବୁଲା, ଆଈବୁଢ଼ୀ ଆଉ ଅଜାବୁଢ଼ା, ଅବଧାନ ହେଲେ ସାବଧାନ, ବିଲୁଆ ନନାର ବଣଭୋଜିରେ ସ୍ଥାନିତ ଆମରି ଗାଆଁର ନବୀନ ପଣ୍ଡା, ସନେଇ ଛାଡିଲା ଗଞ୍ଜେଇ ଆଦି କବିତାରେ ହାସ୍ୟରସର ଧାରା ଭରପୂର ହୋଇ ରହିଛି । ଏହି ସବୁ କବିତାରେ ହାସ୍ୟରସ ସହିତ ନୀତିଶିକ୍ଷାଟିଏ ରହିଥିବାରୁ ତାହା ପିଲାଙ୍କୁ ବେଶ୍ ଆନନ୍ଦ ଦେଇପାରିଛି । ଏଇ ଯେମିତି -

ସେଇ ଦିନଠାରୁ ଚକୁଳି ଖିଆଟି
ଅଜାଙ୍କର ଶେଷ ହୋଇଲା,
ଚକୁଳିର ନାଆଁ ଶୁଣିଲେ ଅଜାଙ୍କ
ପିଳେହି କି ପାଣି ହୋଇଲା ।
(ଅଜାବୁଢ଼ାର ଚକୁଳି ଖିଆ, ଫୁଲ ଆମେ ଫୁଲ, ପୃ:୨୪)

**୫- ମୌଖିକ ଗୀତ ପ୍ରଭାବିତ :**

ଲୋକ ସାହିତ୍ୟର ମୂଳ ଆଧାର ମୌଖିକ ଗୀତ । ଏହି ମୌଖିକ ଗୀତ କାହିଁ କେଉଁ କାଳରୁ ପୁରୁଷ ପୁରୁଷ ଧରି ପରଂପରା କ୍ରମେ ଚଳିଆସିଛି । ଏ ସବୁ କବିତାକୁ ଶୁଣି ପିଲାମାନେ ବେଶ୍ ଉତ୍‌ଫୁଲ୍ଲିତ ହେବା ସହିତ ସର ଓ ତାଳ ଦେଇ ଗୀତ ଗାଇ ବସନ୍ତି । ଏଗୁଡିକ ସେମାନଙ୍କର ମନରେ ଛାପି ହୋଇ ରହିଯାଏ ବହୁକାଳ ପାଇଁ । ତେବେ ଡକ୍ଟର ସାହୁ ମୌଖିକ ଶିଶୁ କବିତା ଉପରେ ଗବେଷଣା କରିଛନ୍ତି । ନିଜ ଗବେଷଣା ଲବ୍ଧ ଫଳକୁ ଆପଣା କବିତାର ପ୍ରୟୋଗଶାଳାରେ ପୂର୍ଣ୍ଣତଃ ପରୀକ୍ଷା ନିରୀକ୍ଷା କରିବାକୁ ଆଗେଇ ଆସିଛନ୍ତି । ଯାହା ଫଳରେ ଉଦୁଉଦୁମା, ଇଞ୍ଚିତି ମିଞ୍ଚିତି, ଅଗଡ ବଗଡ ଝାଇଁକି ଝୁମ୍ପା, କାଳିଆ ବଳଦ ଗଳାରେ ଗଳା ଆଦି କବିତାରେ ଥିବା ଅଧିକାଂଶ କବିତା ଏହି ମୌଖିକ ଗୀତ ପ୍ରଭାବିତ କବିତା ରୂପେ ଆତ୍ମ ପ୍ରକାଶ କରିଛି । ଟିକି ଟିକି ଧାନ ଶହେ ଭରଣ, ଇଞ୍ଚିତି ମିଞ୍ଚିତି, ଖରା ହେଉଛି ମେଘ ହେଉଛି, ଉଦୁ ଉଦୁମା, ଇଟିକିଲି ମିଟିକିଲି, ଝୁଲରେ ହାତୀ ଝୁଲ୍, ଓସ୍ତ ପତର ପାନିଆ, କଇଞ୍ଚ କାକୁଡି ପିତା ନଳିତା । ଆଇକମ୍ ବାଇକମ୍ ତାରା ତୂରୀ, ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ, ଚୁନୁ ମୁନୁ ଖଇର କାଠି, କାଳିଆ ବଳଦ ଗଳାରେ ଗଳା, ନଅଶ ନଉ, ଉଡି ଗଲେ ଗେଣ୍ଡାଳିଆ, ନାଉ ଧୁଡୁକିରେ ନାଉ ଧୁଡୁକି ଆଦି କବିତାରେ ପୂର୍ଣ୍ଣତଃ ମୌଖିକ ଶିଶୁ ଗୀତର ପ୍ରଭାବ ପଡିଛି । ଏ ସବୁ କବିତାର ଆରମ୍ଭ ମଧ୍ୟ ମୌଖିକ ଗୀତର ଆରମ୍ଭରୁ ହେଲା ପରି ହୋଇଛି । ଯେମିତି -

"ଆଇକମ୍ ବାଇକମ୍ ତାରାତୂରୀ
ଆସ ଆମେ ଖେଳିବା ଚକାଭଉଁରୀ ।"



Digitized by srujanika@gmail.com

“କଇଞ୍ଛ କାକୁଡି ପିତା ନଳିତା
ମାଆ ବଲୁଥିଲେ ବସି ବଳିତା ।”
“ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ହସ ଲଡୁ ତୁମେ କଣ ସତେ ଅବା ଖାଇଛ ?”
“ଘୁମୁରୁ ଘୁମୁରୁ ଘୁମୁରେ ପାରା
ଆକାଶରେ ଦେଖ ଅନେକ ତାରା ।”
“ଝୁଲରେ ହାତୀ ଝୁଲ୍
ଚରକି ଦୋଳିରେ ଘାଇଁ ଘାଇଁ କରି ବୁଲ୍ ।” ଇତ୍ୟାଦି ।

**ଗାଆଁ ଓ ମାଆର କଥା**

ଏ ସବୁ ସତ୍ତ୍ୱେ କବି ନିଜର ଜନ୍ମମାଟି ଗାଁ ଭୂଇଁର କଥା କହିବାକୁ ଭୁଲିଯାଇ ନାହାନ୍ତି । ମାଟିର ଏଇ ସର୍ଗପୁରୀ ଗାଁର କଥା ତାଙ୍କୁ ଆନମନା କରିଛି । ତା'ର ନଈ ତୋଟା ବିଲବଣ ଖେଳପଡିଆର ଦୃଶ୍ୟ ଯେଉଁଠି ରହିଲେ ମଧ୍ୟ ହୃଦୟରେ ପ୍ରତିଫଳିତ ହୋଇଥାଏ । ତେଣୁ ସେ ଲେଖନ୍ତି ।

ମାଟିର ସେଇ ସରଗ ଭୂଇଁ
ତା' ପରି କେହି ନାହିଁ ।
ଆସ ସଭିଏଁ ଶପଥ ନେବା
ତାହାରି ସେବା ପାଇଁ ।।
(ଗାଆଁଟି ମୋର ଭାରି ସୁନ୍ଦର, ଗାଇଦିଅ ପଦେ ଗୀତ, ପୃ:୨୬)

ଜନ୍ମଭୂମି ଜନନୀ ମଧ୍ୟ ତାଙ୍କୁ ବେଶ୍ ଆନମନା କରିଛନ୍ତି । ଦୂରରେ ଥାଇ ସେ ନିଜ ମାଆର ସ୍ମୃତିକୁ ଝୁରି ହୋଇଛନ୍ତି । ଅଝଟ ହେଲା ବେଳେ ଜହ୍ନମାମୁଙ୍କୁ ଦେଖାଉଥିବାର ବାଲ୍ୟସ୍ମୃତିକୁ ମନେ ପକାଇ ସେ ଲେଖିଛନ୍ତି -

ଅଝଟ କଲେ ଖେଳିବା ପାଇଁ
ଜହ୍ନମାମୁଙ୍କୁ ଦେଖାଇ ଦେଇ
କହେ ମୋ ବାବୁ ସାଙ୍ଗରେ ଟିକେ
ଖେଳିବୁ ଓହ୍ଲାଇ ଆ...
ସେଇ ପରା ମୋ ମାଆ ।
(ସେଇ ପରା ମୋ ମାଆ, ଗାଇଦିଅ ପଦେ ଗୀତ, ପ:୨୭)

**ଶିଶୁ ଅଧିକାରର ମର୍ମବାଣୀ :**

ଆଜିର ଶିଶୁ କାଲିର ସୁନାଗରିକ । ତା'ର ଅଧିକାର ସେ ପାଇବା ଦରକାର । ସେ ଫୁଲ ପରି ବାସି ଉଠିବ, ପର ସେବାରେ ଜୀବନ ଦେବ ଓ ମିଠାକଥାରେ ମନ


Digitized by srujanika@gmail.com

ମୋହିବ । ସେ ଗଛଟିଏ ପୋତି ପରିବେଶର ସୁରକ୍ଷା କରିବ । ତେଣୁ ତାକୁ ସଚେତନ କରିବା ପାଇଁ କବି ଗାଇଛନ୍ତି -

ଆସରେ ଆସ
ସଭିଏଁ ମିଶି
ନିଜ ହାତରେ
ଗଛଟେ ଦେବା ପୋତି,
ହସିଉଠିଲେ
ପରିବେଶଟି
ସବୁ ଦରବ
ଫେରିବ ଗୋଟି ଗୋଟି ।

(ଗଛଟେ ଦେବା ପୋତି, ବିଲୁଆ ନନାର ବଣଭୋଜି, ପୃ:୨୬)

ଶିଶୁର ନ୍ୟାର୍ଯ୍ୟ ଅଧିକାର ସେ ପାଠ ପଢିବ, ଦେଶ ବିଦେଶର କଥା ଜାଣିବ, ପାଠ ପଢିଲେ ସବୁ ଜାଣି ନୂଆ ବାଟ ଖୋଜିବ । ତେଣୁ ପାଠ ପଢିବାକୁ ଆହ୍ୱାନ ଦେଇ କବି ଲେଖିଛନ୍ତି -

ଆସରେ ଆସ ଭାଇ ଭଉଣୀ
ପଢିବା ଆସ ପାଠ,
ନୂଆ ଦୁନିଆ ଗଢିବା ଆମେ
ନଥିବ ଯହିଁ ଫାଟ ।

(ପଢ଼ିବା ଆମେ ପାଠ, ହାତ ଦେବା ଭଲ କାମେ, ପୃ:୧୪)

ସମାଜରେ ପୁଅଝିଅ ଭେଦାଭେଦ ରହିବ ନାହିଁ । ଝିଅ ମଧ ପୁଅ ପରି ବହୁତ କାମ କରି ଦୁନିଆରେ ନାଁ କରିବ । ତେଣୁ ସେହି ଭାବଧାରାକୁ ନେଇ ସେ ଲେଖିଛନ୍ତି -

ବଡ ହେଲେ ଝିଅ କେତେ ନୂଆ କାମ
କରିବ ଦୁନିଆ ପାଇଁ,
ପୁଅ ଆଉ ଝିଅ ସଭିଏଁ ସମାନ
ଭେଦ ଭାବ ରଖ ନାହିଁ ।

(ଝୁମୁରୁ ଝୁମୁରୁ ଝୁମୁକି କଠଉ, ହାତ ଦେବା ଭଲ କାମେ, ପୃ:୧୬)

ସବୁପିଲା ସମାନ ଅଧିକାର ପାଇବେ । କେହି ଭୋକ ଉପାସରେ ରହି ଲୁହ ଗଡାଇବେ ନାହିଁ । ସମସ୍ତେ ମିଳିମିଶି ରହିବେ । ସମସ୍ତଙ୍କର ସମାନ ଅଧିକାର ରହିଛି । ସମସ୍ତେ ଭଗବାନଙ୍କର ସନ୍ତାନ । ଏଣୁ ଭେଦାଭେଦ ଭାବ ଦୂର କରିବାକୁ ଯାଇ ସେ ଲେଖିଛନ୍ତି -

ଭେଦାଭେଦ ହେବ ଦୂର



Digitized by srujanika@gmail.com

ନଥିବ ଆପଣା ପର
ସଭିଏଁ ପାଇବେ ସମାନ ସୁବିଧା
ହସିବ ସୁନା ସଂସାର ।
(କାହିଁକି ଏମିତି ହୁଏ, ହାତ ଦେବା ଭଲ କାମେ, ପୃ:୨୫)

ଆଜି ଶିଶୁ ଶ୍ରମିକ ପ୍ରଥା ଉଚ୍ଛେଦ ପାଇଁ ଦେଶରେ କଡା ଆଇନ୍ ପ୍ରଚଳନ ହୋଇଛି । ତେଣୁ ଶିଶୁ ଶ୍ରମିକ ମନରେ ଦେଖା ଦେଉଥିବା ଖେଦକୁ ପରିପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି-

ଆମେ ସବୁ ପରା
କୁନି କୁନି ପିଲା
ସାଜିଛୁ କା ପାଇଁ ଶିଶୁ ଶ୍ରମିକ ?
କୁନି କୁନି ହାତେ
ଭାରି ଭାରି କାମ
କରୁଅଛୁ ପରା ଆମେ ଦୈନିକ ।
x x x
" ତଥାପି ତ କିଏ
କହେ ନାହିଁ କେବେ
ଆମ ପାଇଁ ଆହା ପଦଟିଏ ।
କହିଲ ଆମକୁ
ଆମେ କ'ଣ ନୁହଁ
ତୁମ ପିଲା ପରି ପିଲାଟିଏ ॥"
(ଆମ ପିଲାବେଳ କିଏ ନେଲା, ହାତ ଦେବା ଭଲ କାମେ, ପୃ:୨୭/୨୮)

ଡକ୍ଟର ବସନ୍ତ କିଶୋର ସାହୁଙ୍କ କବିତାଗୁଡିକର ଭାଷା ଯେପରି ସରଳ, ସାବଲୀଳ ସେପରି ବୋଧଗମ୍ୟ । କବିତାରେ ଅନେକ ସ୍ଥାନରେ ଦ୍ୱିତ ଶବ୍ଦର ପ୍ରୟୋଗ କବିତାକୁ ଶିଶୁ ହୃଦୟ ଗ୍ରାହୀ କରାଇପାରିଛି । ନିତି ଦିନିଆ ଜୀବନରେ ଘଟୁଥିବା ଘଟଣାବଳୀକୁ ନେଇ ସେ ଯେଉଁ କବିତାମାନ ରଚନା କରିଛନ୍ତି । ତାହା ବେଶ୍ ଉଚ୍ଚକୋଟୀର ହୋଇପାରିଛି । ଆପଣାର ଗବେଷଣା ଲବ୍ଧ ଜ୍ଞାନର ପ୍ରୟୋଗ ହିଁ ତାଙ୍କ କବିତାର ପ୍ରୟୋଗଶାଳାରେ ବାରମ୍ବାର ପରିକ୍ଷିତ ହୋଇ ଯୁଗୋପଯୋଗୀ ହେବା ସହିତ ଶିଶୁ ମନଛୁଆଁ ହୋଇ ପାରିଛି । ସାଂପ୍ରତିକ କାଳରେ ଶିଶୁ କବିତା ରଚନା କରୁଥିବା ଅନ୍ୟାନ୍ୟ କବିଙ୍କ ତୁଳନାରେ ଡକ୍ଟର ସାହୁଙ୍କର କବିତା ସମୂହ ବେଶ ଉଚ୍ଚମାନର ।



ଭୋଇନଗର, ଭୁବନେଶ୍ୱର



Digitized by srujanika@gmail.com

# ଡକ୍ଟର ସାହୁଙ୍କ ଶିଶୁ ସାହିତ୍ୟ ଅଧ୍ୟୟନର ଉପଯୋଗିତା

**ନନ୍ଦ କିଶୋର ସିଂହ**

ଡକ୍ଟର ବସନ୍ତ କିଶୋର ସାହୁ ମୋ ପାଇଁ ଏକ ସଶ୍ରଦ୍ଧ ଉଚ୍ଚାରଣ । ମୁଁ ତାଙ୍କୁ ଶ୍ରଦ୍ଧା କରେ ବୟସରେ ସାନ ଦୃଷ୍ଟିରୁ ସମ୍ମାନ କରେ ଶିଶୁ ସାହିତ୍ୟ ପ୍ରତି ତାଙ୍କର ଗଭୀର ଆସକ୍ତି ଓ ଅନୁରାଗ ପାଇଁ । ଦୀର୍ଘ ଚାରି ଦଶନ୍ଧି ଧରି ନିରବଚ୍ଛିନ୍ନ ଭାବରେ ଓଡିଆ ଶିଶୁ ସାହିତ୍ୟର ଜଣେ ଲବ୍ଧପ୍ରତିଷ୍ଠ ସ୍ରଷ୍ଟା ସାଙ୍ଗକୁ ଗବେଷଣା, ଆଲୋଚନା, ସଂଗଠନ, ସଂକଳନ କ୍ଷେତ୍ରରେ ସେ ତାଙ୍କର ପାରଦର୍ଶିତା ପ୍ରତିପାଦନ କରି ଆସିଛନ୍ତି ।

ସୁଦୂର ସୁନାବେଡାରେ ରହି ସେ ସେଠାରେ ବିଭିନ୍ନ ସାରସ୍ୱତ ସଂଗଠନ ସହ ଆନ୍ତରିକ ସଂପୃକ୍ତି ସହ ଓଡିଆ ସାହିତ୍ୟର ବିକାଶ ଧାରାରେ ନିଜକୁ ସାମିଲ କରିଛନ୍ତି । ତାଙ୍କର ପୁସ୍ତକଗୁଡିକ ମଧ୍ୟରୁ ଅଧିକାଂଶ ଶିଶୁ ସାହିତ୍ୟ କିମ୍ବା ଶିଶୁ ସାହିତ୍ୟ ଉପରେ ଗବେଷଣାତ୍ମକ ଆଲୋଚନା ।

ଶିଶୁ ସାହିତ୍ୟ ଉପରେ ବହୁ ବ୍ୟକ୍ତି ଡକ୍ଟରେଟ କରିବା ଏକ ଶୁଭଲକ୍ଷଣ । ଡ. ମନୀନ୍ଦ୍ର ମହାନ୍ତି ଏ କ୍ଷେତ୍ରରେ ପଥପ୍ରଦର୍ଶକ ହେଲା ବେଳେ ଡକ୍ଟର ସାହୁ ଜଣେ ସଂଗ୍ରାମୀ ସୈନିକ ଭାବେ ଶିଶୁ ସାହିତ୍ୟର ବିକାଶ ସାଧନାରେ ଚିର ଜାଗ୍ରତ । ମୋର ସୌଭାଗ୍ୟ ମୋର ଶିଶୁ ସାହିତ୍ୟ ଉପରେ ସେ ଏକ ଗବେଷଣାତ୍ମକ ପ୍ରବନ୍ଧ ଲେଖିଛନ୍ତି । ଯାହାକି କେତୋଟି ପତ୍ରପତ୍ରିକାରେ ପ୍ରକାଶ ସାଙ୍ଗକୁ କୋରେଇ ମଣ୍ଡଳ ସାହିତ୍ୟ ସଂସଦ ତରଫରୁ ସଂପାଦିତ ନନ୍ଦ କିଶୋର ପରିକ୍ରମା ପୁସ୍ତକରେ ସ୍ଥାନିତ ହୋଇଛି । ଅତି ଆନନ୍ଦର କଥା ସେ କୋରେଇ ମଣ୍ଡଳ ସାହିତ୍ୟ ସଂସଦରୁ ଶିଶୁ ସାହିତ୍ୟ ପାଇଁ କସ୍ତୁରୀ ପୁରସ୍କାର ପାଇଥିବା ବେଳେ ତାଙ୍କ ସହ ରାତ୍ରୀ ଯାପନ ଏବଂ ଅନ୍ତରଙ୍ଗ ଆଲୋଚନାର ସୁଯୋଗ ପାଇଥିଲି ।

ସେଇ ଆଲୋଚନାରୁ ମୁଁ ଶୁଣି ପାରିଥିଲି ଶିଶୁ ସାହିତ୍ୟ ପ୍ରତି ତାଙ୍କର ଗଭୀର ଅନ୍ତଃଦୃଷ୍ଟି ତଥା ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ।

ତାଙ୍କ ରଚିତ ମୌଳିକ ପୁସ୍ତକ ପଢିବାର ସୁଯୋଗ ପାଇନଥିଲେ ବି ତାଙ୍କର ଅନେକ ଗୁଡିଏ ଆଲୋଚନା ପୁସ୍ତକ ମୋ ଦୃଷ୍ଟି ଗୋଚରକୁ ଆସିଛି । ସେଗୁଡିକ ମଧ୍ୟରୁ



Digitized by srujanika@gmail.com

'ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ', 'ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ', ଓଡିଆ ଶିଶୁ ସାହିତ୍ୟ ସଂପର୍କିତ ଗବେଷଣାତ୍ମକ ପ୍ରବନ୍ଧ ପାଠ କରିବା ଏକାନ୍ତ ଆବଶ୍ୟକ ।

ଡକ୍ଟର ସାହୁ ନିଜେ କହିଛନ୍ତି-"ଏକ ଅଜଣା ଓ ଅଦୃଷ୍ଟ ଶକ୍ତିର ପ୍ରରୋଚନାରେ ମୁଁ କଲମ ଚଳାଏ, ଗଳ୍ପ କବିତା ପ୍ରବନ୍ଧ ଓ ସମାଲୋଚନା-କିନ୍ତୁ ଅଧିକ ଲେଖେ ଶିଶୁ ସାହିତ୍ୟ । ଶିଶୁ ସାହିତ୍ୟରେ ମୁଁ ନିଜକୁ ଯେପରି ବ୍ୟକ୍ତ କରିପାରେ ଅନ୍ୟ ବିଭାଗରେ ସେପରି ନୁହେଁ । ୧୯୮୧-୮୨ ମସିହାର କଥା ଆମ ଗାଆଁ ପାଖ ବାଲିଚନ୍ଦ୍ରପୁର ବଜାରରେ ବେଳାଭୂମି ପ୍ରେସ୍ ସ୍ଥାପନ ହେଲା । ପୁଣି ଶିଶୁ ପତ୍ରିକାଟିଏ ପ୍ରକାଶ କରିବା ପାଇଁ ମୋ ମନ ଭିତରର ସୁପ୍ତ ଚେତନା ଜାଗ୍ରତ ହେଲା ।

ଉପରୋକ୍ତ ଉଦ୍ଧୃତାଂଶ ପ୍ରମାଣିତ କରେ ଡକ୍ଟର ବସନ୍ତ ସାହୁ ମନ ପ୍ରାଣ ଦେଇ ଶିଶୁ ସାହିତ୍ୟକୁ ଭଲ ପାଆନ୍ତି । ଏଣୁ ତାଙ୍କ ଲେଖନୀରୁ ଶିଶୁମାନଙ୍କ ପାଇଁ ଯାହା ନିସୃତ ହୁଏ ସେଥିରେ ଶିଶୁରାଇଜର ବିକାଶ ଓ ମଙ୍ଗଳ ସାଧିତ ହୋଇଥାଏ । ତାଙ୍କ ସଂପାଦିତ ପତ୍ରିକା'ବଗଲାବଗୁଲୀ'(୧୯୮୧ ରୁ ୧୯୮୪ ରଜ ସଂଖ୍ୟା ଯାଏ ପ୍ରକାଶିତ) । ଯିଏ ପଢିଛି ସେ ଅନୁଭବ କରିପାରିଛି ଶିଶୁ ସାହିତ୍ୟ ସଂପାଦନା କେତେ କଷ୍ଟକର ।

ଯେଉଁମାନେ ଶିଶୁ ସାହିତ୍ୟ ପ୍ରତି ଅନୁରାଗୀ, ଯେଉଁମାନେ ଶିଶୁ ସାହିତ୍ୟର ମୌଳିକ ସ୍ରଷ୍ଟା ସେମାନେ ଉତ୍ତମ ଶିଶୁ ସାହିତ୍ୟ ପତ୍ରିକା ପ୍ରକାଶ କରିପାରିବେ । ଉଦାହରଣ ଦେବାରେ ଦ୍ୱିଧା ନାହିଁ । ମନପବନ, ଝୁମୁକା, ଅତି ଆପଣାର ଟିକି ପିଲାଟି, ମୀନାବଜାର ଆଦୃତ ହେବା ପଛରେ ସେମାନଙ୍କର ଶିଶୁ ସାହିତ୍ୟ ପ୍ରେମୀ ତଥା ବରିଷ୍ଠ ଶିଶୁ ସାହିତ୍ୟିକଙ୍କ ସଂପାଦନା ରହିଛି ।

ଡକ୍ଟର ସାହୁ କେବଳ ଶିଶୁ ସାହିତ୍ୟ ରଚନା କରିନାହାନ୍ତି । ଶିଶୁ ସାହିତ୍ୟର ବିଭିନ୍ନ ଅଭାବ ଅସୁବିଧା ସଂପର୍କରେ ଅବହିତ ହେବାକୁ ଚେଷ୍ଟା କରିଛନ୍ତି । ଅଭିଭାବକ, ଶିକ୍ଷକ, ଶିକ୍ଷୟିତ୍ରୀ ତଥା ପ୍ରକାଶକଙ୍କର ଶିଶୁ ସାହିତ୍ୟ ପ୍ରତି ଦୃଷ୍ଟିଭଂଗୀ ବଦଳାଇବାକୁ ଚେଷ୍ଟା କରିଛନ୍ତି ଲେଖନୀ ମାଧ୍ୟମରେ ।

ଯେଉଁମାନେ ଶିଶୁ ସାହିତ୍ୟ ରଚନା କରନ୍ତି ସେମାନେ ସାଧାରଣତଃ ଶିଶୁମାନଙ୍କର ପ୍ରିୟଭାବେ, ଶିଶୁ ସାହିତ୍ୟ ଲେଖିବା ବେଳେ ସେମାନେ ନିଜକୁ ଜଣେ ଶିଶୁ ବୋଲି ଭାବିଲେ ସରଳ ଓ ନିଷ୍କପଟ ହୃଦୟରୁ ଶିଶୁ ଉପଯୋଗୀ ଭାବ ଓ ଭାଷା ଛାଆଁ ଉତୁରି ଆସେ ବୋଲି ମୋର ବିଶ୍ୱାସ ।


Digitized by srujanika@gmail.com

ଡକ୍ଟର ବସନ୍ତ ସାହୁ ମଧ ମତ ଦିଅନ୍ତି ଯେଉଁମାନେ ଶିଶୁ ସାହିତ୍ୟ ସୃଷ୍ଟି କରନ୍ତି ସେମାନେ ଶିଶୁ ମନସ୍ତତ୍ୱ ଭଲ ଭାବରେ ବୁଝନ୍ତି । ଶିଶୁମାନଙ୍କୁ ମଣିଷ ପରି ଗଢ଼ିବା ପାଇଁ ଦିଗଦର୍ଶନ ପ୍ରଦାନ କରନ୍ତି ।

ସେ "ମୁଁ କାହିଁକି ଶିଶୁ ସାହିତ୍ୟ ଲେଖେ" ପୁସ୍ତକରେ କହିଛନ୍ତି ମୁଁ ଶିଶୁଙ୍କୁ ସ୍ନେହ କରେ, ସେମାନଙ୍କ ସହିତ ମିଶେ, ସେମାନଙ୍କର ସମସ୍ତ କାର୍ଯ୍ୟକଳାପ ନିରୀକ୍ଷଣ କରେ- ସେମାନଙ୍କର କଥାବାର୍ତ୍ତା, ଅଭିନୟ ଭାବଭଙ୍ଗୀ ସହିତ ସେମାନଙ୍କର ଚଗଲାମି ମୋତେ ବିଶେଷ ଆନନ୍ଦ ପ୍ରଦାନ କରେ । ସେମାନଙ୍କ ମଧ୍ୟରେ ମୋର ଶୈଶବର ସ୍ମୃତିକୁ ପୁନର୍ଜୀବିତ କରେ, ତା ସହିତ ମୋର ଲେଖାରେ ସେ ସବୁର ସମ୍ପର୍କ ଚିତ୍ର ଦେବାକୁ ଚେଷ୍ଟା କରେ । କାରଣ ସେ ସବୁ ପଢ଼ି ଶିଶୁ ତନ୍ମଧ୍ୟରେ ନିଜକୁ ଆବିଷ୍କାର କରିବା ସହିତ ନିର୍ମଳ ଆନନ୍ଦ ଲାଭ କରିବ ଏବଂ ଶିଶୁ ସାହିତ୍ୟ ପ୍ରତି ଆକୃଷ୍ଟ ହେବ । ଡକ୍ଟର ସାହୁଙ୍କ ବକ୍ତବ୍ୟକୁ ଅନୁମାନ କଲେ ସହଜରେ ଅନୁଭବ କରିହୁଏ ଯେ ଶିଶୁ ସାହିତ୍ୟ ରଚନାର ଶୈଳୀ କିପରି ହେବ ଏବଂ ପ୍ରକାଶ ଭଙ୍ଗୀ କିପରି ହେବ ତାର ସୂଚନା ସେ ଦେଇଛନ୍ତି ।

ଓଡ଼ିଆ ଶିଶୁ ସାହିତ୍ୟ ଦିଗ ଦିଗନ୍ତରେ ସେ 'ଶିଶୁ ଶିକ୍ଷାରେ ମୌଖିକ ଶିଶୁ ସାହିତ୍ୟର ପ୍ରୟୋଗ' ଶିରୋନାମାରେ ଏକ ସୁଚିନ୍ତିତ ପ୍ରବନ୍ଧ ଲେଖିଛନ୍ତି । ଉଭୟ ଆନୁଷ୍ଠାନିକ ଓ ପାରିବାରିକ ଶିକ୍ଷା ପାଇଁ ଯେତେ ସବୁ ଉପାୟ ଓ ମାଧ୍ୟମ ଗ୍ରହଣ କରାଯାଏ ତନ୍ମଧ୍ୟରେ ମୌଖିକ ଶିଶୁ ସାହିତ୍ୟର ପ୍ରୟୋଗ ସବୁଠି ବେଶୀ । ଶିଶୁର ଜନ୍ମ ପରେ ପରେ ସେ ତା ମାଆର ଆଦର ପୂର୍ଣ୍ଣ କଥୋପକଥନ ସାଙ୍ଗକୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ନାନାବିଧ ଗୀତ ଶ୍ରବଣ ତାକୁ ଗୀତ ଓ ଗପ ଶୁଣିବାକୁ ଆଗ୍ରହ ସୃଷ୍ଟି କରିଥାଏ । ସେଥିପାଇଁ ଆରବ୍ୟ କାହାଣୀ, ପରୀ କାହାଣୀ ଆଦି ଶୁଣିବାକୁ ଶିଶୁ ଭଲ ପାଇଥାଏ ।

ଶିଶୁ ସାହିତ୍ୟର ପରିଚୟବୋଧ, ଧାରଣା, ପରିବେଶ ସ୍ମରଣ ଶକ୍ତିର ବିକାଶ ପାଇଁ ପୁଙ୍ଖାନୁପୁଙ୍ଖ ଆଲୋଚନା ଜାଣିବାକୁ ହେଲେ ଡକ୍ଟର ସାହୁଙ୍କ ପ୍ରବନ୍ଧ ଗୁଡିକ ମନଧ୍ୟାନ ଦେଇ ଅଧ୍ୟୟନ କରିବା ଆବଶ୍ୟକ ।

ମୁଁ ଲକ୍ଷ୍ୟ କରିଛି ବହୁ ଶିଶୁ ସାହିତ୍ୟିକ ମୌଳିକ ଶିଶୁ ସାହିତ୍ୟ ଗପ, କବିତା ଆକାରରେ ଲେଖିବାକୁ ଆଗ୍ରହୀ ଥିଲା ବେଳେ ଡକ୍ଟର ସାହୁ ଶିଶୁ ସାହିତ୍ୟର ଭାଷା କିପରି ହେବ, ଭାବ କିପରି ହେବ, କେଉଁ କେଉଁ ବିଷୟ ବସ୍ତୁ ଚୟନ କଲେ ଶିଶୁର ମନକୁ ଆକୃଷ୍ଟ କରିବ ଏ ସବୁ ପ୍ରତି ବିଶେଷ ଦୃଷ୍ଟି ଦେଇଥାନ୍ତି ।

ଯେଉଁମାନେ ଶିଶୁ ସାହିତ୍ୟ ପ୍ରତି ରୁଚି ରଖିଛନ୍ତି ସେମାନେ ଡକ୍ଟର ସାହୁଙ୍କ ରଚିତ ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା ପୁସ୍ତକ ପାଠ କରିବା ଉଚିତ । ଏହି ପୁସ୍ତକରେ ସେ ନିମ୍ନ ଲିଖିତ ଦିଗରୁ ଆଲୋଚନା କରିଛନ୍ତି ଯଥା - (କ) ଶିଶୁ ସାହିତ୍ୟର ସଂଜ୍ଞା ଓ



Digitized by srujanika@gmail.com

ସ୍ୱରୂପ, (ଖ) ଓଡିଆ ଶିଶୁ ସାହିତ୍ୟର କେତୋଟି ଦିଗ (ଗ) ଓଡିଆ ଶିଶୁ ସାହିତ୍ୟରେ ଚିତ୍ରର ଆବଶ୍ୟକତା (ଘ) ଓଡିଆ ମୌଖିକ ଶିଶୁ ସାହିତ୍ୟରେ ଜହ୍ନମାମୁ (ଙ) ଓଡିଆ ଶିଶୁ ସାହିତ୍ୟ ସମାଲୋଚନାର ସମାଲୋଚନା (ଚ) ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ । ପ୍ରତ୍ୟେକଟି ପ୍ରବନ୍ଧ ସ୍ୱୟଂ ସଂପୂର୍ଣ୍ଣ ଏବଂ ପ୍ରତ୍ୟେକଟିରେ ଶିଶୁ ସାହିତ୍ୟର ବିଭିନ୍ନ ଦିଗରୁ ଆଲୋକପାତ କରାଯାଇଛି । ଏଣୁ ଶିଶୁ ସାହିତ୍ୟରେ ରୁଚି ରଖିଥିବା ସାହିତ୍ୟିକମାନେ ଡକ୍ଟର ବସନ୍ତ ସାହୁଙ୍କୁ ପଢନ୍ତୁ ଏବଂ ତାଙ୍କ ସାହିତ୍ୟକୁ ପଢନ୍ତୁ ବିଶେଷତଃ ତାଙ୍କର ଶିଶୁ ସାହିତ୍ୟ ଉପରେ ଆଲୋଚନା ଗୁଡିକୁ ପଢନ୍ତୁ ।

ବିଶେଷତଃ ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠସୂଚୀ ପ୍ରବନ୍ଧଟି ତାଙ୍କର ଶିଶୁ ସାହିତ୍ୟ ଉପରେ କେବଳ ରଚନା ଦିଗପ୍ରତି ଯେ ଆଗ୍ରହ ଅଛି ତାହାନୁହେଁ ଓଡିଆ ଶିଶୁ ସାହିତ୍ୟର ସଂଗ୍ରହ କ୍ଷେତ୍ରରେ ତାଙ୍କର ଅସୀମ ଧୈର୍ଯ୍ୟ ଅନୁଭବ କରିହୁଏ । ଏହି ପାଠ୍ୟସୂଚୀରେ ବିଭିନ୍ନ ଶିଶୁ ସାହିତ୍ୟକଙ୍କର ରଚିତ ପୁସ୍ତକ ଓ ବିଭିନ୍ନ ପତ୍ରପତ୍ରିକାରେ ଶିଶୁ ସାହିତ୍ୟ ଉପରେ ନିବନ୍ଧ ସଂଗ୍ରହ ଉପରେ ସେ କେତେ ଯେ ଅଧ୍ୟବସାୟ କରିଛନ୍ତି- ତାହା ଜାଣିଲେ ଆଶ୍ଚର୍ଯ୍ୟ ଲାଗେ । ଏପରିକି ଶିଶୁ ସାହିତ୍ୟ ଉପରେ କେଉଁ କେଉଁ ଅନୁଷ୍ଠାନ କି କି କାର୍ଯ୍ୟ କରୁଛନ୍ତି ତାହା ସେ ଏ ପୁସ୍ତକରେ ସ୍ଥାନିତ କରି ଉତ୍ତର ପିଢି ପାଇଁ ପଥ ସୁଗମ କରିଛନ୍ତି ।

ସବୁଠୁ ଆନନ୍ଦର କଥା-ଡକ୍ଟର ସାହୁ ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ ନାମକ ଏକ ସ୍ୱତନ୍ତ୍ର ପୁସ୍ତକ ରଚନା କରିଛନ୍ତି । ଓଡିଆ ଶିଶୁ ସାହିତ୍ୟର ଭୀଷ୍ମ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ପ୍ରତିଷ୍ଠିତ ମାଣିକ ବିଶ୍ୱନାଥ ଟ୍ରଷ୍ଟ ଏ ପୁସ୍ତକଟି ପ୍ରକାଶନ ଦାୟିତ୍ୱ ନେଇ ଶିଶୁ ସାହିତ୍ୟ ବିକାଶ ଧାରାରେ ଏକ ଉଜ୍ଜଳ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଛନ୍ତି । ଏହି ପୁସ୍ତକଟି ଅଧ୍ୟୟନ କଲେ ଓଡିଆ ଶିଶୁ ସାହିତ୍ୟ, ଶିଶୁ ସାହିତ୍ୟିକ, ଶିଶୁ ସାହିତ୍ୟିକଙ୍କୁ ପ୍ରୋତ୍ସାହନ ଦେଇଥିବା ସରକାରୀ ଓ ବେସରକାରୀ ଅନୁଷ୍ଠାନର ସୂଚନା ପାଇପାରିବେ । ଏହା ଛଡା ଉଭୟ ରାଜ୍ୟସ୍ତରୀୟ ଏବଂ ରାଷ୍ଟ୍ରସ୍ତରୀୟ ପୁରସ୍କାର ଶିଶୁ ସାହିତ୍ୟ ପ୍ରତିଭା ଉପରେ ସବିଶେଷ ଧାରଣା କରିହେବ ।

ଡକ୍ଟର ସାହୁଙ୍କ ଅନ୍ୟ ଏକ ଉପାଦେୟ ପୁସ୍ତକ ହେଉଛି 'ସାଂପ୍ରତିକ ଶିଶୁ ସାହିତ୍ୟ ଓ ଶିଶୁ ସାହିତ୍ୟିକ' । ଏହି ପୁସ୍ତକଟିକୁ ଅନୁଧ୍ୟାନ କଲେ ଓଡିଶାର ଶିଶୁ ସାହିତ୍ୟ ଓ କେତେ ଜଣ ବିଶିଷ୍ଟ ଶିଶୁ ସାହିତ୍ୟିକଙ୍କ ରଚନା ସମ୍ବନ୍ଧରେ ତାତ୍ତ୍ୱିକ ଆଲୋଚନା ଉପରେ ସମ୍ୟକ ଧାରଣା ସୃଷ୍ଟି ହୁଏ । ବିଶେଷତଃ ଓଡିଶାର ପ୍ରମୁଖ ଶିଶୁ ସାହିତ୍ୟିକ ଡକ୍ଟର ଜଗନ୍ନାଥ ମହାନ୍ତି, ଦାସ ବେନହୁରଙ୍କ ଠାରୁ ଆରମ୍ଭ କରି ସ୍ନେହଲତା ମହାନ୍ତି, ରଘୁନାଥ ରାଉତ, ନନ୍ଦକିଶୋର ସାମଲ ଯାଏ ବରେଣ୍ୟ ଶିଶୁ ସାହିତ୍ୟିକଙ୍କ ରଚନା


Digitized by srujanika@gmail.com

ଉପରେ ଡକ୍ଟର ସାହୁ ନିଜସ୍ୱ ଦୃଷ୍ଟିକୋଣରୁ ବିଶ୍ଳେଷଣାତ୍ମକ ଆଲୋଚନା କରି ଓଡିଆ ଶିଶୁ ସାହିତ୍ୟ ସମାଲୋଚନାରେ ନିଜର ଉଜ୍ଜ୍ୱଳ ସାକ୍ଷର ରଖିଯାଇଛନ୍ତି ।

ଡକ୍ଟର ସାହୁଙ୍କର ଜନ୍ମ ୧୯୫୫ ମସିହାରେ କୁସୁପୁରରେ । କୁସୁପୁର କହିଲେ ଓଡିଆ ପଲ୍ଲୀ ସାହିତ୍ୟର ଜନ୍ମଦାତା ନନ୍ଦକିଶୋର ବଳ ଏବଂ ଶିଶୁ ସାହିତ୍ୟିକ କବି ନନ୍ଦକିଶୋର ସାମଲଙ୍କ ଜନ୍ମ ସ୍ଥାନ କଥା ମନକୁ ତତ୍‌କ୍ଷଣାତ୍ ଆସିଯାଏ । ଶୈଶବରୁ ଡକ୍ଟର ସାହୁଙ୍କ ଉପରେ କୁସୁପୁର ଗାଆଁର ପାଣି, ପବନ, ଗଛ, ଲତାର ପ୍ରଭାବ ପଡିଛି । ଅଧିକନ୍ତୁ ନନ୍ଦକିଶୋର ବଳ, ନନ୍ଦକିଶୋର ସାମଲଙ୍କ ରଚନାବଳୀ ମଧ୍ୟ ତାଙ୍କୁ ପ୍ରଭାବିତ କରିଛି । କାଳ ନ୍ୟାୟରେ ନନ୍ଦକିଶୋର ସିଂହଙ୍କ ସାଙ୍ଗେ ମଧ୍ୟ ତାଙ୍କର ସଂପର୍କ ପ୍ରତିଷ୍ଠିତ ହୁଏ । ଏଣୁ ସେ ନିଜ ରଚିତ ଏକ ପ୍ରବନ୍ଧ ନନ୍ଦକିଶୋର ବଳ, ନନ୍ଦକିଶୋର ସାମଲ ଏବଂ ନନ୍ଦକିଶୋର ସିଂହଙ୍କ ପଲ୍ଲୀ ସାହିତ୍ୟର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରିଛନ୍ତି । ଯାହାକି ବୋଲେ ହୁଁଟି ପତ୍ରିକାରେ ପ୍ରକାଶିତ ।

ଉପସଂହାରରେ ଏତିକି କହିବି-କୁସୁପୁରରେ ଜନ୍ମ ଗ୍ରହଣ ଯୋଗୁ ନନ୍ଦକିଶୋର ବଳ ଓ ନନ୍ଦକିଶୋର ସାମଲଙ୍କ ପରି ସେ ମଧ୍ୟ ସରଳ ଓ ସହଜ ଭାଷାରେ ପଲ୍ଲୀଚିତ୍ର ବହନକାରୀ ମୌଳିକ ରଚନା କରିବାରେ ସିଦ୍ଧହସ୍ତ । ନିମ୍ନରେ ମାତ୍ର ଦୁଇଟି ଉଦାହରଣ ମୁଁ ଦେଇଛି -

ନଈ ଆରପଟ ପାହାଡ ସେପଟେ ଗାଆଁଟି ଯାଏ ତୋ ଦିଶି
ସଂଜ ନଇଁଗଲେ ପାହାଡ ପଛରେ ସୂରୁଜ ବୁଡନ୍ତି ହସି ।
ପଶ୍ଚିମ ଆକାଶ ବର୍ଣ୍ଣ ବଇଭବ ଦିଶୁଥାଏ ରମ୍ୟ ଛବି
କେବେ ହାତୀଘୋଡା କେବେବା ପାହାଡ ହୁଏନା ସେକଥା ଜାଣି

x x x x x

କୁଳ ବଧୂମାନେ ଚଉଁରା ମୂଳରେ ସଂଜବତୀ ଦେଇ ଜାଳି
ବିଦେଶୀ ସାମୀର ଶୁଭ ମନାସନ୍ତି କୋଟି ଦଣ୍ଡବତ ଢାଳି ।

x x x x x x

ଇଛା ହେଉଅଛି ଗପ ଶୁଣିବାକୁ ଆଇମା ପାଖରୁ ବାରେ
କହିବୁ ଯଦିଲୋ ବୁଲି ଆସିବି ମୁଁ ତୋ ଗାଆଁ ଆଡେ ଥରେ ।

(-ତୋ ଗାଆଁ ସଂଜ)

ସେହିପରି ଅନ୍ୟଏକ ଶିଶୁ କବିତା -"ଦୂର ପରବତ ଢେଉଂଢେଉକା" କୁ ଲକ୍ଷ୍ୟ କରାଯାଉ ।



Digitized by srujanika@gmail.com

ଦୂର ପରବତ ଢେଉ ଢେଉକା
ଆସ ଖେଳିଯିବା ବୋହୂ ବୋହୂକା ।
ସାଉଁଟି ଆଣିବା ମାଟି ଓ ବାଲି
ରାନ୍ଧିବା ସେଥିରେ ଖେଚୁଡ଼ି ଡାଲି ।

x x x

ଦୂର ଗଛ ଲତା ମେଞ୍ଚ ମେଞ୍ଚକା
ପିଲାଏ ଖେଳନ୍ତି ନାଚି ନାଚିକା
ନାଚିବା କୁଦିବା ବହୁତ ମଜା
ତା ସାଥିକୁ ଯଦି ବାଜିବ ବାଜା ।

ଭାତହାଣ୍ଡିରୁ ଗୋଟିଏ ଚାଉଳ ଚିପିବା ପରି ତାଙ୍କର ବହୁ ଶିଶୁ ସାହିତ୍ୟ ମଧ୍ୟରୁ ଏଇ ଦୁଇଟି କବିତା ପାଠ କଲେ ତାଙ୍କର ରଚନାରେ ଶିଶୁ ମନସ୍ତତ୍ୱ, ଶିଶୁ ଉପଯୋଗୀ ଭାଷା ଓ ଭାବ ସମ୍ବଳିତ ବିଷୟ ଚୟନରେ ସେ ଯେ କେତେ ଯତ୍ନଶୀଳ ତାହା ସହଜରେ ଅନୁମେୟ ।

ଏବେ ସେ ସରକାରୀ କର୍ମ କ୍ଷେତ୍ରରୁ ଅବସର ନେଉଛନ୍ତି ସିନା କିନ୍ତୁ ଶିଶୁ ସାହିତ୍ୟରୁ ଅବସର ନେବା ତାଙ୍କ ପାଇଁ ଅସମ୍ଭବ । ସେ ବରଂ ସରକାରୀ କାର୍ଯ୍ୟର ବାଧବାଧକତା ଗଣ୍ଡିରୁ ମୁକ୍ତ ହୋଇ ଅଧିକ ଉତ୍ସାହ ଉଦ୍ଦୀପନା ସହ ସାରସ୍ୱତ ସେବାରେ ଲାଗି ପଡିବାର ଉଜ୍ଜ୍ୱଳ ସମ୍ଭାବନା ସୃଷ୍ଟି ହୋଇଛି ।

ଶିଶୁ ସାହିତ୍ୟର ପଥକୁ ତାଙ୍କ ଲେଖନୀ, ଅଧିକରୁ ଅଧିକ ସୁଗମ କରିବା ସଙ୍ଗେ ସଙ୍ଗେ ବିଶ୍ୱପିତା ତାଙ୍କ ଜୀବନର ଚଲାପଥକୁ ଚିର ସୁଶୋଭିତ କରି ରଖନ୍ତୁ ଏହି କାମନା ସହ ରହୁଛି ।



ସଂପାଦକ, ବୋଲେ ହୁଁଟି
କୋରେଇ, ଯାଜପୁର



Digitized by srujanika@gmail.com

# ଶିଶୁ ସାହିତ୍ୟର ସଫଳ ସ୍ରଷ୍ଟା

ସ୍ନେହଲତା ମହାନ୍ତି

ଶିଶୁ ଯୁଗେ ଯୁଗେ ମାନବ ଜୀବନର ଆଦର୍ଶ ଏବଂ ଭାବାବେଗର ସରଳ ସ୍ୱଚ୍ଛନ୍ଦ, ସାବଲୀଳ ପରିପ୍ରକାଶ । କଳ୍ପନା, ଅନୁଭବ, ଅନୁଭୂତି, ଅନୁଧ୍ୟାନ, ଆବେଗ ଓ ଭାବପ୍ରବଣତାର ବିକାଶ ଓ ପ୍ରକାଶର ଆକାଂକ୍ଷାକୁ ଆଧାର କରି ମଣିଷ ଏହାରି ମାଧ୍ୟମରେ କବି, ଲେଖକ, ସାହିତ୍ୟିକ, ଶିଳ୍ପୀ, କଳାକାର ପ୍ରଭୃତି ମହାର୍ଘ ଗୁଣ ଏବଂ କଳାର ଅଧିକାରୀ ହୋଇଥାଏ । ସେଥିପାଇଁ ସେ ଆତ୍ମନିମଗ୍ନତା ମାଧ୍ୟମରେ କଠୋର ସାଧନାକୁ ଆପଣେଇ ନେବାକୁ ଶ୍ରେୟ ମଣିଥାଏ । ପ୍ରତ୍ୟେକ ଭାଷା ସାହିତ୍ୟ ଏହି ନିୟମ ଏବଂ ପରମ୍ପରାରେ ସମୃଦ୍ଧ ବୋଲି ବିଶେଷ ତର୍ଜମାରୁ ଜଣାଯାଏ । ପୁରାତନ ପାରମ୍ପରିକ ସାହିତ୍ୟ ଲଳିତ ପଦାବଳୀ ଓ ସୁମଧୁର ସ୍ୱର ସର୍ବସ୍ୱ ଭାବେ ଜନ ମନକୁ ଆମୋଦିତ କରିଥାଏ । ଜଟିଳ ଦୁର୍ବୋଧ୍ୟତା ଭିତ୍ତିକ ସାହିତ୍ୟ ସଂଗୀତ ଗଳ୍ପ କୌଣସି ଶ୍ରୋତା, ପାଠକମାନଙ୍କୁ ଆତ୍ମିକ ଶାନ୍ତି କିମ୍ବା ଶିକ୍ଷା ଦେବାରେ ବିଫଳ ହୁଏ । ଏହି କାରଣରୁ ଲୋକ ପ୍ରିୟ ଶିକ୍ଷଣୀୟ ସୃଜନାତ୍ମକ ସଂବେଦନାର ସରଳତାରେ ବିଭୋର କରି ପାରୁଥିବା ସାରସ୍ୱତ ସଂଭାରର ଏକାନ୍ତ ଆବଶ୍ୟକତା ପ୍ରାଚୀନ କାଳରୁ ଏ ପର୍ଯ୍ୟନ୍ତ ରହି ଆସିଛି । ଏ ନିୟମରୁ ବହିର୍ଭୁତ କୌଣସିଟି କଳା-ସାହିତ୍ୟ କେବେ ହେଲେ କେଉଁଠାରେ ଆଦରଣୀୟ ବା ଗ୍ରହଣୀୟ ହୋଇ ପାରିନାହିଁ । ପ୍ରତ୍ୟେକ ଭାଷାର ଶିଶୁ ସାହିତ୍ୟ ଏହି ପରମ୍ପରାରେ ସୁପ୍ରତିଷ୍ଠିତ ।

ଏହି ନୀତି ନିୟମ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ଶ୍ରୀଯୁକ୍ତ ବସନ୍ତ କିଶୋର ସାହୁ ଓଡିଶାର କାବ୍ୟ ଜଗତରେ ଜଣେ ଅପ୍ରତିଦ୍ୱନ୍ଦୀ ଶିଶୁ ସାହିତ୍ୟିକ ଭାବେ ବେଶ୍ ସୁପରିଚିତ । ତାଙ୍କର କାବ୍ୟ କଳା ଅନସ୍ୱୀକାର୍ଯ୍ୟ । ଶିଶୁ କିଶୋର ମାନଙ୍କ ମନକୁ ମୁଗ୍ଧ କରି ପାରିବା ଭଳି ମୌଳିକ ଉପାଦାନ ଦ୍ୱାରା ତାଙ୍କର ଶିଶୁ କବିତା ଓ ଗଳ୍ପ ଗୁଡିକ ସରଳ ସାବଲୀଳ ଏବଂ ସୁବୋଧ୍ୟ ହୋଇ ପାରିଛି ।

ଶିଶୁ କିଶୋରମାନଙ୍କ ମନକୁ ଅନୁଧ୍ୟାନ ଓ ଅଧ୍ୟୟନ କରି ସେମାନଙ୍କ ପାଇଁ ସାହିତ୍ୟ ସୃଷ୍ଟି କରିବା ଶ୍ରୀଯୁକ୍ତ ସାହୁଙ୍କ ରଚନାର ବୈଶିଷ୍ଟ୍ୟ ପ୍ରତିପାଦନ କରେ-ତାଙ୍କ ରଚନାର ପ୍ରତ୍ୟେକଟି ବିଷୟ ବସ୍ତୁ ଶିଶୁମାନଙ୍କର ପରିବେଶ ଏବଂ ମାନସିକତା ଭିତ୍ତିକ



Digitized by srujanika@gmail.com

ହୋଇଥିବାରୁ ଶିଶୁମାନେ ତାହାକୁ ପଢିବା ମାତ୍ରେ ସେମାନଙ୍କ ମାନସ ପଟରେ ତାହା ଚିତ୍ରାକାର ପାଲଟି ଯାଏ । ତେଣୁ ବିଷୟ ବସ୍ତୁଟି ତାର ସହଜରେ ବୋଧଗମ୍ୟ ହୁଏ । ଉଦାହରଣ ସ୍ୱରୂପ -

ବରଷାରାଣୀ ବରଷି ଯା
ଥଣ୍ଡା ଥଣ୍ଡା ଜଳ ପରଷି ଯା ।
ଆକାଶେ ବାଦଲ ଭସେଇ ଯା
ଧରଣୀ ମାଆକୁ ହସେଇ ଯା ।।
(ବରଷାରାଣୀ ବରଷି ଯା, ଖରା ବରଷା ଗୀତ, ପୃ.୨୪)

ସେହିପରି ପୁଷିବିଲେଇକୁ ପିଲାମାନେ ଭାରି ଭଲ ପାଆନ୍ତି । ବିଲେଇ ଶିଶୁ ପରିବେଶର ପ୍ରାଣୀଟିଏ ହୋଇଥିବାରୁ ପିଲାମାନେ ତାକୁ ଦେଖି ଖୁସି ହେବା ସଙ୍ଗେ ସଙ୍ଗେ ତା'ର ସ୍ୱରକୁ ଅନୁକରଣ କରନ୍ତି । ସେହି ବିଲେଇ ଓ ତା'ର ସ୍ୱରକୁ ନେଇ କବି ସୁନ୍ଦର କବିତାଟିଏ ଲେଖିଛନ୍ତି-

ମିଆଁଉ ମିଆଁଉ ବିଲେଇ
ମାଇଁ ହସିଲେଣି, ଖାଇବୁ ତୁ ଏବେ
ଦୁଧଭାତ ମୁଣ୍ଡ ହଲେଇ ।।
(କଟର ମଟର କାଉଁରିଆ, ଉଦୁଉଦୁମା, ପୃ.୧୦)

ଶ୍ରୀଯୁକ୍ତ ସାହୁଙ୍କର ଶିଶୁ କବିତାରେ ଉପଧାମିଳନ ସହିତ ଅର୍ଥ ଓ ଅନର୍ଥକ ଶବ୍ଦର ପ୍ରୟୋଗ ପିଲାମାନଙ୍କୁ ଆକୃଷ୍ଟ କରିଥାଏ । ପିଲାମାନେ ଏପରି ଶବ୍ଦର ଉଚ୍ଚାରଣ ସହିତ ସ୍ୱର ମିଳାଇ ଗାଇବାକୁ ଭଲ ପାଆନ୍ତି ।

ଅଗଡ଼ ବଗଡ଼ ଝାଇଁକି ଝୁମ୍ପା
ଝୁମ୍ପାରେ ଲାଗିଛି କଟକି ଚମ୍ପା ।
ଚମ୍ପାଫୁଲ ଝିଅ ବସିଛି ରୁଷି
ସୁନାଚାନ୍ଦ ଦେଲେ ହୋଇବ ଖୁସି ।।
(ଅଗଡ଼ ବଗଡ଼ ଝାଇଁକି ଝୁମ୍ପା,ଅଗଡ଼ ବଗଡ଼ ଝାଇଁକି ଝୁମ୍ପା, ପୃ.୮)

ଏହି ପରିପ୍ରେକ୍ଷୀରେ ବିଚାର କରିବାକୁ ଗଲେ ଶ୍ରୀଯୁକ୍ତ ସାହୁଙ୍କର ପ୍ରତ୍ୟେକଟି ଶିଶୁ କବିତା/ଗୀତଗୁଡ଼ିକ ସୁମଧୁର ଛନ୍ଦ ଯୁକ୍ତ, ଭାଷା ଅତ୍ୟନ୍ତ ସରଳ, ବିଷୟବସ୍ତୁ ବୋଧଗମ୍ୟ ହେବା ସହିତ ଶିଶୁମାନଙ୍କର ପ୍ରିୟ ଜୀବ, ଜନ୍ତୁ, ପଶୁ, ପକ୍ଷୀ, ଗଛ ଲତା ପ୍ରାକୃତିକ ଦୃଶ୍ୟାବଳୀ ଉପରେ ଆଧାରିତ । ତାଙ୍କର ସମସ୍ତ ଶିଶୁ ସାହିତ୍ୟ ଅତ୍ୟନ୍ତ



Digitized by srujanika@gmail.com

ମହିମାନ୍ୱିତ, ହୃଦୟଗ୍ରାହୀ ଓ ଶିକ୍ଷଣୀୟ ହୋଇ ପାରିଛି ।

ଏହା ବ୍ୟତୀତ ସେ ଜଣେ ଗବେଷକ-ସୁସଂଗଠକ-ଆଲୋଚକ-ପ୍ରାବନ୍ଧିକ ଭାବରେ ସୁପ୍ରତିଷ୍ଠିତ । ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ, ଓଡିଆ ଗବେଷଣା ପରିଷଦ ଓ ଅନ୍ୟାନ୍ୟ ଅନେକ ଅନୁଷ୍ଠାନ ସହିତ ଓତଃପ୍ରୋତ ଭାବରେ ସେ ଜଡିତ । ବହୁ ସମ୍ମିଳନୀ-ସାହିତ୍ୟ ପତ୍ରପତ୍ରିକା, ସଂକଳନର ସୁଯୋଗ୍ୟ ସମ୍ପାଦକ ଭାବରେ ସେ ଓଡ଼ିଆ ସାହିତ୍ୟ ଜଗତରେ ସୁପ୍ରତିଷ୍ଠିତ ।

ଗୋଟିଏ ବାକ୍ୟରେ କହିବାକୁ ଗଲେ ତାଙ୍କ ସୃଷ୍ଟି ସମ୍ଭାରର ଆକଳନ କରିବା ଏକ ପ୍ରକାର ଅସମ୍ଭବ । ମୋର ଯାହା କିଛି ମତ, ମନ୍ତବ୍ୟ ସମୁଦ୍ର ଜଳକୁ ଶଂଖରେ ମାପିବା ଭଳି ମନେ ହେଉଛି ।

ପ୍ରଭୁ ଚକାଡୋଳାଙ୍କ ଆଶୀର୍ବାଦରୁ ଡକ୍ଟର ବସନ୍ତ କିଶୋର ସାହୁଙ୍କ କୃତି ଓ କୃତିତ୍ୱ ଏହିପରି ଭାବରେ ଓଡିଆ ଭାଷାର ଦିଗ ଦିଗନ୍ତକୁ ସାହିତ୍ୟ ସୁମନ ସମ୍ଭାରରେ ସୁଶୋଭିତ କରି ମଳୟ ମାଦକରେ ମହକିତ କରୁଥାଉ-ସାହିତ୍ୟ ସରଣୀରେ ସେ ଆହୁରି ଆହୁରି ଗତିଶୀଳ ହୁଅନ୍ତୁ । ନିରାପଦରେ, ନିର୍ବିବାଦରେ, ନିଷ୍ପାପର ଭାବେ ନିଜ ନାମର ସାର୍ଥକତା ପ୍ରତିପାଦନ କରନ୍ତୁ ।



ବାଙ୍କିସାହି
ତେଲେଙ୍ଗାବଜାର, କଟକ



Digitized by srujanika@gmail.com

# ଡକ୍ଟର ସାହୁଙ୍କ ପ୍ରକୃତି ବିଷୟକ ଶିଶୁ କବିତା ସଂକଳନ- 'ଖରା ବରଷା ଗୀତ'

ପର୍ଶୁରାମ ପଣ୍ଡା

ଓଡିଆ ଭାଷା ସାହିତ୍ୟରେ ଜଣେ ଯୋଗ୍ୟତମ ସାରସ୍ଵତ ସାଧକ ହେଉଛନ୍ତି ଡକ୍ଟର ବସନ୍ତ କିଶୋର ସାହୁ । ଜଣେ ଅଧ୍ୟାପକ, ଦକ୍ଷ ସଂଗଠକ ଓ ମନଛୁଆଁ ଶିଶୁ ସାହିତ୍ୟିକ ରୂପେ ସେ ସାରା ରାଜ୍ୟରେ ପରିଚିତ । ତାଙ୍କ ଲେଖା ଓ ବକ୍ତବ୍ୟର ଚମତ୍କାରିତା ହେଉଛି ନିଆରା ।

ସାର୍‌ଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ପୁରୀରେ ଅନୁଷ୍ଠିତ ଶିଶୁ ସାହିତ୍ୟ ଗବେଷଣା ପରିଷଦର ପଞ୍ଚଦଶ ଶିଶୁ ସାହିତ୍ୟିକ କର୍ମଶାଳା-୨୦୦୭ରେ । ସାର୍‌ଙ୍କ ହସ ହସ ମୁହଁ । ମଧୁର ଆଳାପ, ନିରହଙ୍କାରୀ ମନୋଭାବ, ସ୍ନେହ ଶ୍ରଦ୍ଧା ଭରା କଥାବାର୍ତ୍ତା ସର୍ବୋପରି ତାଙ୍କ ଅମାୟିକ ବ୍ୟକ୍ତିତ୍ୱ ତାଙ୍କୁ ଅନେକଙ୍କ ମଧ୍ୟରେ ଏକ କରି ଗଢି ତୋଳିଥିଲା । ଯାହା ଦ୍ୱାରା କି ମୁଁ ପ୍ରଭାବିତ ହୋଇ ସାର୍‌ଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ତା ପରବର୍ତ୍ତୀ କର୍ମଶାଳା ମାନଙ୍କରେ ସାର୍‌ଙ୍କ ସହିତ ସାକ୍ଷାତ ହୁଏ । ଫୋନ୍‌ରେ କଥାବାର୍ତ୍ତା ହେଉ, ମୋବାଇଲରେ ମେସେଜ୍ ଦିଆନିଆ ହୁଏ ।

ମୁଁ ପ୍ରଥମେ ଶିଶୁ ସାହିତ୍ୟରେ ଗବେଷଣା କରିବା ପାଇଁ ଯେତେବେଳେ ସ୍ଥିର କଲି ସେତେବେଳେ ଫୋନ୍ ମାଧ୍ୟମରେ ସାର୍‌ଙ୍କ ନିକଟରେ ପ୍ରକାଶ କରିଥିଲି । ଏଥି ସହିତ ଅନୁରୋଧ କରିଥିଲି ମୋର ଗବେଷଣାର ଗାଇଡ୍ (ମାର୍ଗଦର୍ଶକ) ହେବା ନିମନ୍ତେ । ମୋର ସୌଭାଗ୍ୟ ସାର୍ ସେହି ପ୍ରଥମ ଫୋନ୍‌ରେ ହିଁ ମୋତେ ଉତ୍ସାହିତ କରିବା ସହିତ ବିନା ଦ୍ୱିଧାରେ ନିଜର ସମ୍ମତି ପ୍ରଦାନ କରିଥିଲେ । ଯାହା ଦ୍ୱାରା କି ଗବେଷଣା କରିବା ନିମନ୍ତେ ମୁଁ ଆଉ ପାଦେ ଆଗେଇ ଯାଇଥିଲି ।

ଏହା ମଧ୍ୟରେ ମୁଁ ସାର୍‌ଙ୍କ ଶିଶୁ କବିତା ସଂକଳନ 'ଖରା ବରଷା ଗୀତ' ପାଠ କରିବାର ସୁଯୋଗ ଲାଭ କଲି । ସଂକଳନଟି ଥରେ ହାତରେ ଧରିଲେ ପ୍ରଥମ ପୃଷ୍ଠାରୁ ଶେଷ ପୃଷ୍ଠା ଯାଏ ପଢିଯିବାକୁ ଇଚ୍ଛା ହେବ । ୩୨ ପୃଷ୍ଠାର ଏହି ସଂକଳନଟିର ପ୍ରକାଶକ ହେଉଛନ୍ତି ଗଙ୍ଗାଧର ତ୍ରିପାଠୀ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦ ବିହାରୀ, କଟକ । ଏହାର ପ୍ରଥମ ପ୍ରକାଶ କାଳ-୨୦୦୮, ଡିମେଇ ଆକାରର ଏହି ସଂକଳନଟିର ଅକ୍ଷର



Digitized by srujanika@gmail.com

ଗୁଡିକୁ ସଜାଇଛନ୍ତି ଅଗ୍ରଣୀ, ସୁନାବେଡା-୨। ସାରା ବହିଟିକୁ ସୁନ୍ଦର ସୁନ୍ଦର ଶିଶୁ ମନଲୋଭା ଚିତ୍ରରେ ଭରିଛନ୍ତି ଉମାକାନ୍ତ ମହାରଣା। କବି ବହିଟିକୁ ଖରା ଆଉ ବରଷାକୁ ଭଲ ପାଉଥିବା ତାଙ୍କ ପୁଅ ବବୁଲ ଓ ଝିଅ ବୁଲ୍‌ବୁଲ୍ ହାତରେ ଉପହାର ଦେଇଛନ୍ତି। ସଂକଳନରେ ସତାଧିକାରିଣୀ ଅଛନ୍ତି ବୀଣାପାଣି ସାହୁ।

କବିତା ସାହିତ୍ୟର ପ୍ରଥମ ସୃଷ୍ଟି। କବି ପ୍ରାଣର ଭାବାନୁଭୂତି। କବି ଜଣେ ଶିଶୁ ପ୍ରିୟ ଲେଖକ। ସଂକଳନଟି ପ୍ରକୃତି ବିଷୟକ ଶିଶୁ କବିତାରେ ଭରା। ଏଥିରେ କବିଙ୍କର ଶିଶୁ ପ୍ରାଣତା ବେଶ୍ ମନଛୁଆଁ। ସଂକଳନଟିକୁ କବି ମାତ୍ର ଦୁଇ ପ୍ରକାର ଫୁଲର ସମାହାରରେ ଗୁନ୍ଥିଛନ୍ତି। ଗୋଟିଏ ବରଷା ଗୀତ ଓ ତା ପରଟି ଖରା ଗୀତ। ଏହି ପରି ସଂଯୋଜନା କରି ସଂକଳନଟିରେ ୬ଟି ବରଷା ଗୀତ ସହିତ ୬ଟି ଖରା ଗୀତ ଉପସ୍ଥାପନା କରିଛନ୍ତି। କବି ସଂକଳନଟିରେ ସମାନ ବିଷୟ ବସ୍ତୁକୁ ବାରମ୍ବାର ଉପସ୍ଥାପନ କରିଥିଲେ ମଧ୍ୟ ଭିନ୍ନ ଭିନ୍ନ ଭାବ, ଶୈଳୀ ଓ ଭାଷାରେ ପ୍ରତ୍ୟେକ ପୃଷ୍ଠାକୁ ଋଦ୍ଧିମନ୍ତ କରିଛନ୍ତି।

ଆଧୁନିକ ବିଜ୍ଞାନ ଯୁଗର ପିଲାମାନଙ୍କ ମନରେ ଖରା ଓ ବର୍ଷା ପ୍ରତି କିପରି ମନୋଭାବ ତାହା ମଧ୍ୟ ସେ ଦର୍ଶାଇଛନ୍ତି। ପ୍ରକୃତି ଏବଂ ଈଶ୍ୱରଙ୍କର ଆଶୀର୍ବାଦରୁ ଧରାବକ୍ଷକୁ ଛଅଟି ଋତୁ ଆସିଥାନ୍ତି। ମାତ୍ର ଗ୍ରୀଷ୍ମଋତୁ ଓ ବର୍ଷାଋତୁ ଏମାନଙ୍କ ମଧ୍ୟରେ ଦୁଇଟି ଶ୍ରେଷ୍ଠ ଋତୁ ରୂପେ ପରିଚିତ।

ସଂକଳନର ପ୍ରଥମ କବିତାରେ କବି ବର୍ଷାର ମହତ୍ତ୍ୱକୁ ଖୁବ୍ ମାର୍ମିକ ଭାବେ ଚିତ୍ରିତ କରିଛନ୍ତି।

"ଧରାକୁ ଆସିଲା ବରଷା ରାଣୀ
ସବୁଆଡ ଗଲା ଛୁଇଁ
ଶୁଖିଲା ଭୂଇଁରେ ଦୁବ କଅଁଳିଲା
ସବୁଜିମା ଗଲା ଛାଇ।"
(ଧରାକୁ ଆସିଲା ବରଷା ରାଣୀ)

କବି ରହସ୍ୟମୟୀ ପ୍ରକୃତିକୁ ଶିଶୁ ହୃଦୟରେ ଆଲୋଡନ ସୃଷ୍ଟି କରି ଖରା ଓ ବରଷା ବର୍ଣ୍ଣନାରେ ଶତମୁଖ ହୋଇ ଉଠିଛନ୍ତି। ଏହି ଦୁଇ ଋତୁରେ ପ୍ରକୃତିର ଅପରୂପ ରାଶି ରାଶି ସୌନ୍ଦର୍ଯ୍ୟକୁ କବି ନାନା ଭାବରେ ରୂପ ଦେଇଛନ୍ତି। କବିତା ମାଧ୍ୟମରେ ପ୍ରକୃତିକୁ ଭଲ ପାଇବାର ବୀଜ ବୁଣିଛନ୍ତି। ଏଥି ସହିତ ସେ ସମୟର ମୂଲ୍ୟ ବୁଝିବା ପାଇଁ ପ୍ରେରଣା ଯୋଗାଇ ଲେଖିଛନ୍ତି -

"ବୁଝିତ ପାରିଲେ ସମୟ ମୂଲ
ସଂସାରେ ହୋଇବ ମଣିଷ ଭଲ।



Digitized by srujanika@gmail.com

ଖରା ବରଷାକୁ ପାରିଲେ ସହି
ସୁନାମ ରହିବ ତୁମକୁ ଚାହିଁ ।"        (ଧରାକୁ ଆସିଲା ବରଷା ରାଣୀ)

ବାସ୍ତବରେ ଛୋଟ ପିଲାମାନେ ଖରାବର୍ଷା ଉଭୟକୁ ଉପଭୋଗ କରିଥାନ୍ତି । ପ୍ରଚଣ୍ଡ ନିଦାଘ ସମୟରେ ସେମାନେ ଘରେ ନ ବସି ଗାଁ ତୋଟାମାଳରେ ଖେଳନ୍ତି । ପାଚିଲା ଆମ୍ବ ପଣସ ଖାଆନ୍ତି । କବିଙ୍କ ଭାଷାରେ -

" ଗଛରେ ପାଚିଲା ଆମ୍ବ ପଣସ
ପିଲାମାନଙ୍କର - ମନ ହରଷ
ଗାଆଁ ତୋଟା ତଳେ ଚାଲିଛି ଖେଳ
ମଜା ମଉଜରେ କଟୁଛି ବେଳ ।"    (ଚାଇଁ ଚାଇଁ ଖରା)

ଶିଶୁ ମନସ୍ତତ୍ତ୍ୱ ମୁତାବକ କବି କବିତାଗୁଡିକୁ ଲେଖିଛନ୍ତି । ଶିଶୁମାନଙ୍କ ମନକୁ ଛୁଇଁଲା ଭଳି ଏହି କବିତା ଅତି ସୁନ୍ଦର ହେବା ସହିତ ଗ୍ରାମୀଣ ପରିବେଶର ବର୍ଣ୍ଣନା ଅତି ଚମତ୍କାର ହୋଇଛି । ତାଙ୍କ କବିତାରେ ରଜପର୍ବ ବର୍ଣ୍ଣନାର ଜୀବନ୍ତ ବିନ୍ୟାସ ଘଟିଛି ।

" ଆସୁଅଛି ରଜ ପରବ
ନୂଆ ଲୁଗା ପିନ୍ଧି ଦୋଳିରେ ଝୁଲିବା
ଖାଇ ନୂଆ ନୂଆ ଦରବ ।"

(ଏଇ ଖରା ଛୁଟି ଦିନରେ)

ଆଜିର ଛାତ୍ର ଆଗାମୀ କାଲିର ନାଗରିକ । ସେ ସ୍କୁଲ ଯାଇ ପାଠ ପଢିଲେ ଦେଶ ଗଢିବ । ତେଣୁ ପିଲାମାନଙ୍କୁ ପାଠ ପ୍ରତି ଆଗ୍ରହ ସୃଷ୍ଟି କରିବା ପାଇଁ ଲେଖିଛନ୍ତି-

" ଇସକୁଲ ସବୁ ଖୋଲିଲା
ବହି ଖାତା ଧରି, ଚଗଲା ବବୁଲୁ
ପାଠ ପଢିବାକୁ ଚାଲିଲା ।"

(ମଉସୁମୀ ବାଆ ବହିଲା)

ଗ୍ରୀଷ୍ମଋତୁ ଆସିଲେ ହିଁ ବର୍ଷା ଋତୁ ଆସିବ । ଧରଣୀ ରାଣୀ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ହେବ । କବି ପ୍ରକୃତିର ଏହି ଶାସ୍ୱତ ଓ ଚିରନ୍ତନ ସତ୍ୟକୁ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି-

" ସରିଯିବ ଯେବେ ଖରାରେ
ଆକାଶ ବୁକୁରୁ ଝିପିଝିପି ହୋଇ
ବରଷା ଝରିବ ପରାରେ ।"

(ଖରା ଦିନ କେଡେ ମଜାରେ)

ଶିଶୁ ଯେ କେବଳ ବହି ଖାତା ଧରି ପାଠ ପଢିବାକୁ ଯିବ ତା' ନୁହେଁ । ସେ



Digitized by srujanika@gmail.com

ସମାଜରୁ ବଢି ମରୁଡି ହଟାଇବା ସହ ଏକ ଶୋଷଣ ତଥା ଦୁର୍ନୀତି ମୁକ୍ତ ସମାଜର ସ୍ୱପ୍ନ ଦେଖିଛି । କବି ଶିଶୁମାନଙ୍କ ମନରେ କଳାବଜାରୀ ହଟାଇବାର ବାର୍ତ୍ତା ଦେଇ ଲେଖିଛନ୍ତି-

"ବରଷା ରାଣୀ ବରଷି ଯା
ବଢି ମରୁଡିକୁ ବିନାଶି ଯା
X X X
କଳା ବଜାରୀକୁ ହଟେଇ ଯା
ଶୋଷଣ ଦୁର୍ନୀତି କଟେଇ ଯା"

(ବରଷାରାଣୀ ବରଷି ଯା)

ଗ୍ରୀଷ୍ମ ଓ ବର୍ଷା ବିଷୟକ ଏହି ଶିଶୁ କବିତାରେ ପ୍ରକୃତିର ବିବିଧ ରୂପ ଶୋଭା, ପ୍ରକୃତିର ବିଭିନ୍ନ ସ୍ୱଭାବ, ପ୍ରକୃତିର ରୂପ ଓ ଗୁଣ ଇତ୍ୟାଦି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । କବି ପୁଣି ପ୍ରକୃତିର ବାହ୍ୟ ରୂପ ସହିତ ଅନ୍ତଃରୂପକୁ ଅତି ସୁନ୍ଦର ଭାବରେ ପ୍ରକାଶ କରି ପ୍ରକୃତିକୁ ମାନବୀୟ ଗୁଣରେ ବିଭୂଷିତ କରିଛନ୍ତି ।

"ଚାରି ଆଡେ ଗଲା ଦୁବ କଅଁଳି
ଦିଶିଲା ସବୁଜ ଗାଲିଚା ଭଳି
ସେହି ଗାଲିଚାରେ ସାଧବ ବୋହୂ
ଥିରି ଥିରି କରି କୁଆଡେ ଯାଉ
ଆଖିତ ଯାଉଛି ଅଟକି
ସତେ ଅବା ନୂଆ ବୋହୂଟିଏ ଯାଏ
ଭାରି ସିଏ ଛଇ ଛଟକି ।

(ଆଷାଢ ମାସର ବରଷା)

କବିଙ୍କର ଏହି ସୃଜନାତ୍ମକ ସଂକଳନରେ ସେ ପିଲାମାନଙ୍କ ମନରେ କଳ୍ପନା ଶକ୍ତି, ରଚନା ବୋଧ ଓ ମନୋରଞ୍ଜନର ଆବଶ୍ୟକତାକୁ ପୂରଣ କରିଛନ୍ତି । ଶିଶୁ ମନଛୁଆଁ ଭାଷା ସହିତ ସୁନ୍ଦର ଶବ୍ଦ ସଂଯୋଜନା କରାଯାଇ ସଂକଳନଟିକୁ ମନଛୁଆଁ ତଥା ଆକର୍ଷଣୀୟ କରାଯାଇଛି । ତାଙ୍କରି ଭାଷାରେ-

"ଟପର ଟପର ମେଘ ବରଷିଲା
କେଶୁର ମାଇଲା ଗଜା
କଟର ମଟର ଗୀତ ଗାଇ ବେଙ୍ଗ
କହିଲାଣି ହେବ ରାଜା ।"

(ଟପର ଟପର ମେଘ ବରଷିଲା)

ଭାଷା ଦିଗରୁ ବିଚାର କଲେ କବି ବସନ୍ତ କିଶୋର ସଂକଳନଟିରେ ବ୍ୟବହାର



Digitized by srujanika@gmail.com

କରିଥିବା ଧ୍ୱନ୍ୟାତ୍ମକ ଶବ୍ଦ କେତୋଟି ହେଲା - ଥପଥପ, ଝିପି ଝିପି(ଖରାଦିନ କେଡ଼େ ମଜାରେ), ଝରଝର, ଚିପିଚିପି, ଚିକ୍‌ଚିକ୍ (ଆଷାଢ ଆସିଲା ଧରାରେ), ଟପର ଟପର, ପଚର ପଚର, ଭଟର ଭଟର, କଟର ମଟର (ଟପର ଟପର ମେଘ ବରଷିଲା), ସାଇଁ ସାଇଁ, ଦୁମୁଦୁମୁ, କଟକଟ, ଭଟଭଟ, ଫଟଫଟ (ସରିଲାଣି ଏବେ ଖରା ଛୁଟି)। ଏଥି ସହିତ କେତୋଟି କଥିତ ଶବ୍ଦର ବ୍ୟବହାର ହେଲା - ଖଟିଆ, ଫରମାସ, କଦବା (ଆଷାଢ ମାସର ବରଷା), ଚିଜ, ଜିଗର (ଖରାଦିନ କେଡ଼େ ମଜାରେ), ତତଲା, ଥାନ (ବଇଶାଖ ମାସ ତତଲା ଖରା), ଫିଟି, ତୁଟି (ସରିଲାଣି ଏବେ ଖରା ଛୁଟି), ସଇଲା, ସାଜିଲା (ମଉସୁମୀ ବାଆ ବହିଲା)। କବିତାରେ ସେ ଯୁକ୍ତାକ୍ଷରକୁ ସହଜ ଭାବରେ ଲେଖିଛନ୍ତି - ସୁମାତରା (ଧରାକୁ ଆସିଲା ବରଷା ରାଣୀ) ଇସ୍‌କୁଲ, ତୀରଥ (ଆସିଲାଣି ଖରା ଆସିଲାଣି), ଶିରାବଣ (ମଉସୁମୀ ବାଆ ବହିଲା)। ଅବଶ୍ୟ ସେ ବୋର୍ଣ୍ଣିଓ ପରି ଏକ କଠିନ (ଧରାକୁ ଆସିଲା ବରଷାରାଣୀ) ବ୍ୟବହାର କରିଛନ୍ତି।

ସଙ୍କଳନଟିର ଆଲୋଚନା ଶେଷରେ କହିବାକୁ ଗଲେ ଏହା ସର୍ବାଙ୍ଗ ସୁନ୍ଦର ହୋଇ ପାରିଛି। ଏହି ବର୍ଷା ଭିଜା ମାଟିର ଗନ୍ଧ ବାସ୍ନାୟିତ ଓ ସୁରଭିତ କରି ଶିଶୁ ମନ ପ୍ରାଣରେ ଅପୂର୍ବ ଶିହରଣ ଗଢି ତୋଳିଛି। କବିତାଗୁଡିକ ଶିଶୁ ମନସ୍ତତ୍ତ୍ୱକୁ ନେଇ ଗୀତି ଧର୍ମୀ ହୋଇଥିବାରୁ ଏହା ଶିଶୁ କିଶୋରମାନଙ୍କ ମନ ଓ ହୃଦୟକୁ ଛୁଇଁ ପାରିଛି। ସଂକଳନଟିର ପ୍ରତ୍ୟେକ କବିତା ବାସ୍ନାୟିତ। ୧୨ ଗୋଟି କବିତାରେ ଏହି ଛୋଟ ବହିଟିକୁ ପାଠକ ଅନ୍ତତଃ ଥରେ ଆମୂଳ ଚୂଳ ପାଠକଲେ ମନ ଲାଗିଯିବ। ଆଉଥରେ ପଢିବାକୁ ଇଚ୍ଛାହେବ। ସତରେ ଏ ସଂକଳନଟିକୁ ପାଠ କରି ମୁଁ ଖରାରେ ବୁଲିଲି ଓ ବର୍ଷାରେ ଭିଜିଲି। ମାଟିର ମହକରେ ମୋ ମନ ଓ ଶରୀର ମନ୍ତ୍ର ମୁଗ୍ଧ ହୋଇଗଲା।

ଡକ୍ଟର ବସନ୍ତ କିଶୋର ସାହୁଙ୍କର ସାରସ୍ୱତ କୃତି ରାଜିର ବିଧିବଦ୍ଧ ଗବେଷଣାକୁ ଏ ଜାତି ଅପେକ୍ଷା କରିଛି। ଓଡିଆ ଶିଶୁ ସାହିତ୍ୟ ଜଗତର ଏହି ମହାରଥୀଙ୍କ ଠାରୁ ଆଉ କିଛି ସଫଳ ସୃଷ୍ଟି ଏ ଜାତି ଆଶା ରଖିଛି। ତାଙ୍କର ଆଗାମୀ ଚଲାପଥ କୁସୁମିତ ହେଉ। ଭଗବାନ ତାଙ୍କୁ ଦୀର୍ଘଜୀବି କରାନ୍ତୁ। ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ମୋର ଏତିକି ପ୍ରାର୍ଥନା।



ମୁଖ୍ୟ ସଂପାଦକ-ଚନ୍ଦ୍ରମା
ଦୀପଶିଖା, ଅନୁଗୁଳ



Digitized by srujanika@gmail.com

# ଶିଶୁ ମନର ସଫଳ ରୂପକାର

## ଦେବାଶିଷ ଚକ୍ରବର୍ତ୍ତୀ

କଥାରେ ଅଛି ଶିଶୁ ହସିଲେ ଜଗତ ହସେ । କାରଣ ସେମାନଙ୍କ ଭିତରେ ହିଁ ନିହିତ ଥାଏ ଆଗାମୀର ଭୃଣ । ସେଥିପାଇଁ ମହାକବି ମିଲଟନ୍ କହିଥିଲେ-"Children shows the man as morning shows the day". ବିମଳ ଆନନ୍ଦ ଦେଇ ସେମାନଙ୍କ ମୁହଁରେ ହସ ଫୁଟାଇବାକୁ କେତେକ ଯଶସ୍ୱୀ ସାଧକ ନିରନ୍ତର ଉଦ୍ୟମ ଜାରି ରଖିଛନ୍ତି । ସେମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଏକ ଶ୍ରଦ୍ଧେୟ ଉଚ୍ଚାରଣ ।

ବିଶିଷ୍ଟ ସମାଲୋଚକ ନାନ୍‌ସୀ ଲାରିକ୍ କହିଥିଲେ-ଗୀତ ପିଲାଙ୍କ ମିତ । କଥାଟି ସତ । ଆମ ରାଜ୍ୟରେ ଗଦ୍ୟ ରଚନାର ବହୁ ପୂର୍ବରୁ ପଦ୍ୟ ତାର ଉପସ୍ଥିତି ଜାହିର୍ କରି ଆସିଛି । ଗଳ୍ପ ଶୁଣିବାର ଆଗ୍ରହ ସୃଷ୍ଟି ହେବାର ବହୁ ପୂର୍ବରୁ ମାଆମାନେ ଗୀତ ଗାଇ ପିଲାଙ୍କୁ ଶୁଆଇ ଦେଇଥାନ୍ତି । ତେଣୁ ଡକ୍ଟର ସାହୁଙ୍କର ଶିଶୁ କିଶୋର ଉପଯୋଗୀ କବିତା ସଂପର୍କରେ ସୂଚନା ଦେବାକୁ ଏହି ଆଲୋଚନାରେ ପ୍ରୟାସ କରିଛି ।

ଜାତି ଧର୍ମର ବିଦ୍ୱେଷ ବିଷୟରେ ଆଜି ସମାଜ ଜର୍ଜରିତ । ଏହାର ଦୁଷ୍ପରିଣାମ ଆମକୁ ଅବିଦିତ ନୁହେଁ । ସ୍ୱାଧୀନତା ପାଇବା ବେଳେ ଧର୍ମକୁ ଆଳ କରି ଆମ ଦେଶ ବିଭାଜିତ ହୋଇଛି । ଆମ ଦେଶର ଭୌଗୋଳିକ ବିଭାଜନ ମଧ୍ୟରେ ଏହା ସୀମିତ ହୋଇ ରହିନାହିଁ । ଏହାର ଫଳ ସ୍ୱରୂପ ସମଗ୍ର ବିଶ୍ୱରେ ଆତଙ୍କବାଦ ଉଗ୍ର ରୂପ ଧାରଣ କରିଛି । ନିରୀହ ଲହୁରେ ମଧୁକ୍ଷରା ଧରାର ଶ୍ୟାମଳପଣତ ରଞ୍ଜିତ ହୋଇ ଯାଇଛି । ତେଣୁ କବି ବସନ୍ତ କିଶୋର ଶିଶୁ କିଶୋରଙ୍କ ପ୍ରାଣରେ ମଣିଷ ପଣିଆର ଚାରା ରୋପିବାକୁ ପ୍ରୟାସ କରି କହିଛନ୍ତି -

" ଜାତିଭେଦ ଭାବ ରଖନା କେହି
ସଭିଏଁ ତ ଆମେ ମଣିଷ ଭାଇ ।
ଭେଦଭାବ କଥା ପୋଛି ମନରୁ
ଭଲ କାମକର ପିଲା ଦିନରୁ ।"



Digitized by srujanika@gmail.com

ଶ୍ରୀ ସାହୁ ନିଜର ବକ୍ତବ୍ୟକୁ ଅଧିକ ପ୍ରଭାବଶାଳୀ କରିବା ପାଇଁ ବସ୍ ଯାତ୍ରା ଭଳି ଅତ୍ୟନ୍ତ ସାଧାରଣ ଅଥଚ ଉପଯୋଗୀ ପ୍ରସଙ୍ଗର ଅବତାରଣା କରିଛନ୍ତି । ବସ୍‌ରେ ବିଭିନ୍ନ ଜାତି ଓ ଧର୍ମର ଲୋକେ ଏକାଠି ଯାତ୍ରା କରିଥାନ୍ତି । ଏହା ମଧ୍ୟରେ ଜାତି ଧର୍ମର ବିଭେଦ ରହିତ ଏକ ସମତୁଲ ସମାଜର ଚିତ୍ର ଉଙ୍କି ମାରିଛି -

"ଅଟର ମଟର କେଁ ଏ କଟର
ସାଇଁ ସାଇଁ ଛୁଟେ ଗାଡି ମଟର ।
ଗାଡି ମଟରରେ ଅନେକ ଲୋକ
ଭେଦଭାବ ଭୁଲି ଯାଆନ୍ତି ଦେଖ ।"

ବେଙ୍ଗ ବୋବାଇଲେ ବର୍ଷା ହୁଏ । ଏହା ଏକ ପ୍ରଚଳିତ ଲୋକ ବିଶ୍ୱାସ । କବିଙ୍କ ସୃଷ୍ଟିରେ ଏହା ମଧ୍ୟ ଅଙ୍ଗୀଭୂତ ହୋଇଯାଇଛି । ବର୍ଷାପାଗରେ ବାଦାମ ଭଜା । ସତରେ କେତେ ମଜା ଲାଗେନି କହିଲେ ? ତେଣୁ କବି କହିଛନ୍ତି -

ବେଙ୍ଗୁଲୀ ନାନି ତ ଇନ୍ଦର ରାଣୀ
ବୋବାଇ ଦେଲେ ସେ ବରଷେ ପାଣି ।
ବରଷିଲେ ପାଣି ବହୁତ ମଜା
ଖାଇବାକୁ ମିଳେ ବାଦାମ ଭଜା ।

ଏହା ଛଡା ପିଲାଙ୍କୁ ସ୍ୱାସ୍ଥ୍ୟ ସଚେତନ କରିବା ପାଇଁ ସେ କହିଛନ୍ତି -

"ଖେଳିଲେ ବୁଲିଲେ ବଢଇ ବଳ
ବଳ ପାଇଁ ଲୋଡା ତଟକା ଫଳ" ।

ମାନବିକତା ହିଁ ମଣିଷର ଅସଲ ସମ୍ପତ୍ତି । ଟଙ୍କା ସୁନା ଠାରୁ ଏହାର ମୂଲ୍ୟ ଯଥେଷ୍ଟ ଅଧିକ । ମାନବିକତା ବିହୀନ ମଣିଷ ପଶୁ ଠାରୁ ମଧ୍ୟ ହୀନ । ଧନସମ୍ପତ୍ତି ଅର୍ଜନ କଲେ କେହି କେବେ ହେଲେ ବଡ ହୋଇ ପାରେ ନାହିଁ । ବରଂ ଯିଏ ବିବେକ ଧନରେ ଧନୀ ସିଏ ହିଁ ପ୍ରକୃତରେ ବଡ । ସତ୍ ପଥର ପଥିକ ସାଜିଥିବା ମଣିଷଟି ଅନାୟାସରେ ସମସ୍ତ ପ୍ରତିବନ୍ଧକକୁ ଏଡାଇ ଯାଇ ପାରିବ । ତେଣୁ କବି ମଣିଷ ପଣର ଜୟଗାନ କରି କହିଛନ୍ତି -

ଧନ ସଂପତ୍ତି ନୁହଁଇ ବଡ
ମାନବିକତା ବଡ,
ସତ ପଥରେ ଚାଲିବ ଯେବେ
ଦୂରେଇ ଯିବ ଝଡ ।
ଅମା ଅନ୍ଧାର ହୋଇବ ଦୂର
ଜୀବନେ ହେବ ବଡ ।


Digitized by srujanika@gmail.com

ସତ୍ୟକଥନ ବିନା ମଣିଷ ପଣର ଚାରାଗଛ ବଞ୍ଚି ପାରିବ ନାହିଁ । ତେଣୁ ସେ ପିଲାଙ୍କୁ ସତ୍ୟନିଷ୍ଠ ହେବାକୁ ପରାମର୍ଶ ଦେଇଛନ୍ତି -

"ଜୀବନେ ଚାହିଁଲେ ହେବାକୁ ବଡ
ସତକଥା କହି ନିଜକୁ ଗଢ" ।

ଫୁଲର ଶୋଭା ଓ ସୁରଭି କାହାକୁ ଭଲ ଲାଗେନି କହିଲେ ? ଛିଟଛାମା ପିନ୍ଧିଥିବା ଚୁଲ୍‌ବୁଲି ଝିଅଟିଏ ଚକାଭଉଁରି ଖେଳିବା ପରି ପ୍ରଜାପତି ତାର ଚାରିକଡେ ଘୁରି ବୁଲେ । ଭ୍ରମର ଗୁଞ୍ଜନ ତୋଳେ । ମହୁମାଛି ତା ପାଖରୁ ରସ ସଂଗ୍ରହ କରି ମହୁଫେଣା ଗଢେ । ଏହା ଯେ କେବଳ ବଗିଚାର ଶୋଭା ବଢାଏ ତାହା ନୁହେଁ, ପୁନେଇଁ ପରବ ସଭା ସମିତି ସବୁ କାମରେ ଏହା ଲୋଡା ହୁଏ । ପିଲାମାନେ ମଧ୍ୟ ଆମ ଧରା ବଗିଚାର ସୁନ୍ଦର ଫୁଲ । ସେମାନଙ୍କ ପାଇଁ ଏହା ହସି ଉଠୁଛି । ଫୁଲପରି ଉଦାର ଏବଂ ମହତ ହେବା ପାଇଁ ସେ ପିଲାମାନଙ୍କୁ କହିଛନ୍ତି -

"ଫୁଲ ଆମେ ଫୁଲ
ପିଲାଏ ତୁମେ ଆମ ପରିକା
ବୁଝ ଜୀବନ ମୂଲ ।
ପରସେବାରେ ଜୀବନ ଦିଅ
ମିଠା କଥାରେ ମନଟି ନିଅ
କହିବ ସାରା ଦୁନିଆ ଦିନେ
ପିଲାଏ ତୁମେ ଭଲ
ଫୁଲ ଆମେ ଫୁଲ ।"

ଧନବଳ ନୁହେଁ କି ଜନ ବଳ ନୁହେଁ ମନର ବଳରେ ହିଁ ନିହିତ ଥାଏ ପ୍ରକୃତ ଶକ୍ତି । ଏହି ମନ ବଳକୁ ଭରସା କରି ଆଜି ସେ ଅଥଳ ସମୁଦ୍ର ଲଙ୍ଘି ଯାଉଛି । ଚନ୍ଦ୍ରରେ ପାଦ ଥାପିଛି । ତେଣୁ ପିଲାଙ୍କ ମନରେ ଆତ୍ମବିଶ୍ୱାସ ଭରିଦେବା ପାଇଁ ସେ କହିଛନ୍ତି -

"ହରି ବୋଲ ଭାଇ ଗୋବିନ୍ଦ ବୋଲ
ମଣିଷ ଶକତି ଅମୂଲ ମୂଲ ।
ଚନ୍ଦ୍ରରେ ପହଞ୍ଚେ ରେକେଟ୍ ନେଇ
ସମୁଦ୍ର ଲଙ୍ଘଇ ବୁଦ୍ଧି ଖଟାଇ ।"

ମାଆ ପରି ମାଟିମାଆ ମଧ୍ୟ ଆମର ଅତି ଆପଣାର । ମାଆ ସିନା ପିଲା ଛୋଟ ଥିବା ବେଳେ ତାର ଅଳିଅର୍ଦ୍ଦଳି ବୁଝନ୍ତି, ମାତ୍ର ମାଟିମାଆ ଜୀବନ ଥିବା ଯାଏଁ ଆମକୁ ପ୍ରତିପୋଷଣ କରୁଚି । ଚାଷୀଭାଇ ଲଙ୍ଗଳ ମୂନରେ ମାଟିକୁ ଚଷି ଫସଲ



Digitized by srujanika@gmail.com

ଉପୁଜାଏ । ଆମେ ଛାତି ଚିରି ତାର ରସପାନ କରୁଚୁ । ତା ଉପରେ ନାଚିକୁଦି ଆମେ ଆମର ବିମଳ ଶୈଶବ ଓ ଚପଳ କୈଶୋର ବିତାଉଚୁ । ମାତ୍ର ସେ କେବେ ଏହାର ପ୍ରତିବାଦ କରିନାହିଁ । ମାଟିର ଘର ମଧ୍ୟ ଅତ୍ୟନ୍ତ ଆରାମ ଦାୟକ ଏବଂ ସ୍ୱାସ୍ଥ୍ୟପ୍ରଦ । ତେଣୁ କବି କୁହନ୍ତି -

"ଶାନ୍ତ ସୁଶୀତଳ ମାଟିର ଘର
ଗରମ ଖରାକୁ ନଥାଏ ଡର ।
x x x
ଅତି ଉପକାରୀ ଅଟଇ ମାଟି
ମାଟି ନୁହଁଇ ସେ ଆମ ମାଆଟି ?"

ନୀତି ବାଗୀଶଙ୍କ ଭଳି କବି କେବଳ ଉପଦେଶ ଦେଇ ନାହାନ୍ତି ବରଂ ସେ ଶିଶୁ କିଶୋରଙ୍କ ମୁହଁରେ ହସ ଫୁଟାଇବାକୁ ନିରନ୍ତର ଉଦ୍ୟମ କରିଛନ୍ତି । ଓଧର ମାଛଖିଆ ଦେଖି ଇର୍ଷା କାତର ହୋଇ ପଡେ ବିଲେଇ । ତାକୁ ପାନେ ଦେବା ପାଇଁ ସେ ଗଡିଆ ମାଲିକ ମାଧକୁ ଡାକି ଆଣେ । ରାଗରେ ମାଧ ଓଧକୁ ମାରିବାକୁ ତା ଉପରକୁ ବାଡି ଫୋପାଡେ । ମାତ୍ର ତାହା ଓଧ ଦେହରେ ନବାଜି ବିଲେଇ ଦେହରେ ବାଡ଼ି ବାଜେ । ସରସ ରୀତିରେ ଏହି ପ୍ରସଙ୍ଗର ଅବତାରଣା ମାଧ୍ୟମରେ ସେ ପିଲାଙ୍କୁ ହାସ୍ୟ ମୁଖର କରିବା ସହିତ ଅନ୍ୟର ଅନିଷ୍ଟ ଚିନ୍ତା ନ କରିବାକୁ ଆହ୍ୱାନ ଦେଇଛନ୍ତି -

"ଦୂରେ ବସିଥିଲା ବିଲେଇ ଛକି
ତା ଠାରେ ବାଜିଲା ବାଡି ଡୋଓକି ।
ବିଲେଇ ଡାକିଲା ମିଆଁଉ ମିଆଁଉ
ପର ପାଇଁ ଗାତ ନ ଖୋଳ ଆଉ ।"

କବି ଯେ କେବଳ ତାଙ୍କର ପାଠକ ପାଠିକାଙ୍କୁ ପ୍ରବୋଧିତ କରିଛନ୍ତି ତାହା ନୁହେଁ ସେମାନଙ୍କର ଶିକ୍ଷକ ଓ ଅଭିଭାବକଙ୍କୁ ମଧ୍ୟ ମାର୍ଗଦର୍ଶନ କରାଇବାରେ ବିମୁଖ ହୋଇ ନାହାନ୍ତି । ପିଲାମାନେ ବେଳେ ବେଳେ ଦୁଷ୍ଟାମି କରନ୍ତି । ମାଡ ଗାଳି ଦେଇ ସେମାନଙ୍କୁ ସତ୍‌ପଥକୁ ଆଣିବାକୁ ଶିକ୍ଷକ ଓ ଅଭିଭାବକ ମାନେ ଉଦ୍ୟମ କରିଥାନ୍ତି । ମାତ୍ର ଏହା କିଛି ସମୟ ପାଇଁ ସେମାନଙ୍କୁ ଦୁଷ୍ଟାମି କରିବାରୁ ବିରତ କରିବ ସିନା ସଂପୂର୍ଣ୍ଣ ରୂପେ ନିବୃତ୍ତ କରିପାରିବ ନାହିଁ । ବରଂ ଏଥିପାଇଁ ମିଠାକଥା କହି ସେମାନଙ୍କର ହୃଦୟ ପରିବର୍ତ୍ତନ କରାଇବା ନିହାତି ଆବଶ୍ୟକ ବୋଲି କହିଛନ୍ତି -

"ରୁମୁ ଝୁମୁ ଝୁମୁ ରୁମୁକୁ ଝୁମା
ଚଗଲା ପିଲାକୁ ଦୁମୁକୁ ଦୁମା ।



Digitized by srujanika@gmail.com

ମାଡ ଗାଳି ଦେଇ ଦେଖାନା ଭୟ
ସ୍ନେହ ଶରଧାର ସବୁଠି ଜୟ ।"

ପୁଅ ଓ ଝିଅ ପରସ୍ପରର ପରିପୂରକ । ଜଣକୁ ବାଦ ଦେଇ ଅନ୍ୟର ଅସ୍ତିତ୍ୱ କଳ୍ପନା କରାଯାଇ ନ ପାରେ । ଝିଅମାନେ ଆଜି ପୁଅଙ୍କ ଠାରୁ କେଉଁ ଗୁଣରେ ଊଣା ? ଆମ ଦେଶ କଥା ଦେଖୁ ନାହାନ୍ତି । ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀ ଭଳି ସର୍ବୋଚ୍ଚ ପଦବୀ ମଧ୍ୟ ସେମାନଙ୍କ ଦ୍ୱାରା ଅଳଂକୃତ ହେଲାଣି । ବିଜ୍ଞାନ ହେଉକି ସାହିତ୍ୟ, ସବୁଠାରେ ସେମାନଙ୍କର କୀର୍ତ୍ତିର ବୈଜୟନ୍ତୀ ଉଡୁଛି । କ୍ରୀଡା କ୍ଷେତ୍ରରେ ମଧ୍ୟ ସେମାନେ ଆମ ଦେଶକୁ ଗୌରବ ମଣ୍ଡିତ କରିଛନ୍ତି । ତଥାପି ଆମ ସମାଜରେ ପୁଅଟିଏ ଝିଅ ଅପେକ୍ଷା ପ୍ରାଧାନ୍ୟ ପାଉଛି । ଝିଅମାନେ ଏବେ ବି ଅଲୋଡା ହୋଇ ରହିଛନ୍ତି । ଏହି ବୈଷମ୍ୟ ଦୂର କରିବା ପାଇଁ କବି ବସନ୍ତ କିଶୋର କହିଛନ୍ତି -

"x x x
ବହି ଫହି କଥା ପଛକୁ ପକାଇ
ଝିଅକୁ କୋଳେଇ ନିଅ
ବଡ ହେବା ପାଇଁ କଅଁଳ ମନେ ତା
କଳପନା ଭରି ଦିଅ ।
ବଡ ହେଲେ ଝିଅ କେତେ ନୂଆ କାମ
କରିବ ଦୁନିଆ ପାଇଁ
ପୁଅ ଆଉ ଝିଅ ସଭିଏଁ ସମାନ
ଭେଦଭାବ ରଖ ନାହିଁ ।"

ଆଜି ଅନେକଙ୍କର ଶୈଶବ ଲୁଣ୍ଠିତ ହୋଇ ଯାଉଛି । ହସିବା ଖେଳିବା ବୟସର ଛୋଟ ପିଲାଟିଏ କେଉଁଠି ହୋଟେଲ୍‌ରେ ଚା' ଜଳଖିଆ ପରଷୁଚି ତ କେଉଁଠି ବାସନ ମାଜୁଚି । ଖଣି ଖାଦାନରେ ପଥର ପିଟୁଚି ତ ମୁଠାଏ ଭାତ ପାଇଁ ଜୋତା ପଲିସ୍ କରୁଛି । ଅଥଚ ସେମାନଙ୍କ ପାଇଁ କାହା ମନରେ ଟିକିଏ ବି ଦରଦ ନାହିଁ । ଏହି ଅବହେଳିତ ପିଲାଙ୍କ ଭିତରୁ ଅନେକେ ହୁଏତ ସେମାନଙ୍କ ପୁଅଝିଅଙ୍କ ବୟସର । ଅଥଚ, ସେମାନଙ୍କୁ ଚାହିଁ ଦେଲେ ସତରେ କ'ଣ ଉଙ୍କି ମାରେନି ଆପଣାର ପୁଅ ଝିଅଙ୍କ ମୁହଁ ? ପିଲାଙ୍କ ମନରେ ସୃଷ୍ଟି ହେଉଥିବା ପ୍ରଶ୍ନବାଚୀ ମାଧ୍ୟମରେ ଶ୍ରୀ ସାହୁ ଉପେକ୍ଷିତ ଶୈଶବ ପ୍ରତି ସମାଜକୁ ସହାନୁଭୂତିଶୀଳ କରିବା ପାଇଁ ଗାଇ ଉଠିଛନ୍ତି -

" କଳ କାରଖାନା କ୍ଷେତ ବା ଖମାର
ପଥର ଖୋଳ ବା ଖୋଳ ଗାତ


Digitized by srujanika@gmail.com

ଢୋଡା ପଲିସ ଠୁ ଗାଡି ପୋଛା ଯାଏ
ସବୁଠାରେ ପରା ଆମ ହାତ ।
ତଥାପି ତ କିଏ କହେ ନାହିଁ କେବେ
ଆମ ପାଇଁ ଆହା ପଦଟିଏ
କହିଲ ଆମକୁ ଆମେ କଣ ନୁହଁ
ତୁମ ପିଲା ପରି ପିଲାଟିଏ ?"

ତିନିଟି ଏସ୍ (Short, Sweet, Simple)ର ଭିତ୍ତି ଉପରେ ଶିଶୁ କବିତା ଗଢି ଉଠିଥାଏ । ପିଲାଙ୍କ ଧୈର୍ଯ୍ୟ ସୀମିତ । ତେଣୁ କବିତାର କଳେବର କ୍ଷୁଦ୍ର ହେବା ଆବଶ୍ୟକ । କଠିନ ତତ୍ତ୍ୱକୁ ଗ୍ରହଣ କରିବାର ମାନସିକତା ପିଲାଙ୍କ ମଧ୍ୟରେ ନଥାଏ । ତେଣୁ କବିତାରେ ଦିଆ ଯାଉଥିବା ବାର୍ତ୍ତା (Message) ସରଳ ହେବା ଦରକାର । ଏହା ଛଡା କଠିନ ଶବ୍ଦ ପ୍ରୟୋଗ ଦ୍ୱାରା ପିଲାଟିଏ କବିତା ପଠନ ବା ଶ୍ରବଣ ପ୍ରତି ବିମୁଖ ହେବାର ଆଶଙ୍କା ସର୍ବାଧିକ । ତେଣୁ ଶବ୍ଦ ଚୟନ ବେଳେ ସତର୍କତା ଅବଲମ୍ବନ କରିବା ସର୍ବାଗ୍ରେ ପ୍ରୟୋଜନ । ଗୋଟିଏ ଶବ୍ଦର ପୁନଃପୌନିକ ପ୍ରୟୋଗ କବିତାକୁ ଶ୍ରବଣ ସୁଖଦାୟୀ କରିବା ସହିତ ନିର୍ଦ୍ଦିଷ୍ଟ ଶବ୍ଦଟି ପ୍ରତି ପିଲାଟିକୁ ଆକର୍ଷିତ କରାଇଥାଏ । ଡକ୍ଟର ସାହୁଙ୍କର 'ଅଗଡ ବଗଡ ଝାଇଁକି ଝୁମା' କବିତା ସଂକଳନକୁ ଏହାର ପ୍ରକୃଷ୍ଟ ଉଦାହରଣ ଭାବରେ ଗ୍ରହଣ କରାଯାଇ ପାରେ । ଏଇ ଯେମିତି - ଧପଡ ଧପଡ ଧପଡ ଧାଇଁ, କଟର କଟର କଟର କେଁଏ, ଭଟର ଭଟର ଭଟର ବୁଢା, ଫଟର ଫଟର ଫୁଟୁଛି ବାଣ, ଝଗଡ ଝଗଡ ଝଗଡ ଝାଇଁ, ରଗଡ ରଗଡ ରଗଡ ଜାଇ ପ୍ରଭୃତି । କବିତାର ଶୀର୍ଷକ ଏହାର ତୋରଣ ସଦୃଶ । ଏହା ମଧ୍ୟ ମନଲାଖୀ ହେବା ଆବଶ୍ୟକ । ଶ୍ରୀ ସାହୁଙ୍କର କବିତାର ଶୀର୍ଷକ ମଧ୍ୟ ଆକର୍ଷଣୀୟ ।

କଞ୍ଚାହାତ ଶିଶୁର କଞ୍ଚା ମନକୁ ଗଢିବାକୁ ଆଦୌ ପର୍ଯ୍ୟାପ୍ତ ନୁହେଁ । ସଫଳ ଶିଶୁ ସାହିତ୍ୟିକ ହେବା ପାଇଁ ପିଲାଙ୍କ ମନକୁ ବୁଝିବା ଅତ୍ୟନ୍ତ ପ୍ରୟୋଜନୀୟ । ଶିଶୁ ମନସ୍ତତ୍ତ୍ୱ ଅଧ୍ୟୟନରେ ଯେ ସେ ଅତ୍ୟନ୍ତ ଧୂରୀଣ ଏହା ସନ୍ଦେହାତୀତ । ତାଙ୍କର ନିରଳସ ସାଧନା ପାଇଁ ସେ ରାଜ୍ୟର ବହୁ ଅଗ୍ରଣୀ ସାରସ୍ୱତ ପ୍ରତିଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । ଶ୍ରୀଯୁକ୍ତ ସାହୁ ଏବେ ବି ସାଧନାରତ । ସୃଜନ ବିଭୋର ବସନ୍ତ କିଶୋରଙ୍କ ସୃଜନ ସୁରଭିରେ ପିଲାଙ୍କ ମନଅଙ୍ଗନ ସୁରଭିତ ହେବା ସହିତ ସେମାନଙ୍କର ପ୍ରାଣ ପୁରା ବିମଳ ଆନନ୍ଦରେ ଦୀର୍ଘକାଳ ଧରି ପୁଲକିତ ହୋଇ ରହିବ ବୋଲି ଆଶା ଓ ବିଶ୍ୱାସ ।



ମଣ୍ଡୁଆ, କେନ୍ଦୁଝରଗଡ



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ଶିଶୁ ସାହିତ୍ୟ ସଂସାର

ଡକ୍ଟର ରଜତ କୁମାର ଷଡଙ୍ଗୀ

ଓଡିଆ ସାହିତ୍ୟରେ ଅବହେଳିତ ଦିଗଟି ହେଉଛି ଶିଶୁ ସାହିତ୍ୟ । ସମସ୍ତେ ନିଶ୍ଚୟ ସ୍ୱୀକାର କରିବେ ଯେ ବ୍ୟକ୍ତିର ସର୍ବାଙ୍ଗ ପୂର୍ଣ୍ଣ ବିକାଶରେ ଶିଶୁ ସମୟଟି ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଶାରୀରିକ, ମାନସିକ, ଆବେଗିକ, ବୌଦ୍ଧିକ ସର୍ବୋପରି ଏକ ଶକ୍ତ ଜୀବନ ଜିଜ୍ଞାସା ଓ ଅତିମାନସ ଚେତନା (Super Consciousness) ର ଭିତ୍ତିଭୂମିକୁ ଶିଶୁ ସମୟରେ ଖୋଜା ଯାଇପାରେ । ଏଇଟା ଅଲଗା କଥା ଯେ ଶିଶୁ ସମୟଟି କେବଳ ନମନୀୟ ଗ୍ରହଣଶୀଳତାର ସ୍ତୁପ ନା' ତୀବ୍ର ଜୀବନ ଜିଜ୍ଞାସା ଏବଂ ଅତିମାନସ ଚେତନା ପାଇଁ ଆବଶ୍ୟକ ମୌଳିକ ଉପାଦାନର ପ୍ରାକୃତିକ ଗନ୍ତାଘର ନା' ଏହି ଦୁଇଟି ଯାକ ବିଷୟର ସମାହାର । ଶିଶୁର ମନ ସ୍ତରକୁ ନେଇ ଯେଉଁ ଅନୁସନ୍ଧାନ ବୈଜ୍ଞାନିକ, ସାମାଜିକ, ଭାଷିକ ଅନୁଧ୍ୟାନ-ଅଧ୍ୟୟନ ବ୍ୟବସ୍ଥାର ଅଗ୍ରଗତି କରିଛି ତାହା ନିତ୍ୟ ନୂତନ ଶିଶୁ ବିକାଶର ଅନେକ ଦିଗ ପ୍ରତି ଆଲୋକପାତ କରିବାରେ ଲାଗିଛି । ଏହା ସହିତ ବିକାଶର ଉପାୟ ଉପରେ ମତାମତ ମଧ୍ୟ ପୋଷଣ କରାଯାଉଛି । ଶିଶୁଟି ନମନୀୟ ଗ୍ରହଣଶୀଳ ହେବା ସହିତ ମୌଳିକ ଉପାଦାନର ମାଲିକ-ଏହି ଦୁଇଟି ତଥ୍ୟର ସମାହାର ଭାବନାକୁ ଗ୍ରହଣ କରିନିଆଯାଏ ତେବେ ତା'ର ବିକାଶର ଉପାୟଗୁଡିକ ପାଇଁ ଆମ ପାଖରେ କିଛି ଦୃଢ, ବଳିଷ୍ଠ, ପ୍ରଭାବଶାଳୀ ମୌଖିକ ପାରଂପରିକ ତଥା ଆଧୁନିକ ସ୍ରୋତରୁ ମିଳିଯିବ । ପାରଂପାରିକ ହେଉ ଅଥବା ଆଧୁନିକ ସ୍ରୋତ, ଶିଶୁର ସାମଗ୍ରିକ ବିକାଶ ପାଇଁ ଉପଯୁକ୍ତ ଶିଶୁ ସାହିତ୍ୟର ଆବଶ୍ୟକତାକୁ ସ୍ୱୀକାର କରାଯାଇପାରେ ।

ଉପଯୁକ୍ତ ଶିଶୁ ସାହିତ୍ୟର ଅର୍ଥ ହେଉଛି ଯାହା ଶିଶୁଟିକୁ ପ୍ରଗତିଶୀଳ, ସାମାଜିକ, ଦୃଢ ନିର୍ଣ୍ଣୟକାରୀ, ଦୂରନ୍ତ ନିର୍ଣ୍ଣୟ ଗ୍ରହଣକାରୀ, ବିବେକଶୀଳ, ସ୍ୱାବଲମ୍ବୀ, ପରିଶ୍ରମୀ, କର୍ତ୍ତବ୍ୟନିଷ୍ଠ, ସେବାଭାବୀ, ମାନବୀୟ-ଅତିମାନବୀୟ ଗୁଣ ସଂପନ୍ନ ତଥା ନିରନ୍ତର ଆତ୍ମସୁଧାର ଦିଗରେ ପ୍ରେରଣା ପ୍ରଦାନ କରୁଥିବା ଶିଶୁ ରୁଚିପ୍ରଦ ସାହିତ୍ୟ । ଶିଶୁ ଭବିଷ୍ୟତର ନାଗରିକ । ତାର ଭବିଷ୍ୟତ ବର୍ତ୍ତମାନର ମୂଳଦୁଆ ଉପରେ ପ୍ରତିଷ୍ଠିତ । ବୀଜ ରୂପରେ ଯାହା କିଛି ତା' ଭିତରେ ସଞ୍ଚିତ ହୋଇ ରହିଛି ତା'ର ସେହି ମୌଳିକତାକୁ



Digitized by srujanika@gmail.com

ସ୍ପର୍ଶକରି ସ୍ଫୁରଣ କରିବା ପାଇଁ ସାହିତ୍ୟ ହେଉଛି ଏକ ସଶକ୍ତ ମାଧ୍ୟମ । ଏହି ସ୍ଫୁରଣର ପ୍ରସ୍ଫୁଟନ ଓ ଅନୁରଣନ ହେଉଛି ସୃଜନଶୀଳତାର ପରିପ୍ରକାଶ, ଗୁଣାବଳୀର ପ୍ରତିଷ୍ଠା ।

ଜୀବନର ପ୍ରଥମରୁ ଦଶବର୍ଷ, କାହା କାହା ମତରେ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଅବସ୍ଥାକୁ ଶୈଶବ ଅବସ୍ଥା କୁହାଯାଏ । ମହାମନା ଚାଣକ୍ୟ ନିଜର ଅନୁଭବସିଦ୍ଧି ଅନୁଶାସନ ପ୍ରଦାନ କରିବାକୁ ଯାଇ କରିଛନ୍ତି - " ଲାଳୟେତ୍ ପଞ୍ଚବର୍ଷାଣି, ଦଶ ବର୍ଷାଣି ତାଡୟେତ୍, ପ୍ରାପ୍ତେତୁ ଷୋଡଶ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍" , ହୁଏତ ଉକ୍ତିର ଭିନ୍ନାର୍ଥ କରାଯାଇପାରେ କିନ୍ତୁ ସରଳ ଅର୍ଥ ହେଲା ବ୍ୟକ୍ତିକୁ ପାଞ୍ଚବର୍ଷ ପର୍ଯ୍ୟନ୍ତ ଲାଳନ ପାଳନ, ଦଶ ବର୍ଷ ବୟସ ପର୍ଯ୍ୟନ୍ତ ଅନୁଶାସନ ଏବଂ ଷୋହଳ ବର୍ଷ ହୋଇଗଲେ ମିତ୍ରବତ୍ ଆଚରଣ ଶୃଂଖଳାରେ ରଖାଯିବା ଦରକାର । ଏଥିରୁ ସ୍ପଷ୍ଟ ଯେ ନିର୍ଦ୍ଦିଷ୍ଟ ବୟସର ମାନସିକ ବୃତ୍ତି ପାଇଁ ଭିନ୍ନ ଭିନ୍ନ ପର୍ଯ୍ୟାୟରେ ବ୍ୟବହାର ଆଚରଣର ଭିନ୍ନତା ରହିଛି । ଏହାକୁ ଦୃଷ୍ଟିରେ ରଖିଲେ ସାହିତ୍ୟର ସ୍ୱରୂପ ବିଭାଗ ଶୈଳୀର ଭିନ୍ନତା ପ୍ରତି ଯଥେଷ୍ଟ ଧ୍ୟାନ, ପ୍ରତ୍ୟେକ ବୟସ ପର୍ଯ୍ୟାୟର ପାଠକଙ୍କ ପ୍ରତି ରଖାଯିବା ଆବଶ୍ୟକ, ଯାହାର ପରିପାଳନ ସମ୍ୟକ ରୂପେ ହୋଇ ଆସୁଛି ।

ଶୈଶବରେ ବିଭିନ୍ନ ଅବସ୍ଥା ଭେଦରେ ଭାଷା କହିବା, ଶୁଣିବା, ଗ୍ରହଣ କରିବାର ଏକ ନିର୍ଦ୍ଦିଷ୍ଟ ପ୍ରକ୍ରିୟା ରହିଛି । ଏହା ମନୋବୈଜ୍ଞାନିକ । ବ୍ୟକ୍ତିର 'ମନ' ଏବଂ 'ଭାଷା'କୁ ନେଇ ଯେଉଁ ଉଚ୍ଚତର ଗବେଷଣା ଚାଲିଛି ସେଥିରୁ ସୃଷ୍ଟି ହୋଇଛି ଜ୍ଞାନରାଜ୍ୟର ଏକ ନୂତନ ଶାଖା-ମନୋଭାଷା ବିଜ୍ଞାନ ବା ମନୋଭାଷିକୀ (Psycholinguistic) । ମନୋଭାଷିକୀ ସୂଚାଏ ବ୍ୟକ୍ତି କେଉଁ ଅବସ୍ଥାରେ କେଉଁ ଭଳି ଭାଷା ପ୍ରୟୋଗ କରେ ଏବଂ କେଉଁଭଳି ଭାଷା ବ୍ୟବହାର ଦ୍ୱାରା ବ୍ୟକ୍ତିର ସୃଜନଶୀଳତାର ମର୍ମ ଅଂଶକୁ ସ୍ପର୍ଶ କରାଯାଇପାରିବ । ଏହି ଦୃଷ୍ଟିରୁ ଆଜିର ଶିଶୁ ସାହିତ୍ୟିକ ଆଗରେ ନିଶ୍ଚିତ ଭାବରେ ଏକ ବୃହତ୍ତର ଏବଂ ଗଂଭୀର ଆହ୍ୱାନ ରହିଛି । ଶିଶୁମାନଙ୍କୁ ଆକର୍ଷିତ କରିବା ପାଇଁ ଆଈମା କାହାଣୀର ବୁଢୀ ଅସୁରୁଣୀର ଦାନ୍ତ କଟମଟରୁ ଘଡଘଡି ଗର୍ଜନର ସୃଷ୍ଟି କିମ୍ବା ତୃଷିତ ଠେକୁଆର ମୃତ୍ୟୁରେ ତାର କଳେବରକୁ ଦୁଃଖିତ ଚନ୍ଦ୍ର ନିଜ ବକ୍ଷରେ ସ୍ଥାନ ଦେଇ କଳଙ୍କ ଧାରଣ କରିବାର ଘଟଣା ଆଜି ଶିଶୁ ଭିତରେ ଆବେଗ ସଂଚାରର ପାଥେୟ ଭାବରେ ଉପଯୋଗୀ ସିଦ୍ଧ ହୋଇପାରୁନାହିଁ ।

ଶିଶୁ ମାନଙ୍କର ବୟସକୁ ଦୃଷ୍ଟିରେ ରଖି ସେମାନଙ୍କ ପାଇଁ ଉପଯୋଗୀ ସାହିତ୍ୟକୁ ଦୁଇଟି ବର୍ଗରେ ରଖାଯାଇପାରେ ଯାହାକି ମନୋଭାଷିକୀ ସମ୍ମତ । ପ୍ରଥମ ବର୍ଗଟି ତିନିରୁ ପାଞ୍ଚ ଓ ଦ୍ୱିତୀୟ ବର୍ଗ ଛ'ରୁ ଦଶ ବର୍ଷ ବୟସ୍କ ଶିଶୁଙ୍କ ପାଇଁ । ମୋଟା ମୋଟି ଶିଶୁ ସାହିତ୍ୟର ପରିକଳ୍ପନା ଏହି ବର୍ଗୀକରଣର ଆଧାରରେ କରାଯାଇପାରେ । ପାଞ୍ଚବର୍ଷ ବୟସ ପର୍ଯ୍ୟନ୍ତ ଶିଶୁଙ୍କ ପାଇଁ ମୌଖିକ ସାହିତ୍ୟର ଆବଶ୍ୟକ ପଡିଥାଏ ।



Digitized by srujanika@gmail.com

ଚିତ୍ରାବଳୀର ସହଯୋଗ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ରୁଚି ସଂପନ୍ନ ଚିତ୍ତାକର୍ଷକ ଧ୍ୱନ୍ୟାତ୍ମକ ପଦାବଳୀର ଆଶ୍ରୟ ନେବା ପୁରାତନ ସମୟରୁ ଆଧୁନିକ ସମୟ ପର୍ଯ୍ୟନ୍ତ ପ୍ରତିପାଦିତ ହୋଇ ଆସିଛି । ଛ' ବର୍ଷ ବୟସରୁ ଊର୍ଦ୍ଧ୍ୱ ଅବସରରେ ମୌଖିକ-ଲିଖିତ-ଚିତ୍ର ସମ୍ବଳିତ ତଥା ଗୀତ ଓ ଗଳ୍ପ ଅନୁସରିତ ହେବା ମହତ୍ତ୍ୱପୂର୍ଣ୍ଣ । କଥା ହେଲା ଯେ ଏହାର ସଫଳ ପ୍ରୟୋଗ କେବଳ କୁଶଳୀ ଶିଶୁ ସାହିତ୍ୟିକ ଦ୍ୱାରା ସମ୍ଭବ ।

ଓଡ଼ିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ମଧୁସୂଦନ ରାଓଙ୍କ ମଧୁବର୍ଣ୍ଣବୋଧ ଏକ ପ୍ରାରମ୍ଭିକ ସଶକ୍ତ ପ୍ରୟାସ । ଫକୀର ମୋହନ, ଗୋଦାବରୀଶ ମିଶ୍ର ଆଦିଙ୍କ ସହଯୋଗ ଏହି ପ୍ରୟାସକୁ ବହୁଗୁଣିତ କରିଛି । ପଲ୍ଲୀକବି ନନ୍ଦ କିଶୋର ବଳ ଜଣେ ଦିଗଦର୍ଶକ ଭାବରେ ପ୍ରତିଷ୍ଠିତ । ରାମକୃଷ୍ଣ ନନ୍ଦ ଶିଶୁ ସାହିତ୍ୟର ବିସ୍ତାରରେ ଯୋଗଦାନ କରିଥିବା ଜଣେ ମହାନ୍ ସାହିତ୍ୟିକ । ଉଦୟନାଥ ଷଡଙ୍ଗୀ, କ୍ଷୀରୋଦ ଚନ୍ଦ୍ର ପୋଥାଳ, ବନମାଳୀ ବ୍ରହ୍ମଚାରୀ, ବିନୋଦ କାନୁନ୍‌ଗୋ, ମନୀନ୍ଦ୍ର ମହାନ୍ତି, ନଦୀୟା ବିହାରୀ ମହାନ୍ତି, ଜଗନ୍ନାଥ ମହାନ୍ତି, ଦିଗରାଜ ବ୍ରହ୍ମା ଇତ୍ୟାଦି ଶିଶୁ ସାହିତ୍ୟର ଗତିଶୀଳ ଧାରାରେ ଜଣେ ଜଣେ ସଫଳ ସ୍ରଷ୍ଟା, ସାର୍ଥକ ଆଧାର ସ୍ତମ୍ଭ । ଏମାନଙ୍କ ଭିତରେ ଅଛନ୍ତି ଅନନ୍ୟ ପ୍ରତିଭାର ଅଧିକାରୀ ଡକ୍ଟର ବସନ୍ତ କିଶୋର ସାହୁ ।

ବସନ୍ତ କିଶୋରଙ୍କ ରଚନା ସଂସାରର ଫଳକ ଅତ୍ୟନ୍ତ ବ୍ୟାପକ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା ସହିତ ଅନେକ ଗବେଷଣାଧର୍ମୀ ରଚନାର ସଫଳ ସ୍ରଷ୍ଟା ସେ । ତାଙ୍କ ସଂପାଦନାରେ ଅନେକ ସଂକଳନ ଓ ପତ୍ରିକା ପ୍ରକାଶିତ । ସେ ପାଇଛନ୍ତି ଅନେକ ଅନୁଷ୍ଠାନରୁ ପୁରସ୍କାର ଏବଂ ସଂବର୍ଦ୍ଧନା । ଏ ସମସ୍ତ ସତ୍ତ୍ୱେ ସେ ନିବିଡ ଭାବରେ ଭଲପାଆନ୍ତି ଶିଶୁ ସାହିତ୍ୟକୁ ଏବଂ ତାଙ୍କ ପରିଚୟର ପ୍ରତିଷ୍ଠା ରହିଛି ଜଣେ ସଫଳ ଶିଶୁ ସାହିତ୍ୟିକ ଭାବରେ ।

## ଆଲୋଚନାର ପ୍ରଥମ ପ୍ରସ୍ଥ : ଉଦୁଉଦୁମା

ଡକ୍ଟର ସାହୁଙ୍କର ଶିଶୁ ସାହିତ୍ୟ ସଂସାରକୁ ଅନବଦ୍ୟ ଅବଦାନ ହେଉଛି 'ଉଦୁଉଦୁମା' (୨୦୦୩) । ପ୍ରଥମ ପ୍ରସ୍ଥରେ ଏହି ପୁସ୍ତକର ସମ୍ୟକ୍ ଆଲୋଚନା ସର୍ଜକଙ୍କର ସୃଜନଶୀଳତାର ନୂତନ ଦିଗନ୍ତ ଉନ୍ମୋଚନ କରିବାର ସଂଭାବନା ଓ ସଂକେତ ପ୍ରଦାନ କରିବାରେ ହୁଏତ କିଂଚିତ୍ ମାତ୍ରାରେ ସମର୍ଥ ହେବ ।

ପୁସ୍ତକଟିର ନାମକରଣ ଶିଶୁ ସୁଲଭ-ରୁଚି ସଂପନ୍ନ-ଧ୍ୟାନାକର୍ଷଣକାରୀ ଧ୍ୱନ୍ୟାତ୍ମକ ଶବ୍ଦକ୍ରମ ଦ୍ୱାରା ପରିବେଷିତ । ଉଦୁଉଦୁମା, ତାଳଗୋଟମା ଏକ ଶିଶୁ ମନୋରଞ୍ଜନକାରୀ ଖେଳର ଧାରା ଯାହା ୩ରୁ ୬ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁଙ୍କୁ ବିଶେଷ ଭାବରେ ଆନନ୍ଦ ପ୍ରଦାନ କରିଥାଏ । ଆନନ୍ଦ ପ୍ରଦ ଶିକ୍ଷଣ ଜ୍ଞାନାର୍ଜନର ଏକ ବଳିଷ୍ଠ ଓ ପ୍ରଭାବଶାଳୀ ମାଧ୍ୟମ, ଏ ବିଷୟରେ ସୃଜନଶୀଳ ଲେଖକ ବେଶ୍ ପରିଚିତ । ପୁସ୍ତକରେ



Digitized by srujanika@gmail.com

ନାମକରଣ ସେହି କ୍ରମକୁ ଅନୁସରଣ କରି 'ଉଦୁଉଦୁମା' ନାମରେ ନାମିତ କରାଯାଇଛି । ଶିଶୁ ମନକୁ ଛୁଇଁବା ଭଳି ସତରଟି ଶିଶୁ କବିତା ଏଥିରେ ସନ୍ନିବେଶିତ ଯେଉଁ ଗୁଡିକ ଧ୍ୱନ୍ୟାତ୍ମକ ପଦ ଜନିତ ଶିରୋନାମା ବା ଶୀର୍ଷକରେ ରହିବା ସଙ୍ଗେ ସଙ୍ଗେ କବିତା ଗୁଡିକ ମଧ୍ୟ ଧ୍ୱନ୍ୟାତ୍ମକ ବର୍ଣ୍ଣର ଅନୁରଣନରେ ଗୁଂଜରିତ । କତିପୟ ବିଶେଷତା ଏଠାରେ ସ୍ଥାନାଙ୍କିତ କରାଯାଇ ପାରେ ।

**ଶୀର୍ଷକ ଗୁଡିକର ନାମକରଣରେ ପରମ୍ପରାର ନିର୍ବାହ :**

ଉଦୁଉଦୁମା, ଇଟିକିଲି ମିଟିକିଲି, ଘୁମୁରୁ ଘୁମୁରୁ ଘୁମୁରେ ପାରା, ସୁନା କୁଲେଇ କୁ ରୂପା କୁଲେଇ, ଓସ୍ତ ପତର ପାନିଆ, ଝୁଲ୍‌ରେ ହାତୀ ଝୁଲ୍, ପଇତରେ ପାଣି ଢଅକଢକ, ପକା କମଳ ପୋତ ଛତା ଆଦି ଶୀର୍ଷକରେ ପରମ୍ପରା ଫୁଟି ଉଠିଛି । ଶୀର୍ଷକ ନାମଗୁଡିକ ଶ୍ରୁତି ମଧୁର, ଧ୍ୱନ୍ୟାନୁରଣନକାରୀ ହେବା ସହତି ପାରମ୍ପାରିକ ମୌଖିକ ଶିଶୁଗୀତ ଅଥବା ଆଇମା' କାହାଣୀର ପ୍ରଥମ ପଂକ୍ତି, ମର୍ମାଂଶର ଅଂଶ ବିଶେଷ । ଅବୋଲକରା କାହାଣୀର ପକା କମଳ ପୋତ ଛତା, ବସ୍ ଆବୋଲକରା ଶୁଣ କଥାର ଆବୋଲକାର ଚରିତ୍ର ଆଢୁଆଳରେ ଯେଉଁ ଶିକ୍ଷଣ ଲୁଚି ରହିଛି, 'ପକା କମଳ ପୋତ ଛତା' କବିତାଟି ତାର ସ୍ୱର ସଙ୍କେତ ବହନ କରି ଶିଶୁ ମାନସିକତାର ଅଧୁନାତନ ଲକ୍ଷଣ ସହିତ ଭବିଷ୍ୟତ ପାଇଁ ବୀଜ ରୂପେ ନୈତିକତାର ଭାବ ସଞ୍ଚାର କରୁଛି । ଅନ୍ୟାନ୍ୟ ଶୀର୍ଷକଗୁଡିକ ଭିତରେ ମୌଖିକ ଶିଶୁ କ୍ରୀଡା ସଙ୍ଗୀତର ଗୁଞ୍ଜନ ରହିଛି ଯଥା:- ଉଦୁଉଦୁମା ତାଳଗୋଟମା, ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ - ତମର ଆମର ନାଲି ପଇଁଚ, ଓସ୍ତ ପତର ପାନିଆ-ଚଉଧୁରୀ ଘର କନିଆ ଆଦି । ମା' କୋଳରେ ଝୁଲୁଥିବା ଶିଶୁକୁ ମା ଝୁଲୁରେ ହାତୀ ଝୁଲ୍-ବାଆ ପାଣି ଖାଇ ଫୁଲ୍, ପଦରେ ଝୁମେଇ ଦେଇ ଖୁଆଇବା ଶୁଆଇବା ଆଦି କାମକୁ ସହଜ କରିଦେବା ବହୁ ପ୍ରଚଳିତ । ସେହି ମାନସିକତାରୁ ଲାଭ ଉଠାଇ କବି ଝୁଲୁରେ ହାତୀ ଝୁଲ୍ ଶୀର୍ଷକର ଅବତାରଣା କରିଛନ୍ତି । 'ଘୁମୁରୁ ଘୁମୁରୁ ଘୁମୁରେ ପାରା' ଲୋକ କାହାଣୀ ତଥା ଲୋକ କବିତାର ଏହି ପଂକ୍ତିରେ ମଧ୍ୟ ସେହି ସୃଜନଶୀଳ ଭାବନା ଜଡିତ ।

**ଶୀର୍ଷକ ନାମକରଣରେ କେବଳ ଧ୍ୱନ୍ୟାତ୍ମକ ପଦ:**

ଉପରେ ଆଲୋଚିତ ଶୀର୍ଷକ ଗୁଡିକରେ ପରମ୍ପରାର ନିର୍ବାହ ସହିତ ସୁନେଲି ଆଶା ସଞ୍ଚରିତ, ଏଥିରୁ କେତୋଟି ଧ୍ୱନ୍ୟାତ୍ମକ ପଦ । ସେଗୁଡିକ ହେଲା କଟର ମଟର କାଉଁରିଆ, ଗୁଆ ଗଛ ଧାଡିକି ଧାଡି, ଛଇକୁ ଛଟକ ବଢିଆ, ଝାଇଁକି ଝିଙ୍କର ଝଙ୍କାଳିଆ, ଆଇଗଣ କି ବାଇଗଣ, ଆଇଫଳ କୁ ଜାଇଫଳ, ଆବୁରୁ ଜାବୁରୁ, କଟର କେଁ ଆଦି । ଏହି ଶୀର୍ଷକ ଗୁଡିକ ମଧ୍ୟରୁ ଆବୁରୁ ଜାବୁରୁ, କଟର କେଁ ସଂପୂର୍ଣ୍ଣ ଭାବରେ ଧ୍ୱନ୍ୟାତ୍ମକ ହୋଇଥିଲା ବେଳେ ଅନ୍ୟ ଶୀର୍ଷକ ଗୁଡିକରେ ଗୋଟିଏ ସାର୍ଥକ ପଦ ସହିତ ଧ୍ୱନ୍ୟାତ୍ମକ ପଦ ରହିଛି ଯେପରି ଝାଇଁକି ଝିଙ୍କର ଝଙ୍କାଳିଆ ।



Digitized by srujanika@gmail.com

**ଗୀତ ଗୁଡିକରେ ଲୟ ପ୍ରବାହ:**

ରଚନାର ଶୈଳୀ ଓ ବର୍ଣ୍ଣ ସଂଯୋଜନା ଆଦ୍ୟନ୍ତ ଏକ ଅନ୍ତଃ ପ୍ରବାହ ସୃଷ୍ଟି କରିଥାଏ । କେତେକ ଆଲୋଚକ ଲୟ ପ୍ରବାହକୁ ଶବ୍ଦ ସହିତ ଜଡିତ କହୁଥିବା ବେଳେ କେତେକ ଅର୍ଥ ସହିତ ରହିଥିବା ପ୍ରକାଶ କରନ୍ତି । ଯଦିଚ ଆଲୋଚକମାନଙ୍କ କଥାରେ ଦମ୍ ରହିଛି ଆମର କହିବା କଥା ହେଲା ଲୟ ପ୍ରବାହ ଏକ ସତଃସ୍ଫୂର୍ତ୍ତ ପ୍ରବାହ ହୋଇଥିବା ଯୋଗୁଁ ଶବ୍ଦ ଓ ଅର୍ଥ ଉଭୟର ସମ୍ମିଳିତ ଲୟ ପ୍ରବାହ ଏକାନ୍ତ ଭାବରେ କୌଣସି ଗୀତ ବା କବିତାର ପ୍ରାଣସଞ୍ଚାର କରିବାରେ ସମର୍ଥ ହୋଇଥାଏ । ଶିଶୁ ଗୀତି କବିତାରେ ଏହା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଶିଶୁକୁ ମଜେଇ, ହସେଇ, ରସେଇ, ରସସିକ୍ତ ଭାବନାର ଆଦ୍ରତା ତା' ଭିତରେ ଭରିବାରେ ଏହାର ଯୋଗଦାନ ରହିଛି ।

ଉଦୁଉଦୁମାର ସମସ୍ତ ରଚନା ପ୍ରଥମ 'ଉଦୁଉଦୁମା'ରୁ ଆରମ୍ଭ କରି ଅନ୍ତିମ "ପକା କମ୍ବଳ ପୋତ ଛତା" ଏହି ଦୃଷ୍ଟିରୁ ତରଳ ଶବ୍ଦ ସଂଯୋଜନା, ସରଳ ବାକ୍ୟ ବିନ୍ୟାସ, ଜଟିଳ ଭାବ ପ୍ରସ୍ଫୁଟନରେ ଋଦ୍ଧିମନ୍ତ ।

**ଗେୟତା ବା ଗୀତିମୟତା:**

ଶିଶୁ ଗୀତି କବିତାରେ ଗୀତିମୟତା ହେଉଛି ଆକର୍ଷଣର ପ୍ରଧାନ ବିଶେଷତ୍ୱ । ଗୀତ ଗାଇ ମଜ୍ଜିବାରେ ଅନନ୍ୟ ଆନନ୍ଦ । ଗୀତର ଛନ୍ଦରେ ବିଭୋର ଶିଶୁ ତା ମନଟିକୁ ଖୋଲିଦିଏ, ଉନ୍ମୁକ୍ତ କରି ରଖେ, ତା ଭିତରର ପ୍ରତିଭା ରୂପୀ ଯନ୍ତ୍ର ଗତିଶୀଳ ହୋଇଯାଏ । ଶିଶୁ ବିଭୋର ଛନ୍ଦ ଦ୍ରଷ୍ଟବ୍ୟ :

୧)
କଟର ମଟର କାଉଁରିଆ,
ମାଇଁ ଯାଉଥିଲେ ବାପ ଘର ଚାଲି
ପାରି କଲା ନାହିଁ ନାଉରିଆ ॥
କାତ ମାରୁଥାଏ ନାଉରିଆ
ହାତ ପାଉନାହିଁ, କାତ ପାଉନାହିଁ
ନଈତ ଏଇଠି ଗହୀରିଆ ॥

୨)
ସୁନା କୁଲେଇକୁ ରୂପା କୁଲେଇ
ମାଆ ଦେଉଛନ୍ତି ଦୋଳି ଝୁଲେଇ,
ଦୋଳିରେ ବସିଛି ଫୁଲେଇରାଣୀ
ଫୁଲେଇ ରାଣୀର ମୁଣ୍ଡରେ ବେଣୀ ॥

ଉଦୁଉଦୁମାର ସମସ୍ତ ରଚନା ଗୀତିମତ୍ତାରେ ଅନୁବନ୍ଧିତ । ଗୀତିମତ୍ତା ଲୟ ପ୍ରବାହର ପ୍ରବାହକୁ ମଧ୍ୟ ଗତିଶୀଳ କରୁଥିବା ଏକ ଉପାଦାନ ।



Digitized by srujanika@gmail.com

## ଶିଶୁ ଗୀତ ଗୁଡିକରେ ଅନ୍ତଃସ୍ୱର :

ପୁସ୍ତକରେ ଥିବା ଏହି ଗୀତି କବିତାଗୁଡିକୁ ମନଫୁଲାଣିଆ ଗାନ କରାଯାଇପାରେ । ଏକ ସରସ ସୁନ୍ଦର ଶିଶୁ ଉପଯୋଗୀ ଗାନ-ପଠନ ପରିବେଶ ସୃଷ୍ଟି ପାଇଁ ସମସ୍ତ ପ୍ରକାର ଖୋରାକ ଏଗୁଡିକ ଭିତରେ ଅଛି । ମଧୁସୂଦନ ରାଓଙ୍କର 'ବାଲ୍ୟକାଳୁ ଧର୍ମ ଧନ ମୁଁ ସଞ୍ଚିବି' ଏ ଜୀବନ ଅନିଶ୍ଚିତର ଅନ୍ତଶ୍ଚେତନା ଏକ ଆଦର୍ଶ ନୈତିକ ଜୀବନ ଯାପନର ପୃଷ୍ଠଭୂମି' ପ୍ରସ୍ତୁତ କରିଥାଏ । ସେହିପରି ଡ.ବସନ୍ତ କିଶୋର ସାହୁଙ୍କ ଉଦୁଉଦୁମାରେ ରହିଛି ଭବିଷ୍ୟତ ପାଇଁ ଅର୍ଥସଂଯମର ଆହ୍ୱାନ, ହସି ହସାଇବା ଜୀବନ ଯାପନ, ଭବିଷ୍ୟତ ପାଇଁ ସୁନେଲି ସ୍ୱପ୍ନ, ସ୍ୱାମୀ-ସ୍ତ୍ରୀଙ୍କ ଅନାବିଳ ସ୍ନେହ, ଅଜା-ନାତି ବିନୋଦ, ପରିଶ୍ରମର ଆନନ୍ଦ, ମିଥ୍ୟା ପ୍ରତି ଘୃଣା, ଗ୍ରାମ ମମତା, ଅସ୍ଥିର ନ ହେବା, ବୁଝି ବିଚାରି କାମ କରିବା, କୃଷି ସୂଚନା, ପେଟ ପାଇଁ ନାଟ, ଦୁନିଆ ରୀତି, ଶିଶୁମନ, ପର୍ଯ୍ୟଟନ ମହତ୍ୱ, କ୍ଷୁଦ୍ରର ମହତ୍ତ୍ୱ, ଜୀବନ ଦର୍ଶନ, ପର ହିତ, ଲୋଭ ତ୍ୟାଗ, ମଧୁର ବଚନ କହିବା, ସତ୍ୟ-ନ୍ୟାୟ ଆଚରଣ, କର୍ମଫଳ, ଗୁରୁ ଉପଦେଶ, ଆତ୍ମନିର୍ଭରଶୀଳତା, ପର୍ଯ୍ୟାବରଣ ସଚେତନତା, ଶବ୍ଦ ଶିକ୍ଷା ଆଦି ଦ୍ରଷ୍ଟବ୍ୟ :

### ଅର୍ଥ ସଂଚୟ-ସଂଯମ :

୧) ଧାଇଁକି ଧକଡ ଡମ୍ବରୁ ବାଜା
ସଞ୍ଚୟ କରିବା ବହୁତ ମଜା ।
ଗୋଟିଏ ଗୋଟିଏ ପଇସା ରଖ
ଶହେ ହଜାର ହେଉଛି ଦେଖ ।।

୨) ଉଦୁଉଦୁମା ତାଳ ଗୋଟମା
ହିସାବ କରିଣ ଖରଚ ଜମା ।
ଆଗତ କଥା ଏବେଠୁ ଚିନ୍ତ
ଗୋଟିକୁ ଗୋଟି ପଇସା ସଞ୍ଚ ।।

### ହସି ହସାଇବା ଜୀବନ :

ହସ ଖୁସି ଅଟ୍ଟା ମଜା ଜୀବନରେ ନଥିଲେ
ସବୁ ଦିଶେ ଅନ୍ଧକାର ଯେଉଁ ଆଡେ ଦେଖିଲେ ।
x x x
ମନ ଖୋଲି ହସି ଦେଲେ ବଢିଯାଏ ଆଇସ
ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ ।



Digitized by srujanika@gmail.com

**ଭବିଷ୍ୟତ ସ୍ୱପ୍ନ :**

ସାଇଁ ସାଇଁ ହୋଇ ଉଡୁଛି ଗୁଡି
ବବୁଲୁ ଧରିଛି ସୂତାକୁ ଭିଡି ।
ମନରେ ତାହାର ଅନେକ କଥା
କିପରି ଉଡିବ ଗୁଡି ପରିକା ।
ସତ ହେବ ଦିନେ ସପନ ତା'ର
ଖୁସିରେ ଉଡିବ ତଲୁ ଉପର ।

**ସ୍ୱାମୀ-ସ୍ତ୍ରୀଙ୍କ ଅନାବିଳ ସ୍ନେହ :**

ଘୁଞ୍ଚି ଘୁଞ୍ଚି ଯାଏ ଟଗର
ହସି ଦେଲେ ମାଇଁ, ଯେମିତି ଶୁଣିଲେ
ମାମୁ ଆସିବାର ଖବର ।

**ଅଜା-ନାତି ବିନୋଦ :**

ଗୁଆ ଗଛ ଧାଡିକି ଧାଡି
ଅଜାଙ୍କର ଦେଖ ବଙ୍କୁଲି ବାଡି ।
ବଙ୍କୁଲି ବାଡିକୁ ଧରିଣ ଅଜା
ଗୋଡ ଟାଣି ଦେଇ ଦେଖନ୍ତି ମଜା ।।

**ପରିଶ୍ରମର ଆନନ୍ଦ :**

ଶଗଡିଆ ଭାଇ ଗାଉଛି ଗୀତ
ଖାତର ନକରି ବରଷା ଶୀତ ।

**ମିଥ୍ୟା ପ୍ରତି ଘୃଣା :**

ନଡିଆର ଦେଖ ତିନିଟା ଆଖି
ମିଛ କଥା ପାଇଁ ଦିଅନା ସାକ୍ଷୀ ।

**ଗ୍ରାମ ମମତା :**

ସହର ଠୁ ଗାଆଁ ବଢିଆ
ଜମି ରଖ ନାହିଁ ପଡିଆ ।

**ସ୍ଥିରତା/ ବୁଝି ବିଚାରି କାମ କରିବା :**

ନାହିଁ ଠାରୁ ହଁ ବଢିଆ
ଭଲ ନୁହେଁ ହଡବଡିଆ



Digitized by srujanika@gmail.com

ବୁଝିବିଚାରି କରିଲେ କାମ
ବଢ଼ିଆର ଭାଇ ବଢ଼ିବ ନାମ ।

**ମଧୁର ବଚନ ବ୍ୟବହାର, ସେବା–ଦୟା–କ୍ଷମା–ସତ୍ୟ ନ୍ୟାୟ ପଥ ଆଚରଣ :**

କଟୁ କଥା କାରେ କୁହନା,
ମିଠା କଥା କହି ମନ ନିଅ ମୋହି
ଶଠତାରେ କେବେ ଭୁଲନା ।

ଦୁଃଖି ରଙ୍କି ସେବା କରିବ
ଦୟା କ୍ଷମା ଗୁଣ ଆଚରି ପାରିଲେ
ସଂସାର ସାଗରୁ ତରିବ ।

ସତ୍ୟ ନ୍ୟାୟ ପଥ ବରିବ
ତେବେ ଯାଇ ତୁମ କଣ୍ଟକିତ ପଥେ
କୁସୁମ ଆଞ୍ଜୁଳି ଝରିବ ।

ଶିଶୁ ସାହିତ୍ୟର ଅମୂଲ୍ୟ ସଂପଦ 'ଉଦୁଉଦୁମା', ଶିଶୁ ବିଶେଷ କରି ପାଞ୍ଚରୁ ସାତ ବର୍ଷ ଶିଶୁଙ୍କ ପାଇଁ ମନୋରଞ୍ଜନ-ଗେୟଧର୍ମୀ ହେବା ସହିତ ଶିକ୍ଷଣର ସୁନ୍ଦର-ସହଜ-ସାବଲୀଳ ମାଧମ ହୋଇପାରିଛି । ପୁସ୍ତକଟିର ସମସ୍ତ ରଚନା ସହିତ ଉପଯୋଗୀ ଚିତ୍ର ସଂଯୋଜିତ ହୋଇ ସୁଖ ପାଠ୍ୟ କରାଯାଇଛି । ଚିତ୍ରଗୁଡିକ ରଙ୍ଗୀନ ହୋଇପାରିଥିଲେ ଅଧିକ ଧ୍ୟାନାକର୍ଷଣକାରୀ ହୋଇପାରିଥାନ୍ତା । ମୁଖ ପୃଷ୍ଠାରେ ଅଙ୍କିତ ଶୁଆଟିକୁ ପିଜୁଳି ଖୁଆଇବା ପାଇଁ ଉଦ୍ୟତ ପୁଅଝିଅ ଏବଂ ପଛ କଭର ପୃଷ୍ଠାରେ ସ୍ଥାନ ପାଇଥିବା ଶିଶୁଙ୍କ ଖେଳ ସହିତ କୁକୁଡା, ହରିଣ ଛୁଆ, ଠେକୁଆ ଆଦି ବେଶ୍ ଭାବ ବ୍ୟଞ୍ଜକ ମନୋଧର୍ମୀ । ଶିଶୁ ସାହିତ୍ୟିକ ଡକ୍ଟର ବସନ୍ତ କିଶୋର ସାହୁଙ୍କ ପ୍ରସ୍ତୁତିରେ ଉପଯୁକ୍ତ ବର୍ଗର ଶିଶୁ ମନସ୍ତତ୍ତ୍ୱର ସମସ୍ତ ଦିଗ ପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇଛି । ସେଥିପାଇଁ ଏହା ସଫଳତାର ସୋପାନରେ ଉପନୀତ । ଶିଶୁ ମନୋବିଜ୍ଞାନ ସହିତ ଭାଷା ବିଜ୍ଞାନ ତଥା ସାହିତ୍ୟର ସମୁଚିତ ସମାବେଶ 'ଉଦୁଉଦୁମା'କୁ ରସାଣିତ କରିଛି ସର୍ବୋପରି ଉଦ୍ଦେଶ୍ୟ ସାଧନରେ ସହାୟକ ହୋଇଛି ।



(ଡ. ବସନ୍ତ କିଶୋର ସାହୁଙ୍କ ଶିଶୁ ସାହିତ୍ୟ ସଂସାରର ଆକଳନ ପାଇଁ ଅନ୍ୟାନ୍ୟ ପ୍ରସ୍ଥଗୁଡିକ ପୃଷ୍ଠାର ବହୁଳତା ଦୃଷ୍ଟିକୋଣରୁ ଏଠାରେ ସନ୍ନିବେଶିତ କରାଯାଇ ନାହିଁ ।)

ବୋରିଗୁମା, କୋରାପୁଟ



Digitized by srujanika@gmail.com

# ଅନନ୍ୟ କୃତି 'ହାତ ଦେବା ଭଲ କାମେ'

ଦେବେନ କୁମାର ପଟେଲ

ଶିଶୁ ସାହିତ୍ୟ ଜଗତରେ ଡ଼କ୍ଟର ବସନ୍ତ କିଶୋର ସାହୁ ଏକ ସ୍ପର୍ଦ୍ଧିତ ଉଚ୍ଚାରଣ । ଶିଶୁଙ୍କୁ ସାହିତ୍ୟ ମନସ୍କ କରିବାର କଳା ତାଙ୍କର କୃତିଗୁଡ଼ିକରେ ସ୍ପଷ୍ଟଭାବେ ବାରି ହୋଇ ପଡ଼େ । ସୁନ୍ଦର ଶବ୍ଦ ସହ ଅମୂଲ୍ୟ ଉପଦେଶଗୁଡ଼ିକୁ ନିଜ କବିତାରେ ଗୁନ୍ଥି ପକାଇବା ତାଙ୍କର ଏକ ସ୍ୱତନ୍ତ୍ର କଳା କହିଲେ ଅତ୍ୟୁକ୍ତି ହେବନାହିଁ । ଆଉ ଏହି କଳା ସାହିତ୍ୟ ଜଗତରେ ତାଙ୍କର ସ୍ୱାତନ୍ତ୍ର୍ୟକୁ ପ୍ରତିପାଦନ କରିବା ସହ ଶିଶୁମାନଙ୍କ ମଧ୍ୟରେ ସାହିତ୍ୟ ପ୍ରତି ରୁଚି ସୃଷ୍ଟି କରିଥାଏ ।

ତାଙ୍କର କୃତି ସମୂହ ମଧ୍ୟରୁ 'ହାତ ଦେବା ଭଲ କାମେ'କୁ ଏକ ଉଚ୍ଚାଙ୍ଗ ଶିଶୁ ସାହିତ୍ୟ ଭାବେ ଗଣନା କରାଯାଇ ପାରେ । ଶୀର୍ଷକ କବିତାରେ ଧନ ପ୍ରତି ମଣିଷ ମନରେ ଥିବା ଅହେତୁକ ଲୋଭ ତାକୁ ସୁଖ ନୁହେଁ ବରଂ ଦୁଃଖର ସହଭାଗୀ କରିବାର ବାର୍ତ୍ତା ଦେଇଥାଏ । ଦୁଃଖୀ ଲୋକଙ୍କ ମନକୁ ଆପଣାଇ ନେଇ ମିଠା କଥା ସହ ଦାନ ଧରମରେ ଦିନ କାଟୁଥିବା ଲୋକ ହିଁ ବିଭୁ କୃପାର ହକ୍‌ଦାର ହୋଇଥାଏ । ଏହାର ଗୁରୁତ୍ୱ ନିମ୍ନୋକ୍ତ ଉଦାହରଣରୁ ଜାଣିହୁଏ ।

ନିରିଧନ ଲୋକ ଦୟା ଅବତାର
　　　　ସୁଖରେ କାଟଇ ଦିନ,
ମିଠା କଥାରେ ସେ ଆପଣାଇ ନିଏ
　　　　ଦୁଃଖିରଙ୍କିଙ୍କର ମନ ॥'

ଶିଶୁମାନଙ୍କୁ ଦେଉଥିବା ଏହି ବାର୍ତ୍ତା କବିତାକୁ ମହିମାନ୍ୱିତ କରିଥାଏ । କବିତାର ଆଉ ଏକ ପଦରେ କବି ନିଜ ଯୁକ୍ତିକୁ ବଳିଷ୍ଠ କରିବା ପାଇଁ ଦର୍ଶାଇ ଲେଖିଛନ୍ତି-

'ଲଙ୍ଗଳା ହୋଇକି ଆସିଛି ମଣିଷ
　　　　ଯିବ ବି ଲଙ୍ଗଳା ହୋଇ,
ତେବେ କିଆଁ ଆମେ ବାଡାବାଡି ହେଉ
　　　　ଛାର ଏ ଧନ ପାଇଁ ।।'



Digitized by srujanika@gmail.com

ଏହି ବାର୍ତ୍ତା ବିଭିନ୍ନ ସାହିତ୍ୟରେ ଭିନ୍ନ ଭିନ୍ନ ଭାବେ ସ୍ଥାନିତ ହୋଇଛି । ତେବେ ମନକୁ ଛୁଇଁଲା ପରି ଭାବ ଯୋଗୁଁ ଡକ୍ଟର ସାହୁଙ୍କ ଏହି କବିତାକୁ ଆବାଳ-ବୃଦ୍ଧବନିତା ନିଶ୍ଚିତ ଭାବେ ଗ୍ରହଣ କରିବେ ।

ସେହିପରି ପରିବେଶ ସୁରକ୍ଷା ପରି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ମଧ୍ୟ ଡକ୍ଟର ସାହୁ ତାଙ୍କର ଏହି କବିତା ପୁସ୍ତକରେ ସ୍ଥାନିତ କରିବାକୁ ଭୁଲି ନାହାନ୍ତି । ଶିଶୁଙ୍କ ଅତି ଆପଣାର ଫୁଲକୁ ନେଇ ଲିଖିତ କବିତା 'ଫୁଲ ଆମେ ଫୁଲ'ରେ ଶିଶୁ ମନସ୍ତତ୍ତ୍ୱକୁ ବୁଝିବାର ଚିତ୍ର ପ୍ରତିଫଳିତ । ଫୁଲ ମଧ୍ୟରେ ପରିବେଶ ସୁରକ୍ଷାର ବାର୍ତ୍ତା ଲେଖି ଦିଆଯାଇଛି । ଫୁଲ ମୁହଁରେ ସେ ଏହି କବିତାରେ ବାର୍ତ୍ତା ଦେଇ ସୁନା, ରୂପା କି ମଣିମାଣିକ ଫୁଲ ସହ ତୁଳନୀୟ ନୁହନ୍ତି ବୋଲି କବି ଏକ ସ୍ଥାନରେ ଉଲ୍ଲେଖ କରିଛନ୍ତି-

'ପରଜାପତି ଆମରି ପାଇଁ
ସଞ୍ଜ ସକାଳେ ପାଗଳ ହୋଇ
ଡାଳକୁ ଡାଳ ଉଡିଉଡିକା
କରଇ କେତେ ଗେଲ
ଫୁଲ-ଆମେ-ଫୁଲ ।'

ପରଜାପତି ସହ ଫୁଲର ସଂପର୍କକୁ ସେ ଅତି ଚମତ୍କାର ଭାବେ ଏଠାରେ ବର୍ଣ୍ଣନା କରିଛନ୍ତି । ଫୁଲ ଓ ପରଜାପତିର ସଂପର୍କ ଅତି ନିବିଡ । ତେବେ ଏହି କବିତା ମାଧ୍ୟମରେ ସେ ଏହି ନିବିଡତାର ଦୂରତ୍ୱକୁ ଆହୁରି ହ୍ରାସ କରି ଦେଇଛନ୍ତି । ପରଜାପତି ସହ ମହୁମାଛିକୁ ମଧ୍ୟ ସେ ଭୁଲି ନାହାନ୍ତି ।

'ମହୁମାଛିଟି ଆମରି ପାଇଁ
ଖୁସିରେ ମସଗୁଲ
ଗୋଟାଇ ନିଏ ଆମଠୁ ମହୁ
ଜଗତ ହିତେ ଖୁସିରେ ଦେଉ
ଏମିତି ଚିଜ, ପାଇବ ନାହିଁ
ଜଗତ ପଛେ ବୁଲ
ଫୁଲ-ଆମେ-ଫୁଲ ।'

ପର ସେବାରେ ନିଜକୁ ସମର୍ପିତ କରିଥିବା ଫୁଲର ଏହି ବାର୍ତ୍ତା ଶିଶୁ ମନକୁ କେମିତି ବା ନ ଛୁଇଁବ ।

ମାଟି ନୁହେଁ ମାଆଟି କବିତାରେ ମଧ୍ୟ ସମାନ ଭାବ ପରିଲକ୍ଷିତ ହୋଇଛି । ମାଟି କିଭଳି ଭାବେ ମାଆଟି ପରି ଆମର ଯତ୍ନ ନେଇଥାଏ କିନ୍ତୁ ତା'ର ପାଇବାର କିଛି


Digitized by srujanika@gmail.com

ଆଶା ନଥାଏ ତାହା ଏଥିରେ ଉଲ୍ଲେଖ ହୋଇଛି ।

ସେହିପରି 'ପଢ଼ିବା ଆମେ ପାଠ' ପିଲାଙ୍କ ପାଇଁ ପ୍ରେରଣାଦାୟକ । କବିତାର ପ୍ରଥମ ପଦରେ କବି ଲେଖିଛନ୍ତି-

'ଆସରେ ଆସ ଭାଇଭଉଣୀ
ପଢ଼ିବା ଆମେ ପାଠ,
ପଢ଼ି ଶିଖିଲେ ଜାଣିବା ସବୁ
ଦିଶିବ ନୂଆ ବାଟ ।'

ଏହା ସହିତ 'ଭାଇତ ଭାଇ'ରେ ଭାଇଭଉଣୀର ସ୍ନେହ ପ୍ରେମକୁ ଶିଶୁଙ୍କ ମନ କିଣିଲା ଭଳି ଶବ୍ଦରେ ସଜାଇ ଦେଇଛନ୍ତି । ଭାଇ ଭଉଣୀ ମଧ୍ୟରେ ରହିଥିବା ମାନଅଭିମାନର ଏକ ନିଛକ ପ୍ରତିଛବି ହେଉଛି 'ଭାଇତ ଭାଇ' ।

ଏହା ସହିତ 'ପଦିଆ ପାଇଲା ମୁକତି', 'ଝୁମୁରୁ ଝୁମୁରୁ ଝୁମୁକି କଠଉ', 'ଅରଡ ଚଢ଼େଇ ବରଡ ପକ୍ଷୀ', 'ଜୀବନେ ହେବା ବଡ', 'କାହିଁକି ଏମିତି ହୁଏ', 'ଆମ ପିଲାବେଳ କିଏ ନେଲା ?' ଆଦି କବିତାଗୁଡିକୁ ଉଚ୍ଚାଙ୍ଗ ଶିଶୁ ସାହିତ୍ୟ ଶ୍ରେଣୀଭୁକ୍ତ ବୋଲି ନିର୍ବିବାଦରେ କୁହାଯାଇପାରେ ।



'ସମାଜ' କାର୍ଯ୍ୟାଳୟ
ଜୟପୁର



Digitized by srujanika@gmail.com

# ସାହିତ୍ୟ ସମୀକ୍ଷକ ବସନ୍ତ କିଶୋର ସାହୁ: ଏକ ଅଧ୍ୟୟନ

**ଡକ୍ଟର ସୁରେଶ ଚନ୍ଦ୍ର କର**

ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚନା ତଥା ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ବସନ୍ତ କିଶୋର ସାହୁ ଏକ ଶ୍ରଦ୍ଧାଶୀଳ ବ୍ୟକ୍ତିତ୍ୱ । ସେ ଉତ୍ତରାଧିକାର ସୂତ୍ରରେ ଲାଭ କରିଛନ୍ତି ଏହି ପ୍ରତିଭା, ମାହାଙ୍ଗାର ଜଣେ କୃତି ସନ୍ତାନ ହିସାବରେ । କାରଣ, ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ ଓ ଗୌରବାନ୍ୱିତ କରିବାରେ ମାହାଙ୍ଗା ଅଞ୍ଚଳର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ମାହାଙ୍ଗା ଏପରି ଏକ ପୁଣ୍ୟଭୂମି, ଯେଉଁ ଭୂମିରେ ଭୂମିଷ୍ଠ ହୋଇଛନ୍ତି ଆଦିନାଟ୍ୟକାର ଜଗନ୍ମୋହନ ଲାଲ୍, ବାଗ୍ମୀ ତଥା 'ଉତ୍କଳ ସାହିତ୍ୟ' ପତ୍ରିକାର ସୁଯୋଗ୍ୟ ସମ୍ପାଦକ ବିଶ୍ୱନାଥ କର, ପଲ୍ଲୀକବି ନନ୍ଦକିଶୋର ବଳ, ଶିକ୍ଷାଗୁରୁ ବିଦ୍ୟାଧର ବର୍ମା, ଗୀତିନାଟ୍ୟକାର ବୈଷ୍ଣବ ପାଣି ତଥା ଏବେକାର ଦିବଙ୍ଗତ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ ଇତ୍ୟାଦି କୃତବିଦ୍ୟ ସାହିତ୍ୟିକଗଣ ।

ମାହାଙ୍ଗାର 'କୁସୁପୁର' ଗ୍ରାମରେ ଶ୍ରୀଯୁକ୍ତ ସାହୁଙ୍କର ଜନ୍ମ । କୁସୁପୁରର ପ୍ରଖ୍ୟାତ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ ଥିଲେ ବସନ୍ତ ବାବୁଙ୍କର ଶିକ୍ଷାଗୁରୁ ତଥା ଶିଶୁ ସାହିତ୍ୟ ରଚନାର ପ୍ରେରଣା । ବାଲ୍ୟକାଳରୁ ନନ୍ଦକିଶୋର ସାମଲଙ୍କ ଶିଶୁକବିତା ପାଠ କରି ବସନ୍ତ ବାବୁ ଶିଶୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି । ପରବର୍ତ୍ତୀ କାଳରେ ଶିଶୁ ସାହିତ୍ୟ ରଚନା, ଶିଶୁ ପତ୍ରିକା ସମ୍ପାଦନା ଓ ଶିଶୁ ସାହିତ୍ୟରେ ଉଚ୍ଚତର ଗବେଷଣା କରି ସଫଳ ହୋଇଛନ୍ତି ।

ସୁତରାଂ, ଡକ୍ଟର ବସନ୍ତ କିଶୋର ସାହୁ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । କୋରାପୁଟ ଜିଲ୍ଲା ପରି ଏକ ଉପାନ୍ତ ଅଞ୍ଚଳର ସୁନାବେଡ଼ାରେ ନିଜର କର୍ମମୟ ଜୀବନ ଅତିବାହିତ କରିଥିଲେ ମଧ୍ୟ, ଏହା ତାଙ୍କ ସାହିତ୍ୟ ସାଧନାରେ ବାଧା ସୃଷ୍ଟି କରିନାହିଁ । ନିଜର ଅତ୍ୟଧିକ ସାହିତ୍ୟପ୍ରାଣତା ହେତୁ, ବରାବର ସେ ଓଡ଼ିଶାର ସାହିତ୍ୟିକ ପାଣିପାଗ ସହ ନିଜକୁ ଓତଃପ୍ରୋତ ଭାବେ ଜଡିତ କରି ରଖିଛନ୍ତି, ଯଦ୍ୱାରା ଜଣେ ବିଶିଷ୍ଟ ସାହିତ୍ୟ ସଂଗଠକ ଭାବରେ ମଧ୍ୟ ନିଜର ଏକ ସତନ୍ତ୍ର ପରିଚୟ ସେ ସୃଷ୍ଟି କରି ପାରିଛନ୍ତି ।

ବସନ୍ତ ବାବୁଙ୍କ ସୃଜନଶୀଳ ପ୍ରତିଭା ବହୁମୁଖୀ । ଜଣେ ଶିଶୁ ସାହିତ୍ୟିକ



Digitized by srujanika@gmail.com

ଭାବରେ ତାଙ୍କ ରଚନାର ସମୀକ୍ଷା ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ଏଠାରେ ତେଣୁ ଡକ୍ଟର ସାହୁଙ୍କର ସମୀକ୍ଷକ ଦୃଷ୍ଟିକୋଣର କିଞ୍ଚିତ୍ ଆଲୋକପାତ କରିବାର ପ୍ରଚେଷ୍ଟା କରାଯାଉଛି । ତାଙ୍କ ସମାଲୋଚନାର ଧାରା ଦ୍ୱିବିଧ । ଗୋଟିଏ ମୌଳିକ ରଚନା ଓ ଅନ୍ୟଟି ସମ୍ପାଦନା । ମୌଳିକ ରଚନା ମଧ୍ୟରେ ତାଙ୍କ ରଚିତ ଶିଶୁ ସାହିତ୍ୟ ସମ୍ପର୍କିତ ଗବେଷଣା ନିବନ୍ଧ 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ', ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନାକୁ ଗ୍ରହଣ କରାଯାଇପାରେ । ସେହିପରି ସଂପାଦନା କ୍ଷେତ୍ରରେ ତାଙ୍କ କୃତି ହେଲା 'ବଗଲାବଗୁଲୀ', ବନଫୁଲ ସାହିତ୍ୟ ପରିଷଦର ମୁଖପତ୍ର 'ବନଫୁଲ', 'କୋରାପୁଟ ପରିକ୍ରମା', 'ଓଡ଼ିଶାର ଲୋକନାଟ୍ୟ', ବନପ୍ରଭା ସାହିତ୍ୟ ସଂସଦର ମୁଖପତ୍ର 'ବନପ୍ରଭା', ଉତ୍କଳ ସାଂସ୍କୃତିକ ପରିଷଦର ମୁଖପତ୍ର 'ସ୍ମରଣିକା', ସୁନାବେଡ଼ାସ୍ଥ ଶ୍ରୀଜଗନ୍ନାଥ ମନ୍ଦିରର ମୁଖପତ୍ର 'ସ୍ୱର୍ଣ୍ଣକ୍ଷେତ୍ର', ନନ୍ଦକିଶୋର ସାମଲ ସ୍ମୃତିନ୍ୟାସର 'ସ୍ମୃତିଅର୍ଘ୍ୟ' ଓ 'ନନ୍ଦକିଶୋର ସାମଲ ରଚନାବଳୀ', ସହିତ 'ସାଂପ୍ରତିକ ଓଡ଼ିଆ ଶିଶୁ କବିତା', 'ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ' ଓ 'Who's who in Oriya Children's Literature' ଇତ୍ୟାଦି ପ୍ରଧାନ ।

ବସନ୍ତ ବାବୁ ସର୍ବପ୍ରଥମେ 'ଓଡ଼ିଆ ଶିଶୁ ସାହିତ୍ୟ ସମାଲୋଚନାର ସମାଲୋଚନା' ଶୀର୍ଷକ ଏକ ପ୍ରବନ୍ଧ ଉପସ୍ଥାପନ କରିଥିଲେ ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର କର୍ମଶାଳାରେ । ଏହାପରେ ଏହି ଆଲୋଚନାଟି କଲିକତାରୁ ପ୍ରକାଶ ପାଉଥିବା ସଂଭ୍ରାନ୍ତ ସାହିତ୍ୟ ପତ୍ରିକା 'ଆସନ୍ତାକାଲି'ର ଏପ୍ରିଲ ୧୯୯୧ ସଂଖ୍ୟାରେ ଏହି ପ୍ରବନ୍ଧଟି ପ୍ରକାଶିତ ହେବା ପରେ ଓଡ଼ିଆ ଶିଶୁ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଏକ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଏହା ପରେ କେତେକ ସାହିତ୍ୟିକ ଓଡ଼ିଆ ଶିଶୁ ସାହିତ୍ୟରେ ସମାଲୋଚନା ତଥା ଗବେଷଣା ନିବନ୍ଧ ରଚନାରେ ମନୋନିବେଶ କରିଥିଲେ । ନିଜେ ବସନ୍ତ ବାବୁ ମଧ୍ୟ ଶିଶୁ ସାହିତ୍ୟ କ୍ଷେତ୍ରରେ ସ୍ୱତନ୍ତ୍ର ଗବେଷଣା କରିବାକୁ ଆଗେଇ ଆସିବା ସହିତ ଉକ୍ତ ପ୍ରବନ୍ଧ ଆଧାରରେ ପ୍ରକାଶ କରିଥିଲେ 'ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା' ଶୀର୍ଷକ ଗ୍ରନ୍ଥ । ଏହି ଗ୍ରନ୍ଥରେ ଛଅଟି ମୌଳିକ ଶିଶୁ ସାହିତ୍ୟ ଆଲୋଚନା ସହ ପ୍ରକାଶିତ ହୋଇଥିଲା ୧୯୯୪ ମସିହା ମଧ୍ୟରେ ପ୍ରକାଶିତ ବିଭିନ୍ନ ଶିଶୁ ସାହିତ୍ୟ ଆଲୋଚନାର ସୁଦୀର୍ଘ ତାଲିକା, ଯାହା ପରବର୍ତ୍ତୀ ଗବେଷକମାନଙ୍କୁ ଯଥେଷ୍ଟ ସହାୟତା ପ୍ରଦାନ କରିଥିଲା । ପରବର୍ତ୍ତୀ କାଳରେ ଅର୍ଥାତ୍ ୨୦୦୨ ମସିହାରେ 'ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ' ପ୍ରକାଶ ପାଇ ଦୀର୍ଘ ୧୦୪ ପୃଷ୍ଠାର ତଥ୍ୟ ପ୍ରଦାନ କରାଯାଇ ଓଡ଼ିଆ ଶିଶୁ ସାହିତ୍ୟର ସବିଶେଷ ତାଲିକା ପ୍ରଦାନ କରାଗଲା । ଏଥିରେ ଶିଶୁ ସାହିତ୍ୟ ଆଲୋଚନା ପୁସ୍ତକ, ପରିଚୟ ଗ୍ରନ୍ଥ, ଅଭିନନ୍ଦନ ଗ୍ରନ୍ଥ, ଶିଶୁ ସାହିତ୍ୟିକଙ୍କ ସମ୍ପର୍କୀୟ ସ୍ୱତନ୍ତ୍ର ଆଲୋଚନା ଗ୍ରନ୍ଥ, ପିଏଚ୍.ଡି ଗବେଷଣା ନିବନ୍ଧ, ଏମ୍.ଫିଲ୍ ସନ୍ଦର୍ଭ, ପୁସ୍ତକର ଅଂଶ ବିଶେଷ, ସଂକଳନ, ସ୍ମରଣିକା/ ପତ୍ରପତ୍ରିକା/ Souvenir/, ଅଭିଭାଷଣ, ଆକାଶବାଣୀ ତରଫରୁ ପ୍ରଚାରିତ ଆଲୋଚନା, ଶିଶୁ



Digitized by srujanika@gmail.com

ସାହିତ୍ୟିକଙ୍କ ସହିତ ପ୍ରକାଶିତ ସାକ୍ଷାତକାର ସହିତ ଓଡ଼ିଆ ଶିଶୁ ସାହିତ୍ୟ ଓ ସାହିତ୍ୟିକଙ୍କ ସମ୍ପର୍କରେ ପ୍ରକାଶିତ ପ୍ରବନ୍ଧଗୁଡ଼ିକର ଏକ ଦୀର୍ଘ ତାଲିକା ପ୍ରଦାନ କରାଯାଇଛି । ପ୍ରକାଶିତ ପ୍ରବନ୍ଧ ତାଲିକାରେ ଆଲୋଚକଙ୍କ ନାମ, ଆଲୋଚନାର ନାମ, କେଉଁ ପୁସ୍ତକ ବା ପତ୍ରପତ୍ରିକାରେ ପ୍ରକାଶିତ ତାର ନାମ, ପ୍ରକାଶ ବର୍ଷ/ସଂଖ୍ୟା ସହିତ ପୃଷ୍ଠା ସଂଖ୍ୟା ମଧ୍ୟ ପ୍ରଦାନ କରାଯାଇଛି । ଭବିଷ୍ୟତ ଗବେଷକମାନଙ୍କୁ ଏହି ପୁସ୍ତକ ଆଲୋକବର୍ତ୍ତିକା ପରି ସାହାଯ୍ୟ କରିବ ।

'Who's who in Oriya Children's Literature' ମଧ୍ୟ ବସନ୍ତବାବୁଙ୍କର ଏକ ସଫଳ ତଥା ସାଧୁ ଉଦ୍ୟମ । ଓଡ଼ିଆ ଶିଶୁ ସାହିତ୍ୟିକମାନଙ୍କୁ ଆନ୍ତର୍ଜାତୀୟ ସ୍ତରରେ ପରିଚିତ କରାଇବା ଲକ୍ଷ୍ୟରେ ଇଂରାଜୀରେ ଏହି ଗ୍ରନ୍ଥଟିକୁ ପ୍ରକାଶ କରିଛନ୍ତି ଡକ୍ଟର ସାହୁ । ଦୁଇଟି ଭାଗରେ ଏହା ପ୍ରକାଶିତ । ବର୍ଣ୍ଣାନୁକ୍ରମିକ ଭାବେ ସଜ୍ଜିତ ଲେଖକମାନଙ୍କର ନାମ, ବୟସ, ରୁଚି, ପ୍ରକାଶିତ ପୁସ୍ତକ ପରିଚୟ ତଥା ସ୍ଥାୟୀ ଠିକଣା ଆଦି ଉକ୍ତ ସଂକଳନରେ ସ୍ଥାନୀତ । ଯଦ୍ୱାରା ବିଭିନ୍ନ ସାହିତ୍ୟିକମାନଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନ କ୍ଷେତ୍ରରେ ଏହା ଏକାନ୍ତ ସହାୟକ ହୋଇଥାଏ ।

'ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ' ଡକ୍ଟର ସାହୁଙ୍କ ରଚିତ ଏକ ମୌଳିକ ଆଲୋଚନା ଗ୍ରନ୍ଥ । ଗ୍ରନ୍ଥଟିରେ ବାରଜଣ ବିଶିଷ୍ଟ ଶିଶୁସାହିତ୍ୟିକଙ୍କ ଶିଶୁ ସାହିତ୍ୟ ରଚନାର କଳାତ୍ମକ ସମୀକ୍ଷା ପ୍ରକାଶ କରାଯାଇଛି । ସେମାନଙ୍କ ମଧ୍ୟରୁ ଅନେକ ସାହିତ୍ୟିକ ଆତ୍ମପ୍ରଚାର ବିମୁଖ ହେତୁ ଲୋକଲୋଚନର ଆଢୁଆଳରେ ଥିଲେ । ବସନ୍ତବାବୁ ହିଁ ସେମାନଙ୍କୁ ଲୋକଲୋଚନକୁ ଆଣି ପ୍ରତିଷ୍ଠିତ କରାଇବାରେ ନିର୍ଣ୍ଣାୟକ ଭୂମିକା ନିଭାଇଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ସ୍ନେହଲତା ମହାନ୍ତି, ଧନେଶ୍ୱର ସାମଲ, ରାଜକିଶୋର ପାଢ଼ୀ, ଅନନ୍ତ ଚରଣ ବେହେରା, ପ୍ରଫୁଲ୍ଲ କୁମାର ଗିରି, ରଘୁନାଥ ରାଉତ ପ୍ରମୁଖ ସ୍ରଷ୍ଟା । ଏତଦ୍ ବ୍ୟତୀତ ସଦା ସ୍ୱୀକୃତ ନନ୍ଦ କିଶୋର ସାମଲ, କ୍ଷୀରୋଦ ଚନ୍ଦ୍ର ପୋଥାଳ, ଡକ୍ଟର ଜଗନ୍ନାଥ ମହାନ୍ତି, ଭଗବାନ ପାଢ଼ୀ, ନନ୍ଦ କିଶୋର ସିଂହ ତଥା ଦାଶ୍ ବେନହୁରଙ୍କ ପରି ପ୍ରଖ୍ୟାତ ଶିଶୁ ସାହିତ୍ୟ ସ୍ରଷ୍ଟାମାନଙ୍କ କୃତିର ବିଶ୍ଳେଷଣ ମଧ୍ୟ କରାଯାଇଛି ଗ୍ରନ୍ଥଟିରେ । ପ୍ରତ୍ୟେକ ସ୍ରଷ୍ଟାଙ୍କର ସୃଷ୍ଟିକୁ ଶିଶୁ ସାହିତ୍ୟ ଗବେଷଣା ମାପ କାଠିରେ ମପାଯାଇଛି ବିଭିନ୍ନ ଉଦାହରଣ ମାଧ୍ୟମରେ । ସୁତରାଂ ପ୍ରତ୍ୟେକଟି ଲେଖାକୁ ପରିଚୟବୋଧ, ପରିବେଶ, ଭାବାବେଗ, ସମାଜଚିତ୍ର, ଭାଷା ତଥା ପ୍ରାନ୍ତକଥନ ଆଦି ଉପ ବିଭାଗରେ ବିଭକ୍ତ କରି ବସନ୍ତବାବୁ ଲେଖକଙ୍କର ଲେଖାଗୁଡ଼ିକର ମୂଲ୍ୟାଙ୍କନ କରିଛନ୍ତି । ଯାହା ଏକ ସୁସ୍ଥ ସାହିତ୍ୟିକ ସମାଲୋଚନାର ନିଦର୍ଶନ ବହନ କରେ ।

ଡକ୍ଟର ମନୀନ୍ଦ୍ର ମହାନ୍ତି ଓ ଡକ୍ଟର ବସନ୍ତ କିଶୋର ସାହୁଙ୍କ ମିଳିତ ସଂପାଦନାରେ ପ୍ରକାଶ ପାଇଛି 'ସାଂପ୍ରତିକ ଶିଶୁ କବିତା' ଶୀର୍ଷକ ଆଲୋଚନା ଗ୍ରନ୍ଥ । ଗ୍ରନ୍ଥଟିରେ ସର୍ବମୋଟ ନଅଗୋଟି ଶିଶୁସାହିତ୍ୟ ସମ୍ବନ୍ଧୀୟ ପ୍ରବନ୍ଧ ପ୍ରକାଶିତ । ଯେଉଁଥିରୁ



Digitized by srujanika@gmail.com

୭ଟି ପ୍ରବନ୍ଧ କେବଳ ଓଡ଼ିଆ ଶିଶୁ କବିତା ସମ୍ବନ୍ଧୀୟ । ସଂସିତ ଆଲୋଚନାଗୁଡ଼ିକ ୧୯୯୮ ମସିହାରେ ଶାନ୍ତିନିକେତନ ଠାରେ ଅନୁଷ୍ଠିତ ଏକ ଜାତୀୟ ସଂପାନରେ ପଠିତ ଓ ଆଲୋଚିତ । ପ୍ରବନ୍ଧଗୁଡ଼ିକ ସୁସଂଜତ କରି ସଂପାଦନା ପୂର୍ବକ ପ୍ରକାଶ କରିଛନ୍ତି ବସନ୍ତ ବାବୁ । ଓଡ଼ିଆ ଶିଶୁ କବିତାର କଥାବସ୍ତୁ, ଛନ୍ଦ ସଂପଦ ଓ ଭାଷା ସଂପଦ ଆଦି ପ୍ରଭାଗରେ ପ୍ରବନ୍ଧଗୁଡ଼ିକ ରଚିତ, ଯାହା ଆଧୁନିକ ଓଡ଼ିଆ ଶିଶୁ କବିତାର ସାମଗ୍ରିକ ବିଶ୍ଳେଷଣ ପାଇଁ ବାଟ ଫିଟାଇଥାଏ ।

'ଓଡ଼ିଶାର ଲୋକନାଟ୍ୟ' ଶୀର୍ଷକ ସଂକଳନଟି 'ବନଫୁଲ ସାହିତ୍ୟ ପରିଷଦ' ଆନୁକୂଲ୍ୟରେ ବସନ୍ତ ବାବୁଙ୍କ ସଂପାଦନାରେ ପ୍ରକାଶ ପାଏ ୧୯୯୨ ମସିହାରେ, ଯାହା କୋରାପୁଟ ପରି ଆଦିବାସୀବହୁଳ ଜିଲ୍ଲାର ଅଧିବାସୀମାନଙ୍କର ଐତିହ୍ୟ, ପରମ୍ପରା ଓ ସଂସ୍କୃତି ଆଦିକୁ ବିଶ୍ଳେଷଣ କରି ସେମାନଙ୍କର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥାଏ । ସମଗ୍ର ଓଡ଼ିଶାର ଲୋକନାଟ୍ୟକୁ ଏ ସଂକଳନର ପରିସରଭୁକ୍ତ କରାଯାଇଥିବାରୁ କେବଳ କୋରାପୁଟ ନୁହେଁ ସମଗ୍ର ଓଡ଼ିଶାର ସଂସ୍କୃତିର ପଦଚିହ୍ନ ଏଥିରେ ସୁସ୍ପଷ୍ଟ । ବିଶେଷ କରି ଗୋପାଳଙ୍କ ଲଉଡି ନାଟ, ପ୍ରହ୍ଲାଦ ନାଟକ, ପାଲା, ପଶୁନୃତ୍ୟ, ଆଦିବାସୀ ନୃତ୍ୟ, ଛଉ ନୃତ୍ୟ, ଦେଶିଆ ନାଟ, ଦଣ୍ଡ ନାଟ ଓ ଘଟ ନାଟ ଇତ୍ୟାଦି ସଂପର୍କରେ ସଂକଳନଟିରେ ସବିଶେଷ ଆଲୋଚନା କରାଯାଇଛି ଭିନ୍ନ ଭିନ୍ନ ଆଲୋଚକମାନଙ୍କ ଦ୍ୱାରା ।

'ସ୍ମୃତି ଅର୍ଘ୍ୟ' ବସନ୍ତ କିଶୋର ସାହୁଙ୍କ ସମ୍ପାଦିତ ଅନ୍ୟ ଏକ ସାରସ୍ୱତ ପ୍ରୟାସ । ଯାହା ତାଙ୍କ ଗୁରୁ ତଥା ଶିଶୁ ସାହିତ୍ୟ ପ୍ରେରଣାଦାତା ନନ୍ଦକିଶୋର ସାମଲଙ୍କ କୃତି ଓ କୀର୍ତ୍ତି ଆଧାରିତ ଏକ ବିଶେଷ ଆଲେଖ୍ୟ । ନନ୍ଦକିଶୋର ସାମଲଙ୍କ ଦେହାନ୍ତ ପରେ ଶ୍ରଦ୍ଧାଞ୍ଜଳି ସ୍ୱରୂପ ଗ୍ରନ୍ଥଟି ପ୍ରକାଶିତ । ଗ୍ରନ୍ଥଟିରେ ନନ୍ଦକିଶୋର ସାମଲଙ୍କ ଶିକ୍ଷକ ଜୀବନ, ସାହିତ୍ୟିକ ଜୀବନ ସଂପର୍କରେ ବହୁ କୃତବିଦ୍ୟ ସ୍ରଷ୍ଟା ଆଲୋଚନା କରିଛନ୍ତି । ଲେଖାଗୁଡ଼ିକୁ ଶିଳ୍ପ ସଙ୍ଗତ ରୂପେ ସୁସମ୍ପାଦନାପୂର୍ବକ ପ୍ରକାଶନ କରିବାରେ ବସନ୍ତ ବାବୁଙ୍କ ନିଷ୍ଠା ଓ ସାଧନା ବାସ୍ତବିକ ପ୍ରଶଂସନୀୟ । ଏହା ବ୍ୟତୀତ ସେ 'ନନ୍ଦ କିଶୋର ରଚନାବଳୀ', 'ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ', ଓ 'ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି' ଆଦି ଗ୍ରନ୍ଥ ସମ୍ପାଦନା କରି ପ୍ରତିଭାମାନଙ୍କୁ ସମ୍ମାନିତ କରିବା ସହିତ ନିଜ ଗବେଷଣା ମନୋବୃତ୍ତିର ପରିଚୟ ପ୍ରଦାନ କରିଛନ୍ତି ।

ଡକ୍ଟର ସାହୁଙ୍କର ସର୍ବଶ୍ରେଷ୍ଠ ସାହିତ୍ୟ କୃତି ହେଉଛି ତାଙ୍କ ଦ୍ୱାରା ରଚିତ ଓ ଚିତ୍ରୋତ୍ପଳା ପ୍ରକାଶନୀ ଦ୍ୱାରା ପ୍ରକାଶିତ ଶିଶୁ ସାହିତ୍ୟ ସମ୍ପର୍କିତ ଗବେଷଣା ନିବନ୍ଧ 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ'। ୧୯୯୨ ମସିହାରେ ସନ୍ଦର୍ଭଟି ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଉପସ୍ଥାପିତ ହୋଇ ୧୯୯୩ରେ ଡକ୍ଟର ସାହୁଙ୍କୁ ଡକ୍ଟରେଟ ଉପାଧି ପ୍ରାପ୍ତ ହୋଇଥିଲା । ସନ୍ଦର୍ଭଟି ପ୍ରସ୍ତୁତ କରିବାକୁ ତାଙ୍କୁ ଅନେକ ପରିଶ୍ରମ କରିବାକୁ ପଡିଛି । ମୌଖିକ ଶିଶୁ ସାହିତ୍ୟ ସମ୍ପର୍କିତ ହୋଇଥିବାରୁ ବହୁ ଉପାଦାନ ଗବେଷକଙ୍କୁ ବିଭିନ୍ନ



Digitized by srujanika@gmail.com

ସ୍ଥାନ ଓ ବିଭିନ୍ନ ବ୍ୟକ୍ତିମାନଙ୍କ ଠାରୁ ସଂଗ୍ରହ କରିବାକୁ ହୋଇଛି । ଏକ ଉପାନ୍ତ ଆଦିବାସୀ ଅଞ୍ଚଳରେ କାର୍ଯ୍ୟରତ ଥିବାରୁ ବସନ୍ତ ବାବୁ ଅନେକ ମୌଖିକ ଶିଶୁ ଗଳ୍ପ ଓ ଗୀତ ନିଜେ ପ୍ରତ୍ୟକ୍ଷ ଭାବେ ସଂଗ୍ରହ କରିବାକୁ ସମର୍ଥ ହୋଇଛନ୍ତି, ଯାହା ନିବନ୍ଧଟିର ମାନବୃଦ୍ଧିରେ ଅତ୍ୟନ୍ତ ସହାୟକ ହୋଇପାରିଛି ।

ଗବେଷକ ଡକ୍ଟର ସାହୁ ଉକ୍ତ ନିବନ୍ଧଟିକୁ ପାଞ୍ଚୋଟି ଅଧ୍ୟାୟରେ ବିଶ୍ଳେଷଣ କରିଅଛନ୍ତି । ପ୍ରଥମ ଅଧ୍ୟାୟ ପ୍ରାଗ୍‌ଭାଷ, ଯେଉଁଥିରେ ଓଡ଼ିଆ ଶିଶୁ ସାହିତ୍ୟର ପରିଚୟ, ପ୍ରକାରଭେଦ, ଲିଖିତ ଶିଶୁ ସାହିତ୍ୟ, ମୌଖିକ ଶିଶୁ ସାହିତ୍ୟ, ସଂଗ୍ରହ ଓ ଅଧ୍ୟୟନ ଆଦିକୁ ବିଶ୍ଳେଷଣ କରାଯାଇଛି । ଦ୍ୱିତୀୟ ଅଧ୍ୟାୟରେ ନାନାବାୟା ଗୀତ, ଶିଶୁ ଗୀତ, କ୍ରୀଡ଼ା ଗୀତ, ନାଁ ଦିଆ, ପ୍ରବଚନ, ବିଭିନ୍ନ ଓଷାବ୍ରତ ଓ ପର୍ବପର୍ବାଣି ଗୀତ ତଥା ମୌଖିକ ଶିଶୁଗଳ୍ପ ସଂପର୍କରେ ବିଶଦଭାବେ ଆଲୋଚନା କରାଯାଇଅଛି । ତୃତୀୟ ଅଧ୍ୟାୟ: ଶିଶୁ ମନୋବୈଜ୍ଞାନିକ ଅଧ୍ୟୟନ । ଏଥିରେ ଶିଶୁର ମନୋବୈଜ୍ଞାନିକ ଅଧ୍ୟୟନ ସହ ଲିଖିତ ଶିଶୁ ସାହିତ୍ୟ ଉପରେ ମୌଖିକ ଶିଶୁ ସାହିତ୍ୟର ନାନାବିଧ ପ୍ରଭାବ ସଂପର୍କରେ ସୁବିସ୍ତୃତ ବିବରଣୀ ପ୍ରଦତ୍ତ ହୋଇଅଛି । ଚତୁର୍ଥ ଅଧ୍ୟାୟଟି ମୌଖିକ ଶିଶୁ ସାହିତ୍ୟରେ ପ୍ରତିଫଳିତ ସମାଜଚିତ୍ର ସଂପର୍କୀତ ଆଲୋଚନା । ଏଥିରେ ପରିବାର, ସମାଜ ଓ ଶେଷ କଥା ଇତ୍ୟାଦି ସ୍ଥାନ ପାଇଛି । 'ପରିଶିଷ୍ଟ'ରେ ମୌଖିକ ଶିଶୁ ସାହିତ୍ୟର ନମୁନା ସହିତ ସେଗୁଡ଼ିକର ସଂଗ୍ରହ ଓ ସଂରକ୍ଷଣ କରୁଥିବା ଅନୁଷ୍ଠାନର ସୂଚନା ଓ କେତୋଟି ଫଟୋଚିତ୍ର ସ୍ଥାନୀତ କରାଯାଇ ନିବନ୍ଧଟିକୁ ସମାପ୍ତ କରାଯାଇଛି ।

ଡକ୍ଟର ସାହୁ ଓଡ଼ିଆ ଶିଶୁ ସାହିତ୍ୟ ପ୍ରଭାଗର ପଞ୍ଚମ ଗବେଷକର ସମ୍ମାନ ପ୍ରାପ୍ତ ହୋଇଛନ୍ତି । ପ୍ରଥମ ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତି, ଦ୍ୱିତୀୟ ଡକ୍ଟର ଦିଗରାଜ ବ୍ରହ୍ମା, ତୃତୀୟ ଡକ୍ଟର ମହେଶ୍ୱର ମହାନ୍ତି, ଚତୁର୍ଥ ଡକ୍‌ଟର କୃତ୍ତିବାସ ନାୟକ । ଡକ୍ଟର ସାହୁଙ୍କର ଉପରୋକ୍ତ ଗବେଷକଗଣଙ୍କ ସହିତ ନିବିଡ଼ ସଂପର୍କ । ସଂପୃକ୍ତ ଗବେଷକ ଗଣ 'ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ'ର ସକ୍ରିୟ ସଦସ୍ୟ । ନିଜେ ଡକ୍ଟର ସାହୁ ମଧ୍ୟ ଏହି ଅନୁଷ୍ଠାନର ଜଣେ କର୍ମକର୍ତ୍ତା । ସୁତରାଂ ଭାବର ଆଦାନ ପ୍ରଦାନ, ତଥ୍ୟ ବିନିମୟ, ସମ୍ମାନ ଆଦି ମାଧ୍ୟମରେ ବସନ୍ତବାବୁ ଯେଉଁ ଜ୍ଞାନ ଓ ଉପାଦାନ ସଂଗ୍ରହ କରିଛନ୍ତି, ସେ ସବୁ ତଥ୍ୟ ଓ ଜ୍ଞାନର ସଠିକ୍ ବିନିଯୋଗ କରିଛନ୍ତି ତାଙ୍କ ନିବନ୍ଧଟିରେ । ପରିଣାମରେ ନିବନ୍ଧଟି ସମୀକ୍ଷକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେବା ସହିତ ପରବର୍ତ୍ତୀ ଗବେଷକମାନଙ୍କର ମାର୍ଗଦର୍ଶକ ଭାବରେ ପ୍ରତିପାଦିତ ହୋଇ ଡକ୍ଟର ସାହୁଙ୍କୁ ଜଣେ ଉଚ୍ଚକୋଟୀର ଗବେଷକ ତଥା ଶିଶୁ ସାହିତ୍ୟ ସମୀକ୍ଷକର ମର୍ଯ୍ୟାଦା ପ୍ରଦାନ କରିଛି ।

ଓଡ଼ିଆ ଶିଶୁ ସାହିତ୍ୟ ଓ ଗବେଷଣା ଡକ୍ଟର ସାହୁଙ୍କର ଅବସର ପରେ ଅଧିକ କିଛି ନୂତନ ସୃଷ୍ଟିର ଯେ ଅପେକ୍ଷା ରଖେ, ଏ କଥା ଅପ୍ରାସଙ୍ଗିକ ମନେ ହୁଏ ନାହିଁ ।



ସମ୍ପାଦକ ତମସା, କଟକ



Digitized by srujanika@gmail.com

# ବସନ୍ତ ବର୍ଣ୍ଣାଳୀ : ଏକ ସମୀପ ଦୃଷ୍ଟି

ଗୌତମ ମହାରଣା

ଅଧିକାଂଶ ସ୍ରଷ୍ଟାଙ୍କର ପ୍ରଥମ ସୃଜନ ହିଁ କବିତା । କବିତା ଏକ ଧାରା । ଏହା କବିର ପ୍ରାଣତନ୍ତ୍ରୀରେ ଅନ୍ତଃସଲିଳ ହୋଇ ବହୁଥାଏ । କେଉଁଠି ଯଦି କେତେବେଳେ କିଛି ଅନୁଭବ କରେ, ସମାଜରେ ଟାଲୁ ଟାଲୁ ଝୁଣ୍ଟି ପଡେ, ସେ ଫୁଲଟିଏ ଫୁଟୁ ଅବା ମାତୃ ସ୍ନେହ ବଞ୍ଚିତ ଅନାଥ ପିଲାଟିଏର କାନ୍ଦଣା ଶୁଭୁ, କବି ସେଇଠି ଅଟକି ଯାଏ । ତା'ର ଲୁହ ସବୁ କଲମର ସ୍ୟାହି ପାଲଟିଯାଆନ୍ତି । କବିତା ଜନ୍ମ ନିଏ । ତାର କୁଆଁ କୁଆଁ ରାବରେ ଜଗତର କଥା କହେ । ହସ କାନ୍ଦ, ଆନନ୍ଦ ବିଷାଦ, ମିଳନ ବିଚ୍ଛେଦ, ପ୍ରାପ୍ତି ଅପ୍ରାପ୍ତି, ଦେଣ ନେଣ ସବୁକଥା କବିତା ଅନ୍ତର ଖୋଲି କହେ । ତା'ର କହିବାରେ ରସ ଝରିଯାଏ, ପଦ୍ମ ବନରେ ବାସ ଚହଟିଯାଏ । ଯମୁନା କୂଳରେ କଦମ୍ବର ଗନ୍ଧ ଛୁଟେ । କୃଷ୍ଣଙ୍କ ମୋହନମୂରଲୀ ଗୋପାଙ୍ଗନାଙ୍କୁ ବାୟା କରିବା ପରି ପାଠକ କବିତାର ରସବୋଧରେ ଆତ୍ମହରା ହୁଏ । କବିତାରେ ନିଜକୁ ଦେଖେ, ନିଜ ଚାରିପାଖକୁ ଦେଖେ । କେତେ ବେଳେ ତା' ଆଖିରୁ ଆପଣାଛାଏଁ ଲୁହ ଗଡି ଆସି କବିତାର କଳେବରକୁ ଭିଜାଇ ଦିଏ ଆଉ କେତେ ବେଳେ କଅଁଳା ବାଛୁରୀ ପରି ଆନନ୍ଦରେ ଅଧୀର ହୋଇ ଡେଉଁଥାଏ ।

ଅକ୍ଷରକୁ ଅକ୍ଷର ଗଣି, ଉପଧା ମିଳନ କରି କିଛି ଗୋଟାଏ ପଦ ପକାଇ ଲେଖି ଦେଲେ ଯେ ଜଣେ କବି ପାଲଟିଯାଏ, ଏକଥା କହିବା ନିହାତି ଭୁଲ ହେବ । ଯଦି କବିତା ପାଠକକୁ ଆତ୍ମସ୍ଥ ନ କଲା, ଗୁଣୁ ଗୁଣେଇବାକୁ ବାଧ୍ୟ ନ କଲା, ଗୋଟିଏ ଭାବକୁ ଅନ୍ୟଭାବରେ ରୂପାନ୍ତରିତ ନ କଲା ତେବେ ସେ କି କବିତା ! କବିର ଭାବ ରାଜ୍ୟରେ ପାଠକର ପ୍ରବେଶରେ କବିତା ଅଧିକାର ଦିଏ । ଭାଷା ଦ୍ୱାରପାଳ ଭାବେ ଦ୍ୱାର ଖୋଲି ଦିଏ, ପାଠକ ଭାବରାଜ୍ୟରେ ଅନନ୍ତ ବିଚରଣ କରେ । ସେଇଠି ଶୟନ, ଭୋଜନ, ବିଚରଣ କରିବାରେ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରେ । ଏପରି ମହାର୍ଘ ଅନୁଭବ ଦେଇ ପାରୁଥିବା କବିତା ହିଁ ସାହିତ୍ୟିକ ସୃଷ୍ଟି ଏବଂ ସାମାଜିକ ଜୀବନ ଏକ ହୋଇଯାନ୍ତି । ସାଙ୍ଗ ହୋଇ ପାଠକର ମନ ରାଜ୍ୟରେ ବିହାର କରନ୍ତି । କବିତା କାଳଜୟୀ ହୁଏ । ଏହା



Digitized by srujanika@gmail.com

ପାଣ୍ଡୁଲିପି ରୂପରେ ନ ରହି ପାଠକର ପ୍ରାଣତନ୍ତ୍ରୀରେ ପ୍ରଶ୍ୱାସର ଶବ୍ଦ ପରି ଅହରହ ନିଃଶବ୍ଦରେ ଆତଯାତ ହେଉଥାଏ । ଯିଏ ଯେତେବେଳେ ତାକୁ ଧ୍ୟାନସ୍ଥ ହୋଇ ଶ୍ରବଣ କରିବାକୁ ପ୍ରୟାସ କରେ, ସେ ତାକୁ ଜୀବନ ବୀଣାର ସୁମଧୁର ସଙ୍ଗୀତ ପରି ବୋଧ ହୁଏ । କବିତା ହିଁ ଏମିତି । ତାକୁ କେବଳ ଅନୁଭବ କରି ହୁଏ । କାରଣ ଏହା ବନ୍ୟା ପରି ଉଚ୍ଛୁଳା ଭାବୋଚ୍ଛ୍ୱାସର ଏକ ବିବିଧ ସମାହାର ମାତ୍ର ।

ଡକ୍ଟର ବସନ୍ତ କିଶୋର ସାହୁଙ୍କର ବସନ୍ତ କିଶୋର ରଚନାବଳୀର (ପ୍ରଥମ ଭାଗ ହେଉଛି- 'ବସନ୍ତ ବର୍ଣ୍ଣାଳୀ' ଓ ଦ୍ୱିତୀୟ ଭାଗ ହେଉଛି 'ପୁନଶ୍ଚ ବସନ୍ତ' । ଏହା ଏପରି ଏକ ବିବିଧ ବର୍ଣ୍ଣ ବିଁଭାର ସୁସଂଯୋଜିତ ସଙ୍କଳନ ଯାହା ତାଙ୍କ ବିବିଧ ଭାବୋଚ୍ଛ୍ୱାସକୁ ବହନ କରି ପାଠକୀୟ ବଜାରରେ ବିଚିତ୍ର ବିପଣୀ ଖୋଲି ବସିଛି । ଯେଉଁ ବିଦଗ୍ଧ ପାଠକ ଏହି ବଜାରରେ ଥରେ ପ୍ରବେଶ କରିବ; କାବ୍ୟିକ ନବରସରେ ସିକ୍ତ ହୋଇ ଅଭିନବ ଅନୁଭବରେ ନିଜକୁ ଆବିଷ୍କାର କରି ଆଚମ୍ବିତ ହେବ । ବସନ୍ତ ବର୍ଣ୍ଣାଳୀରେ ସଂଯୋଜିତ ମୋଟ ଶହେ ଚାଳିଶଟି କବିତା କବିଙ୍କ ବାଲ୍ୟଜୀବନରୁ ଯୌବନାବସ୍ଥା ଯାଏ ବିଭିନ୍ନ ସମୟରେ ସୃଷ୍ଟି ହୋଇଛନ୍ତି । ସୁତରାଂ ଏଗୁଡିକ ସ୍ୱାଭାବିକ ଭାବେ ବହୁବିଧ ଭାବଧାରାର ହେବା ସହ ବିଭିନ୍ନ ବିଷୟକ ହୋଇଛନ୍ତି । ପାଠକ ଏଥିରେ ଶିଶୁ-ସାହିତ୍ୟର ସ୍ୱରୂପକୁ ସଂଦର୍ଶନ କରିବା ସହ ଯୌବନକାଳୀନ ରୋମାଣ୍ଟିକ ଚେତନାର ପୁଲକ ମଧ୍ୟ ଅନୁଭବ କରିବେ । କେତେବେଳେ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହେବେ ତ ଆଉ କେତେବେଳେ ହାସ୍ୟ ବ୍ୟଙ୍ଗରେ ରସାଣିତ ହେବେ । କେଉଁ କେଉଁ କବିତାରେ ଜୀବନର ବାସ୍ତବଦର୍ଶନକୁ ଜ୍ଞାତ ହେବ ତ ଆଉ କେତେବେଳେ ଗାଁ ମାଟିର ମହକରେ ପଲ୍ଲୀମନସ୍କ ହୋଇ ଉଠିବେ । ଇନ୍ଦ୍ରଧନୁର ବର୍ଣ୍ଣବିଭା କେତେବେଳେ ପାଠକକୁ ବିଭୋର କରିବ ତ କେତେବେଳେ ସମାଜର ନିଷ୍ଠୁର ସତ୍ୟକୁ ସନ୍ଦର୍ଶନ କରି ଗମ୍ଭୀର ହୋଇଯିବ । ସର୍ବୋପରି ସଙ୍କଳନର ନାମକୁ ସାର୍ଥକ କରି ଏହା ବିବିଧ ରୂପଶ୍ରୀରେ ବିମଣ୍ଡିତ ହୋଇଛି ଏବଂ ପାଠକକୁ ବହୁଭାବ ପ୍ରଦାନ କରିବାରେ ସମର୍ଥ ହୋଇଛି ।

ଜଣେ ସାଧାରଣ ମଣିଷ କବି ବନିଯାଏ । ମାଟି, ପାଣି, ପବନ, ପରିବେଶ ମଣିଷକୁ କବି କରାଏ । ଏହି କ୍ରମରେ ବାଳକ ବସନ୍ତ କିଶୋର ସାହୁ କବି ହୋଇଛନ୍ତି । ଯେଉଁ ପଲ୍ଲୀକୋଳରେ ପଲ୍ଲୀକବି ନନ୍ଦକିଶୋର, ଶିକ୍ଷାଗୁରୁ ବିଦ୍ୟାଧର ବର୍ମା, ଜ୍ଞାନୀନ୍ଦ୍ର ବର୍ମା, ରାଜେନ୍ଦ୍ର ବର୍ମା ଓ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ପରି ଉତ୍କଳ ଜନନୀଙ୍କ ବରପୁତ୍ରଗଣ ଜନ୍ମ ନେଇ ପାରନ୍ତି; ସେଠି କବି ବସନ୍ତ କିଶୋର ସାହୁ ଜନ୍ମ ନେବା କିଛି ନୂଆ କଥା ନୁହେଁ । ମାତ୍ର ସେଇଠି ଯେ ବସନ୍ତଙ୍କ ପରି ଅନେକ ବାଳକ ନଥିଲେ; ତାହା ନୁହେଁ, ସମସ୍ତେ କିନ୍ତୁ ବସନ୍ତ ସାହୁଙ୍କ ପରି ମାଟି ପାଣି ପବନକୁ ଭଲ ପାଇ ନାହାନ୍ତି ।



Digitized by srujanika@gmail.com

ଗୁଣ୍ଡୁଚି ମୂଷାର ପିଠିରେ ଥିବା ଗାରକୁ ଆତ୍ମସ୍ଥ ହୋଇ ନିରୀକ୍ଷଣ କରି ନାହାନ୍ତି । ଆଞ୍ଜୁଳା ଆଞ୍ଜୁଳା ବିରୂପାର ପାଣି ପିଇ ନାହାନ୍ତି । ମାଟି, ଆକାଶକୁ ମନଭରି ଅନୁଭବ କରି ନାହାନ୍ତି । ଋତୁଚକ୍ରର ଆବର୍ତ୍ତନକୁ ଅବଲୋକନ କରି ନାହାନ୍ତି, କାଗଜର କାନ୍‌ଭାସରେ ପ୍ରକୃତିର ରୂପଚିତ୍ରକୁ ଶବ୍ଦର ତୂଳୀରେ ଆଙ୍କିବାକୁ ଚେଷ୍ଟା କରିନାହାନ୍ତି । ଯିଏ ଗଭୀର ଆତ୍ମୀୟତାରେ ଏ ସବୁ କରିଛି, ସେ କବି ବସନ୍ତ କିଶୋର ସାହୁ ପାଲଟିଛି । ସଙ୍କଳିତ ହୋଇଛି ବସନ୍ତ ବର୍ଣ୍ଣାଳୀ ଓ ପୁନଶ୍ଚ ବସନ୍ତ । ସମୟରୁ ସମୟାନ୍ତରକୁ ଭାବ ସବୁ ଅକ୍ଷର ହୋଇ ବଞ୍ଚିରହିଛନ୍ତି । କବିତା ଜଗତରେ ବସନ୍ତ କିଶୋର ସାହୁ ଏକ ସ୍ୱତନ୍ତ୍ର ନାମଟିଏ ହୋଇ ଯାଇଛି । ପାଠକର ଦରବାରରେ ସେ ଶ୍ରେଷ୍ଠ ହୁଅନ୍ତୁ କି ନ ହୁଅନ୍ତୁ କିନ୍ତୁ କବିତା ରାଜ୍ୟରେ ବଖୁରିଏ ଘର ତୋଳି ସେ ଅନନ୍ତ ପ୍ରବାସ କରିବାକୁ ସକ୍ଷମ ହୋଇଛନ୍ତି ।

ବସନ୍ତ ବର୍ଣ୍ଣାଳୀର ବିଶେଷତ୍ୱକୁ ବଖାଣିବାକୁ ବହୁ ବିଜ୍ଞତାର ଅପେକ୍ଷା ରଖେ । ନନ୍ଦ କିଶୋର ବିଦ୍ୟାମନ୍ଦିରରେ ଦଶମ ଶ୍ରେଣୀରେ ଛାତ୍ର ଥିବା ବେଳେ " ମାତୃଭୂମି" ରେ ତାଙ୍କର ପ୍ରଥମ ସୃଷ୍ଟି " ବରଷକେ ଆଜି ଆସିଛି ବସନ୍ତ" ଆତ୍ମପ୍ରକାଶ କରେ । ସେଥିରେ ତାଙ୍କର କୈଶୋର ଜୀବନର କବି ସତ୍ତାଟି ଗାଇ ଉଠେ-

ସଭିଏଁ ତୁମକୁ ସ୍ୱାଗତ କରୁଛୁ
　　ଗାଇ ତୁମଗୀତି ମଧୁର ତାନେ,
ଆସ ଧରା ପରେ ଋତୁରାଜ ତୁମେ
　　ହସାଅ ରସାଅ ଏ ବିଶ୍ୱଜନେ ।

- ମାତୃଭୂମି - (୧୧/୩/୧୯୭୨)

ବହୁ ବିଦଗ୍ଧ କବିମାନଙ୍କ ପରି ତାଙ୍କର ମନ ସାରା ଜଗତର କଲ୍ୟାଣ କାମନାରେ ଶତମୁଖ ହୋଇଉଠିଛି । କବି କେବେ ଆତ୍ମ କୈନ୍ଦ୍ରିକ ନ ହୋଇ ସର୍ବଦା ବିଶ୍ୱମୁଖୀ ହୋଇଥାଏ । ଏହା ତାଙ୍କର ଆଦ୍ୟ କବିତାର ସ୍ୱର ସ୍ପଷ୍ଟ ସଙ୍କେତ ଦେଉଛି ।

କବି ତାଙ୍କର ପଲ୍ଲୀପ୍ରାଣତା, ପ୍ରକୃତି ପ୍ରାଣତାକୁ ଅନେକ କବିତାରେ ପ୍ରକାଶ କରିଛନ୍ତି । କବିଙ୍କର ବାଲ୍ୟାବସ୍ଥାରେ ପ୍ରକୃତିର ଯେଉଁ ସ୍ନିଗ୍ଧ ଶୀତଳ ରୂପ ଥିଲା, ଏବେ ତାହା ଅବଶ୍ୟ ନାହିଁ କିନ୍ତୁ କବି ପ୍ରକୃତିର ରୂପଶୋଭାକୁ ବର୍ଣ୍ଣିବାରେ ବହୁବାର ପ୍ରୟାସ କରି ସଫଳ ହୋଇଛନ୍ତି । ତାଙ୍କର ବିଦାୟୀ ଶରତ, ଶୀତଋତୁ ଆସିଲା, ବସନ୍ତ ପବନ ବହିଲା, ବଉଦ ରଥ ଚଢି ମେଘ ରଜା ଆସେ, ସେଇ ଆମ ଗାଆଁ ନଈରେ, ବରଷାରାଣୀ ଅଇଲା, ଆକାଶରେ ହସେ ପୁନେଇଁ ଜହ୍ନ, ରତ୍ନଗିରି, ମଗୁଶୁର ମାସ ଶୀତ ଆଦି କବିତା ଗୁଡ଼ିକରେ ପ୍ରକୃତିର ରୂପଚିତ୍ର ଚିତ୍ରିତ ହୋଇଛି ।



Digitized by srujanika@gmail.com

କବିର ଦୃଷ୍ଟି ସାଧାରଣ ଜନତାର ଦୃଷ୍ଟି ଠାରୁ ଭିନ୍ନ, ସେ ସବୁକୁ ଭିନ୍ନ ଭାବରେ ଦେଖେ, ଭିନ୍ନ ଭାବରେ ବିବେଚନା କରେ, ତା'ର ଦର୍ଶନରେ ସୃଷ୍ଟିର ରହସ୍ୟ ଥାଏ, ଜୀବନର ଗୁଢ ତତ୍ତ୍ୱ ଥାଏ, ଜଗତକୁ ଗଭୀର ଆପଣା ପଣରେ ନିରେଖିବାର ନିଆରାପଣ ଥାଏ, କବି ବସନ୍ତ କିଶୋର ମଧ୍ୟ ଆବାଲ୍ୟରୁ ଏପରି ବହୁଗୁଣର ଅଧିକାରୀ, ଯାହା ତାଙ୍କ କବିତାର ଛତ୍ରେ ଛତ୍ରେ ଫୁଟିଉଠିଛି । ତାଙ୍କର "କାଗଜଡଙ୍ଗା" କବିତାରେ ସେ ଗାଇଛନ୍ତି-

କାଗଜଡଙ୍ଗା ମୋ ଭାସି ଭାସି ଯାଆ
ଦରିଆର ଆର ପାରି,
ଯିବିରେ ମୁହିଁ ତୋହରି ପଛେ
କାମଦାମ ମୋର ସାରି ।
-ମାତୃଭୂମି (୨୨/୭/୧୯୭୨)

କବି ଜଣେ ଭିନ୍ନ ମଣିଷ, ସେ କୋଇଲିର ସୁମଧୁର କଣ୍ଠରେ ଆତ୍ମ ବିସ୍ମୃତ ହୁଏ । ଉଇହୁଙ୍କାର ଗଠନ ଦେଖୁ ଦେଖୁ ସୃଷ୍ଟିତତ୍ତ୍ୱ ଖୋଜି ବସେ, ନଈ ପାଣିରେ ମୀନ ଖେଳିଲେ କବିର ମନ କେଉଁ ଏକ ଅପୂର୍ବ ଭାବରେ ବିହ୍ୱଳିତ ହୁଏ । କବିର ଭାବକୁ ପରଖିବା ଆକାଶର ତାରା ସଂଖ୍ୟା ଗଣିବା ପରି । କବି ଫୁଲରେ ଫଗୁଣକୁ ଦେଖେ, ଶ୍ରାବଣରେ ଲୁହଭିଜା ଆଖିର ଦୁଃଖ ପଢେ, ଉଡନ୍ତା ଚଢେଇ ଭିତରେ ଆତ୍ମା ପରମାତ୍ମା ତତ୍ତ୍ୱକୁ ଅବଲୋକନ କରେ, କେବେ କେଉଁଠି ବିଗୁଲର ଶବ୍ଦ ଶୁଣିଲେ ରାଷ୍ଟ୍ର ଝଙ୍କାରରେ ଲୀନ ହୋଇଯାଏ । ବସନ୍ତ ବର୍ଣ୍ଣାଳୀରେ ଏପରି ତନ୍ମୟତା ବହୁବାର ଦେଖିବାକୁ ମିଳିଛି । ତାଙ୍କର ଏଇ ଜାତୀୟ ପତାକା ତଳେ, ଏ ମାଟି ପରେ, ଗୋଟିଏ ମାଆର ସନ୍ତାନ ଆମେ, କେମିତି ବଞ୍ଚିବ ଦେଶ ଆଦି କବିତା ଗୁଡିକରେ ରାଷ୍ଟ୍ରୀୟ ଭାବନା ଯେପରି ରୂପାୟିତ ହୋଇଛି ତାହା ନିଶ୍ଚୟ ପାଠକକୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିବ । ସେ ଉଦାତ୍ତ କଣ୍ଠରେ ଗାଇଛନ୍ତି -

ସାଧୀନ ଦେଶର ପୁଅଟି ଆମେ
ବିଜୟ କେତନ ଉଡେ ଏ ନାମେ ।
ଲୁହା ସମ କରି ଦେହକୁ ଟାଣ
ଲାଗି ଥାଉ ସଦା ଦେଶର କାମେ ।
- ଏଇ ଜାତୀୟ ପତାକା ତଳେ

ମହାପ୍ରଭୁ ଜଗନ୍ନାଥ ହେଉଛନ୍ତି ଓଡିଆଙ୍କ ପ୍ରାଣର ଦେବତା । ସେ ସାରା ଜଗତର ନାଥ ହେଲେ ମଧ୍ୟ ଓଡିଆ ପାଇଁ ଆପଣାର ଦେବତା । ତାଙ୍କୁ କେନ୍ଦ୍ର କରି



Digitized by srujanika@gmail.com

ଓଡିଆର ଜୀବନ ଗତିଶୀଳ ହୁଏ । ବାରମାସରେ ତେର ପର୍ବ ସବୁ ତାଙ୍କୁ ଉଦ୍ଦେଶ୍ୟ କରି ପାଳିତ ହୁଏ । ଜଣେ ଖାଣ୍ଟି ଓଡିଆ ଭାବେ ତାଙ୍କର ଭକ୍ତ ହୃଦୟଟି ଜଗନ୍ନାଥଙ୍କ ଠାରେ ସମର୍ପି ଯାଇଛି । ପ୍ରଭୁ ଜଗନ୍ନାଥଙ୍କ ଚକାଚକା ଆଖି ଭିତରେ କବି ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ବିଲୟକୁ ଦର୍ଶନ କରିଛନ୍ତି । ତେଣୁ ସେ ତାଙ୍କର "କିଏ ସେ" କବିତାରେ ସଭକ୍ତି ଗାଇଛନ୍ତି -

ସେଇ ସୃଷ୍ଟିକର୍ତ୍ତା ଜଗତର ନାଥ
ଜଗବନ୍ଧୁ ନାମ ବହି
ଯେତେ ଯାହା ଦେଖୁ ଗଢିଛନ୍ତି ସିଏ
ଆମରି ସୁବିଧା ପାଇଁ ।
-ମାତୃଭୂମି - (୧୫/୭/୧୯୭୩)

ଆପଣା ପ୍ରଭୁଙ୍କ ମହିମା ବର୍ଣ୍ଣନା କରି ସେ ନିବେଦନ କରିଛନ୍ତି ତାଙ୍କର ରଥଯାତ୍ରା କବିତାରେ-

ସଇନିକ ବେଶ ସାଜିଥିଲେ ଦୁହେଁ
ରାଜା ପୁରୁଷୋତ୍ତମଙ୍କ ପାଇଁ
କାଞ୍ଚି ଯୁଦ୍ଧେ ଜୟୀ କରାଇଲ ତାଙ୍କୁ
ଉତ୍କଳର ମାନ ମହତ ପାଇଁ ।

ନାରୀ କବି ବିଦ୍ୟୁତ୍ ପ୍ରଭା ଦେବୀ ତାଙ୍କର "ଛୋଟରେ ବଡ" କବିତାରେ ଗାଇଥିଲେ -

କ୍ଷୁଦ୍ର ଯାହା ନିହିତ ତହିଁ ସମ୍ଭାବନା ବହୁ
ସାଧନା ବଳେ ଶକତି ଯୋଗେ ବିକାଶ ଲଭେ ସେହୁ ।

କବି ବସନ୍ତ କିଶୋର ମଧ ବିଦ୍ୟୁତ୍ ପ୍ରଭାଙ୍କୁ ସ୍ୱୀକାର କରି ତାଙ୍କର "କୁନି କୁନି" କବିତାରେ ଗାଇଛନ୍ତି -

କୁନି ଜିନିଷରେ ଅଛି ଭଲ ଭଲ ଗୁଣ
କୁନି ପିଲାଙ୍କୁ କେବେ ପର ବୋଲି ନମଣ ।

ଶିଶୁ-ସାହିତ୍ୟ ସମ୍ବଳିତ ଅନେକ କବିତାରେ କଞ୍ଚା କବିତ୍ୱ ପରିଲକ୍ଷିତ ହେଉଥିଲେ ମଧ୍ୟ ଏ ସବୁ ତାଙ୍କ ଆଦ୍ୟ କବି ଜୀବନର ସୃଷ୍ଟି ହୋଇଥିବାରୁ ଏପରି ହେବା ସ୍ୱାଭାବିକ ।। ତଥାପି ତାଙ୍କର କବିତା ଗୁଡିକରେ ପ୍ରକୃତି ପ୍ରେମ, ଜୀବନ ଦର୍ଶନକୁ ଲକ୍ଷ୍ୟ କରିବା କଥା । ସେ ନିଜେ ଏହାକୁ ସ୍ୱୀକାର କରିଛନ୍ତି ତାଙ୍କର ଖିଆଲି କବିର ଭାବନା କବିତାରେ, ସେ କହିଛନ୍ତି-


Digitized by srujanika@gmail.com

ଭାବି ଭାବି ମୁହିଁ ଲେଖୁଛି କବିତା
କାଗଜରେ କେତେ ଥର
ଏ ପଦ ସାଥିରେ ସେ ପଦ ମିଶେନା
ଚିରିବା ହିଁ ହୁଏ ସାର ।

- ମୀନାବଜାର (୧୯/୭/୧୯୭୫)

କବିଙ୍କର ଶବ୍ଦ ଚୟନରେ ପଟୁତା ବହୁବାର ଲକ୍ଷ୍ୟଣୀୟ । ତାଙ୍କର 'ଆଷାଢ଼ୀ କନ୍ୟା ଅଇଲା' କବିତାରେ ଧ୍ୱନ୍ୟାତ୍ମକ ଶବ୍ଦର ପ୍ରୟୋଗ କରି କବିତାର ଲାଳିତ୍ୟକୁ ବହୁଗୁଣିତ କରିଛନ୍ତି । ଟପର ଟପର, ଭଟର ଭଟର, ପଚର ପଚର, ନସର ପସର, ହକର ହକର, ଚବର ଚବର, 'କଟର କଟର, କଚର ମଚର, ଚକର ଚକର, ନଟର ପଟର, ଆଦି ଅବନା ଧ୍ୱନର ପ୍ରୟୋଗ କବିତାକୁ ଯେପରି ରସାଣିତ କରିଛି, ଭାବ ବିନ୍ୟାସରେ ସେପରି ସମୃଦ୍ଧ କରିଛି ।

ବସନ୍ତ ବର୍ଣ୍ଣାଳୀ ପରି ବସନ୍ତ କିଶୋର ରଚନାବଳୀର ଦ୍ୱିତୀୟ ଭାଗ ହେଉଛି 'ପୁନଶ୍ଚ ବସନ୍ତ'। ଏଥିରେ କବିଙ୍କର ବିଭିନ୍ନ ସମୟରେ ପ୍ରକାଶିତ ଛପନଟି ଆଧୁନିକ କବିତା ସ୍ଥାନ ପାଇଛି । ଏହି ଭାଗରେ କବି ବସନ୍ତ କିଶୋରଙ୍କର ଯୌବନାନୁଭୂତି ବର୍ଣ୍ଣିବାରେ ମଧ୍ୟ କାପର୍ଣ୍ୟ କରି ନାହାନ୍ତି । ଅନେକ ରୋମାଣ୍ଟିକ୍ ଭାବଧାରାର କବିତା ଏଥିରେ ସଂଯୋଜିତ ହୋଇ ଉଭୟ ଶିଶୁ-ସାହିତ୍ୟ ଓ ବିଦଗ୍ଧ ସାହିତ୍ୟର ସମିଶ୍ରିତ ରୂପ ସଂରଚନାରେ ସହାୟକ ହୋଇଛି । ସଙ୍କଳନର ଆଦ୍ୟ ଭାଗରେ ଶିଶୁ-ସାହିତ୍ୟର ସରଳତାରେ ପାଠକ ଉଲ୍ଲସିତ ହେଉଥିବା ବେଳେ ପ୍ରାନ୍ତଭାଗରେ ରୋମାଣ୍ଟିକ୍ କାବ୍ୟ ଚେତନାରେ ରୋମାଞ୍ଚିତ ହେବାକୁ ବାଧ୍ୟ ହେବ । ତାଙ୍କର " ଏମିତି ବି ବର୍ଷା ଆସେ" କବିତାରେ କାବ୍ୟନାୟକ ଗାଇଛନ୍ତି -

ବର୍ଷାରେ ନ ଭିଜିଲେ ବି
ବର୍ଷାର ରିମ୍‌ଝିମ୍ ଗୀତରେ
ଅତୀତର ଚିତ୍ର ସବୁ ସ୍ପଷ୍ଟ ଦିଶେ
ଲାଜ ମାଡେ ପ୍ରଥମ ପ୍ରେମର ସ୍ମୃତି
ଯଦି ସବୁ କେବେ ମନେ ପଡେ ।

ଜଣେ ବାସ୍ତବ ପ୍ରେମିକର ଭାବାବେଗକୁ ବିଶ୍ଳେଷଣ କରି ତାଙ୍କର " ଅପେକ୍ଷାର ଦିନ" କବିତାରେ ଗାଇଛନ୍ତି-

ଅଥଚ ତମେ କେବେ ଆସ ନାହିଁ
କ୍ଷତବିକ୍ଷତ ମନ ନେଇ/ ତୁମ ପ୍ରତିଶ୍ରୁତିକୁ



Digitized by srujanika@gmail.com

ମୁଁ ବାରମ୍ବାର ବିଶ୍ଲେଷଣ କରେ
ମନକୁ ସାନ୍ତ୍ୱନା ଦିଏ
ତଥାପି ଅପେକ୍ଷାର ଦିନ ଶେଷ ହୁଏ ନାହିଁ ।

-ନୂତନବାର୍ତ୍ତା (୨୭/୬/୧୯୯୪)

'ତମେ ଆସୁଛ' କବିତାର ପ୍ରେମିକାର ଆବେଗକୁ ବର୍ଣ୍ଣିବାକୁ ଯାଇ କବି ଲେଖିଛନ୍ତି -

ତମେ ଆସୁଛ !
ତମେ ଆସୁଛ ତ ଆସୁଛ
ଲକ୍ଷ୍ମୀପାଦ ପକେଇ ପକେଇ
ସେଇ ଉତ୍ତର ଫଗୁଣରୁ
ସାହାନାଇ ବଜେଇ ବଜେଇ
ଆଜି ଏଇ ଶେଷ ବୈଶାଖ ପର୍ଯ୍ୟନ୍ତ ।

ଖାଲି ରୋମାଣ୍ଟିକ୍ କାବ୍ୟ ଚେତନାରେ କାବ୍ୟନାୟକ ଯେ ରୋମାଞ୍ଚିତ ହୋଇଛନ୍ତି ତାହା ନୁହେଁ ବରଂ ଅନେକ କବିତାରେ ସେ ଜନ୍ମମାଟି ମନସ୍କ ହୋଇପଡିଛନ୍ତି । ଜନ୍ମ ମାଟିର ଅକୁହା ଆବେଦନ ସବୁବେଳେ ତାଙ୍କୁ ମାଟି ମୋହରେ ବାନ୍ଧି ରଖିଛି । ସେ ସୁନାବେଡାରେ ଅବସ୍ଥାନ କଲେ ମଧ୍ୟ ଜନ୍ମମାଟି କୁସୁପୁରର ନିଆରା ପ୍ରେମ ତାଙ୍କୁ ସବୁବେଳେ ଆଚ୍ଛାଦିତ କରି ରଖିଛି । ସେ ଶୟନେ, ସପନେ, ଜାଗରଣେ ଗାଁ ମାଟିର ଆଶ୍ଲେଷକୁ ଅନୁଭବ କରିଛନ୍ତି । ବିରୂପା ନଇଧାରର କାଶତଣ୍ଡି, ବାଉଁଶବାଡର ନହକିଆ ଜଣି ଉପରେ ଦୋଳାୟମାନ ବଣି ଚଢେଇ, ମେଘ ଭରା ଆକାଶ, ତାରା ଭରା ପୁନେଇଁ ରାତି, ଜାମୁକୋଳି ଗଛର ମାୟା, ଦଣ୍ଡିକିରି ମାଛର ଚଗଲା ପଣ ସବୁ କିଛି କବିଙ୍କୁ ସବୁବେଳେ ବିଭୋର କରିଛି ।

ଭୁଲିପାରିବିନି ଯେତେ ଦୂରେ ଥିଲେ
ମୋ ଜନମ ଭୂଇଁ ସେହି ଗାଆଁ
ଭୁଲିପାରିବିନି ଜୀବନରେ କେବେ
ଗାଁ ଲୋକ ଆଉ ବାପା ମାଆ ।

ଅନ୍ୟତ୍ର ଗାଆଁ କବିତାରେ କବି ଭାବବିହ୍ୱଳିତ କଣ୍ଠରେ ଗାନ କରିଛନ୍ତି-

ରଜ, ଦୋଳ, ଦଶରା ଆଦି
ମେଳା ମଉଛବ
ଯେଉଁଠି ସୃଷ୍ଟି କରେ ଭାଇଚାରା ଭାବ


Digitized by srujanika@gmail.com

ସେଇ ମୋର ପ୍ରିୟ ଜନ୍ମମାଟି
ସେଇ ମୋର ଗାଁଆ
କୁସୁପୁର ତାର ନାଆଁ ।

- କବିତା କଳ୍ପଲତା, ୧୯୯୫

ବସନ୍ତ କିଶୋର ରଚନାବଳୀ-୧ର ବସନ୍ତ ବର୍ଣ୍ଣାଳୀ ଓ ପୁନଶ୍ଚ ବସନ୍ତ କାବ୍ୟପୁସ୍ତକ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧନରେ ଯଥୋଚିତ ସହାୟତା କରିଛି ନିଶ୍ଚୟ । ଶିଶୁ-ସାହିତ୍ୟର(ବସନ୍ତ ବର୍ଣ୍ଣାଳୀ) ସରଳ ମନୋହର କବିତା ଗୁଚ୍ଛରେ ପରିପୂର୍ଣ୍ଣ ଏହି ସଙ୍କଳନର ଅନେକ କବିତା ପାଠକର ପ୍ରାଣରେ ଯେତିକି ସାରଲ୍ୟ ସୃଜିବ, ସେତିକି ତନ୍ମୟ କରିବ । ବିଦଗ୍ଧ-ସାହିତ୍ୟର ବିବିଧ ବିପଣୀରେ ବିମଣ୍ଡିତ 'ପୁନଶ୍ଚ ବସନ୍ତ' ପାଠକକୁ ବହୁବିଧ ରସରେ ରସାଣିତ କରିବ । ବିଜ୍ଞ ପାଠକର ଗଭୀର ମନନଶୀଳତା ତଥା କାବ୍ୟାନୁଭୂତି ଏହି କାବ୍ୟ ସଙ୍କଳନର ପ୍ରତ୍ୟେକ କବିତାର ମର୍ମକୁ ହୃଦୟର ଗଭୀରତମ ପ୍ରଦେଶରେ ପହଞ୍ଚାଇ ଦେବାର ସାମର୍ଥ୍ୟ ରଖେ । ସର୍ବୋପରି ନାମର ଯଥାର୍ଥତାକୁ ପ୍ରତିପାଦନ କରି ବସନ୍ତ କିଶୋର ରଚନାବଳୀ-୧ (ବସନ୍ତ ବର୍ଣ୍ଣାଳୀ ଓ ପୁନଶ୍ଚ ବସନ୍ତ) ପାଠକ ଦରବାରରେ ବାସନ୍ତୀ ବସନ ପରିଧାନ ପୂର୍ବକ ବିଶେଷ ସମାଦୃତ ହେବ; ଏହା ନିଃସନ୍ଦେହରେ କୁହାଯାଇପାରେ । ବ୍‌ସନ୍ତ କିଶୋର ସାହୁଙ୍କ କାବ୍ୟ ଯାତ୍ରାର ମାଙ୍ଗଳିକ ସାରା ବିଶ୍ୱକୁ ନିନାଦିତ କରୁ, ତାଙ୍କର କାବ୍ୟ ସର ବିଶ୍ୱର ଅଗଣିତ ବିଜ୍ଞ ପାଠକଙ୍କ ବିଚାର ବୋଧକୁ ବିଶ୍ଳେଷିତ, ବିମୋହିତ କରୁ; ଜଣେ ଅନ୍ତରଙ୍ଗ ପାଠକ୍ ଭାବେ ଏହା କାମନା କରିବା ସାହିତ୍ୟର ହିତାର୍ଥେ ଯଥାର୍ଥ ଅଟେ ।



ବିଦ୍ୟାମନ୍ଦିର
କଚେରୀ ବଜାର, ଭଦ୍ରକ



Digitized by srujanika@gmail.com

# ବସନ୍ତ ବର୍ଣ୍ଣାଳୀ : ସ୍ୱପ୍ନ, ସ୍ମୃତି, ସମ୍ଭାବନା

ଡକ୍ଟର ଦେବାଶିଷ ପାତ୍ର

ଡକ୍ଟର ବସନ୍ତ କିଶୋର ସାହୁ ଓଡିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ଏକ ଜଣାଶୁଣା ନାଁ । ଅନେକ ଶିଶୁ ସାହିତ୍ୟର ସ୍ରଷ୍ଟା ଏହି ଲେଖକ ଜଣକ ଯେ ଆଧୁନିକ ଓଡିଆ କବିତା କ୍ଷେତ୍ରରେ ନିଜର ନିଆରା ପରିଚୟ ସୃଷ୍ଟି କରି ପାରିଛନ୍ତି ତାହା ଆଲୋଚନା ସାପେକ୍ଷ । ଯଦିଓ କବି ଭାବରେ ସେ ସମସ୍ତ ଆଧୁନିକ କବିତାର କୌଣସି ସ୍ୱତଂତ୍ର କବିତା ଗଚ୍ଛ ସଂକଳିତ ହୋଇ ପାରିନାହିଁ । ତେବେ ନିକଟରେ ପ୍ରକାଶ ପାଇଥିବା 'ବସନ୍ତ କିଶୋର ରଚନାବଳୀ' ପ୍ରଥମ ଖଣ୍ଡ ନାମରେ ଏକାଧିକ କବିତାକୁ ପ୍ରକାଶ କରି ଶ୍ରୀଯୁକ୍ତ ସାହୁ ଯେ କେବଳ ଶିଶୁ ସାହିତ୍ୟର ସ୍ରଷ୍ଟା ନୁହଁନ୍ତି ତାହା ପାଠକ ମାନଙ୍କୁ ଅବଗତ କରାଇ ପାରିଛନ୍ତି । ଗ୍ରନ୍ଥାବଳୀର ପ୍ରଥମ ପର୍ଯ୍ୟାୟ 'ବସନ୍ତ ବର୍ଣ୍ଣାଳୀ' କବିଙ୍କର କିଶୋର ସମୟରୁ ଅଶୀଦଶକ ପର୍ଯ୍ୟନ୍ତ ଲିଖିତ ଶହେ ଚାଳିଶିଟି କବିତାର ଏକ ସଂକଳନ । ଏହାର ଅର୍ଦ୍ଧାଧିକ କବିତା କିଶୋର ସୁଲଭ ଚେତନାରେ ମହ ମହ ହେଉଥିବା ବେଳେ ଆଉ କିଛି କବିତାରେ ତାରୁଣ୍ୟର ଝଙ୍କାର । ତେବେ ଭାବସତ୍ତା ଦୃଷ୍ଟିରୁ ଏହି ଗ୍ରନ୍ଥରେ ଥିବା କବିତା ଗୁଡିକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ-(୧) ଋତୁ କବିତା, (୨)ସମସ୍ୟା ଓ ଘଟଣା ମୂଳକ କବିତା, (୩) ଗାଁ କବିତା । ତେବେ ଶିଶୁ ସାହିତ୍ୟରେ ହାତ ଦେଇଥିବା ଅନେକ ସ୍ରଷ୍ଟା ଯେଉଁ ସବୁ ବିଷୟବସ୍ତୁ ଚୟନ କରିଥାଆନ୍ତି ଶ୍ରୀଯୁକ୍ତ ସାହୁ ଶିଶୁ ସୁଲଭ ଓ କୈଶୋର କବିତାରେ ସେହି ଧରଣର ବିଷୟବସ୍ତୁ ଚୟନ କରିଛନ୍ତି । ମାତ୍ର ଶବ୍ଦ ବିନ୍ୟାସ ଓ ଛାନ୍ଦସିକତା କ୍ଷେତ୍ରରେ ଯେଉଁ ଭିନ୍ନତା ସେ ଗ୍ରହଣ କରିଛନ୍ତି ତାହା ପାଠକଙ୍କ ପାଖରେ ତାଙ୍କୁ ଲୋକପ୍ରିୟ କରେଇ ପାରିଛି । ଲକ୍ଷ୍ମଣ ନାୟକଙ୍କ ସ୍ମୃତିରେ ରଚିତ ହୋଇଥିବା 'ଝୁରେ କୋରାପୁଟ ମାଟି' ରେ କବିଙ୍କର ଆବେଗ ଅତ୍ୟନ୍ତ ମର୍ମସ୍ପର୍ଶୀ -

ତୁମ ସୌରଭ ଗୁଣ ଗଉରବ ଏ ଜାତି ମନରୁ ଲିଭିନି
କୋଟି ଜନତାର ଅନ୍ତରତଳୁ ବେଦନାର ଲୁହ ଶୁଖିନି ।

ସେହିପରି ଅନେକ ଋତୁ ସମ୍ବନ୍ଧୀୟ କବିତାର ସ୍ରଷ୍ଟା ଶ୍ରୀଯୁକ୍ତ ସାହୁ କିଶୋର ମାନସିକତା ନେଇ କବିତା ଗୁଡିକୁ ଯେଉଁ ଢଙ୍ଗରେ ସଜେଇଛନ୍ତି ତାହା ଅତ୍ୟନ୍ତ ରସାଣିତ



Digitized by srujanika@gmail.com

ଓ ମନୋମୁଗ୍ଧକର । ହୁଏତ ଛାନ୍ଦସିକତା ଏହି ସବୁ କବିତାର ଆତ୍ମା । 'ଶରତ ଆସେ' କବିତାରୁ ସେହି ଛଳ ଛଳ ଛାନ୍ଦସିକ ପ୍ରବାହ ଆମେ ଅନୁଭବ କରିପାରିବା -

ବରଷା ଶେଷେ ଶରତ ଆସେ
ଧରଣୀ ରାଣୀ ହସେ
କି ମନ ଲୋଭା ସରଗ ଶୋଭା
ମରତେ ଖସି ଆସେ ।
ନଈ ପଠାରେ ବିଲ ପାଟରେ
ଫୁଟଇ କାଶତଣ୍ଡୀ
ହେନା ସେବତୀ କଇଁ ମାଳତୀ
ଫୁଟେ ଧରାକୁ ମଣ୍ଡି ।

ବର୍ଷା ସଂଗୀତ, କାଗଜ ଡଙ୍ଗା, ଆସିଲା ଶୀତ, ବର୍ଷା ଭାବନା ପ୍ରଭୃତି କବିତାରେ ପ୍ରକୃତି ବିଭା ସହିତ ପଲ୍ଲୀଜୀବନର ସମନ୍ୱୟ ଅତ୍ୟନ୍ତ ଭାବ ସୃଷ୍ଟିକାରୀ । ହୁଏତ କବିଙ୍କ ଗାଁର ସାହିତ୍ୟିକ ପରିବେଶ କବିଙ୍କୁ ଜଣେ ବିବିଧ ସ୍ରଷ୍ଟାର ପରିଚୟ ପାଇବାରେ ପ୍ରେରଣା ଯୋଗାଇଥିବ । କାରଣ ପଲ୍ଲୀକବି ନନ୍ଦକିଶୋର, ଜ୍ଞାନୀନ୍ଦ୍ର ବର୍ମା, ବିମ୍ବାଧର ବର୍ମା ଓ ନନ୍ଦକିଶୋର ସାମଲଙ୍କ ପରି ଯୋଗଜନ୍ମାଙ୍କ ଗାଁରେ ବସନ୍ତ କିଶୋର ସାହୁଙ୍କ ଜନ୍ମ, ଯାହା କବିଙ୍କ ହୃଦୟରେ କବି ହେବାର ପ୍ରବଣତାରେ ବାରି ସିଞ୍ଚନ କରିଥିଲା ।

ଶିଶୁ ଏବଂ କିଶୋର କବିତା ସହିତ ୧୯୭୨ ରୁ ୧୯୯୦ ମସିହା ଭିତରେ ଲିଖିତ ଛପନଟି ଆଧୁନିକ କବିତା ଏକତ୍ର ସମାହିତ ହୋଇଛି ବସନ୍ତ କିଶୋର ରଚନାବଳୀର ଦ୍ୱିତୀୟ ଅର୍ଘ୍ୟ 'ପୁନଶ୍ଚ ବସନ୍ତ' ଭାବରେ ।

'ପୁନଶ୍ଚ ବସନ୍ତ' ଶୀର୍ଷକ ଏକ କବିତା ଏହି ଅର୍ଘ୍ୟର ପ୍ରଥମରେ ସ୍ଥାନିତ ହୋଇଛି । ଆଧୁନିକ କବିତା ଲିଖନ ସଂପର୍କରେ କବି ନିଜେ ମୁଖବନ୍ଧରେ ଲେଖିଛନ୍ତି - 'ମୁଁ ଆଧୁନିକ କବିତା ଲେଖେ ନାହିଁ ବୋଲି ଅନେକଙ୍କର ଧାରଣା ।' ଅନ୍ୟତ୍ର ପୁଣି କବି କହିଛନ୍ତି କବିତା ପାଠୋତ୍ସବରେ ପଠିତ କବିତା ଠାରୁ ତାଙ୍କର କବିତା ଉତ୍କୃଷ୍ଟ ଧରଣର ଯାହା ଆଗଧାଡିର କବି ଓ ଗବେଷକ ବିଚାର କରିବେ । ପ୍ରକୃତରେ ଶ୍ରୀଯୁକ୍ତ ସାହୁଙ୍କ ଆଧୁନିକ କବିତାର ମୂଲ୍ୟାଙ୍କନର ଏହି ପ୍ରୟାସ ହିଁ ପ୍ରଥମ ଯାହା ପୂର୍ବରୁ କରାଯାଇ ନାହିଁ ।

'ପୁନଶ୍ଚ ବସନ୍ତ' ରେ ସ୍ଥାନିତ ପ୍ରତିଟି କବିତା ବିଷୟବସ୍ତୁ ନିର୍ବାଚନ ଦୃଷ୍ଟିରୁ ପରସ୍ପର ଠାରୁ ଭିନ୍ନ ମାତ୍ର ଶବ୍ଦ ପ୍ରୟୋଗରେ ଜ୍ୟାମିତିକ ସାଦୃଶ୍ୟ ସେଥିରେ ଅବଲୋକନ


Digitized by srujanika@gmail.com

କରିହୁଏ । ସେହି ସାଦୃଶ୍ୟ ସମ୍ଭବ ହୋଇଛି କବିର ହୃଦୟର ଆବେଗ ପାଇଁ ଯାହା ଛଳନାହୀନ ଭାବରେ ବେଗଗାମୀ । ଋତୁ ବର୍ଣ୍ଣନାକୁ ନେଇ ଅନେକ ଶିଶୁ ଓ କିଶୋର କବିତା ମୁଖରିତ ହୋଇଥିଲା ବେଳେ ତାରୁଣ୍ୟରେ ବି ତାଙ୍କର ମନେ ପଡିଛି ବର୍ଷା । ଯାହା ନେଇ ଆସିଛି ଏକ ଶାବ୍ଦିକ ଅର୍କେଷ୍ଟ୍ରା -

ବର୍ଷା ଆସେ ଅଭିଆଡୀ ଝିଅଟିଏ ହୋଇ
ଚେତନାର ନିଭୃତ ଇଲାକାରେ
ମୋ ସମ୍ମୁଖରେ ବାରବାର
ମେଘ ମହ୍ଲାର ଗାଇ
ସେ ଫ୍ରକ୍ ବଦଳାଏ ।

ବର୍ଷା ପ୍ରତ୍ୟୟ,ବସନ୍ତ କିଶୋର ରଚନାବଳୀ,ପୃ-୨୨୮

ସେହିପରି 'ଅଦିନ ଶ୍ରାବଣ' କବିତାରେ ବର୍ଷାକୁ ଅସହିଷ୍ଣୁ ପଡୋଶୀ, ଅନ୍ୟତ୍ର ବର୍ଷା କବିତାରେ ବର୍ଷାକୁ ଶରଣାର୍ଥୀ ରମଣୀ ଭାବରେ ଚିତ୍ରିତ କରିଛନ୍ତି କବି । କବିତାରେ ବର୍ଷା ପ୍ରତି ଏଭଳି ପ୍ରୟୋଗ ସଂପୂର୍ଣ୍ଣ ନୂଆ ଅନୁଭବ ଆଣେ ।

'ଅରଣ୍ୟ ନାୟିକା' କବିତାଟି ଡଙ୍ଗର ଲଳନାର ନିଛକ ଚିତ୍ର ପ୍ରତିପାଦିତ କରିଥାଏ । କବିଙ୍କ ବକ୍ତବ୍ୟରେ ଡଙ୍ଗର ଝିଅଟିଏ ପ୍ରତିମା ନାୟକରେ ଅଳକା ସାନ୍ୟାଲ କି ଭ୍ରଥ ନାୟକର ଝିଅ ନୁହେଁ, ସେ ହୋଇପାରେ ଫୁଲମଣି, ଚୁମୁକି ନଚେତ୍ ସମ୍ବାରୀ ଯିଏ ପାହାଡି ଝରଣା ପରି ଛଳଛଳ, ମାତ୍ର ସେମାନଙ୍କୁ ଆଉ କାହା ସୁଖ ପାଇଁ ଆତ୍ମବଳୀ ଦେବାକୁ ପଡେ ବାରମ୍ବାର -

ଜଙ୍ଗଲର ଘନ ଅନ୍ଧାର
କି ବାଘର ହେଣ୍ଟାଳ୍
ଛୁଇଁ ନାହିଁ କେବେ
ଆମ ମନେ ଭୟର ପରିଧି
ଆମେ ସହୁ ମୃତ୍ୟୁ ଲଭୁ ବାରବାର
ଡାକ ବଙ୍ଗଳାର ନିବୁଜ କୋଠିରେ ।

(ଅରଣ୍ୟ ନାୟିକା,ବସନ୍ତ କିଶୋର ରଚନାବଳୀ, ପୃ-୨୦୬)

ତଥାପି ସବୁ ଯନ୍ତ୍ରଣାକୁ ସେ ଭୁଲିଯାଏ ଚଇତିର ଡୁଙ୍ଗୁଡୁଙ୍ଗା ବାଜିଲେ ଆକାଶରେ ସାରୁହୁଲର ଜହ୍ନ ଦେଖିଲେ । ତାହା ହିଁ ତାର ଅନ୍ତରାତ୍ମାର ସ୍ୱର । ଯେମିତି -

ଆକାଶରେ ଚମ୍ପାଫୁଲ ଜହ୍ନରାତି


Digitized by srujanika@gmail.com

ସାଇଁଲଡି ଛାଇ ଓ ଛଟକ ।

କବିତାର ଏଇ ଦୁଇଧାଡି ମନେ ପକେଇ ଦିଏ ଘର, ଗାଁ, ଚଢେଇଆ ଗୀତକୁ ନେଇ ବିଭୋର ହେଉଥିବା ଆଧୁନିକ ମଣିଷଟିକୁ । ଯିଏ କି ପରଂପରା ନବୀକରଣ କରି ନୂଆ ଭାବରେ ତାକୁ ଦେଖିବାକୁ ଚାହେଁ ।

'ଏକାନ୍ତ ନିଜସ' କବିତାରେ କବି ଖୋଜନ୍ତି ଅତି ଆପଣାର ମୁହଁଟିକୁ । ଆଉ ସେଇ ମୁହଁଟିର ପ୍ରତିଟି ଉଚ୍ଚାରଣରେ ବିଭୋର ହୁଅନ୍ତି କବି ହୁଏତ ସେଇ ଦୁଇଟି ଦିନେ ବାସ୍ତବତାରେ ରୂପାୟିତ ହେବ ସ୍ୱପ୍ନ ସ୍ମୃତିକୁ ପଛରେ ରଖି -

ତାକୁ ଭଲ ଲାଗେ ଜହ୍ନରାତି
ଆକାଶର ନୀଳିମା
ଚଢେଇଙ୍କ ମନଛୁଆଁ ଗୀତ
ଝରଣାର କୁଳୁ କୁଳୁ ସ୍ୱର
ଆଉ ସ୍ୱପ୍ନରେ ସେ ଦେଖିଥିବା
ତା' ଏକାନ୍ତ ନିଜର ଆଉ ଅତି ଆପଣାର
ଜଣଙ୍କର ମୁହଁ ।
(ଏକାନ୍ତ ନିଜସ, ବସନ୍ତ କିଶୋର ରଚନାବଳୀ, ପୃ- ୨୩୫)

ପ୍ରକୃତରେ କବି ଦେଖିଥିବା ସେଇ ମୁହଁଟି ଆପଣାର ମୁହଁ ନୁହେଁ ତ । ଏକାନ୍ତ ନିଜସ ଅନୁଭବ ଆଣିଥିବା ମୁହଁଟି ଯେ କବି ସହିତ ଆତ୍ମକଥନ କରେ ଏବଂ କବିକୁ ସ୍ୱୀକାର କରିବାକୁ ପଡେ ତାକୁ ଏହାହିଁ ଉତ୍ତର ସତୁରୀ କାବ୍ୟ ପରଂପରାର ଏକ ବଡ ଲକ୍ଷଣ ଯାହା କବିତାର ପଂକ୍ତିରୁ ସ୍ପଷ୍ଟ ।

'ସହର' କବିତାରେ ମଣିଷର ନିଃସଙ୍ଗ ସହରୀ ଜୀବନ କେମିତି ସାଲିସ୍ କରିନିଏ ଜୀବନ ସହିତ ସେହି କଥାହିଁ କହିଥାଏ । କୃତ୍ରିମତାର ଆବରଣ ଭିତରେ ନାଚାର ଜୀବନ ବେଳେ ବେଳେ ବେସାଲିସ୍ ହୁଏ ଆଉ କବିର ଝର୍କା ଖୋଲି ପାଠକ ମାନଙ୍କ ପାଇଁ ନେଇ ଆସେ ଅନୁଭବର ଖୋରାକ୍ । କବି ଦୃଷ୍ଟିରେ ସହର ସବୁ ଚିରକାଳ ସେମିତି ଯେମିତି ଶ୍ରୀଯୁକ୍ତ ସାହୁ ଦେଖିଛନ୍ତି -

ଲିପ୍‌ଷ୍ଟିକ୍ ପ୍ରଲେପରେ
ସହରର ସକାଳ
ଫ୍ଲୋରସେଣ୍ଟ ଆଲୋକେ
ଦୂର ହୁଏ ରାତ୍ରିର ଅନ୍ଧାର ।

ସାମଗ୍ରିକ ଭାବରେ ଅନୁଶୀଳନ କଲେ ମନେ ହେବ 'ପୁନଶ୍ଚ ବସନ୍ତ' ରେ


Digitized by srujanika@gmail.com

ସ୍ଥାନିତ ଅଧିକାଂଶ କବିତାର ଶବ୍ଦ ସ୍ଥାପତ୍ୟ ଅତ୍ୟନ୍ତ ପ୍ରଭାବଶାଳୀ । ଯେପରି ସୁଖର କଦମ୍ବ, ସନ୍ଧ୍ୟାର ମଲ୍ଲୀକଢ, କଳାମେଘୀପାଟ, ଆନୁଗତ୍ୟର ଗୀତ, ଦୁଃଖର ସିମ୍ଫୋନୀ, ଜୀବନ ଜାହ୍ନବୀ, ବାରବୁଲା ମହୁମାଛି, ଅପାସୋରା ପାଣ୍ଡୁଲିପି, ବଇଁଶୀଆଳର ବେହାଗ ପରି ଅନେକ ଶବ୍ଦପୁଞ୍ଜ ଶ୍ରୀଯୁକ୍ତ ସାହୁଙ୍କ କବିତାରେ ଆଣିଥାଏ ଅନ୍ତରଂଗ ଅନୁଭବ । ବିଷୟବସ୍ତୁ ଚୟନ ଏବଂ ଭାବ ବିନ୍ୟାସ ଦୃଷ୍ଟିରୁ ସମସ୍ତ କବିତା ଅତ୍ୟନ୍ତ ଚମତ୍କାର ।

ଯଦିଓ କଳାତ୍ମକତା ଦୃଷ୍ଟିରୁ କେତୋଟି କବିତା ଅତ୍ୟନ୍ତ ପ୍ରଭାବଶାଳୀ ମନେ ହୁଅନ୍ତି ନାହିଁ । ନିଜେ କବି ହିଁ ପାଠକ ଦୃଷ୍ଟିରୁ ସେ ସମସ୍ତ କବିତାକୁ ବିଚାର କରି ମୁଖବନ୍ଧରେ କହିଛନ୍ତି ଭାବପ୍ରବଣତା ଦୃଷ୍ଟିରୁ ଉତୁରୁଥିବା କବିତା ଏବଂ ଉତୁରି ନଥିବା କବିତା ଉଭୟକୁ ପୁନଶ୍ଚ ବସନ୍ତରେ ସ୍ଥାନିତ କରାଯାଇଛି । ତଥାପି ଆଙ୍ଗିକ ଏବଂ ଆତ୍ମିକ ଦୃଷ୍ଟିକୋଣରୁ କବି ସାହୁଙ୍କ ଆଧୁନିକ କବିତା ସମୂହ ନୂଆ ସମ୍ଭାବନା ରଖେ, ଯଦିଓ ତାଙ୍କ ଶିଶୁ ସାହିତ୍ୟ ପରି ଏହା ଲୋକପ୍ରିୟ ହୋଇ ପାରିନାହିଁ । ତଥାପି କବିଙ୍କର କବିତା ପ୍ରତି ପ୍ରଥମ ସମର୍ପଣକୁ ଅନୁଭବ କରି ତାଙ୍କରି ଭାଷାରେ କୁହାଯାଇପାରେ -

ପ୍ରଥମ ଦେଖାର ସ୍ମୃତି
ପ୍ରଥମ ହସର ସ୍ମୃତି
ପ୍ରଥମ ପ୍ରେମର ସ୍ମୃତି
ଆଉ ସବୁ ପ୍ରଥମର ସ୍ମୃତି
ସବୁ ମୋର ଏକାନ୍ତ ନିଜର
ସବୁ ମୋର ଅତି ଆପଣାର ।

ଶେଷରେ ସ୍ୱପ୍ନ, ସ୍ମୃତି ଓ ସମ୍ଭାବନାର ବସନ୍ତ ବର୍ଣ୍ଣାଳୀ ଓ ପୁନଶ୍ଚ ବସନ୍ତ ବହୁବର୍ଣ୍ଣା ହେଇଉଠୁ କବି ଓ କବିତାର ପାଠକ ମାନଙ୍କ ପାଇଁ ।



ଅଧ୍ୟାପକ, ଓଡ଼ିଆ ବିଭାଗ
ରାଜଧାନୀ କଲେଜ, ଭୁବନେଶ୍ୱର



Digitized by srujanika@gmail.com

# ବସନ୍ତ କିଶୋରଙ୍କ ଗଳ୍ପ ମାନସ

## ଡକ୍ଟର ବ୍ରଜଗୋପାଳ ମହାନ୍ତି

ମଣିଷ ଯାହା ଖୋଜେ ତା ପାଇପାରେନା; ଆଉ ଯାହା ପାଏ ତାହା କେବେ ବି ଆଶା କରେନା । ଆଶା କରି ଖୋଜିବା ଆଉ ଖୋଜି ନ ପାଇବାର ଅନ୍ୟ ନାମ ଯନ୍ତ୍ରଣା । ସାମାଜିକ ଯୁପକାଷ୍ଠ ଭିତରେ ଏ ଯନ୍ତ୍ରଣା ଏତେ ଅତିଷ୍ଠ ଯେ ସାଧାରଣ ଜୀବନ ଜୀଇବା ହାହାକରମୟ । ପ୍ରେମ ଓ ପ୍ରତାରଣା ଭିତରେ ତ ଯନ୍ତ୍ରଣା ଅଛି, ତେବେ ଏ ପ୍ରତାରଣା ଅନେକ ସମୟରେ ଇଚ୍ଛାଗତ ନୁହେଁ । ତାହା ବାଧ୍ୟ ହୋଇଯାଏ । ଯେପରି "ବାପାଙ୍କ ଦୃଷ୍ଟିରେ ମୋର ପ୍ରେମ ଓ ଭଲ ପାଇବା ବଡ଼ ନ ହୋଇ ଅର୍ଥ ବଡ ହୋଇ ଛିଡାହେଲା । ବାପାଙ୍କ ପ୍ରରୋଚନାରେ ଅଳକାର ବାପା ମନ ମୁତାବକ ଯୌତୁକ ଦେଇ ମୋତେ ବଜାରରୁ କିଣିନେଲେ । ମୁଁ ଅନୁଗତ ପୁତ୍ର ପରି ଏହାର କୌଣସି ପ୍ରତିବାଦ କରିପାରିଲି ନାହିଁ ।" "ବାପାଙ୍କ କଥାରେ ମୋର ବିବାହ ଅନ୍ୟତ୍ର ହୋଇ ଯାଇଥିଲା ବାପାଙ୍କ ସଂକଳ୍ପ ଓ ବୋଉର ନିରବ ଚାହାଁଣି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ସମସ୍ତ ଶକ୍ତି ମୁଁ ହରାଇ ବସିଥିଲି ।" ସାମାଜିକ ଏହି ବନ୍ଧନ ଓ ସଂସ୍କୃତିର ପ୍ରବାହ ପ୍ରବାହିତ ଧାରାରେ ମଣିଷ ବିନ୍ଦୁଟିଏ ହୋଇଯାଏ ଯାହାର ସତ୍ତା ଖୋଜିଲେ ବି ମିଳେନା । ମିଳେନା ସେ ମାନସିକତା କି ସେ ଆବେଗ । ପ୍ରେମର ସ୍ୱତଃସ୍ଫୁର୍ତ୍ତ ମାନସିକତା ଧକେଇ ଧକେଇ କାନ୍ଦେ ସିନା ତାହା ରହିଯାଏ ମନଗହନର ଅନ୍ଧକାର ଭିତରେ । ବାହାରେ ବାଧ୍ୟ ଶିଶୁଟି ପରି ମଣିଷ ଗତି କରେ । ମନର ଆବେଗାୟିତ କୋହ ଭିତରେ ମଣିଷ ଗୁମୁରି ଗୁମୁରି କାନ୍ଦିପାରେ; ମାତ୍ର ସ୍ୱଦେହରେ ଜୀବନ ଜୀଇବାର ହସ ଭିତରେ ସମାଜ, ପରିବାର ଖୁସି ଚାହାନ୍ତି; ଆଉ ସେହି ଖୁସି ଭିତରେ ପ୍ରେମିକ/ପ୍ରେମିକା ତା'ର ମନ ପକ୍ଷୀକୁ ଖୋଜି ଚାଲେ । ଆକାଶ ଯେଉଁଠି ମାଟିକୁ ଛୁଇଁଛି ସେ ଯାଏ ଲମ୍ବିଯାଏ ମନ । ମନର ଅଜାଣତରେ ମଳୟ ଆସେ । ଆସେ ଆମ୍ବ ବଉଳର ସମ୍ଭାର । ଦେହସାରା ଖେଳିଯାଏ ଶତ କଦମ୍ବର ରୋମାଞ୍ଚ ଆଉ ମାଖି ହୋଇଯାଏ କୃଷ୍ଣଚୂଡାର ରଙ୍ଗ । ଜୁଆର ଆସେ । ସେ ଜୁଆରରେ ଭାସି ଭାସି ପ୍ରେମିକ/ ପ୍ରେମିକା କେଉଁ ଅଜଣା ଦ୍ୱୀପରେ ପହଞ୍ଚିଯାଏ । ହୋଇଯାଏ ଅନ୍ୟମନସ୍କ । ସେଠି ପ୍ରେମିକ ପ୍ରେମିକାର ମିଳନ ଘଟେ । ଦେହରେ ନୁହେଁ ମନରେ । ହଜିଯାଏ ଜହ୍ନ ଆଲୁଅରେ । ତାରା ଭରା ଆକାଶ ଦିଏ ଶୀତଳତା । ଖସି ଖସି ଯାଏ ଦେହ । ମିଶିଯାଏ ବି ଦେହରେ । ହଜିଯାଏ ସବୁକିଛି । ଶରୀର ଶୀତଳ ହୋଇଯାଏ ।



Digitized by srujanika@gmail.com

ବାସ୍ତବତାକୁ ଫେରିଆସେ ପ୍ରେମିକ/ ପ୍ରେମିକା । ଆଗରେ ଚକା ଚକା ଆଖି କରି ଛିଡା ହୋଇଥାଏ ସମାଜ, ସଂସ୍କୃତି ଓ ପରମ୍ପରାକୁ ମାନିବା ତ ସମସ୍ତଙ୍କର କର୍ତ୍ତବ୍ୟ ଆଉ ଦାୟିତ୍ୱ । ତେବେ ଯେଉଁ ସମାଜ, ଯେଉଁ ପରମ୍ପରା ଓ ଯେଉଁ ସଂସ୍କୃତି ମନର ମିଳନକୁ ସ୍ୱୀକୃତି ନ ଦେଇ ଦେହ ଅଛି ବୋଲି ଦୁଇଟି ଦେହକୁ ଜବରଦସ୍ତ ଯୋଡି ଦେଇ ନୀରବ ରହିଯାଏ; ସେଥିରେ ଜୀବନ ସାରା ନାୟକ/ନାୟିକା ଛଟପଟ ହୁଏ । ପିଲାଛୁଆ ସଂସାର ଗଢି ହୋଇଯାଏ । ମାତ୍ର ମୃତ୍ୟୁ ପର୍ଯ୍ୟନ୍ତ ସେ ମନଟି ଯେପରି ଛଟପଟ ହୁଏ ତାକୁ କିଏ ବା ଦେଖିପାରେ ? ତେଣୁ ସେ ସମାଜରେ ସଂସ୍କୃତି ଆଉ ସେ ପରମ୍ପରାର ପରିବର୍ତ୍ତନ ଆବଶ୍ୟକ । ଆବଶ୍ୟକ ପ୍ରବାହିତ ସ୍ରୋତରେ ନୂତନ ସ୍ରୋତର ସଂଯୋଗ କରିବା ଆଉ ତାର ଶୁଦ୍ଧତାର ସ୍ୱାତନ୍ତ୍ର୍ୟତାକୁ ଉକୁଟାଇବା । ସ୍ୱର୍ଣ୍ଣାଭ କରିବା ତାର ଧାରାକୁ । ଯେଉଁ ଧାରା ଧନୀ ଦରିଦ୍ର, ସୀମାକୁ ଡେଇଁ ଜାତିଧର୍ମକୁ ଅତିକ୍ରମ କରି ଯାନି ଯଉତୁକର ଊର୍ଦ୍ଧ୍ୱକୁ ଯାଇ ମନର ମିଳନକୁ ସ୍ୱୀକୃତି ଦେବ । ଜୀବନର ଗତିପଥକୁ ସୁଗମ କରିବ ଆଉ ସାତ୍ତ୍ୱିକ ପ୍ରେମ ଓ ମିଳନକୁ ବାଟ କଢେଇ ସାମାଜିକ ସଂକୀର୍ଣ୍ଣତାକୁ ଦୂରେଇ ଜୀବନର ପୂଜା କରିବ । ଏହିପରି ମରୁଭୂମି ଉପରେ ଗଢିଉଠିଛି ବସନ୍ତ କିଶୋର ଗଳ୍ପମାନସ । ସଂଖ୍ୟା ଦୃଷ୍ଟିରୁ ଗଳ୍ପ ଗୁଡିକ ହୋଇପାରେ ସ୍ୱଳ୍ପ ମାତ୍ର ସାମାଜିକ ଦାୟିତ୍ୱ ତୁଲେଇବାରେ ଏଗୁଡିକ ଅତ୍ୟନ୍ତ ପ୍ରଭାବଶାଳୀ ଓ ଗୁରୁତ୍ୱପୂର୍ଣ୍ଣ ।

ଡକ୍ଟର ବସନ୍ତ କିଶୋର ସାହୁ ଅନେକ ଗଳ୍ପ ଲେଖିଥିଲେ ମଧ୍ୟ ପ୍ରକାଶିତ ଗଳ୍ପ ଗୁଡିକୁ ନେଇ ଏକ ନିବନ୍ଧର ଉପସ୍ଥାପନା । ଗଳ୍ପ ଗୁଡିକ ଆକାଶବାଣୀ ଜୟପୁର କେନ୍ଦ୍ରରୁ ବିଭିନ୍ନ ସମୟରେ ପ୍ରଚାରିତ ହୋଇଛି । ପରେ ସେଗୁଡିକ ଶାବର, ବନଫୁଲ, କଲମ, ଆଦି ପତ୍ରିକା ଓ ସତୀର୍ଥ ଗଳ୍ପ ପୁସ୍ତକରେ ପ୍ରକାଶିତ ହୋଇଛି । ଏହି ସମସ୍ତ ଗଳ୍ପକୁ ୨୦୧୨ ମସିହା-'ବସନ୍ତ କିଶୋର ଗଳ୍ପ ମାନସ' ଭାବରେ ବସନ୍ତ କିଶୋର ରଚନାବଳୀ-(ଦ୍ୱିତୀୟ ଖଣ୍ଡ)ରେ ଶ୍ରୀମତୀ ବୀଣାପାଣି ସାହୁ, ଅଗ୍ରଣୀ ପବ୍ଲିକେଶନ, କୁସୁପୁର, କଟକ ପ୍ରକାଶ କରିଛନ୍ତି । ଗଳ୍ପ ଗୁଡିକ ମଧ୍ୟରୁ 'କର୍ତ୍ତବ୍ୟ' ଗଳ୍ପଟି ନିଆରା । ବାକି ଗଳ୍ପଗୁଡ଼ିକ ପ୍ରେମ ଗଳ୍ପ । ଯୁଗ ଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ ସୟମ୍ବର, ସଂପର୍କ, ଶଙ୍କା, ସ୍ମୃତି ବିସ୍ମୃତିରେ ମନର ମିଳନ ପାଇଁ ଛଟପଟ ହେଉଥିବା ନାୟକ/ ନାୟିକା 'ସୀମା ଏକ ପ୍ରଗଲ୍‌ଭା ନଦୀ' ଗଳ୍ପରେ ଚୂଡାନ୍ତ ରୂପ ନେଇଛି । କାୟମନୋବାକ୍ୟରେ ନାୟକ ନାୟିକାର ମିଳନ ଘଟାଇ ଗାଳ୍ପିକ ପ୍ରେମର ପ୍ରକୃତ ପୂଜାରୀ ସାଜିଛନ୍ତି । ଗଳ୍ପଟିରେ ବିରହ ଭିତରେ ପ୍ରେମର ପ୍ରକୃତ ମୂଲ୍ୟାଙ୍କନ କରି ମିଳନର ପଥକୁ ସୁଗମ କରିଛନ୍ତି । ଦେହର ମିଳନ ଊର୍ଦ୍ଧ୍ୱରେ ମନର ମିଳନ ଯେ କେତେ ମଧୁମୟ ଆଉ ସାତ୍ତ୍ୱିକ ତାର ପ୍ରକୃଷ୍ଟ ମୂଲ୍ୟାୟନ ହୋଇପାରିଛି । ଉଭୟେ ଅନେକ ଦୂରରେ ଥିଲେ ବି ପରସ୍ପର ପରସ୍ପରକୁ ଖୁବ୍ ନିକଟରେ ଅନୁଭବ କରିଛନ୍ତି । ପ୍ରେମର ସ୍ୱର୍ଗୀୟ ଆଉ ଅବ୍ୟକ୍ତ କଥା ଗୁଡିକୁ ଗାଳ୍ପିକ ଏପରି ସୁଲଳିତ ଓ ପୁଲକିତ ଭାଷାରେ, ସ୍ୱଭାବ ସୁଲଭ ଢଙ୍ଗରେ ଉପସ୍ଥାପନା କରିଛନ୍ତି ଯାହାକୁ ନ



Digitized by srujanika@gmail.com

ପଢ଼ିଲେ ବ୍ୟକ୍ତ କରିବା କଷ୍ଟ । ଏଇ ଗଳ୍ପରେ ଗାଳ୍ପିକଙ୍କ ଯାଦୁକରୀ ସ୍ପର୍ଶ ପାଠକଙ୍କୁ ଆପ୍ଳୁତ କରେ ।

'ଯୁଗଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ' ଗଳ୍ପର ନାୟକ ଚିନ୍ମୟ ଆଉ ନାୟିକା ଲିପି କଲେଜ ଜୀବନ ସମୟରୁ ପରସ୍ପରକୁ ଭଲପାଇ ବସିଛନ୍ତି । ଲିପି ସୁନ୍ଦରୀ ଆଉ ଶିଳ୍ପପତିଙ୍କର କନ୍ୟା । କଲେଜ ଜୀବନ ପରେ ପରସ୍ପର ଅଲଗା ହୋଇ ଯାଇଛନ୍ତି । ଚିନ୍ମୟ କରିଛି ଅଧ୍ୟାପକ ଚାକିରି । ଅବଶେଷରେ ଲିପି ନିଜର ପିତାଙ୍କୁ ରାଜି କରାଇ ଚିନ୍ମୟକୁ ଚିଠିରେ ବିବାହ ପ୍ରସ୍ତାବ ଦେଇଛି । ଚିନ୍ମୟ ହୋଇଯାଇଛି କିଂକର୍ତ୍ତବ୍ୟବିମୂଢ଼ । ମ୍ୟାଟ୍ରିକ ପାଶ୍ ପରେ ନିଜର ଦାରିଦ୍ର୍ୟତା ପାଇଁ ପାଠରେ ବନ୍ଧା ହୋଇଥିଲା ଡୋରି । ଗ୍ରାମର ଧନୀ ମଧୁ ମିଶ୍ର ଚିନ୍ମୟକୁ କଲେଜ ପଢ଼ିବା ପାଇଁ ସହଯୋଗର ହାତ ବଢ଼ାଇଥିଲେ । ବଦଳରେ ପାଠ ପଢ଼ା ପରେ ମଧୁ ମିଶ୍ରର କନ୍ୟାକୁ ବିବାହ କରିବାର ପ୍ରସ୍ତାବ ଗ୍ରହଣ କରିଥିଲେ । ଅଧ୍ୟାପକ ହେଲା ପରେ ମଧୁ ମିଶ୍ର ବାହାଘର ପାଇଁ ବ୍ୟସ୍ତ ହୋଇ କାର୍ଯ୍ୟ ସମାପ୍ତି ପାଇଁ ଏକ ପ୍ରକାର ବାଧ କରାଇଥିଲେ । ଏ କଥାକୁ ଚିନ୍ମୟ ଏଡାଇ ଦେଇ ପାରିଥାନ୍ତା କିପରି ? ମାତ୍ର ଦ୍ୱିତୀୟ ପ୍ରତିକୂଳ ହେଉଛି ଲିପି କରଣ ଘର ଝିଅ ଆଉ ଚିନ୍ମୟ ଖାଣ୍ଟି ବ୍ରାହ୍ମଣ ଘରର ପୁଅ । ଅବଶେଷରେ ଛାତିକୁ ପଥର କରି ଚିନ୍ମୟ ଲିପିକୁ ଲେଖିଦେଇଛି ବାସ୍ତବ କଥା । ଆଉ ନିଜର ଅସହାୟତା, ତା ପରେ ଆରମ୍ଭ ହୋଇଛି ଚିନ୍ମୟର ଭାବାନ୍ତର । ଲିପି ସହିତ ମିଳନର ସ୍ୱପ୍ନ, ସୁଖର ସଂସାର, ଆଉ ଆନନ୍ଦମୟ ଜୀବନ । ପୁଣି ଫେରି ଆସୁଛନ୍ତି ବାସ୍ତବତାକୁ । ମଧୁ ମିଶ୍ରଙ୍କ ଝିଅ ସହ ବାହାଘର । ଅନିଚ୍ଛାକୃତ ବିବାହିତ ଜୀବନ । ଖାଲି କର୍ତ୍ତବ୍ୟ କରିବା କଥା । ଜୀଇବାରେ ନାହିଁ ପୁଲକ, ନାହିଁ ଆନନ୍ଦର ଲହରୀ । ବିତିଯାଇଛି ସମୟ । ବୃଦ୍ଧାବସ୍ଥାରେ କୌଣସି ତୀର୍ଥ କ୍ଷେତ୍ରରେ ସାକ୍ଷାତ ହୋଇଛି ଚିନ୍ମୟ ଆଉ ଲିପିର । ଲିପି ରହିଯାଇଛି ଅବିବାହିତା । ଚିନ୍ମୟ ଆଖିରେ ଅନୁଶୋଚନାର ଲୁହ । ଲିପି କହିଛି-ଥାଉ ଚିନ୍ମୟ ! ଜୀବନର ପୁରୁଣା ଖାତାର ପୃଷ୍ଠା ଆଉ ଏବେ ଖୋଲି କିଛି ଲାଭନାହିଁ । ଏ ଜନ୍ମରେ ସିନା ଆମେ ମିଳିତ ହୋଇପାରିଲେ ନାହିଁ । ଆସନ୍ତା ଜନ୍ମରେ ନିଶ୍ଚୟ ମିଳିତ ହେବା ।'

'ସ୍ୱୟମ୍ବର' ଗଳ୍ପ ମଧ୍ୟ ଅନୁରୂପ ପ୍ରେମ ଗଳ୍ପ । ନାୟିକା ତପତୀଙ୍କର ପ୍ରେମ ସଂପର୍କ ଗଢ଼ିଉଠିଛି ପଲ୍ଲବଙ୍କ ସହ । ପଲ୍ଲବ ଚାକିରି କରିଛି ସୁଦୂର କୋରାପୁଟରେ । ତପତୀ ବଣେଇ କଲେଜର ଅଧ୍ୟାପିକା ଆଉ ଧନୀ ଘରର କନ୍ୟା । ଖୁବ୍ ଭଲ ପାଇବା ଭିତରେ କେହି କାହାରିକୁ ମନକଥା ପ୍ରକାଶ କରିନାହାନ୍ତି । ଥରେ ନିଜ ହୃଦୟର କଥାକୁ ପଲ୍ଲବ ଶେଷରେ ଚିଠିରେ ଖୋଲି ଦେଲେ-ଏମିତି ଭାବପ୍ରବଣତାର ଅନେକ ଚିଠି ଲେଖିଥିଲେ, ମନର ଯନ୍ତ୍ରଣା ସିନା ବଢ଼ି ବଢ଼ି ଚାଲିଛି ଉପଶମ ହେଉନି । ଏ ଯନ୍ତ୍ରଣାରୁ ମୁଁ ମୁକ୍ତି ଚାହୁଁଛି । ଲୁଚି ଲୁଚି ମିଛ ଲୁଚକାଳି ଖେଳିବା ଅପେକ୍ଷା ଆମ ଦୁହିଁଙ୍କୁ ନେଇ



Digitized by srujanika@gmail.com

ଛୋଟ ସଂସାରଟିଏ ଗଢିଲେ କିମିତି ହୁଅନ୍ତା ? ଏହାର ଉତ୍ତରରେ ତପତୀ ଲେଖିଥିଲେ - ଏକାନ୍ତ ଇଚ୍ଛା ଥିଲେ ମଧ୍ୟ ପରିବାର, ସମାଜ ଉଭୟରେ ନାନା ଦ୍ୱନ୍ଦ, ସଂଶୟ ଭିତରେ ରହି ଏହା ସଂପୂର୍ଣ୍ଣ ଅସମ୍ଭବ । ଏହା ପର ଚିଠିରେ ପଲ୍ଲବ ନିଜର ଏକ ତରଫା ନିଷ୍ପତ୍ତି ଲାଗି ତପତୀ ପାଖରେ ଛୋଟ ମନେକରି ଭୁଲ ମାଗି ନେଇଥିଲା । ଏହାପରେ ତପତୀର ମନରେ ଆସିଛି ଭାବାନ୍ତର । ବହୁ ପ୍ରସ୍ତାବ ଆସିଛି । କେଉଁଟାକୁ ଆପଣାଇ ପାରିନାହିଁ । ପରିଶେଷରେ ତପତୀ ନିଜର ଭୁଲ ପାଇଁ କ୍ଷମା ମାଗିବା ସହ ବାହାଘର ପ୍ରସ୍ତାବ ନେଇ ସାତ ଶହ କିଲୋମିଟର ଏକା ଏକା ବସ୍‌ରେ ପଳାଇ ଆସି ପହଞ୍ଚିଛି କୋରାପୁଟରେ ପଲ୍ଲବଙ୍କ ବସାରେ । ଅନେକ ଭାବାନ୍ତର ଭିତରେ ପଲ୍ଲବକୁ ଭେଟିବା ବଦଳରେ ଦେଖିଛନ୍ତି ତାର ସାନଭାଇ ପୁଲକଙ୍କୁ । ପଲ୍ଲବ ବାପାଙ୍କ ଚିଠି ପାଇ ଯାଇଛନ୍ତି ବାଲେଶ୍ୱର । ଅନ୍ୟ ଉପାୟ ନ ପାଇ ପଲ୍ଲବଙ୍କ ବସାରେ ପଲ୍ଲବଙ୍କୁ ଅପେକ୍ଷା କରି ଦିନ ପରେ ଦିନ କାଟି ଚାଲିଛି ତପତୀ । ଅନେକ ଭାବନା ଭିତରେ ଆଉ ପୂର୍ବର ସେ ପ୍ରେମର ଭାବ ଓ ଭାବାନ୍ତରକୁ ନେଇ । ଗଳ୍ପଟି ବିଶେଷ ରୋମାଞ୍ଚକର ହୋଇଛି ଯେତେବେଳେ ଅନ୍ୟ ମନସ୍କ ଭାବରେ ତପତୀ ମନରେ ପ୍ରତ୍ୟୟ ଜାଗିଛି । 'ତା କଥା ଶୁଣି ପଲ୍ଲବ ତାକୁ କୋଳେଇ ନେଇଛନ୍ତି । ଏକ ତୀବ୍ର ଆନନ୍ଦରେ ଦୁହେଁ ଏକ ସୁନ୍ଦର ଛୋଟ ସଂସାରର ପରିକଳ୍ପନା କରୁଛନ୍ତି । ମାତ୍ର ବାସ୍ତବରେ ତପତୀ ପଡ଼ି ରହିଛି ସୁଦୂର କୋରାପୁଟରେ ନିଶ୍ଚିତ ଏକ ସ୍ୱର୍ଣ୍ଣାଭ ସକାଳର ଆଶା ନେଇ ।'

'ସଂପର୍କ' ମଧ୍ୟ ଏକ ପ୍ରତିଷ୍ଠିତ ପ୍ରେମ ଗଳ୍ପ । କଲେଜ ଜୀବନରେ ଦିଲ୍ଲୀପ ଓ ପଦ୍ମଜା ପରସ୍ପରକୁ ଭଲ ପାଇ ବସିଥିଲେ । ଏ ଭଲ ପାଇବାକୁ ବିବାହର ରୂପ ଦେବାପାଇଁ ପରସ୍ପରର ପ୍ରସ୍ତୁତି ଓ ବ୍ୟାକୁଳତା ଭିତରେ ଗଳ୍ପର ବେଗ ଖୁବ୍ ପ୍ରଖର । ଘଟଣା କ୍ରମେ ପଦ୍ମଜାର ବାପା ବିବାହ ପ୍ରସ୍ତାବ ନେଇ ଦିଲ୍ଲୀପର ବାପା ପାଖକୁ ଆସିଛନ୍ତି । ଦିଲ୍ଲୀପର ବାପା ପଦ୍ମଜାକୁ ବୋହୂ କରିବାପାଇଁ ବିନା ବାଧାରେ ରାଜି ହୋଇଛନ୍ତି । ବଦଳରେ ଯୌତୁକର ଏକ ଲମ୍ବା ଚିଠା ପଦ୍ମଜାର ବାପାଙ୍କ ହାତକୁ ବଢାଇ ଦେଇଛନ୍ତି । ଯୌତୁକ ଦେଇ ନ ପାରିବାର ଗ୍ଲାନି ଭିତରେ ପଦ୍ମଜାର ବାପା ଘରକୁ ଫେରିଯାଇଛନ୍ତି । ଯିବା ବେଳେ ପଦ୍ମଜାର ବାପା ଦିଲ୍ଲୀପକୁ କହିଛନ୍ତି ପଦ୍ମଜା ଯଦି ତୁମକୁ ପ୍ରକୃତରେ ଭଲ ପାଉଥାଏ ତା ହେଲେ ତୁମେ ନିଶ୍ଚୟ ତୁମର ଭୁଲ ବୁଝିପାରିବ । ପରେ ପରେ ଦିଲ୍ଲୀପ ନିଜ ବାପାଙ୍କ ବାଧ୍ୟ ଓ ଅନୁଗତ ପୁତ୍ର ଭାବରେ ଅନ୍ୟତ୍ର ଅନେକ ଯୌତୁକ ବଦଳରେ ବାହା ହୋଇଯାଇଛି । କିଛି ବର୍ଷ ପରେ ଦିଲ୍ଲୀପଙ୍କ ପ୍ରମୋଶନ ହୋଇ ବଦଳି ହୋଇଛି ଦିଲ୍ଲୀ । ଦିଲ୍ଲୀପ ଓ ସ୍ତ୍ରୀ ଅଳକା ଯାଇଛନ୍ତି ଦିଲ୍ଲୀ । ଅଳକା ଦେବୀ ଖବର କାଗଜରୁ ଏହି ଖବର ଦେଖି ଆଚମ୍ବିତ ହୋଇଛନ୍ତି-ଯେ ଜଣେ ଭାରତୀୟ ମହିଳା ଖେଳାଳୀ କିପରି ପଦ୍ମଶ୍ରୀ ଉପାଧି ଗ୍ରହଣ କରିବାକୁ ମନା କରିଛନ୍ତି । ଆଉ ସେ ମହିଳା ହେଉଛନ୍ତି ପଦ୍ମଜା । ଏକଥା ଦିଲ୍ଲୀପ ବାବୁ ଜାଣି ମାନସିକ ସ୍ତରରେ ଅନୁତାପର ସ୍ରୋତରେ ଭାସି ଭାସି



Digitized by srujanika@gmail.com

ଚାଲୁଥିବା ସମୟରେ ହଠାତ୍ ପଦ୍ମଜା ସହ ସାକ୍ଷାତ ହୋଇଛି । ଅଳକା ଦେବୀ ପଚାରିଛନ୍ତି ଆପଣ ପଦ୍ମଶ୍ରୀ ପଦ ଗ୍ରହଣ କଲେନି କାହିଁକି ? ପଦ୍ମଜା କହିଛି-ମୋତେ ଭଲ ପାଇ ଦୂରେଇ ଦେଇଥିବା ଜଣେ ଧନଲୋଭୀ ପୁରୁଷଙ୍କୁ ଏହା ମୋର ନିରବ ପ୍ରତିବାଦ । ପଦ୍ମଜାର କଥାରେ ଦିଲ୍ଲୀପ ଅନ୍ତର୍ବେଦନାରେ ନିସ୍ତେଜ ହୋଇପଡିବା ସହ ପର ଦିନ ନୂଆ ଜାଗାରେ ଚାକିରିରେ ଯୋଗଦେବା ସମୟରେ ଶିକ୍ଷା ସଚିବ ଆସନରେ ପଦ୍ମଜାକୁ ଦେଖି ତାଙ୍କ ପାଦ ତଳର ମାଟି ଖସି ଖସି ଯାଇଛି । ପଦ୍ମଜାର ଅଧସ୍ତନ ଭାବରେ ଚାକିରି କରିବେ ନା ଫେରିଯିବେ ଏପରି ମାନସିକ ଜ୍ୱାଳା ଭିତରେ ଗଳ୍ପର ପରିସମାପ୍ତି ଘଟିଛି ।

'ଶଙ୍କା' ଗଳ୍ପରେ ନାୟିକା ନମିତା ଗଳ୍ପନାୟକଙ୍କୁ ଖୁବ୍ ଭଲ ପାଉଥିଲେ । ମାତ୍ର ଗଳ୍ପନାୟକଙ୍କ ଚାକିରି ନ ଥିବାରୁ ଆଉ ଗରିବ ଘର ପିଲା ହୋଇଥିବାରୁ ଜଣେ ବ୍ୟାଙ୍କ ମ୍ୟାନେଜରଙ୍କୁ ବିଭା ହୋଇଯାଇଥିଲେ । ସେ ବ୍ୟାଙ୍କ ମ୍ୟାନେଜର ଓ ଗଳ୍ପନାୟକ ମଧ୍ୟ ଖୁବ୍ ସାଙ୍ଗ ଥିଲେ । ଥରେ ଉଭୟଙ୍କର ଜୟପୁରରେ ହୋଇଛି ସାକ୍ଷାତ । ମ୍ୟାନେଜର ମହାଶୟ ଗଳ୍ପନାୟକଙ୍କୁ ନିଜ ବସାକୁ ଅତିଥି ଭାବରେ ଡାକି ନେଇଛନ୍ତି । ସେଠାରେ ଗଳ୍ପନାୟକ ଓ ନମିତା ଦେବୀଙ୍କର ଅପ୍ରତ୍ୟାଶିତ ସାକ୍ଷାତ ହୋଇଛି । ପରସ୍ପରର ଭାବ ଓ ଭାବାନ୍ତର ଭିତରେ ଗଳ୍ପର ପରିସମାପ୍ତି ଘଟିଛି ।

'ସ୍ମୃତି ବିସ୍ମୃତି' ଗଳ୍ପଟି ଅନୁରୂପ ପ୍ରେମ ପ୍ରଣୟର ଗଳ୍ପ । ଏ ଗଳ୍ପରେ ଗଳ୍ପନାୟକ ଗୋଟିଏ ମାସିକ ପତ୍ରିକାରେ ରେଣୁ ନାମକ ଲେଖିକାଙ୍କ ଲେଖାରେ ନିଜ ଜୀବନର ପ୍ରତିକୃତି ଦେଖି ସେ ଲେଖିକାଙ୍କୁ ବିସ୍ମୃତିରୁ ସ୍ମୃତିକୁ ଆଣିଛନ୍ତି । ରେଣୁ ଗଳ୍ପନାୟକଙ୍କ କଲେଜ ଜୀବନର ସାଥୀ କ୍ରିଡା ପ୍ରତିଯୋଗୀତାରେ ଚମ୍ପିଆନ ହେଲା ପରେ ଗଳ୍ପନାୟକଙ୍କୁ ସମସ୍ତେ ସମ୍ବର୍ଦ୍ଧନା ଦେବା ସହିତ ରେଣୁ ମଧ୍ୟ ଫୁଲତୋଡାଟିଏ ଦେଇଥିଲା । ରେଣୁର ଗଳ୍ପନାୟକଙ୍କ ପ୍ରତି ଅହେତୁକ ଆସକ୍ତି କ୍ରମେ ପ୍ରେମରେ ପରିଣତ ହୋଇଥିଲା । ରେଣୁ ଥିଲା ଅସାମାନ୍ୟ ସୁନ୍ଦରୀ ଆଉ ପ୍ରତିଷ୍ଠିତ ଧନୀ ବ୍ୟକ୍ତିଙ୍କ କନ୍ୟା । ରେଣୁର ପ୍ରେମ ଭିତରେ ଗଳ୍ପନାୟକ ହଜିଯାଇଛନ୍ତି, ଦେଖୁଛନ୍ତି ଅନେକ ସପ୍ନ । ମାତ୍ର ବାସ୍ତବ ଦୁନିଆକୁ ଗଳ୍ପନାୟକ ଫେରିଆସି କହିଛନ୍ତି-ମୁଁ ଯେ ଜଣେ ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ ଓ ମୋର ଧନ ସମ୍ପତ୍ତି ବ୍ୟାଙ୍କ ବାଲାନସ୍ କିଛି ନାହିଁ । ଆଜିର ବସ୍ତୁତାନ୍ତ୍ରିକ ଯୁଗରେ ମୁଁ ତାକୁ ଆଦୌ ସୁଖ ପ୍ରଦାନ କରିପାରିବି ନାହିଁ । ଏଥିରେ ପ୍ରଥମେ ତାର ବାପା ମାଆ ଅନ୍ତରାୟ ହେବେ । ରେଣୁର ଜିଦ୍ ନିକଟରେ ଗଳ୍ପନାୟକ ନୀରବିଯାଇ ଯୌବନର ରଂଗୀନ ସପ୍ନରେ ବିଭୋର ହୋଇଯାଇଥିଲେ । ପାଠପଢା ପରେ ରେଣୁ ଏମ୍.ଏ. ପଢିଲେ ଦିଲ୍ଲୀରେ । ଗଳ୍ପନାୟକ କିରାଣୀ ଚାକିରିଟିଏ କଲେ । ବାପାଙ୍କ କଥାରେ ବାପାଙ୍କ ସଂକଳ୍ପ ଓ ବୋଉର ନୀରବ ଚାହାଣି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ନ ପାରି ସେ ଅନ୍ୟତ୍ର ବିବାହ କରିଗଲେ । ଏ ଖବର ପାଇ ରେଣୁ ସଂପୂର୍ଣ୍ଣ ଭାଙ୍ଗିପଡିଥିଲା, ତାର ସମସ୍ତ ଆଶା ଆକାଂକ୍ଷା ମାଟିରେ ମିଶିଯାଇଥିଲା । ତାକୁ ସାମନା କରିବାର ସତ୍‌ସାହସ ଗଳ୍ପନାୟକଙ୍କର ନଥିଲା । ରେଣୁ



Digitized by srujanika@gmail.com

ପରବର୍ତ୍ତୀ ସମୟରେ ଆଏ.ଏ.ଏସ୍ ପାଇଥିଲେ । ଗଳ୍ପନାୟକ ଅଭିନନ୍ଦନ ଜଣାଇବାର ସାହସ ସଂଗ୍ରହ କରିପାରିନଥିଲେ । ଖାଲି ମନର ମଣିଷକୁ ଖୋଜି ବୁଲି ଭାବ ଓ ଭାବାନ୍ତର ଭିତରେ ଗୁମୁରି ଗୁମୁରି କାନ୍ଦି ଥିଲେ ।

'ପ୍ରତିଶୋଧ' ଗଳ୍ପ ପ୍ରେମ ଗଳ୍ପ ହୋଇପାରେ ମାତ୍ର ଏ ଗଳ୍ପର ପରିସମାପ୍ତି ଅନ୍ୟାନ୍ୟ ଗଳ୍ପ ପରି ହତାଶାର ଭାବ ଓ ଭାବାନ୍ତର ନୁହେଁ; ଅତ୍ୟନ୍ତ ଦୁଃଖଦାୟକ ହତ୍ୟା ତାଣ୍ଡବ ଆଉ ରକ୍ତ ନଦୀର ଅବ୍ୟକ୍ତ ପରିବେଶ । ଗୋଟିଏ ପୁରୁଷକୁ ଦୁଇଜଣ ନାରୀ ଆଉ ଜଣେ ନାରୀକୁ ଦୁଇଜଣ ପୁରୁଷର ଭଲପାଇବା; ପରିଶେଷରେ ଜଣେ ନାରୀ ଆଉ ଜଣେ ନାରୀକୁ ପୁଣି ଜଣେ ପୁରୁଷ ଆଉ ଜଣେ ପୁରୁଷକୁ ହତ୍ୟା କରି ନିଜ ନିଜର ପ୍ରେମ ପ୍ରାପ୍ୟକୁ ଆନନ୍ଦରେ ଲାଭ କରିବାର ଆଶା ରଖି ନିଜର ବାଞ୍ଛିତ ପୁରୁଷ ଆଉ ଆକାଂକ୍ଷିତ ନାରୀକୁ ମୃତ୍ୟୁର ତାଣ୍ଡବ ଭିତରେ ରକ୍ତ ଜୁଡୁବୁଡୁ ହେଉଥିବାର ଦେଖି ହାହାକାର କରି ଉଠିଛନ୍ତି । ଅବଶେଷରେ କିଏ ପାଗଳ ହୋଇ ଯାଇଛିତ ଆଉ କିଏ ସଂପୂର୍ଣ୍ଣ ନୀରବି ଯାଇଛି ।

'ସୀମା ଏକ ପ୍ରଗଲ୍‌ଭା ନଦୀ'ରେ ଗାଳ୍ପିକ ମିଳନର ଗୀତ ଗାଇଛନ୍ତି । ଖରା ଛୁଟିରେ ମାତ୍ର ଅଠର ଦିନ ତଳେ ଅତନୁ ଓ ସୀମାର ବାହାଘର ହୋଇଛି । ରାତି ପାହିଲେ ଅତନୁ ସୀମାକୁ ଛାଡି ଚାଲିଯିବେ ସୁଦୂର କୋରାପୁଟର ସୁନାବେଡା କଲେଜ ପରିସରକୁ । ଆରମ୍ଭ ହୋଇଯିବ ତାଙ୍କର ପୁଣି ସେହି ଅଧ୍ୟାପନା ଜୀବନର ସା.ରେ.ଗା.ମା । ସୀମା ଗୋଟିଏ ଦିନ ଅଟକି ଯିବା ପାଇଁ ବିନତି କରିଛି । ଅତନୁର ଇଚ୍ଛା ଥିଲା - ତେବେ ସୀମାର ଅନୁରୋଧରେ ତା ଶତ ଗୁଣ ହୋଇଯାଇଛି । ଘରେ ଅତନୁର ଅଟକି ଯିବାର ସମ୍ବାଦରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଛନ୍ତି । ଅତନୁ କାମର ମିଛ ବାହାନା ଦେଖାଇ କଟକରେ ବୁଲାବୁଲି କରି ସଂଜ ବେଳକୁ ଘରକୁ ଫେରିଛି । ମାତ୍ର ସେ ଦିନର ସଂଜ ଥିଲା ନିଆରା । ସଂଜ ଆକାଶରେ ମେଘର ଅଭିସାର । କଳାହାଣ୍ଡିଆ ମେଘର ସଂଭାର ଭିତରେ ଅତନୁ ମନରେ ସୀମା ସହ ମିଳନର ଆକାଂକ୍ଷା ଶତଗୁଣ । ଆକାଶର ମେଘ ମହ୍ଲାର ମନକୁ ଅତିକ୍ରମ କରି ଦେହର କୋଣେ ଅନୁକୋଣେ ଅବିଳମ୍ବେ ମିଳନର ସଂଗୀତ ଗାଇଚାଲିଛି । ଏହି ବର୍ଷାରାତିର ଯେଉଁ ନିଜସ୍ୱ ଆବେଦନ ଅତନୁର ଦେହ ଓ ମନକୁ ଆନ୍ଦୋଳିତ କଲାବେଳେ ସୀମାର ଘର ଭିତର କାମ ସରୁ ନଥାଏ । ଅପେକ୍ଷା ଭିତରେ ଅତନୁକୁ ନିଦ ଆସିଯାଇଥାଏ । ସକାଳେ ସୀମାର ଡାକରେ ଅତନୁର ନିଦ ଭାଙ୍ଗେ । ଅତନୁ ଆଶ୍ଚର୍ଯ୍ୟ ହୋଇଛନ୍ତି, ଆଉ ସୀମାକୁ ନିଜ ବାହୁ ବନ୍ଧନକୁ ଆଣିବାକୁ ଚେଷ୍ଟା କରିଛନ୍ତି । ସୀମା ଖସିଯାଇ ହସିଛି -" କାଲି ରାତିରେ ମୋ ନିଦ ଦୁଇଥର ଭାଙ୍ଗିଥିଲା, କିନ୍ତୁ ମୁଁ ତୁମକୁ ଉଠାଇଲି ନାହିଁ କାହିଁକି ଜାଣ ? ତୁମର ମୋ ପ୍ରତି ଯେଉଁ ଆକର୍ଷଣ ଅଛି, ତାହା କମି ଯାଇଥାନ୍ତା । ସେଠି ମୋ କଥା ତୁମର ଆଉ ମନେ ପଡି ନଥାନ୍ତା । ସ୍ୱାମୀର ସ୍ତ୍ରୀ ପ୍ରତି ଏଇ ଆକର୍ଷଣ ଭାବ ପାଇଁ ସ୍ତ୍ରୀ ଖୁସି ହୁଏ । ଦୁଃଖରେ ବି ତା ମୁହଁରେ ହସର



Digitized by srujanika@gmail.com

ଝଲକ ଖେଳିଯାଏ ।" ଅତନୁ ଚାଲିଯାଇଛନ୍ତି ସୁନାବେଡା, ସେଠି ସେ ସବୁକାମ ଭିତରେ ମାନସିକ ସ୍ତରରେ ସୀମାର ଚତୁଃପାର୍ଶ୍ୱରେ ଘୁରି ବୁଲିଛନ୍ତି ଆଉ ସୀମାର ଆକର୍ଷଣକୁ କେବଳ ଅନୁଭବ କରିଛନ୍ତି । ଏ ଗଳ୍ପରେ ଗାଳ୍ପିକଙ୍କ ଏହି ବାସ୍ତବ ଆବେଦନ ଗଳ୍ପଟିକୁ ସାର୍ବଜନୀନ ଓ ସର୍ବକାଳୀନ କରିପାରିଛି ।

'କର୍ତ୍ତବ୍ୟ' ଗଳ୍ପରେ ଗାଳ୍ପିକ ତୁଳନାତ୍ମକ ଭାବରେ ସାଂପ୍ରତିକ ମଣିଷର ଅମାନୁଷିକତାର ରୂପକୁ ଦେଖାଇ ସଂସ୍କାର କାମନା କରିଛନ୍ତି । ରାତିରେ ଶୋଇଲା ବେଳେ ମା ବିଲେଇ ତା ଛୁଆକୁ ଭୁଆଁ ବିଲେଇ ଠାରୁ ରକ୍ଷା କରିବା ପାଇଁ ତାଙ୍କ ରୁମ୍‌ର ବହି ଥାକରେ ଆଶ୍ରୟ ନେଇଛି । ଗାଳ୍ପିକଙ୍କ ନଜର ପଡିବାରୁ ମା ବିଲେଇଟି ତାଙ୍କ ପାଦ ଚାରିପଟେ ବୁଲି ବୁଲି ନୀରବ ଅନୁନୟ ବିନୟ କରିଛି । ବିଲେଇର ନୀରବ ଆବେଦନକୁ ଗ୍ରହଣ କରି କ୍ଷୀର ବିସକୁଟ୍ ଦେଇ ଗାଳ୍ପିକ ଶୋଇଛନ୍ତି । ସକାଳେ ଉଠି ଏକ ଅଭାବନୀୟ ଘଟଣା ଶୁଣି ଓ ପରେ ଦେଖି ସେ ଦୁଃଖରେ ଭାଂଗି ପଡିଛନ୍ତି । ରାସ୍ତାକଡ ନଳାରେ କିଏ ସଦ୍ୟଜାତ କନ୍ୟା ସନ୍ତାନକୁ ହାଣ୍ଡିରେ ରଖି ଭସାଇ ଦେଇଛି । ଏ ନିଷ୍ଠୁର ଘଟଣାରେ ଗାଳ୍ପିକ ବ୍ୟଥିତ ହୋଇଛନ୍ତି । ତୁଳନା କରିଛନ୍ତି ସାଂପ୍ରତିକ ମଣିଷ ଆଉ ଏକ ମାନବତାର ଚରିତ୍ର ମା ବିଲେଇ ସହିତ । ପରେ ଜଣେ ସମାଜସେବୀ ଆସି ସେ ଛୁଆକୁ ନିଜ ଆଶ୍ରମକୁ ନେଇ ଯାଇଛନ୍ତି । ମାତ୍ର ଗାଳ୍ପିକ ସତଃସ୍ଫୁର୍ତ୍ତ ଭାବରେ କହି ଉଠିଛନ୍ତି - ହାଏରେ ସମାଜ ? ହାଏରେ ଶିକ୍ଷିତା ଓ ଆଧୁନିକା ଜନନୀ ।

ଗଳ୍ପଗୁଡିକର କାହାଣୀ ଅତି ସୁନିର୍ବାଚିତ । ଅନେକ ଗୁଡିଏ ଜଟିଳତା ଭିତରେ ପାଠକ ଛନ୍ଦି ନହୋଇ ସହଜ ଓ ସରଳ ଭାବରେ ବୁଝିବାରେ ସକ୍ଷମ ହୋଇଛି । 'କର୍ତ୍ତବ୍ୟ' ଗଳ୍ପକୁ ଛାଡିଦେଲେ ଗାଳ୍ପିକଙ୍କ ସବୁ ଗଳ୍ପ ପ୍ରେମ ଗଳ୍ପ । ପଢିଲା ବେଳେ ଲାଗେ ସତେ ଯେପରି ଗାଳ୍ପିକ ନିଜ କଥା କହୁଛନ୍ତି । ଗାଳ୍ପିକ ଜଣେ ଅଧ୍ୟାପକ ହୋଇଥିବାରୁ ଗଳ୍ପର ପରିବେଶ ଗୁଡିକରେ ପ୍ରାୟ ସେହି କଲେଜ ଜୀବନ କଥା ପରିଲକ୍ଷିତ ହୁଏ । ଗାଳ୍ପିକ ନିଜ ଜୀବନର ସକଳ ଅନୁଭୂତିକୁ ସିଧାସଳଖ ଭାବରେ ଏ ଗଳ୍ପ ଗୁଡିକରେ ବର୍ଣ୍ଣନା କରିଛନ୍ତି ।

ଚରିତ୍ର ଚିତ୍ରଣରେ ଗାଳ୍ପିକ ଅତ୍ୟନ୍ତ ସ୍ୱଚ୍ଛ ଓ ନିଖୁଣ । ସବୁବେଳେ ଚରିତ୍ର ମାନେ ନିଜ ନିଜର ଭାବ, ଭାବନା, ଯନ୍ତ୍ରଣା ଓ ଅନୁଭୂତିକୁ ଖୋଲା ଖୋଲି ଭାବରେ ସିଧା ସଳଖ ବ୍ୟକ୍ତ କରିଛନ୍ତି । ବେଳେ ବେଳେ ଚରିତ୍ରମାନେ ବିଶେଷ ଭାବ ପ୍ରବଣ । ଯଦି କେହି ବ୍ୟକ୍ତିଗତ ଭାବେ ଗାଳ୍ପିକଙ୍କୁ ଜାଣିଥିବେ, ସେ ହୁଏତ ଗଳ୍ପ ପଢିଲା ବେଳେ ଅନେକ ସମୟରେ ଗଳ୍ପ ଭିତରେ ଗାଳ୍ପିକଙ୍କୁ ଭେଟୁଥିବେ । ସେ ସବୁବେଳେ ବିଭିନ୍ନ ଆଡୁ ଆସି କୋରାପୁଟ ପର୍ଯ୍ୟନ୍ତ ପରିବ୍ୟାପ୍ତ । କଲେଜ ଜୀବନର କ୍ରୀଡ଼ା ସଂଗୀତ, ସେମିନାର, ମେସ, ହଷ୍ଟେଲ, ଅଧ୍ୟାପନା, ପରୀକ୍ଷା ଭିତରେ ସେ ଘୁରିବୁଲିଛନ୍ତି । ତା



Digitized by srujanika@gmail.com

ଭିତରେ ପ୍ରେମର ଗତି ପ୍ରକୃତି, ଅନୁଭୂତି, ଉଦ୍‌ବୋଧନ, ଆକୁଳତା, ବ୍ୟାକୁଳତା ପୁଣି ସମାଜ, ସଂସ୍କୃତି, ପରମ୍ପରା, ନୀତି, ନିୟମ ଇଛା ନଥାଇ ପ୍ରେମର ପ୍ରତାରଣା, ବ୍ୟର୍ଥତା, ହତାଶା, ନିରସତା, ତଥାପି ଅପେକ୍ଷା ଭିତରେ ଚରିତ୍ରମାନ ଘୁରି ବୁଲିଛନ୍ତି । 'ଯୁଗ ଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ' ରେ ଚିନ୍ମୟ ଓ ଲିପି , 'ସୟମ୍ବର' ରେ ପଲ୍ଲବ ଓ ତପତୀ, 'ସଂପର୍କ' ରେ ଦିଲ୍ଲୀପ ଓ ପଦ୍ମଜା, 'ଶଙ୍କା' ରେ ନମିତା, 'ସ୍ମୃତି ବିସ୍ମୃତି' ରେ ରେଣୁ ଆଉ ନିଜେ ଗାଳ୍ପିକ ହେଉଛନ୍ତି ମୁଖ୍ୟ ଚରିତ୍ର । ଗଳ୍ପ ଗୁଡିକରେ ଗୌଣ ଚରିତ୍ର ଅଛନ୍ତି ମାତ୍ର ସେ ସବୁ ନିଷ୍ପ୍ରଭ । କାରଣ ଚରିତ୍ରମାନେ ସିଧା ସଳଖ ନିଜ ନିଜ କଥା ପ୍ରକାଶ କରିଛନ୍ତି । 'ପ୍ରତିଶୋଧ' ଗଳ୍ପର ସହରୀ ଚରିତ୍ର ଇଂଜିନିୟର ଧିରାଜ ଓ ଡାକ୍ତରାଣୀ ଅସୀମା କଟକ/ ଭୁବନେଶ୍ୱରରୁ ଆସିଛନ୍ତି କୋରାପୁଟକୁ । ଗାଁଉଲି ଓ ଅଶିକ୍ଷିତ ଚରିତ୍ର ଗାଁ ମୁଖିଆ ଝିଅ ସୁନ୍ଦରୀ 'ମଣି' ଆଉ ମଦୁଆ ମୂର୍ଖ ଭୁଷୁଣ୍ଡା ବସ୍ତି ଟୋକା ରାମିଆ । ରାମିଆର ଆଖି ମଣି ଉପରେ । ମଣିକୁ ଭଲ ପାଉଛି ଧିରାଜ ଆଉ ଧୀରାଜକୁ ଭଲ ପାଉଛି ଅସୀମା । ଅସୀମା ନିଜ ପ୍ରେମର ପ୍ରାପ୍ତି ପାଇଁ ହତ୍ୟା କରିଛି ମଣିକୁ ଆଉ ରାମିଆ ମଣିକୁ ପାଇବା ପାଇଁ ହତ୍ୟା କରିଛି ଧୀରାଜକୁ । ପରେ ଅସୀମା ଓ ରାମିଆ ପ୍ରେମର ଅପ୍ରାପ୍ତି ପାଇଁ ଓ ନିଜ କୃତକର୍ମ ପାଇଁ ପାଗଳ ହୋଇଯାଇଛନ୍ତି । ଏ ଚରିତ୍ରମାନେ ଗାଳ୍ପିକଙ୍କ ରଚନାରେ ବ୍ୟତିକ୍ରମ ଚରିତ୍ର । କହିବାକୁ ଗଲେ ପରୀକ୍ଷାମୂଳକ ଚରିତ୍ର । ପୂର୍ବ ଗଳ୍ପ ଗୁଡିକରେ ପ୍ରେମର ଅପ୍ରାପ୍ତି ପାଇଁ କିଛି ନାୟକ ଆଉ କିଛି ନାୟିକା ଅବିବାହିତ ରହିଛନ୍ତି ବା ଯେଉଁମାନେ ବିବାହ କରିଛନ୍ତି, ସେମାନେ ଜୀବନ ସାରା ନିଜ ନିଜର ପ୍ରେମକୁ ଝୁରି ଝୁରି ମରିଛନ୍ତି । ରାମିଆ ଚରିତ୍ର ମାଧ୍ୟମରେ ଗାଳ୍ପିକ ଏମାନଙ୍କ ମାଧ୍ୟମରେ ପ୍ରେମର ସଫଳତା ହତ୍ୟାରେ ନୁହେଁ, ତ୍ୟାଗରେ ବୋଲି ପ୍ରମାଣିତ କରିଛନ୍ତି । ଅବଶେଷରେ 'ସୀମା ଏକ ପ୍ରଗଲ୍‌ଭା ନଦୀ' ଗଳ୍ପରେ ସୀମା ଓ ଅତନୁ ଗାଳ୍ପିକଙ୍କ ସଫଳ ଓ ପ୍ରେମ ପ୍ରଣୟର ସର୍ଣ୍ଣିମ ଚରିତ୍ର ଭାବରେ ଉପସ୍ଥାପିତ ।

ଗଳ୍ପର ଭାଷା ଓ ବର୍ଣ୍ଣନା ଚାତୁରୀ ଉଚ୍ଚକୋଟୀର । ଭାଷା ଗୁଡିକ ଅନେକ ସମୟରେ ତତ୍‌ସମ । ବର୍ଣ୍ଣନାର ମାଧୁର୍ଯ୍ୟ ପାଠକକୁ ମୁଗଧ କରେ । ହୃଦୟର ଭାଷାକୁ ପୁଲକିତ କରି ପ୍ରକାଶ କରିବାର ଚାତୁରୀ ଗାଳ୍ପିକଙ୍କ ବିଶେଷ ନିଆରା । ପ୍ରେମ ପ୍ରଣୟର ଅବ୍ୟକ୍ତ କଥାକୁ ଶୁଦ୍ଧ ଓ ପବିତ୍ର ଢଙ୍ଗରେ ମାର୍ଜିତ ଭାଷାରେ ଗାଳ୍ପିକ ଏପରି ଉପସ୍ଥାପନା କରିଛନ୍ତି ତାହା ବିଶେଷ ସ୍ମରଣୀୟ । ସଂପର୍କ ଯେତେ ପୁରୁଣା ହେଲେ ବି ଦୁହେଁ କେବେ ଶାଳୀନତାର ସୀମା ସରହଦ ଅତିକ୍ରମ କରିବାକୁ ସାହସ କରିନାହାନ୍ତି । ଆଦ୍ୟ ପ୍ରେମର ରୋମାଣ୍ଟିକ୍ ସପ୍ନିଳ ବର୍ଷା ସବୁ ଯେ ଦେହ ମନରେ ବର୍ଷି ନ ଯାଇଛି ତାହା ନୁହେଁ ମାତ୍ର, ସେ ବର୍ଷା କେବେ ନଦୀକୁ ପୂର୍ଣ୍ଣ ଗର୍ଭା କରି କୂଳ ଲଂଘି ବହିବାକୁ ଉତ୍‌ଫୁଲ୍ଲିତ ହୋଇନାହିଁ । ଅନେକ ସମୟରେ ଭାଷା ଓ ଭାବରେ ଗାଳ୍ପିକ ଭାବପ୍ରବଣ । ବିନା ଅବଲମ୍ବନରେ ନାରୀ ଜୀବନ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ଏକ ଦୁର୍ବଳ ମୁହୂର୍ତ୍ତରେ ନିଜକୁ ପ୍ରତିଷ୍ଠିତ କରିବାପାଇଁ ସେ



Digitized by srujanika@gmail.com

ଖୋଜେ ଏକ ଦୃଢ ଆସ୍ଥା । ସେ ଆସ୍ଥା ଯଦି ଫଳବତୀ ନ ହୋଇ, କେବଳ ଆଶାରେ ରହିଯାଏ, ସେ ଦୁର୍ବଳ ହୋଇ ଭାଂଗିପଡେ, ପୁଣି ଆକାଶରେ ବର୍ଷାର ପ୍ରକୋପ ପ୍ରବଳରୁ ପ୍ରବଳତର ହେଉଥାଏ । ଦେହ ଓ ମନର ଉଦ୍‌ବେଗ ବର୍ଷା ସାଙ୍ଗରେ ତାଳଦେଇ ବଢୁଥାଏ । ଏ ବର୍ଷା ରାତିର ଏକ ନିଜସ୍ୱ ଆବେଦନ ଅଛି । ତାହା ଏବେ ସେ ଅନୁଭବ କରୁଛି । ସୀମାକୁ ଏବେ ପାଖରେ ପାଇବାକୁ ମନ ବ୍ୟାକୁଳ ହୋଇଉଠୁଛି । ତେଣେ, ସୀମାର କାମ ସରୁନି ।

ସମାଜ ସଚେତନତା ଦୃଷ୍ଟିରୁ ବିଚାର କଲେ ଗାଳ୍ପିକଙ୍କ ପ୍ରତ୍ୟେକଟି ଗଳ୍ପ ଉତ୍ତୀର୍ଣ୍ଣ ଗଳ୍ପ । ସମାଜରେ ଯେଉଁଠି ଭୁଲ୍ ଭଟକା ରହିଛି କେଉଁଟା ଗ୍ରହଣୀୟ କେଉଁଟା ଗ୍ରହଣୀୟ ନୁହେଁ ସେ ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସଂସ୍କାରର ବାର୍ତ୍ତା ଦେଇଛନ୍ତି । କିନ୍ତୁ ସମାଜ ବ୍ୟବସ୍ଥାକୁ ଭାଙ୍ଗି ଆଗକୁ ମାଡି ଯାଇ ନାହାନ୍ତି କି ଅଭିଭାବକଙ୍କୁ ଅସମ୍ମାନ କରିନାହାନ୍ତି । ବରଂ ଦୁଃଖ ସହିଛନ୍ତି, ସମାଜକୁ ସ୍ପଷ୍ଟ କରି ଦେଇଛନ୍ତି ଯେ ଏହି କଥାଟି ଭୁଲ । ସମାଜ ସଚେତନତା ଆଣିଛନ୍ତି ମାତ୍ର ସମାଜ ବ୍ୟବସ୍ଥାକୁ ଅତିକ୍ରମ କରିନାହାନ୍ତି ।

ବସନ୍ତ କିଶୋର ଗଳ୍ପ ମାନସ ର ସାରା ଆକାଶ ପ୍ରେମ ଓ ପ୍ରଣୟର ଜ୍ୟୋତ୍ସ୍ନାରେ ପ୍ଲାବିତ । ବସନ୍ତର ମଳୟ, କୋକିଳର କୁହୁ, ବଉଳର ବାସ୍ନା, ଆଉ କୃଷ୍ଣଚୁଡାର ରଂଗରେ ତାର ଦିଗ୍‌ବଳୟ ଉଦ୍‌ଭାସିତ । କିଶୋର ମାନସିକତାରେ ସେ ଘୁରି ବୁଲିଛନ୍ତି ପ୍ରଜାପତିର ଡେଣାରେ, ବିଭୋର ଭାବରେ ପାହାଡ ଚଢିଛନ୍ତି, ମହାସାଗରକୁ ଅତିକ୍ରମ କରିଛନ୍ତି । ମହାର୍ଣ୍ଣବୀୟ ମାନସିକତା ନେଇ ସମାଜ ସଂସ୍କାର କରିବାକୁ ଚେଷ୍ଟା କରିଛନ୍ତି । ଚନ୍ଦନର ବାସ ନେଇ ଫୁଲ ଫଗୁଣକୁ ଆହ୍ୱାନ କରିଛନ୍ତି । ବିଶାଳ ହୃଦୟ ନେଇ ସମାଜକୁ ଆପଣାଇଛନ୍ତି । ପୃଥିବୀର ସବୁ ମଣିଷକୁ ଭଲ ପାଇଛନ୍ତି । ଆବେଗାୟିତ ଭାବକୁ ବାଣ୍ଟି ବାଣ୍ଟି ସମାଜକୁ ସର୍ଣ୍ଣମ କରିବାକୁ ଚେଷ୍ଟା କରିଛନ୍ତି । ଆଜି ବି ସେ କିଶୋର । ଦୃଷ୍ଟି ତାଙ୍କର ଅନାବିଳ । ସେଠି ଖାଲି ପାହାଡ ପର୍ବତର ଶୋଭା । ବୃକ୍ଷଲତାର ସମ୍ଭାର, ପକ୍ଷୀର କାକଳି ଆଉ ଫୁଲ ଫଗୁଣର ମହୋତ୍ସବ ।



ପଡୁଆଁପଦା, ଖପରାପଦା
ବାଲେଶ୍ୱର



Digitized by srujanika@gmail.com

# ସୁ-ସମ୍ପାଦକ ଡକ୍ଟର ବସନ୍ତ କିଶୋର ସାହୁ

### ଡକ୍ଟର ପ୍ରଦୀପ କୁମାର ପଟ୍ଟନାୟକ

ସଂପାଦକଟିଏ ନିଜସ୍ୱ ସ୍ୱାର୍ଥକୁ ଭୁଲି ସମାଜର ହିତସାଧନ ପାଇଁ ସାହିତ୍ୟକୁ ଆପଣାର କରିବା ସହ ସାହିତ୍ୟିକମାନଙ୍କ ଭାବ ସମୂହକୁ କେନ୍ଦ୍ରୀଭୂତ କରି ସେମାନଙ୍କ ଲେଖାମାନଙ୍କୁ ନିଜସ୍ୱ ସଂପାଦିତ ପତ୍ରିକାରେ ସ୍ଥାନୀତ କରି, ଏହାର ପ୍ରଚାର ଓ ପ୍ରସାର ଘଟାଇବା ପାଇଁ ସଦା ବ୍ରତୀ ହୋଇଥାଏ । ଏହି ନୂତନ ଓ ପ୍ରବୀଣ ଲେଖକ ଲେଖିକାଙ୍କ ମୂଲ୍ୟବାନ ଲେଖାଗୁଡିକୁ ଠିକ୍ ସମ୍ପାଦିତ କରି ନିର୍ଭୁଲ ଭାବରେ ଛାପିବାକୁ ସମ୍ପାଦକ ଯତ୍ନଶୀଳ ହୋଇଥାଏ । ସମ୍ପାଦକଙ୍କ ଗଳ୍ପ, କବିତା, ପ୍ରବନ୍ଧ, ଶିଶୁ ଲେଖା, ଜୀବନୀ ସାହିତ୍ୟ, ଭ୍ରମଣ ସାହିତ୍ୟ ତଥା ଅନୁବାଦ ସାହିତ୍ୟ ପରି ସାହିତ୍ୟର ବିଭିନ୍ନ ଦିଗ ଉପରେ ଦକ୍ଷତା ଥିଲେ ଭଲ, ନଚେତ୍ ଆବଶ୍ୟକ ସ୍ଥଳେ ଲେଖା ସମ୍ପାଦନା ବେଳେ ଜଣା ପଡୁନଥିବା ତଥ୍ୟକୁ ଜାଣିବା ପାଇଁ ଗ୍ରନ୍ଥ/ ଜ୍ଞାନୀ ବ୍ୟକ୍ତିଙ୍କ ସାହାଯ୍ୟ ସହଯୋଗ ନେଇ ପ୍ରକୃତ ତଥ୍ୟକୁ ଠିକ୍ ଭାବେ ସ୍ଥାନୀତ କରିବା ସମ୍ପାଦକଙ୍କ ଅନ୍ୟ ଏକ ମହତ ଗୁଣ । ସାହିତ୍ୟର ବିଭିନ୍ନ ଦିଗ ଉପରେ ଜଣେ ସାହିତ୍ୟିକର ଧାରଣା ନଥାଇ ପାରେ କିନ୍ତୁ ଜଣେ ସାହିତ୍ୟ ପତ୍ରିକା ସଂପାଦକଙ୍କ ସାହିତ୍ୟର ପ୍ରତ୍ୟେକ ଦିଗ ଉପରେ ପ୍ରାୟ ଧାରଣା ଥିବା ଅନୁମେୟ । ସାହିତ୍ୟ କ୍ଷେତ୍ରରେ ଯେଉଁ ସମ୍ପାଦକଙ୍କ ଦକ୍ଷତା ଯେତେ ଅଧିକ ସମ୍ପାଦନା କ୍ଷେତ୍ରରେ ସେହି ସଂପାଦକ ସେତିକି କ୍ରିୟାଶୀଳ ହୋଇ ପାଠକମାନଙ୍କ ଦୃଷ୍ଟିରେ ଜଣେ ଉତ୍ତମ ସଂପାଦକ ବୋଲି ସ୍ୱୀକୃତି ପାଇଥାଏ । ଏହା ଦ୍ୱାରା ପତ୍ରିକାଟିର ଖ୍ୟାତି ଯେତିକି ବଢିଥାଏ ସମ୍ପାଦକଙ୍କ ଯଶ ଓ ଖ୍ୟାତି ତତୋଽଧିକ ବୃଦ୍ଧି ପାଇଥାଏ ।

ସାହିତ୍ୟ ପତ୍ରିକାଟିରେ ଲେଖାଗୁଡିକୁ ଯେନ ତେନ ପ୍ରକାରେ ପ୍ରକାଶ କରିଦେବା ସମ୍ପାଦକଙ୍କ କାର୍ଯ୍ୟ ନୁହେଁ । ଲେଖାଗୁଡିକୁ ଠିକ୍ ସମୟରେ ସଂଗ୍ରହ କରି ସେଗୁଡିକୁ କ୍ରମାନ୍ୱୟରେ କିପରି ପତ୍ରିକାରେ ରଖି ପତ୍ରିକାଟି ଛପାଗଲେ ପାଠକ ଏହାକୁ ପଢିଲାବେଳେ ଖୁସି ଅନୁଭବ କରିବେ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ପଡିଥାଏ । ଏହା ସାଙ୍ଗକୁ ପତ୍ରିକାଟିର ପ୍ରଚ୍ଛଦପଟ୍ଟ ଠାରୁ ଆରମ୍ଭ କରି ବିଷୟ ଆଧାରରେ ଆବଶ୍ୟକ ସ୍ଥଳେ ପତ୍ରିକା ଭିତରେ ଫଟୋ ଚିତ୍ର ସ୍ଥାନୀତ କରିବା ସହ ଉତ୍ତମ କାଗଜରେ ନିର୍ଭୁଲ ଭାବେ ପତ୍ରିକାଟି ପ୍ରକାଶ କରିବା ସମ୍ପାଦକଙ୍କ ଅନ୍ୟ ଏକ ଚମତ୍କାର ଗୁଣ ଅଟେ ।

ପତ୍ରିକାଟିର ବିଷୟ ସହିତ ରଙ୍ଗବେରଙ୍ଗ ସାଜସଜ୍ଜାରେ ଯେତେ ସୁନ୍ଦର ଥିଲେ



Digitized by srujanika@gmail.com

ମଧ୍ୟ ସଂପାଦକଙ୍କ ସମ୍ପାଦକୀୟ ଲେଖା ଯଦି ଠିକ୍ ନାହିଁ ତେବେ ମଧ୍ୟ ପତ୍ରିକା ସମ୍ପାଦକଙ୍କ ସମ୍ପାଦନା ମୌଳିକତାରେ କିଛି ଆଞ୍ଚ ସୃଷ୍ଟି ହୋଇପାରେ । ଏଣୁ ପତ୍ରିକାର ସମ୍ପାଦକୀୟରୁ ଜଣାପଡେ ସମ୍ପାଦକଙ୍କ ପ୍ରତିଭାର ଚମତ୍କାର ଗୁଣବତ୍ତା । କାରଣ ପାଠକଙ୍କ ଦୃଷ୍ଟିରେ ପଢିବାର ସଂପାଦକୀୟ ହେଉଛି ପତ୍ରିକାର ମୁଖଶାଳା ପରି । ପତ୍ରିକାର ମୁଖପତ୍ର ହେଉଛି ମନ୍ଦିରର ବାଇଶି ପାହାଚ ପରି । ପତ୍ରିକାର ବିଷୟବସ୍ତୁ ହେଉଛି ରତ୍ନସିଂହାସନର ଠାକୁର ସଦୃଶ୍ୟ । କଥାରେ କହିବାକୁ ଗଲେ ପତ୍ରିକାଟି ଯଦି ସ୍ୱୟଂ ଜଗନ୍ନାଥ ହୁଅନ୍ତି ସମ୍ପାଦକ ହେଉଛନ୍ତି ତାଙ୍କ ବଡପଣ୍ଡା ।

ଚୁନାକୁ ନେଇ ପିଠା ଓ କାରୀଗରକୁ ନେଇ ପିଠାର ସ୍ୱାଦକୁ ବାରି ହେଲା ପରି ସମ୍ପାଦକଙ୍କ ଉତ୍ତମ ସମ୍ପାଦନାରେ ପତ୍ରିକାର ବିଷୟବସ୍ତୁ ହେଉଛି ସମ୍ପାଦକଙ୍କ ପତ୍ରିକା ସମ୍ପାଦନାର କୌଶଳପୂର୍ଣ୍ଣ ଚମତ୍କାର ଦକ୍ଷତା । ତେଣୁ ସାହିତ୍ୟ ଜଗତରେ ଜଣେ ବ୍ୟକ୍ତି ପ୍ରତିଷ୍ଠିତ ଲେଖକଟିଏ ହୋଇ ପାରିଥାଏ, କିନ୍ତୁ ଜଣେ ଭଲ ପତ୍ରିକା ସମ୍ପାଦକଟିଏ ହେବା ବହୁତ କଷ୍ଟକର ବ୍ୟାପାର ।

: ତଥାପି ଉପରୋକ୍ତ କଥା ସମୂହକୁ ବିଚାର କଲେ ଡକ୍ଟର ବସନ୍ତ କିଶୋର ସାହୁ ଜଣେ ସଫଳ ସାହିତ୍ୟ ପତ୍ରିକା ସମ୍ପାଦକ ହେବା ବହୁମାତ୍ରାରେ ସ୍ୱୀକାର୍ଯ୍ୟ । ସେ ତାଙ୍କ ଛାତ୍ର ଜୀବନରୁ ସାହିତ୍ୟ ପ୍ରତି ରୁଚି ରଖି ପରିବର୍ତ୍ତୀ କାଳରେ ଜଣେ ସଫଳ ଶିଶୁ ସାହିତ୍ୟିକ ହେବା ତଥା ଶିଶୁ ସାହିତ୍ୟ ଉପରେ ଗବେଷଣା କରି ଡକ୍ଟରେଟ୍ ଡିଗ୍ରୀ ଲାଭ କରିବା ସହ ଜଣେ ସାହିତ୍ୟ ପତ୍ରିକା ସମ୍ପାଦକ ଭାବରେ ପ୍ରଥମେ କୋମଳମତି ଛାତ୍ରଛାତ୍ରୀଙ୍କ ଜ୍ଞାନର ବିକାଶ ସାଧନ ପାଇଁ ସମ୍ପାଦିତ କଲେ ଦ୍ୱି-ମାସିକ ଓଡିଆ ଶିଶୁ ସାହିତ୍ୟ ପତ୍ରିକା 'ବଗଲା ବଗୁଲୀ' । ଏହା ୧୯୮୧ ମସିହାରୁ ୧୯୮୫ ମସିହା ପର୍ଯ୍ୟନ୍ତ ୨୦ ଖଣ୍ଡ ପ୍ରକାଶ ଲାଭ କରିଛି । ଯାହା ଓଡିଆ ଶିଶୁ ଓ କିଶୋର ସାହିତ୍ୟ ଜଗତ ପାଇଁ ଏକ ମୂଲ୍ୟବାନ୍ ରତ୍ନ ଅଟେ ।

ସୁ-ସାହିତ୍ୟିକ ଓ ସମ୍ପାଦକ ଡକ୍ଟର ବସନ୍ତ କିଶୋର ସାହୁ ବହୁ ସାହିତ୍ୟ ଓ ସଂସ୍କୃତି ସମ୍ପନ୍ନ ଅନୁଷ୍ଠାନମାନଙ୍କ ଦ୍ୱାରା ସୁ-ସଂପର୍କ ସ୍ଥାପନ କରି ନିଜ ସାହିତ୍ୟ ସାଧନାର ବିକାଶ ସାଧିତ କରିବା ସହ ବିଭିନ୍ନ ଅନୁଷ୍ଠାନର ମୁଖପତ୍ର, ସ୍ମରଣିକା ଆଦି ପ୍ରକାଶ କରି ନିଜ ବିଚକ୍ଷଣତାର ପରିଚୟ ପ୍ରଦାନ କରି ପାରିଛନ୍ତି । ତନ୍ମଧ୍ୟରୁ ବନଫୁଲ ସାହିତ୍ୟ ପରିଷଦର ମୁଖପତ୍ର ବନଫୁଲ-୧ ରୁ ବନଫୁଲ-୮ ପର୍ଯ୍ୟନ୍ତ (ଗଳ୍ପ ଓ କବିତା ସଂକଳନ) ଶ୍ରୀଯୁକ୍ତ ସାହୁଙ୍କ ସମ୍ପାଦନାରେ ପ୍ରକାଶିତ । ଏହା ୧୯୮୬ ମସିହାରୁ ପ୍ରଥମେ ଆରମ୍ଭ ହୋଇ ୧୯୯୬ ମସିହା ପର୍ଯ୍ୟନ୍ତ ପ୍ରକାଶ ପାଇ ଆସୁଥିଲା । ଏଥିରେ ଓଡିଶାର ତରୁଣ ଓ ପ୍ରବୀଣ ଲେଖକ ଲେଖିକାମାନଙ୍କ ଗଳ୍ପ, କବିତା ଆଦି ସ୍ଥାନ ପାଉଥିଲା । ଏହି ପତ୍ରିକାଟି ସେହି ସମୟରେ ଅବିଭକ୍ତ କୋରାପୁଟ ଜିଲ୍ଲା ପାଇଁ ଥିଲା ସାହିତ୍ୟ ବାତାବରଣ ସୃଷ୍ଟି



Digitized by srujanika@gmail.com

କରିବାର ଏକ ପ୍ରୟାସ । ଏଥିପାଇଁ ବନଫୁଲ ସାହିତ୍ୟ ପରିଷଦ ମଧ ଧନ୍ୟବାଦର ପାତ୍ର ।

ଡକ୍ଟର ସାହୁଙ୍କ ସମ୍ପାଦନାରେ ଓଡିଆ ଲେଖକ ଓ ପାଠକ ସମ୍ମେଳନ, ସେମିଳିଗୁଡା ତରଫରୁ ପ୍ରକାଶିତ କୋରାପୁଟ ପରିକ୍ରମା ପ୍ରବନ୍ଧ ସଂକଳନ (୧୯୯୨), କବିତା ସଂକଳନ(୧୯୯୩), ବନଫୁଲ ସାହିତ୍ୟ ପରିଷଦ ଦ୍ୱାରା ପ୍ରକାଶିତ ଶିଶୁ କବିତା ସଂକଳନ- ପାଞ୍ଚପାଖୁଡା(୧୯୯୨) ତଥା ଦେଶାତ୍ମବୋଧ କବିତା ସଂକଳନ- (୧୯୯୨) ମସିହାରେ, ସତ୍ତା ସାହିତ୍ୟ ସଂସଦ, କୋରାପୁଟ ଦ୍ୱାରା ପ୍ରକାଶିତ ଭାଗୀରଥି ସ୍ମରଣିକା-୨୦୦୩ ମସିହାରେ, ନନ୍ଦ କିଶୋର ସ୍ମୃତିନ୍ୟାସ ଦ୍ୱାରା ପ୍ରକାଶିତ ନନ୍ଦ କିଶୋର ରଚନାବଳୀ-୨୦୦୭ ମସିହାରେ, ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା କମିଟି, ସୁନାବେଡା-୨ ଦ୍ୱାରା ପ୍ରକାଶିତ 'ସର୍ବକ୍ଷେତ୍ର' (ରଥଯାତ୍ରା ବିଶେଷାଙ୍କ) ୨୦୦୬ ମସିହାରୁ ୨୦୧୨ ମସିହା ପର୍ଯ୍ୟନ୍ତ ୭ ଗୋଟି ସଂକଳନ, ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡା ଦ୍ୱାରା ପ୍ରକାଶିତ ମୁଖପତ୍ର ସ୍ମରଣିକା-୨୦୦୩ ଓ ୨୦୦୭ ମସିହାରୁ ୨୦୧୨ ମସିହା ପର୍ଯ୍ୟନ୍ତ ୭ଖଣ୍ଡ, ଓଡିଆ ଲେଖକ ଓ ପାଠକ ସମ୍ମେଳନ ଦ୍ୱାରା ପ୍ରକାଶିତ ସ୍ମରଣିକା-୧୯୯୨ ରୁ ୧୯୯୪ ପର୍ଯ୍ୟନ୍ତ ତିନିଖଣ୍ଡ । ନନ୍ଦ କିଶୋର ସାମଲ ସ୍ମୃତିନ୍ୟାସ ଦ୍ୱାରା ପ୍ରକାଶିତ 'ସ୍ମୃତି ଅର୍ଘ୍ୟ' ୨୦୦୪ ରୁ ୨୦୦୬ ପର୍ଯ୍ୟନ୍ତ ତିନିଖଣ୍ଡ, ବନପ୍ରଭା ସାହିତ୍ୟ ସଂସଦ ଦ୍ୱାରା ପ୍ରକାଶିତ ବନପ୍ରଭା-୧, ବନପ୍ରଭା-୨, ବନପ୍ରଭା-୩ (ଦେଶାତ୍ମବୋଧ କବିତା ସଂକଳନ), ବନପ୍ରଭା-୪(ଶିଶୁ କବିତା ସଂକଳନ), ଯଥାକ୍ରମେ ୨୦୦୮ ରୁ ୨୦୧୨ ମସିହା ପର୍ଯ୍ୟନ୍ତ ୪ଖଣ୍ଡ, ମଧୁସୂଦନ ସେବାସଂଘ ଦ୍ୱାରା ପ୍ରକାଶିତ 'ମଧୁବାର୍ତ୍ତା-୨୦୦୮' ମସିହାରେ, ସ୍ନେହୀ ସମାଜ, ସୁନାବେଡା ଦ୍ୱାରା ପ୍ରକାଶିତ 'ବୋଇତ' ୧୯୮୮ ରୁ ୨୦୦୯ ମସିହା ପର୍ଯ୍ୟନ୍ତ ୧୫ଖଣ୍ଡ ତଥା ଏରୋନଟିକ୍ସ କଲେଜ, ସୁନାବେଡାର ମୁଖପତ୍ର Aeronautica (ଏରୋନେଟିକା)ର ୧୯୮୭-୮୮, ୧୯୯୨-୯୩, ୧୯୯୭-୯୮, ୧୯୯୯-୨୦୦୦, ୨୦୦୨-୨୦୦୩, ୨୦୦୪-୨୦୦୫, ୨୦୦୫-୨୦୦୬, ୨୦୦୬-୨୦୦୭, ୨୦୦୮-୨୦୦୯, ୨୦୧୧-୧୨ ଆଦି ୧୦ ଗୋଟି ମାଗାଜିନ୍ ସମ୍ପାଦନା କରିଛନ୍ତି । ଉପରୋକ୍ତ ସାହିତ୍ୟ ପତ୍ରିକା, ଅନୁଷ୍ଠାନମାନଙ୍କ ସ୍ମରଣିକା ଆଦି ସମ୍ପାଦନା କଥା ଚିନ୍ତା କଲେ ଜଣାଯାଏ ଡକ୍ଟର ସାହୁ ହେଉଛନ୍ତି ସାହିତ୍ୟ ପତ୍ରିକା ସମ୍ପାଦନା ଜଗତର ଏକ ବଳିଷ୍ଠ ନିଦର୍ଶନ ।

ସୁ-ସମ୍ପାଦକ ଡକ୍ଟର ସାହୁ ସଂପ୍ରତି ୨୦୧୨ ଜୁଲାଇ ମାସ ସୁଦ୍ଧା ସମ୍ପାଦିତ ବିଭିନ୍ନ ସାହିତ୍ୟ ପତ୍ର ପତ୍ରିକା, ସ୍ମରଣିକା, ମୁଖପତ୍ର ଆଦି ୧୩ ଗୋଟି ପତ୍ରିକା ଓ ସଂପାଦିତ ପୁସ୍ତକ ମାନଙ୍କର ମୋଟ ୮୧ଖଣ୍ଡ ପତ୍ରିକା ଓ ସମ୍ପାଦିତ ପୁସ୍ତକ ଅଟେ । ଏହା ଏକ ଗୌରବର କଥା । ତାଙ୍କ ଦ୍ୱାରା ସମ୍ପାଦିତ ପତ୍ରପତ୍ରିକା ସମୂହ ସାହିତ୍ୟ ଜଗତରେ ଏକକୁ ଆରେକ ବଳି ! ତନ୍ମଧ୍ୟରୁ କିଏ ହୀରା ତ କିଏ ମୋତି ମାଣିକର ସମାହାର ! । ତଥାପି ଏମାନଙ୍କ ମଧ୍ୟରୁ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା କମିଟି, ଏଚ୍.ଏ.ଏଲ୍ ଟାଉନ୍‌ସିପ୍, ସୁନାବେଡାର ମୁଖପତ୍ର 'ସର୍ବକ୍ଷେତ୍ର' ସତରେ ଓଡିଆ ସାହିତ୍ୟ ଜଗତରେ



Digitized by srujanika@gmail.com

ଶ୍ରୀଜଗନ୍ନାଥଙ୍କ ସାହିତ୍ୟ ସଂସ୍କୃତିର ବିକାଶ କ୍ଷେତ୍ରରେ ଭକ୍ତ ଓ ପାଠକ ମାନଙ୍କୁ ନିରୁତ୍ତା ଭାବ ବାଣ୍ଟୁଥିବା ଏକ ସର୍ଣ୍ଣମୟ ସାହିତ୍ୟ କୋଣାର୍କ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସର୍ଣ୍ଣକ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ ସାଧାରଣ ସଂଖ୍ୟା ସହ ଏହାର ମନ୍ଦିର (କ୍ଷେତ୍ର) ବିଶେଷାଙ୍କ, ଭକ୍ତ ବିଶେଷାଙ୍କ, ବେଶ ବିଶେଷାଙ୍କ ତଥା ପର୍ବପର୍ବାଣି ବିଶେଷାଙ୍କର ମହତ୍ତ୍ୱ କୋଟି ଗୁଣରେ ଶ୍ରେୟସ୍କର । ସେହିପରି କୋରାପୁଟ ଜିଲ୍ଲାର ପ୍ରାଚୀନ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡା -୨ର ମୁଖପତ୍ର 'ସ୍ମରଣିକା'ର ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ବିଶେଷାଙ୍କ, ଉତ୍କଳ ଗୌରବ ମଧୁସୂଦନ ବିଶେଷାଙ୍କ, ଫକୀର ମୋହନ ବିଶେଷାଙ୍କ, ଗୋପବନ୍ଧୁ ବିଶେଷାଙ୍କ, ଗଙ୍ଗାଧର ବିଶେଷାଙ୍କ ତଥା ଜୀବନ ଜୀବିକାର ମୋହାସକ୍ତ, ସ୍ମୃତି ବିସ୍ମୃତିର ବାଲିଘର, ସାଉଁଟା ସପ୍ନର ଅଭୂଲା ସହର ବିଶେଷାଙ୍କ 'ସୁନାବେଡା ବିଶେଷାଙ୍କ-୨୦୧୨', ଲେଖକ ଓ ପାଠକ ପ୍ରାଣକୁ ଯେତିକି ଆକର୍ଷିତ କରିଛି ସେତିକି ଦୁଃଖ ଓ ଆନନ୍ଦର ଫେଣ୍ଟାଫେଣ୍ଟି ଭାବକୁ ବାଣ୍ଟୁଅଛି ଓ ବାଣ୍ଟୁଥିବ ମଧ୍ୟ । ଏହାହିଁ ତ ସମ୍ପାଦକଙ୍କ ସମ୍ପାଦନାର ବିଶେଷତ୍ୱ ଓ ଯାଦୁକାରିତା ।

କଥାରେ କହିବାକୁ ଗଲେ ସୁ-ସାହିତ୍ୟିକ ଓ ସମ୍ପାଦକ ଡକ୍ଟର ବସନ୍ତ କିଶୋର ମଧୁମୟ ବସନ୍ତର କିଶୋର କାଳରୁ ଏଇ ବାର୍ଦ୍ଧକ୍ୟ ଜୀବନ କାଳ (୨୦୧୨) ମଧ୍ୟରେ ବହୁଘାତ ଓ ପ୍ରତିଘାତ ଦେଇ କର୍ମ ଓ ପରିବାର ଜଞ୍ଜାଳ ମଧ୍ୟରେ ପେଶି ହୋଇ ସଂଘର୍ଷମୟ ସାହିତ୍ୟ ସାଧନା ବଳରେ ସେ ଆଜି ଓଡିଆ ସାହିତ୍ୟ ସମ୍ପାଦନା କ୍ଷେତ୍ରରେ ହେଉ କିମ୍ବା ସାହିତ୍ୟ ସୃଷ୍ଟି ସର୍ଜନା କ୍ଷେତ୍ରରେ ହେଉ ତାଙ୍କ ସାଧନାର ଉତ୍କର୍ଷତା ବାରିହୋଇ ପଡୁଥାଏ । ସେ ଓଡିଆ ସାହିତ୍ୟର ବିଭିନ୍ନ ଦିଗ ଉପରେ ଲେଖନୀ ଚାଳନା କରି ୩୨ଖଣ୍ଡ ପୁସ୍ତକର ରଚୟିତା ହୋଇଛନ୍ତି । ଆଜି ମଧ୍ୟ ସେ ତାଙ୍କ ସାରସତ ସାଧନାକୁ ଅବ୍ୟାହତ ରଖିଛନ୍ତି । ତାଙ୍କ ସାରସତ କୃତି ପାଇଁ ଓଡିଶାର ୨୦ରୁ ଉର୍ଦ୍ଧ୍ୱ ଅନୁଷ୍ଠାନ ଦ୍ୱାରା ସେ ଆଜି ସମ୍ବର୍ଦ୍ଧିତ । ସେ ହେଉଛନ୍ତି ଜଣେ ସୁ-ସାହିତ୍ୟିକ, ସୁ-ସଂଗଠକ ଓ ପ୍ରବୀଣ ସାହିତ୍ୟ ପତ୍ରିକା ସମ୍ପାଦକ ।

ମଣିଷ ସଂସାରରୁ ଚାଲିଯାଏ କିନ୍ତୁ ତା'ର ଉତ୍ତମ କର୍ମ ଫଳ ତାକୁ ସଦାବେଳ ପାଇଁ ବଞ୍ଚାଇ ରଖିଥାଏ । ଇତିହାସର ଚଲାପଥରେ ସତେକି ସେ ସାଉଁଟା ଫୁଲଟିଏ ହୋଇ ତା' ଗୁଣ କର୍ମର ସ୍ମୃତିଚାରଣ କରୁଥାଏ । ଏହା କର୍ତ୍ତା ହୁଏତ ଜାଣିପାରି ନଥାଏ କିନ୍ତୁ ଗୁଣ ଗ୍ରହୀତା ଏହା ଠିକ୍ ଭାବେ ବୁଝିପାରିଥାଏ । ସାହିତ୍ୟ ସାଧନା ଓ ପତ୍ରିକା ସମ୍ପାଦନା କ୍ଷେତ୍ରରେ ଡକ୍ଟର ସାହୁଙ୍କ ଗୁଣକର୍ମ ଏମିତି ମନେହୁଏ । ତାଙ୍କ କୃତି ସମ୍ପର୍କରେ ଗବେଷଣାର ଆବଶ୍ୟକତା ଅଛି ।



ମାୟାବତୀ ପଟ୍ଟନାୟକ ସ୍ମୃତିସଂସଦ
ଅମର ନଗର,ବାଉଁଶଲୁଣ୍ଡି, ଭଞ୍ଜନଗର, ଗଞ୍ଜାମ



Digitized by srujanika@gmail.com

# ପ୍ରେମ, ହତାଶା, ଅନ୍ତର୍ଦ୍ୱନ୍ଦ୍ୱ ଓ ଅବ୍‌ସୋସ୍‌ର କରୁଣ କଥାକଳ୍ପ : ବସନ୍ତ କିଶୋରଙ୍କ ଗଳ୍ପ

**ଡକ୍ଟର ଆଲୋକ ବରାଳ**

କଥାକାର ଭାବରେ ସାହିତ୍ୟିକ ବସନ୍ତ କିଶୋର ସାହୁ ଅବଶ୍ୟ ବହୁ ପଠିତ; କିନ୍ତୁ ସ୍ୱଳ୍ପାଲୋଚିତ । ସାହିତ୍ୟର ବିବିଧ ଧାରାରେ ସ୍ୱ ଆତ୍ମ ସଂପୃକ୍ତି ଓ ବ୍ୟାପ୍ତି ହିଁ ଏହାର କାରଣ । ଶିଶୁ ସାହିତ୍ୟ, ଲୋକସାହିତ୍ୟ, ଗବେଷଣା ତଥା ଅନ୍ୟ ସାହିତ୍ୟିକ ବିଭବର ବିପୁଳତା ଭିତରେ ତଥାପି ଗାଳ୍ପିକ ବସନ୍ତ କିଶୋର ବାରି ହୋଇ ପଡନ୍ତି । କାରଣ ବସନ୍ତଙ୍କ ଗଳ୍ପରେ ରହିଛି ଏକ ସ୍ୱତନ୍ତ୍ର ଆବେଦନ ଓ ଚମକ । ସେଇ ଚମକ ଓ ଆବେଦନ ହିଁ ବସନ୍ତଙ୍କୁ ଆଲୋଚନା କରିବା ପାଇଁ ସୃଷ୍ଟି କରିଛି ପରିସର । ଅଶୀ ଦଶକର ଶେଷ ଭାଗରୁ ହିଁ ବସନ୍ତଙ୍କର କଥାଯାତ୍ରା ନିଜ ପାଇଁ ଏକ ସରଣୀର ସନ୍ଧାନ କଲା; ଯଦିଓ ଗଳ୍ପଲେଖା ଓ ଗଳ୍ପପ୍ରବଣତା ସବୁବେଳେ ରହିଥିଲା ତାଙ୍କ ଭିତରେ । ବସନ୍ତ କିଶୋର ରଚନାବଳୀ-୨ରେ ସଂକଳିତ ଆଠଗୋଟି ଗଳ୍ପ ହିଁ ଏ ଆଲୋଚନାର ଆଧାର ଓ ଉପାଦାନ ।

କଥାକାର ବସନ୍ତଙ୍କ ସବୁ ଗଳ୍ପରେ ଥାଏ ଆବେଗର ବିପୁଳ ବେହରଣ । ଭୌଗୋଳିକ ସୌନ୍ଦର୍ଯ୍ୟ ସହ ନିବିଡ ଆତ୍ମୀୟ ଅନୁରାଗ; ଯାହା ଛଳ ଛଳ ହୋଇ ବୋହିଯାଇ ହଠାତ୍ କୋମଳ-ସାନ୍ଦ୍ର ରୂପ ନିଏ କଥାଟିଏ ହୋଇ । ଅନେକ ପ୍ରେମ; ଅନେକ ଦୀର୍ଘଶ୍ୱାସ; ଅନେକ ଆତ୍ମୀୟତା, ପୁଣି କୁଢ କୁଢ ଅବସୋସର ଭାବନା ସହ କଥାର ସେଇ କୋମଳ ସାନ୍ଦ୍ର କାରିଗର ହିଁ ବସନ୍ତଙ୍କ କଥାର ଶିଳ୍ପ ।

॥ ଏକ ॥

ବସନ୍ତଙ୍କର କଥା ଭୂମିରେ ପ୍ରେମ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଏକ ଏକକ । କିନ୍ତୁ ତା'ର ପରିପୂର୍ଣ୍ଣତା ନାହିଁ କଥାର ପରିଧିରେ । ପ୍ରେମ-ସବୁଠି ପାହାଡୀ ଝରଣା ଭଳି ଅମାନିଆ ମାଡି ଯାଇଛି ସିନା, ତାର ସ୍ଥିରତା ନାହିଁ ; ରିକ୍ତ ହସ୍ତ ଓ ଶୂନ୍ୟପାତ୍ର ସବୁଠି । ଏହି ଆହତବୋଧ ଓ ବିଭୋର ତାଡନା ଗଳ୍ପଗୁଡ଼ିକ ଭିତରେ ସୃଷ୍ଟି କରିଛି କୁଢ କୁଢ ହତାଶା ଓ ଯନ୍ତ୍ରଣାକ୍ତ ଦୀର୍ଘଶ୍ୱାସ । 'ଯୁଗ ଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ'ର ଲିପି ଓ ଚିନ୍ମୟ ହୁଅନ୍ତୁ ବା 'ସ୍ୱୟଂବର'ର ତପତୀ ଓ ପଲ୍ଲବ ; 'ସଂପର୍କ' ଗଳ୍ପର ପଦ୍ମଜା ଓ ଦିଲ୍ଲୀପ ବା 'ଶଙ୍କା' ଗଳ୍ପର ନମିତା ଓ କଥାପୁରୁଷ ବା 'ସ୍ମୃତି-ବିସ୍ମୃତି' ର ରେଣୁ ଓ



Digitized by srujanika@gmail.com

କଥାପୁରୁଷ ; ହେଉ ଅବା 'ପ୍ରତିଶୋଧ' ଗଳ୍ପର ମଣି ଓ ଧୀରାଜ - ଏ ସମସ୍ତଙ୍କ ଭିତରେ ଲହଡି ଭାଙ୍ଗିଛି ତୀବ୍ର ବେଦନାବୋଧ । ସେଇ ବେଦନାବୋଧର ପ୍ରଚ୍ଛନ୍ନରେ ରହଛି ପ୍ରେମର ଅସଫଳତାର ଦୀର୍ଘଶ୍ୱାସ ଓ ଅବସୋସର ଗହନ ଉପକଥା ।

'ଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ' ଗଳ୍ପରେ ଲିପି ଓ ଚିନ୍ମୟର ପ୍ରେମ ବିବାହରେ ରୂପାନ୍ତରିତ ହୋଇପାରୁନାହିଁ । ଲିପି, ଶିଳ୍ପପତି ରାୟସିଂହଙ୍କର ଏକମାତ୍ର ଅଲିଅଳି କନ୍ୟା ଏବଂ ଚିନ୍ମୟ ଗରିବ ବୃଦ୍ଧ ପିତାମାତାଙ୍କର ଏକମାତ୍ର ସାହା ଓ ଭରସା । ଯାହାର ପାଠପଢା ପାଇଁ ଗାଆଁର ଚାଲାକ୍ ମୁରବି ମଧୁ ମିଶ୍ରେ ଅଜାଡି ଦେଇଛନ୍ତି ଆର୍ଥିକ ସହାୟତା ଏବଂ ପ୍ରକାରାନ୍ତରେ ବୃଦ୍ଧ ପିତାମାତାଙ୍କୁ ମହାପ୍ରସାଦ ଛୁଆଁଇ ନିଜର ଅସୁନ୍ଦରୀ ଅଶିକ୍ଷିତା ଝିଅକୁ ଚିନ୍ମୟ ସହ ବାହା କରିବାର ପ୍ରତିଶ୍ରୁତି ନେଇ ସାରିଛନ୍ତି । ଗଳ୍ପର ଏହା ହିଁ ଟର୍ଣ୍ଣିଂପଏଣ୍ଟ ବା କଥାମୋଡ । ଯେଉଁଠି ୟୁନିଭରସିଟିର ପାଠପଢା ସାରି ଅଧ୍ୟାପକ ହେବା ପରେ ଚିନ୍ମୟ ପଡିଛି ଦୋଦୁଲ୍ୟମାନ ସ୍ଥିତିରେ । ଭଲ ପାଉଥିବା ଲିପିକୁ ଆପଣେଇ ନେଇ ପାରୁନାହିଁ ଚିନ୍ମୟ । ସେ ପିତୃଦ୍ରୋହୀ ବା ଅବିବେକୀ ହୋଇପାରୁନାହିଁ । ଗଳ୍ପରେ ଲିପିର କରଣ ଏବଂ ଚିନ୍ମୟର ବ୍ରାହ୍ମଣ ହେବାର ପ୍ରତିବନ୍ଧକ ଅପେକ୍ଷା ପିତାମାତାଙ୍କର ମଧୁ ମିଶ୍ରଙ୍କୁ ଦେଇଥିବା ପ୍ରତିଶୃତି ପାଇଁ ଚିନ୍ମୟ ପ୍ରତ୍ୟାଖ୍ୟାନ କରିଛି ଲିପିକୁ । ଅତୀତ ଉଭୟଙ୍କୁ ଆଣିଦେଇଛି ଯନ୍ତ୍ରଣା । କଥାର ନିୟତି କିନ୍ତୁ ଭିନ୍ନ । ଚିନ୍ମୟ ସଂସାରୀ ସାଜିଛି ସତ, ମାତ୍ର ସ୍ତ୍ରୀ ତା'ର ହୋଇପାରିନି ସନ୍ତାନ ସମ୍ଭବା । ହଠାତ୍ ଏକ ତୀର୍ଥକ୍ଷେତ୍ରରେ ଅପ୍ରତ୍ୟାଶିତ ଭାବରେ ଲିପି ଏବଂ ଚିନ୍ମୟର ହୋଇଛି ସାକ୍ଷାତ । ଯେଉଁଠି ଚିନ୍ମୟ ଜାଣିଛି ଯେ ତାର ଅକ୍ଷମତା ଓ ନିରୁପାୟତାର ପ୍ରେମ-ପ୍ରତ୍ୟାଖ୍ୟାନ ପତ୍ର ପାଇବା ପରେ ଲିପି ଆଉ ପାତି ନାହିଁ ସଂସାର, ଜୀଇ ଚାଲିଛି ଖାଲି ନିଃସଙ୍ଗ ଓ ଅସାରତାର ଜୀବନଟିଏ ।

ଗୋଟିଏ ପଟେ ଲିପିର ନିଃସଙ୍ଗ ଭଙ୍ଗୁରତା ଏବଂ ଅନ୍ୟପଟେ ଚିନ୍ମୟର ଅନ୍ତସାରଶୂନ୍ୟ ରିକ୍ତ ଜୀବନ-ହଜାଇ ସାରିଥିଲା ସବୁକିଛି । ଲିପି ଓ ଚିନ୍ମୟର ଶୂନ୍ୟହସ୍ତ ଓ ଶୂନ୍ୟଥାଳର ଚରମ ହତାଶା ହିଁ 'ଯୁଗଯନ୍ତ୍ରଣାରେ ଛଟପଟ ହେଉଥିବା'ର କରୁଣ ବେହାଗ ।

ଠିକ୍ ସେହି ସମଧର୍ମୀ ଥିମ୍‌କୁ ଆଧାର କରିଥିବା ଗଳ୍ପଟି ହେଉଛି ବସନ୍ତଙ୍କର 'ସଂପର୍କ' ଗଳ୍ପ । ଗଳ୍ପରେ ଦିଲ୍ଲୀପ ନିବିଡ ଭାବରେ ଭଲପାଇଛି ପଦ୍ମଜାକୁ । ଗଳ୍ପର ପ୍ରାକ୍‌ଭୂମିରେ ହାଇଦ୍ରାବାଦରେ ଅନୁଷ୍ଠିତ ଆନ୍ତଃ ବିଶ୍ୱବିଦ୍ୟାଳୟ କ୍ରୀଡା ପ୍ରତିଯୋଗିତାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ପଲ୍‌ଟିକାଲ ସାଇନ୍ସ ବିଭାଗର ଶେଷ ବର୍ଷ ଛାତ୍ରୀ ପଦ୍ମଜା ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରତିନିଧିତ୍ୱ କରିଥିବା ଦିଲ୍ଲୀପ, ଉଭୟେ ହୋଇଛନ୍ତି ଚଂପିୟାନ୍ ଏବଂ ଉଭୟଙ୍କ ଭିତରେ ଗଢି ଉଠିଛି ସଂପର୍କ । ତାହା ଅଧିକ ଗଭୀର ହୋଇଛି, ଯେତେବେଳେ ଏମ୍.ଫିଲ୍ କରିବା ଉଦ୍ଦେଶ୍ୟରେ ଦିଲ୍ଲୀପ ଯାଇ ପହଞ୍ଚିଛି ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ । ଉଭୟଙ୍କ ପ୍ରେମର ଗଭୀରତାକୁ କିନ୍ତୁ ସମ୍ମାନ ଦେଇପାରି ନାହାନ୍ତି ଦିଲ୍ଲୀପର ପିତା । ପଦ୍ମଜାଙ୍କ ପିତା ବି. ମାଧବଙ୍କୁ ଲଜ୍ଜିତ ହୋଇ ଫେରି ଆସିବାକୁ ହୋଇଛି,



Digitized by srujanika@gmail.com

ଦିଲ୍ଲୀପଙ୍କ ପିତାଙ୍କ ପାଖରୁ । କାରଣ ସେ ବଢାଇ ଦେଇଛନ୍ତି ଯଉତୁକର ଏକ ଦୀର୍ଘ ତାଲିକା । ସେଇଠାରେ ହିଁ ନିରୁପାୟ ଦିଲ୍ଲୀପକୁ ଜି.ମାଧବ କହିଥିଲେ : "ପଦ୍ମଜା ଯଦି ତୁମକୁ ପ୍ରକୃତରେ ଭଲ ପାଉଥାଏ, ତା'ହେଲେ ତୁମେ ନିଶ୍ଚୟ ତୁମର ଭୁଲ ବୁଝିପାରିବ ଓ ତାକୁ ଆପଣେଇ ନେବ" । ଭାଙ୍ଗି ପଡିଥିଲେ ଦିଲ୍ଲୀପ ଏବଂ ବିମର୍ଷ ହୋଇ ପଡିଥିଲେ ଜି. ମାଧବ । ଅନୁଗତ ପୁତ୍ର ହୋଇ ପ୍ରେମର ଜଳାଞ୍ଜଳି ଦେଇ ଦିଲ୍ଲୀପ ବିବାହ କରେ ଅଳକାଙ୍କୁ । ଦଶବର୍ଷ ପରେ ହଠାତ୍ ଦିଲ୍ଲୀପ ଓ ଅଳକା ସହ ଅପ୍ରତ୍ୟାଶିତ ଭାବେ ଦିଲ୍ଲୀରେ ପଦ୍ମଜାଙ୍କ ସହ ଦେଖା ହୋଇଗଲା । ପରିଚୟ ପରେ ଅଳକା ପଦ୍ମଜାଙ୍କୁ ପଚାରିଥିଲେ, ସେ କାହିଁକି କ୍ରୀଡା ପାଇଁ ପାଇଥିବା ପଦ୍ମଶ୍ରୀ ଉପାଧି ଗ୍ରହଣ କଲେ ନାହିଁ । ପଦ୍ମଜାଙ୍କ ଉତ୍ତର କିନ୍ତୁ ସଂପୂର୍ଣ୍ଣ ଦୋହଲାଇ ଦେଇଥିଲା ଦିଲ୍ଲୀପଙ୍କ ଅନ୍ତରାତ୍ମାକୁ : "ମୋତେ ଭଲ ପାଇ ଦୂରେଇ ଦେଇଥିବା ଜଣେ ଧନଲୋଭୀ ପୁରୁଷକୁ ଏହା ମୋର ନିରବ ପ୍ରତିବାଦ" । ନୂଆ ଚାକିରିରେ ଯୋଗ ଦେବା ପାଇଁ ନୂଆ ହୋଇ ଆସିଥିବା ଦିଲ୍ଲୀପ ଓ ଅଳକାକୁ ନିଜ କାରରେ ବୁଲାଇ ଛାଡିଦେଇଥିଲା ହୋଟେଲରେ ପଦ୍ମଜା । ପଦ୍ମଜାର ବର୍ତ୍ତମାନର ବ୍ୟକ୍ତିତ୍ୱ ଅଧିକ ଆକର୍ଷିତ କରିଥିଲା ଦିଲ୍ଲୀପଙ୍କୁ । ଅଳକା ସହିତ ତୁଳନା କରି ଏକ ପ୍ରକାର ଅବ୍‌ସୋସ୍ ଭାବ ମଧ୍ୟ ଆସୁଥିଲା ଦିଲ୍ଲୀପ ଭିତରେ । ପରଦିନ ପ୍ରମୋଶନ ପାଇ ନୂଆ ଚାକିରିକୁ ଜଏନ୍ କରିବାକୁ ଯାଇ ଦିଲ୍ଲୀପ ଦେଖିଛନ୍ତି ଯେ ପଦ୍ମଜା ହେଉଛନ୍ତି ଶିକ୍ଷା ସଚିବ । ଆଉ ପଦ୍ମଜା, ଜଣେ ଅଧସ୍ତନ କର୍ମଚାରୀ ଭାବେ ଆଗନ୍ତୁକ ପ୍ରତି ମୁଖ ମଧ୍ୟ ଉତ୍ତୋଳନ ନ କରିବା, ଦିଲ୍ଲୀପର ଅଭିମାନକୁ ଆଘାତ ଦେଇଛି । କାରଣ ପଦ୍ମଜା ସେଠାରେ ଦେଖାଇନି ସୌଜନ୍ୟତା ବା ଚାହିଁ ନାହିଁ ମୁଣ୍ଡ ଟେକି । ସେଇଠାରେ ହିଁ ଦିଲ୍ଲୀପର ଭାଙ୍ଗିଯାଇଚି ପୌରୁଷର ଅହଂକାର । ନିଜକୁ ଅତ୍ୟନ୍ତ ଲଜ୍ଜିତ ଓ ଭଗ୍ନୀଭୁତ ମନେ କରିଚି ଦିଲ୍ଲୀପ । ତାର ମନେ ହୋଇଛି ସତେ ଯେମିତି ସେ ଦିନ ଜି. ମାଧବ ଓ ପଦ୍ମଜାର ହୋଇଥିବା ଅପମାନର ପ୍ରତିଶୋଧ ନେଇଛି । ସମୟ/ପଦ୍ମଜା... ଗଳ୍ପରେ ସେହି ମୁହୂର୍ତ୍ତରେ ହୁଏ ତ ଦିଲ୍ଲୀପ ଭାବୁଛି ଯେ ସେ ପଦ୍ମଜାର ଅଧସ୍ତନ କର୍ମଚାରୀ ଭାବେ ରହିବ ନା ପ୍ରମୋଶନ ନ ନେଇ ଫେରିଯିବ ତାର ପୁରୁଣା ଚାକିରିକୁ ... ଏ ହତାଶା ଠିକ୍ ପୂର୍ବାଲୋଚିତ ଗଳ୍ପର ହତାଶା ଭଳି ସୃଷ୍ଟି କରିଛି ଗଭୀର ଅନ୍ତର୍ଦ୍ୱନ୍ଦ୍ୱର ଡଅଁର ।

ଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ, ସଂପର୍କ ଭଳି ଶଙ୍କା ଗଳ୍ପର ଭୂମି । 'ଶଙ୍କା' ଗଳ୍ପରେ କଥାପୁରୁଷ ହଠାତ୍ ବାରବର୍ଷ ବ୍ୟବଧାନ ପରେ ଦେଖାହୋଇଗଲା ବନ୍ଧୁ ବିମଳ ସହିତ । ଅତୀତକୁ ରୋମନ୍ଥନ କଲାବେଳେ ତାର ଅତୀତ ଆସି ସାମ୍ନା ସାମ୍ନି ହେଲା । ବି.ଏ ପାସ୍ କରିବା ପରେ ଏମ୍. ଏ ପାଇଁ ବିମଳ ଚାଲିଗଲା ଦିଲ୍ଲୀ ଏବଂ କଥାପୁରୁଷ ଭୁବନେଶ୍ୱରରେ ହିଁ ଇଂରାଜୀରେ କଲା ସ୍ନାତକୋତ୍ତର । ତା' ପରେ ଅଧ୍ୟାପନା । ବିମଳ ବ୍ୟାଙ୍କ୍ ମାନେଜର ଭାବେ ଅବସ୍ଥାପିତ । କଥାପୁରୁଷ ତା'ର ଏମ୍,ଏ. କଲାବେଳେ ଭଲ ପାଇଲା ନମିତାକୁ । ମାତ୍ର ଭାଗ୍ୟର ବିଡମ୍ବନା ଯେ ପାଠପଢା ଶେଷ ହେବା ପରେ ଦୁଇବର୍ଷ ପର୍ଯ୍ୟନ୍ତ ବେକାର ଥିବା କଥାପୁରୁଷକୁ ନମିତାର ପରିବାର ଲୋକେ ବିବାହ



Digitized by srujanika@gmail.com

ପାଇଁ ରାଜି ହୋଇ ନଥିଲେ । କିଛି ଦିନ ଅନ୍ତରାଳରେ ଅଧ୍ୟାପକ ଚାକିରି ପାଇ କଥାପୁରୁଷ ନମିତାର ଘରେ ପହଞ୍ଚିଲା ବେଳକୁ, ନମିତାର ହୋଇ ସାରିଥାଏ ବାହାଘର । କଥାପୁରୁଷର ଭଗ୍ନପ୍ରେମ ସଂକଳ୍ପ ନେଲା ସାରା ଜୀବନ ଅବିବାହିତ ରହିବ । ବିମଳ ସହିତ ଦେଖା ହେବାପରେ ବିମଳ, କଥାପୁରୁଷକୁ ଲଜ୍‌ରେ ରହିବାକୁ ନ ଦେଇ ଡାକି ନେଇଥିଲା ଘରକୁ । କିନ୍ତୁ ଭାଗ୍ୟର କି ପ୍ରତାରଣା, ଯେତେବେଳେ ବିମଳର ଘରକୁ ଯାଇ କଥାପୁରୁଷ ପହଞ୍ଚିଲା-ସେଠାରେ ସେ ବିମଳର ଧର୍ମପତ୍ନୀ ଭାବେ ଦେଖିଲା ତା'ର ଅତୀତର ପ୍ରେମିକା ନମିତାକୁ । 'ସଂପର୍କ' ଗଳ୍ପରେ ଦିଲ୍ଲୀପ ଭଳି ଏ ଗଳ୍ପରେ କଥାପୁରୁଷ ସେଇ ସହରରେ ଚାକିରିରେ ଯୋଗଦାନ କରିବ ନା' କୌଣସି ବାହାନା ଦେଖାଇ ଛୁଟିରେ ରହିବ ସେଇ ଚିନ୍ତାରେ ବ୍ୟସ୍ତ ହୋଇପଡିବା ଥିଲା ବେଶ୍ ମାନସିକ ଅନ୍ତର୍ଦ୍ୱନ୍ଦ୍ୱ । ଅତୀତ ତାକୁ ଯେ ପୁନଶ୍ଚ ଏକ ଆଶଙ୍କାର ବଳୟ ଭିତରକୁ ଟାଣି ଆଣିଥିଲା-ତାହା ହିଁ କଥାପୁରୁଷର ଆତ୍ମସଂଘର୍ଷ ।

ପୂର୍ବାଲୋଚିତ ତିନିଟିଯାକ ଗଳ୍ପରେ ପ୍ରତିଫଳିତ ହତାଶା ଓ ରିକ୍ତ ନିବିଡ଼ ଅନୁରାଗର ଅନ୍ୟ ଏକ ଭିନ୍ନ ପ୍ରତିରୂପ ହେଉଛି, ବସନ୍ତଙ୍କର 'ସ୍ମୃତିବିସ୍ମୃତି' ଗଳ୍ପ । ଗଳ୍ପରେ କଥାପୁରୁଷ ଅପ୍ରତ୍ୟାଶିତ ଭାବେ କୌଣସି ଏକ ସାହିତ୍ୟ ପତ୍ରିକାରେ ଗୋଟିଏ ଗଳ୍ପ ପଢ଼ି ହେଉଛି ଆଶ୍ଚର୍ଯ୍ୟ । କାରଣ ସେ ଗଳ୍ପଟିର କାହାଣୀ ଥିଲା ତା'ର ଅତୀତ ଜୀବନର ଏବଂ ସେଠି ଚରିତ୍ର ମଧ୍ୟ ସେ ନିଜେ । କ୍ରୋଧରେ ପତ୍ରିକାଟି ଚିରିଦେବା ପାଇଁ ଉଦ୍ୟତ ହେବା ସହ ଲେଖିକାଙ୍କ ବିରୁଦ୍ଧରେ ମାନ ହାନୀ ମକଦ୍ଦମା କରିବା ପାଇଁ କଥାପୁରୁଷ ଚିନ୍ତା କରିବା ଥିଲା ବେଶ୍ ମାନସିକ ଆନ୍ଦୋଳନର ବ୍ୟାପାର । କାରଣ ସେ ଜାଣିବାରେ ରେଣୁ କେବେ ଗପ କିମ୍ୱା କବିତା ରଚନାଭଳି ସୃଜନାତ୍ମକତା ସହ ଜଡ଼ିତ ନଥିଲା । ଯେଉଁ ରେଣୁବାଳାର ପୂର୍ବ ନାୟକ୍ ଥିଲା କଥାପୁରୁଷର ଅତୀତ ଜୀବନର ପ୍ରେମର ନିବିଡ଼, ସମ୍ମୋହନ । କଲେଜ ଜୀବନରେ ଅସାମାନ୍ୟା ସୁନ୍ଦରୀ ରେଣୁ ସହ ସଂପର୍କ ବଢ଼ାଇବା ପାଇଁ ଅନେକ ଲାଳାୟିତ ଥିଲେ ହେଁ ରେଣୁ କିନ୍ତୁ ବାଛି ନେଇଥିଲା କଥାପୁରୁଷଙ୍କୁ । ଆର୍ଥିକ ଅନଟନ ଦେଇ ଗତି କରୁଥିବା ଏବଂ ଟିଉସନ୍ ଆଦି କରି ଜୀବନ ଜିଉଥିବା କଥାପୁରୁଷକୁ ବିବାହ କରବା ପାଇଁ ନିର୍ଭୀକ ଭାବେ ଉପସ୍ଥାପନ କରିଥିଲା ରେଣୁ । କଥାପୁରୁଷ ଅନେକ ବୁଝାଇବା ସତ୍ତ୍ୱେ ବୁଝି ନଥିଲା ରେଣୁ । କ୍ରମଶଃ ଉଭୟଙ୍କ ସଂପର୍କ ଗଭୀରରୁ ହୋଇଥିଲା ଗଭୀରତର । ସ୍ନାତକ ପରେ କଥାପୁରୁଷକୁ ଫେରି ଆସିବାକୁ ପଡ଼ିଥିଲା ସୁଦୂର ଗ୍ରାମକୁ । ରେଣୁ ମଧ୍ୟ ଚାହିଁଲା କଥାପୁରୁଷ ଗାଆଁକୁ ଯିବ । କିନ୍ତୁ ସାମାଜିକ ପ୍ରତିବନ୍ଧକ ଓ ପରିସ୍ଥିତି ତାହା କରାଇ ଦେଇ ନଥିଲା; କିନ୍ତୁ ଉଭୟଙ୍କ ସଂପର୍କ ଚିଠିପତ୍ର ମାଧ୍ୟମରେ ଅତୁଟ ରହିଲା । ଅର୍ଥାଭାବ ଓ ପରିସ୍ଥିତିର ଚାପରେ କଥାପୁରୁଷକୁ କିରାଣୀ ଚାକିରିକୁ ଆବୋରି ନେବାକୁ ହେଲା ଏବଂ ରେଣୁ ସ୍ନାତକୋତ୍ତର ପାଇଁ ଚାଲିଗଲା ଦିଲ୍ଲୀ । ଦୂରତା ଉଭୟଙ୍କୁ କଷ୍ଟ ଦେଲା । ମଝିରେ ମଝିରେ ରେଣୁ ଚାଲି ଆସୁଥିଲା କଥାପୁରୁଷ ପାଖକୁ । ଉଭୟ ଗୋପନରେ ହେଉଥିଲେ ମିଳିତ । କିନ୍ତୁ ଭାଗ୍ୟର ବିଡ଼ମ୍ୱନା ଓ ପରିବାରର



Digitized by srujanika@gmail.com

ବାଧ୍ୟବାଧ୍ୟତାରେ କଥାପୁରୁଷକୁ ଅନ୍ୟତ୍ର ବିବାହ କରିବାକୁ ପଡ଼ିଲା । ବାପାଙ୍କ ସଂକଳ୍ପ ଓ ବୋଉର ନିରବ ଆହତ ଚାହାଁଣିରେ ନିର୍ବାକ ହୋଇଗଲା କଥାପୁରୁଷର ପ୍ରେମ ଓ ପ୍ରତ୍ୟୟର ସପ୍ନିଳ ଅଭୀପ୍‌ସା । ଏ ଘଟଣାରେ ରେଣୁ ବି ଭାଙ୍ଗିପଡିଲା । ସମୟର ସୁଅରେ ରେଣୁ ହେଲା ଆଇ.ଏ.ଏସ୍ । ଏ ଖବର ଯଦିଓ କଥାପୁରୁଷ ଜାଣିଥିଲା, କିନ୍ତୁ ରେଣୁକୁ ସାମ୍ନା କରିବାର ସାହସ ତାର ନଥିଲା । ଅନେକ ବ୍ୟବଧାନରେ ସାହିତ୍ୟ ପତ୍ରିକାରେ ପ୍ରକାଶିତ ଗଳ୍ପଟି କିନ୍ତୁ ଚହଲାଇ ଦେଇଥିଲା କଥାପୁରୁଷକୁ । 'ସ୍ମୃତିବିସ୍ମୃତି' ର ଅସରନ୍ତି ଦୀର୍ଘଶ୍ୱାସ ।

ପ୍ରେମ-ହତାଶା-ଅବ୍‌ସୋସ୍-ତାଡନା-ଅସହାୟତା ସନ୍ତ୍ରସ୍ତବୋଧ ଓ ଅନ୍ତହୀନ ନିଃସଙ୍ଗତା ପିଷ୍ଟ ଏହି ଗଳ୍ପଗୁଡିକରେ ବସନ୍ତଙ୍କର ପ୍ରେମିକ କଥାନୁସଂପୃକ୍ତିରେ ଆବେଗର ଫୁଆର, ସତରେ ଭିଜାଇ ଦେଇପାରେ ପାଠକକୁ । କଥାକାରଙ୍କର 'ପ୍ରତିଶୋଧ' ବି ସେହିଭଳି ପ୍ରେମ ଓ ପ୍ରତ୍ୟାଖ୍ୟାନ ସହ ତୀବ୍ର ଅବସୋସ ଆଣି ଦେଇପାରେ ଚରମ ଅସନ୍ତୋଷ ଓ ପଶ୍ଚାତାପ । ବସନ୍ତଙ୍କର ଏ ଗଳ୍ପକୁ ଏକ ଶ୍ରେଷ୍ଠ ଗଳ୍ପର ପର୍ଯ୍ୟାୟଭୁକ୍ତ କରାଯାଇପାରେ । ପ୍ରତିଶୋଧରେ ଯୁବ ଇଞ୍ଜିନିୟର ଧୀରାଜ ଆସି ପହଞ୍ଚିଛି ନିରୀହ ସରଳ ଆଦିବାସୀମାନଙ୍କ ଗହଣରେ; ସେମାନଙ୍କ ଜୀବନରେ ଆଧୁନିକତାର ସ୍ପର୍ଶ ଆଣିଦେବାର ଅଂଗୀକାର ନେଇ । ସେଇ ଟାକିବେଡା ଗାଆଁକୁ ଧୀରାଜକୁ ଅନୁସରଣ କରି ଆସି ଡାକ୍ତର ଭାବେ ଯୋଗ ଦେଲା ଅସୀମା । ଅସୀମା ଥିଲା ଧୀରାଜର ସ୍କୁଲ ବେଳର ସାଥୀ ଏବଂ ଉଭୟଙ୍କ ଭିତରେ ରହିଛି ଅତୀତର ପ୍ରେମିଳ ସମ୍ମୋହନ । ରହିଛି ଅନୁରାଗ କିନ୍ତୁ ଧୀରାଜର ପ୍ରଗଲ୍‌ଭ ମନକୁ ଅସୀମାର ରୂପ-ଲାବଣ୍ୟ ବାନ୍ଧି ରଖି ପାରେ ନାହିଁ । ଟାକିବେଡାର ଅରଣ୍ୟ ସୁଷମା ଓ ସୌନ୍ଦର୍ଯ୍ୟ ପାଇଁ ଧୀରାଜ ମୁହଁ ଫେରାଇ ନେଇଛି ଅସୀମା ଠାରୁ । ଅସୀମା କିନ୍ତୁ ହରାଇବାକୁ ଚାହୁଁ ନାହିଁ ଧୀରାଜକୁ । ଏଇ ଧୀରାଜ ପାଇଁ ଦିନେ ଅସୀମା ଟାଣି ହୋଇଆସିଥିଲା ଅଗମ୍ୟ ଟାକିବେଡାକୁ, ଆଜି କିନ୍ତୁ ଧୀରାଜର ବଂଶୀରେ କରୁଣ ମୂର୍ଚ୍ଛନା ପ୍ରତିଟି ନିର୍ଜନ ଆରଣ୍ୟକ ରାତିର ଛାତିକୁ ଦୋହଲାଇ ଦେଉଛି । ଧୀରାଜ ସତେକି କାହାପାଇଁ ଝୁରି ହେଉଛି ଯେଉଁଠି ଅସୀମାର ଅସ୍ତିତ୍ୱ ନାହିଁ । ଟାକିବେଡାର ମୁଖିଆ ଆଦିବାସୀ କନ୍ୟା ମଣି ପାଇଁ ଧୀରାଜର ବଂଶୀରେ କାରୁଣ୍ୟର ସ୍ୱର ଦୋହଲାଇ ଦେଉଥିଲା ସମଗ୍ର ଅରଣ୍ୟ ସୁଷମା । ମଣି ବି ମୋହିତ ଓ ପ୍ରଲୁବ୍ଧ ଥିଲା ବାବୁ ପ୍ରତି । କ୍ରମଶଃ ଜାଙ୍ଗଲିକ ଆରଣ୍ୟକ ପରିବେଶରେ ମିଳିତ ହେଲେ ଧୀରାଜ ଓ ମଣି । ଉଭୟଙ୍କର ନିବିଡତା ଯେତେ ବଢୁଥିଲା, ଅସୀମାର ଧୈର୍ଯ୍ୟ ବାଲିବନ୍ଧ ସେତେ ଭାଙ୍ଗି ପଡୁଥିଲା । ସେହି ଭଳି ମଣିକୁ ଆଖି ପକାଇଥିବା ତଥା ବାହା ହେବାକୁ ଚାହୁଁଥିବା ଆଦିବାସୀ ଯୁବକ ରାମିଆର ବି ଯୌନଗତ ଇର୍ଷା ରୂପାନ୍ତରିତ ହେଉଥିଲା କ୍ରୋଧାଗ୍ନିରେ । ଦୁର୍ଦ୍ଧର୍ଷ, ମଦ୍ୟପ, କାମୁକ ରାମିଆ ପାଇଁ ପ୍ରତିବନ୍ଧକ ହେଲା ଧୀରାଜ । ଠିକ୍ ସେହିଭଳି ଅସୀମା ପାଇଁ ପ୍ରତିବନ୍ଧକ ସାଜିଲା ମଣି । ଠିକ୍ ଚଇତି ପରବ ଦିନ ଅସୀମା ତା'ର ଭାରସାମ୍ୟ ହରାଇ ମଣିକୁ ଗୁଳିବିଦ୍ଧ କଲା ଏବଂ ଅପର ପକ୍ଷରେ ଧୀରାଜକୁ ହତ୍ୟା କଲା



Digitized by srujanika@gmail.com

ରାମିଆ । ଉଭୟଙ୍କର ଯୌନଲିପ୍ସା ଓ ଯୌନଗତ ଈର୍ଷାରେ ଟଳି ପଡିଲେ ଦୁଇ ପ୍ରେମୀ ଯୁଗଳ । ଅସୀମା ଦ୍ୱାରା ଗୁଳିବିଦ୍ଧ ହୋଇ ମଣି ଧାଇଁ ଯାଇଥିଲା ତା'ର ପ୍ରିୟତମ ଧୀରାଜ ପାଖକୁ, କିନ୍ତୁ ତା ପୂର୍ବରୁ ଧୀରାଜ ଆଉ ନଥିଲା ସଂସାରରେ । ରକ୍ତ ଜୁଡୁବୁଡୁ ଧୀରାଜର ମୃତଦେହ ଉପରେ ସେଇଠାରେ ହିଁ ଟଳି ପଡିଥିଲା ମଣି । ରାମିଆ ମଣିକୁ ଖୋଜି ଖୋଜି ଆସି ମଣିକୁ ଭିଡି ଧରିଲା ବେଳେ ମଣିର ନିଷ୍ପନ୍ଦ ଶରୀର ଆରମ୍ଭ କରିଦେଲା ବିକଟାଳ ଚିତ୍କାର । ଆଉ ସେତେବେଳକୁ ଆରଣ୍ୟକ ସୁଷମାର ନିବିଡ କାରୁଣ୍ୟ ଭିତରେ ମିଶି ସାରିଥିଲା ଗୋଟିଏ ନିରୀହ ପ୍ରେମ କାହାଣୀ । ସେଇ ରାତିରେ ରାମିଆ ରୂପାନ୍ତରିତ ହେଲା ଏକ ପାଗଳରେ ଆଉ ଧୀରାଜ ଘଟଣାରେ ଅଜ୍ଞାତ ଥିବା ଅସୀମା ସକାଳ ହେବା ବେଳକୁ ଧୀରାଜକୁ ପରିପୂର୍ଣ୍ଣ ପାଇଯାଇଥିବାର ଲିପ୍ସାରେ ହେଉଥିଲା ବିଭୋର । "ପ୍ରତିଶୋଧ" ଗଳ୍ପରେ ଧୀରାଜ ଓ ମଣିର ସରଳ ଭଲ ପାଇବା, ପରିଣତି ଲାଭ କରିପାରି ନାହିଁ-ରାମିଆ ଓ ଅସୀମାର 'ଯୌନଈର୍ଷା' କାରଣରୁ । ସେଇ ଭଙ୍ଗୁର ବିବେକବୋଧରୁ ଚାରି ଚାରିଟି ମଣିଷ ହରାଇ ଦେଲେ ସୁକୁମାର ଜୀବନକୁ । ସେକ୍ସୁଆଲ୍ ଜେଲସିନେସ୍ ବା ଯୌନଗତ ଈର୍ଷାର କରାଳ କୁରାଢ଼ି ସେତେବେଳକୁ ହାଣି ସାରିଥିଲା ସୁକୁମାର କୋମଳ ପ୍ରେମର ସୁଷମିତ ଲତାକୁ । ହଜି ସାରିଥିଲା ଜୀବନବୋଧ ପ୍ରେମର ଭିନ୍ନ ଭିନ୍ନ ଅନ୍ୱେଷଣରେ ।

ବସନ୍ତ କିଶୋରଙ୍କ ଏଇ ସବୁ ଗଳ୍ପରେ ପ୍ରେମର ନିବିଡ ଆଶ୍ଲେଷ ଖୁବ୍ ଉଷ୍ମ ଅଥଚ ତାର ପରିଣତି ସବୁବେଳେ ହତାଶାପୂର୍ଣ୍ଣ । ସବୁବେଳେ ଆଣି ଦେଇଛି କୁଢ କୁଢ ଦୀର୍ଘଶ୍ୱାସ । ସବୁଠି ପ୍ରାୟ ପ୍ରେମିକମାନେ ସମସ୍ୟା ବିଜଡିତ ହୋଇ ଭଲ ପାଇଥିବା ସତ୍ତ୍ୱେ ପ୍ରେମିକା ମାନଙ୍କୁ କରିଛନ୍ତି ପ୍ରତାରିତ, ଅଥବା ପ୍ରତ୍ୟାଖ୍ୟାନ । ଏବଂ ପ୍ରେମିକାମାନେ ପ୍ରେମର ତାଡନାରେ ସାମୟିକ ଭାଙ୍ଗି ପଡିଥିଲେ ହେଁ ଆପଣେଇ ନେଇଛନ୍ତି ନିୟତିକୁ । ଆଉ ନିଜକୁ ପୁନଶ୍ଚ ପ୍ରତିଷ୍ଠା ଦେଇଛନ୍ତି ସମାଜରେ ବିଭିନ୍ନ ସ୍ତରରେ ଏବଂ ପ୍ରାୟ ସବୁଠି ବସନ୍ତଙ୍କ ପ୍ରେମିକମାନେ ମନେ ହୋଇଛନ୍ତି ଅତ୍ୟନ୍ତ ତୁଚ୍ଛ ପୁଣି ଅତୀବ ଭୀରୁ ପୁଣି ପଳାତକ । 'ସଂପର୍କ'ର ପଙ୍କଜା ବା 'ସ୍ମୃତି ବିସ୍ମୃତି'ର ରେଣୁବାଳା-ଏମାନେ ହାରି ଯାଇ ନାହାନ୍ତି । ଜଣେ ଉପରିସ୍ଥ ଅଫିସର ସାଜିଥିବା ବେଳେ ଅନ୍ୟ ଜଣେ ସାଜିଛି ପ୍ରଶାସକ । ସେମାନଙ୍କର ନିଉମିକତା ଓ ସାମର୍ଥ୍ୟ ଉପହାସ କରିଛି ପ୍ରେମିକ ମାନଙ୍କର ଅପାରଗତା ଓ ଅକ୍ଷମତାକୁ । ଅପର ପକ୍ଷରେ ଯନ୍ତ୍ରଣାରେ ଛଟ ପଟ ହେଉଥିବା ପକ୍ଷୀଟିଏର ଲିପି ବା ଶଙ୍କା ଗଳ୍ପର କଥାପୁରୁଷ ସ୍ୱ ସ୍ୱ ପ୍ରେମକୁ ଭୁଲି ପାରିନାହାନ୍ତି ଏବଂ ଉଭୟ ବିବାହ ନ କରି ସନ୍ତୁଳି ହୋଇଛନ୍ତି ସମଗ୍ର ଜୀବନ । ଉଭୟଙ୍କ ଭିତରେ ଅବସୋସ ନଥିଲେ ହେଁ ପ୍ରେମରେ ଅପୂର୍ଣ୍ଣତା ସେମାନଙ୍କ ପାଇଁ ସାଜିଛି ନିୟତିର ଚରମ ଉପହାସ । ସେହିଭଳି ପ୍ରେମର ପ୍ରତିହିଂସାର ଏକ ଚିତ୍ର ପରଶା ହୋଇଛି 'ପ୍ରତିଶୋଧ' ଗଳ୍ପରେ । ସେକ୍ସୁଆଲ ଜେଲସିନେସ୍‌ର ଆକ୍ରାନ୍ତ ହୋଇ କାମାନ୍ଧ ରାମିଆ ଓ ଅସୀମା ସାଜୁଛନ୍ତି ହତ୍ୟାକାରୀ । ଯେଉଁମାନେ ଭାବିଛନ୍ତି ପ୍ରତିଶୋଧ ଦ୍ୱାରା ପାଇଯିବେ ପ୍ରେମର କୋମଳ



Digitized by srujanika@gmail.com

ବିଶ୍ୱାସ ଓ ସୂକ୍ଷ୍ମ ମନର ଗହନ ଉପବନ, କିନ୍ତୁ ସର୍ବଶେଷରେ ହତାଶା ହିଁ ସମଗ୍ର ଗଳ୍ପକୁ ଭରିଦେଇଛି ଅନ୍ତହୀନ କାରୁଣ୍ୟରେ ।

॥ ଦୁଇ ॥

ଗୋଟଏ କଥାରେ କହିଲେ, ବସନ୍ତ କିଶୋରଙ୍କ ସବୁ ଗଳ୍ପ ହେଉଛି ପ୍ରେମ ଗଳ୍ପ । ହୋଇପାରେ ପୂର୍ବାଲୋକନ ପ୍ରେମ-ସମ୍ବେଦନାର ଗଳ୍ପଗୁଡିକ ଠାରୁ 'ସ୍ୱୟଂବର' ଓ 'ସୀମା ଏକ ପ୍ରଗଲ୍‌ଭ ନଦୀ'ର ପ୍ରେମ-ସମ୍ବେଦନା ସମ୍ୟକ୍ ଭିନ୍ନ । କିନ୍ତୁ ଏ ଗଳ୍ପ ଦ୍ୱୟରେ ମଧ୍ୟ ଆଲୋଚିତ ଗଳ୍ପ-ନାୟିକାମାନେ ପୂର୍ବାଲୋଚିତ ଲିପି, ପଦ୍ମଜା, ରେଣୁ ବା ଅସୀମା ଠାରୁ ଅଲଗା ନୁହନ୍ତି । କାରଣ ବସନ୍ତଙ୍କ ଗଳ୍ପନାୟିକାମାନେ ପ୍ରେମିକମାନଙ୍କ ଠାରୁ ଅଧିକ ନିର୍ଭୀକ ଓ ଅଧିକ ଅସ୍ତିତ୍ୱବାଦୀ । ସ୍ୱୟଂବର ଗଳ୍ପରେ ତପତୀ ମଧ୍ୟ ଠିକ୍ ଲିପି-ପଦ୍ମଜା-ରେଣୁବାଳା-ଅସୀମା ଭଳି ଆତ୍ମ ସଚେତନ ଓ ନିର୍ଭୀକା । ଯିଏ କି ବଣେଇ ମହାବିଦ୍ୟାଳୟରେ ମନସ୍ତତ୍ତ୍ୱ ବିଭାଗରେ ଅଧ୍ୟାପିକା ଭାବେ ଚାକିରି କରେ । ବାପା-ବୋଉଙ୍କ ତପତୀର ବିବାହ ନେଇ ବ୍ୟସ୍ତତା ଓ ବାଧ୍ୟତା ଆଣିଦେଇଛି ହତାଶା । ସେଇଥି ପାଇଁ ହିଁ ଦୀର୍ଘପଥ ଅତିକ୍ରମ କରି ଆସି ପହଞ୍ଚିଛି ସୁଦୂର କୋରାପୁଟରେ । ମନରେ ଆଶା ବାନ୍ଧିଛି ଯେ ପଲ୍ଲବ ତାକୁ ଅବଶ୍ୟ ବିବାହ କରିବେ । କିନ୍ତୁ ତପତୀ ଜାଣେ ନାହିଁ ଯେ ତା'ର ଆଶା ପୂର୍ଣ୍ଣ ହେବ କି ନାହିଁ । କାରଣ ବାଲେଶ୍ୱରରୁ ବାପାଙ୍କ ଠାରୁ ଆସିଥିବା ଟେଲିଗ୍ରାମ୍ ପାଇ ପଲ୍ଲବ ଗାଆଁକୁ ଯାଇ ଫେରିନାହାନ୍ତି ତିନି ଦିନ ହେଲା । ତପତୀ ପଲ୍ଲବଙ୍କ ସାନ ଭାଇ ପୁଲକର ନିର୍ଭୟ, ଆତିଥ୍ୟ ଗ୍ରହଣ କରିଛି ଏବଂ ଅପେକ୍ଷା କରିଛି ପଲ୍ଲବଙ୍କୁ । ପଲ୍ଲବ ଥିଲେ ତପତୀଙ୍କ ବଡଭାଇଙ୍କର ବନ୍ଧୁ । ଯାହାଙ୍କ ପାଇଁ ତପତୀ ଏକଦା ଏମ.ଏ. ପାଠ ପଢି ପାରିଥିଲେ । ଆଉ ସେଥିପାଇଁ ସେ ଆଜି ଅଧ୍ୟାପିକା ଭାବେ ଅବସ୍ଥାପିତ । କାରଣ ପରିବାରରେ କେହି ହେଲେ ତପତୀଙ୍କ ପାଠପଢିବା ନେଇ ରାଜି ନଥିବା ବେଳେ, ପଲ୍ଲବ ହିଁ ସମସ୍ତଙ୍କୁ ବୁଝାଇ ପାରିଥିଲେ । ତପତୀ ଓ ପଲ୍ଲବଙ୍କ ଭିତରେ କ୍ରମଶଃ ପ୍ରେମର ଆଦ୍ୟାରମ୍ଭ ହୋଇ ଯାଇଥିଲା । କିନ୍ତୁ ସେମାନେ କୌଣସି କୂଳ ଲଂଘନ କରି ନଥିଲେ । ହଠାତ୍ ଦିନେ ପଲ୍ଲବ ତପତୀଙ୍କୁ ବିବାହର ସମ୍ମତି ଚାହିଁ ପତ୍ର ଲେଖିଲେ । ତପତୀ ଏ ପ୍ରସ୍ତାବରେ ଅତ୍ୟନ୍ତ ପୁଲ୍ଲକିତ ହୋଇଥିଲେ ହେଁ ସାମାଜିକ ଭୟ, ଦ୍ୱନ୍ଦ୍ୱ ଓ ହେତୁହୀନ ସଂଶୟ ପଲ୍ଲବଙ୍କୁ ଅନ୍ୟତ୍ର ବିବାହ କରିଯିବାକୁ କରିଥିଲା ଅନୁରୋଧ । ଏପରିକି ପ୍ରେମରେ ଅନାବିଳତା ଓ ଏକାନ୍ତ ଇଚ୍ଛା ସତ୍ତ୍ୱେ ତପତୀ ପ୍ରେମରୁ ଓହରିଯିବା ଏବଂ ପଲ୍ଲବ ମଧ୍ୟ ବିବାହ ସମ୍ମତି ମାଗି ଭୁଲ କରିଥିବା ମନେକରି କ୍ଷମା ପ୍ରାର୍ଥୀ ସାଜିବା-ସ୍ୱୟଂବର ଗଳ୍ପର ଅଖୋଲା ଗଣ୍ଠି । କାରଣ ଏହାଥିଲା ଉଭୟଙ୍କ ପାଇଁ କେବଳ ଏକ ସାମାଜିକ ଦ୍ୱନ୍ଦ୍ୱର ସଂଶୟ । ପଲ୍ଲବଙ୍କୁ କ୍ଷତାକ୍ତ କରି ତପତୀ କିନ୍ତୁ ପାଇଥିଲା ମାନସିକ ଯନ୍ତ୍ରଣା । ସେଇଠାରୁ ହିଁ ପ୍ରେମ ହୋଇଥିଲା ଅଧିକ ଗଭୀର । ସେଇ ହଜିଯାଇଥିବା ସୂତାର ଖିଅକୁ ଯୋଡିବା ପାଇଁ ସ୍ୱୟଂବର ସଦୃଶ ତପତୀ ଧାଇଁ ଆସିଥିଲା ସୁଦୂର କୋରାପୁଟ । ତପତୀର ଏହି ଅପ୍ରତ୍ୟାଶିତ ଭାବେ କୋରାପୁଟ ଆସିବା ଏବଂ ପଲ୍ଲବଙ୍କୁ ଅପେକ୍ଷା କରିବା ଥିଲା



Digitized by srujanika@gmail.com

ଗଳ୍ପର ସର୍ବାଧିକ ରୋମାଞ୍ଚିତ ଓ ପ୍ରତୀକ୍ଷାର ପୁଲ୍ଲକିତ ମୁହୂର୍ତ୍ତ । ତପତୀର ପ୍ରତୀକ୍ଷା, ଅଭିମାନ ଓ ପ୍ରେମ ଆଣି ଦେଇଛି ମଧୁର ବେଦନା .... ଏହି ମଧୁର ବେଦନାର ଅନ୍ତରୀଣ ପ୍ରଲୁବ୍ଧତା ହିଁ ସୟଂବର ଗଳ୍ପର ଶିହରିତ ରୋମାଞ୍ଚ ।

ସୟଂବର ଗଳ୍ପରେ ପ୍ରଚ୍ଛନ୍ନରେ ଛପି ରହିଥିବା ପ୍ରେମିକ ରୋମାଞ୍ଚ ଭଳି 'ସୀମା ଏକ ପ୍ରଗଲ୍‌ଭା ନଦୀ' ଗଳ୍ପରେ ସୀମାର ରୋମାଞ୍ଚ ବେଶ୍ ସମଧର୍ମୀ । ଗଳ୍ପରେ ନୂଆହୋଇ ବାହା ହୋଇଥିବା ଅତନୁ ଓ ସୀମାର ଆଶ୍ଳେଷର ମଧୁରାତି ଓ ମିଠା ଅନୁଭୂତିଟି ଗଳ୍ପର ପରିଧିକୁ କରିଦେଇଛି ସିକ୍ତମଧୁର । ଦୀର୍ଘ ଦେଢ ମାସର ଖରାଛୁଟି ପରେ ଦୀର୍ଘ ଛଅ ଶହ କିଲୋମିଟର ଦୂର କୋରାପୁଟର ସୁନାବେଡା ଯିବା ପାଇଁ ଅତନୁ ପ୍ରସ୍ତୁତ ହେଉଥିବା ବେଳେ ନବବିବାହିତା ପତ୍ନୀ ସୀମାଙ୍କର ପ୍ରଣୟଲିପ୍ତ ଅନୁରୋଧକୁ ଏଡାଇ ନ ପାରି ଅଧିକ ଦିନଟିଏ ରହିଯିବାର ଉତ୍କଣ୍ଠା ଗଳ୍ପରେ ବେଶ୍ ହୃଦ୍ୟ । ଅତନୁ କଟକରେ କାମ ଥିବା ବାହାନା କରିଥିବା ଯୋଗୁଁ ତାଙ୍କୁ ବାଧ ହୋଇ କଟକ ଆସି କ୍ଲାନ୍ତ ହୋଇ ଫେରିବାକୁ ହୋଇଛି ସଂଧ୍ୟାରେ । ରାତି ଆଠଟାରେ ଶୀଘ୍ର ଖାଇନେଇ ସୀମାର ଅପେକ୍ଷା କରିଥିଲେ ଅତନୁ । ସେ ନିଶ୍ଚିତ ଥିଲେ ଯେ ସେ ଶୋଇଗଲେ ମଧ ତାଙ୍କୁ ସୀମା ଆସି ନିଶ୍ଚୟ ଉଠାଇବେ । କାରଣ ରାତ୍ରିର ସେଇ ମଧୁର ମିଳନ ପାଇଁ ହିଁ ତାଙ୍କର ବଢାଇଥିଲେ ଗୋଟିଏ ଦିନ ଛୁଟି । ସେ ବାସନାଟି ଅବଶ୍ୟ ପୂରଣ ମଧ ହେବ ସେ ବିଶ୍ୱାସ ରହିଥିଲା ତାଙ୍କର । ଏପରିକି ବର୍ଷଣ ମୁଖର ସେଇ ରାତିଟି ସତରେ ଥିଲା ଅତ୍ୟନ୍ତ ରୋମାଞ୍ଚକର । କିନ୍ତୁ ସୀମାର ଡାକରେ ଅତନୁଙ୍କର ଯେତେବେଳେ ନିଦ ଭାଙ୍ଗିଲା, ସେତେବେଳକୁ ହୋଇ ସାରିଥିଲା ଫର୍ଚା ସକାଳ । ଅତନୁଙ୍କର ବିରକ୍ତି ଓ' ରାଗକୁ ସ୍ୱଷ୍ଟ ଦେଖିପାରିଥିଲେ ସୀମା । ଅତନୁ ଶୋଇ ପଡିଥିବାରୁ କାଳେ ଉଠେଇଲେ ରାଗିବେ; ତେଣୁ ତାଙ୍କୁ ସୀମା ଉଠାଇ ନଥିଲେ ବକ୍ତବ୍ୟରେ ଅତନୁ ଦେଖାଇଥିଲେ ଅଧିକ ବିରକ୍ତି । ସୀମା, ଅତନୁଙ୍କୁ ଆହୁରି ଦିନେ ରହିଯିବା ପାଇଁ ଅନୁରୋଧରେ ଅତନୁ ତାହା ସମ୍ଭବ ନୁହେଁ ବୋଲି କହିବା ଭିତରେ ଏକ ପ୍ରକାର ମଧୁର ଅସନ୍ତୋଷର ଭାବକୁ ଲକ୍ଷ୍ୟ କରାଯାଇପାରେ । କିନ୍ତୁ ଗଳ୍ପର ଶେଷରେ ସୀମାର ସଂଯୁକ୍ତ ବକ୍ତବ୍ୟ ଥିଲା ଅଧିକ ପ୍ରଗଲ୍‌ଭ " କାଲି ରାତିରେ ମୋ ନିଦ ଦୁଇଥର ଭାଙ୍ଗିଥିଲା । କିନ୍ତୁ ମୁଁ ତୁମକୁ ଉଠାଇଲି ନାହିଁ କାହିଁକି ଜାଣ ? ତୁମର ମୋ ପ୍ରତି ଯେଉଁ ଆକର୍ଷଣ ଅଛି, ତାହା କମି ଯାଇଥାନ୍ତା । ସେଠି ମୋ କଥା ତୁମର ଆଉ ମନେ ପଡି ନଥାନ୍ତା । ସ୍ୱାମୀର ସ୍ତ୍ରୀ ପ୍ରତି ଏଇ ଆକର୍ଷଣ ଭାବ ପାଇଁ ସ୍ତ୍ରୀ ଖୁସି ହୁଏ । ଦୁଃଖରେ ବି ତା ମୁହଁରେ ହସର ଝଲକ ଖେଳିଯାଏ ।" ଏହି ବକ୍ତବ୍ୟ ହିଁ ସମଗ୍ର ଗଳ୍ପର କଥାଂଶ । ଯେଉଁଠି ପ୍ରଣୟର ଅପୂର୍ବ ମହକ ଓ ମଧୁରତାକୁ ଉପଲବ୍ଧି କରାଯାଇପାରେ ।

ସପ୍ରସଙ୍ଗ ଆଲୋଚନା କରାଯାଇ ପାରେ ବସନ୍ତଙ୍କର 'କର୍ତ୍ତବ୍ୟ' ଗଳ୍ପକୁ । ଏ ଗଳ୍ପରେ ପ୍ରେମ-ପ୍ରଣୟର ସମ୍ବେଦନା ନାହିଁ ଅଥଚ ରହିଛି ବାତ୍ସଲ୍ୟ ପ୍ରେମ ଓ କର୍ତ୍ତବ୍ୟବୋଧ ସାମାଜିକ ଅଙ୍ଗୀକାର ଭାବନା । ଯେଉଁଠି କଥାପୁରୁଷର ମା' ବିଲେଇର ଛୋଟ ଛୋଟ ଛୁଆ ବିଲେଇଙ୍କ ପ୍ରତି ରହିଥିବା ମମତ୍ୱବୋଧ ଏବଂ ସେମାନଙ୍କୁ ଭୁଆଁ ବିରାଡି ଠାରୁ



Digitized by srujanika@gmail.com

ସୁରକ୍ଷା ଦେବା ପାଇଁ ଲେଖକଙ୍କ ଘରର ଆଶ୍ରୟ ସହ କଥାପୁରୁଷର ବିଲେଇ ଛୁଆମାନଙ୍କୁ କ୍ଷୀର ଓ ଦରଜା ବନ୍ଦ କରି ସୁରକ୍ଷା ଦେବାର ଅଙ୍ଗୀକାରରେ ମା' ବିଲେଇ ଭିତରେ ପ୍ରତିଫଳିତ କୃତକୃତ୍ୟ ଭାବ ଗଳ୍ପରେ ବେଶ୍ ସମ୍ବେଦନଶୀଳ । କିନ୍ତୁ ଗଳ୍ପର ଅପର ପକ୍ଷରେ ରାସ୍ତକଡ ନଳାରେ କେହି ଜଣେ ସଦ୍ୟପ୍ରସବିତ ଶିଶୁ କନ୍ୟାଟିଏ ଛାଡିଦେଇ ଚାଲିଯିବାର ଘୃଣ୍ୟ ବୀଭତ୍ସତା, କଥାପୁରୁଷକୁ ଦେଇଛି ଚରମ ଆଘାତ । କାରଣ ନିଜକୁ ଶ୍ରେଷ୍ଠଜୀବ କହୁଥିବା ମଣିଷର ଜଘନ୍ୟତା ଅପେକ୍ଷା ଅନେକ ଗୁଣରେ ଶ୍ରେୟସ୍କର ଓ ମାନବୀୟ ଥିଲା ମା' ବିଲେଇର ବ୍ୟବହାର ଓ ସମ୍ବେଦନା ।

॥ ତିନି ॥

ବସନ୍ତ କିଶୋରଙ୍କ ଗଳ୍ପର 'ଭାବବସ୍ତୁ' (Theme) ପ୍ରାୟତଃ ପ୍ରେମ କୈନ୍ଦ୍ରିକ । କିନ୍ତୁ ସେଇ ପ୍ରେମ ମିଳନ ଓ ପରିପୂର୍ଣ୍ଣତା ଅପେକ୍ଷା ବିଚ୍ଛେଦ ଓ ହତାଶାର ହୋଇଛି କାରଣ । ପ୍ରେମ ଓ ହତାଶାର ଘୂର୍ଣ୍ଣିବଳୟରେ ବସନ୍ତଙ୍କ ଗଳ୍ପ ସେଥିପାଇଁ ଅଧିକ ଛୁଇଁପାରେ ହୃଦୟକୁ । ଗଳ୍ପଗୁଡିକର ଶିଳ୍ପ (Craft) ଓ ଶୈଳୀ (Style) ପ୍ରସଙ୍ଗ ଆଲୋଚନା କଲାବେଳେ ଆମେ ଦେଖିବା ଯେ ଗାଳ୍ପିକ ଅଧିକ ପ୍ରଥମ ପୁରୁଷୀୟ ବର୍ଣ୍ଣନାତ୍ମକ ଶୈଳୀ (First person narration style)କୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ସେହିଭଳି ଗାଳ୍ପିକ ବର୍ତ୍ତମାନ କାଳର ବାକ୍ୟ ବ୍ୟବହାର କରି କେତୋଟି ଗଳ୍ପର ଉପସ୍ଥାପନ ଶୈଳୀକୁ ଅଧିକ ହୃଦୟସ୍ପର୍ଶୀ କରିପାରିଛନ୍ତି । ସେ ଦୃଷ୍ଟିରୁ ଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ ଗଳ୍ପ ସ୍ମର୍ତ୍ତବ୍ୟ । ସପ୍ରସଙ୍ଗ ଏଠାରେ ଉଦାହରଣଟିଏ ଦିଆଯାଇପାରେ:-" ନିଜର ସୁନେଲି ଭବିଷ୍ୟତ କଥା ସେତେବେଳେ ସିଏ ଭୁଲି ଯାଇଥିବ । ନିଜ ପ୍ରତି ନିଜର କର୍ତ୍ତବ୍ୟ କଣ ବୋଲି ଭାବୁ ନଥିବ । ଖାଲି କଲେଜ ଯାଉଥିବ ଆଉ ଆସୁଥିବ । ବୃଦ୍ଧ ପିତାମାତା ପାଚିଲା ତାଳ । ଆଜି ଅଛନ୍ତି-କାଲିକି କେତେବେଳେ ଝଡିପଡିବେ କିଏ ଜାଣେ ? ବଂଶରକ୍ଷା ପାଇଁ ଆଉ ଥରେ ବିବାହ କରିବାକୁ ସ୍ତ୍ରୀ ଚିନ୍ମୟକୁ ଅନୁରୋଧ କରୁଥିବ । ତା' କଥା ନ ମାନି ସେ ନିଜ ଜିଦ୍‌ରେ ଅଟଳ ରହୁଥିବ ।"

ବସନ୍ତଙ୍କ ଗଳ୍ପର ପରିସମାପ୍ତିରେ ଥାଏ ଏକ ଭିନ୍ନତା । ଯେଉଁଠି ମୁଖ୍ୟ ଘଟଣାଟି ଘଟି ସାରିଥାଏ ଅଥଚ ଗଳ୍ପ ଚରିତ୍ର ସେଥିରେ ଅସଚେତନ ଥିବା ଅବସ୍ଥାରେ ସରିଯାଏ ଗଳ୍ପ । ଅନେକ ସମୟରେ ସେଇ ଚରିତ୍ରର ପରବର୍ତ୍ତୀ ମନୋଦଶା ସଂପର୍କ ଗଳ୍ପ ଥାଏ ସଂପୂର୍ଣ୍ଣ ନିଶ୍ଚୁପ । ଯେମିତି 'ପ୍ରତିଶୋଧ' ଗଳ୍ପରେ ଅସୀମା ହତ୍ୟାକରି ଚାଲିଆସିଛି ମଣିକୁ ଏବଂ ଅନ୍ୟପଟେ ରାମିଆ ହତ୍ୟାକରି ସାରିଛି ଧୀରାଜକୁ । କିନ୍ତୁ ଗଳ୍ପର ପରିଣତିରେ ଅସୀମା ଭିତରେ ହତ୍ୟା ଜନିତ କୌଣସି ପଶ୍ଚାତାପ କିମ୍ବା ଭୟର ବିଚଳତା ନାହିଁ । ମଣିଷ ମାରିଥିବାର ଅବସୋସ୍ ମଧ୍ୟ ନାହିଁ ଏବଂ ଗଳ୍ପରେ ସ୍ୱାଭାବିକ ପ୍ରାତ୍ୟହିକ ଜୀବନର ପ୍ରାରମ୍ଭ ପରି ଅସୀମା ସକାଳୁ ସକାଳୁ ଧୀରାଜ ସହ ମିଳିତ ହେବାର ପ୍ରତ୍ୟାଶାରେ ବିଭୋର - " ଚଇତି ପୂନେଇ ରାତି ପାହି ସକାଳ ହେଲା । ଆଦିବାସୀଙ୍କର ନାଚ ଗୀତରେ ଭଟ୍ଟା ପଡିଲା ମାତ୍ର ରାମିଆର ଉଚ୍ଛୃଙ୍ଖଳ ହସ ଆଉ ବନ୍ଦ ହେଲାନି । ଆଶ୍ଚର୍ଯ୍ୟ ହେଲେ ସମସ୍ତେ



Digitized by srujanika@gmail.com

କେହି ତାର କାରଣ ଖୋଜି ପାଇଲେନି । ତେଣେ, ଡାକ୍ତର ଅସୀମା ସକାଳର ନିତ୍ୟକର୍ମ ସାରି ଧୀରାଜ ସହ ସଂପର୍କ ନିବିଡ କରିବାକୁ ଯିବା ପାଇଁ ବ୍ୟସ୍ତ ହୋଇ ପଡୁଥିଲେ ।” ଗଳ୍ପର ଏହି ପରିଣତିରେ ଅସୀମାର କୌଣସି ଚିତ୍ତ-ଚାଞ୍ଚଲ୍ୟ ନାହିଁ, ଯେମିତି ଘଟାଇଥାନ୍ତି ରୀତିମତ ହତ୍ୟାକାରୀମାନେ । ଅସୀମାର ଏହି ଅତ୍ୟନ୍ତ ସାଧାରଣ ଓ ସ୍ୱାଭାବିକତାକୁ ମନସ୍ତତ୍ତ୍ୱ କ୍ଷେତ୍ରରେ ହୁଏ ତ ଯୌନ ଈର୍ଷାଗତ ପ୍ରତିଶୋଧ ବା Revenge of Sexual Jealousness ବୋଲି ଆଖ୍ୟା ଦେଇ ପାରିବା ।

ସେହିଭଳି ଗାଳ୍ପିକଙ୍କର ପ୍ରାୟ ପ୍ରତ୍ୟେକ ପରିସମାପ୍ତିରେ ସାଧାରଣ ଓ ସ୍ୱାଭାବିକ ପରିସମାପ୍ତି ଭିତରେ ଅବଶ୍ୟ ଛୁଇଁ ହେବ ମଣିଷର ତୀବ୍ର ମାନସିକ ଦହନର ମନସ୍ତତ୍ତ୍ୱକୁ । ଯେମିତି ସଂପର୍କ ଗଳ୍ପରେ ଦିଲ୍ଲୀପର ପଦ୍ମଜା ଅଧିନରେ କର୍ମଚାରୀ ଭାବେ ରହିବ ନା ବିନା ପଦୋନ୍ନତି ନେଇ ପୁରୁଣା ଚାକିରିକୁ ଫେରିଯିବାର ମାନସିକ ଦ୍ୱନ୍ଦ୍ୱ ବା ‘ଶଙ୍କା’ ଗଳ୍ପରେ ନିଜର ପୂର୍ବ ପ୍ରେମିକାକୁ ବନ୍ଧୁ ବିମଳର ଧର୍ମପତ୍ନୀ ଭାବେ ଅପ୍ରତ୍ୟାଶିତ ଭାବେ ଭେଟି ନୂଆ ଚାକିରିରେ ଯୋଗଦାନ ଦେବ ନା କୌଣସି ଆଳରେ ଛୁଟିରେ ରହିବାର ଭାବନା ବା ‘ସ୍ମୃତିବିସ୍ମୃତି’ ଗଳ୍ପରେ କଥାପୁରୁଷ ପୂର୍ବ ପ୍ରେମିକା ରେଣୁବାଳାର ଠିକଣା ଜାଣିପାରି ତାର ସନ୍ଦେହ ମୋଚନର ଦୋଦୁଲ୍ୟମାନ ଅଭିପ୍ରାୟ ଆଦି ଭିତରେ ତୀବ୍ର ମାନସିକ ବିଚଳନକୁ ଉପଲବ୍ଧି କରାଯାଇପାରେ । ବସନ୍ତଙ୍କ ଗଳ୍ପରେ ଏହି ସ୍ୱାଭାବିକ ପରିସମାପ୍ତିର ଅଭିବ୍ୟକ୍ତି ଭିତରେ ଯେଉଁ ତୀବ୍ର ଆତ୍ମସଂଘର୍ଷକୁ ଉପଲବ୍ଧି କରିହୁଏ ତାହା ହିଁ ବସନ୍ତଙ୍କର କଥାର କାରିଗରୀ ।

ଗଳ୍ପର ଭାଷାରେ ପ୍ରଥମ ପୁରୁଷୀୟ ଶୈଳୀ ଯେଉଁ ଭଳି ଗଳ୍ପକୁ ଏକ ଆତ୍ମକଥକ ମୂଳକ ସ୍ପର୍ଶ ବା Autobiographical Touch ପ୍ରଦାନ କରିଛି ଠିକ୍ ସେହିଭଳି ଗଳ୍ପରେ ଭୌଗୋଳିକ ଦୂରତ୍ୱ ବର୍ଣ୍ଣନା ସହିତ କୋରାପୁଟ ଏବଂ ତତ୍ ସଂଲଗ୍ନ ଅଞ୍ଚଳ ଯଥା : ସୁନାବେଡା, ଜୟପୁର, ଟାକିବେଡା ଆଦି ଅଞ୍ଚଳର କଥାଭୂମି ଗଳ୍ପକୁ ଆଞ୍ଚଳିକ ସ୍ପର୍ଶ ଦେଇ ଅଧିକ ସ୍ପର୍ଶୀ କରିପାରିଛି । ପରିଶେଷରେ କଥାକାର ବସନ୍ତଙ୍କୁ ସାହିତ୍ୟିକ ନ୍ୟାୟ ଦେଲା ବେଳେ ଜଣେ ଆଶାବାଦୀ, ସମ୍ବେଦନଶୀଳ ଓ ସକାରାତ୍ମକ ପ୍ରତ୍ୟାଶାରେ ବିଶ୍ୱାସୀ ସମାଜାନୁବଦ୍ଧ କଥାକାର ବୋଲି କୁହାଯାଇପାରେ । ଏପରିକି କୁହାଯାଇପାରେ ଯେ : ପ୍ରେମ, ହତାଶା, ଅନ୍ତର୍ଦ୍ୱନ୍ଦ୍ୱ ଓ ଅବସୋସ୍‌ର କରୁଣ କଥାକଳ୍ପ ହିଁ ବସନ୍ତଙ୍କ ଗଳ୍ପ ।



ଆସିଷ୍ଟାଣ୍ଟ ପ୍ରଫେସର ଓଡ଼ିଆ
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଓଡ଼ିଶା, କୋରାପୁଟ



Digitized by srujanika@gmail.com

# ଓଡିଆ ସାହିତ୍ୟକୁ
# ଡକ୍ଟର ବସନ୍ତ କିଶୋର ସାହୁଙ୍କ ଦାନ

### ଡକ୍ଟର ଅଶୋକ କୁମାର ହୋତା

ଗୋକର୍ଣ୍ଣିକା ପତ୍ରିକାରେ ପ୍ରକାଶିତ ଶ୍ରୀ ଅଶୋକ କୁମାର ମହାନ୍ତିଙ୍କ ଓଡିଆ ଶିଶୁ ସାହିତ୍ୟ ସଂପର୍କୀତ ଆଲୋଚନାଟି ପଢିବା ପରେ ଶିଶୁ ସାହିତ୍ୟ ଆଡକୁ ମୋର ମୋହ ସୃଷ୍ଟି ହୋଇଥିଲା । ତେଣୁ ଏହା ପରେ ପରେ ଶିଶୁ ସାହିତ୍ୟ ଉପରେ ବହୁ ଲେଖକଙ୍କ ଲେଖା ପଢିଛି । ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ (RIOCL)ର ଆଲୋଚନା ଚକ୍ର ଭବାନୀପାଟଣା ଓ ରାହାମା ଠାରେ ଅଂଶ ଗ୍ରହଣ କରି ଡଃ ମନୀନ୍ଦ୍ର ମହାନ୍ତି, ଡଃ. ଅଧିକାରୀ ଶ୍ରୀକାନ୍ତ ଦାସ, ଡଃ. ଜଗନ୍ନାଥ ମହାନ୍ତି, ନଦିଆ ବିହାରୀ ମହାନ୍ତି, ସୂର୍ଯ୍ୟମଣି ସାମନ୍ତରାୟ, ନନ୍ଦ କିଶୋର ସାମଲ, ରାଜ କିଶୋର ପାଢୀ, ଡଃ.କୃତ୍ତିବାସ ନାୟକ ଆଦି ବହୁ ଗବେଷକ ଶିଶୁ ସାହିତ୍ୟିକଙ୍କ ସଂସ୍ପର୍ଶରେ ଆସିଛି । ମୋର " ଶିଶୁ ବ୍ୟକ୍ତିତ୍ୱର ବିକାଶ ଦିଗରେ ଓଡିଆ ଶିଶୁ ସାହିତ୍ୟ ପତ୍ରିକା-ଏକ ବିଚାର" ଶୀର୍ଷକ ଆଲୋଚନା ଝଙ୍କାର ପତ୍ରିକାରେ ପ୍ରକାଶିତ ହେବା ପରେ ବହୁ ଲୋକଙ୍କ ପାଠକୀୟ ଶ୍ରଦ୍ଧା ମୋର ସେ ଦିଗରେ ଥିବା ଉତ୍ସାହକୁ ଦ୍ୱିଗୁଣିତ କରିଛି ।

ଏହି ସଂପର୍କୀତ ଖଣ୍ଡେ ପତ୍ର ଡଃ. ବସନ୍ତ କିଶୋର ସାହୁଙ୍କ ଠାରୁ ମଧ୍ୟ ପାଇଥିଲି । ପରେ ଏରୋନଟିକ୍‌ସ କଲେଜରେ ଅଧକ୍ଷ ପଦର ସାକ୍ଷାତକାର ପାଇଁ ସୁନାବେଡା ଯାଇଥିଲି ଓ ସେଠି ଅତିଥି ଭବନରେ ବସନ୍ତ ବାବୁଙ୍କ ସହ କିଛି ସମୟ ଆଳାପ କରିଥିଲି, ପରେ ତାଙ୍କ ବାସଗୃହରେ ତାଙ୍କ ସହ ବିଭିନ୍ନ ବିଷୟରେ ଆଲୋଚନା କରିଥିଲୁ । ଏଇମିତି ଭାବରେ ଡଃ ସାହୁଙ୍କ ସହ ମୋର ସାରସ୍ୱତ ସଂପର୍କ ନିବିଡତର ହେବାକୁ ଲାଗିଲା । ହଠାତ୍ ଦିନେ ଅଭିନନ୍ଦନ ଗ୍ରନ୍ଥ ପାଇଁ ଲେଖାଟିଏ ଦେବାକୁ ଉଦ୍ୟୋକ୍ତା ମାଡାମ୍ ସରଳା ବେହେରା ମୋବାଇଲ ଯୋଗେ ମୋତେ ଅନୁରୋଧ କଲେ ଓ ମୁଁ ତତ୍‌କ୍ଷଣାତ୍ ଆସ୍ତିକ ଉତ୍ତରଟିଏ ଦେଇଥିଲି ଓ ତା'ର ଫଳଶ୍ରୁତି ହେଉଛି ଏହି ଆଲୋଚନା ।

ଡକ୍ଟର ସାହୁଙ୍କ ସମଗ୍ର ସାହିତ୍ୟକୃତିକୁ ପ୍ରକାଶିତ ଯଥାକ୍ରମେ ବିଦଗ୍ଧ ସାହିତ୍ୟ, କୋରାପୁଟ କୈନ୍ଦ୍ରୀକ, ଜଗନ୍ନାଥ ସଂପର୍କୀତ, ବ୍ୟକ୍ତିତ୍ୱ ଭିତ୍ତିକ, ଶିଶୁ-ସାହିତ୍ୟ, ଗବେଷଣା କୈନ୍ଦ୍ରିକ, ଲଘୁ ଆଲୋଚନା, ସଂପାଦିତ ଗ୍ରନ୍ଥ ଭାବରେ ତାଲିକାଭୁକ୍ତ କରାଯାଇପାରେ । ସେ ଗୁଡିକ ଉପରେ ବର୍ତ୍ତମାନ ଆଲୋଚନା କରାଯାଉଛି ।



Digitized by srujanika@gmail.com

**ବିଦଗ୍ଧ ସାହିତ୍ୟ :**

ଡଃ. ସାହୁଙ୍କ ପ୍ରକାଶିତ ଆଲୋଚନା ଭିତରେ ରହିଛି ଓଡିଆ ସାହିତ୍ୟ ମଧ୍ୟରେ ନନ୍ଦ କିଶୋର ତ୍ରୟୀଙ୍କ କବିତାରେ ପଲ୍ଲୀଚିତ୍ର, ସ୍ୱତନ୍ତ୍ର ଓଡିଶା ଗଠନରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଦାନ, କୃଷ୍ଣ ସିଂହଙ୍କ ଚୌପଦିରେ ରତି ଓ ପ୍ରୀତି, ସାଂପ୍ରତିକ କବିତାର ସାମାଜିକ ରୂପରେଖ, ଓଡିଆ କବିତାରେ ବ୍ୟଙ୍ଗ, ମୂଲ୍ୟବୋଧ ଭିତ୍ତିକ ଶିକ୍ଷା ବିକାଶରେ ଭାଷା ଶିକ୍ଷକଙ୍କ ଭୂମିକା, ଓଡିଆ ଭାଷାକୁ ବଞ୍ଚାଇ ରଖିବା ଦିଗରେ ଅଣ ଓଡିଆଙ୍କ ଅବଦାନ, ସାନ୍ତାଳୀ ଲିପି, ଭାଷା ଓ ସଂଗୀତ ଇତ୍ୟାଦି ପ୍ରବନ୍ଧ ଓ ଆଲୋଚନାଗୁଡ଼ିକ ଓଡିଶାର ବିଭିନ୍ନ ପତ୍ର ପତ୍ରିକାରେ ସ୍ଥାନ ପାଇଛି ।

**କୋରାପୁଟ କୈନ୍ଦ୍ରୀକ :**

ଏହି ଶ୍ରେଣୀର ପ୍ରବଂଧ ଗୁଡିକ ହେଲା: କୋରାପୁଟରର ଚଇତି ପର୍ବ, କୋରାପୁଟର ନୃତ୍ୟ ସଂଗୀତ, କୋରାପୁଟର ଭାଷା, ଓଡିଶାର ଭୂସର୍ଗ କୋରାପୁଟ, କୋରାପୁଟର ପରଜା ସଂସ୍କୃତି, କୋରାପୁଟର ପର୍ବପର୍ବାଣି, କୋରାପୁଟର ସାହିତ୍ୟ, ସାହିତ୍ୟିକ ଓ ସାହିତ୍ୟାନୁଷ୍ଠାନ, ବଣ୍ଡା ସଂପ୍ରଦାୟର ଜୀବନ ଚିତ୍ର, ଆଦିବାସୀ କୃଷିଭିତ୍ତିକ ପର୍ବପର୍ବାଣି ଇତ୍ୟାଦି ।

ଏ ଶ୍ରେଣୀର ପ୍ରକାଶିତ ଗ୍ରନ୍ଥ ଗୁଡିକ ମଧ୍ୟରେ ରହିଛି କୋରାପୁଟ ପରିକ୍ରମା (ପ୍ରବଂଧ ସଂ-୧୯୯୨), କୋରାପୁଟ ପରିକ୍ରମା (କବିତା ସଂ-୧୯୯୩), କୋରାପୁଟର ପର୍ବପର୍ବାଣି (୨୦୦୫), କୋରାପୁଟର ଲୋକକଥା (୨୦୦୫), ଆମ କୋରାପୁଟ (୨୦୦୫), ଆମ ଜିଲା କୋରାପୁଟ (୨୦୧୦), କୋରାପୁଟର ଲୋକକଥା (୨୦୧୦) ଇତ୍ୟାଦି ପ୍ରବନ୍ଧ ଓ ପୁସ୍ତକ ।

**ଜଗନ୍ନାଥ ସଂପର୍କୀତ :**

ଭକ୍ତି ରସ ତଥା ସୌନ୍ଦର୍ଯ୍ୟବୋଧ ଭିତ୍ତିକ ଆଲୋଚନା ଭିତରେ ରହିଛି ଭକ୍ତି ଭାବରେ ରଘୁ ବେହେରା, ଭକ୍ତକବି ସାଲବେଗଙ୍କ ରଚନାରେ ଶ୍ରୀ ଜଗନ୍ନାଥ, ସୁନାବେଡାର ସର୍ଣ୍ଣକ୍ଷେତ୍ରରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା, ଭାରତେ ଉତ୍କଳ ଦେଶେ ଭୂସର୍ଗ ପୁରୁଷୋତ୍ତମ, ଶ୍ରୀଜଗନ୍ନାଥ ଚେତନାରେ ପ୍ରକୃତି ଓ ମଣିଷ, ଧୀବର କୁଳେ ଜନ୍ମ ଦେଇ ପାପରେ ଭାଗି କଲୁ ତୁହି, ସାଂପ୍ରତିକ ଗୀତିକବିତାପରେ ଶ୍ରୀଜଗନ୍ନାଥ ଇତ୍ୟାଦି ପ୍ରବନ୍ଧ ଓ ଆଲୋଚନା ।

**ବ୍ୟକ୍ତିତ୍ୱ ଭିତ୍ତିକ :-**

ବ୍ୟକ୍ତିତ୍ୱକୁ ଫୁଲର ମହକ ସହିତ ତୁଳନା କରାଯାଏ । ଡଃ. ସାହୁଙ୍କ ବ୍ୟକ୍ତିତ୍ୱ ଚିତ୍ରଣ ଭିତରେ ରହିଛି ସମସ୍ତଙ୍କର ସାର ବିସ୍ତୀର୍ଣ୍ଣ ବଳରାମ, ଜୀବନ ସଂଗ୍ରାମୀ ଆଦର୍ଶ ଶିକ୍ଷକ କେଶବାନନ୍ଦ ସାହୁ, ନାଟ୍ୟ କଳାକାର ଓ ନିର୍ଦ୍ଦେଶକ କୃଷ୍ଣ ଚନ୍ଦ୍ର ସାହୁ, ସମସ୍ତଙ୍କର



Digitized by srujanika@gmail.com

ପ୍ରିୟ ହେଡ୍‌ମାଷ୍ଟର ରାଜ କିଶୋର ସାହୁ, ଗୁରୁ ଗୌରବ, ଶ୍ରଦ୍ଧାଞ୍ଜଳି, ଆଦର୍ଶ ଶିକ୍ଷକ ଅନନ୍ତ ପୃଷ୍ଟି, ଶାବର କବି ବୀର କିଶୋର ନାୟକ ଇତ୍ୟାଦି ପ୍ରବନ୍ଧ ଓ ଆଲୋଚନା ।

**ଶିଶୁ ସାହିତ୍ୟ :**

ଡକ୍ଟର ସାହୁଙ୍କର ବେଶ୍ ପସନ୍ଦର କ୍ଷେତ୍ର ହେଲା ଶିଶୁ ସାହିତ୍ୟ, ବିଶେଷ କରି ଓଡିଆ ଶିଶୁ ସାହିତ୍ୟ । ପ୍ରକାଶିତ ପ୍ରବନ୍ଧ ଭିତରେ ରହିଛି ଓଡିଆ ଶିଶୁ ସାହିତ୍ୟର ସମାଲୋଚନାର ସମାଲୋଚନା, ଓଡିଆ ଶିଶୁ ସାହିତ୍ୟର ସଂଜ୍ଞା ଓ ସ୍ୱରୂପ, ଓଡିଆ ଶିଶୁ ସାହିତ୍ୟରେ ଚିତ୍ରର ଭୂମିକା, ଓଡିଆ ଶିଶୁ ସାହିତ୍ୟର ଅତୀତ ଓ ବର୍ତ୍ତମାନ, ମୁଁ ଶିଶୁ ସାହିତ୍ୟ ଲେଖେ କାହିଁକି ?, ଶିଶୁ ସାହିତ୍ୟର ବିନିମୟ କାର୍ଯ୍ୟକ୍ରମ, ଶିଶୁ ସାହିତ୍ୟର ସମୃଦ୍ଧି ଓ ପ୍ରସାର ପାଇଁ ଆମେ ସଚେତନ କି ?, ଶିଶୁର ମାନସିକ ବିକାଶରେ ଶିଶୁ ସାହିତ୍ୟର ଭୂମିକା ଆଦି ପ୍ରବନ୍ଧ ଓ ଆଲୋଚନା ।

**ଶିଶୁ କବିତା :**

ଆଲୋଚନା ଭିତରେ ରହିଛି " ଓଡିଆ ଶିଶୁଗୀତରେ ଜହ୍ନ, ଓଡିଆ ଶିଶୁ ଗୀତର ଶିଶୁ ସାହିତ୍ୟିକ ମୂଲ୍ୟାୟନ, ଶିଶୁ ଶିକ୍ଷାରେ ମୌଖିକ ଶିଶୁ ସାହିତ୍ୟ, ଓଡିଆ ମୌଖିକ ଶିଶୁ ସାହିତ୍ୟରେ ସ୍ୱଦେଶପ୍ରେମ, ପୁଚିଖେଳ ଗୀତ-ଏକ ଅନୁଧ୍ୟାନ, ନାନାବାୟା ଗୀତ ଏକ ପରିଚୟ, ନାନାବାୟା ଗୀତରେ ଚେତନା ପ୍ରବାହ, ଆନନ୍ଦମୟୀ ଶିକ୍ଷା ପାଇଁ ସଂଗୀତର ଆବଶ୍ୟକତା, ଶିଶୁ ଗୀତରେ ଶିଶୁ ମନସ୍ତତ୍ତ୍ୱର ସ୍ୱରୂପ, ନାଁ ଦିଆ ମୌଖିକ ଶିଶୁ ସାହିତ୍ୟର ଅମୂଲ୍ୟ ସଂପଦ ଯାହାକି ବିଭିନ୍ନ ଓଡିଆ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି ।

ତାଙ୍କ କବିତା ପୁସ୍ତକ ଭିତରେ ରହିଛି ଫୁଲ ଆମେ ଫୁଲ( ୧୯୯୨ ), ଅଗଡ ବଗଡ ଝାଇଁକି ଝୁମ୍ପା ( ୧୯୯୭ ), ( ଭୁବନେଶ୍ୱର ପୁସ୍ତକ ମେଳାରେ ପୁରସ୍କୃତ ) କାଳିଆ ବଳଦ ଗଳାରେ ଗଳା ( ୨୦୦୦ ), ଉଦୁଉଦୁମା ( ୨୦୦୩ )(ରାଜଧାନୀ ପୁସ୍ତକ ମେଳାରେ ପୁରସ୍କୃତ ), ଇଞ୍ଚିଡି ମିଞ୍ଚିଡି ( ୨୦୦୩ ), ଆଇଁଷି ମନ୍ତର କାଇଁଶି ମନ୍ତର ( ୨୦୦୪ ), ଶୀତ ପାଇଁ ଗାଅ ଗୀତ ( ୨୦୦୭ ), ଶରତ ଋତୁର ଗୀତ ( ୨୦୦୭ ), ଗାଇ ଦିଅ ପଦେ ଗୀତ ( ୨୦୦୮ ), ଖରାବରଷା ଗୀତ ( ୨୦୦୮ ), ବିଲୁଆ ନନାର ବଣ ଭୋଜୀ( ୨୦୦୮ ) ଇତ୍ୟାଦି ଓଡିଆ କବିତା ପୁସ୍ତକ ଶିଶୁ ସାହିତ୍ୟର କବିତା ବିଭାଗକୁ ଋଦ୍ଧିମନ୍ତ କରିଛି ।

**ଶିଶୁ ସାହିତ୍ୟିକ :**

ଶିଶୁ ସାହିତ୍ୟିକଙ୍କ ସାହିତ୍ୟିକ କୃତିକୁ ଅଧ୍ୟୟନ କରି ଡଃ. ସାହୁ ନିମ୍ନଲିଖିତ ଆଲୋଚନା ଗୁଡିକ ବିଭିନ୍ନ ପତ୍ର ପତ୍ରିକା ପ୍ରକାଶ କରିଛନ୍ତି । ସେଗୁଡିକ ହେଲା : ନନ୍ଦ କିଶୋରଙ୍କ ଶିଶୁ କବିତାରେ ହାସ୍ୟରସ, ନୀଳକଣ୍ଠଙ୍କ ଶିଶୁ କବିତାରେ ହାସ୍ୟରସ, ଶିଶୁ ସାହିତ୍ୟିକ ରାଜ କିଶୋର ପାଢୀଙ୍କ ଶିଶୁ କବିତାରେ ଶିଶୁ ମନସ୍ତତ୍ତ୍ୱ, ଅନନ୍ତ ଚରଣ



Digitized by srujanika@gmail.com

ବେହେରାଙ୍କ କୃତିର ଶିଶୁ ସାହିତ୍ୟିକ ମୂଲ୍ୟାୟନ, ଶିଶୁ ପ୍ରିୟ ଶିଶୁ ସାହିତ୍ୟର ସ୍ରଷ୍ଟା - ଭଗବାନ ପାଢୀ, ନନ୍ଦ କିଶୋର ସିଂହଙ୍କ ଶିଶୁ ଗଳ୍ପର ଶିଶୁ ମନସ୍ତତ୍ତ୍ୱ ଏକ ଅଧ୍ୟୟନ, ଓଡିଆ ଶିଶୁ ସାହିତ୍ୟକୁ ଡଃ.ଜଗନ୍ନାଥ ମହାନ୍ତିଙ୍କ ଅବଦାନ, ଡଃ.ଜଗନ୍ନାଥ ମହାନ୍ତିଙ୍କ ସୃଷ୍ଟି ଓ ଦୃଷ୍ଟି, ଡଃ. କୃତ୍ତିବାସ ନାୟକଙ୍କ ପ୍ରବନ୍ଧ ଓ ଆଲୋଚନା, କ୍ଷୀରୋଦ ପୋଥାଳଙ୍କ ଶିଶୁ କବିତାରେ ମନସ୍ତାତ୍ତ୍ୱିକ ଅଧ୍ୟୟନ, ସ୍ନେହଲତା ମହାନ୍ତିଙ୍କ ଶିଶୁ ଗୀତିକାରେ ମୌଖିକ ଶିଶୁଗୀତର ସ୍ୱରୂପ ଓ ଶିଶୁ ମନସ୍ତତ୍ତ୍ୱ, ଶିଶୁ ସାହିତ୍ୟର ସଫଳ ସ୍ରଷ୍ଟା ନନ୍ଦ କିଶୋର ସାମଲ । ରଘୁନାଥ ରାଉତଙ୍କ ଶିଶୁ ଗୀତର ସ୍ୱରୂପ, ଧନେଶ୍ୱର ସାମଲଙ୍କ ଶିଶୁ ଗଳ୍ପରେ ଶିଶୁ ସାହିତ୍ୟିକ ମୂଲ୍ୟାୟନ, ପ୍ରଫୁଲ୍ଲ ଗିରିଙ୍କ ଶିଶୁ କବିତାରେ ଶିଶୁର ସ୍ୱରୂପ, ଦାସ ବେନହୁରଙ୍କ ଶିଶୁଗୀତର ସ୍ୱରୂପ, ନନ୍ଦ କିଶୋର ସିଂହଙ୍କ ଶିଶୁ ସାହିତ୍ୟରେ ଶିଶୁ ମନସ୍ତତ୍ତ୍ୱ, ଗୋଦାବରୀଶ ମହାପାତ୍ରଙ୍କ ଶିଶୁ କବିତାରେ ଶିଶୁ ମନସ୍ତାତ୍ତ୍ୱିକ ଅଧ୍ୟୟନ, କୁମୁଦଲତାଙ୍କ ଶିଶୁ ସାହିତ୍ୟ ସୃଷ୍ଟି ଓ ଗବେଷଣା, ନନ୍ଦ କିଶୋର ସାମଲଙ୍କ ସୃଷ୍ଟି ଓ ଦୃଷ୍ଟି ଇତ୍ୟାଦି ।

**ଓଡିଆ ଶିଶୁ ସାହିତ୍ୟ ଗବେଷଣା ସଂପର୍କୀତ :**

ଓଡିଆ ଶିଶୁ ସାହିତ୍ୟ ସୃଷ୍ଟି ଓ ଆଲୋଚନା ବ୍ୟତୀତ ଡଃ.ସାହୁଙ୍କର ଓଡିଆ ଶିଶୁ ସାହିତ୍ୟରେ ଗବେଷଣା ଦିଗରେ ରହିଥିବା ଅବଦାନ ପାଇଁ ସେ ସର୍ବଦା ଅଭିନନ୍ଦିତ ହୋଇ ରହିବେ । ଓଡିଆ ଶିଶୁ ସାହିତ୍ୟର ଭବିଷ୍ୟାତ ଗବେଷକଙ୍କ ପାଇଁ ଡଃ.ବସନ୍ତ କିଶୋର ସାହୁ ମାଇଲ ସ୍ତମ୍ଭ ହୋଇ ରହିଯିବେ ଏଥିରେ ଦ୍ୱିମତ ନାହିଁ । ଶିଶୁ ସାହିତ୍ୟର ବିଶେଷ କରି ଓଡିଆ ଶିଶୁ ସାହିତ୍ୟର ଗବେଷଣା ଗତ ପ୍ରଗତି କଥା ଯେତେବେଳେ ଉଠିବ ଡଃ. ମନୀନ୍ଦ୍ର ମହାନ୍ତିଙ୍କ ସହ ଡଃ. ବସନ୍ତ କିଶୋର ସାହୁଙ୍କ କଥା ନିଶ୍ଚୟ ସ୍ମରଣ ହେବ । ଏ ଶ୍ରେଣୀର ପ୍ରକାଶିତ ପୁସ୍ତକ ଭିତରେ ରହିଛି ଓଡିଆ ଶିଶୁ ସାହିତ୍ୟ ଆଲୋଚନା (୧୯୯୪), Who's who in Oriya children's literature Vol. I (୧୯୯୫), ଓଡିଆ ମୌଖିକ ଶିଶୁ ସାହିତ୍ୟ (ପିଏଚ୍.ଡି.ନିବନ୍ଧ-୧୯୯୬), Who's who in Oriya children's literature Vol. II(୧୯୯୭), ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ(୨୦୦୦), ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ (୨୦୦୨) ଇତ୍ୟାଦି । ଏହା ବ୍ୟତୀତ ଡଃ.ସାହୁଙ୍କ ସଂପାଦିତ ଶିଶୁ କବିତା (ଡଃ ମନୀନ୍ଦ୍ର ମହାନ୍ତିଙ୍କ ସହ) (୨୦୦୦), ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ (୨୦୦୪), ସାରସ୍ୱତ ସାଧକ ଡଃ ଜଗନ୍ନାଥ ମହାନ୍ତି (୨୦୦୭), ନନ୍ଦ କିଶୋର ରଚନାବଳୀ (୨୦୦୭), ଆଦି ଗ୍ରନ୍ଥଗୁଡିକ ଶିଶୁ ସାହିତ୍ୟର ଗବେଷକଙ୍କୁ ନିଶ୍ଚୟ ସାହାଯ୍ୟ କରିବ । ବହୁ ଶ୍ରମ ସ୍ୱୀକାର କରି ଡଃ.ସାହୁ ଏଗୁଡିକ ପ୍ରସ୍ତୁତି ଦିଗରେ ଆଗେଇଛନ୍ତି । ଏଥିରୁ ଶିଶୁ ସାହିତ୍ୟ ପ୍ରତି ତାଙ୍କର ରହିଥିବା ଆନ୍ତରିକତା ତଥା ମମତାର ବ୍ବେଶ୍ ପରିଚୟ ମିଳେ ।

**ଡକ୍ଟର ସାହୁଙ୍କ ସମ୍ପାଦିତ ଗ୍ରନ୍ଥ :**

ଏହି ଗ୍ରନ୍ଥମାନଙ୍କ ଭିତରେ ଅଛି ·କୋରାପୁଟ ପରିକ୍ରମା (ପ୍ରବନ୍ଧ ସଂ,



Digitized by srujanika@gmail.com

୧୯୯୨), କୋରାପୁଟ ପରିକ୍ରମା (କବିତା ସଂ,୧୯୯୩), ଓଡିଶାର ଲୋକନାଟ୍ୟ (୧୯୯୩), ସାଂପ୍ରତିକ ଶିଶୁ କବିତା (ଡଃ.ମନୀନ୍ଦ୍ର ମହାନ୍ତିଙ୍କ ସହ, ୨୦୦୦)।

**ଅନ୍ୟ ବିଭାଗ :**

ଆଲୋଚନା ଭିତରେ ରହିଛି ଶିଶୁର ମାନସିକ ବିକାଶରେ ନାଟକର ଭୂମିକା, ଓଡିଆ ଶିଶୁ ଗଳ୍ପର୍ ଚରିତ୍ର ସଂଭାର । ସମୟ କ୍ରମେ ଡଃ. ବସନ୍ତ କିଶୋର ସାହୁଙ୍କ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକଗୁଡିକ ହେଲା-ମାରି ନେଲେ ମହାପାତ୍ରେ(୨୦୦୦), ଭାଇ ତୋ ଭାଇ (ହିନ୍ଦୀ,୨୦୦୦), ଗଛ ଆମ ଜୀବନ(୨୦୦୩), ହାତ ଦେବା ଭଲ କାମେ (୨୦୦୩), ଏଇ ମାଟିର ମଣିଷ(୨୦୦୪)ଇତ୍ୟାଦି ପୁସ୍ତକ ।

**ଲଘୁ ଆଲୋଚନା ଓ ରଚନାବଳୀ :**

ଏ ଶ୍ରେଣୀରେ ପୁସ୍ତକ ଭିତରେ ରହିଛି କାହାକୁ କହିବା(୨୦୦୩/୨୦୦୭) । ଏତଦ୍ ଭିନ୍ନ ୨୦୦୯ ଏବଂ ୨୦୧୨ ମସିହାର ଯଥାକ୍ରମେ ବସନ୍ତ କିଶୋର ରଚନାବଳୀ (୧ମ ଭାଗ ଏବଂ ୨ୟ ଭାଗ) ପ୍ରକାଶିତ ହୋଇଛି । ଡଃ. ସାହୁଙ୍କ ଗବେଷଣା କୈନ୍ଦ୍ରିକ ଗ୍ରନ୍ଥ ପ୍ରସ୍ତୁତ ଦିଗରେ ବହୁ କଷ୍ଟ, ଏକାଗ୍ରତା, ସମୟ, ଶକ୍ତି ବିନିମୟ କରିଛନ୍ତି ଯାହାକି ଭବିଷ୍ୟତ ଗବେଷକଙ୍କୁ ତଥ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ଦିଗ୍‌ଦର୍ଶନ ଓ ପ୍ରେରଣା ଯୋଗାଇବ ଏଥିରେ ସନ୍ଦେହର ଅବକାଶ ନାହିଁ । ଖାଲି ସେତିକି ନୁହେଁ, ଡଃ. ବସନ୍ତ କିଶୋର ସାହୁଙ୍କ ସମଗ୍ର ସାରସ୍ୱତ ସୃଷ୍ଟି ଉପରେ ଭବିଷ୍ୟତ ସୂରୀମାନେ ଅଧ୍ୟୟନ କରିବାର ଯଥେଷ୍ଟ ସମ୍ଭାବନା ରଖନ୍ତି ।

ଡଃ. ସାହୁ ଏକାଧାରରେ ଜଣେ କବି, ଆଲୋଚକ, ଗବେଷକ, ସଂପାଦକ, ସଂଗଠକ, ତେଣୁ ସେ ଆମ ସମସ୍ତଙ୍କ ଅଭିନନ୍ଦନୀୟ । ସେ ବ୍ୟକ୍ତି ନୁହନ୍ତି - ଏକ ଅନୁଷ୍ଠାନ ହୋଇ ଅମର ରହିବେ । ଏମିତି ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସିପାରିଥିବାରୁ ମୁଁ ପରୋକ୍ଷ ଭାବରେ ବହୁ ପ୍ରେରଣା ପାଇଛି । ଈଶ୍ୱର କରନ୍ତୁ ଡଃ. ସାହୁ ଆମ ଗହଣରେ ଦୀର୍ଘ, ସୁସ୍ଥ ଜୀବନ ଲାଭ କରି ଓଡିଆ ଶିଶୁ ସାହିତ୍ୟକୁ ଋଦ୍ଧିମନ୍ତ କରିବାରେ ଆମକୁ ସହାୟକ ହୁଅନ୍ତୁ । ମୋର ଦୃଢ ବିଶ୍ୱାସ ଆଗାମୀ କାଲିର ଶିଶୁ-ସାହିତ୍ୟ ଗବେଷକ ଡଃ. ସାହୁଙ୍କ ସୃଷ୍ଟିର ଅଧ୍ୟୟନ କରିବାର ଯଥେଷ୍ଟ ଖୋରାକ ପାଇପାରିବେ ।



ସଂପାଦକ

ରିସର୍ଚ୍ଚ ସେଲ୍ ଅଫ୍ ଚିଲିଡ୍ରେନ୍ସ ଲିଟିରେଚର ଏଣ୍ଡ କ୍ରିଏଟିଭ ବିହେଭିୟର

ଶରଧା ପୁର, ସିନାପାଲି, ନୂଆପଡା



Digitized by srujanika@gmail.com

# ରମ୍ୟରଚନା କ୍ଷେତ୍ରରେ
# ଡକ୍ଟର ବସନ୍ତ କିଶୋର ସାହୁଙ୍କ ଅବଦାନ

ଡକ୍ଟର ସୁମିତା ମିଶ୍ର

ଡକ୍ଟର ବସନ୍ତ କିଶୋର ସାହୁ ଜଣେ ସୃଜନଶୀଳ ଶିଶୁ ସାହିତ୍ୟିକ । ଓଡିଆ ମୌଖିକ ଶିଶୁ ସାହିତ୍ୟ ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ । ଦୀର୍ଘଦିନ ଧରି ବିଭିନ୍ନ ପ୍ରକାର ପ୍ରବନ୍ଧ ରଚନା କରି କୃତିତ୍ୱ ପ୍ରଦର୍ଶନ କରିଛନ୍ତି । କିଶୋର ବୟସରୁ ସାହିତ୍ୟ ସମ୍ପାଦନା ଓ ଗବେଷଣାରେ ମନୋନିବେଶ କରି ନିଜର ଅଧ୍ୟବସାୟ ତଥା ସାଧନାର ପରିଚୟ ଦେଇଛନ୍ତି । ସେ ଏକାଧାରରେ ସଫଳ ଗବେଷକ, ଆଲୋଚକ, ସଂଗଠକ, ସମ୍ପାଦକ, ସଂକଳକ ଓ ପ୍ରାବନ୍ଧିକ ରୂପେ ପରିଚିତ । ଡକ୍ଟର ସାହୁ ଓଡିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷାରେ ପ୍ରାୟତଃ ବତିଶ ଖଣ୍ଡ ପୁସ୍ତକ ରଚନା କରିଛନ୍ତି । 'ବଗଲା ବଗୁଲୀ' ଶିଶୁ ପତ୍ରିକା ସହିତ ସ୍ୱକୀୟ ସମ୍ପାଦନାରେ ଷାଠିଏରୁ ଊର୍ଦ୍ଧ୍ୱ ପତ୍ରପତ୍ରିକା ଓ ପୁସ୍ତକ ପ୍ରକାଶିତ ହୋଇଛି । ଏତଦ୍‌ଭିନ୍ନ ବହୁବିଧ ପତ୍ରପତ୍ରିକାରେ ପ୍ରକାଶିତ ଭିନ୍ନ ଭିନ୍ନ ପ୍ରବନ୍ଧ ଭିତରେ ଲେଖକଙ୍କ ସାହିତ୍ୟ ସେବାର ଉତ୍କୃଷ୍ଟ ପରିଚୟ ମିଳେ । କୋରାପୁଟ ପରିକ୍ରମା, ଓଡିଶାର ଲୋକନାଟ୍ୟ, ସାଂପ୍ରତିକ ଓଡିଆ ଶିଶୁ କବିତା, ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ, ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି, ନନ୍ଦ କିଶୋର ସାମଲ ରଚନାବଳୀ ସହିତ କୃଷ୍ଣଚନ୍ଦ୍ର ଗଜପତି, ମଧୁସୂଦନ, ଫକୀର ମୋହନ, ଗୋପବନ୍ଧୁ ଓ ସ୍ୱର୍ଣ୍ଣକ୍ଷେତ୍ର ପରି ଗବେଷଣା ଧର୍ମୀ ପୁସ୍ତକ ଓ ପତ୍ରିକା ସଂପାଦନା କରି ସାହିତ୍ୟ ସାଧନାର ସ୍ୱତନ୍ତ୍ରତା ପ୍ରତିପାଦନ କରିଛନ୍ତି । ସାହିତ୍ୟ ସୃଷ୍ଟି ଓ ସଂଗଠନ ଉଦ୍ୟମର ପ୍ରୟାସ ମଧ୍ୟ ଲେଖକଙ୍କ ଅନ୍ୟ ଏକ ଦିଗକୁ ଉନ୍ମୋଚନ କରାଏ । ବନଫୁଲ ସାହିତ୍ୟ ପରିଷଦ, ଓଡିଆ ଲେଖକ ପାଠକ ସମ୍ମେଳନର ସଂପାଦକ, ବନପ୍ରଭା ସାହିତ୍ୟ ସଂସଦ, ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସମିତି, ଉତ୍କଳ ସାଂସ୍କୃତିକ ପରିଷଦର ଉପଦେଷ୍ଟା ରହି ବିଭିନ୍ନ ପତ୍ରିକା ଓ ସ୍ମରଣିକା ପ୍ରକାଶ କରିଛନ୍ତି । ପତ୍ରପତ୍ରିକା ମାଧ୍ୟମରେ ନୂତନ ଲେଖକ ଗୋଷ୍ଠୀ ସୃଷ୍ଟି ଓ ସଂଗଠିତ ଉଦ୍ୟମ ସହ ଉତ୍ସାହ ଓ ପ୍ରେରଣା ଦେବା ବସନ୍ତ ବାବୁଙ୍କ ସାହିତ୍ୟ ସେବାର ପ୍ରକୃଷ୍ଟ ପରିଚୟ । ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ, ଓଡିଆ ଗବେଷଣା ପରିଷଦ ଆଦି ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ



Digitized by srujanika@gmail.com

ସହିତ ସଂଶ୍ଳିଷ୍ଟ ରହି ଭାଷା ଓ ସାହିତ୍ୟ ପ୍ରସାରର ଏକ ଉନ୍ନତ ବାତାବରଣ ସୃଷ୍ଟି କରିଛନ୍ତି । ଫଳତଃ ସାହିତ୍ୟ ସାଧନାର ନିଷ୍ଠା ଓ ଅଧ୍ୟବସାୟ ନିମନ୍ତେ ଡକ୍ଟର ସାହୁ ବିଭିନ୍ନ ଅନୁଷ୍ଠାନ ତରଫରୁ ପୁରସ୍କୃତ ହୋଇଛନ୍ତି । ତନ୍ମଧ୍ୟରେ ଭୁବନେଶ୍ୱର ପୁସ୍ତକମେଳା, ରାଜଧାନୀ ପୁସ୍ତକମେଳା, ମୀନାବଜାର ଆଦି ଅନ୍ୟତମ ।

ଡକ୍ଟର ସାହୁଙ୍କ ଲିଖିତ 'କାହାକୁ କହିବା' ଏକ ରମ୍ୟ ରଚନା ମୂଳକ ଗ୍ରନ୍ଥ । ସାମାଜିକ ସଂସ୍କୃତିକ ସମସ୍ୟାମୂଳକ ସମୟୋପଯୋଗୀ ୧୪ଟି ପ୍ରବନ୍ଧକୁ ନେଇ ରଚିତ । ପ୍ରବନ୍ଧଗୁଡିକରେ ଆଧୁନିକ ବିଚାରବୋଧ ଏବଂ ଅବକ୍ଷୟ ସଂସ୍କୃତି, ମାନବିକ ମୂଲ୍ୟବୋଧର ଅଧଃପତନ ପ୍ରତି ଲେଖକ ବିଶେଷ ଦୃଷ୍ଟି ଆକର୍ଷଣ କରିଛନ୍ତି । ପ୍ରଚଳିତ ସମାଜ ବ୍ୟବସ୍ଥା ଏବଂ ନିଜ ଜୀବନର ବ୍ୟାପକ ଅନୁଭୂତି ତଥା ଅଭିଜ୍ଞତା ମଧ୍ୟରୁ ବିଷୟବସ୍ତୁ ଆହରଣ କରି ସେଗୁଡିକୁ ଯଥାଯଥ ରୂପେ ଉପସ୍ଥାପନା କରିଛନ୍ତି । ସମୟର ବିବର୍ତ୍ତନ ମଧ୍ୟରେ ମାନବ ନିଜକୁ ଆଧୁନିକ ଶୈଳୀ ବା ଢାଞ୍ଚାରେ ପରିବର୍ତ୍ତନ କରିବାରେ ଅଭ୍ୟସ୍ତ ହେଲାଣି, ତନ୍ମଧ୍ୟରେ ନିଜର ପରମ୍ପରା ସଂସ୍କୃତି ଓ ଆଦର୍ଶକୁ ଭୁଲି ଭିନ୍ନ ଏକ ବାତାବରଣରେ ବଂଚିବା ପାଇଁ ଚେଷ୍ଟା କରୁଛି । ଫଳତଃ ଜୀବନର ଅନ୍ତର୍ମୁଖୀ ବାସ୍ତବତା ବିଶେଷ ପ୍ରଭାବିତ ହେଉଛି । ମାନବ ଜୀବନର ସୂକ୍ଷ୍ମାତି ସୂକ୍ଷ୍ମ ବିଶ୍ଳେଷଣ କରି ସମାଜ ସଂସ୍କୃତି ଓ ସମସାମୟିକ ଚିନ୍ତାଧାରା ଗୁଡିକୁ ଲେଖକ ତଥ୍ୟ ସମ୍ବଳିତ ଓ ସୂଚନାପୂର୍ଣ୍ଣ ଭାବେ ସରଳ-ସହଜ ଓ ସୁବୋଧ ଭାଷାରେ ଏଥିରେ ପ୍ରକାଶ କରିଛନ୍ତି ।

ପ୍ରଥମ ପ୍ରବନ୍ଧ 'ଆମ ରାସ୍ତାଘାଟ ହାଲ୍‌ଚାଲ୍'ରେ ଆଜିର ରାସ୍ତାଘାଟର ସମସ୍ୟା ଆଲୋଚିତ । ପଥ ହିଁ ଜୀବନର ଗତିପଥ । ପ୍ରତିଦିନ ଜୀବନର ଆରମ୍ଭ ଏହି ରାସ୍ତାରୁ ହୋଇଥାଏ । ସେହି ରାସ୍ତାର ଦୂରବସ୍ଥାର ନିଛକ ପ୍ରତିଛବି ପ୍ରଦାନ କରିଛନ୍ତି ଲେଖକ । ସକାଳ ହେଲେ ଭ୍ରମଣ କରିବା, କାର୍ଯ୍ୟକ୍ଷେତ୍ରକୁ ଯିବା ବା ବ୍ୟବସାୟ ଆଦି ନିମନ୍ତେ ସର୍ବଦା ମଣିଷ ରାସ୍ତାକୁ ପାଥେୟ କରିଥାଏ । ସେହି ରାସ୍ତା ବେଳେବେଳେ ମରଣଯନ୍ତା ପାଲଟିଯାଏ । ଲେଖକଙ୍କ ଭାଷାରେ "ଧକଡ ଚକଡରେ ପଡ୍ ଉଠ୍ ହୋଇ ପଛରେ ବସିଥିବା ଆରୋହୀ ଯେ କେତେବେଳେ କେଉଁଠି ଖସି ନ ପଡିବ ତାହା କିଏ କହିବ XXX ଏପରି ଧକଡ ଚକଡ ରାସ୍ତାରେ ଯଦି ଗର୍ଭବତୀ ସ୍ତ୍ରୀଟିକୁ ଡାକ୍ତରଖାନା ନିଆଯାଏ ତେବେ ଅଧାବାଟରେ କୁଆଁ କୁଆଁ ରାବ ଶୁଣିବା କିଛି ଅସମ୍ଭବ ନୁହେଁ ।" ଏପରି ରାସ୍ତାର ଦୁରବସ୍ଥା ନିମନ୍ତେ ଲେଖକ ମଣିଷକୁ ଦାୟୀ କରିଛନ୍ତି । ସେମାନେ ରାସ୍ତାରୁ ଗୋଡିମାଟି ନେଇ ଘର ତିଆରି କରନ୍ତି । ରାସ୍ତାରେ ପିଲାମାନେ କ୍ରିକେଟ କବାଡି ଖେଳି ଅଧା ଖୋଳି ଦିଅନ୍ତି । ପୁଣି ମନଇଛା ଘର ପାଖରେ ବଡ ଆକାରର ହମ୍ପସ୍ ଗଢି ସୁବିଧାରେ ରହିବା ପାଇଁ ଚିନ୍ତା କରନ୍ତି । କିନ୍ତୁ ଚାଳକ ଗାଡିକୁ ଯେତିକି ଧିମା କରିଥାଏ, ତା'ଠାରୁ ଅଧିକ



Digitized by srujanika@gmail.com

ଦୁର୍ଘଟଣା ମଧ୍ୟ ଘଟିଥାଏ । ଅନେକ ସମୟରେ ଦେଖିବାକୁ ମିଳେ ରାସ୍ତା ଉପରେ ଦୋକାନ ବଜାର ଗଢି ସ୍ବଚ୍ଛନ୍ଦରେ ବିକ୍ରିବଟା ଚାଲିଥାଏ । ଲୋକ ସେଠି ଖାଇପିଇ ସେଠାରେ ହିଁ ଅଳିଆ ଅବର୍ଜନା ପକାଇ ଚାଲିଯାନ୍ତି । ବ୍ୟକ୍ତି ସଚେତନ ନ ଥାଏ । ସେହିପରି ଆଜିକାଲି ରାସ୍ତା ଅବରୋଧ ହେଉଛି । ରାସ୍ତା ଅବରୋଧ ଏକ ଫେସନ୍ କହିଲେ ଅତ୍ୟୁକ୍ତି ହେବନାହିଁ । ବାଉଁଶ, ଟାୟାର, ପଥର ପକାଇ ରାସ୍ତା ଅବରୋଧ କରାଯାଏ । ଜୋର୍ ଜୁଲମ କରି ଚାନ୍ଦା ଆଦାୟ ନିମନ୍ତେ ରାସ୍ତା ବନ୍ଦ କରାଯାଏ । ରାସ୍ତା ନିତିଦିନିଆ ସାଥୀ ମାନବର, ଯତ୍ନ ସମସ୍ତେ ନେବା ଆବଶ୍ୟକ । କିନ୍ତୁ ତାର ବ୍ୟତିକ୍ରମ ଦେଖିବାକୁ ମିଳେ । ରାସ୍ତା ପାର୍ଶ୍ୱରେ ମଳତ୍ୟାଗ କରି ନିଜର ପାଇଖାନା ଭାବେ ବ୍ୟବହାର କରାଯାଏ । ପଥଚାରି ପାଇଁ ଶୀତଳ ଛାୟା ପ୍ରଦାନ କରୁଥିବା ଗଛକୁ କାଟି କାଠ ନେଇ ବ୍ୟବହାର କରନ୍ତି । ମଣିଷ ଭାବେ ଜାତୀୟ ସଂପତ୍ତି ନିଜ ସଂପତ୍ତିରେ ପରିଣତ କରିବ । ରାସ୍ତାର ଦୁରବସ୍ଥା ନିମନ୍ତେ ନିଜେ ମଣିଷ ଦାୟୀ । ତେଣୁ ଲେଖକ କାହାକୁ କହିବା କହି ପ୍ରଶ୍ନ କରିବା ସହିତ ମଣିଷ ଆଗାମୀ ଦିନରେ ସଚେତନ ହେବାକୁ ଆହ୍ୱାନ ଦେଇଛନ୍ତି ।

ଦ୍ୱିତୀୟ ପ୍ରବନ୍ଧ 'ଛାତ୍ରପୂଜା' । ପୂର୍ବ କାଳରେ ଛାତ୍ର ଗୁରୁ ସଂପର୍କକୁ ଭଗବାନଙ୍କ ପବିତ୍ର ସଂପର୍କ ରୂପେ ଗ୍ରହଣ କରାଯାଉଥିଲା । ସମୟ ପରିବର୍ତ୍ତିତ ହୋଇଛି । ମାନବ ଉନ୍ନତି କରିଛି । ପୁଣି ଶିକ୍ଷାର ଉଚ୍ଚ ସୋପାନରେ ପହଞ୍ଚି ଥିଲେ ମଧ୍ୟ ଆଜି ପୂର୍ବର ସେହି ଗୁରୁ ଛାତ୍ର ପରମ୍ପରା ନାହିଁ । ଏଠାରେ ଲେଖକ ଅନୁଭବ କରିଥିବା ବିଷୟ ଉଲ୍ଲେଖ କରିଛନ୍ତି - "ସ୍ନେହ, ଶ୍ରଦ୍ଧା, ଆଦର, ମାନବିକତା ମୂଲ୍ୟବୋଧ, ଭକ୍ତି, ସମ୍ମାନ ଆଦି ଦେବ ସୁଲଭ ଗୁଣାବଳୀ କଥା ଆଜିର ପିଲାମାନେ ବୋଧେ ଭୁଲି ଗଲେଣି" । ଛାତ୍ରମାନେ ଉଚ୍ଚଶିକ୍ଷିତ ହୋଇ ମଧ୍ୟ ଅଶିକ୍ଷିତଙ୍କ ପରି କାର୍ଯ୍ୟ କରନ୍ତି । ଇଂଜିନିୟରିଂ, ମେଡିକାଲ ଆଦି ଉଚ୍ଚମାନର ବୈଷୟିକ ଶିକ୍ଷା ଏବଂ ଅନ୍ୟକ୍ଷେତ୍ରରେ ଅନେକ ଶିକ୍ଷିତ ବ୍ୟକ୍ତି ସମାଜରେ ଦେଖିବାକୁ ମିଳୁଛନ୍ତି । କିନ୍ତୁ ପ୍ରକୃତ ଶିକ୍ଷାର ସଂଜ୍ଞା ନଷ୍ଟ ହୋଇ ସାରିଲାଣି । ପ୍ରାଚୀନ ଗୁରୁ ଶିଷ୍ୟର ପବିତ୍ର ପରମ୍ପରାକୁ ଆଧାର କରି ଲେଖକ ଆରୁଣି, ଉପମନ୍ୟୁ, ଏକଲବ୍ୟଙ୍କ ଉଦାହରଣ ଦେଇଛନ୍ତି । ଆଜିର ଯୁଗରେ ସେହି ଛାତ୍ର ନାହାନ୍ତି କିମ୍ବା ସେହି ଗୁରୁ ନାହାନ୍ତି । ଗୁରୁ ଆଜି ବ୍ୟବସାୟ ଭିତ୍ତିକ ଶିକ୍ଷା ପ୍ରଦାନ କରେ । ତେଣୁ ଛାତ୍ର ପ୍ରକୃତ ଶିକ୍ଷା ଠାରୁ ଦୂରେଇ ଯାଉଛି । ଗୁରୁମାନେ ସମ୍ମାନ ପାଉନାହାନ୍ତି । ପୂର୍ବ ଯୁଗର ସେହି କଠୋର ସାଧନା, ନିଷ୍ଠା ଛାତ୍ରମାନଙ୍କ ନିକଟରେ ନାହିଁ । ଅଳ୍ପ ସମୟ ମଧ୍ୟରେ ଶୀଘ୍ର କିଛି ଘୋଷା ଘୋଷି କରି କିମ୍ବା କପି କରି ପାସ୍ ହେବା ମନୋବୃତ୍ତି ଛାତ୍ରଙ୍କ ପାଖରେ ଦେଖିବାକୁ ମିଳେ । ପୁଣି ଶିକ୍ଷକକୁ ଡରାଇ-ଧମକାଇ ନମ୍ବର ବଢାଇବା ନିମନ୍ତେ ବାଧ୍ୟ କରାଯାଏ । ଫଳରେ ଛାତ୍ର ଚୋର, ଗୁଣ୍ଡା ଆଦି ରୂପେ ପରିଚିତ ହୁଏ । ଏହି ସବୁ ଶିକ୍ଷାର ଅଧୋଗତି ନିମନ୍ତେ ଲେଖକ ଛାତ୍ର ଓ ଗୁରୁ ଉଭୟଙ୍କୁ ଦୋଷ ଦେଇଛନ୍ତି । ଆଗାମୀ ଦିନରେ ଶିକ୍ଷାର ମାନବୃଦ୍ଧି କରିବା ସଂଗେ ସଂଗେ ପ୍ରକୃତ ଜ୍ଞାନ ପ୍ରଦାନ କରି ଉପଯୁକ୍ତ ଛାତ୍ର ଗଢିବାକୁ



Digitized by srujanika@gmail.com

ପ୍ରବର୍ତ୍ତାଇଛନ୍ତି ।

ତୃତୀୟ ପ୍ରବନ୍ଧ "ସର୍ପରେ ଜାତ କଲୁ ମୋତେ" । ଏକ ପୌରାଣିକ କଥା ଶ୍ରୀକୃଷ୍ଣଙ୍କ ବିଷୟ ଅବତାରଣା କରି ଲେଖକ କାଳୀୟ ନାଗର ସ୍ୱଭାବକୁ ଉଲ୍ଲେଖ କରିଛନ୍ତି । ସର୍ପ କୁଳରେ ଜାତ ହୋଇଥିବା ଯୋଗୁଁ ଭଗବାନ ଶ୍ରୀକୃଷ୍ଣଙ୍କୁ ଚୋଟ ପରେ ଚୋଟ ମାରିଛି । କିନ୍ତୁ ପରେ ନିଜ ଭୁଲ୍ ଜାଣି ପାରି କ୍ଷମା ପ୍ରାର୍ଥନା କରିଛି । ପ୍ରତ୍ୟେକ ପ୍ରାଣୀର ଏକ ସ୍ୱତନ୍ତ୍ର ସ୍ୱଭାବ ଥାଏ । ମାନବର ବିବେକ ଓ ଜ୍ଞାନ ଥିବା ଯୋଗୁଁ ତାକୁ ଏକ ଭିନ୍ନ ପ୍ରାଣୀ ରୂପେ ବିଚାର କରାଯାଏ । ନିର୍ଦ୍ଦିଷ୍ଟ ସ୍ୱଭାବ ବା ପ୍ରକୃତି ନେଇ ପ୍ରାଣୀ ଜନ୍ମ ନିଏ । କିନ୍ତୁ ସ୍ୱଭାବକୁ ପରିବର୍ତ୍ତନ କରିହୁଏ । ଆଜିର ଯୁଗରେ ମାନବ ଭିନ୍ନ ସ୍ୱଭାବ ନେଇ ଜନ୍ମ ନେଇଛି । ଅନ୍ୟାୟ, ଅନୀତି ଦୁର୍ନୀତିର ବିଷ ପ୍ରୟୋଗ କରି ସମାଜକୁ ଧ୍ୱଂସ କରିବାରେ ଲାଗିଛି । ରାତାରାତି ବଡ ହେବାର ନିଶାରେ ବ୍ୟକ୍ତି ନିଜ ସ୍ୱାର୍ଥ ଲାଗି ନିଜ ସ୍ୱଭାବକୁ କୁ-ମାର୍ଗରେ ପରିଚାଳିତ କରୁଛି । ପ୍ରଥମତଃ ବ୍ୟବସାୟୀମାନଙ୍କୁ ଦୃଷ୍ଟାନ୍ତ ଦେଇ ଲେଖକ ସେମାନଙ୍କ ବିଷୟରେ ଉଲ୍ଲେଖ କରିଛନ୍ତି-" ଖାଲିତ ମୁନାଫା ନୁହେଁ, ତା ସାଙ୍ଗକୁ ପୁଣି ଅପମିଶ୍ରଣ-ଧାନରେ ଅଗାରି, ଚିନିରେ ସୁଜି, ଚାଉଳରେ ଗୋଡି, ଘିଅରେ ମୋବିଲ, ପେଟ୍ରୋଲରେ କିରାସିନି, ଅଟାରେ ଚୋକଡ-ଏମିତି କେତେ ଜିନିଷରେ କେତେ କଣ ?" ବିବେକ ଥାଇ ମଧ୍ୟ ବ୍ୟକ୍ତି ବିବେକହୀନ କାର୍ଯ୍ୟ କରି ବସେ । ଚାକିରିଆମାନଙ୍କୁ ବ୍ୟଙ୍ଗକରି ଲେଖକ ବର୍ଣ୍ଣନା କରିଛନ୍ତି । ବିଭିନ୍ନ ବିଳାସବ୍ୟସନ ସାମଗ୍ରୀରେ ନିଜ ଘରକୁ ସଜ୍ଜିତ କରନ୍ତି । ଏଥି ନିମନ୍ତେ 'ସରକାରକା ମାଲ୍ ଦରିୟା ମେ ଡାଲ୍' ନୀତିରେ ହେର୍‌ଫେର୍ କରି ଟଙ୍କା ଓ ଦେଶକୁ ଲୁଣ୍ଠନ କରିବାରେ ଲିପ୍ତ ରୁହନ୍ତି । ସବୁ କ୍ଷେତ୍ରରେ ଅନୀତି ଓ ଦୁର୍ନୀତିର ଚେର ମାଡି ମାଡି ଗଲାଣି । ତେଣୁ ବ୍ୟକ୍ତିର ସ୍ୱଭାବରେ ପରିବର୍ତ୍ତନ ହେବା ଏକାନ୍ତ ଆବଶ୍ୟକ । ନଚେତ୍ ଏହି ବିଶ୍ୱ ବ୍ୟକ୍ତିର ଅର୍ଥ ଲାଳସା ସ୍ୱାର୍ଥ ଓ କ୍ଷମତା ଭିତରେ ଧ୍ୱଂସ ହେବା ସମ୍ଭାବନା ଥିବା ଲେଖକ ଆଶଙ୍କା କରିଛନ୍ତି ।

ଚତୁର୍ଥ ପ୍ରବନ୍ଧ " ଆପେ ମରି ସଙ୍ଗ ଲୋଡି" । ଏଥିରେ ଲେଖକ ବ୍ୟକ୍ତିଗତ ସ୍ୱାର୍ଥ ବିଷୟ ସୂଚାଇଛନ୍ତି । ଆଜିର ସମାଜରେ ମଣିଷ କେବଳ ନିଜ ସ୍ୱାର୍ଥ ଓ ଅହଂକାରକୁ ନେଇ ବଞ୍ଚୁଛି । ଜୀବନ ମାତ୍ରକେ ମୃତ୍ୟୁ ସୁନିଶ୍ଚିତ । ଏହା ଜାଣି ମଧ୍ୟ 'ମୁଁ' କାର ମଧ୍ୟରେ ବ୍ୟକ୍ତି ବଞ୍ଚି ରହେ ! ସେ ଭାବି ପାରେ ନାହିଁ, ମୃତ୍ୟୁ ହେଲେ ସାଙ୍ଗରେ କିଛି ସଂପଦ ନେବନାହିଁ । ଏକଲା ଆସିଛି ଏକଲା ଯିବ-ଏହା ଚିରାଚରିତ ସତ୍ୟ । କିନ୍ତୁ ଏହି ବିଷୟ ଭୁଲିଯାଇ ସ୍ୱାର୍ଥରେ ଅନ୍ଧ ହୋଇ ନିଜକୁ ବଡକରି ଦେଖାଇବା ପ୍ରବୃତ୍ତିରେ ବିଚରଣ କରେ । ସ୍ୱାର୍ଥ କୈନ୍ଦ୍ରିକ ମାନବ ନିଜ କାର୍ଯ୍ୟ ସାଧନରେ ଲିପ୍ତ ରୁହେ । ଅନ୍ୟ ସହିତ ବନ୍ଧୁତା ବା ସଂପର୍କ ସ୍ଥାପନ କରେ ନାହିଁ । ଲୋଭର ବଶବର୍ତ୍ତୀ ହୋଇ ନିଜ କାର୍ଯ୍ୟର ସଫଳତା


Digitized by srujanika@gmail.com

ଚିନ୍ତାକରେ । ଏପରି ସ୍ୱାର୍ଥରେ ଜଡିତ ହୁଏ ଯେ ନିଜ ଜନ୍ମଦାତା ପିତାମାତାଙ୍କୁ ମାରିବାକୁ ମଧ୍ୟ ଭୁଲେ ନାହିଁ । ଜଗତ କ୍ଷଣଭଙ୍ଗୁର ଏହି କଥା ମନେ କରି ସମାଜର ହିତ ସାଧନ ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ଆହୁତି ଦେଇ ସମାଜର ମଙ୍ଗଳ ନିମନ୍ତେ ଉକ୍ତ ପ୍ରବନ୍ଧରେ ଆହ୍ୱାନ ଦେଇଛନ୍ତି ।

ପଞ୍ଚମ ପ୍ରବନ୍ଧ "ଛୁଞ୍ଚିମୁହାଁଙ୍କ ସପକ୍ଷରେ" । ଏହି ବିଷୟଟି କପଟାଚାରୀଙ୍କ ସଂପର୍କରେ ଉଲ୍ଲେଖ ହୋଇଛି । ଲେଖକଙ୍କ ଭାଷାରେ ଯେଉଁମାନେ ଉପରେ ହସି ହସି କଥା କହି ଭିତରେ ଭିତରେ ଚେର କାଟୁଥାଆନ୍ତି, ଅର୍ଥାତ୍ ତୁଣ୍ଡେ ହରି, ପେଟେ ଛୁରୀ ମାରିବାରେ ଓସ୍ତାଦ୍ ଏମାନଙ୍କୁ ଆମେ କପଟିଆ ବା ଛୁଞ୍ଚିମୁହାଁ କହିଥାଉ । ସମାଜରେ ଏହି ଧରଣର ବ୍ୟକ୍ତି ବହୁତ ପରିମାଣରେ ଦେଖିବାକୁ ମିଳନ୍ତି । ସେମାନଙ୍କ ମୁଖରେ ଗୋଟିଏ କଥା, କାମରେ ଆଉ ଗୋଟିଏ କଥା । ଏହି ବ୍ୟକ୍ତିଙ୍କୁ ଚକ୍ରାନ୍ତକାରୀ କହିଲେ ଅତ୍ୟୁକ୍ତି ହେବନାହିଁ । ଉପରେ ଆନ୍ତରିକତା ଦେଖାଇବା ପୂର୍ବକ ଭିତରେ ଇର୍ଷା କରି ସେ ଅନ୍ୟର କ୍ଷତି କରିଥାଏ । ଦୁଇ ବ୍ୟକ୍ତି ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି କରିବାରେ ଏମାନେ ନାଟର ଗୋବର୍ଦ୍ଧନ । ଏହିପରି ଲୋକ ସମାଜରେ ନଥିଲେ ବୋଧହୁଏ ମାନବ ଶାନ୍ତିରେ ସହାବସ୍ଥାନ କରିଥାନ୍ତେ । ଏହି ଧରଣର ବ୍ୟକ୍ତି ପୁରାଣ ଯୁଗରୁ ଥିବା ଦର୍ଶାଇ ଉଦାହରଣ ଦେଇ ଲେଖକ ଲେଖିଛନ୍ତି-

"କୈକେୟୀ ରାଣୀ, ଭିତରେ ଭିତରେ କାଟୁଛି ବାଣୀ"

କପଟ କରି ମହାଭାରତ ଯୁଦ୍ଧ ରଚିଥିଲେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । କପଟ ବା ଛଳନା ବଳରେ ଅନ୍ୟକୁ ଅସୁବିଧାରେ ପକାଇବା ସହିତ ଆପଣାର କାର୍ଯ୍ୟରେ ସଫଳ ହୋଇ ଉନ୍ନତି କରିଥାନ୍ତି । ଏପରି ଲୋକମାନଙ୍କୁ ସମାଜରେ କରିତ୍କର୍ମା କୁହାଯାଏ । ଅସତ୍ ଉପାୟରେ ଧନ ଅର୍ଜନ କରିବା କପଟାଚାରୀମାନଙ୍କ ନୀତି । ସମାଜରେ କପଟ ଆଚରଣ କରି ବଞ୍ଚିବା ସମସ୍ତଙ୍କ ଆଦର୍ଶ ନୁହେଁ । ତେଣୁ ଲେଖକ ବୁଦ୍ଧିମାନ ଓ ଜ୍ଞାନୀ ବ୍ୟକ୍ତି ଉଦ୍ଦେଶ୍ୟରେ ପ୍ରକାଶ କରିଛନ୍ତି-"ବୁଝି ବିଚାରି କାର୍ଯ୍ୟ କଲେ, ପ୍ରମାଦ ନ ପଡଇ ଭଲେ । "

ଷଷ୍ଠ ପ୍ରବନ୍ଧ "ତୁଣ୍ଡବାଇଦ" ପ୍ରସଙ୍ଗରେ ଲେଖକ ସୂଚାଇଛନ୍ତି-ଆଜିର ସମାଜରେ ଅଧଃପତନ ନିମନ୍ତେ ମାନବ ହିଁ ଦାୟୀ । ତୁଣ୍ଡବାଇଦ ସହସ୍ର କୋଶ । ଜଣେ ବ୍ୟକ୍ତି କଥାଟି ଶୁଣି କଥାର ପ୍ରାସଙ୍ଗିକତା ପ୍ରତି ଧ୍ୟାନ ନ ଦେଇ ବହୁଦୂର ପର୍ଯ୍ୟନ୍ତ ସଞ୍ଚାରିତ କରିଥାଏ । ଜଣେ ଜଣକୁ ପୁନଶ୍ଚ ସେହି କଥା ଅନ୍ୟ ଏକ ବ୍ୟକ୍ତିକୁ, ଏହିପରି ପ୍ରଚାର ହୋଇଥାଏ । ଗୁରୁତ୍ୱପୂର୍ଣ୍ଣ କଥା ଯେତେ ଶିଘ୍ର ପ୍ରଚାରିତ ନ ହୁଏ ଖରାପ ତଥା ମୂଲ୍ୟହୀନ କଥା ସେତେ ଶିଘ୍ର ସେତେ ଅଧିକ ଦୂରଯାଏ ପ୍ରଚାରିତ ହୋଇଯାଏ । ଶିକ୍ଷିତ ବା ଅଶିକ୍ଷିତ



Digitized by srujanika@gmail.com

ବ୍ୟକ୍ତି କେହି ଭାବନ୍ତି ନାହିଁ କାହାର ଏଥିରେ ଅପମାନ ବା ଅପଯଶ ହେବ । ଗୋଟିଏ କଥା ଶୁଣିବା ପରେ ସେହି କଥାକୁ ବଢାଇ ଚଢାଇ କହିଯାଆନ୍ତି । କେବଳ ଲୋକଙ୍କ କଥା ନୁହେଁ ବରଂ କୌଣସି ଘଟଣାକୁ ମଧ୍ୟ ନ ଦେଖି, ନ ଜାଣି ଶୁଣାକଥା ବର୍ଣ୍ଣନା କରି ଚାଲନ୍ତି । ତେଣୁ ତୁଣ୍ଡବାଇଦ ସମାଜ ପାଇଁ ବିଷ ତୁଲ୍ୟ । ବିଷୟର ମୂଳ ତଥ୍ୟ ବିଚାର କରି ସତ୍ୟାସତ୍ୟ ଅନୁସନ୍ଧାନ ପୂର୍ବକ କୌଣସି କଥା ବା ବିଷୟ କହିବା ଆବଶ୍ୟକ । ଏହା ଦ୍ୱାରା ସମାଜର ହିତ ସାଧନ ହେବ ବୋଲି ଲେଖକ ପ୍ରକାଶ କରିଛନ୍ତି ।

ସପ୍ତମ ପ୍ରବନ୍ଧ "ନ ଦେଖିଲା ଓଉ" ପ୍ରବନ୍ଧରେ ଲେଖକ ସମାଜରେ ଆତ୍ମବଡିମା ପ୍ରଦର୍ଶନ କରିବା ଲୋକଙ୍କ ସଂଖ୍ୟା ଅଧିକ ବୋଲି ଉଲ୍ଲେଖ କରିଛନ୍ତି । ସେପରି ବ୍ୟକ୍ତିକୁ ପଚାର କି ନ ପଚାର ନିଜ ବଡିମା, ବେଶ, ପୋଷାକ ଠାରୁ ଆରମ୍ଭ କରି ଘର ଅଫିସ୍ ପର୍ଯ୍ୟନ୍ତ ବିଷୟ ବଢେଇ ଚଢ଼େଇ କରି କହିଥାନ୍ତି । ଏଥି ସହ ସଂସାର ସାରା କଥା ସିଏ ଜାଣିଛି ବୋଲି ଦେଖେଇ ହୋଇଥାନ୍ତି । ଲୋକ ମଧ୍ୟରେ ଏକ ବିଜ୍ଞ ବ୍ୟକ୍ତି ଭାବେ ନିଜକୁ ପରିଚିତ କରିଥାନ୍ତି । ଆଜିର ଦୁନିଆ ଯେତେ ସଭ୍ୟ ଓ ଶିଷ୍ଟ, ସମାଜରେ ଏହି ଶିଷ୍ଟ ବ୍ୟକ୍ତି ହିଁ ନିଜକୁ ବଡେଇ କରି ଦେଖାଇବା ପ୍ରବୃତ୍ତିରେ ବ୍ୟସ୍ତ ରହେ । ପ୍ରକୃତ ପକ୍ଷେ ଆଜି ସମାଜରେ ଯଦି ନିଜ କଥା କହିବ ନାହିଁ ତା' ହେଲେ କେହି ଚିହ୍ନିବେ ନାହିଁ କିମ୍ବା ପଚାରିବେ ନାହିଁ । କିନ୍ତୁ ପ୍ରତିଭା ଥିଲେ ନିଶ୍ଚୟ ପୂଜା ପାଇବ ଏବଂ ଗରିମା ପ୍ରଚାର ହେବ । ବଡିମା ଦେଖାଇବା ଅନାବଶ୍ୟକ, ଜଗତରେ ଆତ୍ମ ପରିଚୟ ସ୍ୱତଃ ବିକାଶ ହୁଏ ବୋଲି ଲେଖକ ସୂଚନା ଦେଇଛନ୍ତି ।

"ପ୍ରଗଳଭତା ଦୂଷଣ ନୁହେଁ ଭୂଷଣ" ପ୍ରବନ୍ଧ ଏକ ଯୁକ୍ତି ସମ୍ମତ, ସମୀକ୍ଷା ମୂଳକ ଆଲୋଚନା । ସମାଜରେ ବିଭିନ୍ନ ପ୍ରକାର ବ୍ୟକ୍ତି ଅଛନ୍ତି । ଭିନ୍ନ ଭିନ୍ନ ଚରିତ୍ର, ସ୍ୱଭାବ ଓ ଚାଲିଚଳନ ନେଇ ବ୍ୟକ୍ତିମାନଙ୍କ ପରିଚୟ । ବ୍ୟକ୍ତିର କଥା କହିବା ଏକ ଶୈଳୀ । ଚୁପ୍ ରହିବା ଏକ ଗୁଣ । ସୁନ୍ଦର କଥା କହିବା ବ୍ୟକ୍ତି ବିଶ୍ୱର ସବୁ ବିଷୟରେ ଜ୍ଞାନ ଥିବା ପ୍ରକାଶ କରେ । କଥା କହି ସମସ୍ତଙ୍କ ମନକୁ ମୋହି ନିଏ, ମିଠା ମିଠା କଥା କହି ସୁବିଧାରେ ସବୁ ସ୍ଥାନରେ କାର୍ଯ୍ୟ ହାସଲ କରିପାରେ । କଥା କହି କହି ଅନ୍ୟର ଦୋଷ ଦୁର୍ବଳତାକୁ ଦର୍ଶାଇ ସମାଲୋଚନା କରିବାକୁ ପଛାଏ ନାହିଁ । ଏହି କୁହାଳିଆ ବା ପ୍ରଗଳଭ୍‌ମାନଙ୍କ ଦ୍ୱାରା ସମାଜରେ ପରିବର୍ତ୍ତନ ହୁଏ, ଏପରିକି ସମାଜର ସମସ୍ୟା, ଦୋଷ ଦୁର୍ବଳତା, ଅତ୍ୟାଚାର ଦୁର୍ନୀତି ଆଦି ବିରୁଦ୍ଧରେ କଥା କହି ପରିବର୍ତ୍ତନ କରିପାରନ୍ତି । ଅନ୍ୟ ପକ୍ଷରେ ଲେଖକ ସୂଚନା ଦେଇଛନ୍ତି-ଯଦି ଜଣେ ନିଜର ସୁବିଧା ଅସୁବିଧା କଥା ମୁହଁ ଖୋଲି ନ କହିବ, ତେବେ ତା ମନ କଥା କିଏ ବା କାହିଁକି ଜାଣିବ ? ଜଣକର ବିଦ୍‌ବତା, ଗୁଣ ଗରିମା ଓ ପାଣ୍ଡିତ୍ୟର କଳନା କରାଯାଏ, ସିଏ ଯେତେବେଳେ ତା'ର



Digitized by srujanika@gmail.com

ମୁହଁ ଖୋଲି ମିଠା କଥା ପଦେ କୁହେ - କର୍ଣ୍ଣ ବାଟ ଦେଇ ଜଣେ ଅନ୍ୟ ଜଣକର ହୃଦୟରେ ପ୍ରବେଶ କରେ । ସେଥିପାଇଁ କଥା କହିବାକୁ ଏକ ଭୂଷଣ ଭାବରେ ଗ୍ରହଣ କରାଯାଏ ।

ନବମ ପ୍ରବନ୍ଧ "ଗୋଦରା କୋଡେ ଯେତେ ମାଡେ ସେତେ" ରେ ସମାଜର ବାସ୍ତବ ଚିତ୍ରର ମୂଲ୍ୟାୟନ ହୋଇଛି । ଆଧୁନିକ ମଣିଷ ଅନ୍ୟର ସୁଖରେ ସୁଖୀ ନୁହେଁ । ନିଜ ପାଇଁ ସେ ସର୍ବଦା ବ୍ୟସ୍ତ ରହେ । ଏପରିକି ନିଜ ପରିବାର, ଭାଇ, ବନ୍ଧୁ, କୁଟୁମ୍ବଙ୍କ ସୁଖ, ଦୁଃଖ ବୁଝିବା ନିମନ୍ତେ ତା ପାଖରେ ସମୟ ନଥାଏ । ପୂର୍ବେ ସ୍ନେହ ମମତା ଭରା ଯୌଥ ପରିବାର ଥିଲା । କିନ୍ତୁ ବର୍ତ୍ତମାନ ସେହି ପ୍ରଥା ଓ ସଂପର୍କ ଦୂରେଇ ଗଲାଣି । ସାଙ୍ଗସାଥୀ, ବନ୍ଧୁ-ବାନ୍ଧବ ଏପରିକି ପରିବାର ସଦସ୍ୟଙ୍କ ମଧ୍ୟରେ ଆଜି ପ୍ରତିଯୋଗିତା ମୂଳକ ମନୋଭାବ । ମଣିଷ ଘଣ୍ଟା କଣ୍ଟା ସହିତ ଦୌଡିବାରେ ବ୍ୟସ୍ତ । ଏହି ପ୍ରତିଯୋଗିତା ଭାବ ବୃଦ୍ଧି ଫଳରେ ସମାଜରେ କ୍ରୋଧ, ହିଂସା, ଶଠତା ଆଦି ଖରାପ ଗୁଣ ବଢିବାରେ ଲାଗିଛି । ନିଜ ଚଳିବା ପାଇଁ ଯେତିକି ଆବଶ୍ୟକ ତା ଠାରୁ ଅଧିକ ପାଇବା ପାଇଁ ମଣିଷ ଅଣନିଶ୍ୱାସୀ ହୋଇ ଧାଉଁଛି । ତେଣୁ ପ୍ରତିଯୋଗିତା ବଢୁଛି । ଅନ୍ୟ ପାଇଁ ବା ପରିବାର ପାଇଁ ସମୟ ନଦେଇ ମଣିଷ କେବଳ ନିଜ ସ୍ୱାର୍ଥ କଥା ଚିନ୍ତା କରୁଛି । ନିଜ ପାଇଁ ଦୌଡିବା ଫଳରେ ଅନ୍ୟକୁ ସ୍ନେହ ମମତା ଦେବାକୁ ସମୟ ପାଉ ନାହିଁ । ଲେଖକଙ୍କ ମତରେ 'ମଣିଷର ଗୋଦର ଗୋଡ ସିନା କିନ୍ତୁ ଆଜିକାଲି ଆମେ ସବୁ ମନରେ, ହୃଦୟରେ ଓ କାର୍ଯ୍ୟରେ ଗୋଦରା ହୋଇଯାଉଛୁ' । ସଭ୍ୟତାର ଉନ୍ନତି ହେବା ନାମରେ ମନୁଷ୍ୟ ଯାହା ପାଉଛି ତା ଠାରୁ ଅଧିକ ହରାଉଛି । ଆଜିକାଲି ବିଜ୍ଞାପନର ଯୁଗ । ବିଜ୍ଞାପନ ଦେଖି ବ୍ୟକ୍ତି ଆବଶ୍ୟକ ନଥିବା ଜିନିଷ କିଣି ଅଭାବବୋଧ ବୃଦ୍ଧି କରୁଛି । ଅଭାବ ନ ଥିଲେ ମଧ୍ୟ ଭିନ୍ନ ଭିନ୍ନ ଉପାଦାନ ସଉକରେ କିଣି ପ୍ରାଚୁର୍ଯ୍ୟରେ ରହୁଛି । ଏହା ଦ୍ୱାରା ମଣିଷ ମାନବିକତା ହରାଇ ବସୁଛି । ସ୍ୱାର୍ଥୀ ବ୍ୟକ୍ତି ବେଶ୍ ଉପାର୍ଜନ କରିବା ସ୍ଥଳେ ସାଧାରଣ ସରଳ ବ୍ୟକ୍ତି ଠକି ଯାଉଛି । ଲେଖକଙ୍କ ଭାଷାରେ "ସବୁ ଯୋଜନା, ସମସ୍ତ ସାହାଯ୍ୟ ସହଯୋଗ ଫସର ଫାଟିଯିବ"। ଦେଶର ଆର୍ଥିକ ଅବସ୍ଥା ଅବନତି ଆଡକୁ ଗତିକରିବ । ତେଣୁ ବ୍ୟକ୍ତି ସଚେତନ ହୋଇ ଯତ୍ନବାନ୍ ହେବା ଆବଶ୍ୟକ । ସମାଜ ବ୍ୟବସ୍ଥା ସୁଧାରିବାକୁ ପୂର୍ଣ୍ଣମାତ୍ରାରେ ସମସ୍ତେ ଉଦ୍ୟମ କରିବା ଉଚିତ୍ ।

ଦଶମ ପ୍ରବନ୍ଧ ହେଉଛି "ହାଁ ଜୀ । ଏଥିରେ ଲେଖକ ମାନବର ମାନବିକତା ହରାଇବା ବିଷୟକୁ ଉତ୍ଥାପନ କରିଛନ୍ତି । ମଣିଷର ଆକାର ଆକୃତି ଯେପରି ଭିନ୍ନ ସେପରି ପ୍ରକୃତି ମଧ୍ୟ ଭିନ୍ନ । କଥାରେ ଅଛି ଘୁଷୁରି ପ୍ରକୃତି ପଙ୍କେ ଲୋଟେ, ମଣିଷ ପ୍ରକୃତି ମଲେ ତୁଟେ । କ୍ରୋଧୀ, ସ୍ନେହୀ, ଉଦାର, ନମ୍ର ଆଦି ବ୍ୟକ୍ତି ନିଜ ସଭାବ ସୁଲଭ


Digitized by srujanika@gmail.com

ଗୁଣ ଅନୁଯାୟୀ ସମାଜରେ ପ୍ରତିଷ୍ଠିତ ହୋଇଥାନ୍ତି । ସତ୍ୟ, ଧର୍ମ, ନ୍ୟାୟ ଆଦର୍ଶକୁ ପାଥେୟ କରିଥିବା ବ୍ୟକ୍ତି ସର୍ବଦା ସମାଜକୁ ପ୍ରକୃତ ଦିଗ୍‌ଦର୍ଶନ ଦିଏ । କିନ୍ତୁ ସମାଜରେ ଏମିତି ବ୍ୟକ୍ତି ନିଜ ସୁବିଧା ନିମନ୍ତେ ହାଁ ଜୀ, ହାଁ ଜୀ ମନ୍ତ୍ରରେ ଦୀକ୍ଷିତ ହୋଇଥାନ୍ତି । ଏହି ବ୍ୟକ୍ତି ସମୟ ଅନୁସାରେ ମତ ପରିବର୍ତ୍ତନ କରେ । ଉପର୍ ଅଫିସର ନିକଟରେ ନିଜର ସ୍ୱାର୍ଥ ହାସଲ କରିବାକୁ ଭୁଲ୍‌କୁ ମଧ୍ୟ ଠିକ୍ ବୋଲି ଦର୍ଶାଏ । ଏହି ଧରଣର ଚରିତ୍ର ଗୋଡାଣିଆ ସ୍ୱଭାବର । ଉପରକୁ ସରଳ ଦେଖା ଗଲେ ମଧ୍ୟ ଭିତରେ ଚାଲାକ ଚତୁର । ହାଁ ଜୀ ହାଁ ଜୀ କହୁଥିବା ବ୍ୟକ୍ତି ସବୁ କ୍ଷେତ୍ରରେ କାମ ହାସଲ କରି ସମାଜକୁ ନଷ୍ଟ କରିଦେଉଛନ୍ତି । ତେଣୁ ଲେଖକ ଏହି ଶ୍ରେଣୀର ଲୋକଙ୍କର ମୂଳୋତ୍ପାଟନ କରିବାକୁ ଆହ୍ୱାନ ଦେଇ କହିଛନ୍ତି - 'ଏ ସବୁ ଅନ୍ୟାୟ ଅତ୍ୟାଚାରକୁ ଆଖି ବୁଜି ସହିବାର ବେଳ ଆଉ ନାହିଁ । ସବୁ କଥାରେ ହାଁ ଜୀ କହିବା ମନୋବୃତ୍ତିକୁ ଯଦି ଆମେ ପରିତ୍ୟାଗ ନ କରିବା, ତେବେ ଖୁବ୍ ଶୀଘ୍ର ଏ ସୃଷ୍ଟି ମୂଳପୋଛ ହୋଇଯିବ' ।

ଏକାଦଶ ପ୍ରବନ୍ଧ "ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ" । ପୂର୍ବକାଳରେ ରାଜା ଶାସନ ଥିଲା, ଜନସାଧାରଣ ରାଜାଙ୍କ ଶାସନକୁ ଭୟ କରୁଥିଲେ । ବର୍ତ୍ତମାନ ଗଣତନ୍ତ୍ର ଦେଶରେ ଜନତା ସ୍ୱାଧୀନଚେତା । ଏଇ ଯୁଗରେ ସମୟ ସହିତ ଆଗେଇ ପାରିଲେ ମନୁଷ୍ୟର ଉନ୍ନତି ହୋଇଥାଏ । କିନ୍ତୁ ନେତାମାନେ କ୍ଷମତାକୁ ଆବୋରି ଜନତାଙ୍କ ସମସ୍ୟାକୁ ବୁଝିବା ପାଇଁ ଇଚ୍ଛା କରନ୍ତି ନାହିଁ । ନିଜର ସ୍ୱାର୍ଥରେ ଲିପ୍ତ ରହି ନିର୍ବାଚନ ସମୟରେ ଜନସାଧାରଣଙ୍କୁ ଦେଇଥିବା ପ୍ରତିଶ୍ରୁତି ଭୁଲିଯାଆନ୍ତି । ଲୋକଙ୍କ ସମସ୍ୟା ବଢି ଚାଲେ । ପୁଣି ନିର୍ବାଚନ ନିକଟ ହେଲେ ନେତାମାନେ ସଚେତନ ହୁଅନ୍ତି । କିନ୍ତୁ ସେତେବେଳକୁ ନେତାଙ୍କ ସମୟ ସରିଆସିଥାଏ । ଜନତା ନେତାଙ୍କ ପ୍ରତି ବିରକ୍ତ ଏବଂ ବିରୋଧ ଭାବ ପ୍ରଦର୍ଶନ କରେ । କେତେକ ମଣିଷ ନିଜ ଭାଗ୍ୟକୁ ଆଦରି କିଛି କାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି ନାହିଁ । ସମୟ ଅତିକ୍ରମ ହୋଇଯାଏ, ସେମାନେ ଅଳସୁଆ ପରି ବସି ରହିଥାନ୍ତି । ସମାଜରେ ଅନେକ ଚତୁର ବ୍ୟକ୍ତି ଅଛନ୍ତି, ଯେଉଁମାନେ ସମୟ ସହ ପାଦ ମିଳେଇ ଗତି କରୁଥିବା କହୁଥାନ୍ତି ଏବଂ ସମୟକୁ ବାନ୍ଧି କରି ଧରି ରହିଥିବା ଦେଖେଇ ହୁଅନ୍ତି । ସମୟ ଚାଲିଗଲା ପରେ ମଧ୍ୟ ସେମାନେ କିଛି କାର୍ଯ୍ୟ ସଂପନ୍ନ କରିପାରନ୍ତି ନାହିଁ । ସମାଜର ତଥା କଥିତ ବଡବାବୁମାନେ ସମୟ ଅନୁସାରେ କାର୍ଯ୍ୟଟି ସମ୍ପାଦନ କରି ନ ପାରି ଅନ୍ୟ ମୁଣ୍ଡରେ ଦୋଷ ଲଦି ଦେଇଥାନ୍ତି । ସରକାରୀ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବ୍ୟକ୍ତି କ୍ଷମତାର ଅପବ୍ୟବହାର କରେ । ଠିକ୍ ସମୟରେ କାର୍ଯ୍ୟ ବା ଯୋଜନାକୁ ସମାପ୍ତ କରେ ନାହିଁ । ଫଳତଃ, ଯୋଜନା ବା ପ୍ରକଳ୍ପଟି ବର୍ଷ ବର୍ଷ କାର୍ଯ୍ୟକାରୀ ହୋଇ ପାରେ ନାହିଁ । ଦୁର୍ନୀତି ବଢ଼ିଚାଲେ । ଏହି ସବୁ ବିଷୟ ପ୍ରତି ଜନତା ବା ସରକାର ବେଳ ଥାଉ ଥାଉ ସଚେତନ ହେବାକୁ ଆହ୍ୱାନ ଦେଇ ଲେଖକ କହିଛନ୍ତି-



Digitized by srujanika@gmail.com

"ଏଣୁ, ବେଳହୁଁ ସାଧୁ ସାବଧାନ" ।

ଦ୍ୱାଦଶ ପ୍ରବନ୍ଧ "କହି ଜାଣିଲେ" । କଥା କହିବା ଏକ କଳା । କଥା କହିବା ଢଂଗୀରେ ମଣିଷର ବ୍ୟକ୍ତିତ୍ୱ ପରିସ୍ଫୁଟନ ହୁଏ । ଜଣେ ଜଣେ ବ୍ୟକ୍ତିଙ୍କର ମଧୁର ବଚନ କହି ଅନ୍ୟକୁ ମୋହିବା ବା ସନ୍ତୋଷ କରିବା ଶକ୍ତି ଥାଏ । ସବୁଠାରେ କହିବା ଲୋକ ବିଚରଣ କରନ୍ତି । ଅବଶ୍ୟ ସବୁ କ୍ଷେତ୍ରରେ କହିବା ଲୋକଙ୍କୁ ସମସ୍ତେ ପସନ୍ଦ କରନ୍ତି ନାହିଁ । କିନ୍ତୁ ସମାଜରେ ସେମାନେ ପ୍ରାଧାନ୍ୟ ବିସ୍ତାର କରି ଲୋକଙ୍କୁ କହି ବୋଲି କାର୍ଯ୍ୟ ହାସଲ କରି ପାରନ୍ତି । ଯେଉଁମାନେ ବ୍ୟବସାୟୀ ସେମାନେ ସୁନ୍ଦର କଥା କହି ଲୋକଙ୍କ ମନକୁ ବଶୀଭୁତ କରିପାରନ୍ତି । ଓକିଲ, ଡାକ୍ତର, ନେତାମାନେ ମନଭୁଲା କଥା କହି ଲୋକଙ୍କୁ ଭୁଲାଇ ଦିଅନ୍ତି । ଏହିପରି ଲୋକଙ୍କ ପଛରେ ଗପୁଡା, ପ୍ରଗଲ୍‌ଭ, କୁହାମୁଣ୍ଡା କପିଳା ଆଦି କେତେକ ବିଶେଷଣ ଯୋଡା ଯାଏ । କିନ୍ତୁ ସେମାନଙ୍କର ବାକ୍ ଚାତୁରୀ ବା ବାକ୍ ପଟୁତାରେ ମନ୍ତ୍ର ମୁଗ୍ଧ ହୋଇ ଆମେ ଅସଲ କଥାକୁ ଫେରିବାକୁ ଚାହିଁଲା ବେଳକୁ ସେମାନେ ଅନ୍ୟ କଥାର ଖିଅ ଯୋଡି ଦିଅନ୍ତି ।

ତ୍ରୟୋଦଶ ପ୍ରବନ୍ଧ "ସୁବିଧାବାଦୀ ସପକ୍ଷରେ" । ସୁବିଧାବାଦୀ ଲୋକମାନେ ଏପରି ଶ୍ରେଣୀର ସମାଜର ସବୁ ସ୍ତରରେ ବିଚରଣ କରୁଥିବା ଦେଖାଯାଏ । ମଣିଷ ନିଜ ସୁବିଧା ଅନୁସାରେ କାର୍ଯ୍ୟ କରେ । ଲେଖକଙ୍କ ଭାଷାରେ-ସମସ୍ତେ କିନ୍ତୁ ସୁବିଧାବାଦୀ ହୋଇପାରିବେ ନାହିଁ । କାରଣ ସୁବିଧାବାଦୀ ହେଉଛି ଏକ କଳା । ଯିଏ, ଏହି କଳା ନେଇ ଜନ୍ମ ନେଇଛି, ସେହି ତାକୁ ନେଇ ଆଣି ଠିକ୍ ଭାବେ ଥୋଇ ପାରିବ । ସେମାନଙ୍କ ନିଜସ୍ୱ କୌଶଳ ଅନୁଯାୟୀ କାର୍ଯ୍ୟ କରିବେ । ସୁବିଧା ଦେଖି ସେଠାରୁ ଖସି ପଳାଇବ । ଏମାନଙ୍କର ନୀତି ଆଦର୍ଶ କିଛି ନଥାଏ । ସେମାନେ କେବଳ ନିଜ ସ୍ୱାର୍ଥ କଥା ଚିନ୍ତା କରନ୍ତି । ସବୁ ସ୍ଥାନରେ ଏହି ଶ୍ରେଣୀର ବ୍ୟକ୍ତି ଥାଆନ୍ତି । ସାହିତ୍ୟ, ରାଜନୀତି, ରେଳ ଷ୍ଟେସନ, ବ୍ୟାଙ୍କ ଆଦି ସର୍ବସାଧାରଣଙ୍କ ସ୍ଥାନରେ ସେମାନେ ନିଜ କଳାକୁ ପ୍ରଦର୍ଶନ କରନ୍ତି । ଲେଖକଙ୍କର ମତରେ-"ସୁବିଧାବାଦୀମାନେ ସାଂପ୍ରତିକ ରାଜନୈତିକ ନେତାମାନଙ୍କ ପରି ଅନୁଷ୍ଠାନ ପରେ ଅନୁଷ୍ଠାନ ବଦଳାନ୍ତି, ନିଜ ସ୍ୱାର୍ଥ ହାସଲ ନ ହେଲେ ସେହି ଅନୁଷ୍ଠାନ ଛାଡି ଅନ୍ୟ ଏକ ଅନୁଷ୍ଠାନକୁ ଚାଲିଯାଆନ୍ତି" । ପ୍ରକୃତ ପକ୍ଷେ ଟିକେ ଗଭୀର ଭାବେ ଚିନ୍ତା କଲେ ଲେଖକଙ୍କ ସୂଚନା ଅନୁସାରେ ସବୁଦିନେ ଏହି ସୁବିଧାବାଦୀ ପ୍ରକୃତି କାମ ଦେବ ନାହିଁ । ଦିନେ ଅନ୍ଧାର ରାତି ଆଲୁଅ ହୁଏ । ସେମାନଙ୍କ ସୁବିଧାବାଦ ଧରା ପଡ଼ିଯାଏ ।

ଚତୁର୍ଦ୍ଦଶ ପ୍ରବନ୍ଧ "ସତ କହିବାକୁ କିଆଁ ଡରିବି" । ଆଜିର ସମାଜରେ ମାନବର ମାନବିକତା ହଜିଗଲାଣି, ମାନବୀୟ ଗୁଣାବଳୀ ସମାଜରେ ଦେଖିବାକୁ ମିଳୁ



Digitized by srujanika@gmail.com

ନାହିଁ । ସତ କହୁଥିବା ବ୍ୟକ୍ତି ଜୀବନରେ ବହୁ ସମସ୍ୟାର ସମ୍ମୁଖୀନ ହୋଇ ସଂଘର୍ଷ ପଥରେ ଆଗଉଛି । ପୂର୍ବ କାଳରେ ଭାଇ-ବନ୍ଧୁ, ସଖା-ସହୋଦର, ବନ୍ଧୁ-ପରିଜନଙ୍କ ଭିତରେ ସ୍ନେହ, ମମତା ବନ୍ଧନର ଡୋରି ଥିଲା । ଜଣେ ଅନ୍ୟ ଜଣକୁ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲା । ଆଜି ଜଣେ ଅନ୍ୟକୁ ସାହାଯ୍ୟ କରିବାକୁ ଚାହୁଁ ନାହିଁ । ପ୍ରକୃତରେ ମନୁଷ୍ୟ କୌଣସି ଅସୁବିଧାକୁ ଯିବା ପାଇଁ ଇଚ୍ଛା କରୁନାହିଁ । ସତ କହିବା ବ୍ୟକ୍ତିର ମୃତ୍ୟୁ ଆଜି ସୁନିଶ୍ଚିତ । ଲେଖକଙ୍କ ଭାଷାରେ ଯିଏ ସତ କହିଲା, ସିଏ ତିନି ପାଞ୍ଚିରୁ ଗଲା- ସତ୍ୟ, ଧର୍ମ ଓ ନ୍ୟାୟର ସଂଜ୍ଞା ଆଜି ସଂପୂର୍ଣ୍ଣ ବଦଳି ଗଲା ପରି ଲାଗୁଛି ।

କ୍ଷମତା ଥିବା ବ୍ୟକ୍ତି ବର୍ତ୍ତମାନ ଯୁଗରେ ସବୁଠାରେ ବିଜ୍ଞ ରୂପେ ପରିଚିତ । ସେମାନଙ୍କୁ ସାଧାରଣ ଲୋକ ଭଗବାନ ମନେ କରେ । କ୍ଷମତାଧାରୀ ବ୍ୟକ୍ତି କଥା ଯିଏ ଶୁଣିବ ନାହିଁ ସେ ତଳିତଳାନ୍ତ ହୋଇଯିବ । ଆଜିର ଦୁନିଆରେ ଅନ୍ୟାୟ, ଅନୀତି, ଦୁର୍ନୀତି ସେହି କ୍ଷମତାଧାରୀ ବ୍ୟକ୍ତିଙ୍କ ଦ୍ୱାରା ଲତା ପରି ମାଡି ମାଡି ଯାଉଛି । ତା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସାଧାରଣ ମଣିଷ ଭୟ କରୁଛି । ଯେଉଁଠି ଅନ୍ୟାୟ ବା ଅନୀତି ହେବା ଦେଖୁଛି ସେଠାରେ ସତ କହିବାକୁ ଡରୁଛି । ମାନବିକ ମୂଲ୍ୟବୋଧ ହରାଇଥିବା ବ୍ୟକ୍ତି ପ୍ରଥମେ ନିଜ ସ୍ୱାର୍ଥ କଥା ଚିନ୍ତାକରେ । ତେଣୁ ସମାଜରେ ଅନ୍ୟାୟ ବଢି ବଢି ଚାଲିଛି । ଏହାର ଶେଷ କେଉଁଠି ଜଣା ଯାଉନାହିଁ । କିନ୍ତୁ ଲେଖକ ସୂଚାଇଛନ୍ତି- ଏ ସବୁର ବିଲୋପ ପାଇଁ ଆଉ ଏକ ଗଣ ଆନ୍ଦୋଳନର ଆବଶ୍ୟକତା ରହିଛି ।

ବାସ୍ତବରେ "କାହାକୁ କହିବା" ଲେଖକଙ୍କ ଉଚ୍ଚକୋଟୀର ରମ୍ୟରଚନା ପୁସ୍ତକ । ଚଉଦଗୋଟି ପ୍ରବନ୍ଧ ମଧ୍ୟରେ ଓଡିଆ ସଂସ୍କୃତି, ଚଳଣି ଓ ସଭ୍ୟତା ସମ୍ପର୍କରେ ତର୍ଜମା କରାଯାଇଛି । ମୋଟାମୋଟି ଭାବେ ଆଧୁନିକ ଜୀବନର ବହୁବିଧ ଜଟିଳ ସାମାଜିକ ସମସ୍ୟା ସମ୍ବନ୍ଧରେ ପ୍ରବନ୍ଧ ଗୁଡିକରେ ଉଦ୍‌ଭାସିତ ହୋଇଛି । ମୁଖ୍ୟତଃ ପ୍ରତ୍ୟେକ ପ୍ରବନ୍ଧରେ ସାଧାରଣ ଜୀବନ ସହିତ ଜାତି, ସମାଜ ଓ ସଂସ୍କୃତି ଆଦିର ସମସ୍ୟା ସମ୍ବନ୍ଧରେ ଲେଖକଙ୍କ ଅନୁଭୂତି ସ୍ପର୍ଶରେ ବଳିଷ୍ଠ ରୂପ ପରିଗ୍ରହଣ କରିଛି । ପୁସ୍ତକଟି ସର୍ବଦା ସମାଜକୁ ପରିବର୍ତ୍ତନ କରିବା ଦିଗରେ ଲୋକଙ୍କୁ ସଚେତନ କରାଉଥିବ ।



ଅଧ୍ୟକ୍ଷା
ଛତ୍ରପୁର ମହିଳା ଡିଗ୍ରୀ ମହାବିଦ୍ୟାଳୟ
ଛତ୍ରପୁର, ଗଞ୍ଜାମ



Digitized by srujanika@gmail.com

# ଓଡିଆ ଶିଶୁ ସାହିତ୍ୟର ଜାଜ୍ୱଲ୍ୟମାନ ନକ୍ଷତ୍ର : ବସନ୍ତ କିଶୋର ସାହୁ

ଶ୍ରୀରଙ୍ଗ ନାୟକ

ଓଡିଆ ଶିଶୁ ସାହିତ୍ୟର ଜଣେ ବରିଷ୍ଠ ସାଧକ, ଗବେଷକ ଓ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ସଂଗଠକ ଡକ୍ଟର ମନୀନ୍ଦ୍ର କହନ୍ତି- 'ଓଡିଆ ଭାଷାରେ ଶିଶୁ ସାହିତ୍ୟ ଗବେଷଣା ଆକାଶରେ ଏକ ନକ୍ଷତ୍ର ଉଦୟ ହେଲା । ଡକ୍ଟର ସାହୁ ହେଉଛନ୍ତି -ଓଡିଆ ଭାଷାରେ ଶିଶୁ ସାହିତ୍ୟ ଗବେଷଣା କ୍ଷେତ୍ରରେ ପଞ୍ଚମ ଗବେଷକ ।'

ତା୧୨ ଅକ୍ଟୋବର ୧୯୯୬ ବେଳକୁ ଶିଶୁ ସାହିତ୍ୟ ଗବେଷଣା କ୍ଷେତ୍ରରେ ବସନ୍ତ ବାବୁ ହେଉଛନ୍ତି ପଞ୍ଚମ ପ୍ରୟାସୀ । କିନ୍ତୁ ମୌଖିକ ଶିଶୁ ସାହିତ୍ୟ ଗବେଷଣା କ୍ଷେତ୍ରରେ ସେ ହେଉଛନ୍ତି ଏକମାତ୍ର ଅଦ୍ୱିତୀୟ ଗବେଷକ ।

ସର୍ବ ପ୍ରଥମେ ସେ ଥିଲେ ଜଣେ ଶିଶୁ ସାହିତ୍ୟର ସ୍ୱନାମ ଧନ୍ୟ ସ୍ରଷ୍ଟା । ପରେ ସେ ଜଣେ ଶିଶୁ ପତ୍ରିକାର ସଂପାଦକ । ଏହି ସାହିତ୍ୟ ସାଧନାରୁ ଶେଷରେ ତାଙ୍କୁ ଗବେଷକ ହେବା ପାଇଁ ପ୍ରେରଣା ମିଳିଥିଲା । ପ୍ରଫେସର ଡଃ. ମନୀନ୍ଦ୍ର ମହାନ୍ତିଙ୍କ ତତ୍ତ୍ୱାବଧାନରେ (ମାର୍ଗଦର୍ଶନରେ) ସେ ୧୯୯୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ବିଦ୍ୟାବାରିଧି (ପିଏଚ୍.ଡି. ଡିଗ୍ରୀ) ଉପାଧି ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ।

ଅବିଭକ୍ତ କୋରାପୁଟରେ ସର୍ବପ୍ରଥମେ ଲୋକଗୀତି ସଞ୍ଚୟନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିଲେ ପଣ୍ଡିତ ମଞ୍ଜୁଘୋଷ ତ୍ରିପାଠୀ । ଚଇତିପରବ ତାଙ୍କର ଶ୍ରେଷ୍ଠ କୃତି । ପରବର୍ତ୍ତୀ କାଳରେ ଗୁଣୁପୁର କବି ବଂଶଧାରାର ସଂପାଦକ ଗୋବିନ୍ଦ ଖୁଣ୍ଟିଆ ୧୯୯୨-୯୩ରେ ଶିଶୁ ସାହିତ୍ୟ କର୍ମଶାଳା ପାଇଁ ପ୍ରବନ୍ଧଟିଏ ଲେଖିଥିଲେ 'ଆଦିବାସୀ ମୌଖିକ ଶିଶୁ ସାହିତ୍ୟ' ମାତ୍ର ୪ ପୃଷ୍ଠାରେ । ଏହି କିଛି ଦିନ ତଳେ କୋରାପୁଟ ଲୋକଗୀତି ସଂଗ୍ରହ କରି ପ୍ରକାଶ କରିଥିଲେ ସ୍ୱନାମ ଧନ୍ୟ କବି, ଗବେଷକ ଶ୍ରୀ ଜଳଧର ସ୍ୱାଇଁ । ଗବେଷକ ସୁବାସ ଚନ୍ଦ୍ର ମିଶ୍ର ତଥା ଡକ୍ଟର ସୀମାଞ୍ଚଳ ପ୍ରଧାନ ଆଦି କେତେ ଜଣ ଲୋକ ସଂସ୍କୃତି ପ୍ରେମୀ ଗବେଷକ ଆଦିବାସୀ ଲୋକଗୀତ, ଲୋକକଥା ସଂଗ୍ରହ କରିଥିବା ଦେଖିବାକୁ ମିଳେ । କିନ୍ତୁ 'ମୌଖିକ ଶିଶୁ ସାହିତ୍ୟ' ଗବେଷଣା କ୍ଷେତ୍ରରେ କୋରାପୁଟ



Digitized by srujanika@gmail.com

ଜିଲ୍ଲା ତଥା ରାଜ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ହେଉଛନ୍ତି ପ୍ରଥମ ବ୍ୟକ୍ତି ।

ସ୍ମୃତିପଟରୁ ଲିଭିଲିଭି ଆସୁଥିବା ଲୋକ ସଂସ୍କୃତି ମୂଳକ ଅନାଲୋଚିତ ଏହି ଓଡିଆ ମୌଖିକ ଶିଶୁ ସାହିତ୍ୟ ତାର ସଂଗ୍ରହ, ସଂରକ୍ଷଣ କରିବା ବହୁକଷ୍ଟ ସାଧ୍ୟ ଆୟାସ । ଏ ସମସ୍ତ ଲୋକଗୀତିର ଉପାଦାନ ସଂଗ୍ରହ କରିବାକୁ ହେଲେ ବହୁ ପରିଶ୍ରମ ତଥା ବିଭିନ୍ନ ସ୍ଥାନ ଭ୍ରମଣ ଏବଂ ବହୁଗ୍ରନ୍ଥର ଆଲୋଚନା ସହ ବହୁ ବିଦ୍ୱାନ ତଥା ସାଧାରଣ ଲୋକଙ୍କର ଦ୍ୱାରସ୍ଥ ହେବାକୁ ହୁଏ । ଡକ୍ଟର ସାହୁ ଏହି ବିଲୁପ୍ତ ହେବାକୁ ଯାଉଥିବା ଓଡିଆ ମୌଖିକ ଶିଶୁ ସାହିତ୍ୟକୁ ସଂଗ୍ରହ ତଥା ଗବେଷଣା କରି ଏକ ଉଦାହରଣ ପାଲଟି ଯାଇଛନ୍ତି । ଏହା କହିବା ବାହୁଲ୍ୟମାତ୍ର, ତାଙ୍କର ଅକ୍ଲାନ୍ତ ପରିଶ୍ରମ, ଅଦମ୍ୟ ଚେଷ୍ଟା ତାଙ୍କୁ ତାଙ୍କ ଲକ୍ଷ୍ୟ ପଥରେ ପହଞ୍ଚାଇବାରେ ସାହାଯ୍ୟ କରିଛି ।

ଓଡିଆ ଜାତି ପାଇଁ, ଭାଷା ପାଇଁ ଏହା ଏକ ମହାନ ଅବଦାନ । ଏହା ଯେ କେହି ସ୍ୱୀକାର କରିବେ । ଉତ୍କଳୀୟ ଲୋକ ସଂସ୍କୃତି ମୂଳକ ଏହି ମୌଖିକ ଶିଶୁ ସାହିତ୍ୟର ସନ୍ଦର୍ଭଟିକୁ ଓଡିଆ ସାହିତ୍ୟର ଅମୂଲ୍ୟକୃତି ରୂପେ କାଳ କାଳକୁ ଡଃ. ସାହୁଙ୍କୁ ମନେ ରଖିଥିବେ ସଂସ୍କୃତି ପ୍ରେମୀ ଓଡିଶାବାସୀ ।

ଲୋକ ସ୍ମୃତିରେ ଶ୍ରୁତିରେ କେତେ ଯେ ଅଜଣା କଥା ଲୁଚି ରହିଛି ତାର ଏବେ ବି ସଂକଳନ ହୋଇ ପାରିନି, ଲୋକ ଲୋଚନକୁ ଆସିନି । କିଏ କାହିଁକି ବା ଏଥିପ୍ରତି ଦୃଷ୍ଟି ଦେବେ । କିନ୍ତୁ ଏହି ଜାତୀୟ କର୍ତ୍ତବ୍ୟକୁ ଆପଣେଇ ମାନବଜାତିର ଚିରାଚରିତ ପ୍ରଥା, ଭାଷା, ସଂସ୍କୃତି, ଲୋକ ସାହିତ୍ୟ, କଳାକୃତିକୁ ଜୀବିତ ନ ରଖିଲେ ଆଉ ପଛକୁ ଚାହିଁବା ପାଇଁ ସମୟ ନ ଥିବ । ଶେଷକୁ ଅନ୍ଧାର ହିଁ ଅନ୍ଧାର ଦେଖାଯିବ ।

ସମୟ ଆସୁଛି, ଆଉ ଧୋରେ ବାୟା ଧୋ, ଆ ଜହ୍ନ ମାମୁ ସରଗ ଶଶି, ଇଚିକିଲି ମିଚିକିଲି ଫୁଟିଗଲା କାଇଁଚ, ଝୁଲୁରେ ହାତୀ ଝୁଲ୍, ଡାମରା କାଉରେ ଡାମରା କାଉ, ବାଇଚଢେଇରେ ବାଇଚଢେଇ, ଟୁଉକୁ ମୂଷି-ଧାନ ଭରଣକ ଖାଉଥା ବସି ଆଦି ମୌଖିକ ଶିଶୁ ସାହିତ୍ୟ ଧିରେ ଧିରେ ଲୁଚିଯିବ । ବହୁ ପ୍ରାଚୀନ ଭାଷା, ସାହିତ୍ୟ ଲୋପ ହୋଇ ସାରିଲାଣି । କାନ୍ଦଣା ଗୀତ ଆଉ ଶୁଭୁନି, ହଳିଆ ଭୁଲି ଗଲାଣି ତାର ହଳିଆ ଗୀତ । କିଏ ଏ ସବୁକୁ ସାଉଁଟି ରଖିବ ତାର ସଂସ୍କୃତିର ଗନ୍ତାଘରେ ? କେବଳ ବସନ୍ତ ବାବୁଙ୍କ ପରି ନିରଳସ, ପରିଶ୍ରମୀ ତଥା ଜାତିପ୍ରେମୀକୁ ନେଇ ଭାଷା ସଂସ୍କୃତିର କେଇ ଜଣ ପ୍ରତିଭାଧାରୀ ଏବଂ ସୌଖୀନ୍ ଗବେଷକ ବୃନ୍ଦ ହିଁ ଏହାର ସୁରକ୍ଷା ପାଇଁ ଆଗେଇ ଆସି ପାରନ୍ତି ।

ସୃଷ୍ଟିର ସୁନ୍ଦର ତମ ପୁଷ୍ପ ହେଉଛି ଶିଶୁ । ମାତୃ ହୃଦୟରେ ଆଣିଦିଏ ଅଫୁରନ୍ତ



Digitized by srujanika@gmail.com

ଅଲୌକିକ ଆନନ୍ଦ । ମାଟି କବି ପାଲଟି ଯାଏ ଶିଶୁର ସାନିଧ ପାଇ । ପରମପୁରୁଷଙ୍କ ସୃଷ୍ଟିର ସୁନ୍ଦରତମ ପୁଷ୍ପରୁ ଝରିପଡେ ଅମୃତର ବିନ୍ଦୁ । ସଙ୍ଗୀତର ମୂର୍ଚ୍ଛନାରେ ଆପେ ଆପେ ମନ୍ତ୍ରମୁଗ୍ଧ ହୋଇ ପଡେ ଜନନୀ । ପିଲାଟିର ସନ୍ତୋଷ ବିଧାନ ପାଇଁ ତା ମୁଖରୁ ଖସି ପଡେ ଅମୃତମୟୀ ଛନ୍ଦମୟ ବାଣୀ ଆଉ କାହାଣୀ । ପୃଥିବୀ ପୃଷ୍ଠରେ ଶହଶହ ବର୍ଷ ଧରି ପିଲାଙ୍କ ମନୋରଞ୍ଜନ କରୁଥିବା, ମାତୃ ହୃଦୟର ଅମୃତବାଣୀ ଆଉ ଶୁଣିବାକୁ ମିଳୁନି । ଚିରଞ୍ଜିବୀ ହୋଇ ଯେଉଁ କେତୋଟି ମଧୁମୟ ଗୀତର ଲହରୀ ମାତୃହୃଦୟରେ ଖେଳା କରୁଛି ସେମାନେ ମଧ୍ୟ ପୂର୍ବଜଙ୍କ ଭଳି ବିଦାୟ ନେବାକୁ ବସିଲେଣି । ପରମାତ୍ମାଙ୍କ ସୃଷ୍ଟିର ଏହି ସମ୍ଭାରକୁ ସାଇତି ରଖିବା ଆଜି ଆମ ପାଇଁ ଏକ ଜାତୀୟ କର୍ତ୍ତବ୍ୟ ହୋଇଯାଇଛି ।

କାଳର କରାଳ ଗର୍ଭରେ ବିଲୀନ ହେବାକୁ ଯାଉଥିବା ମମତାମୟୀ ମାର ଅମୃତ ମାଧୁରୀକୁ ଡକ୍ଟର ବସନ୍ତ କିଶୋର ସାହୁଙ୍କ ପରି ପ୍ରଯତ୍ନଶୀଳ ହେଲେ, ସଂଗ୍ରହ କରି ଲୋକ ଲୋଚନକୁ ଆଣିଲେ ଆମ ଓଡିଆ ଲୋକ ସଂସ୍କୃତି ଋଦ୍ଧିମନ୍ତ ହୋଇ ପାରନ୍ତା ।

ଡକ୍ଟର ସାହୁ କେବଳ ଏ କ୍ଷେତ୍ରରେ ଗବେଷଣା କରିଛନ୍ତି, ସଂଗ୍ରହ କରିଛନ୍ତି, ତାହା ନୁହେଁ ସେ ଜଣେ ଶିଶୁ ସାହିତ୍ୟର ଅମୃତସ୍ରଷ୍ଟା । ପିଲାଙ୍କ ପାଇଁ ସେ ସୃଷ୍ଟି କରିଛନ୍ତି ମନଛୁଆଁ ବହୁ ଶିଶୁ ଗୀତି କବିତା । ଏ କ୍ଷେତ୍ରରେ ତାଙ୍କର ବହୁ ସୁନାମ ରହିଛି । ଫୁଲ ଆମେ ଫୁଲ, ଅଗଡ଼ ବଗଡ଼ ଝାଇଁକି ଝୁମ୍ପା ଆଦି ଶିଶୁ ସାହିତ୍ୟ ସୃଷ୍ଟି କରି ସେ ସମସ୍ତଙ୍କର ପ୍ରିୟ ଭାଜନ ହୋଇପାରିଛନ୍ତି । ସରଳ ସାବଲୀଳ, ମନେ ରଖିଲା ପରି କବିତା ସୃଷ୍ଟି କରିବାରେ ସେ ଜଣେ ଦକ୍ଷଶିଳ୍ପୀ । ତାଙ୍କର ଏକ ଶିଶୁ କବିତାକୁ ଅବଲୋକନ କଲେ ଜଣା ପଡିବ ଯେ ସେ ଏ କ୍ଷେତ୍ରରେ ପାଠକଙ୍କ ନିକଟରେ କେତେ ପ୍ରିୟ ହୋଇପାରିଛନ୍ତି -

କଇଁଚି କାକୁଡି ପିତା ନଳିତା
ମାଆ ବଳୁଥିଲେ ବସି ସଳିତା,
ବଳିତାରେ ଘିଅ ଲଗେଇ ଦିଅ
ବଳିତା ଜଳିଲେ ହୁଏ ଆଲୁଅ ।

x x x

ବାଡିରେ ବାଜିବ ଡମ୍ବରୁ ବାଜା-
ଦେଖ ଦେଖ ଭାଇ କେମିତି ମଜା,
ମଜା ଦେଖି ପୁଅ ନାଚିବ ଡେଇଁ
ଖୁସିରେ ମାଆ ବି ଆସିବେ ଧାଇଁ ।
(କଇଁଚି କାକୁଡି ପିତା ନଳିତା)



Digitized by srujanika@gmail.com

ବସନ୍ତ ବାବୁଙ୍କ ସମଗ୍ର କୃତିକୁ ଆମ ଭଳି ସାଧାରଣ ପାଠକ ତାର ମୂଲ୍ୟବୋଧକୁ କିଭଳି ଆକଳନ କରିପାରିବ ? ତଥାପି ବନ୍ଧୁଙ୍କ ସାହିତ୍ୟିକ ବିଭବକୁ ପ୍ରଶଂସା ନକରି ରହି ହେବନି । ଓଡିଶାର ପ୍ରଖ୍ୟାତ ଶିଶୁ ସାହିତ୍ୟ ଗବେଷକ, ସ୍ୱନାମଧନ୍ୟ ଆଲୋଚକ, ପ୍ରାବନ୍ଧିକ ଡକ୍ଟର ଜଗନ୍ନାଥ ମହାନ୍ତି ବସନ୍ତ ବାବୁଙ୍କ ସନ୍ଦର୍ଭକୁ ଦେଖି କହିଥିଲେ - 'ଓଡିଆ ଶିଶୁ ସାହିତ୍ୟର ଅନ୍ୟତମ ସ୍ରଷ୍ଟା ଓ ସମୀକ୍ଷକ ଭାବରେ ସୁପରିଚିତ ଡକ୍ଟର ବସନ୍ତ କିଶୋର ସାହୁଙ୍କର ଏକ ଅନବଦ୍ୟ ଅବଦାନ - ଓଡିଆ ମୌଖିକ ଶିଶୁ ସାହିତ୍ୟ । ଏହା ତାଙ୍କର ଦୀର୍ଘ ସମୟ ଓ ବହୁ ଶ୍ରମର ଫଳଶ୍ରୁତି ।'

ସ୍ୱନାମଧନ୍ୟ ଲେଖକ ଓ ଗବେଷକ ଡକ୍ଟର ସାହୁ ଖୁବ୍ ସୁଚିନ୍ତିତ ଓ ଯୁକ୍ତିଯୁକ୍ତ ଭାବରେ ମୌଖିକ ଶିଶୁ ସାହିତ୍ୟର ବିଶେଷତ୍ୱ ଓ ମୌଳିକତା ଦୃଷ୍ଟିରୁ ଏଥି ପାଇଁ ସ୍ୱତନ୍ତ୍ର ଆସନ ଦାବି କରନ୍ତି ।

ଆଜି ଶିଶୁ ସାହିତ୍ୟ କ୍ଷେତ୍ରରେ ସେହି ଦାବି ପୂରଣ ହୋଇ ସାରିଛି, ଓଡିଶାର ସାହିତ୍ୟ ଓ ସାହିତ୍ୟିକଙ୍କ ମଧ୍ୟରେ ସେ ଜଣେ ସଫଳ ଗବେଷକ ଓ ଶିଶୁ ସାହିତ୍ୟ ସ୍ରଷ୍ଟା ଭାବରେ ସୁପରିଚିତ । ପ୍ରାୟ ୧୭ବର୍ଷ ତଳେ ଡଃ. ମନୀନ୍ଦ୍ର ମହାନ୍ତି ଓ ଡଃ. ଜଗନ୍ନାଥ ମହାନ୍ତି ଯାହା କହିଥିଲେ ଆଜି ସେ ତାର ବହୁ ଆଗକୁ ଅଗ୍ରଗତି କରି ସୃଷ୍ଟି କରିଛନ୍ତି ବହୁ ଶିଶୁ ସାହିତ୍ୟ ଓ ଗବେଷଣାଧର୍ମୀ ବହୁ ଉପାଦେୟ ଗ୍ରନ୍ଥ ।

ଏକାଧାରରେ ସେ ଜଣେ ସୁସଂଗଠକ, ସଂପାଦକ, ସଫଳ ସାହିତ୍ୟ ସ୍ରଷ୍ଟା, ଆଉ ଜଣେ ଛାତ୍ରପ୍ରିୟ ଅଧ୍ୟାପକ । ବର୍ତ୍ତମାନ ସେ କୋରାପୁଟର ଜଣେ ସୁପରିଚିତ ପ୍ରକାଶକ ମଧ୍ୟ । ସେ ବହୁ ଉପାଦେୟ ଗ୍ରନ୍ଥ ନିଜ ମୁଦ୍ରଣାଳୟରେ ମୁଦ୍ରିତ କରାଇ ଲୋକପ୍ରିୟ, ଲେଖକ ପ୍ରିୟ ହୋଇପାରିଛନ୍ତି । 'ବଗଲାବଗୁଲୀ' ଶିଶୁ ପତ୍ରିକା ଓ ସୁନାବେଡା ବନଫୁଲ ସାହିତ୍ୟ ପରିଷଦ (ବନଫୁଲ)ର ସଂପାଦକ । ସେମିଳିଗୁଡା ଲେଖକ ପାଠକ ସମ୍ମେଳନର ସଂପାଦକ ମଧ୍ୟ । ସଂପାଦନା କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିବା ଡଃ. ବସନ୍ତ କିଶୋର ସାହୁଙ୍କର ଦୁଇଟି ଅମୂଲ୍ୟ ସ୍ମରଣିକା -(୧)ସର୍ଣ୍ଣକ୍ଷେତ୍ର(ଶ୍ରୀ ଜଗନ୍ନାଥ ସେବା ସଂସ୍ଥା, ସୁନାବେଡା-୨) ତଥା ଅନ୍ୟଟି (୨) ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡା ର ମୁଖପତ୍ର 'ସ୍ମରଣିକା' । ଏଥିରେ ଗୋପବନ୍ଧୁ ବିଶେଷାଙ୍କ ଏବଂ ଫକୀର ମୋହନ ବିଶେଷାଙ୍କ ପରି ବହୁ କାଳଜୟୀ ସ୍ରଷ୍ଟାଙ୍କ ଉପରେ ବହୁ ତଥ୍ୟ, ଉପାଦାନ ବହୁ ଗବେଷକ ଓ ପ୍ରାବନ୍ଧିକଙ୍କର ଅମୂଲ୍ୟ ପ୍ରବନ୍ଧ ରହିଛି । ଗୋଟିଏ ଶ୍ରୀ ଜଗନ୍ନାଥ ଚେତନାଧର୍ମୀ ଏକ ଆଧ୍ୟାତ୍ମିକ ପତ୍ରିକା ଅନ୍ୟଟି ଓଡିଆ ଭାଷା ସାହିତ୍ୟର ବାହକ ସ୍ମରଣିକା । ଏପରି ଦୁଇଟି ଭିନ୍ନ ଭିନ୍ନ ଧର୍ମୀ ପତ୍ରିକାର ସଂପାଦନା କରି ସେ ଜଣେ ଦକ୍ଷ ସଂପାଦକର ପରାକାଷ୍ଠା ଦେଖାଇ ପାରିଛନ୍ତି ।



Digitized by srujanika@gmail.com

ତାଙ୍କର ଅନ୍ୟାନ୍ୟ କୃତି ମଧ୍ୟରେ ଶିଶୁ କବିତା ସଂକଳନ ଉଦୁଉଦୁମା, ଆମ ସମୟର ଶିଶୁ ସାହିତ୍ୟିକ, କାହାକୁ କହିବା (ରମ୍ୟରଚନା ସଂକଳନ) ଏତଦ୍ ବ୍ୟତୀତ ଗବେଷଣା ଧର୍ମୀ ଓଡିଶାର ଲୋକନାଟ୍ୟ, କୋରାପୁଟ ପରିକ୍ରମା ଆଦି ଦୁଇଖଣ୍ଡ ବହି ସଂପାଦନା କରିଛନ୍ତି । Who's Who in Odia Childrens literature ଏକ ଆବଶ୍ୟକ ସଂଗୃହିତ ଗ୍ରନ୍ଥ । 'କୋରାପୁଟର ପର୍ବପର୍ବାଣି ଓ ଦର୍ଶନୀୟ ସ୍ଥାନ' ଛୋଟ ଗ୍ରନ୍ଥଟି ପର୍ଯ୍ୟଟକଙ୍କ ପାଇଁ ଉପାଦେୟ ହୋଇପାରିଛି । ବହୁ ଅନୁଷ୍ଠାନ ସହ ଜଡିତ, ବିଭିନ୍ନ ସାହିତ୍ୟ ସଭାର ସୁବକ୍ତା, ମୁଖ୍ୟଅତିଥି, ବହୁ ଶିଶୁ ସାହିତ୍ୟ ସମ୍ମେଳନ, କର୍ମଶାଳାରେ ଯୋଗଦାନ କରି ଶିଶୁ ସାହିତ୍ୟର ବିଭିନ୍ନ ଦିଗ ଉପରେ ଆଲୋକପାତ କରିଛନ୍ତି । ସମଗ୍ର କର୍ମମୟ ଜୀବନ ଭିତରେ ସାହିତ୍ୟ ସେବା ହିଁ ତାଙ୍କର ଏକ ମାତ୍ର ପ୍ରବୃତ୍ତି । ତାଙ୍କର ଏକ ମାତ୍ର ଲକ୍ଷ୍ୟ ହେଉଛି-'ଓଡିଆ ଭାଷା ସାହିତ୍ୟର ପ୍ରଚାର ଓ ସମୃଦ୍ଧି ।' ଏ ଦିଗରେ ତାଙ୍କର ପ୍ରଯତ୍ନ ଜାରିରହିଛି । ଆଗକୁ ରହିଥିବ ମଧ୍ୟ-ଏ ଆଶା ରହିଛି ।

ସୁଦୂର କଟକ ଜିଲ୍ଲାର କୁସୁପୁର ଜନ୍ମ ସ୍ଥାନରୁ ଶିକ୍ଷା ସମାପ୍ତି କରି କର୍ମ ସଂସ୍ଥାନ ଉଦ୍ଦେଶ୍ୟରେ କୋରାପୁଟ ଆସନ୍ତି ବସନ୍ତ ବାବୁ । ସୌନ୍ଦର୍ଯ୍ୟମୟୀ ପ୍ରକୃତିରାଣୀ ରତ୍ନଗର୍ଭା କୋରାପୁଟ ମାଟି ମା' ସମସ୍ତଙ୍କ ଅଭିଳାଷ ପୂରଣ କରିଛନ୍ତି । ଯିଏ ଯାହା ଚାହିଁଛି, ପାଇଛି ଏଇ ମାଟିରୁ । କାଳକ୍ରମେ ଶିଶୁ ସାହିତ୍ୟ ପ୍ରେମୀ ବସନ୍ତ କିଶୋର ବାବୁ ଅଧାପନା କରନ୍ତି ସୁନାବେଡା ଏରୋନଟିକ୍ସ ମହାବିଦ୍ୟାଳୟରେ । ଅଧାପକ ହେବା ପରେ ପୂର୍ବାଭ୍ୟାସ ଫଳରେ ସାହିତ୍ୟ ସେବାରେ ନିମଗ୍ନ ରହନ୍ତି । ବହୁ ସାହିତ୍ୟ ସଂଗଠକ, ବିଭିନ୍ନ ପତ୍ରପତ୍ରିକା ସଂପାଦନା ଆଦିର ଦାୟିତ୍ୱ ବହନ କରି ସମସ୍ତଙ୍କର ପ୍ରିୟ ଭାଜନ ହୁଅନ୍ତି । ଏହି ଦିବ୍ୟ ସାରସ୍ୱତ ସାଧନା ଯୋଗୁଁ ଧନ୍ୟ ହୁଏ ଜନ୍ମଭୂମି କୁସୁପୁର ତଥା କର୍ମଭୂମି କୋରାପୁଟ । ପିତା ବୀର କିଶୋର ମାଆ ମଲ୍ଲୀ ଦେଇଙ୍କ ଜୀବନକୁ ସାର୍ଥକ କରି " କୁଳପବିତ୍ରଂ ଜନନୀ କୃତାର୍ଥ" ଆଦି ଆପ୍ତବାକ୍ୟ କୁ ଉଦ୍‌ଭାସିତ କରନ୍ତି । ବାପା, ମାଆ, ଓ ଗୁରୁ ଚାହାନ୍ତି-ଶେଷ୍ୟେତ୍ ଇଚ୍ଛେତ୍ ପରାଜୟ-ମୋର ଅନ୍ତେବାସୀ ମୋତେ ବିଦ୍ୟାରେ ପରାଜୟ କରୁ । ଗାଁର ଗୁରୁକୁଳ ମାନେ ଇଚ୍ଛା କରନ୍ତି-ଗାଁ ର ଟେକ ରଖୁ । ଏପରି ଭାବେ ସମସ୍ତଙ୍କ ବାସନାକୁ ପୂର୍ଣ୍ଣ କରିଛନ୍ତି ଉତ୍କଳ ସାହିତ୍ୟର ସେବା କରି ଗବେଷକଟିଏ ହୋଇ କବି ବନ୍ଧୁ ଡକ୍ଟର ବସନ୍ତ କିଶୋର ସାହୁ । ଏହି ଶିଶୁ ସାହିତ୍ୟରେ ସମାହିତ ପ୍ରତିଭାକୁ ସମ୍ମାନ ଦେଖାଇ ଓଡିଶାର ବହୁ ଅନୁଷ୍ଠାନ ତାଙ୍କୁ ସମ୍ମାନୀତ ଓ ପୁରସ୍କୃତ ମଧ୍ୟ କରିଛନ୍ତି ।

ଖ୍ରୀ ୧୯୫୬ ମାର୍ଚ୍ଚ ୧୫ ତାରିଖ ଧରାପୃଷ୍ଠରେ ଭୂମିଷ୍ଠ ହୋଇ କୁଆଁ କୁଆଁ ରାବ ଦେଇଥିବା କୁସୁପୁର ଗାଁର କଅଁଳା ଶିଶୁଟି ସମୟର ବ୍ୟବଧାନରେ ମାଆ ମଲ୍ଲୀ



Digitized by srujanika@gmail.com

ଦେଇଙ୍କ କୋଳରେ ଶରତ ଋତୁର ନିର୍ମଳ ଜହ୍ନ ରାତିରେ ମିଟିମିଟି ଦେଖୁଥିଲା ଆକାଶର ଜହ୍ନ ମାମୁଙ୍କୁ । ବାତ୍ସଲ୍ୟର ସାମୃତ ମମତାମୟୀ ମାଆଙ୍କ ମୁଖରୁ ଝରିପଡୁଥିଲା 'ଆ ଜହ୍ନ ମାମୁ ସରଗ ଶଶୀ' ଆଜି ୫୮ ବର୍ଷରେ ପଦାର୍ପଣ କରି ସେ ପୁରୁଣା ସ୍ମୃତିକୁ ସେଇ ଆନନ୍ଦମୟୀ ମାଆର ଅପାସୋରା ଅମୃତ ନିର୍ଝରଣୀ ସ୍ୱର ଲହରୀରେ ସମାଧିସ୍ଥ ହୋଇ ଅନ୍ତର ଭିତରେ ଅନାହତ ମୂର୍ଚ୍ଛନାକୁ ଶୁଣି ଶୁଣି ଆତ୍ମ ବିଭୋର ହୋଇ ଉଠିଛନ୍ତି ବସନ୍ତ ବାବୁ । ସେହି ଆନନ୍ଦକୁ ସମସ୍ତଙ୍କୁ ବାଣ୍ଟିବାରେ ଲାଗିଛନ୍ତି । ଅସରନ୍ତି ଭଣ୍ଡାର ସେ, ଜଗତର ସମସ୍ତ ମାତୃହୃଦୟର ସ୍ୱରକୁ ସାଉଁଟି ରଖିଛନ୍ତି ତାଙ୍କ ସାରସ୍ୱତ ଗନ୍ତାଘରେ । ଆସନ୍ତା କାଲିର ଦିବ୍ୟ ଶିଶୁଙ୍କ ପାଇଁ । ସେମାନଙ୍କ ମୁଖରେ ହସ ଫୁଟାଇବା ପାଇଁ ।

ଏପରି ଅସାଧ ସାଧନ କଲା ବେଳେ ଶକ୍ତି, ଆବଶ୍ୟକ ପଡେ ପୁରୁଷ ପାଇଁ । ମାନବର ଏକ ମାତ୍ର ଦିବ୍ୟ ଶକ୍ତି ହେଉଛନ୍ତି ଧର୍ମପତ୍ନୀ । ତାଙ୍କର ସହଯୋଗ ବିନା ପୁରୁଷ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା କଷ୍ଟସାଧ । କବିଙ୍କ ସାରସ୍ୱତ ସାଧନା କ୍ଷେତ୍ରରେ ସହଯୋଗିନୀ ତାଙ୍କର ଧର୍ମପତ୍ନୀ ବୀଣାପାଣି ଦେବୀ । ଦେବୀ ଭାରତୀ ଭଗବତୀ ବୀଣାପାଣି ସରସ୍ୱତୀଙ୍କ ଆରାଧନା କଲା ବେଳେ ବସନ୍ତ କିଶୋର ମନୋରମା ପତ୍ନୀ ବୀଣାପାଣିଙ୍କ ବହୁ ସାହାଯ୍ୟ ଓ ସହଯୋଗ ଲାଭ କରିଛନ୍ତି । ଘର ସଂସାରକୁ ସମ୍ଭାଳି ସମସ୍ତ ଝଞ୍ଜାଳକୁ ମୁଣ୍ଡ ଉପରକୁ ନେଇ ସ୍ୱାମୀଙ୍କ ସାହିତ୍ୟ ସାଧନା ପାଇଁ ପୂଜା ସାମଗ୍ରୀ ସଜାଡି ଦେଇ ତାଙ୍କ ସାଧନାରେ ସଫଳତା ଆଣି ଦେଇଛନ୍ତି ତାଙ୍କ ଧର୍ମପତ୍ନୀ ବୀଣାପାଣି ।

ସଂସ୍କୃତଶାକ୍ତ ଗ୍ରନ୍ଥ ସପ୍ତଶତୀ ଚଣ୍ଡୀରେ ଉଲ୍ଲେଖ ଅଛି 'ପତ୍ନୀଂ ମନୋରମାଂ ଦେହି ମନୋବୃତ୍ତ୍ୟାନୁ ସାରିଣୀ ।' ଜଣେ ବିଦଗ୍ଧ ସାଧକ ହିଁ ଏପରି କାମନା କରି ବସନ୍ତି ଜଗତ ଜନନୀ ଦୁର୍ଗାଙ୍କ ଠାରେ । ହେ ଜଗଜ୍ଜନନୀ ମୋତେ ଏପରି ଏକ ମନୋରମା ପତ୍ନୀ ଦିଅନ୍ତୁ ଯେ ମୋର ମନୋବୃତ୍ତିକୁ ଅନୁସରଣ କରୁଥିବା ସ୍ୱାମୀଙ୍କ ଇଚ୍ଛାକୁ ନିଜର ଇଚ୍ଛା ବୋଲି ଭାବି ପାରୁଥିବ । ବିଦୁଷୀ ଧର୍ମପତ୍ନୀ ବୀଣାପାଣି ଏ କ୍ଷେତ୍ରରେ କେବେ ହେଲେ ଅବହେଳା କରିନାହାନ୍ତି । ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱ ପରି ସ୍ୱାମୀ ସ୍ତ୍ରୀ ଅଭିନ୍ନ ଏକ ଅଙ୍ଗ । ସେ ଅର୍ଦ୍ଧାଙ୍ଗୀ, ଏକ ଜୀବନ, ନିନ୍ଦା ପ୍ରଶଂସା ସବୁ ତାଙ୍କର । ତେଣୁ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ହେଲେ ବା ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କଲେ ସେହି ସୁନାମ ଅର୍ଜିଥିବା ବ୍ୟକ୍ତି ବିଶେଷଙ୍କ ମାତୃଭୂମି, ଗର୍ଭ ଧାରିଣୀ ମାଆ, ଆଉ ପାଳନ କର୍ତ୍ତା ପିତାଙ୍କ ସହ ଧର୍ମପତ୍ନୀଙ୍କର ନାମ ସର୍ବାଗ୍ରେ ଉଲ୍ଲେଖ ରହେ । ପତ୍ନୀଙ୍କ ଏପରି କର୍ତ୍ତବ୍ୟକୁ ମନେ ରଖିଛନ୍ତି ବସନ୍ତ କିଶୋର ସାହୁ । ସେ କୃତଘ୍ନ ହୋଇ ପାରନ୍ତେ ବା କିପରି ? ପତ୍ନୀକୁ ଦେବେ ବା କଣ ? ଲେଖକ କବି ଭାବୁକଙ୍କ ପାଖରେ ଅଛି ବା କଣ ? ଗରିବ ଲେଖକ କୁଟୀରର ଧନ ହେଉଛି ତାର ଏକମାତ୍ର କୃତି । ଏଣୁ ବସନ୍ତ ବାବୁ କୃତଜ୍ଞତା ସ୍ୱରୂପ



Digitized by srujanika@gmail.com

ଧର୍ମପତ୍ନୀଙ୍କ ଉଦ୍ଦେଶ୍ୟରେ ଦୁଇପଦ ଲେଖିବାକୁ ଭୁଲି ଯାଇନାହାନ୍ତି । ତାଙ୍କ ଗବେଷଣାତ୍ମକ "ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ" ସନ୍ଦର୍ଭ ପ୍ରକାଶ ବେଳେ, ଭୂମିକାରେ ଡକ୍ଟର ସାହୁ ତାଙ୍କ ସହଯୋଗକୁ ଧନ୍ୟବାଦ ଓ ପ୍ରଶଂସା କରି ଲେଖିଛନ୍ତି- "ଗବେଷଣା କାଳରେ ମୋତେ ପାରିବାରିକ ଜୀବନର ସମସ୍ତ ଦାୟିତ୍ୱରୁ ମୁକ୍ତ କରି, ଗବେଷଣା କାର୍ଯ୍ୟକୁ ସଫଳ କରିବାରେ ଯିଏ ଅଧିକ ସହାୟତା ପ୍ରଦାନ କରିଛନ୍ତି ସିଏ ହେଉଛନ୍ତି ମୋର ଧର୍ମପତ୍ନୀ ଶ୍ରୀମତୀ ବୀଣାପାଣି ସାହୁ । ଏକାନ୍ତ ଆପଣାର ହେଲେ ମଧ ତାଙ୍କୁ ଧନ୍ୟବାଦଟିଏ ନ ଜଣାଇଲେ ନିଜକୁ ଅପରାଧି ମନେ କରିବି ।" ତା ସହିତ ତାଙ୍କ ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା ପୁସ୍ତକଟିକୁ ମଧ ଧର୍ମପତ୍ନୀଙ୍କୁ ଉତ୍ସର୍ଗ କରିଛନ୍ତି ।

ଏହି ପ୍ରସଙ୍ଗରେ "ଆନନ୍ଦର ଆହ୍ୱାନ" ଖଣ୍ଡକାବ୍ୟର କବିଙ୍କ କେଇପଦ ମନେ ପଡେ ଯାହା ସେ ନିଜ ପତ୍ନୀଙ୍କ ସମ୍ବନ୍ଧରେ ବକ୍ତବ୍ୟ ରଖିଛନ୍ତି-ଯିଏ ତାଙ୍କ ସାରସ୍ୱତ ସାଧନା ଆଦି କ୍ଷେତ୍ରରେ ସହଯୋଗୀ ଥିଲେ -

"ଏ ପଥେ ଧର୍ମପତ୍ନୀ ମୋର ସାହା ହୋଇ ଉପଦେଶ ଦିଅଇ ଯାହା
ସେପରି କର୍ମମାନ ହୁଏ ଘରେ ଶଶିକଳାରେ ଘରକୁ ସମ୍ଭାଳେ ।
ଘର ପ୍ରତି ମୋ ନିତି ଅବହେଳା ବିଭିନ୍ନ କର୍ମେ ହୁଏ ମୁଁ ପାଗଳା
ଏପରି କର୍ମମୟ ଜୀବନରେ ତା ବିନା କିଛି ମୁଁ କରି ନ ପାରେ ।।
ମୋ କର୍ମଫଳେ ଯେତେ ମୋର ଶ୍ରେୟ ତା'ହାତ ରହିଛି ଘର ଉପାୟ ।

ବସ୍ତୁତଃ କବି ବନ୍ଧୁ ବସନ୍ତ ବାବୁ ଧର୍ମପତ୍ନୀ ବୀଣାପାଣି ଦେବୀଙ୍କୁ ତାଙ୍କର ସାହିତ୍ୟ ସାଧନା କ୍ଷେତ୍ରରେ ସହଯୋଗକୁ ଭୁଲିଗଲେ ମ୍ଲାନ ପଡିଯିବ ଗବେଷକଙ୍କ ସନ୍ଦର୍ଭଟି । କାରଣ ଘରକୁ ସମ୍ଭାଳି ଯେ ଆମର ପଥକୁ ପରିଷ୍କାର କରି ସୁଗମ କରି ଦେଇଥାନ୍ତି, ଆଗକୁ ବଢିବାକୁ ପ୍ରେରଣା ଦେଇଥାନ୍ତି ସେପରି ଧର୍ମପତ୍ନୀଙ୍କ ବିଷୟରେ କିଛି ନ ଲେଖିବା କିଛି ନ କହିବା ଅପରାଧ ହେବ । ସେହି ଧର୍ମପତ୍ନୀ ଆଜିର ମମତାମୟୀ ମା ବୀଣାପାଣି ଦେବୀ ବସନ୍ତ ବାବୁଙ୍କୁ ପ୍ରେରଣା ଦିଅନ୍ତି ଯେପରି ଅବସର ପରେ ଆଉ କିଛି ଅମୂଲ୍ୟରତ୍ନ ଓଡିଆ ଭାଷା ସାହିତ୍ୟ ଭଣ୍ଡାରକୁ ଅର୍ପଣ କରିବେ, ଯାହା ଚିର ଜାଜ୍ୱଲ୍ୟମାନ ହୋଇ ଆଗାମୀ ପିଢିର ପାଠକଙ୍କୁ ବାଟ ଦେଖାଇବ, ଆଲୋକ ଦେବ ।



ବିଷମ କଟକ, ରାୟଗଡ଼



Digitized by srujanika@gmail.com

# ବସନ୍ତ କିଶୋର ସାହୁ-ଏକ ଅନନ୍ୟ ପ୍ରତିଭା

ଡକ୍ଟର ଶରତ କୁମାର ବିଶ୍ୱାଳ

ଡକ୍ଟର ବସନ୍ତ କିଶୋର ସାହୁ ଓଡିଆ ଶିଶୁ ସାହିତ୍ୟରେ ଏକ ଜଣାଶୁଣା ନାମ । ତାଙ୍କ ସହିତ ମୋର ସଂପର୍କ ବହୁ ଦିନର । ବାଣୀକ୍ଷେତ୍ର ମାହାଙ୍ଗାର କୁସୁପୁର ଗ୍ରାମରେ ଡକ୍ଟର ସାହୁଙ୍କର ଜନ୍ମ । ପଲ୍ଲୀକବି ନନ୍ଦ କିଶୋର ବଳ ସେହି ଗାଁରେ ଜନ୍ମ ଗ୍ରହଣ କରିଥିଲେ । ଓଡିଆରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରି ସୁନାବେଡାସ୍ଥିତ ଏରୋନଟିକସ କଲେଜରେ ଅଧ୍ୟାପକ ଭାବେ କାର୍ଯ୍ୟ କରି ସୁନାମ ଅର୍ଜନ କରିଛନ୍ତି । 'ଓଡିଆ ମୌଖିକ ଶିଶୁ ସାହିତ୍ୟ' ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଉପାଧି ପାଇଛନ୍ତି । ତାଙ୍କ ଅଧୀନରେ ଗବେଷଣା କରି ବହୁ ଗବେଷକ ପିଏଚ୍.ଡି ଉପାଧି ପାଇଛନ୍ତି । ଶିଶୁ ସାହିତ୍ୟ କ୍ଷେତ୍ରରେ ତାଙ୍କର ସୁନାମ ରହିଛି । ସେ ଜଣେ ଲବ୍ଧପ୍ରତିଷ୍ଠିତ ଶିଶୁ ସାହିତ୍ୟିକ । ନିଜର ପିତା ମାତାଙ୍କୁ ସେ ଯଥେଷ୍ଟ ଭକ୍ତି ଓ ସମ୍ମାନ କରନ୍ତି । ବିଖ୍ୟାତ ଶିଶୁ ସାହିତ୍ୟ ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତି, ଡକ୍ଟର ସାହୁଙ୍କର ଗବେଷଣାର ମାର୍ଗଦର୍ଶକ ଥିଲେ । ଡକ୍ଟର ସାହୁ ତାଙ୍କର ଗବେଷଣା ଲବ୍ଧ ଜ୍ଞାନକୁ ଓଡିଆ ଶିଶୁ ସାହିତ୍ୟର ଉନ୍ନତି କଳ୍ପେ ବିନିଯୋଗ କରି ବହୁ ଶିଶୁ ସାହିତ୍ୟିକ ସୃଷ୍ଟି କରିଛନ୍ତି ଓ ବହୁ ପୁସ୍ତକ ରଚନା କରି ଉତ୍କଳର ବାଣୀଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଦୀର୍ଘ ବର୍ଷ ହେଲା ସେ ଓଡିଆ ଶିଶୁ ସାହିତ୍ୟର ମାର୍ଗଦର୍ଶକ, ସୃଜନଶୀଳ ସ୍ରଷ୍ଟା ଓ ସଂଗଠକ ଭାବରେ କାର୍ଯ୍ୟ କରି ଆସୁଛନ୍ତି ।

ବନଫୁଲ ସାହିତ୍ୟ ପରିଷଦ, ଓଡିଆ ଲେଖକ ପାଠକ ସମ୍ମେଳନର ସଂପାଦକ ଭାବରେ ତାଙ୍କର ସାଂଗଠନିକ ଦକ୍ଷତା ସ୍ୱାଗତଯୋଗ୍ୟ । ଏତଦ୍ ବ୍ୟତୀତ ସୁନାବେଡାର ବନପ୍ରଭା ସାହିତ୍ୟ ସଂସଦର ଉପଦେଷ୍ଟା ଭାବରେ ତାଙ୍କର କାର୍ଯ୍ୟ ପ୍ରଶଂସନୀୟ । ବିଶେଷ ଭାବରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ରହି ଡକ୍ଟର ସାହୁ ଓଡିଆ ଶିଶୁ ସାହିତ୍ୟର ବିକାଶ ପାଇଁ ଉଦ୍ୟମ କରି ଆସୁଛନ୍ତି । ଡକ୍ଟର ସାହୁ ୩୨ ଖଣ୍ଡ ପୁସ୍ତକର ରଚୟିତା । ବହୁ ପତ୍ରପତ୍ରିକା ସଂପାଦନା କରି ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ବହୁ ଅନୁଷ୍ଠାନ ତାଙ୍କୁ ସମ୍ମାନ ପ୍ରଦାନ କରି ସମ୍ବର୍ଦ୍ଧିତ କରିଛନ୍ତି । ତାଙ୍କର କୃତି ଓ କୀର୍ତ୍ତି ସର୍ବଜନ ପ୍ରଶଂସନୀୟ । ବନଫୁଲ ଓ ବଗଲା ବଗୁଲୀ ଶିଶୁ ପତ୍ରିକାର ସଂପାଦନା ଦାୟିତ୍ୱ ସେ ଅତି ସୁଚାରୁ ରୂପେ ତୁଲାଇଥିଲେ ।



Digitized by srujanika@gmail.com

ତାଙ୍କ ରଚିତ ଶିଶୁ କବିତା ପୁସ୍ତକ 'ବିଲୁଆ ନନାର ବଣଭୋଜି' ଓଡିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ଏକ ସତନ୍ତ୍ର ମର୍ଯ୍ୟାଦା ଦାବି କରେ । ଏହି ପୁସ୍ତକଟି ସୁନ୍ଦର ସୁନ୍ଦର ଶିଶୁ ମନଲାଖି ଚିତ୍ରରେ ଭରପୁର । ଏହାର ପ୍ରକାଶକ ହେଉଛନ୍ତି ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦ ବିହାରୀ, କଟକ-୨ ଓ ଏହା ୨୦୦୮ ମସିହାରେ ପ୍ରକାଶିତ । ଏହି କବିତା ପୁସ୍ତକରେ ନଅଗୋଟି କବିତା ସ୍ଥାନିତ । ପ୍ରତ୍ୟେକ କବିତା ପିଲାମାନଙ୍କ ପାଇଁ ମନମତାଣିଆ । କବି ଡକ୍ଟର ସାହୁଙ୍କର ଗଭୀର ଅନୁଭୂତି, ଲୋକକଥାର ବିଭିନ୍ନ ଦିଗ ଓ ପରିବେଶ ସୁରକ୍ଷା, ତାଙ୍କ କବିତାକୁ ସରସ ଓ ସୁନ୍ଦର କରିଛି । ଶିଶୁ ପ୍ରଥମେ ପରର ସେବା ଓ ଉପକାର ବିଷୟରେ ଜାଣୁ । ନିଜକୁ ପରର ଉପକାର ପାଇଁ ଗଢୁ । ତାଙ୍କର କବିତା ବଗ ଓ ଗଧିଆରେ ସେ ଏ ବିଷୟରେ ବର୍ଣ୍ଣନା କରିଛନ୍ତି । ବଗ କିପରି ଗଧିଆ ତଣ୍ଟିରେ ଲାଗିଥିବା ହାଡ ବାହାର କରି ତାହାର ଉପକାର କରିଛି ଓ ଗଧିଆ କିପରି ତା ପ୍ରତି କୃତଘ୍ନ ହୋଇଛି ସେଇ କଥାକୁ କବିତା ମାଧ୍ୟମରେ ସୁନ୍ଦର ଓ ସାବଲୀଳ ଭାଷାରେ ବର୍ଣ୍ଣନା କରିଛନ୍ତି ।

ଉପକାର କଥା ବୁଝେନାହିଁ ଯିଏ
ଦିନେ ହୁଏ ହଟ ହଟା,
ଚଲା ପଥେ ତାର ଭଗବାନ ସଦା
ବିଛାଇ ଦିଅନ୍ତି କଣ୍ଟା ।

ସମୂହ କାର୍ଯ୍ୟକୁ ମିଳିମିଶି କଲେ ସହଜ, ହୋଇଥାଏ । ପରସ୍ପର ସହଯୋଗରେ କାମ କଲେ କାର୍ଯ୍ୟ ଶିଘ୍ର ହୋଇଥାଏ । 'ବିଲୁଆ ନନାର ବଣ ଭୋଜି' କବିତାରେ ଡକ୍ଟର ସାହୁ ସୁନ୍ଦର ଭାବରେ ଏହି କଥା କହିଛନ୍ତି । ତାଙ୍କର ଲେଖାରୁ ଗୋଟିଏ ପଦ ପାଠକମାନଙ୍କ ଅବଗତ ନିମନ୍ତେ ଏଠାରେ ଉଲ୍ଲେଖ କରୁଛି -

ସବୁଠୁ ସବୁ ଜିନିଷ ଆସି
ପହଞ୍ଚିଗଲା ବଣେ
ରାନ୍ଧିବା ପାଇଁ ଚୂଲି ପାଖରେ
ବସିଲେ ଜଣେ ଜଣେ ।

ପୁସ୍ତକର ଶୀର୍ଷକକୁ ସାର୍ଥକ କରିବା ନିମନ୍ତେ ଡକ୍ଟର ସାହୁ ଏହି ଭାବ ଗର୍ଭକ କବିତାଟିକୁ ରଚନା କରିଛନ୍ତି । ସେହିପରି ପିଲାମାନଙ୍କୁ ଖୁସି ଓ ଆନନ୍ଦ ଦେବା ପାଇଁ ଡକ୍ଟର ସାହୁଙ୍କର ଅନ୍ୟ ଏକ କବିତା ହେଲା "ଆମରି ଗାଆଁ ର ନବୀନ ପଣ୍ଡା" । ଏହି କବିତାଟି ପଢିଲା ବେଳେ ପିଲାମାନେ ହସିହସି ଗଡିଯିବେ । ଡକ୍ଟର ସାହୁ ଏଥିରେ ଲେଖିଛନ୍ତି -

ଆମରି ଗାଆଁର ନବୀନ ପଣ୍ଡା
ଖାଏ ସେ ଥରକେ ଦି'ପୁଞ୍ଜା ଅଣ୍ଡା



Digitized by srujanika@gmail.com

ଦେଖିବା ପାଇଁତ ଶକତ ଭେଣ୍ଡା
ଥନ୍ତଲ ପେଟକୁ ମୁଣ୍ଡଟି ଲଣ୍ଡା ।

ପିଲାମାନଙ୍କୁ ପରିବେଶ ବିଷୟରେ ସଚେତନ କରିବାକୁ ଯାଇ ଡକ୍ଟର ସାହୁ 'ଗଛଟେ ଦେବା ପୋତି' କବିତା ରଚନା କରିଛନ୍ତି । ଲୋକମାନେ ଗଛ କାଟି ସଫା କରି ଦେଉଛନ୍ତି । ଏହା ଦ୍ୱାରା ପ୍ରାକୃତିକ ପରିବେଶ କିଭଳି ବିନାଶ ହେଉଛି ଡକ୍ଟର ସାହୁ ତାଙ୍କ କବିତାରେ ବର୍ଣ୍ଣନା କରିଛନ୍ତି । ଝାଞ୍ଜିଖରା, ବତାସ, ବାତ୍ୟା କିପରି ମାଡି ଆସୁଛି, କବିତା ମାଧ୍ୟମରେ ଅତି ସୁନ୍ଦର ଭାବରେ ଡକ୍ଟର ସାହୁ ସୂଚନା ଦେଇ ପିଲାଙ୍କୁ ଗଛ ଲଗାଇବା ପାଇଁ ଆହ୍ୱାନ ଦେଇଛନ୍ତି -

ଆସରେ ଆସ
ସଭିଁଏ ମିଶି
ନିଜ ହାତରେ
ଗଛଟେ ଦେବା ପୋତି,
ହସି ଉଠିଲେ
ପରିବେଶଟି
ସବୁ ଦରବ
ଫେରିବ ଗୋଟି ଗୋଟି ।

ତାଙ୍କର ଅନ୍ୟ ଏକ କବିତା ହେଲା 'ପିଲାଟିଏ ସେ ତ ପିଲାଟିଏ' । ଏହି କବିତାରେ ଡକ୍ଟର ସାହୁ ପିଲାମାନଙ୍କୁ ବାଜିରାଉତ ବିଷୟରେ ଜଣାଇବା ସହିତ ତାଙ୍କ ମନରେ ଦେଶାତ୍ମବୋଧ ଓ ସାହସିକତା ଗୁଣଟିକୁ ଉଦ୍ରେକ କରିବା ପାଇଁ ଚେଷ୍ଟା କରିଛନ୍ତି । ବାର ବର୍ଷର ବାଳୁତ ପିଲା ବାଜିରାଉତ ବ୍ରିଟିଶ୍ ଫଉଜର ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବା କଥାଟି ସୁନ୍ଦର ଭାବେ ବର୍ଣ୍ଣିତ ।

ପିଲାଟିଏ ସେତ ପିଲାଟିଏ
ସତେ କି ସେ ନିଆଁ ଝୁଲଟିଏ
ଫିରିଙ୍ଗି ସଇନେ ନକରି ଖାତିରି
କହିଲା ନିର୍ଭୟେ 'କରିବିନି ପାରି'
ବାଜି ଯାଉ ପଛେ ଗୁଳିଟିଏ ।

ଡକ୍ଟର ବସନ୍ତ ସାହୁଙ୍କର କବିତାରେ ଭାବ ସହିତ ଶବ୍ଦ ସଂଯୋଜନା ସୁଖପାଠ୍ୟ ହୋଇଛି । ଡକ୍ଟର ସାହୁ ବିପୁଳ ଶିଶୁ ସାହିତ୍ୟ ସୃଷ୍ଟି ସହ ଗବେଷଣା କରି ବହୁ ଅନୁଷ୍ଠାନରୁ ସମ୍ମାନୀତ ହୋଇଛନ୍ତି । ତାଙ୍କର ଲେଖନୀ ସଦା ଚଳଚଞ୍ଚଳ ରହୁ ଏହାହିଁ କାମନା ।



ଭୁବନେଶ୍ୱର



Digitized by srujanika@gmail.com

# ପ୍ରାବନ୍ଧିକ ବସନ୍ତ କିଶୋର : ଦୃଷ୍ଟି ଓ ଦିଗନ୍ତ

**କମଳାକୃଷ୍ଣ ତ୍ରିପାଠୀ**

ଓଡିଆ ସାହିତ୍ୟର ସମକାଳୀନ ସ୍ୱର ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଜଣେ ସୁପରିଚିତ ବ୍ୟକ୍ତିତ୍ୱ । ଅବିଭକ୍ତ କୋରାପୁଟ ଜିଲ୍ଲାର ସୁନାବେଡ଼ା ଠାରେ ଅଧ୍ୟାପନା ସହିତ ସାହିତ୍ୟ ସାଧନା ତାଙ୍କ ସୃଜନଶୀଳ ପ୍ରତିଭାର ନିଷ୍ଠାପର ଯୋଗଦାନ । ସାହିତ୍ୟର ବିଭିନ୍ନ ବିଭାଗର ବିବିଧ ବିଭବରେ ଲେଖନୀ ଚାଳନା କରି ସେ ସମଗ୍ର ଓଡିଶାରେ ସୁନାମ ଅର୍ଜନ କରିଛନ୍ତି । ସାହିତ୍ୟ ସଂଗଠନ, ସଂପାଦନା, ଶିଶୁ-ସାହିତ୍ୟ, ରମ୍ୟରଚନା, ପ୍ରବନ୍ଧ ସର୍ଜନା, ଗବେଷଣା, ପ୍ରକାଶନ, ଗଳ୍ପ-ସୃଷ୍ଟି, ଲୋକସାହିତ୍ୟ, ଜଗନ୍ନାଥ ଚେତନା ଆଦି ବହୁବିଧ ଦିଗକୁ ପ୍ରସାରିତ-ଡକ୍ଟର ସାହୁଙ୍କ ବ୍ୟକ୍ତିତ୍ୱ ।

ବହୁମୁଖୀ ପ୍ରତିଭାର ଅଧିକାରୀ ଶ୍ରୀଯୁକ୍ତ ସାହୁ ସାହିତ୍ୟ ସଂପର୍କୀତ ବିଭିନ୍ନ ବିଷୟ ସହିତ ଜଡିତ ହୋଇ ପ୍ରତିଟି କ୍ଷେତ୍ରରେ ଯେଉଁ ନିଷ୍ଠା ଓ ଅଧ୍ୟବସାୟ ପ୍ରଦର୍ଶିତ କରିଛନ୍ତି, ତାହା କେବଳ କୋରାପୁଟ ଜିଲ୍ଲାର ସାହିତ୍ୟ ପ୍ରେମୀଙ୍କୁ ଆକର୍ଷିତ କରିନାହି, ସମଗ୍ର ଓଡିଶାରେ ତାଙ୍କ ପ୍ରତିଭାକୁ ପ୍ରସାରିତ କରାଇ ପାରିଛି । ଶିଶୁ ସୁଲଭ ସରଳ ତରଳ ଭାବ ଓ ଭାବନାରୁ ତାଙ୍କର ରଚନାର ପ୍ରାରମ୍ଭ । ସେଇ ଶିଶୁ ମାନସିକତା ଲେଖକଙ୍କୁ ଜଣେ ଶିଶୁ ସାହିତ୍ୟିକ ଭାବରେ ପରିଚିତ କରାଇବା ସହ ଅନେକ ଯଶ ଓ ସମ୍ମାନର ଅଧିକାରୀ କରାଇ ପାରିଛି । 'ଓଡିଆ ମୌଖିକ ଶିଶୁ-ସାହିତ୍ୟ' ସଂପର୍କରେ ଗବେଷଣା କରି ସେ ଡକ୍ଟରେଟ୍ ଉପାଧି ଲାଭ କରିଛନ୍ତି । ଜଣେ ଶିଶୁ ସାହିତ୍ୟିକ ଭାବରେ ତାଙ୍କ କଲମରୁ ଶିଶୁମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ପନ୍ଦରଟି ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶିତ ହୋଇ ତାଙ୍କ ଶିଶୁ ସାହିତ୍ୟ ପ୍ରତି ଯୋଗଦାନ ପ୍ରମାଣିତ କରିଛି ।

ଅନେକ ସାହିତ୍ୟିକ ବିଭବ ସୃଷ୍ଟି କରି ଶ୍ରୀଯୁକ୍ତ ସାହୁ ଜଣେ ନିରଳସ ସାହିତ୍ୟିକ ଭାବରେ ବିଗତ ଚାରି ଦଶନ୍ଧି ଅତିବାହିତ କରିଛନ୍ତି । ତାଙ୍କ ସାଧନାର ବହୁବିଧ ଦିଗନ୍ତ ମଧ୍ୟରୁ ଜଣେ ପ୍ରାବନ୍ଧିକ ଭାବରେ ତାଙ୍କର ଯେଉଁ ପରିଚୟ, ତାହା ଯେତିକି ବ୍ୟାପ୍ତ ସେତିକି ବିସ୍ତୃତ । ସାଂପ୍ରତିକ ସମୟର ପ୍ରାୟତଃ ସମସ୍ତ ସମୃଦ୍ଧ ପତ୍ରିକା ସମେତ ଜୟପୁର ଆକାଶବାଣୀର ପ୍ରବନ୍ଧ ବିଭାଗରେ ସେଗୁଡିକ ବିଗତ ଦିନମାନଙ୍କରେ ପ୍ରସାରିତ, ପ୍ରକାଶିତ ଓ ଆଦୃତ ହୋଇ ଆସିଛି ।

ପ୍ରାବନ୍ଧିକ ବସନ୍ତ କିଶୋରଙ୍କ ଶତାଧିକ ପ୍ରବନ୍ଧକୁ (୧) ଶିକ୍ଷା ସଂପର୍କୀତ (୨)



Digitized by srujanika@gmail.com

ଶିଶୁ ମାନସ ସମ୍ବଳିତ (୩) ସାହିତ୍ୟ ଆଧାରିତ (୪) ସାଂସ୍କୃତିକ ବିଚାର ମୂଳକ (୫) ବ୍ୟକ୍ତିତ୍ୱ ସଂପର୍କୀତ (୬) ଧର୍ମ ଧାରଣା ଆଧାରିତ (୭) ସମାଲୋଚନା ମୂଳକ ରଚନା ଆଦିରେ ବିଭକ୍ତ କରାଯାଇପାରେ ।

ଡକ୍ଟର ବସନ୍ତ କିଶୋରଙ୍କ ପ୍ରବନ୍ଧ ସର୍ଜନାର ବ୍ୟାପ୍ତି ମଧ୍ୟରେ ବିବିଧ ଦିଗନ୍ତ ପ୍ରତିଭାତ ହୋଇଥାଏ । ଆଙ୍ଗିକର ଗଠନ ଶୈଳୀ ଅନୁଯାୟୀ ବିଚାର କଲେ, ଶିଶୁ ସାହିତ୍ୟର ଶିଶୁ ମାନସିକତାର ପ୍ରଭାବ ଲେଖକଙ୍କ ସାହିତ୍ୟକୁ ସମଗ୍ର ଜୀବନ ଆଚ୍ଛନ୍ନ କରିଛି । ସେଥିପାଇଁ ସେ ଶିଶୁ-ସାହିତ୍ୟ ସର୍ଜନା, ଶିଶୁ ସାହିତ୍ୟ ଗବେଷଣା, ଶିଶୁକୁ ଆଧାର କରି ଅନେକ ପ୍ରବନ୍ଧ ସୃଷ୍ଟି କରିଛନ୍ତି । ଏଣୁ ଡକ୍ଟର ସାହୁଙ୍କ ରଚନାରେ ଏକ ବହୁଳ ଅଂଶ ଶିଶୁ ସୁଲଭ ସାହିତ୍ୟ ବିଭବ ନିମନ୍ତେ ଉତ୍ସର୍ଗୀକୃତ । ମୌଖିକ ଶିଶୁ ସାହିତ୍ୟକୁ ନେଇ ନିଜ ଶୈକ୍ଷିକ ଗବେଷଣାର ପରିସର ବୋଲି ସ୍ଥିର କରିଥିଲେ ହେଁ, ଏହାହିଁ ତାଙ୍କ ପ୍ରବନ୍ଧ ଆଙ୍ଗିକର ପରିସୀମା ନଥିଲା । ସୁତରାଂ ସେ ଶିଶୁମାନସିକତାକୁ ବିବିଧ ଭାଗରେ ବିଭକ୍ତ କରି ପ୍ରବନ୍ଧ ରଚନା କରିଛନ୍ତି । ଯଥା- (କ) ଶିଶୁ ପାଇଁ ଥିବା ମୌଖିକ ସାହିତ୍ୟ (ଖ) ଶିଶୁ ନିମିତ୍ତ ଲିଖିତ ବିଭିନ୍ନ ସାହିତ୍ୟିକଙ୍କ ସାହିତ୍ୟ (ଗ) ଶିଶୁ ସାହିତ୍ୟିକମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ସାହିତ୍ୟ ତତ୍ତ୍ୱ ଓ ତାର ସାହିତ୍ୟିକ ମୂଲ୍ୟାୟନ । ଡକ୍ଟର ସାହୁ ପଞ୍ଚଷଠିରୁ ଉର୍ଦ୍ଧ୍ୱ ଶିଶୁ ସାହିତ୍ୟ ଆଧାରିତ ଯେଉଁ ପ୍ରବନ୍ଧ ରଚନା କରିଛନ୍ତି, ତାହା ସମକାଳୀନ ଅନ୍ୟ କୌଣସି ପ୍ରାବନ୍ଧିକଙ୍କ ସୃଷ୍ଟି ତୁଳନାରେ ଉଭୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଯେ ବହୁଳ ତାହା କହିବା ବାହୁଲ୍ୟ ମାତ୍ର । ଓଡିଆ ମୌଖିକ ଶିଶୁ ଗୀତରେ ଜହ୍ନ, ଶିଶୁ ସାହିତ୍ୟର ସଂଜ୍ଞା ଓ ସ୍ୱରୂପ, ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ, ଓଡିଆ ମୌଖିକ ଶିଶୁ ସାହିତ୍ୟରେ ସ୍ୱଦେଶ ପ୍ରେମ ଆଦି ଲେଖକଙ୍କ ଉପାଦେୟ ଶିଶୁ ସାହିତ୍ୟ ସଂପର୍କିତ ଆଲୋଚନାର କେତେକ ଦୃଷ୍ଟାନ୍ତ ମାତ୍ର ।

ଶିକ୍ଷାକୁ ଆଧାର କରି ଡକ୍ଟର ସାହୁ ଯେଉଁ ପ୍ରବନ୍ଧ ରଚନା କରିଛନ୍ତି ତାହା ଅବିଭକ୍ତ କୋରାପୁଟ କାହିଁକି ସମଗ୍ର ଓଡିଆ ସାହିତ୍ୟର ଶୈକ୍ଷିକ ଦିଗନ୍ତକୁ ପ୍ରସାରିତ କରିଥାଏ । ଏ ସବୁ ଆଲୋଚନାଗୁଡିକ ଶିଶୁ-ଶିକ୍ଷକ-ଅଭିଭାବକ- ଶିକ୍ଷାବିତ୍ ସର୍ବୋପରି ଶିକ୍ଷା ପ୍ରଚଳନ କରୁଥିବା ସଂସ୍ଥା (ସରକାରୀ ଓ ବେସରକାରୀ ଉଭୟ)ପାଇଁ ଅବଶ୍ୟ ପଠନୀୟ, ସଂରକ୍ଷଣୀୟ । ଏଥିରେ ଲେଖକ ଦର୍ଶାଇଥିବା ମୌଳିକ ଚିନ୍ତନକୁ ମଧ କାର୍ଯ୍ୟାନ୍ୱୟନ କରିବା ସର୍ବାଦୌ ଆବଶ୍ୟକ । ବସନ୍ତ କିଶୋରଙ୍କର ମୂଲ୍ୟବୋଧ ଭିତ୍ତିକ ଶିକ୍ଷାର ବିକାଶରେ ଭାଷା ଶିକ୍ଷକଙ୍କ ଭୂମିକା (୫) ଶିଶୁ ଶିକ୍ଷାରେ ମୌଖିକ ଶିଶୁ ସାହିତ୍ୟ (୬/୩୨) ଆନନ୍ଦମୟୀ ଶିକ୍ଷା ପାଇଁ ସଂଗୀତର ଆବଶ୍ୟକତା (୭/୪୪) ଆଦି ପ୍ରବନ୍ଧ ସାଂପ୍ରତିକ ସମାଜ ପାଇଁ କେତେ ଉପଯୋଗୀ, ତାହା ପାଠକ, ଶିକ୍ଷକ, ଆଲୋଚକ ନିଶ୍ଚୟ ଅନୁଭବ କରିପାରିବେ । ଶିକ୍ଷା ଓ ମୂଲ୍ୟବୋଧକୁ ନେଇ ଲେଖକଙ୍କ ଯେଉଁ ସୁଚିନ୍ତିତ ମନ୍ତବ୍ୟ ତଥ୍ୟ ସହ ଉପସ୍ଥାପନ କରିଛନ୍ତି, ତାହା ଉଲ୍ଲେଖ ଯୋଗ୍ୟ । ବସନ୍ତ କିଶୋରଙ୍କ ଭାଷାରେ-"ସଂପ୍ରତି ଶିକ୍ଷାର କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ଥିବା ପରି ମନେ ହୁଏ ନାହିଁ ।



Digitized by srujanika@gmail.com

ଜୀବିକା ପାଇଁ ଉପାର୍ଜନ ବା ଅର୍ଥ ରୋଜଗାର ଶିକ୍ଷାର ଏକମାତ୍ର ଲକ୍ଷ୍ୟ ହୋଇଥିବାରୁ ଆମର ସମସ୍ତ ମୂଲ୍ୟବୋଧ କାର୍ଯ୍ୟ କରୁନାହିଁ । ସମାଜରେ ଶିକ୍ଷକଙ୍କୁ ଉପଯୁକ୍ତ ସମ୍ମାନ ମିଳୁ ନ ଥିବାରୁ ଶିକ୍ଷକ ନାନା ମାନସିକ ଯନ୍ତ୍ରଣା ଲାଭ କରିବା ସହିତ, ପ୍ରଦାନ କରୁଥିବା ମୂଲ୍ୟବୋଧରୁ ବିଚ୍ୟୁତ ହେବାକୁ ବାଧ ହେଉଛି । xxx ଶିକ୍ଷକ, ଶିକ୍ଷାର୍ଥୀ, ପିତାମାତା ଓ ସରକାର ଆଗେଇ ଆସି ମୂଲ୍ୟବୋଧ ଭିତ୍ତିକ ଶିକ୍ଷାର ପୁନଃ ପ୍ରତିଷ୍ଠା କରାଇ ପାରିଲେ ଆଜିର ସଂକଟ ଦୂର ହୋଇ ପାରିବ ।(୮) ଡଃ. ବସନ୍ତ କିଶୋର ସାହୁଙ୍କ ଶିକ୍ଷା ଭିତ୍ତିକ ପ୍ରବନ୍ଧର ସଂଖ୍ୟା ଦୃଷ୍ଟିରୁ ବହୁଳ ନ ହେଲେ ହେଁ ଗୁଣାତ୍ମକ ଓ ସାମାଜିକ ଅଙ୍ଗିକାର ଯୁକ୍ତ, ଏହା ସ୍ୱୀକାର୍ଯ୍ୟ ।

ଜଣେ ପ୍ରାବନ୍ଧିକ ଭାବରେ ଡକ୍ଟର ସାହୁଙ୍କ ପ୍ରତ୍ୟେକ ସର୍ଜନା ସାହିତ୍ୟ ଆଧାରିତ ହେଲେ ହେଁ, ସେଥିରେ ସେ ଆଙ୍ଗିକ ଓ ଆତ୍ମୀକ ବିଭବକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଏ ପ୍ରକାର ପ୍ରବନ୍ଧ ରଚନାର ଦୁଇ ପାଖ ରହିଛି । ଓଡିଆ ସାହିତ୍ୟର ବହୁ ସାହିତ୍ୟିକଙ୍କ ସୃଷ୍ଟି ସମ୍ଭାର ମଧ୍ୟରେ ନିହିତ ଥିବା ବୈଶିଷ୍ଟ୍ୟ, ବୈଚିତ୍ର୍ୟ ଏବଂ ସ୍ୱାତନ୍ତ୍ର୍ୟକୁ ନେଇ ସେ ଅନେକ ପ୍ରବନ୍ଧ/ଆଲୋଚନା ରଚନା କରିଛନ୍ତି । ନୀଳକଣ୍ଠଙ୍କ ଶିଶୁ କବିତାରେ ହାସ୍ୟରସ, ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ସୃଷ୍ଟି ଓ ଦୃଷ୍ଟି, ଗୋଦାବରୀଶ ମହାପାତ୍ରଙ୍କ ଶିଶୁ କବିତାର ମନସ୍ତାତ୍ତ୍ୱିକ ଅଧ୍ୟୟନ ପ୍ରଭୃତି ପ୍ରବନ୍ଧରେ ସେ ସାହିତ୍ୟିକମାନଙ୍କ ସୃଷ୍ଟିରେ ବିଭିନ୍ନ ଆଙ୍ଗିକର ବିବିଧ ସ୍ୱରୂପକୁ ପ୍ରାଞ୍ଜଳ ଭାବରେ ବ୍ୟକ୍ତ କରିଛନ୍ତି । ଅନ୍ୟ ପକ୍ଷରେ ସାହିତ୍ୟର ବିଭିନ୍ନ ବିଭବ-କବିତା, ଗଳ୍ପ, ନାଟକ ଆଦିରେ ଯେଉଁ ଆତ୍ମିକ ଆବେଦନ ରହିଛି ଏବଂ ତା'ର ଉପାଦେୟତାକୁ ନେଇ ମଧ୍ୟ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ସାଂପ୍ରତିକ କବିତାରେ ସାମାଜିକ ରୂପରେଖ, ଓଡିଆ କବିତାରେ ବ୍ୟଙ୍ଗ ପ୍ରଭୃତି ପ୍ରବନ୍ଧରେ ଡକ୍ଟର ସାହୁ ସାହିତ୍ୟିକର ସାହିତ୍ୟ ଓ ସାହିତ୍ୟର ଜୀବନ ସହ ଓତଃପ୍ରୋତ ସଂପର୍କ ବିଷୟରେ ଅବତାରଣା କରିଛନ୍ତି ।

ଆମ ସାଂସ୍କୃତିକ ବିଚାରଧାରା ମଧ୍ୟରେ ଯେଉଁ ମହନୀୟତା ରହିଛି, ତାହାକୁ ଅନ୍ୱେଷଣ-ଅନୁସନ୍ଧାନ କରି ଲୋକ ଲୋଚନକୁ ଆଣିବା ଏବଂ ସେଇ ପରମ୍ପରା ମଧ୍ୟରେ ନିହିତ ସ୍ୱତନ୍ତ୍ରତା, ବ୍ୟାପକତା, ଚିରପ୍ରବହମାନ-ଅମୃତଧାରାକୁ ଗବେଷକ ବସନ୍ତ କିଶୋର ସାହୁ ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ଏ ପ୍ରକାର ସାଂସ୍କୃତିକ ବିଚାର ମୂଳକ ପ୍ରବନ୍ଧଗୁଡିକ ପ୍ରାଞ୍ଜଳ, ସଦୃଷ୍ଟାନ୍ତ ଏବଂ ଆକର୍ଷଣୀୟ । ଓଡିଶାର ବିଭିନ୍ନ ସାଂସ୍କୃତିକ ଉପାଦାନର କିପରି ବୈଚିତ୍ର୍ୟ ରହିଛି ଓ ତା ମଧ୍ୟରେ ଯେଉଁ ସ୍ୱତନ୍ତ୍ରତା ରହିଛି ତାହା ସର୍ବସାଧାରଣଙ୍କ ନିକଟରେ ପହଞ୍ଚି ନ ପାରିଲେ ମଧ୍ୟ ଅନନ୍ୟ । ଏଣୁ ଡକ୍ଟର ସାହୁ ଓଡିଶାର ଦୋଳିଗୀତ, ଖେଳଗୀତ, ନାନାବାୟା ଗୀତ, ପୁଚିଖେଳ ଗୀତର ମାଧୁର୍ଯ୍ୟକୁ ଲୋକଲୋଚନକୁ ଆଣିବାକୁ ସଫଳ ପ୍ରୟାସ କରିଛନ୍ତି । ଅନୁରୂପ ଭାବରେ କୋରାପୁଟର ଆଦିବାସୀମାନଙ୍କ ଜୀବନଚର୍ଯ୍ୟା, ଲୋକଗୀତ, ଲୋକକଥା, ଲୋକ ସାହିତ୍ୟ, ପର୍ବପର୍ବାଣି, ଆଧ୍ୟାତ୍ମିକ ଦୃଷ୍ଟି, ଲୋକପ୍ରିୟ-ଲୋକନୃତ୍ୟ, ସର୍ବୋପରି ସାମଗ୍ରିକ ଜୀବନକୁ



Digitized by srujanika@gmail.com

ଆଧାର କରି ବହୁ ପ୍ରବନ୍ଧ ରଚନା କରିଛନ୍ତି । କୋରାପୁଟକୁ ଆଧାର କରି ଲେଖକଙ୍କ ସ୍ୱତନ୍ତ୍ର ପୁସ୍ତକ 'କୋରାପୁଟ ସଂସ୍କୃତି' ପ୍ରକାଶିତ । ପୁସ୍ତକଟି ସମଗ୍ର ଓଡିଶାର ପାଠକ ନିମନ୍ତେ ଏକ ସଂରକ୍ଷଣୀୟ ଆଲୋଚନା ପୁସ୍ତକ ।

ଲେଖକ ଡକ୍ଟର ବସନ୍ତ କିଶୋର ସାହୁ ଅନେକ ପ୍ରତିଭାଶାଳୀ ତଥା ମହନୀୟ ବ୍ୟକ୍ତିଙ୍କ କର୍ମମୟ ଜୀବନ, ଚିନ୍ତାଧାରା ଏବଂ ସେମାନଙ୍କ ଜୀବନର ସ୍ୱାତନ୍ତ୍ର୍ୟକୁ ନେଇ କେତେକ ଉପାଦେୟ ପ୍ରବନ୍ଧ ରଚନା କରିଛନ୍ତି । ଏସବୁ ରଚନା ମଧ୍ୟରେ ସେ ସେଇ ବ୍ୟକ୍ତିତ୍ୱଙ୍କ ଜୀବନର ବହୁବିଧ ଦିଗକୁ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ସେଇ ପ୍ରବନ୍ଧ ଗୁଡିକ କେତେବେଳେ ଜୀବନ କାହାଣୀ ମୂଳକ ତ ପୁଣି କେବେ ସେମାନଙ୍କ ଜୀବନର ସ୍ୱତନ୍ତ୍ରତାକୁ ପ୍ରତୀକିତ କରିଥାଏ । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନରେ ପାରଳା ଗଜପତିଙ୍କ ଭୂମିକା, ନବକୃଷ୍ଣ ଚୌଧୁରୀ-ଜଣେ ନିଆରା ମଣିଷ, କବି ଜଳଧର ସ୍ୱାଇଁଙ୍କର ଗଳ୍ପ ଏକ ଆକଳନ ପ୍ରଭୃତି ପ୍ରବନ୍ଧର ରଚନା ତଥା ଉପସ୍ଥାପନାରେ ଶ୍ରୀଯୁକ୍ତ ସାହୁ ଗଭୀର ଅଧ୍ୟୟନ ଓ ଆନ୍ତରିକତାର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

ଅନୁରୂପ ଭାବରେ ସେ ଧର୍ମ ଧାରଣା ତଥା ସାଂସ୍କୃତିକ ଚିନ୍ତାଧାରା ସଂପର୍କରେ ଯେଉଁ ପ୍ରବନ୍ଧ ସୃଷ୍ଟି କରିଛନ୍ତି ତନ୍ମଧ୍ୟରେ ତାଙ୍କ ଉତ୍କଳୀୟ ପ୍ରୀତିର ପରିଚୟ ମିଳିଥାଏ । ଏଗୁଡିକ ମଧ୍ୟରେ ସେ ମୁଖ୍ୟତଃ ଶ୍ରୀଜଗନ୍ନାଥଙ୍କ ଭକ୍ତ, ଭକ୍ତି ସାହିତ୍ୟର ବିବିଧତା ଅନ୍ତର୍ଭୁକ୍ତ । ଏତଦ୍ ବ୍ୟତୀତ କୋରାପୁଟର ସାଂସ୍କୃତିକ ଚିନ୍ତାଧାରା, ଆଦିବାସୀର ଦର୍ଶନ, ବିଭିନ୍ନ ଦେବଦେବୀ ପରମ୍ପରାକୁ ନେଇ ସେ ଅନେକ ସଂଖ୍ୟାରେ ପ୍ରବନ୍ଧ ରଚନା କରିଛନ୍ତି । ସମାଲୋଚନା ମୂଳକ ପ୍ରବନ୍ଧ ଗୁଡିକରେ ସେ ଅନେକ ସାହିତ୍ୟିକ ଓ ସ୍ରଷ୍ଟାଙ୍କ ସୃଷ୍ଟିକୁ ଆଙ୍ଗିକ ଓ ଆତ୍ମୀକ ତତ୍ତ୍ୱକୁ ବିଶ୍ଳେଷଣ କରି ପ୍ରବନ୍ଧମାନ ରଚନା କରିଛନ୍ତି । ଏ ସବୁରୁ ଲେଖକଙ୍କ ଦୃଷ୍ଟି ଓ ବ୍ୟାପ୍ତିର ପରିଚୟ ମିଳିଥାଏ । ସାଂପ୍ରତିକ କବିତାର ସାମାଜିକ ରୂପରେଖ, ନନ୍ଦକିଶୋର ସାମଲଙ୍କ ସୃଷ୍ଟି ଓ ଦୃଷ୍ଟି ପ୍ରଭୃତି ପ୍ରବନ୍ଧ ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଏତଦ୍ ବ୍ୟତୀତ ଶ୍ରୀଯୁକ୍ତ ସାହୁଙ୍କ 'ଲଘୁ ଆଲୋଚନା' ମଧ୍ୟ ସ୍ୱକୀୟ ବିଦ୍‌ବତାର ପରିଚୟ ପ୍ରଦାନ କରିଥାଏ । ଏଗୁଡିକରେ ସେ ହାସ୍ୟ-ବ୍ୟଙ୍ଗର ପୁଟ ଦେଇ ଭିନ୍ନ ଏକ ଗଦ୍ୟ ସାହିତ୍ୟର ମୌଳିକତାକୁ ଉପସ୍ଥାପନା କରିଛନ୍ତି ।

ସୁତରାଂ ଡକ୍ଟର ସାହୁ ଯେଉଁ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ବହୁଳ ମାତ୍ରାରେ ପ୍ରବନ୍ଧ ସୃଷ୍ଟି କରିଛନ୍ତି, ତାହା ସମକାଳୀନ ସାହିତ୍ୟ ପାଇଁ ଯେତିକି ସ୍ୱତନ୍ତ୍ର ସେତିକି ପ୍ରଶସ୍ତ । ଅବିଭକ୍ତ କୋରାପୁଟର ପ୍ରାବନ୍ଧିକ ଓ ଆଲୋଚକ ମଧ୍ୟରେ କାହିଁକି ସମଗ୍ର ଓଡିଶାରେ ମଧ୍ୟ ସେ ଏକ ନିଜସ୍ୱ ସ୍ଥାନ ଅଧିକାର କରିଛନ୍ତି, ତାହା ସ୍ୱୀକାର କରିବାରେ କାର୍ପଣ୍ୟ ନାହିଁ ।



ଗବେଷକ : କୋରାପୁଟ ସାହିତ୍ୟର ଇତିହାସ
ସୃଜନୀ ନୀଳୟ, ପୁରୁଷୋତ୍ତମ ନଗର, ଜୟପୁର, କୋରପୁଟ



Digitized by srujanika@gmail.com

# ଶିଶୁ ସାହିତ୍ୟ, କିଶୋର ବସନ୍ତ ଓ ଅନ୍ୟାନ୍ୟ

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ତାଙ୍କ ପାଇଁ ଜନ୍ମମାଟି ହୋଇଛି ଓଡିଆର ଅନେକ ସାରସ୍ୱତ ସାଧକଙ୍କ ସାଧନା ପୀଠ କୁସୁପୁର, ହେଲେ କର୍ମଭୂମି କୋରାପୁଟ । କଟକରୁ କୋରାପୁଟ ହେଉ ବା କୁସୁପୁରରୁ ସୁନାବେଡା-ଜୀବନର ଏହି ଯାତ୍ରା ପଥରେ ସେ ନିଜକୁ ସମର୍ପି ଦେଇଛନ୍ତି ସାରସ୍ୱତ ସାଧନାରେ । ନିଷ୍ଠାପର ଭାବେ ନିର୍ବାହ କରି ଚାଲିଛନ୍ତି ନିଜର ଦାୟବଦ୍ଧ ଭୂମିକା । କିଶୋର ବୟସରେ ଲେଖାଲେଖି ପ୍ରତି ଝୁଙ୍କ ଆରମ୍ଭ ହୋଇଥିଲା । ନନ୍ଦକିଶୋର ବିଦ୍ୟାମନ୍ଦିରର ସେହି ଦଶମ ଶ୍ରେଣୀର ଛାତ୍ର ବସନ୍ତ ଆଜି ଚାରି ଦଶନ୍ଧି (୧୯୭୨-୨୦୧୨) ମଧ୍ୟରେ ନିଜକୁ ଓଡିଆ ବାଣୀମନ୍ଦିରରେ ଜଣେ ଏକନିଷ୍ଠ ପୂଜାରୀ ରୂପେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଡକ୍ଟର ବସନ୍ତ କିଶୋର ସାହୁ- ଶିଶୁ ସାହିତ୍ୟ ଲେଖକ ମହଲରେ ଶ୍ରଦ୍ଧାଶୀଳ ନାମ । ଜଣେ ଶିଶୁ ସାହିତ୍ୟ ସ୍ରଷ୍ଟା ବା ସଂଗଠକ ଭାବେ ତାଙ୍କର ଭୂମିକା ହୋଇଛି ଉଚ୍ଚପ୍ରଶଂସିତ, ମାତ୍ର ଏହି ପରିଚିତ ବାହାରେ ମଧ୍ୟ ତାଙ୍କର ସାରସ୍ୱତ କର୍ମ ବେଶ୍ ପରିବ୍ୟାପ୍ତ । ଜଣେ ପ୍ରାବନ୍ଧିକ, କୋରାପୁଟର ସଂସ୍କୃତିର ଉପାସକ, ସଂପାଦକ, ଗାଳ୍ପିକ ବିଶେଷ କରି ସାରସ୍ୱତ ପରିମଣ୍ଡଳ ସୃଷ୍ଟିରେ ଅଗ୍ରଣୀ ସେନା ନାୟକ ଭାବେ ତାଙ୍କ ଭୂମିକା ଅନେକଙ୍କ ପାଇଁ ପ୍ରେରଣାପ୍ରଦ ।

ନନ୍ଦକିଶୋର ବଳ ହୁଅନ୍ତୁ ବା ନନ୍ଦ କିଶୋର ସାମଲ ହୁଅନ୍ତୁ-ଏହି ସାରସ୍ୱତ ସାଧକଙ୍କ ସାଧନାଭୂମିର ଯଥାର୍ଥ ଦାୟାଦ ବସନ୍ତ କିଶୋର । ପିଲା ଦିନେ ନିଜ ଗାଁ ର 'ପଲ୍ଲୀଜ୍ୟୋତି ପାଠାଗାର' ପ୍ରକାରାନ୍ତରେ ସାହିତ୍ୟ କ୍ଷେତ୍ରକୁ ଆସିବା ପାଇଁ ସୃଷ୍ଟି କରିଥିଲା ଭିତ୍ତିଭୂମି ଓ 'ଗୁଣ୍ଡୁଚିମୂଷାର ପିଠିରେ ଗାର' ପରି ଶିଶୁ ମନଲାଖି ପୁସ୍ତକର ପ୍ରଭାବ ତାଙ୍କ ହାତରେ ଧରାଇ ଦେଇଥିଲା କଲମ । ସେହି କଲମ ପହିଲେ କଥା କହି ନଥିଲା, ବୋଲିଥିଲା କବିତା-'ବରଷକେ ଆଜି ଆସିଛି ବସନ୍ତ ଋତୁରାଜ / ହୋଇ ନନା ରଙ୍ଗେ ସଜବାଜ ।' ୧୯୭୨ ମସିହା ମାର୍ଚ୍ଚ ମାସ ୧୧ ତାରିଖ ମାତୃଭୂମିର କିଶୋର ଫଉଜରେ ପ୍ରକାଶିତ ଏହି ଶିଶୁ ମନଲାଖି କବିତା ଯେଉଁ ପୁଲକ ସୃଷ୍ଟି କରିଥିଲା, ତାହା ତାଙ୍କୁ ଦୀର୍ଘ ଚାରି ଦଶନ୍ଧି ଧରି ସାହିତ୍ୟ ରଚନା, ପତ୍ରିକା ସଂପାଦନା ଓ ସାରସ୍ୱତ ସଂଗଠନରେ ବ୍ରତୀ କରିବାରେ ସଫଳ ହୋଇଛି ।

ଶିଶୁ ମନଲାଖି କବିତାରୁ ବସନ୍ତଙ୍କ ସାରସ୍ୱତ ସର୍ଜନା ଆରମ୍ଭ ହୋଇଥିଲା ଓ



Digitized by srujanika@gmail.com

ପରେ ସେ ଅନ୍ୟ କବିତା ମଧ୍ୟ ରଚନା କରିଛନ୍ତି ତାହା "କେମିତି କହିବି କୁହଗୋ ପ୍ରିୟା/ ଆସୁ ଆସୁ ଶିରାବଣ / ସାରାରାତି କାଲି ବରଷା ଝରିଲା / ଭିଜିଗଲା ଦେହ ମନ ।" ପରି ପଦ ପଂକ୍ତିରେ ବେଶ୍ ମନରେ ରେଖାପାତ କରୁଥିବା 'ବର୍ଷାଭାବନା' ପରି କବିତା ହେଉ ବା "ଆକାଶରେ ଧୁ ଧୁ ପ୍ରୀତିର ପାର୍ବଣ / ରହି ରହି ମନପକ୍ଷୀ ଗାଏ / ଅନୁରାଗ ବିଷାଦ ଗୀତିକା / ନିଛାଟିଆ ଖରାବେଳେ / ମନର ତତଲା ବାଲିରେ / ଯନ୍ତ୍ରଣାରେ ନିଆଁର ପସରା" ପରି ଶବ୍ଦରେ ଶବ୍ଦରେ ମନର କଥା କହୁଥିବା 'ଖରା' ପରି କବିତା ହୋଇପାରେ । ମାତ୍ର ଶିଶୁ-ସାହିତ୍ୟ କ୍ଷେତ୍ର ହିଁ ତାଙ୍କୁ ଦେଇଛି ପରିଚିତି । ଇଞ୍ଚୁଡି ମିଞ୍ଚୁଡି, ଖରାବରଷା ଗୀତ, ବିଲୁଆ ନନାର ବଣଭୋଜି, ଫୁଲ ଆମେ ଫୁଲ, ଗଛ ଆମ ଜୀବନ ଆଦି ସର୍ଜନଶୀଳ କୃତି ହେଉଛି ତାଙ୍କ ସାଧନାର ଫଳଶ୍ରୁତି ।

ଓଡିଆ ଶିଶୁ-ସାହିତ୍ୟର ସମୃଦ୍ଧି ଓ ବିକାଶ କ୍ଷେତ୍ରରେ ସେ ଜାରି ରଖିଛନ୍ତି ନିରବଚ୍ଛିନ୍ନ ପ୍ରୟାସ । ସେହି ପ୍ରୟାସ ମଧ୍ୟ ଶିଶୁ ସାହିତ୍ୟ କ୍ଷେତ୍ରରେ ତାଙ୍କ ଗବେଷଣା ପଥକୁ ପ୍ରଶସ୍ତ କରିଛି । 'ଓଡିଆ ମୌଖିକ ଶିଶୁ-ସାହିତ୍ୟ', ଓଡିଆ ଶିଶୁ-ସାହିତ୍ୟ ଆଲୋଚନା, ସାଂପ୍ରତିକ ଶିଶୁ-ସାହିତ୍ୟ ଓ ସାହିତ୍ୟିକ, ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ' ପରି ଗବେଷଣା ଗ୍ରନ୍ଥ ବା ଆଲୋଚନା ପୁସ୍ତକ ପାଇଁ ଅନୁକୂଳ ଭୂମିକାଟି ନିର୍ବାହ କରିଛି । ଓଡିଆ ସାହିତ୍ୟର ଗତି ଓ ପ୍ରବୃତ୍ତିକୁ ସେ ତର୍ଜମା କରିଛନ୍ତି । ଜଣେ ଶିଶୁ-ସାହିତ୍ୟ ସ୍ରଷ୍ଟା ଓ ଶିଶୁ ସାହିତ୍ୟର ଗବେଷକ ହୋଇଥିବା କାରଣରୁ ଶିଶୁ ସାହିତ୍ୟର ଉଭୟ ସର୍ଜନା ଓ ଆଲୋଚନାକୁ କେବଳ ସମୃଦ୍ଧ କରିନାହାନ୍ତି, ଏଥିରେ ସମନ୍ୱୟ ମଧ୍ୟ ରଖିଛନ୍ତି । ଓଡିଆ ଶିଶୁ-ସାହିତ୍ୟ ଓ ଶିଶୁ-ସାହିତ୍ୟର ସ୍ରଷ୍ଟାଙ୍କୁ ନିବିଡ ଭାବରେ ଜାଣିବା ହିଁ ତାଙ୍କ ପାଇଁ ଶିଶୁ-ସାହିତ୍ୟ ସମାଲୋଚନା କ୍ଷେତ୍ରରେ ସଫଳତା ଆଣିଦେଇଛି । କେତେକ ମୌଳିକ ପ୍ରସଙ୍ଗକୁ ନେଇ ସେ ରଚନା କରିଥିବା ପ୍ରବନ୍ଧ ଦୃଷ୍ଟି ଆକର୍ଷଣ କରେ । ସେ ହୋଇପାରେ 'ମୂଲ୍ୟବୋଧଭିତ୍ତିକ ଶିକ୍ଷାର ବିକାଶରେ ଭାଷା ଶିକ୍ଷକଙ୍କ ଭୂମିକା' ବା 'ବହିପଢା ଅଭ୍ୟାସ' ବା 'ଆମ ଜୀବନ ରାସ୍ତାର ହାଲଚାଲ' । ବୃତ୍ତିରେ ଜଣେ ଅଧ୍ୟାପକ ହୋଇଥିବା କାରଣରୁ ଏ ସବୁ ବିଷୟରେ ଅନୁଧ୍ୟାନ କରିବାର ଯେଉଁ ଅବକାଶ ତାଙ୍କୁ ମିଳିଛି, ତାହାକୁ ସେ ସଦୁପଯୋଗ କରିଛନ୍ତି । ନିଜର ଦୃଷ୍ଟିକୋଣକୁ ବୃହତ୍ତର ପାଠକ ସମାଜ ନିକଟରେ ପହଞ୍ଚାଇବାର ମହତ୍ ଲକ୍ଷ୍ୟ ନିଶ୍ଚୟ ଅଭିନନ୍ଦନୀୟ ।

'ବଗଲାବଗୁଲୀ' ପରି ଶିଶୁ-ପତ୍ରିକାର ସଂପାଦକ ଭାବେ ଦାୟିତ୍ୱ ନିର୍ବାହ କରିଥିବା ଶ୍ରୀ ସାହୁ ପରବର୍ତ୍ତୀ ସମୟରେ 'ବନଫୁଲ ସାହିତ୍ୟ ପରିଷଦ' ଗଠନରେ ଓ ଏହି ସଂଗଠନ ମାଧ୍ୟମରେ ଅନେକ ସଂକଳନ ସଂପାଦନା କରି କେବଳ ସୁନାବେଡା ନୁହେଁ କୋରାପୁଟରେ ଏକ ପ୍ରଭାବଶାଳୀ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । 'ବନଫୁଲ ସାହିତ୍ୟ ପରିଷଦ' ପକ୍ଷରୁ ପ୍ରାକ୍-ବିଷୁବ ମିଳନ ଆୟୋଜନ ବି କୋରାପୁଟର ନୈସର୍ଗିକ ଶୋଭାରେ ଯୋଡିଥିଲା ଆଉ ଏକ ଫର୍ଦ୍ଦ । ସଂଗଠନ ଓ ସଂପାଦନା ଯେପରି ହୋଇଯାଇଛି ତାଙ୍କ ଜୀବନର ବଡ ଅଧ୍ୟାୟ । 'ବନଫୁଲ



Digitized by srujanika@gmail.com

ସାହିତ୍ୟ ପରିଷଦ' ହେଉ କି 'ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ' ବା 'ମାଣିକ ବିଶ୍ୱନାଥ ସ୍ମୃତିନ୍ୟାସ'-ସବୁଠି ତାଙ୍କର ଉପସ୍ଥିତି ଓ ସଂଗଠନକୁ ଆଗକୁ ନେବାର ନିଷ୍ଠାପର ଦାୟିତ୍ୱ ନିର୍ବାହ ତାଙ୍କୁ ଅନେକରେ ଏକ କରିଛି ।

ନିଜର କର୍ମଭୂମି କୋରାପୁଟକୁ ଭଲ ଭାବରେ ବୁଝିବାରେ ପ୍ରୟାସ କରିଛନ୍ତି ଡକ୍ଟର ସାହୁ । ମୁଁ ଭାବୁଛି କୋରାପୁଟ ଜୀବନ, ସଂସ୍କୃତି, ସଂପର୍କରେ ସେ ଯାହା ଅନୁଶୀଳନ କରିଛନ୍ତି ଓ ଲେଖିଛନ୍ତି ତାହା ତାଙ୍କ ଜୀବନର ବଡ ସଫଳତା । ସେ ବି କହନ୍ତି, "କୋରାପୁଟ ଆସିବା ଦିନରୁ ମୁଁ ତାକୁ ଭଲ ପାଇ ବସିଲି । ତାର ଜୀବନ ଓ ପ୍ରକୃତି ମୋ ମନରେ କି କିମିଆ ଲଗେଇ ଦେଲା କେଜାଣି, ଏ ଯାଏ ତାକୁ ଭୁଲିପାରିନି , ଭୁଲି ପାରିବି କି ନାହିଁ ।" ପ୍ରକୃତରେ ଭଲ ପାଇବା ଓ ଭୁଲି ନ ପାରିବାରୁ କୋରାପୁଟ ସଂପର୍କରେ ସେ ଲେଖିଛନ୍ତି ଅନେକ ଲେଖା । ଓଡିଶାର ଭୂସ୍ୱର୍ଗ କୋରାପୁଟ, ଅବିଭକ୍ତ କୋରାପୁଟର କେତେକ ଲୋକପ୍ରିୟ ଲୋକନୃତ୍ୟ, ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀଙ୍କ ଦେବାଦେବୀ ଆଦି ଲେଖାରୁ କୋରାପୁଟ ସହ ନିଜର ନିବିଡ ସଂପୃକ୍ତି ସ୍ପଷ୍ଟ ହୋଇଯାଏ । ଯେଉଁ ମାଟିରେ ସେ ନିଜର କର୍ମମୟ ଜୀବନ ନିର୍ବାହ କରିଛନ୍ତି, ସେହି ମାଟିକୁ ମର୍ଯ୍ୟାଦାବନ୍ତ କରିବାକୁ ପ୍ରୟାସ କରିଛନ୍ତି । ମାଟି ସଂପ୍ରୀତି ହିଁ ତାଙ୍କ ଜୀବନର ଆଉ ଏକ ବିଶେଷତ୍ୱ । ଏ ମାଟି ସଂପର୍କରେ ସେ କହନ୍ତି,-"ବିଭିନ୍ନ ଜାତି, ବିଭିନ୍ନ ସଂପ୍ରଦାୟର ମହାମିଳନ କ୍ଷେତ୍ର ହେଉଛି କୋରାପୁଟ ଜିଲ୍ଲା । ହିନ୍ଦୁ, ଜୈନ, ମୁସଲମାନ, ଖ୍ରୀଷ୍ଟିୟାନ ତଥା ଭାରତର ବିଭିନ୍ନ ଅଞ୍ଚଳର ଓ ବିଭିନ୍ନ ଭାଷାଭାଷୀ ଲୋକଙ୍କର ସମନ୍ୱୟ ଘଟିଛି ଏହି ଜିଲ୍ଲାରେ । ଜିଲ୍ଲାର ସଂଖ୍ୟାଧିକ ଅଧିବାସୀ ଆଦିବାସୀ ଦେଶିଆ ଭାଷା ବ୍ୟବହାର କରିଥାନ୍ତି । ଆର୍ଯ୍ୟ, ଦ୍ରାବିଡ ଓ ଅନାର୍ଯ୍ୟଙ୍କ ମିଳନପୀଠ ହେଉଛି ଏ ଜିଲ୍ଲା । ଏମାନେ ସମସ୍ତେ ବିଭିନ୍ନ ଭାଷା ଓ ଉପଭାଷାରେ ଝଙ୍କୃତ କରନ୍ତି ଏହାର ବାୟୁମଣ୍ଡଳକୁ"। (ଓଡିଶାର ଭୂସ୍ୱର୍ଗ କୋରାପୁଟ-ବସନ୍ତ କିଶୋର ରଚନାବଳୀ-୨ୟ ଖଣ୍ଡ, ପୃ-୧୦୯) ।

ଅବିଭକ୍ତ କୋରାପୁଟର ଲୋକପ୍ରିୟ ଲୋକନୃତ୍ୟ ସଂପର୍କରେ ତାଙ୍କ ପ୍ରବନ୍ଧରେ ଯେଉଁ ଚକାନୃତ୍ୟ, ସମର ନୃତ୍ୟ, ଶିକାର ନୃତ୍ୟ, ସର୍ପ ନୃତ୍ୟ ଆଦି ସଂପର୍କରେ ଆଲୋଚନା କରିଛନ୍ତି, ସେଥିରୁ କେବଳ ଅନେକ ତଥ୍ୟ ମିଳୁନାହିଁ, ଏକ ଜାତିକୁ ଭଲ ଭାବରେ ଜାଣିବା ପାଇଁ ଓ ଏହି ଜାତିର ଜୀବନଧାରାକୁ ଚିହ୍ନିବା ପାଇଁ ସୃଷ୍ଟି ହୋଇଛି ଅବକାଶ ।

ଉଭୟ ସାରସତ ସାଧନା ଓ ସାରସତ ସଂଗଠନ କ୍ଷେତ୍ରରେ ନିଜକୁ ପ୍ରତିପାଦିତ କରି ଆସିଥିବା ଡକ୍ଟର ବସନ୍ତ କିଶୋର ସାହୁଙ୍କ ପାଇଁ ଆଗାମୀ ଦିନ ସଫଳତାର ସୂର୍ଯ୍ୟସ୍ନାନ କରୁଥାଉ । ତାଙ୍କ ରାଶି ରାଶି ରଚନାର ସରହଦ ଭିତରକୁ ନୂଆ ଅତିଥିମାନେ ଆସନ୍ତୁ ।



ସାଧାରଣ ସଂପାଦକ
ଉତ୍କଳ ସାହିତ୍ୟ ସମାଜ, କଟକ



Digitized by srujanika@gmail.com

# କୋରାପୁଟର ସଂସ୍କୃତି ଓ ବସନ୍ତ କିଶୋର

ପ୍ରଫେସର ନାରାୟଣ ସାହୁ

କୋରାପୁଟ ଏବଂ ବସନ୍ତ କିଶୋର ସାହୁ-ଏ ଦୁହିଁଙ୍କୁ ପରସ୍ପର ଠାରୁ ଅଲଗା କରିବା ସମ୍ଭବ ନୁହେଁ । କଥାରେ ଅଛି- 'ଯେ ଦେଶ ଯାଇ ସେ ଫଳ ଖାଇ' । ହେଲେ ସମସ୍ତେ ଏହାର ସ୍ୱାଦ ପାଇପାରନ୍ତି ନାହିଁ । କେବଳ ଚିହ୍ନରା ଗ୍ରାହକ ହିଁ ଏହାର ମହକ ପାଇଥାଏ । ସେହିଭଳି ଜଣେ ରସିକ ଗ୍ରାହକ ହେଉଛନ୍ତି ବସନ୍ତ ବାବୁ ।

କୋରାପୁଟର ପ୍ରଥମ ଦେଖାରେ ସେ ଏହାର ପ୍ରେମରେ ପଡିଯାଆନ୍ତି । ଉପକୂଳବାସୀଙ୍କର କୋରାପୁଟ ପ୍ରତି ଥିବା ନାହିଁ ନଥିବା ଧାରଣାକୁ ଖାତିର ନ କରି ସେ ଏହି ଅଞ୍ଚଳକୁ ଭଲପାଇ ବସନ୍ତି । ଭଲ ପାଆନ୍ତି କୋରାପୁଟର ଲଙ୍ଗଳାଫୁଙ୍ଗୁଳା ମଣିଷଙ୍କୁ, ମାଟି ପାଣି ପବନକୁ, ଜଙ୍ଗଲକୁ, ପାହାଡ଼କୁ ଆଉ ସବୁଜିମାକୁ । ଜଣେ ଯୁବ ଗବେଷକଙ୍କୁ ପ୍ରଲୁବ୍ଧ କରେ କୋରାପୁଟର ସାଂସ୍କୃତିକ ପାଣିପାଗ । ସେଇଥିପାଇଁ ସ୍ରଷ୍ଟା ବସନ୍ତଙ୍କ ଲେଖନୀ କୋରାପୁଟର ପ୍ରଶଂସାରେ ଶତଜିହ୍ୱ- 'କୋରାପୁଟ ମାଟିର ଏକ ମହକ ଅଛି । ଏକ ଆତ୍ମୀୟତା ଅଛି । ଏଠି କେବଳ ପ୍ରକୃତିର ଆକର୍ଷଣ ନାହିଁ, ଏଠି ମଧ୍ୟ ଅଛି ଜୀବନର ଆକର୍ଷଣ ।'

ଏକ ଭିନ୍ନ ଦୃଷ୍ଟିକୋଣ ନେଇ କୋରାପୁଟକୁ ପରଖିଛନ୍ତି ବସନ୍ତବାବୁ । ଡଙ୍ଗର ପାହାଡ଼ର ମଣିଷ, ସେମାନଙ୍କ ନାଚଗୀତ, ପର୍ବପର୍ବାଣି, ଚାଲିଚଳନ, ଓଷାବ୍ରତ ଏବଂ ଦୈନନ୍ଦିନ ଜୀବନ ପ୍ରବାହକୁ ତନ୍ନତନ୍ନ କରି ଅତି ନିକଟରୁ ନିରେଖିଛନ୍ତି ସ୍ରଷ୍ଟା ବସନ୍ତ । ଆତ୍ମା-ପରମାତ୍ମାର ମିଳନରେ ମହାସୁଖର ଉତ୍ପତ୍ତି ହେଲା ଭଳି କୋରାପୁଟ ଏବଂ ବସନ୍ତ-ଏ ଉଭୟର ସମନ୍ୱୟ ଏକ ନୂତନ ଅନିସନ୍ଧିତ୍ସୁ ମନକୁ ଜନ୍ମ ଦେଇଛି । କୋରାପୁଟ ପାଲଟି ଯାଇଛି ଏଇ ମଣିଷଟି ପାଇଁ ଭୂସ୍ୱର୍ଗ । ସତରେ ବିଭିନ୍ନ ଜାତି ବିଭିନ୍ନ ସଂପ୍ରଦାୟର ବୈଷମ୍ୟର ମିଳନ କ୍ଷେତ୍ର ଏଇ କୋରାପୁଟ । କେବଳ ପ୍ରାକୃତିକ ଶୋଭାସମ୍ପଦ ନୁହେଁ, ନାନା ପ୍ରାଚୀନ ଐତିହ୍ୟର ସ୍ମାରକୀ ବହନ କରି ସଦର୍ପେ ଦଣ୍ଡାୟମାନ ଏହି ଜିଲ୍ଲା ।

ସ୍ରଷ୍ଟାର ଆଖି ଖୋଜି ବୁଲେ କୋରାପୁଟର ଅନ୍ତର ତଳେ ଲୁଚି ରହିଥିବା ଅନନ୍ତ ରହସ୍ୟଘେରା ପୃଥିବୀକୁ । ସେଥିପାଇଁ ସେ କହେ- 'ଯୁଆଡେ ଆଖି ଫେରାଇଲେ ପାହାଡ଼



Digitized by srujanika@gmail.com

ପର୍ବତ, ସବୁଜ ଜଙ୍ଗଲ, ନଦୀଝରଣା ଓ ଜଳପ୍ରପାତ । ପ୍ରକୃତିର ଗନ୍ତାଘର ଓ ବୈଚିତ୍ର୍ୟ ଠୁଳ ହୋଇଛି ଏଠାରେ । ଦର୍ଶନ ମାତ୍ରେ ଆଖି ଝଲସି ଉଠେ ଓ ମନ ଉଲ୍ଲସିତ ହୁଏ ।'

ନାନା ଧର୍ମର ସୁମଧୁର ସମନ୍ୱୟ ଘଟିଛି ଏଇ ମାଟିରେ । ଶୈବ, ଶାକ୍ତ, ଜୈନ, ହିନ୍ଦୁ ଓ ଆଦିବାସୀ ସଂସ୍କୃତିର ମିଳନପୀଠ ଏଇ ବୀରଭୋଗ୍ୟା ବସୁନ୍ଧରା । ପୁରୀର ଶ୍ରୀକ୍ଷେତ୍ର ଢାଞ୍ଚାରେ ଗଢ଼ିଉଠିଛି ଶାବରଶ୍ରୀକ୍ଷେତ୍ର କୋରାପୁଟରେ । ବସନ୍ତବାବୁଙ୍କ ଐତିହ୍ୟ ସଂଚାରୀ ଦୃଷ୍ଟିରୁ ବାଦ୍‌ପଡ଼ିନି ଅନେକ ତଥ୍ୟ ଯଥା- ନନ୍ଦପୁରର ବତ୍ରିଶ ସିଂହାସନର ପ୍ରାଚୀନତା, ସର୍କଡାର ବୈଷ୍ଣବ ମଠ, ନାରାୟଣପାଟଣାର ଗଡ଼ଚଣ୍ଡୀ, ନବରଙ୍ଗପୁରର ଭଣ୍ଡାର ଘରିଆଣୀ, ଉମରକୋଟର ପେଣ୍ଡ୍ରାହାଣ୍ଡିଆଣି, ବିଶ୍ୱନାଥପୁରର ହରଚଣ୍ଡୀ, ଜୟପୁରର କନକଦୁର୍ଗା, ନନ୍ଦପୁରର ଗଣପତି, ରାୟଗଡ଼ାର ମଝିଘରିଆଣି, ବୈପାରିଗୁଡ଼ାର ସ୍ତମ୍ଭେଶ୍ୱରୀ ଇତ୍ୟାଦି ।

କୋରାପୁଟର ସାଂସ୍କୃତିକ ଗଗନରେ ଭାସି ଉଠନ୍ତି ନାନା ଯାନିଯାତ୍ରା, ପର୍ବପର୍ବାଣି । ଏହା କେବଳ ଆଧ୍ୟାତ୍ମିକ ଡୋରିକୁ ମଜବୁତ୍ କରେ ନାହିଁ, ପରନ୍ତୁ ଶୁଦ୍ଧତା ଏବଂ ପବିତ୍ରତାକୁ ବଜାୟ ରଖିଥାଏ । କୋରାପୁଟ ଏକ ଆଦିବାସୀବହୁଳ ଅଞ୍ଚଳ ହୋଇଥିବାରୁ ଏହାର ପର୍ବପର୍ବାଣି ଭିତରେ ଆଦିବାସୀ ସଂପ୍ରଦାୟର ପର୍ବପର୍ବାଣି ଏକ ବିଶେଷ ଭୂମିକା ଗ୍ରହଣ କରିଛି । ତେଣୁ ଏଠାକାର ଚଇତିପର୍ବ, ପୁଷ୍ ପରବ, କଜାପାଣ୍ଡୁ, ଭୀମଡୁପାଣ୍ଡୁ, ଗୋତର, ମାଘ ପରବ, ଅକ୍ଷୟ ତୃତୀୟା, ନୂଆଖିଆ, ଦଶରା, ଦିଆଲି, ମକର ଆଦି ପର୍ବ ସହିତ ଗୁନ୍‌ଚା ପର୍ବ, ଉଆଁସ ପର୍ବ, ଭୋଦନୂଆ ପର୍ବ, ଚାଉଳଧୁଆ ପର୍ବ, ଜାଗରପର୍ବ, ବେଣ୍ଟଯାତ୍ରା ପର୍ବ, ମଣ୍ଡେଇ ପର୍ବ ପାଳିତ ହୋଇଥାଏ । ଆନ୍ଧ୍ରର ନିକଟବର୍ତ୍ତୀ ଅଞ୍ଚଳ ହୋଇଥିବାରୁ ଏଠାକାର ଅଧିବାସୀଗଣ ତେଲୁଗୁ ସଂସ୍କୃତି ଦ୍ୱାରା ଉଣାଅଧିକେ ପ୍ରଭାବିତ ହୋଇଛନ୍ତି । ଏ ସବୁ ବ୍ୟତୀତ ବସନ୍ତବାବୁ ଆଉ କେତେକ ପର୍ବପର୍ବାଣି ଉପରେ ବିଶେଷ ଦୃଷ୍ଟି ପକାଇଛନ୍ତି ଯଥା- ଦଶମନ୍ତପୁର ଅଞ୍ଚଳର ମା' ଖମ୍ଭେଶ୍ୱରୀଙ୍କ ଘଟଯାତ୍ରା, କନ୍ଧମାନଙ୍କ ମେରିଆ, ଗଦବାମାନଙ୍କର ଗୋତର, ଭତରାମାନଙ୍କର ଅକ୍ଷିତୃତୀୟା, ଭୂମିଆମାନଙ୍କର ବୁଢ଼ୀଠାକୁରାଣୀ ଯାତ୍ରା ଓ କଣ୍ଡାଦୋରାମାନଙ୍କ ମକର ଆଦି ।

କୋରାପୁଟର ସାଂସ୍କୃତିକ ଇତିହାସରେ 'ପରଜା' ସଂପ୍ରଦାୟର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏମାନଙ୍କ ଚିତ୍ର ଓ ଚରିତ୍ର ସଂପର୍କରେ ଟିପ୍‌ପଣୀ ଦେବାକୁ ଯାଇ ଗବେଷକ, ଡକ୍ଟର ସାହୁ କୁହନ୍ତି - 'ପରଜାମାନେ ସ୍ୱଭାବରେ ସରଳ ଓ ନିଷ୍କପଟ । ନିଜର କର୍ମନିପୁଣ ମନୋବୃତ୍ତି ଓ ଆତିଥେୟତା ଗୁଣରୁ ସେମାନେ 'ପରଜା' ବୋଲି ଚିହ୍ନି ହୁଅନ୍ତି । ସେମାନେ କଠିନ ପରିଶ୍ରମୀ ଓ ପରୋପକାରୀ । ପାପ, ହିଂସା ପ୍ରଭୃତି ଆସୁରିକ ଗୁଣ ଠାରୁ ସେମାନେ ବହୁ ଦୂରରେ ରୁହନ୍ତି । ମାତ୍ର ଅନ୍ୟାୟ ଓ ଅନୀତି ଦେଖିଲେ ସେମାନଙ୍କ ଠାରେ ହିଂସ୍ର



Digitized by srujanika@gmail.com

ପ୍ରବୃତ୍ତି ଜାଗି ଉଠେ ।' ଏମାନେ ଅନ୍ୟ ସଂପ୍ରଦାୟ ଠାରୁ ବୁଦ୍ଧିମାନ । ପରଜା ସମ୍ପ୍ରଦାୟର ଜନ୍ମ ରହସ୍ୟ ଠାରୁ ଆରମ୍ଭ କରି ସେମାନଙ୍କ ବସତି, ଜ୍ଞାତି ଗୋତ୍ର, ଖାଦ୍ୟଦ୍ରବ୍ୟ, ବେଶଭୂଷା, ପର୍ବପର୍ବାଣି, ଜୀବନଜୀବିକା, ରୀତିନୀତି, ବିବାହ, ଜନ୍ମମୃତ୍ୟୁ ଆଦି ସମ୍ପର୍କରେ ବସନ୍ତବାବୁ ଅନେକ ଆବଶ୍ୟକ ତଥ୍ୟ ପ୍ରଦାନ କରିଛନ୍ତି ତାଙ୍କର ଉପାଦେୟ ପ୍ରବନ୍ଧମାନଙ୍କରେ ।

ଓଡ଼ିଶାର ଲୋକନାଟ୍ୟ ପୁସ୍ତକର ସମ୍ପାଦନା କରିଛନ୍ତି ଡକ୍ଟର ସାହୁ । ଅବିଭକ୍ତ କୋରାପୁଟ ଜିଲ୍ଲାର ଲୋକନୃତ୍ୟ ଉପରେ ଏକ ତତ୍ତ୍ୱନିଷ୍ଠ ଆଲୋଚନା ଉପସ୍ଥାପନ କରିଛନ୍ତି । କୋରାପୁଟର ଆଦିବାସୀଗଣ କୃଷି ଉପରେ ନିର୍ଭର କରୁଥିଲେ ମଧ୍ୟ ସବୁ ସମୟରେ ନୃତ୍ୟ ପ୍ରଦର୍ଶନ କରନ୍ତି ନାହିଁ । ଏହାର କାରଣ ନିରୂପଣ କରି ଡକ୍ଟର ସାହୁ କହନ୍ତି- 'କୃଷିଜୀବୀ ଆଦିବାସୀ ଚଇତି ପର୍ବ ପର ଠାରୁ ଭାଦ୍ରବ ମାସ ଯାଏ ଚାଷବାସରେ ନିଜକୁ ନିୟୋଜିତ କରେ । ତା' ସହିତ ବର୍ଷା ଯୋଗୁ ଗାଁ ଦାଣ୍ଡ ନୃତ୍ୟପାଇଁ ଅନୁକୂଳ ନଥାଏ । ଡଙ୍ଗର ଜମିରେ ଫସଲ ପାଚିଲେ ଯାଇ ନୃତ୍ୟଗୀତକୁ ଆଦିବାସୀ ସମାଜ ସ୍ୱୀକୃତି ପ୍ରଦାନ କରେ । ଲୋକବିଶ୍ୱାସ ପ୍ରଚଳିତ ଅଛି ଯେ ବର୍ଷାକାଳରେ ନୃତ୍ୟ କଲେ ବର୍ଷାର ଦେବତା କ୍ରୋଧ ପ୍ରକାଶ କରି ଆଉ ବାରିପାତ କରନ୍ତି ନାହିଁ । ସେଥିପାଇଁ ଏହି ସମୟରେ ନୃତ୍ୟ କରାଯାଏ ନାହିଁ ।'

କୋରାପୁଟର ସଂସ୍କୃତିକୁ ଭିତ୍ତି କରି ବସନ୍ତ ବାବୁ ପ୍ରକାଶ କରିଛନ୍ତି କେତୋଟି ପ୍ରବନ୍ଧ ଯଥା- 'ଆଦିବାସୀଙ୍କ କୃଷିଭିତ୍ତିକ ପର୍ବପର୍ବାଣି', 'ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀଙ୍କ ଦେବାଦେବୀ', 'ରାୟଗଡ଼ାର କନ୍ଧ ସଂସ୍କୃତି ଏକ ସଂକ୍ଷିପ୍ତ ଦୃଷ୍ଟିପାତ', 'ବଣ୍ଡା ସମ୍ପ୍ରଦାୟର ଜୀବନ ଚିତ୍ର', 'କୋରାପୁଟର ନୃତ୍ୟ ଓ ସଙ୍ଗୀତ', ଓ 'କୋରାପୁଟର ଚଇତି ପର୍ବ' ଇତ୍ୟାଦି । ଏ ସମସ୍ତ ପ୍ରବନ୍ଧରେ ରହିଛି ଜଣେ ଗବେଷକର ଅନୁସନ୍ଧିତ୍ସା । ଇତିହାସ ସଂଚାରୀ ଦୃଷ୍ଟି ପ୍ରବନ୍ଧଗୁଡ଼ିକର ସାଂସ୍କୃତିକ ଦିଗନ୍ତକୁ ବଳିଷ୍ଠ କରି ଗଢ଼ି ତୋଳିଛି ।

ନୃତ୍ୟ ଆଦିବାସୀ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏଇ ନୃତ୍ୟ ଭିତରୁ ସେମାନେ ଜୀବନ ଓ ଜୀବିକାର ରାହା ସନ୍ଧାନ କରିଥାନ୍ତି । ଜଣେ ଆଦିବାସୀ ଦିନେ ଅନାହାର ରହିପାରେ, ହେଲେ ନୃତ୍ୟକୁ ଛାଡ଼ି ପାରିବନି । ନୃତ୍ୟର ପାରଦର୍ଶିତା ତାକୁ ଜୀବନସାଥୀର ସନ୍ଧାନରେ ସାହାଯ୍ୟ କରିଥାଏ । ଆଲୋଚନାର ପରିସରକୁ ଗବେଷକ ଡକ୍ଟର ସାହୁ ଆଣିଛନ୍ତି ପରଜାର ଚକା ନୃତ୍ୟ, କୋୟାର ସର୍ପ ନୃତ୍ୟ, ଗଦବାର ଶିକାର ଓ ଢେମସା ନୃତ୍ୟ, ବଣ୍ଡାର ସମର ନୃତ୍ୟ, ସଉରାଙ୍କ ପତରସଉରା ନୃତ୍ୟ ଆଦିକୁ । ହାଣ୍ଡିଆ, ମହୁଲି, ସଲପର ନିଶା ଆଦିବାସୀମାନଙ୍କ କଠିନ ପରିଶ୍ରମକୁ ଲାଘବ କରିବା ସହିତ ସେମାନଙ୍କୁ ନୃତ୍ୟଗୀତରେ ମସଗୁଲ୍ କରିଥାଏ । ଏ ସଂପର୍କରେ ଡକ୍ଟର ସାହୁଙ୍କ ମନ୍ତବ୍ୟ ହେଉଛି- 'ନାଚି ନାଚି ରାତି ସରିଗଲେ ବି ଆଦିବାସୀ ଯୁବତୀମାନଙ୍କର ନାଚିବାର



Digitized by srujanika@gmail.com

ଇଚ୍ଛା ସରେନାହିଁ, ମନରୁ ସରାଗ କମେ ନାହିଁ, କି ଦେହରେ ଆଳସ୍ୟର ଚିହ୍ନବର୍ଣ୍ଣ ଦେଖିବାକୁ ମିଳେନାହିଁ । ସେ ଚାହେଁ ଆହୁରି ନାଚିବାକୁ । କି ଅଦ୍‌ଭୁତ ଖିଆଲ ସେମାନଙ୍କର, କ୍ଳାନ୍ତି ନାହିଁ, ଅବସାଦ ନାହିଁ କି ବିତୃଷ୍ଣା ନାହିଁ ।'

ବଣ୍ଡାମାନଙ୍କ ଜୀବନଜୀବିକା ସଂପର୍କୀତ ଆଲୋଚନାରୁ ଅନେକ ଉପାଦେୟ ତଥ୍ୟ ମିଳିଥାଏ । ଏଇଭଳି କେତୋଟି ଦୃଷ୍ଟି ଆକର୍ଷଣକାରୀ ତଥ୍ୟ ହେଉଛି - ଇଞ୍ଜରସନ, ସେଲାନିଡିଙ୍ଗୋ, ଗୁବାଇଗୋଜାଙ୍ଗଶୋନି, କିଣ୍ଡିଙ୍ଗସଙ୍ଗର ଇତ୍ୟାଦି । ଗବେଷକର ଅନ୍ତରଙ୍ଗ ଅନୁଭୂତି ଯେ କେତେ ତାହା ଏହି ଉକ୍ତିରୁ ଜଣାଯାଏ-'ବଣ୍ଡାମାନଙ୍କର ସାମାଜିକ, ସାଂସ୍କୃତିକ ଭାଷାଗତ ଉନ୍ନତି ପାଇଁ ଏବେ ସରକାରଙ୍କ ତରଫରୁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ ହେଉଛି । ସେମାନଙ୍କ ମନରୁ ଅନ୍ଧବିଶ୍ୱାସ ଦୂର ନକଲେ ସେମାନଙ୍କ ଉନ୍ନତି ଅସମ୍ଭବ । ଖାଲି ଯୋଜନା କାର୍ଯ୍ୟକାରୀ କରିଦେଲେ ଯେ ସେମାନଙ୍କର ଉନ୍ନତି ହୋଇଯିବ ତାହା ନୁହେଁ । ସେମାନଙ୍କୁ ସୁହାଇଲା ଓ ଖାପ ଖାଇଲା ପରି ଯୋଜନାମାନ ପ୍ରସ୍ତୁତ ହେବା ଆବଶ୍ୟକ । ସେମାନଙ୍କୁ ସଭ୍ୟ ଶିକ୍ଷିତ କରିବା ପାଇଁ ଚାହିଁଲେ, ସେମାନଙ୍କ ସହ ମିଳିମିଶି ସେମାନଙ୍କ ମଧ୍ୟରେ ଆମକୁ ଜଣେ ବୋଲି ପରିଚିତ ହୋଇପାରିଲେ ଯାଇ ଆମେ ସେମାନଙ୍କର ବିଶ୍ୱାସଭାଜନ ହୋଇପାରିବା । ତା ହେଲେ ଯାଇ କାର୍ଯ୍ୟକାରୀ ହେଉଥିବା ଯୋଜନାମାନ ସଫଳ ହୋଇପାରିବ ।'

ଅନ୍ତରଙ୍ଗ ଅନୁଭୂତି, ଶ୍ରୁତିମଧୁର ଭାଷା, ଇତିହାସ ସଂଚାରୀ ଦୃଷ୍ଟି, ଗବେଷକର ଦୃଷ୍ଟିଭଙ୍ଗୀ, ଦରଦୀ ମଣିଷ ପ୍ରତି ସମବେଦନା ଆଦି ବସନ୍ତବାବୁଙ୍କ ଲେଖନୀକୁ ବିନାବାଧାରେ ଅଗ୍ରସର ହେବାପାଇଁ ଯଥେଷ୍ଟ ଖୋରାକ ଯୋଗାଇଛି । ତାଙ୍କର ନିଷ୍କପଟ ସ୍ୱାଲିସ୍‌ବିହୀନ ଜୀବନଶୈଳୀ ତାଙ୍କ ଲେଖାକୁ ଯେ ଯଥେଷ୍ଟ ପ୍ରଭାବିତ କରିଛି, ଏଥିରେ ସନ୍ଦେହ ନାହିଁ ।



ପ୍ରଫେସର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର



Digitized by srujanika@gmail.com




'ଝୁଲ୍‌ରେ ହାତୀ ଝୁଲ'୍ ଆଉ
'ଧୋ'ରେ ବାୟା ଧୋ' ଗୀତ ପରି
ଯେତେ ଯେତେ ନାନାବାୟା ଗୀତ
ଖୋଜି ଆଣିଛି ମୁଁ ଲୋକ ସମାଜରୁ
ଭେଟି ଦେବା ପାଇଁ
'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ॥



ସମୟକୁ ପଛ କରି
ଆସ ଆମେ ତାରୁଣ୍ୟ ଖୋଜିବା
ପୂଜ୍ୟ ଗୁରୁମାନଙ୍କ ଗହଣରେ
ଏ ମାଟି ଅଗଣାକୁ ଛୁଇଁ
ଜୀବନକୁ ପବିତ୍ର କରିବା ॥



ଆସ, ଆମେ ଆଉ ଥରେ ଫେରିଯିବା
ଆମ ପିଲାବେଳକୁ
ମନ ଇଚ୍ଛା ଦୁଷ୍ଟ ହେବା
ହା ଡୁ ଡୁ ଓ ବାଗୁଡ଼ି ଖେଳିବା
କାନମୋଡ଼ା ବି ଖାଇବା
ହଜି ଯାଇଥିବା ସେଇ ନିରୋଳା ସ୍ନେହକୁ
ତୁମ ମୋ ଭିତରେ ଖୋଜିବା ॥

Digitized by srujanika@gmail.com



ଜୀବନଟା ଏକ ନିଖୋଜ ନକ୍ସା
ଅଝଟ ନଈର ସୁଅ
ସୁଖ ଖୋଜୁ ଖୋଜୁ
ରାସ୍ତା ସରି ଆସେ
ଦୁଃଖକୁ ସାଉଁଟି ନିଅ ॥



ହେ ମୋର ପୂର୍ବଜ !
ଅନ୍ଧାରରେ ଆସ
ଆଲୁଅରେ ଯାଅ
ପାଳିବାକୁ ତୁମ ପ୍ରତିଶ୍ରୁତି
ଦିଅ ହେ ଆଶିଷ ॥



ଉଦ୍‌ଘାଟନର ମୁହୂର୍ତ୍ତ
ଗାଇ ଦିଅ ପଦେଗୀତ ॥

Digitized by srujanika@gmail.com



ଉପଢ଼ୌକନ ବା ମାନପତ୍ର
ପ୍ରକୃତ ପରିଚୟ ନୁହେଁ ମୋର
ମୋ ପ୍ରାଣ ଲଭିବ ଶାନ୍ତି
ଶୁଣେ ଯେବେ ସାହିତ୍ୟର
ଜୟ ଜୟକାର ॥



ଶିଶୁ ସାହିତ୍ୟର
ଆମେ ଦୁଇ ମହାରଥୀ
ମନପ୍ରାଣ ଢ଼ାଳି ଦେବା
ଏଇ ଆମ ଚୁକ୍ତି ॥




ଏ ଆଲୋଚନା ଚାଲିଥାଉ ଏମିତି
ନ ହେଉ କେବେ ଶେଷ... ॥

Digitized by srujanika@gmail.com

ଅନ୍ତର ଖୋଲି ମୋ ସାଥିରେ ବନ୍ଧୁ
କୁହ ଥରେ, କୁହ ଥରେ
ଯା ଲାଗି ନିଖିଳ ବିଶ୍ୱ ଝୁରେ
ହସ ଭରିବାକୁ ଶପଥ ନେବାରେ
ସେଇ ଦେବ ଶିଶୁ ଓଠର ଧାରେ ॥





ଶିଶୁ ନୋହୁଁ ସିନା
ଶୈଶବ ହଜିଛି
ହଜିନାହିଁ ଅନୁଭବ
ଶିଶୁ ସାହିତ୍ୟର କର୍ମଶାଳା ପରା
ଆଣେ ନୂଆ ଅନୁରାଗ ॥

ବିଶ୍ୱକୁ ଦିନେ ଚିହ୍ନେଇ ଦେବ
ଆମେ କିଏ ଆମେ କିଏ...



Digitized by srujanika@gmail.com

ବନଫୁଲ ! କହୁ ତୁ ଲୋ
କେତେ ଆଶା କେତେ ସପ୍ନ
ମୋ ମନରେ ଭରିଦେଇ
ଅକାଳରେ କିଆଁ
ଝାଉଁଳି ପଡିଲୁ ?





ହେ ଫକୀର ମୋହନ !
ତୁମରି ଆଶିଷ ପାଇଁ
ଶାନ୍ତି କାନନରେ
ଆମେ ପାଞ୍ଚଜଣ ॥

ଶାନ୍ତିନିକେତନ ଶାନ୍ତ କୁଞ୍ଜରେ
ଛାଇ ତଳେ ଟିକେ ବସିବା
ଆସ୍ ବନ୍ଧୁ ଆସ ନିରୋଳାରେ ଟିକେ
ମନ ଖୋଲି କଥା ହେବା ॥



Digitized by srujanika@gmail.com

କହୁଛ ଯଦି କିଛି କୁହ
ସାହିତ୍ୟର କଥା କୁହ-
ପାରୁଛ ଯଦି କରିପାର
ଭାଷା ଆଉ ମାଟି ପାଇଁ
ପ୍ରାଣ ଦେଇପାର ।।







ଇଟିକିଲି ମିଟିକିଲି
ଫୁଟିଗଲା କାଇଁଚ
ତୁମ ଛବି ଦେଖୁ ସିନା
ତୁମେ ହଜି ଯାଇଛ ।।

ଉତ୍କଳ ସାଂସ୍କୃତିକ ପରିଷଦ
ସ୍ମରଣିକା ଓ ତୁମେ
ଏକ ଆଉ ଅଭିନ୍ନ
ଭୁଲିଗଲେ ତୁମେ ଭୁଲି ପାର
ଆମେ ରଖିଥିବୁ ମନେ ।।



Digitized by srujanika@gmail.com



କିଏ କହେ ଭାଷା ପାଇଁ ଜାତି ପା
ନାହିଁ ମୋର ବେଳ
ଦେଖୁନ- ସେଥିପାଇଁ ପରା
ପରିଷଦଗୃହ ଆଜି ଗହଳ ଚହଳ ।



ଏଇ ତ ଅବସର
ଦୁଃଖ ସୁଖ ବାଣ୍ଟିବାର ବେଳ



ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ
ମିଳିଲାନି କେବେ ଅବକାଶ
ଅବସର ଆସିଲାଣି ପୁଣି
ହେ ରଥୀ ! କର୍ମ ତୁମ ହେବ କି ଉଶ୍ବାସ
ସତେ, ମୋର ହେଉନି ବିଶ୍ବାସ ॥

Digitized by srujanika@gmail.com

# କୃତି ଓ କୃତିତ୍ୱ



କୀର୍ତ୍ତିମାନ ମରି ଭବେ ଲଭଇ ଜୀବନ
କଳଙ୍କିତ ପ୍ରାଣେ ଭାଇ କିବା ପ୍ରୟୋଜନ ।।
-ନନ୍ଦକିଶୋର



Digitized by srujanika@gmail.com

# ଗବେଷକ ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ମନୀନ୍ଦ୍ର ମହାନ୍ତି

ଗବେଷଣାର ଅର୍ଥ-ଖୋଜିବା । ପ୍ରକୃତ ସତ୍ୟକୁ ବା ରୂପକୁ ଖୋଜିବା ହିଁ-ଗବେଷଣା । ଏଣୁ ଖୋଜିବାରେ ଇତି ନ ଥାଏ । ଗୋଟିଏ ସତ୍ୟ ମିଳିଗଲା ପରେ, ଅନ୍ୟ ଏକ ସତ୍ୟ ପଛରେ ଧାଇଁବାକୁ ହୋଇଥାଏ । ଯିଏ ଯେତେ ଖୋଜିଲା-ଆଉ ପାଇଲା-ସେଇ ହିଁ ପ୍ରକୃତ ଗବେଷକ । ଆଉ, ସତ୍ୟର ସନ୍ଧାନ ପାଇଗଲା ପରେ ଯିଏ ସେଇଠି ଅଟକି ରହିଯାଏ-ସେ ପ୍ରକୃତରେ ଗବେଷକ ନୁହେଁ । ତେଣୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଧାଇଁବାକୁ ହୋଇଥାଏ । ତେବେ ଆମେ ସତ୍ୟାନ୍ୱେଷୀ ହୋଇପାରିବା ।

ଏହି ପରି ଗବେଷଣାଧର୍ମୀ ବ୍ୟକ୍ତି ହେଲେ-ଶ୍ରଦ୍ଧେୟ ବସନ୍ତ ବାବୁ । ଏକଦା ମୁଁ ଥିଲି ତାଙ୍କ ଗବେଷଣା ନିବନ୍ଧର ତତ୍ତ୍ୱାବଧାରକ ଓ ଦିଗଦର୍ଶକ । କିନ୍ତୁ, ଏବେ ସେ ନିଜେ କେତୋଟି ଗବେଷଣା ନିବନ୍ଧର ଦିଗଦର୍ଶକ ହୋଇସାରିଲେଣି । ସେ ମଧ୍ୟ ଜଣେ ସଂପାଦକ, ସଂଗଠକ ଓ ସାରସ୍ୱତ ସ୍ରଷ୍ଟା ।

ସେ କେବଳ ଶିଶୁ ସାହିତ୍ୟ ରଚନା କରିନାହାନ୍ତି, ସେ ଗୀତିକବିତା ସହିତ ବହୁ ପ୍ରବନ୍ଧ ଓ ଆଲୋଚନା ମଧ ଲେଖିଛନ୍ତି । ମୋଟା ମୋଟି ଭାବରେ-ଏକ ସାରସ୍ୱତ ପରିବେଶ ମଧରେ ତାଙ୍କର ବ୍ୟକ୍ତିତ୍ୱ ପରିବ୍ୟାପ୍ତ ।

ମୋ ଗବେଷଣା କଥା ଗ୍ରନ୍ଥରେ (ପଲ୍ଲୀପ୍ରଭା ପ୍ରକାଶନୀ, ପାଳସାହି, ରେଞ୍ଚ-୨୦୧୧) ଶ୍ରଦ୍ଧେୟ ଡକ୍ଟର ବସନ୍ତ କିଶୋର ସାହୁ ଦୀର୍ଘ ୧୬ପୃଷ୍ଠା ବ୍ୟାପି (ପୃ: ୫୪-୬୯) ନିଜର ଯେଉଁ ଅନୁଭୂତି ଗବେଷଣା ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି, ସେଥିରୁ ସମସ୍ତ କଥା ଜାଣିହେବ ।

ତାଙ୍କ ଗବେଷଣା ସନ୍ଦର୍ଭର ଶିରୋନାମା ହେଲା -" ଓଡିଆ ମୌଖିକ ଶିଶୁ-ସାହିତ୍ୟ" , ମାତ୍ର ପ୍ରଥମରୁ ସେ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ସାହିତ୍ୟକୃତି ବିଷୟରେ ଗବେଷଣା କରିବାକୁ ମନସ୍ଥ କରିଥିଲେ । ପରେ, ଓଡିଆ ଶିଶୁ-ସାହିତ୍ୟ ପତ୍ରିକାର ବିକାଶ ଧାରା ବିଷୟରେ ଗବେଷଣା କରିବାକୁ ସ୍ଥିର କରିଥିଲେ । ଶେଷରେ ସେ 'ଓଡିଆ ମୌଖିକ ଶିଶୁ-ସାହିତ୍ୟ 'ଶିରୋନାମାରେ ଗବେଷଣା କରିବାକୁ ସ୍ଥିର କଲେ । ଏହା ଅଧିକ ପ୍ରତିଷ୍ଠିତ ରୂପ ନେଲା - ୧୯୮୯(ଜୁନ୍ ୨୩ତାରିଖରେ) ବାଲେଶ୍ୱର ଶାନ୍ତିକାନନ ଠାରେ ଅନୁଷ୍ଠିତ



Digitized by srujanika@gmail.com

ଆଲୋଚନା ଚକ୍ରରେ । ଏହାର ଆୟୋଜକ ଥିଲା-ଓଡିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦ ।

ଓଡିଆ ମୌଖିକ ଶିଶୁ-ସାହିତ୍ୟ ବିଷୟଟି ଚୟନ କରିବା ଦିଗରେ ମୋର ଏକ ଉଦ୍ଦେଶ୍ୟ ଥିଲା । ଲୋକ ସାହିତ୍ୟର ଯେଉଁ ସବୁ ଅଂଶ ଶିଶୁ ଉପଯୋଗୀ-ତାକୁ ସ୍ୱତନ୍ତ୍ର ପର୍ଯ୍ୟାୟରେ ଶିଶୁ-ସାହିତ୍ୟ ବିଭାଗରେ ପ୍ରକାଶ କରିବା । ମୋର ଗବେଷଣା ନିବନ୍ଧ ଥିଲା-ଓଡିଆ ଶିଶୁ-ସାହିତ୍ୟ : ଉନ୍ମେଷ ଓ ବିକାଶ (ସ୍ୱାଧୀନତା ପର୍ଯ୍ୟନ୍ତ) । ଏଥିରେ ମୁଁ ଦର୍ଶାଇଥିଲି ଯେ ଶିଶୁ-ସାହିତ୍ୟର ଜନ୍ମହେଲା-ଓଡିଆ ଲୋକସାହିତ୍ୟରୁ । ଶିଶୁ ଉପଯୋଗୀ ଉପାଦାନ ସାମଗ୍ରୀ ମଧ୍ୟରେ । ଆଉ, ଏହା ପାଠ୍ୟପୁସ୍ତକ ମଧ୍ୟରେ ଲାଳିତ ପାଳିତ ହୋଇ, ଶେଷକୁ ସେ ସ୍ୱତନ୍ତ୍ର ଅଭିଧାରେ ପରିଣତ ହେଲା । ଅର୍ଥାତ୍, ଏହା ତିନିଟି ପର୍ଯ୍ୟାୟରେ ପ୍ରତିଷ୍ଠିତ ରୂପ ନେଲା । ତେଣୁ, ଏହାର ପ୍ରଥମ ପର୍ଯ୍ୟାୟରେ ଲୋକ ସାହିତ୍ୟର ଶିଶୁ ଉପଯୋଗୀ ଉପାଦାନ ଗୁଡିକର ଶିଶୁ-ସାହିତ୍ୟିକ ଅଧ୍ୟୟନରେ ଆବଶ୍ୟକତା ରହିଛି । ଏହି ଅଭାବ ପୂରଣ କରିବା ପାଇଁ ମୁଁ ଡଃ.ସାହୁଙ୍କୁ ଓଡିଆ ମୌଖିକ ଶିଶୁ-ସାହିତ୍ୟ ବିଷୟରେ ଗବେଷଣା କରିବାକୁ ପରାମର୍ଶ ଦେଇଥିଲି । ଏହି ପର୍ଯ୍ୟାୟଟି ମୋ ଗବେଷଣା ନିବନ୍ଧର ଦ୍ୱିତୀୟ ଅଧ୍ୟାୟ ଥିଲା । ମୁଁ ଚାହୁଁଥିଲି, ଏହି ଅଧ୍ୟାୟଟି ଉପରେ ଏକ ସ୍ୱତନ୍ତ୍ର ଗବେଷଣା କରାଯାଉ । ମୋର ଏହି ଯୋଜନାକୁ ଡକ୍ଟର ସାହୁ ପୂରଣ କରିଛନ୍ତି । ଏହା ଫଳରେ,ଓଡିଆ ଶିଶୁ-ସାହିତ୍ୟର ଭିତ୍ତିଭୂମି ସୁଦୃଢ ହୋଇଗଲା ।

ଡକ୍ଟର ସାହୁ ଓଡିଆ ଶିଶୁ-ସାହିତ୍ୟର ଗବେଷଣା କ୍ଷେତ୍ରରେ ପଞ୍ଚମ ସ୍ଥାନରେ ଅଛନ୍ତି । ଏବେ(୨୦୧୧) ଏହି ବିଷୟରେ ସତେଇଶରୁ ଅଧିକ ଗବେଷଣା ସନ୍ଦର୍ଭ ପ୍ରସ୍ତୁତ ହୋଇସାରିଲାଣି, ତନ୍ମଧ୍ୟରୁ ଅଳ୍ପ କେତୋଟି ପୁସ୍ତକ ଆକାରରେ ପ୍ରକାଶ ପାଇଗଲାଣି ମଧ୍ୟ । ତେଣୁ ଓଡିଆ ଶିଶୁ-ସାହିତ୍ୟର ଆଲୋଚନା ଓ ଗବେଷଣା କ୍ଷେତ୍ରରେ ଏହା ଏକ ସୁସମ୍ବାଦ ।

ଡକ୍ଟର ସାହୁଙ୍କର ଓଡିଆ ମୌଖିକ ଶିଶୁ-ସାହିତ୍ୟ ଗବେଷଣା ନିବନ୍ଧକୁ ଚାରି ଗୋଟି ଅଧ୍ୟାୟରେ ବିଭକ୍ତ କରାଯାଇଛି । ପ୍ରଥମ ଅଧ୍ୟାୟଟି-ପ୍ରାଗ୍‌ଭାଷ । ଏଥିରେ ଶିଶୁ-ସାହିତ୍ୟର ପରିଚୟ ଏବଂ ମୌଖିକ ଓ ଲିଖିତ ଶିଶୁ-ସାହିତ୍ୟ ସହିତ ସ୍ୱାଧୀନତା ପୂର୍ବ ଓ ପର ଓଡିଆ ଶିଶୁ-ସାହିତ୍ୟର ଅଧ୍ୟୟନ କରାଯାଇଛି । ଦ୍ୱିତୀୟ ଅଧ୍ୟାୟରେ ମୌଖିକ ଶିଶୁ-ସାହିତ୍ୟର ବିଭିନ୍ନ ବିଭାଗର ପରିବେଷଣ ସହିତ ଅଧ୍ୟୟନ କରାଯାଇଛି । ତୃତୀୟ ଅଧ୍ୟାୟରେ ମୌଖିକ ଶିଶୁ-ସାହିତ୍ୟର ଶିଶୁ ମନୋବୈଜ୍ଞାନିକ ଅଧ୍ୟୟନ ଓ ଲିଖିତ ଶିଶୁ-ସାହିତ୍ୟ ଉପରେ ତା'ର ପ୍ରଭାବ ବିଶ୍ଳେଷଣ କରାଯାଇଛି । ଚତୁର୍ଥ ଅଧ୍ୟାୟରେ ମୌଖିକ ଶିଶୁ-ସାହିତ୍ୟରେ ପ୍ରତିଫଳିତ ସମାଜର ଚିତ୍ର ଓ ଶେଷରେ ଉପସଂହାର ସ୍ଥାନ ପାଇଛି ।

ଓଡିଶାରେ ଶିଶୁ-ସାହିତ୍ୟ ବିଷୟରେ ଯେଉଁ ସବୁ ଗବେଷଣା ନିବନ୍ଧ ପ୍ରସ୍ତୁତ ହୋଇଛି । ସେଥି ମଧ୍ୟରୁ ଅଧିକାଂଶ ନିବନ୍ଧ ଶିଶୁ-ସାହିତ୍ୟର ଅଭିଧା ବା ବ୍ୟାକରଣ



Digitized by srujanika@gmail.com

ଅନୁସାରେ ମୂଲ୍ୟାୟନ କରାଯାଇନାହିଁ । ଏହା ବିଦଗ୍ଧ-ସାହିତ୍ୟର ଅନୁକରଣରେ ମୂଲ୍ୟାୟନ କରାଯାଇଛି । ଏହାର କାରଣ, ଶିଶୁ-ସାହିତ୍ୟର ଅଭିଧା ସହିତ ଗବେଷକ ବା ଦିଗ୍‌ଦର୍ଶକ ମାନଙ୍କର ସ୍ପଷ୍ଟ ଧାରଣା ନାହିଁ । ସେହି ଦିଗରୁ ବିଚାର କଲେ ଡକ୍ଟର ସାହୁଙ୍କ ଗବେଷଣା ଗ୍ରନ୍ଥ ଏଥିରୁ ମୁକ୍ତ । କାରଣ ସେ ଶିଶୁ ମନୋବୈଜ୍ଞାନିକ ଅଧ୍ୟୟନ ତାଙ୍କ ଗବେଷଣା ନିବନ୍ଧରେ ପ୍ରୟୋଗ କରିଛନ୍ତି । ସେଇଥିପାଇଁ ବୋଧ ହୁଏ ଓଡିଆ ଶିଶୁ-ସାହିତ୍ୟର ସୁପରିଚିତ ଶିଶୁ-ସାହିତ୍ୟକ ଓ ଶିକ୍ଷାବିତ୍ ଡକ୍ଟର ଜଗନ୍ନାଥ ମହାନ୍ତି ତାଙ୍କ ସଂପର୍କରେ ଲେଖିଛନ୍ତି -" ସ୍ୱନାମଧନ୍ୟ ଲେଖକ ଓ ଗବେଷକ ଡକ୍ଟର ସାହୁ ଖୁବ୍ ସୁଚିନ୍ତିତ ଓ ଯୁକ୍ତିଯୁକ୍ତ ଭାବରେ ମୌଖିକ ଶିଶୁ-ସାହିତ୍ୟର ବିଶେଷତ୍ୱ ଓ ମୌଳିକତା ଦୃଷ୍ଟିରୁ ଏଥିପାଇଁ ଏକ ସ୍ୱତନ୍ତ୍ର ଆସନ ଦାବି କରିଛନ୍ତି।" (ଓଡିଆ ମୌଖିକ ଶିଶୁ-ସାହିତ୍ୟ ଚିତ୍ରୋତ୍ପଳା ପବ୍ଲିକେଶନ, ବଟେଶ୍ୱର,ସାଲେପୁର : ୧୯୯୬ ମୁଖବନ୍ଧ - ପୃ : ଚ) ।

ଓଡିଆ ମୌଖିକ ଶିଶୁ-ସାହିତ୍ୟ ପତ୍ରିକାର ଗୀତର ଯେଉଁ ବ୍ୟବହାରଗତ ମୂଲ୍ୟ ରହିଛି, ତାକୁ ବେଶ୍ ସତର୍କତାର ସହିତ ଡକ୍ଟର ସାହୁ ଅଧ୍ୟୟନ କରିଛନ୍ତି । ମା' ବା ପିଲାମାନେ ଏହି ଗୀତ ବୋଲିବାକୁ ଯେଉଁ ସ୍ୱର ପ୍ରକାର ରହିଛି । ତାକୁ ଡାଏଗ୍ରାମ୍ କରି ଚିତ୍ରଣ କରିବା, ପୁଣି କେତୋଟି ଗୀତର ପରିବେଷଣ ପାଇଁ ତା'ର ସ୍ୱରଲିପି ସଂଗ୍ରହ କରି ପ୍ରକାଶ କରିବା (ପୃ : ୩୧୦-୩୧୬) - ଏହା କ୍ଷେତ୍ରୀୟ ଅଧ୍ୟୟନ ଦିଗରେ ବେଶ୍ ମୂଲ୍ୟବାନ ହୋଇଛି ।

ଏହି ଗବେଷଣା ନିବନ୍ଧର ଦୁଇଜଣ ପରୀକ୍ଷକ ଥିଲେ ଓଡିଆ ଲୋକ ସାହିତ୍ୟର ଜଣେ ବରିଷ୍ଠ ଗବେଷକ ଡକ୍ଟର ଭୀମ ଦାଶ ଏବଂ ଅନ୍ୟ ଜଣେ ହେଲେ ଗବେଷକ ତଥା ସଂଗଠକ ଡକ୍ଟର ଦଶରଥ ନାୟକ । ଦୁହେଁ, ଏହି ଗବେଷଣା ବିଷୟରେ ବେଶ ସନ୍ତୋଷ ପ୍ରକାଶ କରିଥିଲେ । ସମସ୍ତେ ଆମେ ଏକାଠି ସାକ୍ଷର କଲା ପରେ ଫଳାଫଳ ମୁଁ ଅଧ୍ୟକ୍ଷ ଭାବରେ ଘୋଷଣା କରିଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟର କନ୍‌ଫରେନ୍ସ ହଲ୍ ବାହାରେ ଅପେକ୍ଷା କରିଥିବା ଡକ୍ଟର ସାହୁଙ୍କୁ ମୁଁ ପ୍ରଥମେ ଅଭିନନ୍ଦନ ଜଣାଇଥିଲି ।

ସେ ଦିନ ରାତିରେ ମୁଁ ଚମ୍ପୁଆ (କେନ୍ଦୁଝର) ଲେଉଟି ଆସିଲି । ଡକ୍ଟର ସାହୁ ବିଦାୟ ନେବା ପୂର୍ବରୁ ମୋତେ ନବବସ୍ତ୍ର ଉପହାର ଦେଇ ଆଶୀର୍ବାଦ ଭିକ୍ଷା କରିଥିଲେ । ଏ ସବୁ କଥା-ଏତେ ବର୍ଷ ପରେ ମୋ ଆଖି ଆଗରେ ସିନେମା ପରି ଝଲସି ଯାଉଛି ।

ଏବେ ୨୦୧୧ ମସିହାରେ ଭୁବନେଶ୍ୱର ଶିଶୁ-ସାହିତ୍ୟିକ କର୍ମଶାଳାରେ ଏକ ଅଭିନବ କାର୍ଯ୍ୟକ୍ରମ ରଖାଯାଇଥିଲା । ଶିଶୁ-ସାହିତ୍ୟର କେତେ ଜଣ ଗବେଷକ ଓ ତାଙ୍କ ଦିଗ୍‌ଦର୍ଶକ ମାନଙ୍କର ଏକ ମେଳଣ ଅନୁଷ୍ଠିତ ହୋଇଥିଲା । ଏହାର ଉଦ୍ଦେଶ୍ୟ ଥିଲା- ଗବେଷଣା ପରେ ଗବେଷକମାନେ ଚୁପ୍ କରି ଶୋଇ ଯାଉଛନ୍ତି । ସେମାନଙ୍କୁ ପୁଣି ଥରେ ଦିଗ୍‌ଗଜମାନଙ୍କ ସହିତ ସାକ୍ଷାତ କରିଦେଲେ-ହୁଏତ ସେମାନେ ନିଦ ଭାଙ୍ଗିବେ । ଏହି କାର୍ଯ୍ୟକ୍ରମରେ ଡକ୍ଟର ସାହୁ ମଧ୍ୟ ଯୋଗ ଦେଇଥିଲେ । ଏହା ଭିତରେ



Digitized by srujanika@gmail.com

ଦୀର୍ଘ ବର୍ଷ ବିତିଯାଇଥିଲେ ମଧ୍ୟ ସେ ଦିନର ହୃଦୟସ୍ପର୍ଶୀ ମୁହୂର୍ତ୍ତ କେତୋଟି ଭୁଲି ହେବନାହିଁ ।

ଏବେ ଡକ୍ଟର ସାହୁ ନିଜେ କେତୋଟି ଗବେଷଣା ନିବନ୍ଧର ଦିଗ୍‌ଦର୍ଶକ ସାଜିଲେଣି । ମଝିରେ ମଝିରେ କିଛି ସନ୍ଦେହ ସୃଷ୍ଟି ହେଲେ ସେ ମୋତେ ଫୋନ୍‌ରେ ବା ଚିଠିରେ ଯୋଗାଯୋଗ କରିଥାନ୍ତି ।

ଓଡିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦ ବହୁ ଶିଶୁ-ସାହିତ୍ୟିକ, ଆଲୋଚକ ଓ ଗବେଷକ ସୃଷ୍ଟି କରିପାରିଛି-ତା'ର କର୍ମଶାଳା ମାଧ୍ୟମରେ । ତନ୍ମଧ୍ୟରୁ ଡକ୍ଟର ସାହୁ ଅନ୍ୟତମ । ସେ ବହୁ ସମୟରେ ଏହାର ପୃଷ୍ଠପୋଷକତା ସହିତ ଆଲୋଚନା ଚକ୍ରରେ ପୁରସ୍କୃତ ମଧ୍ୟ ହୋଇଛନ୍ତି । ଗବେଷଣା ପରିଷଦର ଏକ ୱେବସାଇଟ୍ ନିର୍ମାଣ ମୂଳରେ ତାଙ୍କର ସହଯୋଗ ଓ ଦିଗ୍‌ଦର୍ଶନ ରହିଛି ।

ଓଡିଆ ଶିଶୁ-ସାହିତ୍ୟର ଆଲୋଚନା 'ସୂଚୀ ସୂଚକ ଏକ ପୁସ୍ତକ ପ୍ରଣୟନ ତାଙ୍କର ଅନ୍ୟଏକ ବିଶେଷତ୍ୱ । ଇଂରାଜୀରେ Who's who in Oriya Children's Literature ର ସଂପାଦନା ଏ ଦିଗରେ ଅନ୍ୟ ଏକ ପାହାଚ । ମୋଟ ଉପରେ ଶିଶୁ-ସାହିତ୍ୟର ରଚନା, ପ୍ରକାଶନ, ଆଲୋଚନା, ଗବେଷଣା ଓ ତା'ର ପ୍ରସାର ଦିଗରେ ଡକ୍ଟର ସାହୁଙ୍କର ବିଶେଷ ଅବଦାନ ରହିଛି ।

ଏବେ କିଛି ମାସ ପରେ ହୁଏତ ସେ ଅଧ୍ୟାପନାରୁ ଅବସର ନେବେ । କିନ୍ତୁ, ତାଙ୍କର ସେ ଖୋଜିବା-ଖୋଜିବା ଆଖି ଯେମିତି ମୁଦି ହୋଇ ନଯାଉ ! କୁହାଯାଏ ବିଦେଶରେ ଅବସର ନେଲାପରେ ଲୋକେ ଗବେଷଣା ଆରମ୍ଭ କରନ୍ତି । ଯଦି ଏହା ସତ୍ୟ, ତେବେ ଡକ୍ଟର ସାହୁ ଏତିକିରେ ଅଟକି ଯିବେ ନାହିଁ ।

ଅବସର ବେଳେ ନିଜ ଗାଁ ତଥା ଅଞ୍ଚଳର ସାଂସ୍କୃତିକ ଐତିହ୍ୟ, ସାରସ୍ୱତ ପରଂପରା ଦିଗରେ କେବଳ ଲେଖା ଲେଖି ନୁହେଁ, କିଛି ଆନୁଷ୍ଠାନିକ ପଦକ୍ଷେପ ଗ୍ରହଣ କରିବା ଉଚିତ ହେବ । ମୁଁ ଚାହେଁ, ତାଙ୍କରି ହାତରେ ଏକାଧିକ ଡକ୍ଟର ବସନ୍ତ ସାହୁ ସୃଷ୍ଟି ହୁଅନ୍ତୁ ।

ତାଙ୍କର ସାରସ୍ୱତ ପ୍ରତିଭାକୁ ମୁଁ ଶୁଭେଚ୍ଛା ଜଣାଉଛି । ତାଙ୍କର ଧର୍ମପତ୍ନୀ ବୀଣାପାଣି ଦେବୀ ନିଶ୍ଚୟ ତାଙ୍କୁ ଏ ଦିଗରେ ସହାୟକ ହେବେ ।

ଶ୍ରୀ ଜଗନ୍ନାଥ କରନ୍ତୁ-ବସନ୍ତ ବାବୁ-ଏଇମିତି ବସନ୍ତ ହୋଇ ରହନ୍ତୁ-ଗ୍ରୀଷ୍ମ ନ ହୁଅନ୍ତୁ - ! !



ନୂଆ ବଜାର, ଭଦ୍ରକ, ଓଡ଼ିଶା



Digitized by srujanika@gmail.com

# ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ ଓ ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ଆଦିକନ୍ଦ ମହାନ୍ତ

ଶିଶୁ ସାହିତ୍ୟ ବୋଧ ହୁଏ ପୃଥିବୀର ଆଦିମତମ ସାହିତ୍ୟ । କାରଣ ଶିଶୁ ଅଝଟ ହେଲେ ମା' ତାକୁ ବୁଝାଇବା ନିମନ୍ତେ ଗୀତ, ଗପ କହେ । ତା' ପାଇଁ ସାହିତ୍ୟ ତା' ଗୁରୁଜନମାନେ ସୃଷ୍ଟି କରନ୍ତି । ତାହା ଅବଶ୍ୟ ମୌଖିକ ଭାବେ ଜଣକ ଠାରୁ ଅନ୍ୟ ଜଣକ ପାଖକୁ ଗଡି ଗଡି ଆସୁଥାଇ ପାରେ । ହେଲେ ତାହା ସାହିତ୍ୟ ତ । ତେଣୁ ପୃଥିବୀର ପ୍ରଥମ ଶିଶୁ ଜନ୍ମଠାରୁ ସାହିତ୍ୟ ସମାଜରେ ସୃଷ୍ଟି ହୋଇ ଶିଶୁର ମନୋରଞ୍ଜନ କରି ଆସିଛି । ତେବେ ଏହା ଯେ ଶିଶୁ ସାହିତ୍ୟ ଏହି କଥା ଆମ ମୁଣ୍ଡକୁ ଆସି ନଥିଲା । ଆନ୍ତର୍ଜାତିକ ଶିଶୁ ସମ୍ବତ୍ସର(୧୯୭୯) ପରେ ସମସ୍ତଙ୍କ ମୁଣ୍ଡରେ ଶିଶୁ ସାହିତ୍ୟ ମଧ୍ୟ ସାହିତ୍ୟର ମାନ୍ୟତା ପାଇଁ ଯୋଗ୍ୟ ଏ କଥା ପଶିଲା । ପ୍ରତ୍ୟେକ ଦେଶ ପରି ଭାରତ ତଥା ଆମ ଓଡିଶାର ଶିକ୍ଷିତ ସମାଜ ଏ ଦିଗରେ ତତ୍ପର ହେଲେ । ଶିଶୁ ସାହିତ୍ୟ ସମ୍ମିଳନୀ ଆଲୋଚନା ଚକ୍ର, ଗବେଷଣା କର୍ମଶାଳା ପ୍ରଭୃତି ଘନ ଘନ ଅନୁଷ୍ଠିତ ହେଲା । ଓଡିଶା ସରକାର ଶିଶୁ ସାହିତ୍ୟ ସମିତି ଗଢିଲେ । ଅର୍ଦ୍ଧ-ସରକାରୀ ଓଡିଶା ସାହିତ୍ୟ ଏକାଡେମୀ ଶିଶୁ ସାହିତ୍ୟକୁ ତାର ଅଂଶ ଭାବେ ସ୍ୱୀକୃତି ଦେଲା । ବିଭିନ୍ନ ସଂସ୍ଥା ଶିଶୁ ସାହିତ୍ୟର ଉନ୍ନତି ପାଇଁ ଘରୋଇ ଭାବେ ଗଠିତ ହେଲା । ଏଇ ଢେଉରେ ଭାସି ଉକୁଟି ଉଠିଲା 'ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ' ସେଇ ଆନ୍ତର୍ଜାତିକ ଶିଶୁ ସମ୍ବତ୍ସର ୧୯୭୯ ପାଳନ ଅବସରରେ । ଓଡିଆ ଶିଶୁ ସାହିତ୍ୟର ପ୍ରଥମ ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ମାନସ ସନ୍ତାନ ଭାବେ ଏହା ଜନ୍ମ ନେଇ ବହୁ ଶିଶୁ ସାହିତ୍ୟିକ ଓ ଶିଶୁ ସାହିତ୍ୟ ଗବେଷକଙ୍କ ଗେହ୍ଲା ଶିଶୁ ପାଲଟି ଗଲା ।

ଡକ୍ଟର ବସନ୍ତ କିଶୋର ସାହୁ ଏ ପରିଷଦର ଗୋଟିଏ ଅଙ୍ଗ ପାଲଟି ଗଲେ । ସେ ତାଙ୍କ "ଅନୁଭୂତି; ସ୍ମୃତି" ଏ ସଂପର୍କରେ କହିବାକୁ ଯାଇ "ଶିଶୁବାର୍ତ୍ତା" ପୂର୍ଣ୍ଣାହୁତି ବିଶେଷାଙ୍କ-୧୯୯୫ରେ ବର୍ଣ୍ଣନା କରିଛନ୍ତି, "କର୍ମଶାଳାର ଆରମ୍ଭରୁ ମୁଁ ଗବେଷଣା ପରିଷଦ ସହିତ ସଂଶ୍ଳିଷ୍ଟ ନଥିଲି । ୬ଷ୍ଠ କର୍ମଶାଳା ୧୯୮୮(କୋରାପୁଟ)ଠାରୁ ମୁଁ ଗବେଷଣା ପରିଷଦ ସହିତ ଜଡିତ । ୫ମ କର୍ମଶାଳା (ରାଉରକେଲା) ରେ ଯୋଗଦେବାକୁ ସ୍ଥିର କରିଥିଲେ ହେଁ କେତେକ ବ୍ୟକ୍ତିଗତ ଅସୁବିଧା ହେତୁ ଯୋଗ



Digitized by srujanika@gmail.com

ଦେଇ ପାରି ନଥିଲି । ୬ଷ୍ଠ କର୍ମଶାଳା ଠାରୁ ଦ୍ୱାଦଶ କର୍ମଶାଳା (କୋରାପୁଟ, ବ୍ରହ୍ମପୁର, ଭବାନୀପାଟଣା, ଫୁଲବାଣୀ, ସମ୍ବଲପୁର, ରାହାମା, କଟକ, ବଲାଙ୍ଗୀର) ଯାଏ ସବୁଠିକି ମୁଁ ଯାଇଛି । ସେହି କର୍ମଶାଳା ମାନଙ୍କରେ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ସହିତ ଡକ୍ଟର ଜଗନ୍ନାଥ ମହାନ୍ତି, ଡକ୍ଟର ଦିଗରାଜ ବ୍ରହ୍ମା, ଡକ୍ଟର ଅଧିକାରୀ ଶ୍ରୀକାନ୍ତ ଦାଶ, ରାମପ୍ରସାଦ ମହାନ୍ତି, ନଦୀୟା ବିହାରୀ ମହାନ୍ତି, ବୀରେନ୍ଦ୍ର ସାମନ୍ତରାୟ ଓ ଡକ୍ଟର ଭାବଗ୍ରାହୀ ମିଶ୍ରଙ୍କୁ ଭେଟିଛି ଓ ସେମାନଙ୍କଠାରୁ ଅନେକ ପ୍ରେରଣା ଲାଭ କରିଛି, ଯାହାକି ଜୀବନର ଅଭୁଲା ସ୍ମୃତି ହୋଇ ରହିବ । ସେହି ସବୁ କର୍ମଶାଳା ମାନଙ୍କରେ ଅନେକ ନୂତନ ଓ ପ୍ରତିଭାବାନ ଶିଶୁ ସାହିତ୍ୟିକଙ୍କ ସହିତ ପରିଚୟ ଘଟିଛି, ଭାବର ଆଦାନ ପ୍ରଦାନ ହୋଇଛି ଓ ଅନ୍ତରଙ୍ଗତା ବଢିଛି । ସେ ସବୁ ଗୋଟିଏ ଗୋଟିଏ ସ୍ମୃତି ।

ରାଜ୍ୟ ବାହାରୁ ବିଭିନ୍ନ ସମୟରେ ରାଷ୍ଟ୍ରବନ୍ଧୁ, ରବିଦା (ରବିରଞ୍ଜନ ଚାଟାର୍ଜୀ), ରାମବଚନ ସିଂ, ଆନନ୍ଦ, ଶିଶୁ ସଙ୍ଗମେଶ ଆଦିଙ୍କ ସହିତ ପରିଚୟ ସଂଘଟିତ ହୋଇଛି, ସେମାନଙ୍କର ଗବେଷଣା ପରିଷଦ ଓ ଆମମାନଙ୍କ ସହିତ ରହିଥିବା ସ୍ନେହଶ୍ରଦ୍ଧା କେବେ ଭୁଲିବାର ନୁହେଁ । ରାଷ୍ଟ୍ରବନ୍ଧୁ ଯେଉଁପରି ହାସ୍ୟରସ ପରିବେଷଣ କରନ୍ତି ନ ହସିବା ଲୋକ ବି ହସି ଉଠିବ । ରାମ ବଚନ ସିଂ ଓ ଶିଶୁ ସଙ୍ଗମେଶ ଜ୍ଞାନ ଓ ପ୍ରଜ୍ଞାର ମଣିଷ- ରବିଦାଙ୍କ ସ୍ନେହ ଶ୍ରଦ୍ଧା କେବେ ଭୁଲିବାର ନୁହେଁ ।

ଏ ସବୁ ବ୍ୟତୀତ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ (RIOCL)ର କାର୍ଯ୍ୟକାରୀ କମିଟିର ସଦସ୍ୟ ଭାବରେ ରମେଶ ବାବୁ, ବ୍ରଜ ବାବୁ ଓ ମୋ ଭିତରେ ଏକ ଅନ୍ତରଙ୍ଗ ସଂପର୍କ ଗଢି ଉଠିଥିଲା । ବର୍ଷକର କର୍ମଶାଳା ୩/୪ ଦିନକୁ ଆମେ ଚାତକ ପରି ଚାହିଁ ରହୁଁ । କର୍ମଶାଳାର ସମସ୍ତ ଆୟୋଜନ ଆମକୁ ହିଁ କରିବାକୁ ହୋଇଥାଏ । ଯାହାକୁ କହନ୍ତି ଯୋତା ସିଲେଇ ଠାରୁ ବେଦପାଠ । ଭୋର ପାଞ୍ଚଟାରୁ ଉଠି ରାତି ଏଗାରଟା ଯାଏ ବିଭିନ୍ନ ସମୟରେ ବିଭିନ୍ନ କାମ କରିବାକୁ ହୁଏ । କର୍ମଶାଳା ଆରମ୍ଭ ହେବାର ଦିନେ ଦୁଇ ଦିନ ଆଗରୁ ଆମକୁ ପହଞ୍ଚିବାକୁ ହୁଏ । ଗବେଷଣା ପରିଷଦର ରେଜିଷ୍ଟ୍ରାର ଆମକୁ ଧରାଇ ଦିଅନ୍ତି ଗୋଟିଏ ଗୋଟିଏ ଚିଠା । କାହାକୁ କ'ଣ କାମ କରିବାକୁ ହେବ, ସେଇ ଚିଠାରେ ଲେଖାଥାଏ । ବିନା ଦ୍ୱିଧା ଓ ପ୍ରତିବାଦରେ ଆଁମେ ସମସ୍ତେ ମିଳିମିଶି କାମ କରିଯାଉ । ଦିନ ସାରାର କର୍ମମୟ ଜୀବନ ରାତ୍ରି ଭୋଜନ ପରେ ଆହୁରି ସୁମଧୁର ହୋଇଉଠେ । ଦିନସାରା କାମର ବିଶ୍ଳେଷଣ ସହିତ ଆଗାମୀ ଦିନର ପ୍ରସ୍ତୁତି ପର୍ବ ସଂପର୍କରେ କଥାବାର୍ତ୍ତା ହୁଏ । ତା ସହିତ ଗପସପ, ଥଟ୍ଟାମଜା ସରୁସରୁ ରାତି ବାରଟା ଗୋଟାଏ ହୁଏ । ଆମର ନିଦ ଗଭୀର ହେଲା ବେଳକୁ ରେଜିଷ୍ଟ୍ରାର୍ (ଡଃ. ମନୀନ୍ଦ୍ର ମହାନ୍ତି, ଆମ ସମସ୍ତଙ୍କ ସାର୍) ଉଠି କାମରେ ଲାଗିପଡନ୍ତି । ଆଖିରୁ ନିଦ ଛାଡି ନଥିଲେ ମଧ୍ୟ ଆମେ ସମସ୍ତେ ବାଧ୍ୟ ହୋଇ ଉଠିପଡୁ । ନିତ୍ୟକର୍ମ ସାରି ଡ୍ରେସ୍ ପିନ୍ଧୁ ପିନ୍ଧୁ ବ୍ରଜବାବୁ (ଡକ୍ଟର ବ୍ରଜ ଗୋପାଳ ମହାନ୍ତି) ଆମକୁ ଧରାଇ ଦିଅନ୍ତି କାଗଜି ଲେମ୍ବୁର ସର୍ବତ ଗ୍ଲାସ ଲେଖାଏଁ .... ପେଟ ଗରମ ନ ହେବା ପାଇଁ । ସାର୍ ମଧ୍ୟ ହୋମିଓପାଥି



Digitized by srujanika@gmail.com

ଔଷଧ ରଖିଥାଆନ୍ତି । ଦେହ ଖରାପ ହେଲେ ପକାଇ ଦିଅନ୍ତି ୨/୩ ବୁନ୍ଦା ଔଷଧ ପାଟିରେ । ଏମିତି ସମୟ ବିତିଯାଏ । ରମେଶ ବାବୁ ରହନ୍ତି ଅର୍ଥ ଦାୟିତ୍ୱରେ । ବ୍ରଜବାବୁ ଓ ମୁଁ ରୋଷେଇ, ଅତିଥି ଚର୍ଚ୍ଚା ଫଟୋ ଉଠା ତଥା ବିଭିନ୍ନ ଦାୟିତ୍ୱରେ । ଗୋବିନ୍ଦ ଭଟ୍ଟାଚାର୍ଯ୍ୟ ଖୁବ୍ ମଜାଳିଆ ଲୋକ । କାମ ବେଳେ କଥାର ଚାତୁରୀରେ ଏମିତି ହସାନ୍ତି ଯେ ଆମେ ସମସ୍ତ କଷ୍ଟ ଭୁଲି ଯାଉ । ସୂର୍ଯ୍ୟମଣି ବାବୁ ମଧ୍ୟ ମଜାଳିଆ ଲୋକ । ବୟସ ଖସି ନଯିବା ପାଇଁ ମୁଣ୍ଡରେ ଲଗାଇ ଆସନ୍ତି ନକଲି ଚୁଟି । ଆଦିକନ୍ଦ ବାବୁ (ଏ ପ୍ରବନ୍ଧର ଲେଖକ), କୃତ୍ତିବାସ ବାବୁ, ଶରତ ବାବୁ ଆହୁରି ଆହୁରି କେତେକ ବନ୍ଧୁ ମଝିରେ ମଝିରେ ଆସନ୍ତି । ପ୍ରାୟ ପ୍ରତ୍ୟେକ କର୍ମଶାଳାକୁ ରେଜିଷ୍ଟ୍ରାର ସପରିବାର ଆସନ୍ତି । ତାଙ୍କ ଧର୍ମପତ୍ନୀ ଆମ ସମସ୍ତଙ୍କ ଭାଉଜ, ଖୁବ୍ ମେଳାପୀ ଓ ଅତିଥି ପରାୟଣା । ସେ ଆମମାନଙ୍କ ଦାୟିତ୍ୱ ବୁଝନ୍ତି । ତାଙ୍କର ପିଲାମାନେ ଓ ରମେଶ ବାବୁଙ୍କ ପୁଅ ପ୍ରଦର୍ଶନୀ ମାନଙ୍କର ଦାୟିତ୍ୱରେ ରହନ୍ତି । ଗପସପ ଥଟ୍ଟାମଜାରେ ସମସ୍ତଙ୍କ ରାତି ପାହିଯାଏ । ଚାହୁଁ ଚାହୁଁ ଦିନ କଟିଯାଏ । ବିଦାୟ ବେଳା ଉପସ୍ଥିତ ହୁଏ .... ପରସ୍ପର ପରସ୍ପର ଠାରୁ ବିଦାୟ ନେଉ, ପୁଣି ଆଗାମୀ କର୍ମଶାଳାରେ ସାକ୍ଷାତ ହେବାର ପ୍ରତିଶ୍ରୁତି ଧରି ।"

ଡକ୍ଟର ବସନ୍ତ କିଶୋର ସାହୁଙ୍କ ଉପର ବର୍ଣ୍ଣିତ ସ୍ମୃତି ଚାରଣ ଲେଖାରୁ ତାଙ୍କର ଶିଶୁ ସାହିତ୍ୟ ଗବେଷଣା ପରିଷଦର କର୍ମଶାଳା ଅନୁଭୂତି କେବଳ ଜଣା ପଡୁଥିଲେ ହେଁ ଜଣେ ଲୋକର ଏ ପରିଷଦ ପ୍ରତି ଆନ୍ତରିକତା ଓ ଗଭୀର ଦରଦ ନଥିଲେ ସେ ପରିଷଦର ସବୁକାମ ଯୋତା ସିଲେଇ ଠୁ ବେଦ ପାଠ ପର୍ଯ୍ୟନ୍ତ କରିବାକୁ ଯିବ କିଆଁ ? ଶିଶୁ ସାହିତ୍ୟର ଜଣେ ସଚ୍ଚା ଗବେଷକ ନ ହେଲେ ଏ ପ୍ରକାର ଆନ୍ତରିକତା ଜଣକ ଅନ୍ତରରେ ଆସିବା କେବେ ସମ୍ଭବ ନୁହେଁ । ଡକ୍ଟର ସାହୁ ନିଜେ ଜଣେ ଶିଶୁ ସାହିତ୍ୟିକ ଏବଂ ଶିଶୁ ସାହିତ୍ୟର ଜଣେ ଦରଦୀ ଗବେଷକ ହୋଇଥିବାରୁ ଶିଶୁ ସାହିତ୍ୟ ଉପରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ କରୁଥିବା କର୍ମଶାଳାର ୩ଟି ପର୍ଯ୍ୟାୟ (ଶିଶୁମାନଙ୍କ କର୍ମଶାଳା, ଶିଶୁ ସାହିତ୍ୟିକ ମାନଙ୍କ କର୍ମଶାଳା ଓ ଶିଶୁ ସାହିତ୍ୟିକ ସମ୍ମେଳନ) ମଧ୍ୟରୁ ଶିଶୁ ସାହିତ୍ୟିକ ମାନଙ୍କୁ ଶିକ୍ଷଣ ପାଇଁ ଉଦ୍ଦିଷ୍ଟ କର୍ମଶାଳାର ଦାୟିତ୍ୱ ତାଙ୍କୁ ଦିଆଯାଇଥାଏ । ଏହାକୁ ସେ ସୁଚାରୁ ରୂପେ ସମ୍ପାଦନ କରିବାରେ ବି ସେ ଦକ୍ଷତାର ପ୍ରମାଣ ଦେଖାଇଛନ୍ତି ।

ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ ଅଧିନରେ ଅନେକ ଗବେଷକ ଗବେଷଣା କରି ଡିଗ୍ରୀ ପାଇଛନ୍ତି ବିଭିନ୍ନ ବିଶ୍ୱବିଦ୍ୟାଳୟରୁ । କେବଳ ଯେ ଏ ପରିଷଦ ଅଧିନରେ ଶିଶୁ ସାହିତ୍ୟ ଉପରେ ଗବେଷଣା ହେଉଛି ତାହା ନୁହେଁ, ବ୍ୟକ୍ତିଗତ ଭାବରେ ବି ଅନେକେ ଗବେଷଣା କରିଛନ୍ତି ଓ କରୁଛନ୍ତି ମଧ୍ୟ । ଡକ୍ଟର ସାହୁ ସେ ସବୁର ଖବର ରଖନ୍ତି । ସେମାନଙ୍କ ସହ ଯୋଗାଯୋଗ କରନ୍ତି । ତାଙ୍କୁ ଉପାଦାନ ଯୋଗାନ୍ତି । ସାହାଯ୍ୟ କରନ୍ତି । କେଉଁ ସୂତ୍ରରୁ ସେମାନେ ତଥ୍ୟ ଯୋଗାଡ କରି ପାରିବେ ବତାନ୍ତି । ତେଣୁ ଓଡିଆ ଶିଶୁ ସାହିତ୍ୟ ଗବେଷକ ସଂସଦର ସେ ସଂଯୋଜକ । ଆଉ ଏ ଦାୟିତ୍ୱ ସେ



Digitized by srujanika@gmail.com

ଯେଉଁ ପ୍ରକାରରେ ତୁଲାଇ ଚାଲିଛନ୍ତି ତାହା ତାଙ୍କ ବ୍ୟକ୍ତିତ୍ୱର ଏକ ଉଜ୍ଜ୍ୱଳତମ ଦିଗ କହିଲେ ଅତ୍ୟୁକ୍ତି ହେବନାହିଁ । ଗତ ୨୦୧୧ ଅକ୍ଟୋବର ୮ ରୁ ୧୦ ତାରିଖ ଭୁବନେଶ୍ୱରସ୍ଥ ୟୁନିଟ ୯ ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ ପରିସରରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ଆୟୋଜିତ କର୍ମଶାଳାରେ ଶିଶୁ ସାହିତ୍ୟର ଗବେଷକ, ତତ୍ତ୍ୱାବଧାରକ ଓ ପରୀକ୍ଷକ ମାନଙ୍କ ମେଳଣ ହୋଇଥିଲା । ଡକ୍ଟର ବସନ୍ତ କିଶୋର ସାହୁ ଥିଲେ ଏ ମେଳଣର ସଂଯୋଜକ । ଏ ପ୍ରବନ୍ଧର ଲେଖକ ସମେତ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ଆମେ ସମସ୍ତ ସଦସ୍ୟ ବୃନ୍ଦ ଓ କର୍ମଶାଳାରେ ଯୋଗ ଦେଇଥିବା ଅତିଥି ତଥା ପ୍ରତିନିଧିମାନେ ଏହାକୁ ମନଭରି ଉପଭୋଗ କରିଥିଲୁ । ଗୁରୁ ଶିଷ୍ୟ ଉଭୟ ଗବେଷକ ଓ ତତ୍ତ୍ୱାବଧାରକ ନିଜ ନିଜ ଅନୁଭୂତି ଗବେଷଣା ସମୟର ବର୍ଣ୍ଣନା କରିଥିଲେ । ଗବେଷଣାର ଗଭୀରତା ଆକଳନ କରାଯାଇଥିଲା । ଭାବଗମ୍ଭୀର ପରିବେଶ ଭିତରେ ଏ ମେଳଣ କାର୍ଯ୍ୟକ୍ରମ ଡଃ. ସାହୁଙ୍କ ନେତୃତ୍ୱରେ ସଂଚାଳିତ ହୋଇଥିଲା । ଡଃ. ଲକ୍ଷ୍ମୀକାନ୍ତ ଖୁଣ୍ଟିଆ ଓ ଡଃ. ପୂର୍ଣ୍ଣଚନ୍ଦ୍ର ମିଶ୍ର, ଡଃ. ଅନ୍ତର୍ଯ୍ୟାମୀ ପ୍ରଧାନ, ଡଃ. ଶତୃଘ୍ନ ପାଣ୍ଡବ, ଡଃ. ବସନ୍ତ କିଶୋର ସାହୁ ଓ ଡଃ. ମନୀନ୍ଦ୍ର ମହାନ୍ତି ଶିଶୁ ସାହିତ୍ୟ ଗବେଷକ ଗୁରୁଶିଷ୍ୟଙ୍କ ମଧ୍ୟରେ ଯେଉଁ ଉପହାର ଦିଆ ନିଆ କାର୍ଯ୍ୟକ୍ରମ ହେଲା ତାହା ପ୍ରାଚୀନ ଯୁଗର ଗୁରୁ ଆଶ୍ରମର ଗୁରୁଶିଷ୍ୟ ପରମ୍ପରା କଥାକୁ ସବୁ ଦର୍ଶକଙ୍କ ସ୍ମୃତିକୁ ଆଣି ଦେଲା ।

ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ଅନ୍ୟତମ ସଦସ୍ୟ ଭାବେ ଏ ଲେଖକ ତାଙ୍କୁ ପ୍ରାୟ ପରିଷଦର ସବୁ କର୍ମଶାଳାରେ ଭେଟିଛି । ଶିଶୁ ସାହିତ୍ୟିକ ମାନଙ୍କୁ ମାର୍ଗଦର୍ଶନ କରିବାରେ ଡକ୍ଟର ବସନ୍ତ କିଶୋର ସାହୁ ବେଶ୍ ପାରଙ୍ଗମ । ଶିଶୁ ସାହିତ୍ୟିକ ମାନଙ୍କ ସମସ୍ୟା ବୁଝି ତାର ସମାଧାନ ସେ ବତାନ୍ତି । କର୍ମଶାଳାରେ ବିଭିନ୍ନ ସମସ୍ୟା କଥା ଶିଶୁ ସାହିତ୍ୟିକମାନଙ୍କ ଆଗରେ ଥୋଇ ଥାଆନ୍ତି । ତାର ସମାଧାନ ସୂତ୍ର ମିଳିତ ଭାବେ ବାହାର କରାଯାଏ । ଏ ମାର୍ଗଦର୍ଶନ କାର୍ଯ୍ୟକ୍ରମ ସେ ସୁଚାରୁ ରୂପେ ପରିଚାଳନା କରି ସମସ୍ତଙ୍କ ପ୍ରିୟ ଭାଜନ ହୋଇପାରିଛନ୍ତି ।

ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ (RIOCL) ର Website ଆରମ୍ଭ କରି ସେ ଦେଶ ଓ ଜାତୀୟ ସ୍ତରରେ ଓଡିଆ ଶିଶୁ ସାହିତ୍ୟକୁ ପରିଚିତ କରାଇ ପାରିଛନ୍ତି । ତାଙ୍କର ସକ୍ରିୟ ଉଦ୍ୟମ ଫଳରେ ଏହା ସମ୍ଭବ ହୋଇଛି । ଏଥି ସକାଶେ ସେ କେବଳ ଶ୍ରମ ଦେଇ ନାହାନ୍ତି ଆର୍ଥିକ ସହାୟତା ମଧ୍ୟ ପ୍ରଦାନ କରିଛନ୍ତି । ତାଙ୍କର ଏଇ ସଫଳ ପ୍ରୟାସ ଫଳରେ କେବଳ ଏ ପରିଷଦ ନୁହେଁ ଓଡିଆ ଶିଶୁ ସାହିତ୍ୟ ସମଗ୍ର ବିଶ୍ୱରେ ଆଲୋକିତ ହୋଇପାରିଛି ।

ଓଡିଶାର ଅବିଭକ୍ତ ତେରଟି ଜିଲ୍ଲାରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ କର୍ମଶାଳା କରି ସାରିବା ପରେ ମଧ୍ୟ ପ୍ରତିବର୍ଷ କର୍ମଶାଳା କରୁଛି । ଏହି ପ୍ରୟାସ ମାଧ୍ୟମରେ ଓଡିଆ ଶିଶୁ ସାହିତ୍ୟିକ ମାନଙ୍କ ମଧ୍ୟରେ ଜାଗରଣ ଆଣିବା ସହିତ ଶିଶୁ



Digitized by srujanika@gmail.com

ସାହିତ୍ୟର ପ୍ରଚାର ପ୍ରସାର ଓ ଗବେଷଣା ତ୍ୱରାନ୍ୱିତ ହେଉଛି । କର୍ମଶାଳାର ଖର୍ଚ୍ଚ କୌଣସି ସମୟରେ ସରକାରଙ୍କ ଠାରୁ ଅଣାଯାଏ ନାହିଁ । ପୃଷ୍ଠପୋଷକ ମାନଙ୍କ ବ୍ୟକ୍ତିଗତ ଦାନ ଅର୍ଥରେ ହିଁ ଏହା ପରିଚାଳିତ ହୁଏ । ଏଥିପାଇଁ ଯେଉଁ ପୃଷ୍ଠପୋଷକ ମଣ୍ଡଳୀ ରହିଛି ଡକ୍ଟର ବସନ୍ତ କିଶୋର ସାହୁ ହେଉଛନ୍ତି ତାର ଆୟୋଜକ । ସମସ୍ତଙ୍କ ସହ ଯୋଗସୂତ୍ର ରକ୍ଷାକରି ଯଥାଯଥ ଭାବେ ଓ ଠିକ୍ ସମୟରେ ଅର୍ଥ ସଂଗ୍ରହ କରି କର୍ମଶାଳା ପରିଚାଳନା ପାଇଁ ଖସଡାର ରୂପରେଖ ପ୍ରଦାନ କରିବାରେ ସେ ଧୁରୀଣ । ଆଉ ସବୁଠାରୁ ବଡକଥା ହେଉଛି ଅନ୍ୟ କେତେକ ପୃଷ୍ଠପୋଷକ ଗୋଟିଏ ଦୁଇଟି କର୍ମଶାଳା ପାଇଁ ହୁଏତ ପୃଷ୍ଠପୋଷକ ଚାନ୍ଦା ଦେଇ ନାହାନ୍ତି । ହେଲେ ସବୁ କର୍ମଶାଳାରେ ଡକ୍ଟର ସାହୁଙ୍କ ଆର୍ଥିକ ସହାୟତାର ହାତ ଖୋଲା ରହିଛି । ଶିଶୁ ସାହିତ୍ୟ ସକାଶେ ତାଙ୍କର ଏଇ ଅକୁଣ୍ଠ ଦାନ ତାଙ୍କର ଶିଶୁ ସାହିତ୍ୟ ପ୍ରତି ଆନ୍ତରିକତା କେତେ ତାହା ସୂଚାଇ ଥାଏ ।

ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ବିଭିନ୍ନ ଯୋଜନାରେ ସେ ସବୁବେଳେ ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି । ନୂଆ ନୂଆ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ସେ ସବୁବେଳେ ପ୍ରସ୍ତାବ ଦେଇଛନ୍ତି । ଗବେଷକ ମନୋବୃତ୍ତି ନେଇ ସେ ଶିଶୁ ସାହିତ୍ୟର ଉନ୍ନତି ଯୋଜନା କରିବାରେ ବହୁ ଆଗ୍ରହ ପ୍ରକାଶ କରିଛନ୍ତି । କେବଳ ଆଗ୍ରହ ପ୍ରକାଶ ଭିତରେ ସୀମିତ ନ ରହି ସଫଳ ରୂପାୟନ ପାଇଁ ମଧ୍ୟ ସେ ଚେଷ୍ଟା କରିଛନ୍ତି ।

ଶିଶୁ ସାହିତ୍ୟ କେବଳ ଲିଖିତ ନୁହେଁ ମୌଖିକ ମଧ୍ୟ ରହିଛି । ଏହା ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ଏହା ଉପରେ ଗବେଷଣା କରି ସେ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି.ଡିଗ୍ରୀ ମଧ୍ୟ ଲାଭ କରିଛନ୍ତି । ତେଣୁ ଲୋକ ସାହିତ୍ୟର ଏଇ ଦିଗକୁ ସେ ଆଲୋକିତ କରିବା ପାଇଁ ଶିଶୁ ଗୀତ, ଗପ, ଢଗ, ଢମାଳି ସଂଗ୍ରହରେ ମଧ୍ୟ ମନୋନିବେଶ କରିଛନ୍ତି । ସଂଗ୍ରହ,ସଂରକ୍ଷଣ ଓ ପ୍ରକାଶନ ମାଧ୍ୟମରେ ମୌଖିକ ଶିଶୁ ସାହିତ୍ୟକୁ ସେ ଆଲୋକିତ କରିଛନ୍ତି ।

ଅନ୍ୟ ଭାଷାରେ ଓଡିଆ ଶିଶୁ ସାହିତ୍ୟକୁ ଅନୁବାଦ ନ କଲେ ଏହାର ମହତ୍ତ୍ୱ ଅନ୍ୟମାନେ ବୁଝି ପାରିବେ ନାହିଁ । ଏକଥା ମଧ୍ୟ ଡକ୍ଟର ସାହୁଙ୍କୁ ଆନ୍ଦୋଳିତ କରିଛି । ତେଣୁ ବିଭିନ୍ନ ଭାଷାରେ ଓଡିଆ ଶିଶୁ ସାହିତ୍ୟକୁ ଅନୁବାଦ ମଧ୍ୟ ସେ ବ୍ୟକ୍ତିଗତ ଭାବେ ଓ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ ମାଧ୍ୟମରେ ମିଳିତ ଭାବେ କରିବାର୍ ପ୍ରୟାସ କରିଛନ୍ତି ।

ଡକ୍ଟର ବସନ୍ତ କିଶୋର ସାହୁ ଚାକିରି ଜୀବନରୁ ହୁଏତ ଅବସର ନେବେ, ହେଲେ ଲେଖକ ଓ ଗବେଷକ ଜୀବନରୁ ଅବସର ନେବାର ତର କାହିଁ ? ଓଡିଆ ଶିଶୁ ସାହିତ୍ୟ ତଥା ଶିଷ୍ଟ ସାହିତ୍ୟ ଜଗତ ତାଙ୍କଠୁ ଆହୁରି ବହୁତ କିଛି ଆଶାକରେ । ସେ ଆଶା ସେ ପୂରଣ କରିବେ ଏ ବିଶ୍ୱାସ ରଖୁଛି ।



ଚିତ୍ରଡ଼ା, ମୟୂରଭଞ୍ଜ



Digitized by srujanika@gmail.com

# ଗୋଟିଏ ବହୁମୁଖୀ ପ୍ରତିଭା

## ଡକ୍ଟର ମହେଶ୍ୱର ମହାନ୍ତି

ଚାରାବେଳେ ଦେଖିଥିବା କ୍ଷୁଦ୍ର ଗଛଟିକୁ ଫୁଲଫଳରେ ପରିପୂର୍ଣ୍ଣ ଏକ ପୂର୍ଣ୍ଣାଙ୍ଗ ବୃକ୍ଷ ରୂପରେ ଦେଖିବାବେଳେ ମନରେ ଏକ ଗଭୀର ଆନନ୍ଦ ଜାତ ହୋଇଥାଏ । ଏ ଦୁଇଟି ମଧ୍ୟରେ ସମୟର ବ୍ୟବଧାନ ମାପିବାବେଳେ କିଛି ଭାବପ୍ରବଣତା ମଧ୍ୟ ସୃଷ୍ଟି ହୋଇଥାଏ । ବସନ୍ତ କିଶୋରଙ୍କୁ ଦେଖିଥିଲି ସେ ଛାତ୍ର ଥିଲାବେଳେ । ତା ପରେ ଦେଖିଲି 'ବଗଲାବଗୁଲୀ' ନାମରେ ପିଲାଙ୍କ ପାଇଁ ଏକ ପତ୍ରିକା ପ୍ରକାଶ କଲାବେଳେ । ତାଆରି ଭିତରେ ଥିଲା ଭବିଷ୍ୟତ ପାଇଁ ତାଙ୍କର ଏକ ସୃଜନଶୀଳତାର ସମ୍ଭାବନା । ସଚରାଚର ଦେଖାଯାଇଛି, କଳା ଓ ସାହିତ୍ୟ ପାଇଁ ଥିବା ଶ୍ରଦ୍ଧା ବାଲ୍ୟକାଳରୁ ହିଁ ପରିସ୍ଫୁଟ ହୋଇଥାଏ । ବସନ୍ତ କିଶୋରଙ୍କ କ୍ଷେତ୍ରରେ ତାହା ହିଁ ଘଟିଛି । ସେ ଅଧ୍ୟାପକ ହେଲେ । ଶିଶୁ ସାହିତ୍ୟରେ ଗବେଷଣା କରି ପିଏଚ୍.ଡି. ଡିଗ୍ରୀ ଲାଭ କଲେ । ଅଧ୍ୟାପନା ସହିତ ସାହିତ୍ୟ, ସଂଗଠନ, ସଂପାଦନା, ଗବେଷଣା ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ପ୍ରମାଣିତ କଲେ । ସେ ଗୋଟିଏ ବହୁମୁଖୀ ପ୍ରତିଭା । ଓଡ଼ିଆ ସମେତ ହିନ୍ଦୀ, ଇଂରାଜୀ ଓ ବଙ୍ଗଳାରେ ମଧ୍ୟ ତାଙ୍କର ୩୨ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇଛି । ଇଂରାଜୀରେ ସଂକଳିତ ଓଡ଼ିଆ ଶିଶୁ ସାହିତ୍ୟ ଲେଖକ ପରିଚୟ ଗ୍ରନ୍ଥଟି ତାଙ୍କର ଏକ ମୂଲ୍ୟବାନ କୀର୍ତ୍ତି ।

ବସନ୍ତ କିଶୋର କେବଳ ଶିଶୁ ସାହିତ୍ୟ କ୍ଷେତ୍ରରେ ଆପଣାକୁ ପରିଚିତ କରାଇ ନାହାନ୍ତି, ସାହିତ୍ୟର ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ନିଜର ପାରଦର୍ଶିତା ପ୍ରଦର୍ଶନ କରିପାରିଛନ୍ତି । ସେ ଅନେକଗୁଡ଼ିଏ ମୌଳିକ ଚିନ୍ତାପ୍ରସୂତ ପ୍ରବନ୍ଧ ରଚନା କରିଛନ୍ତି । ଏଗୁଡ଼ିକ 'କାହାକୁ କହିବା' ଶୀର୍ଷକ ପୁସ୍ତକରେ ପ୍ରକାଶିତ ହୋଇଛି । ଏହି ପ୍ରବନ୍ଧଗୁଡ଼ିକ ପଢ଼ିବାର ସୁଯୋଗ ମୁଁ ପାଇଛି ।

ବସନ୍ତ କିଶୋର ଉପକୂଳ ଅଞ୍ଚଳରେ ଜନ୍ମ ହୋଇ ଉପାନ୍ତ ଅଞ୍ଚଳକୁ ନିଜର କର୍ମସ୍ଥଳ ରୂପେ ବାଛି ନେଲେ । ସେଠାରେ ବେଶ୍ ଏକ ସାହିତ୍ୟିକ ପରିବେଶ ସୃଷ୍ଟି କଲେ । ସଭା କଲେ, ସଂଗଠନ କଲେ, ପତ୍ରିକା ପ୍ରକାଶ କଲେ, ଲୋକମାନଙ୍କର ପ୍ରିୟ ହେଲେ, ଶ୍ରଦ୍ଧା ଭାଜନ ହେଲେ । ଏବେ ତାଙ୍କର ବୃତ୍ତି ଜୀବନ ଶେଷ ହୋଇଗଲା । ସେ ଅବସର ନେବେ । କବି, କଳାକାର ଓ ସୃଜନଶୀଳ ପ୍ରତିଭାର ଅବସର ନଥାଏ । ତେଣୁ ସେ ଅବସର ନିଅନ୍ତୁ, କିନ୍ତୁ ଅବସନ୍ନ ନ ହୁଅନ୍ତୁ । ଏଇ କାମନା କରୁଛି ।



ସଭାପତି, ଶିଶୁ ସାହିତ୍ୟ ଲେଖକ ସମ୍ମିଳନୀ, ଓଡ଼ିଶା, କଟକ



Digitized by srujanika@gmail.com

# ସାରସ୍ୱତ ସାଧକ ବସନ୍ତ କିଶୋରଙ୍କ ଅନନ୍ୟ ବ୍ୟକ୍ତିତ୍ୱ -'ଏକ ମୁଗ୍ଧ ଅନୁଭବ ଓ ଆକଳନ'

ଡକ୍ଟର ଭାଗବତ ଶୁକ୍ଳ

: ଏକ :

ସାରସ୍ୱତ ସାଧକ ଡଃ ବସନ୍ତ କିଶୋର ସାହୁ ଓଡିଆ ସାହିତ୍ୟର ଏକ ବହୁଚର୍ଚ୍ଚିତ ଓ ଆଦୃତ ପ୍ରତିଭା । ଏକ ଅସାଧାରଣ ବ୍ୟକ୍ତିତ୍ୱ । ସାଧାରଣତଃ ଦେଖାଯାଏ ଯେ ଜଣେ ଜଣେ ବ୍ୟକ୍ତି କୌଣସି ଗୋଟିଏ ଦିଗରେ ନିଜର ଦକ୍ଷତା ପ୍ରତିପାଦନ କରନ୍ତି, କିନ୍ତୁ ଡଃ. ସାହୁଙ୍କ କ୍ଷେତ୍ରରେ ଏହି କଥା ଭୁଲ ବୋଲି ପ୍ରମାଣିତ ହୋଇଛି । ଡଃ. ସାହୁ ଏକାଧାରରେ ଜଣେ ଅଧ୍ୟାପକ, କବି, ଗାଳ୍ପିକ, ପ୍ରାବନ୍ଧିକ, ଆଲୋଚକ, ଗବେଷକ, ସଂପାଦକ ଓ ସଂଗଠକ । ଓଡିଆ ସାହିତ୍ୟର ପ୍ରତ୍ୟେକ ବିଭାଗରେ ଲେଖନୀ ଚାଳନା କରି ସେ ନିଜର ଏକ ଭାବମୂର୍ତ୍ତି ପ୍ରତିଷ୍ଠା କରିବାରେ ସଫଳ ହୋଇଛନ୍ତି । ଦୀର୍ଘ ବର୍ଷର ଅଧ୍ୟାପକ ଜୀବନରେ ଅଧ୍ୟାପନା ବୃତ୍ତିକୁ ଆଦରି ନେଇଥିଲେ ହେଁ ଜଣେ ତୁଚ୍ଛା ଅଧ୍ୟାପକଟିଏ ହୋଇ ନାହାନ୍ତି । ଅଧ୍ୟାପନା ସହିତ ଗବେଷଣା, ସାହିତ୍ୟ-ସୃଷ୍ଟି ଓ ଓଡିଆ ସାହିତ୍ୟର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଉଲ୍ଲେଖନୀୟ କର୍ମ କରି ସେ ଓଡିଶାର ଶିଷ୍ଟ, ବିଦ୍ୱାନ ଓ ସମାଲୋଚକ ମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଛନ୍ତି । ଏବେ ବି ତାଙ୍କର ସାହିତ୍ୟ ସୃଷ୍ଟି ଓ ସାଧନା କ୍ରିୟାଶୀଳ ଅଛି ।

ଏପରି ଜଣେ ସାରସ୍ୱତ ଶିଳ୍ପୀଙ୍କ ଅବସରକାଳୀନ ସମ୍ବର୍ଦ୍ଧନା ଜ୍ଞାପନ କରିବା ଅବକାଶରେ ଏକ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶନ ପାଇଁ ଯେଉଁ ଉଦ୍ୟମ ଡଃ.ସାହୁଙ୍କ ଗୁଣମୁଗ୍ଧ ସାହିତ୍ୟପ୍ରେମୀ ଓ ବିଦ୍ୱାନମାନଙ୍କ ଦ୍ୱାରା କରାଯାଉଛି ତାହାକୁ ମୁଁ ହୃଦୟର ଗଭୀରତମ ପ୍ରଦେଶରୁ ସ୍ୱାଗତ କରିବା ସହିତ ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ସଂପର୍କରେ ମୋର ଅନୁଭୂତି ଏହି ଲେଖା ମାଧ୍ୟମରେ ପ୍ରକାଶ କରୁଅଛି ।

ଡଃ. ସାହୁ ବୃତ୍ତିରେ ଜଣେ ଅଧ୍ୟାପକ । ଅଧ୍ୟାପନା ତାଙ୍କର କର୍ମ- କିନ୍ତୁ କେବଳ ଅଧ୍ୟାପନାରେ ସେ ଅଟକି ରହି ନାହାନ୍ତି । ନିଜର କାର୍ଯ୍ୟ ପରିସରକୁ ସେ ଯଥା ସମ୍ଭବ ପ୍ରସାରିତ କରିଛନ୍ତି । ଏଠାରେ ଗୋଟିଏ ଅପ୍ରିୟ ସତ୍ୟ କହିବାକୁ ଯାଇ ମୁଁ ସ୍ୱର୍ଗତ ଚିତ୍ତ ଭାଇଙ୍କର ଗୋଟିଏ ଉକ୍ତି ଉଦ୍ଧାର କରୁଛି । " ଓଡିଶାରେ ବହୁ ଅଧ୍ୟାପକ ଅଛନ୍ତି, ସେମାନେ



Digitized by srujanika@gmail.com

ଅଧ୍ୟାପନା କରନ୍ତି ସତ ମାତ୍ର ଅଧ୍ୟୟନ କରନ୍ତି ବହୁତ କମ୍”। ଜଣେ ଅଧ୍ୟାପକ ବା ଶିକ୍ଷକ ଯେ ଜୀବନସାରା ଛାତ୍ର-ସେ କଥା ସେମାନେ ପାଶୋରି ପକାନ୍ତି । ଏପରିକି ଗବେଷକମାନେ ଗବେଷଣା କରି ଡିଗ୍ରୀ ପାଇ ସାରିଲା ପରେ ଏହି ଡିଗ୍ରୀକୁ ଏକ ମଣ୍ଡନ ବା ଅଳଙ୍କାର ରୂପେ ବ୍ୟବହାର କରନ୍ତି, ବୃତ୍ତି ବା ପେଶାରେ ସହାୟକ ଡିଗ୍ରୀକୁ ସେମାନେ ଭୂଷଣ କରନ୍ତି ସିନା ପରବର୍ତ୍ତୀ ପର୍ଯ୍ୟାୟରେ ଗବେଷଣାର ପ୍ରକୃତ ଧର୍ମକୁ ଭୁଲି ଯାଇ, ଗୋଟାପଣ ପଥର ପରି ବସି ଯିବାକୁ ଭଲ ମନେ କରନ୍ତି । କିନ୍ତୁ ଡଃ. ସାହୁ ଏ କ୍ଷେତ୍ରରେ ବ୍ୟତିକ୍ରମ ।

: ଦୁଇ :

ଡଃ. ସାହୁଙ୍କ ସାହିତ୍ୟିକ ଜୀବନକୁ ପଲ୍ଲବିତ କରିବାରେ ତାଙ୍କ ଜନ୍ମଭୂମି କୁସୁପୁର ଓ ମାହାଙ୍ଗାର ବହୁ ଅବଦାନ ଅଛି । ଡଃ. ସାହୁ ଏ କଥା ମଧ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଡଃ. ସାହୁ ଉତ୍ତରାଧିକାର ସୂତ୍ରରେ ଏକ ମହାନ ପରମ୍ପରା ଓ ପୂଣ୍ୟଭୂମିର ଅଧିକାରୀ । ତାଙ୍କ ଜନ୍ମଭୂମି ମାହାଙ୍ଗା ଅଞ୍ଚଳ ଓଡିଶାର ସାହିତ୍ୟ, ଇତିହାସ, ସାମ୍ବାଦିକତା ଓ ସଂସ୍କୃତି କ୍ଷେତ୍ରରେ ଏକ ପୂଣ୍ୟ ଉଚ୍ଚାରଣ । ଓଡିଶାର ନବଜାଗରଣ ପର୍ବରେ ଏହି ଭୂମିରେ ଆଦି ନାଟ୍ୟକାର ଜଗନ୍ମୋହନ ଲାଲ, ଓଡିଶାର ଇତିହାସ ପ୍ରଣେତା ଆଚାର୍ଯ୍ୟ ପ୍ୟାରୀମୋହନ, ଗଣକବି ବୈଷ୍ଣବ ପାଣି, ଉତ୍କଳ ସାହିତ୍ୟର ସୁଯୋଗ୍ୟ ସଂପାଦକ ବାଗ୍ମୀ ବିଶ୍ୱନାଥ କର, କଥାକାର ପ୍ରାଣକୃଷ୍ଣ ସାମଲ, ସଂସ୍କାରକ ବୈରାଗୀ ମିଶ୍ର, ଆନ୍ତର୍ଜାତିକ ସନ୍ତରଣକାରୀ ମିହିର ସେନ, କର୍ମବୀର ଗୌରୀଶଙ୍କର, ସାରସ୍ୱତ ସାଧକ ରାମଶଙ୍କର ଆଦି ମନିଷୀ ଜନ୍ମ ଗ୍ରହଣ କରି ସଂସ୍କୃତି ସାହିତ୍ୟ, ଇତିହାସ ଓ ସାମ୍ବାଦିକତା କ୍ଷେତ୍ରରେ ନିଜର ପ୍ରତିଭା ପ୍ରଦର୍ଶନ କରି ସ୍ମରଣୀୟ ହୋଇଛନ୍ତି । ବିଶେଷ କରି ମାହାଙ୍ଗାର କୁସୁପୁର ଗ୍ରାମ ଯାହା ଡଃ. ସାହୁଙ୍କ ଜନ୍ମଭୂମି, ସେଠାରେ ଜନ୍ମଗ୍ରହଣ କରିଛନ୍ତି ପଲ୍ଲୀ କବି ନନ୍ଦ କିଶୋର ବଳ, ଚିତ୍ରଶିଳ୍ପୀ ବିମ୍ବାଧର ବର୍ମା, କବି, ସାହିତ୍ୟିକ ଓ ସଂପାଦକ ଜ୍ଞାନୀନ୍ଦ୍ର ବର୍ମା, ସାମ୍ବାଦିକ ତଥା ଔପନ୍ୟାସିକ ରାଜେନ୍ଦ୍ର ବର୍ମା, ବିଦୁଷୀ ଲବଙ୍ଗଲତା, ସମ୍ପାଦକ ଓ ଚିନ୍ତାନାୟକ ପ୍ରଦ୍ୟୁମ୍ନ ବଳ, କବି ନନ୍ଦ କିଶୋର ସାମଲ । ଏହି ମାଟିର ସୁଯୋଗ୍ୟ ସନ୍ତାନ ରୂପେ ବସନ୍ତ କିଶୋର ଉତ୍ତରାଧିକାର ସୂତ୍ରରେ ପୂର୍ବସୂରୀ ବିଶେଷ କରି କବି ନନ୍ଦକିଶୋର ବଳ ଓ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ପଲ୍ଲୀ ଚେତନା, ପଲ୍ଲୀର ସହଜ, ସରଳ ସୌନ୍ଦର୍ଯ୍ୟବୋଧ ଓ ସୁଯୋଗ୍ୟ ସଂପାଦକ ଶ୍ରୀ ବିଶ୍ୱନାଥ କରଙ୍କ ସଂପାଦନା ସୌରଭରେ ଓ ଗୌରବରେ ହୋଇଛନ୍ତି ସ୍ପନ୍ଦିତ ଓ ବିକଶିତ । ମୋର ମନେହୁଏ, ବସନ୍ତ କିଶୋର ସାହିତ୍ୟର ସବୁ ବିଭାଗ, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟରଚନା ଓ ଗବେଷଣା ତଥା ସଂପାଦନା କ୍ଷେତ୍ରରେ ହାତ ଦେଇ ଯଶସ୍ୱୀ ହୋଇଥିଲେ ହେଁ, ନନ୍ଦ କିଶୋରଙ୍କ ପଲ୍ଲୀପ୍ରାଣତା ଓ ଶିଶୁ ସାହିତ୍ୟ 'ନାନାବାୟା ଗୀତ' ଓ ବିଶ୍ୱନାଥ କରଙ୍କ ସଂପାଦନା ଶୈଳୀ ଦ୍ୱାରା ଅନୁପ୍ରେରିତ ଓ ବିକଶିତ ।



Digitized by srujanika@gmail.com

: ତିନି :

ଡଃ. ବସନ୍ତ କିଶୋର ମୁଖ୍ୟତଃ ଜଣେ ଗବେଷକ, ପ୍ରାବନ୍ଧିକ ଓ ଆଲୋଚକ । କବିତା ଓ ଗଳ୍ପ ତାଙ୍କର ରାଜ୍ୟ ନୁହେଁ, ଯଦିଓ ସେ କେତେ ଗୁଡିଏ ଶିଶୁ କବିତା ଓ ଦେଶାତ୍ମବୋଧକ କବିତା ରଚନା କରିଛନ୍ତି । ବିଶେଷ କରି ଶିଶୁ କବିତା ରୂପେ ପ୍ରକାଶିତ ତାଙ୍କର ଫୁଲ ଆମେ ଫୁଲ, ଅଗଡ ବଗଡ ଝାଇଁକି ଝୁମ୍ପା, କାଳିଆ ବଳଦ ଗଳାରେ ଗଲା, ଉଦୁଉଦୁମା, ଖରାବରଷା ଗୀତ, ବିଲୁଆ ନନାର ବଣଭୋଜି, ଶୀତ ପାଇଁ ଗାଅ ଗୀତ ଆଦି ପୁସ୍ତକ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଛି ଓ ସ୍ରଷ୍ଟା ବସନ୍ତ କିଶୋର ଏହି ସବୁ ରଚନା ପାଇଁ ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି । କିନ୍ତୁ ଏ କଥା ଭୁଲିଗଲେ ହେବ ନାହିଁ ଯେ ଏହି ଶିଶୁ-ପ୍ରୀତି ଓ ପଲ୍ଲୀପ୍ରାଣ ତାଙ୍କ ଗବେଷଣା ଓ ସୃଷ୍ଟିକୁ ବହୁ ଭାବରେ ସମୃଦ୍ଧ ଓ ରସାଣିତ କରିଛି । ଗବେଷଣା ପାଇଁ ବିଷୟ ବସ୍ତୁ ନିର୍ବାଚନ କଲାବେଳେ ଓ ଗବେଷଣା କଲାବେଳେ ଯେଉଁ ସରଳ, ତରଳ, ଗ୍ରାମ୍ୟ ଜୀବନର ଭାଷା ସେ ବ୍ୟବହାର କରିଛନ୍ତି, ତାହା ମୂଳରେ ରହିଛି ତାଙ୍କର ପଲ୍ଲୀ ପ୍ରାଣତା ଓ ପଲ୍ଲୀକଥିତ ଭାଷା ପ୍ରତି ଗୋଟାଏ ପ୍ରକାର ଅଙ୍ଗୀକାର ବଦ୍ଧତା ।

ଡକ୍ଟର ବସନ୍ତ କିଶୋରଙ୍କ ଶିଶୁ ସାହିତ୍ୟ ସଂପର୍କିତ ପ୍ରବନ୍ଧ ଓ ଆଲୋଚନାର ପରିସର ବ୍ୟାପକ । ଡଃ. ସାହୁ, ବସନ୍ତ କିଶୋର ରଚନାବଳୀରେ ତାଙ୍କ ସୃଷ୍ଟି ସଂପଦର ଯେଉଁ ସୂଚନା ଦେଇଛନ୍ତି ସେଥିରୁ ଜଣାପଡେ ଯେ ସେ ପ୍ରାୟ ୬୫ଟି ପ୍ରବନ୍ଧ ଏ ଯାବତ୍ ପ୍ରକାଶ କରିଛନ୍ତି । ସେହି ସବୁ ପ୍ରବନ୍ଧ ଓ ଆଲୋଚନାକୁ ସୂକ୍ଷ୍ମ ଭାବରେ ପର୍ଯ୍ୟାଲୋଚନା କଲେ ଆମେ ଦେଖି ପାରିବା ଯେ ଏହି ସବୁ ଆଲୋଚନା ଦୁଇଟି ଧାରାରେ ରୂପାୟିତ ହୋଇଛି, ଗୋଟିଏ ଶିଶୁ ସାହିତ୍ୟର ସଂଜ୍ଞା, ବିକାଶ, ରୂପ ଓ ବୈଶିଷ୍ଟ୍ୟକୁ ଆଧାର କରି ରଚିତ ହୋଇଥିବା ପ୍ରବନ୍ଧ ସମୂହ । ଅନ୍ୟଟି ହେଉଛି ବିଶିଷ୍ଟ ଶିଶୁ ସାହିତ୍ୟିକମାନଙ୍କ ସୃଷ୍ଟି ଉପରେ ତାଙ୍କର ଗବେଷଣାତ୍ମକ ଆଲୋଚନା । ଲକ୍ଷ୍ୟ କରିବାର କଥା ଏହି ଆଲୋଚନା ଧାରାରେ ବିଶିଷ୍ଟ ଶିଶୁ ସାହିତ୍ୟିକ ନନ୍ଦ କିଶୋର ବଳ, ନନ୍ଦ କିଶୋର ସାମଲ, ସତ୍ୟବାଦୀର ପ୍ରଖ୍ୟାତ ସମାଲୋଚକ ଓ ଶିଶୁପ୍ରାଣ ପଣ୍ଡିତ ନୀଳକଣ୍ଠ, ଶିଶୁ ସାହିତ୍ୟିକ ରାଜ କିଶୋର ପାଢୀ, ନନ୍ଦ କିଶୋର ସିଂହ, ଡଃ. ଜଗନ୍ନାଥ ମହାନ୍ତି, ଡଃ. କୃତ୍ତିବାସ ନାୟକ, କ୍ଷୀରୋଦ ଚନ୍ଦ୍ର ପୋଥାଳ, ଧନେଶ୍ୱର ସାମଲ, ପ୍ରଫୁଲ୍ଲ ଗିରି, ଗୋଦାବରୀଶ ମହାପାତ୍ର ଓ ସ୍ନେହଲତା ମହାନ୍ତିଙ୍କ ପରି ବହୁ ପୁରାତନ ଓ ନବୀନ ସ୍ରଷ୍ଟା ରହିଛନ୍ତି । ମନେହୁଏ ଡକ୍ଟର ସାହୁ ସମଗ୍ର ଓଡିଶାର ବରେଣ୍ୟ ଶିଶୁ ସାହିତ୍ୟିକ ଓ କବିମାନଙ୍କ ପ୍ରତିଭାକୁ ଲୋକ ଲୋଚନକୁ ଆଣି ଓଡିଶାରେ ଶିଶୁ ସାହିତ୍ୟ ଓ ଶିଶୁ ସାହିତ୍ୟିକ ମାନଙ୍କୁ ଯଥାର୍ଥ ମର୍ଯ୍ୟାଦା ଦେବାକୁ କ୍ରିୟାଶୀଳ ଅଛନ୍ତି । ଓଡିଶାର ମୌଖିକ ଶିଶୁ ସାହିତ୍ୟ ଓ ଲିଖିତ ଶିଶୁ ସାହିତ୍ୟ ତଥା ଶିଶୁ ସାହିତ୍ୟିକମାନଙ୍କୁ ଉପଯୁକ୍ତ ମର୍ଯ୍ୟାଦା ଦେବା ପାଇଁ ଡଃ.ସାହୁଙ୍କ ଜୀବନ ବ୍ୟାପୀ ଉଦ୍ୟମ ଏ ଦୃଷ୍ଟିରୁ ଅଭିନନ୍ଦନୀୟ ।



Digitized by srujanika@gmail.com

ଡଃ.ସାହୁ ଶିଶୁ ସାହିତ୍ୟ ସମ୍ପର୍କିତ ବହୁ ଆଲୋଚନା ଓ ପ୍ରବନ୍ଧ ପ୍ରକାଶ କରିବା ସହିତ, ଓଡିଆ ମୌଖିକ ଶିଶୁ ସାହିତ୍ୟ, (ପିଏଚ୍.ଡି ନିବନ୍ଧ) ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ ଆଦି ପୁସ୍ତକ ରଚନା କରିଛନ୍ତି । ଏହି ସବୁ ପୁସ୍ତକ ଓଡିଆ ସାହିତ୍ୟରେ ଗୋଟିଏ ଗୋଟିଏ ଅମୂଲ୍ୟ ଗ୍ରନ୍ଥ, ଯେଉଁଥିରୁ ଡଃ.ସାହୁଙ୍କ ଗଭୀର ଅଧ୍ୟୟନ ଓ ବହୁଶାସ୍ତ୍ରଦର୍ଶିତାର ପ୍ରମାଣ ମିଳେ ।

ପ୍ରବନ୍ଧ ରଚନା କ୍ଷେତ୍ରରେ ଡଃ.ସାହୁଙ୍କ ଦକ୍ଷତା ବହୁ ଶ୍ରଦ୍ଧାଳୁ ପାଠକମାନଙ୍କ ଶ୍ରଦ୍ଧା ଲାଭ କରିଛି । ଏହି ପ୍ରବନ୍ଧ ଗୁଡିକର ଭାଷା ସରଳ ଓ ଭାବଗର୍ଭକ । ଡଃ.ସାହୁ ଏହି ପ୍ରବନ୍ଧ ମାନଙ୍କୁ (୧) ଶିଶୁ ସାହିତ୍ୟ ସଂପର୍କିତ, (୨) କୋରାପୁଟ ସଂପର୍କିତ, (୩)ଭାଷା ସାହିତ୍ୟ ସଂପର୍କିତ, (୪) ବ୍ୟକ୍ତିତ୍ୱ ସଂପର୍କିତ ଶିରୋନାମାରେ ବିଭକ୍ତ କରିଛନ୍ତି । ଏହା ଛଡା ଓଡିଶାର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ କେନ୍ଦ୍ର କରି ସେ ପ୍ରତି ବର୍ଷ 'ସର୍ଣ୍ଣକ୍ଷେତ୍ର' ନାମରେ ଏକ ସୁଦୃଶ୍ୟ ସ୍ମରଣିକା ପ୍ରକାଶ କରାଇ ଓଡିଶାର ପତ୍ରପତ୍ରିକା ମାନଙ୍କରେ ଜଗନ୍ନାଥ ସଂସ୍କୃତି ଓ ଚେତନାର ଆଲେଖ୍ୟ ପ୍ରଦାନ କରି ଚାଲିଛନ୍ତି । ସାହିତ୍ୟ, ଇତିହାସ ଓ ସଂସ୍କୃତିର ମଧୁର ସମନ୍ୱୟରେ ଏହି ପ୍ରବନ୍ଧ ସବୁ ସୁଖପାଠ୍ୟ ହେବା ସହିତ ତଥ୍ୟଭିତ୍ତିକ ହୋଇଛି ।

ଏହି ପ୍ରବନ୍ଧମାନଙ୍କ ମଧ୍ୟରୁ କୋରାପୁଟ ସଂପର୍କିତ ଐତିହାସିକ ଓ ଭାବଗର୍ଭକ ପ୍ରବନ୍ଧ ଗୁଡିକରୁ ଡଃ.ସାହୁଙ୍କ ଇତିହାସ ପ୍ରୀତି ସଂପର୍କରେ ସୂଚନା ମିଳେ । କୋରାପୁଟର ସୁନାବେଡା ତାଙ୍କର କର୍ମଭୂମି । ଏହି ସୁନାବେଡାରେ ୧୯୮୪ ମସିହା ଠାରୁ ଅଧ୍ୟାପକ ଜୀବନ ଆରମ୍ଭ କରି ସେ ସୃଷ୍ଟି କର୍ମରେ ନିୟୋଜିତ ଅଛନ୍ତି । "ସୁନାବେଡା ଆମର କର୍ମଭୂମି । ତାର ପାଣି ପବନ ଆମକୁ ବଞ୍ଚିବା ଶିଖାଇଛି xxx । ଆମ ପିଲାଏ ଏଠି ସେମାନଙ୍କର ବାଲ୍ୟ, କୈଶୋର ଓ ଯୌବନ କଟାଇଛନ୍ତି । ତେଣୁ କର୍ମଭୂମିର ମୋହ ଜନ୍ମଭୂମି ଠାରୁ ନିଶ୍ଚୟ ଅଧିକ । ତାକୁ ଭଲପାଇବା, ସମ୍ମାନ ଜଣାଇବା, ତା ସ୍ମୃତିକୁ ସାଉଁଟିବା, ତା'ପାଇଁ କିଛି କାମ କରିବା, ଆମର ସମସ୍ତ କର୍ତ୍ତବ୍ୟ ଭିତରେ ଏକ ପବିତ୍ର କର୍ତ୍ତବ୍ୟ" ବୋଲି ବସନ୍ତ କିଶୋର ତାଙ୍କ ସଂପାଦିତ ସୁନାବେଡା ବିଶେଷାଙ୍କ ସ୍ମରଣିକାରେ ଲିପିବଦ୍ଧ କରିଛନ୍ତି ।

ସେହିପରି କୋରାପୁଟର ମାୟାରେ ମୋହିତ ହୋଇ ବସନ୍ତ କିଶୋର କୋରାପୁଟ ପ୍ରତି ନିଜର ଶ୍ରଦ୍ଧା ଜଣାଇବାକୁ ଯାଇ କହନ୍ତି "କୋରାପୁଟକୁ ଭଲ ପାଇବା .... ତା'ର ପାଣି, ପବନ ଓ ସଂସ୍କୃତିକୁ ଭଲ ପାଇବା ସମସ୍ତଙ୍କ ପାଇଁ ସମ୍ଭବ ନୁହେଁ । କିନ୍ତୁ କବି, ଭାବୁକ, ଗାଳ୍ପିକ ତଥା ସାହିତ୍ୟିକ କୋରାପୁଟର ମାୟାରେ ବାୟା ହୁଅନ୍ତି । xxx । କୋରାପୁଟିଆ ନ ହୋଇ ବି ସେ ହୋଇଯାଏ କୋରାପୁଟିଆ"। (କୋରାପୁଟ ସଂସ୍କୃତି ସଂପର୍କରେ ସ୍ରଷ୍ଟାଙ୍କ ଅଭିମତ, ବସନ୍ତ କିଶୋର ରଚନାବଳୀ) । ଏ ଦୁଇଟି



Digitized by srujanika@gmail.com

ମନ୍ତବ୍ୟରୁ ବସନ୍ତ କିଶୋରଙ୍କ କର୍ମଭୂମି ପ୍ରତି କର୍ତ୍ତବ୍ୟ ଓ ଆକର୍ଷଣ ସ୍ପଷ୍ଟ ବାରି ହୋଇପଡେ ।

ଏଠାରେ କହିବାରେ ଦ୍ୱିଧା ନାହିଁ ଯେ 'କୁସୁପୁର'ର ବସନ୍ତ କିଶୋର କୁସୁପୁରର ଭାବ-ସୌନ୍ଦର୍ଯ୍ୟ ଓ ସଂସ୍କୃତିକୁ ସାଙ୍ଗରେ ଆଣି କୋରାପୁଟ ଓ ସୁନାବେଡାରେ ତାହାର ବିକାଶ ଘଟାଇଛନ୍ତି । ଚାକିରି ପାଇଁ ବହୁ ବ୍ୟକ୍ତି ଆସିଛନ୍ତି କୋରାପୁଟକୁ, କୋରାପୁଟରେ କିଛି ଦିନ ରହିବା ପରେ, ଧରାଧରି କରି ଫେରି ଯାଇଛନ୍ତି ଉପକୂଳବର୍ତ୍ତୀ ଅଞ୍ଚଳକୁ, ପଡି ରହିଛି ବଣ ଜଙ୍ଗଲ, ଆଦିବାସୀ ଅଧ୍ୟୁଷିତ କୋରାପୁଟ-କିନ୍ତୁ ବସନ୍ତ ବାବୁ ସୁନାବେଡାରେ ଖାଲି ଅଧ୍ୟାପକଟିଏ ହୋଇ ରହିନାହାନ୍ତି । ସୁନାବେଡାର ପ୍ରାକୃତିକ ସୌନ୍ଦର୍ଯ୍ୟ, ପ୍ରଶସ୍ତ ରାସ୍ତା, ସାଂସ୍କୃତିକ ପରିବେଶ, ଜଗନ୍ନାଥ ମନ୍ଦିର, ଉତ୍କଳ ସାଂସ୍କୃତିକ ପରିଷଦ, ବନଫୁଲ ସାହିତ୍ୟ ପରିଷଦ, ଓଡିଆ ଲେଖକ ପାଠକ ସମ୍ମେଳନ, ବନପ୍ରଭା ସାହିତ୍ୟ ସଂସଦ ଓ ସତୀର୍ଥ ମାନଙ୍କ ସାହିତ୍ୟ ସାଧନା ତାଙ୍କ ଜୀବନକୁ ସାହିତ୍ୟ ସୃଷ୍ଟି ଓ ସାଧନାକୁ ବହୁ ଭାବେ ପୁଷ୍ଟ କରିଛି, ଆଉ ସେହି ଆକର୍ଷଣ, ସ୍ମୃତି ଓ ଜୀବନ୍ତ-ସ୍ପର୍ଶକୁ ଚିରଦିନ ଜୀବନ୍ତ କରି ରଖିବା ପାଇଁ ସୃଷ୍ଟି ହୋଇଛି କୋରାପୁଟର ସଂସ୍କୃତି ଆଧାରିତ ପ୍ରବନ୍ଧ । ଓଡିଶାର ଭୂସ୍ୱର୍ଗ, କୋରାପୁଟର ପର୍ବପର୍ବାଣି ଓ ଯାନିଯାତ୍ରା, କୋରାପୁଟର ନୃତ୍ୟ ସଂଗୀତ, କୋରାପୁଟର ଚଇତି ପର୍ବ, କୋରାପୁଟର ପରଜା ସଂସ୍କୃତି ଏକ ସଂକ୍ଷିପ୍ତ ପରିଚୟ ଆଦି ୯ଟି ପ୍ରବନ୍ଧ । ସୁନାବେଡାରୁ କୋରାପୁଟ, କୋରାପୁଟରୁ ସମଗ୍ର ଓଡିଶା ଓ ପରେ ଏକ ପରିବ୍ୟାପ୍ତ ଚେତନାରେ ସେ ହୋଇଛନ୍ତି ଅନୁପ୍ରେରିତ । କୋରାପୁଟ ସଂପର୍କିତ ପ୍ରବନ୍ଧ ବ୍ୟତୀତ ସୁନାବେଡା ସ୍ମରଣିକା ଡଃ.ସାହୁଙ୍କର ଏକ ଅଭିନବ ପରିକଳ୍ପନା । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳ ବା ସହରକୁ କେନ୍ଦ୍ରକରି ବହୁ ଚିନ୍ତାଶୀଳ, ବୁଦ୍ଧିଜୀବୀମାନଙ୍କର ସ୍ମୃତି ରୋମନ୍ଥନ ଏହି ସ୍ମରଣିକାକୁ ଏକ ସତନ୍ତ୍ର ପର୍ଯ୍ୟାୟକୁ ଉନ୍ନୀତ କରିଛି । ସୁନାବେଡାର ପ୍ରାକୃତିକ ସୌନ୍ଦର୍ଯ୍ୟ, ଶିଳ୍ପ ବିଭବ, ସାଂସ୍କୃତିକ ବାୟୁମଣ୍ଡଳ ଓ ଶିଳ୍ପନଗରୀର ଆକର୍ଷଣ ଏହି ସ୍ମରଣିକାରେ କେବଳ ଜୀବନ୍ତ ହୋଇ ନାହିଁ, ବରଂ ଏହାକୁ ଏକ ପର୍ଯ୍ୟଟନ କ୍ଷେତ୍ରର ମାନ୍ୟତା ଦେବାରେ ସହାୟକ ହୋଇଛି । କୋରାପୁଟ ଓ ସୁନାବେଡାକୁ ଆଧାର କରି ତାଙ୍କର ଓ ଓଡିଶା ତଥା ବାହାର ବିଦ୍ୱାନ ମାନଙ୍କର ସ୍ମୃତି-ରୋମନ୍ଥନ, ସ୍ମରଣିକାର ନାମକରଣ ଓ ଭିନ୍ନ ଭିନ୍ନ ବିଭାଗ ସହିତ ଆଲେଖ୍ୟ ଓ ସଜ୍ଜୀକରଣ ଏହି ସୃଷ୍ଟି ଦୁଇଟିକୁ ଅତ୍ୟନ୍ତ ମନୋରମ ଓ ଚିତ୍ତାକର୍ଷକ କରାଇ ପାରିଛି, ଯାହାର ଶ୍ରେୟ ଡଃ.ସାହୁଙ୍କର ପ୍ରାପ୍ୟ ।

ଏତଦ୍ ବ୍ୟତୀତ ଡଃ.ସାହୁ ୧୭ ଖଣ୍ଡ ଶିଶୁ-ସାହିତ୍ୟ ପୁସ୍ତକ ୪ ଗୋଟି ଶିଶୁ ସାହିତ୍ୟ ଆଲୋଚନା ଗ୍ରନ୍ଥ ୭ଟି ପୁସ୍ତକ ସଂପାଦନା ଓ ପ୍ରକାଶ କରିଛନ୍ତି, ହିନ୍ଦୀରେ ଗୋଟିଏ, ବଙ୍ଗଳାରେ ଗୋଟିଏ ଓ ଇଂରାଜୀରେ ତିନୋଟି ପୁସ୍ତକ ପ୍ରକାଶ କରିଛନ୍ତି । ଏହି ସବୁ ସାରସତ ସୃଷ୍ଟିର ଆଲୋଚନା ଏଠାରେ ସମ୍ଭବପର ନ ହେଲେ, ଏ କଥା ବିନା



Digitized by srujanika@gmail.com

ଦ୍ୱିଧାରେ କୁହାଯାଇପାରେ ଯେ ଡଃ.ସାହୁ ଓଡିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଏହାକୁ ସମୃଦ୍ଧ କରିଛନ୍ତି । ଗବେଷଣା କ୍ଷେତ୍ରରେ "ଓଡିଆ ମୌଖିକ ଶିଶୁ ସାହିତ୍ୟ" ସନ୍ଦର୍ଭ ରଚନା କରି ସେ କଳାବିଭୂଷଣ ଉପାଧି ପାଇଛନ୍ତି, ଏବଂ ତାଙ୍କର ଦିଗଦର୍ଶନରେ ଦୁଇଜଣ ଗବେଷକ ଶିଶୁ ସାହିତ୍ୟ ଉପରେ ଗବେଷଣା କରି କୃତ କାର୍ଯ୍ୟ ହୋଇଛନ୍ତି ।

: ଚାରି :

ଡଃ.ସାହୁଙ୍କର ସାମଗ୍ରିକ ସାହିତ୍ୟ ସାଧନା ଭିତରେ ଫୁଟି ଉଠେ, ତାଙ୍କର ଏକ ବହୁ ପାର୍ଶ୍ୱିକ ବ୍ୟକ୍ତିତ୍ୱ, ଯାହା ଅନନ୍ୟ । ସାହିତ୍ୟ ସୃଷ୍ଟି ତାଙ୍କ ପାଇଁ ବିଳାସ୍ ନୁହେଁ, ଏହା ଯେପରି ତାଙ୍କ ଜୀବନ । ଯଶ ଓ ଟଙ୍କା ପଇସାର ଲୋଭରେ ସେ ସାହିତ୍ୟ କରି ନାହାନ୍ତି । ସେ ବୁଝିଛନ୍ତି ସାହିତ୍ୟ ଅନାବନା ବଢ଼େ ନାହିଁ, ଏଥିପାଇଁ ସାଧନା କରିବାକୁ ହୁଏ । ଫୁଟିବା ପାଇଁ ଆଗ୍ରହ ପୋଷଣ କରିବାକୁ ହୁଏ, ନିମ୍ନରୁ ଆସ୍ପୃହା, ଉପରୁ ଦିବ୍ୟ କରୁଣା ଫଳରେ ସାହିତ୍ୟ ସୃଷ୍ଟି ହୁଏ । କ୍ରୋଚେ (Croce)ଙ୍କ କଥା ଏଇଠି ମନେପଡେ "It has been forgotten that genius is not some thing that has fallen from heaven" ଅର୍ଥାତ୍ ପ୍ରତିଭାଶାଳୀ ବ୍ୟକ୍ତିମାନେ ସ୍ୱର୍ଗରୁ ମର୍ତ୍ତ୍ୟକୁ (ଏ ମହୀମଣ୍ଡଳ)କୁ ଛିଟିକି ପଡି ନଥାନ୍ତି, ନିରନ୍ତର ସାଧନା ବଳରେ ହିଁ ମଣିଷ ପ୍ରତିଭା ସଂପନ୍ନ ହୁଏ, ପ୍ରତିଭା ସବୁବେଳେ ଆପେକ୍ଷିକ ଯାହାକୁ relative କୁହାଯାଏ । ସଂସାରରେ ଭଳିକି ଭଳି ଫୁଲ, ମଲ୍ଲୀ, ଟଗର, ଗେଣ୍ଡୁ, ହେନା, ମନ୍ଦାର, କରବୀର, ଗଇଛ - ଇତ୍ୟାଦି । ସମସ୍ତେ ଈଶ୍ୱରଙ୍କ ସୃଷ୍ଟି ଅଥଚ ରୂପ ଓ ବାସନା ସେମାନଙ୍କର ଭିନ୍ନ ଭିନ୍ନ । ସେମାନଙ୍କ ଭିତରେ କିଏ ବଡ, କିଏ ସାନ, କିଏ ଛୋଟ, କିଏ ବୃହତ ଓ କିଏ କ୍ଷୁଦ୍ର । ଏହା ବିଚାର କରିବା ଠିକ୍ ନୁହେଁ । ପ୍ରତ୍ୟେକ ଫୁଲ ହେଉ କି ମଣିଷ ହେଉ, ଈଶ୍ୱରଙ୍କ ସୃଷ୍ଟିରେ ସେମାନଙ୍କର ସ୍ଥିତି ଅଛି । କ୍ଷୁଦ୍ର ଫୁଲଟିଏ ମଧ୍ୟ ତା ଜୀବନର ସାର୍ଥକତା ପ୍ରତିପାଦନ କରିପାରେ, ନିଜର ସୁଗନ୍ଧରେ ସେ ପରିବେଶକୁ ମହକାଇ ଦେଇ ପାରେ, ତେବେ ଅସଲ କଥା ହେଉଛି ଫୁଟିବା ପାଇଁ ଉଦ୍ୟମ ଜାରି ରଖିବା, ପରିବ୍ୟାପ୍ତ ହେବା ଓ ଏହି ଫୁଟିବା ପାଇଁ ସାଧନା ଜାରି ରଖିବା ଓ ସେଥିପାଇଁ ବଞ୍ଚି ରହିବା । କିନ୍ତୁ ଏ କଥାକୁ ସମସ୍ତେ ବୁଝି ମଧ ବୁଝନ୍ତି ନାହିଁ । ନିଜର ସମ୍ଭାବନା ଥିଲେ ମଧ୍ୟ ନିଷ୍କ୍ରିୟ ଜୀବନ କଟାନ୍ତି । ଫଳରେ ସେମାନେ ବିକଶିତ ହୁଅନ୍ତି ନାହିଁ । କିନ୍ତୁ ବସନ୍ତ କିଶୋରଙ୍କ ଜୀବନକୁ ଅନୁଧ୍ୟାନ କଲେ ଦେଖାଯିବ ଯେ ସେ ସତତଃ କ୍ରିୟାଶୀଳ, ସୃଷ୍ଟି କର୍ମରେ ସେ ସଦା ନିୟୋଜିତ । ହୀନମନ୍ୟତା ଓ ରୁଗ୍ଣ ମାନସିକତା ତାଙ୍କୁ କେବେ ସ୍ପର୍ଶ କରିନାହିଁ, ନିଜର ଶକ୍ତି ଓ ପ୍ରତିଭା ଉପରେ ବିଶ୍ୱାସ ରଖି ସେ ଓଡିଆ ସାହିତ୍ୟର ସେବା କରିଛନ୍ତି । କଠୋପନିଷଦର ବାଣୀ "ବହୁନାମେବି ପ୍ରଥମୋ, ବହୁ ନାମେ ବି ମଧ୍ୟମଃ । କିଂ ସ୍ୱିଦ୍ୟମସ୍ୟ କର୍ତ୍ତବ୍ୟଂ ଯନ୍ମାୟା ଦ୍ୟେ କରିଷ୍ୟତି" । 'ମୁଁ ଅନେକଙ୍କ ଠାରୁ ଶ୍ରେଷ୍ଠ, ମୋ ଠାରୁ ମଧ୍ୟ କେତେକ



Digitized by srujanika@gmail.com

ଶ୍ରେଷ୍ଠ ଅଛନ୍ତି । କିନ୍ତୁ ମୁଁ ସବୁଠାରୁ ତଳେ ନୁହେଁ । ମୁଁ ମଧ୍ୟ ନିଶ୍ଚିତ ଭାବରେ କିଛି କରିପାରିବି ।' ଇଂରାଜୀରେ ଏହାକୁ ଅନୁବାଦ କଲେ ହେବ । I am greater than Many, some are also greater than me. But I am not below than everybody, I can definitely accomplish some thing if I try. ବସନ୍ତ କିଶୋର ଏହି ବାଣୀରେ ଗଭୀର ବିଶ୍ୱାସୀ, ଫଳରେ ଅଧ୍ୟାପନା ସହିତ ସେ ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟରଚନା ଓ ଗବେଷଣା କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି । ହୁଏତ କବିତା ରଚନା ବେଳେ ପ୍ରଥମେ ପ୍ରଥମେ ଯତିପାତ ହୋଇନାହିଁ, କିନ୍ତୁ ସେ ଲେଖା ଛାଡି ନାହାନ୍ତି ଓ ଶେଷରେ କୃତକାର୍ଯ୍ୟ ହୋଇଛନ୍ତି (ନିଜକଥା, ପୃ-୧ -ବସନ୍ତ କିଶୋର ରଚନାବଳୀ) ତାଙ୍କ ସୃଷ୍ଟି ପ୍ରକ୍ରିୟା ଏବେ ସୁଦ୍ଧା ଗତିଶୀଳ, ତେଣୁ ଗଳ୍ପ ପ୍ରବନ୍ଧ ଓ କବିତା ସୃଷ୍ଟି ଭିତରେ କିଏ ବେଶୀ ପାଠକୀୟ ଶ୍ରଦ୍ଧାଲାଭ କରିବ, ତାହା ଏବେ ହୁଏତ କହିହେବ ନାହିଁ । ତା ବୋଲି ସେ ଲେଖା କାହିଁକି ଛାଡିଦେବେ । ବରଂ ଯିଏ ଯାହା କହୁ-କିଏ ମୋତେ କବି କହୁ କି ନ କହୁ ମୋ ମନରେ ଆତ୍ମସନ୍ତୋଷ ଆସିଲା ଯେ ମୁଁ କିଛି ଲେଖି ପାରିଛି ବୋଲି-ସ୍ରଷ୍ଟା ନିଃସଙ୍କୋଚରେ ପ୍ରକାଶ କରିଛନ୍ତି । ଏଇଠି ଫକୀର ମୋହନଙ୍କ "ଛମାଣ ଆଠଗୁଣ୍ଠ"ରେ ଚରିତ୍ର ଚିତ୍ରଣ ବିଶେଷ କରି ସହଯୋଗୀ ବା ପାର୍ଶ୍ୱନାୟିକାଙ୍କ ଚରିତ୍ର ଚିତ୍ରଣ ପ୍ରସଙ୍ଗ ମନକୁ ଆସେ । ଫକୀର ମୋହନ କହନ୍ତି-ନଦୀରେ ଯେତେ ଜଳ ବୋହିଯାଏ, ସେ ସବୁ ଆମର କୃଷିରେ ଲାଗି ନ ପାରେ, ତେବେ ଜଳର ପ୍ରବାହମାନତାକୁ ସେ ବଜାଇ ରଖେ । ଶିଳ୍ପ ସୃଷ୍ଟି ହେଉ ବା ସାହିତ୍ୟ ସୃଷ୍ଟି ହେଉ ସବୁ ହୁଏତ ଆମ ମନକୁ ଆକର୍ଷିତ କରି ନପାରେ, ତେବେ ଶିଳ୍ପୀର ଭବିଷ୍ୟତ ସୃଷ୍ଟି ପାଇଁ ଏହା କଣ ଭିତ୍ତିଭୂମି ହୋଇ ରହେ ନାହିଁ ? ଡଃ. ସାହୁଙ୍କର ଏପରି ନିରଳସ ସାଧନା ଓ ସାହିତ୍ୟ ପ୍ରତି ଅଙ୍ଗୀକାର ବଦ୍ଧତା ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ବଳିଷ୍ଠ ଉପାଦାନ ।

: ପାଞ୍ଚ :

ସ୍ପଷ୍ଟବାଦିତା ଡଃ.ସାହୁଙ୍କର ଏକ ବିଶେଷ ଗୁଣ । ସତ କହିବାରେ ଯେଉଁ ଆନନ୍ଦ ଅଛି, ମହକ ଅଛି-ସେ କଥା ସତ କହୁଥିବା ବ୍ୟକ୍ତି ହିଁ ଜାଣିପାରେ । ବହୁ ପ୍ରତିଭା ସଂପନ୍ନ ବ୍ୟକ୍ତି ଜୀବନର ଏକ ଉଚ୍ଚସୋପାନରେ ପହଞ୍ଚିବା ପରେ ନିଜର ସଂଘର୍ଷ ଓ ବିଫଳତାର ଚିତ୍ରକୁ ସଂପୂର୍ଣ୍ଣ ଭାବରେ ଏଡେଇ ଦେଇ କୃତିତ୍ୱର କାହାଣୀକୁ ସମସ୍ତଙ୍କ ନିକଟରେ ପ୍ରକାଶ କରିଥାନ୍ତି । ସତେ ଯେପରି ସେମାନଙ୍କ ଜୀବନରେ ବିଫଳତା ନାହିଁ, ସଂଘର୍ଷ ନାହିଁ । ସେମାନେ ସ୍ୱର୍ଗରୁ ସିଧାସିଧା ଏ ମର୍ତ୍ତ୍ୟମଣ୍ଡଳକୁ ଖସି ପଡିଛନ୍ତି । ନିଜ ଜୀବନର ଉଜ୍ଜ୍ୱଳ, ଆଲୋକଯୁକ୍ତ ଦିଗଟିକୁ ସେମାନେ ଆଗକୁ ଦେଖାନ୍ତି । କିନ୍ତୁ ଅନ୍ଧକାରମୟ ଦିଗ ବା ବିଫଳତାର ଚିତ୍ରଟିକୁ ସେମାନେ ଉହ୍ୟ ରଖିଥାଆନ୍ତି । କିନ୍ତୁ ନିଜ ସୃଷ୍ଟି ପ୍ରତି ଅଙ୍ଗୀକାର ବଦ୍ଧତା ପୋଷଣ କରୁଥିବା ସ୍ରଷ୍ଟା ନିଜ ସୃଷ୍ଟି ମଧ୍ୟରେ ନିଜର ବିଫଳତା ଓ ସଂଘର୍ଷର ଚିତ୍ର ଦେବାକୁ ଭୁଲି ନ ଥାଏ । ଯାହାର ଦୃଷ୍ଟାନ୍ତ ଆମେ ପାଉ



Digitized by srujanika@gmail.com

ମହାତ୍ମା ଗାନ୍ଧୀ, ଫକୀରମୋହନ ସେନାପତି ଓ ଗୋଦାବରୀଶ ମିଶ୍ରଙ୍କ ଆତ୍ମ ଜୀବନୀରୁ । ବରଂ ସେମାନଙ୍କ ପ୍ରଦତ୍ତ ସତ୍ୟ କଥା ତାଙ୍କ ସୃଷ୍ଟି ସଂପଦକୁ ଅଧିକ ଆକର୍ଷଣୀୟ ଓ ଚିତ୍ତାକର୍ଷକ କରିଥାଏ । ଆତ୍ମଜୀବନୀ ରଚନା କରି ନଥିଲେ ହେଁ ନିଜ ସୃଷ୍ଟି ମଧ୍ୟରେ ବସନ୍ତ କିଶୋରଙ୍କ ସତ୍ୟ କଥନ ଆମକୁ ଚକିତ କରେ ଯେତେବେଳେ ସାହିତ୍ୟ ସୃଷ୍ଟି ଓ. ସଂପାଦନାରେ ବ୍ୟସ୍ତ ରହିବା ଯୋଗୁ ସେ ମାଟ୍ରିକ ପରୀକ୍ଷାରେ ତୃତୀୟ ଶ୍ରେଣୀରେ (ଗାନ୍ଧି ଡିଭିଜନରେ) ଉତ୍ତୀର୍ଣ୍ଣ ହୁଅନ୍ତି ଓ ସେଥିପାଇଁ ପରିବାରର ସଦସ୍ୟଙ୍କ ଠାରୁ ଗାଳି ଓ ଅପମାନ ପାଆନ୍ତି । (ମୋ ଗବେଷଣା କଥା-ଡଃ.ବସନ୍ତ କିଶୋର ସାହୁ-ପୃଷ୍ଠା-୫ ସଂପାଦନା ଡଃ. ମନୀନ୍ଦ୍ର ମହାନ୍ତି ଓ ଶ୍ରୀ ଲକ୍ଷ୍ମୀକାନ୍ତ ଖୁଣ୍ଟିଆ )

: ଛଅ :

ଡଃ.ସାହୁଙ୍କ ବ୍ୟକ୍ତିତ୍ୱର ଆଉ ଏକ ମୁଖ୍ୟ ଉପାଦାନ ହେଲା କାର୍ଯ୍ୟ ଶୈଳୀରେ ତାଙ୍କର ସରଳତା । ଅନ୍ୟ ଅର୍ଥରେ କହିଲେ ତାଙ୍କର ଅଙ୍ଗୀକାର ବଦ୍ଧତା ଓ କାର୍ଯ୍ୟ ସଂପର୍କୀୟ ଜ୍ଞାନ ଆହରଣ କରିବାରେ ଦକ୍ଷତା ଯାହାକି ତାଙ୍କୁ ଅନ୍ୟମାନଙ୍କ ଠାରୁ ଏକ ଭିନ୍ନ ଆସନରେ ବସାଇଛି ଓ ତାଙ୍କର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛି ।

ଡଃ.ସାହୁ ଏକାଧାରରେ ସାହିତ୍ୟ ସ୍ରଷ୍ଟା, ବିଚାରକ, ଆଲୋଚକ, ସଂପାଦକ ଓ ପ୍ରକାଶକ । ବର୍ତ୍ତମାନ ସମୟରେ ଜଣେ ଯଦି ପ୍ରକୃତରେ ସାହିତ୍ୟର ସେବା କରିବାକୁ ଚାହୁଁଥିବ, ସାହିତ୍ୟ ପଠନ, ଆଲୋଚନା ଓ ପ୍ରକାଶନ ସହ ଗଭୀର ଭାବରେ ଜଡିତ ହେବାକୁ ଇଛା ପୋଷଣ କରୁଥିବ, ତେବେ ତାକୁ ଖାଲି କଳ୍ପନାବାଦୀ ହେଲେ ଚଳିବ ନାହିଁ,ସାହିତ୍ୟ ସୃଷ୍ଟି ଓ ପ୍ରକାଶନରେ ବିଭିନ୍ନ ପର୍ଯ୍ୟାୟ ସହିତ ସଂପର୍କିତ ହେବାକୁ ପଡିବ । ଏକାତ୍ମ ହେବାକୁ ପଡିବ, ଅନ୍ୟ ଅର୍ଥରେ କହିଲେ ସେ ଲେଖାଲେଖି କରିବା ସହିତ, ଏହାର ମୁଦ୍ରଣ-କଳାରେ ଜ୍ଞାନ ଅର୍ଜନ କରିବ, ତେବେ ଯାଇ ସାହିତ୍ୟ ସୃଷ୍ଟି ତା ପାଇଁ ସହଜ ଓ ସଚ୍ଛଳ ହୋଇ ପାରିବ ।

ବସନ୍ତ ବାବୁଙ୍କ କାର୍ଯ୍ୟଧାରା ଓ ଶୈଳୀ ଦେଖିଲେ ଏକଥା ସହଜରେ ଅନୁଭବ କରାଯାଇ ପାରିବ । ବସନ୍ତ ବାବୁ ଖାଲି ଗବେଷଣା କରନ୍ତି ନାହିଁ, ଗଳ୍ପ କବିତା, ଆଲୋଚନା ଓ ପ୍ରବନ୍ଧ ଲେଖନ୍ତି ନାହିଁ କି ସଂପାଦନା କରନ୍ତି ନାହିଁ ସଂଶୋଧନ ଠାରୁ ମୁଦ୍ରଣ ଓ ପ୍ରକାଶନ ପର୍ଯ୍ୟନ୍ତ ସମସ୍ତ ପର୍ଯ୍ୟାୟରେ କାର୍ଯ୍ୟ କରି ସେ ପୁସ୍ତକଟିକୁ ପ୍ରକାଶନ କରି ଦିଅନ୍ତି । ଫଳରେ ନିଜ ରୁଚି ଅନୁଯାୟୀ ପୁସ୍ତକଟି ନିର୍ଭୁଲ ଭାବରେ ପ୍ରକାଶିତ ହୁଏ । ବସନ୍ତ କିଶୋରଙ୍କ ଏହି ସଫଳତା ତାଙ୍କ ସାଙ୍ଗଠନିକ ବ୍ୟକ୍ତିତ୍ୱକୁ ବହୁ ଭାବରେ ନିର୍ମାଣ କରିଥିବାର ଦେଖାଯାଏ । ତା ଛଡା ତାଙ୍କର ଶ୍ରମ ପ୍ରତି ଶ୍ରଦ୍ଧା ଓ ଏକାକୀ କାର୍ଯ୍ୟ ସଂପାଦନା କରିବା ଓ ସଂପାଦନାର ସମସ୍ତ ଦାୟିତ୍ୱ ନିଜ ମୁଣ୍ଡ ଉପରକୁ ନେଇ କାର୍ଯ୍ୟଟିର ସଫଳ ରୂପାୟନ କରିବା ତାଙ୍କ ବ୍ୟକ୍ତିତ୍ୱକୁ ନିଆରା କରି ଗଢ଼ି ତୋଳେ । ଏଇଠି ମନେ ପଡେ



Digitized by srujanika@gmail.com

ସ୍ୱାମୀ ବିବେକାନନ୍ଦଙ୍କ ବାଣୀ " Take the whole responsibility on your shoulder and know that you are the creater of your destiny" -ତୁମକୁ ପ୍ରଦତ୍ତ କାର୍ଯ୍ୟର ସଫଳତା ପାଇଁ ସମସ୍ତ ଦାୟିତ୍ୱ ନିଜ ମୁଣ୍ଡ ଉପରକୁ ନିଅ, ଏବଂ ଦେଖ ଯେ ତୁମେ ତୁମ ରାଜ୍ୟର ଓ ସଫଳତାର ସ୍ରଷ୍ଟା ହୋଇଛ । ବସନ୍ତ ବାବୁଙ୍କ ନିକଟରେ ବା ତାଙ୍କ ସଂପାଦନାରେ ପୁସ୍ତକ ପ୍ରକାଶନ କରାଇଥିବା ସ୍ରଷ୍ଟାମାନଙ୍କର ଏ ପ୍ରକାର ଅନୁଭୂତି ନିଶ୍ଚୟ ହୋଇଥିବ ।

: ସାତ :

ବସନ୍ତ କିଶୋର ଗୁଣଗ୍ରାହୀ । ବର୍ତ୍ତମାନ ଯୁଗରେ ଗୁଣୀ ଲୋକ ହୁଏତ ସୁଲଭ । କିନ୍ତୁ ଗୁଣଗ୍ରାହୀ ଦୁର୍ଲଭ । ଯାହା ପାଖରେ ସାମାନ୍ୟ ପ୍ରତିଭା ଅଛି, ବସନ୍ତ କିଶୋର ତାର ବିକାଶ ପାଇଁ ତାକୁ ପ୍ରୋତ୍ସାହନ ଦେଇ ଆସିଛନ୍ତି । ଫଳରେ ସୁନାବେଡା ଓ କୋରାପୁଟରେ ବହୁ ସାହିତ୍ୟିକ, କବି ସୃଷ୍ଟି ହୋଇଛନ୍ତି । ବହୁ ସ୍ରଷ୍ଟାଙ୍କର ପାଣ୍ଡୁଲିପି, ତାଙ୍କରି ସାହାଯ୍ୟରେ ଲୋକଲୋଚନକୁ ଆସି ପାରିଛି । ଉତ୍କଳ ସାଂସ୍କୃତିକ ପରିଷଦ, ବନଫୁଲ ସାହିତ୍ୟ ପରିଷଦ, ବନପ୍ରଭା ସାହିତ୍ୟ ସଂସଦ, ବର୍ଷା ସାହିତ୍ୟ ସଂସଦ ତଥା କୋରାପୁଟ ଓ ସେମିଳିଗୁଡାର ବହୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନର କାର୍ଯ୍ୟ ସହିତ ସଂପର୍କିତ ହୋଇ ବସନ୍ତ କିଶୋର ଏକ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି । ପୂଜ୍ୟପୂଜାର ଏକ ବଳିଷ୍ଠ ପରଂପରା ତାଙ୍କରି ଉଦ୍ୟମରେ ସୃଷ୍ଟି ହୋଇଛି । " ବନଫୁଲ ସମ୍ମାନ" , 'ବନପ୍ରଭା ସାରସ୍ୱତ ସମ୍ମାନ' ପ୍ରବର୍ତ୍ତନ କରିବାରେ ବଳିଷ୍ଠ ଭୂମିକା ଗ୍ରହଣ କରି ସେ ଓଡିଶାର ସାରସ୍ୱତ ସାଧକ ମାନଙ୍କୁ ସମ୍ମାନିତ କରି ଆସୁଛନ୍ତି । ସେହିପରି ଓଡିଆ ଲେଖକ ପାଠକ ସମ୍ମେଳନ( ୧୯୯୦ ) ର ସଂପାଦକ ଦାୟିତ୍ୱ ଗ୍ରହଣ କରି ୬ଟି ଅଧିବେଶନ କରାଇ ସାରା ଓଡିଶାର ଲେଖକ ଓ ପାଠକମାନଙ୍କୁ ଏକ ମଞ୍ଚରେ ମିଳିତ କରାଇ, ଭାବର ଆଦାନ ପ୍ରଦାନ ସହିତ ବରେଣ୍ୟ ସ୍ରଷ୍ଟାମାନଙ୍କୁ ସମ୍ମାନିତ କରାଇବାରେ ମୁଖ୍ୟ ଭୂମିକା ନିର୍ବାହ କରିଅଛନ୍ତି । ଗବେଷଣା କ୍ଷେତ୍ରରେ ବିଶେଷ କରି ଓଡିଆ ଶିଶୁ ସାହିତ୍ୟର ଗବେଷଣା ଦିଗକୁ ସମୃଦ୍ଧ କରିବାରେ ତାଙ୍କର ଜୀବନ ବ୍ୟାପୀ ସାଧନା ତାଙ୍କୁ ସମସ୍ତଙ୍କ ନିକଟରେ ପରିଚିତ କରାଇଛି । ନିଜେ ମୌଖିକ ଶିଶୁ ସାହିତ୍ୟ ସଂପର୍କରେ ସେ ଗବେଷଣା କରି କଳାବିଭୂଷଣ ଉପାଧିପ୍ରାପ୍ତ ହୋଇଛନ୍ତି ଓ ଦୁଇ ଜଣ ଗବେଷକଙ୍କୁ ମାର୍ଗ ଦର୍ଶନ ଦେବା ସହିତ ଓଡିଆ ଶିଶୁ ସାହିତ୍ୟରେ ଗବେଷଣା କରିଥିବା ଓ ଗବେଷଣାରେ ରୁଚି ରଖିଥିବା ବହୁ ବିଦ୍ୱାନମାନଙ୍କୁ ସେ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ ପରାମର୍ଶ ଦେଇ ଚାଲିଛନ୍ତି । ଡଃ.ସାହୁଙ୍କ ଦିଗଦର୍ଶନରେ ଡଃ ଜ୍ୟୋତିର୍ମୟୀ ରାଜଗୁରୁ " ଓଡିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋର ସାମଲଙ୍କ ଅବଦାନ ଓ ଡଃ.ରାଜକିଶୋର ପାଢୀ ଓଡିଆ ଶିଶୁ ସାହିତ୍ୟକୁ ଡଃ.ଜଗନ୍ନାଥ ମହାନ୍ତିଙ୍କ ଅବଦାନ ଶୀର୍ଷକରେ ଗବେଷଣା କରି ସଫଳ ହୋଇଛନ୍ତି ।" ଡଃ.ସାହୁ ମଧ୍ୟ ତାଙ୍କର ଗୁରୁ କୁସୁପୁରର ସାରସ୍ୱତ ପ୍ରତିଭା କବି



Digitized by srujanika@gmail.com

ନନ୍ଦ କିଶୋର ସାମଲଙ୍କ ସାହିତ୍ୟକୃତିକୁ ନେଇ ପ୍ରକାଶିତ "ନନ୍ଦକିଶୋର ରଚନାବଳୀ" ର ସଂପାଦନା କରିଛନ୍ତି । ଓଡିଶାର ଅନ୍ୟ ଜଣେ ଶିକ୍ଷାବିତ୍, ସାରସ୍ୱତ ସାଧକ, ଶିଶୁ ସାହିତ୍ୟର କାଳଜୟୀ ସ୍ରଷ୍ଟା ଜଗନ୍ନାଥ ମହାନ୍ତିଙ୍କ ସାରସ୍ୱତ ସାଧନା ଓ ସାମଗ୍ରିକ କୃତିକୁ ନେଇ ପ୍ରକାଶିତ ପୁସ୍ତକ "ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି" ତାଙ୍କ ଦ୍ୱାରା ସଂପାଦିତ ହୋଇଛି । ନିଜ ଗବେଷଣାର ଦିଗଦର୍ଶକ ଓଡିଆ ଶିଶୁ ସାହିତ୍ୟର ପ୍ରଥମ ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ଉଦ୍ଦେଶ୍ୟରେ ସମର୍ପିତ ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥର ସମ୍ପାଦନା ଦାୟିତ୍ୱ ସେ ନିର୍ବାହ କରି ନିଜ ଗୁରୁଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ସହିତ ପୂଜ୍ୟପୂଜାର ପରମ୍ପରାକୁ ପୁଷ୍ଟ କରିଛନ୍ତି । ମୋର ମନେହୁଏ ଡଃ ସାହୁ ମାତୃଭାଷା, ମାତୃଭୂମି, କର୍ମଭୂମି ଓ ଗୁରୁପୂଜା ପ୍ରତି ନିଜ ସାହିତ୍ୟ ସାଧନାକୁ ଉତ୍ସର୍ଗ କରିଛନ୍ତି । ଆଉ ସଂକଳ୍ପ ଗ୍ରହଣ କରିଛନ୍ତି ଶେଷ ପର୍ଯ୍ୟନ୍ତ ଗବେଷଣା ବା ଅନୁସନ୍ଧିତ୍ସା ମନୋବୃତ୍ତିକୁ ସେ ବଜାୟ ରଖିବେ (ମୋ ଗବେଷଣା କଥା- ପୃ-୬୯ରେ ଡଃ.ସାହୁଙ୍କ ଅଭିଳାଷ) ।

ଏଠାରେ ଡଃ.ସାହୁଙ୍କର ଓଡିଆ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ସାଂଗଠନିକ ଦାୟିତ୍ୱ ଗ୍ରହଣ କରିବାର ଯେଉଁ ଉତ୍ସର୍ଗୀକୃତ ମନୋଭାବ ତାହାର ପ୍ରଶଂସା ନ କରି ରହି ହୁଏ ନାହିଁ । ଆଜି ଚାରିଆଡେ ଓଡିଆ ଭାଷାର ସୁରକ୍ଷା ଓ ବିକାଶ ପାଇଁ କୁମ୍ଭୀର କାନ୍ଦଣା, ସମସ୍ତେ କହୁଛନ୍ତି, ଓଡିଆ ଭାଷାର ବିକାଶ କର, କିନ୍ତୁ କ'ଣ କଲେ ଏ ଭାଷା, ଏ ସାହିତ୍ୟ ରହିବ ସେ କଥା କେହି କହୁ ନାହିଁ, ଖାଲି ଭାଷଣ, ଆଉ ଭାଷଣ- ଏଣେ ସରକାରୀ ସ୍ତରରେ ଓଡିଆ ଭାଷା ଅବହେଳିତ, ଓଡିଆ କହିବା, ଓଡିଆ ପଢିବା- ଆଜି ନିମ୍ନ ବା ଅବହେଳିତ ଶ୍ରେଣୀର କାମ ବୋଲି ଗ୍ରହଣ କରାଯାଉଛି । କବି ଓ ସ୍ରଷ୍ଟା, କବିତା ଲେଖୁଛି-ପ୍ରକାଶନ କରି ଆତ୍ମ ସନ୍ତୋଷ ଲାଭ କରୁଛି, ଆଶା କରୁଛି ଅନ୍ୟମାନେ ସଂଗଠନ ଦାୟିତ୍ୱ ତୁଲାଇବେ । ସେ କେବଳ ସୃଷ୍ଟି କରି ଚାଲିଥିବ । ଗଂଗ ମଞ୍ଚରେ ସମ୍ବର୍ଦ୍ଧିତ ହେଉଥିବ । ସେ କିନ୍ତୁ ତଳକୁ ଓହ୍ଲାଇବ ନାହିଁ । ମାତୃଭାଷାର ପ୍ରଚାର ଓ ପ୍ରସାର ପୁଣି ବିକାଶ ପାଇଁ ସଂଗଠନରେ ସାମିଲ ହେବ ନାହିଁ । କିନ୍ତୁ ବସନ୍ତ ବାବୁଙ୍କ କର୍ମଧାରାକୁ ନିରପେକ୍ଷ ଭାବରେ ବିଚାର କଲେ ତାଙ୍କୁ ଧନ୍ୟବାଦ ଦେବାକୁ ମନେ ହୁଏ । ଓଡିଆ ଭାଷାର ସୁରକ୍ଷା ପାଇଁ ଫକୀର ମୋହନ ସେନାପତି-ଯେଉଁ ଭଳି ଭୂମିକା ଗ୍ରହଣ କରିଥିଲେ । ଆଜି ଆମ କବି ଓ ସାହିତ୍ୟିକ ମାନେ ସେହିଭଳି ଭୂମିକା ଗ୍ରହଣ କରିବା ଉଚିତ ! ସାହିତ୍ୟ ସୃଷ୍ଟି ସହ ସଂଗଠନରେ ମଧ ସାମିଲ ହେବା ଜରୁରୀ । ଫକୀର ମୋହନ ଜାତୀୟ ସାହିତ୍ୟ ଉନ୍ନତି କଳ୍ପେ ଶିକ୍ଷିତ ଲୋକମାନେ ୪ ଗୋଟି ଉପାୟ ଅବଲମ୍ବନ କରିବା ଉଚିତ ବୋଲି ଆହ୍ୱାନ ଦେଉଥିଲେ । ସେଗୁଡିକ ହେଲା -( ୧ ) ଜାତୀୟ ସାହିତ୍ୟ ପାଠକର ( ୨ ) ପାଠ କରାଅ (୩) ଲେଖ (୪) ଲେଖାଅ (ଜାତୀୟ ସାହିତ୍ୟର ସ୍ୱରୂପ- ଫକୀର ମୋହନ ସେନାପତି, ଫକୀର ମୋହନ ପରିକ୍ରମା-ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ)

ଡଃ. ସାହୁ-ମୋ ବିଚାରଧାରାରେ ଫକୀର ମୋହନଙ୍କ ଆହ୍ୱାନ ଦ୍ୱାରା



Digitized by srujanika@gmail.com

ଅନୁପ୍ରେରିତ, ଫକୀର ମୋହନ ସେନାପତିଙ୍କ ପରି ତାଙ୍କର କାର୍ଯ୍ୟ ଶୈଳୀ ଓଡିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ ଯେ ଏକ ମହତ ଉଦ୍ୟମ, ଏଥିରେ ଅତିରଂଜନ ନାହିଁ ।

ଆଲୋଚନାର ଶେଷ ପର୍ଯ୍ୟାୟରେ ଡଃ.ସାହୁଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କର ଉଲ୍ଲେଖ ମୋ ବିଚାରରେ ଅପ୍ରାସଙ୍ଗିକ ନୁହେଁ । ଡଃ. ସାହୁଙ୍କ ସହିତ ମୋର ଆନ୍ତରିକତା ଖୁବ୍ ବେଶୀ । ସେ ମୋର ଅତ୍ୟନ୍ତ ଶ୍ରଦ୍ଧାର ପାତ୍ର, ସମଗୋତ୍ରୀ, ଦରଦୀବଂଧୁ, ବୟସରେ ମୋ ଠାରୁ ସାନ କିନ୍ତୁ ସାଧନା ଓ ସିଦ୍ଧିରେ ବହୁ ଉର୍ଦ୍ଧ୍ୱରେ । ମୋ ବିଚାରରେ ସେ ମୋର friend philospher and guide । ବସନ୍ତ ବାବୁଙ୍କ ସହିତ ସାହିତ୍ୟ ଆଲୋଚନା ବହୁଥର ହୋଇଛି । ଦାମନଯୋଡି ମହାବିଦ୍ୟାଳୟରେ ଅଧକ୍ଷ ଥିବା ବେଳେ ୧୯୯୮ରୁ ୨୦୦୮ ମସିହା ରହଣି ସମୟରେ ପ୍ରାୟ ଅଧିକାଂଶ ସାହିତ୍ୟ-ସଭାରେ ବସନ୍ତ ବାବୁଙ୍କୁ ମୁଁ ଭେଟିଛି । ଓଡିଆ ସାହିତ୍ୟର ବିଭିନ୍ନ ବିଭାଗ, କାବ୍ୟ ଓ କବିଙ୍କ ସଂପର୍କରେ ଆମେ ଆଲୋଚନା କରିଛୁ । ବହୁବାର ତାଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ତାଙ୍କ ମାର୍ଗଦର୍ଶନରେ ପରିଚାଳିତ ସାହିତ୍ୟାନୁଷ୍ଠାନ 'ବନପ୍ରଭା' ଓ ଏରୋନଟିକସ୍ ମହାବିଦ୍ୟାଳୟର ସାହିତ୍ୟ ସମାଜର ଉତ୍ସବ ମାନଙ୍କରେ ଆଲୋଚକ ଭାବରେ ଯୋଗ ଦେଇ ସୁନାବେଡା ଓ କୋରାପୁଟର ବହୁ ବିଦ୍ୱାନ୍ କବି ଓ ସାହିତ୍ୟିକ ମାନଙ୍କ ସାନିଧ୍ୟ ଲାଭ କରି ନିଜକୁ ଧନ୍ୟ କରିଛି । ମୋର ଭାଷଣ ଶୁଣିବା ପାଇଁ ବସନ୍ତ ବାବୁଙ୍କ ଆଗ୍ରହକୁ ମୁଁ ଲକ୍ଷ୍ୟ କରିଛି । ସବୁଠି ମୁଁ ଦେଖିଛି ଓ ଅନୁଭବ କରିଛି ତାଙ୍କର ଜିଜ୍ଞାସାକୁ । ଡଃ. ସାହୁ ମାପି-ଚୁପି କଥା କୁହନ୍ତି । ସ୍ୱାଭିମାନୀ, କାହାରିକୁ ଅଯଥାରେ ଆଘାତ ଦେବା ତାଙ୍କ ନୀତିବିରୁଦ୍ଧ । ଯେଉଁ ବିଷୟରେ ତାଙ୍କର ଗଭୀର ପ୍ରବେଶ ନାହିଁ, ସେ ବିଷୟରେ ସେ ତର୍କ ବିତର୍କକୁ ଯାଆନ୍ତି ନାହିଁ । କିନ୍ତୁ ଆଲୋଚନାକୁ ମନ ଦେଇ ଶୁଣନ୍ତି । ନିଜର ସୀମା ଓ ପରିସର ସଂପର୍କରେ ସେ ଖୁବ୍ ସଚେତନ ତେବେ କୌଣସି ବିଷୟରେ ନୂତନ ତଥ୍ୟ ଓ ଆଲୋଚନାକୁ ସେ ଖୁବ୍ ମନ ଦେଇ ଗ୍ରହଣ କରନ୍ତି । ଶିଶୁ ସାହିତ୍ୟ ସଂପର୍କରେ ଗବେଷଣା କରିଥିଲେ ମଧ ସେହି ବିଷୟରେ ନିଜକୁ ଆବଦ୍ଧ ନ ରଖି ଓଡିଆ ସାହିତ୍ୟର ପ୍ରସାରିତ ଦିଗ୍‌ବଳୟକୁ ସ୍ପର୍ଶ କରିବାକୁ ସେ ସତତ ଉଦ୍ୟତ । ସେ ସୁନ୍ଦର କହନ୍ତି, କିନ୍ତୁ ତାଙ୍କର ଭାଷଣ ସଂକ୍ଷିପ୍ତ ଓ ସାରଗର୍ଭକ । କହିବା ଅପେକ୍ଷା ଲେଖିବା, ସୃଷ୍ଟି କରିବା ଓ ଭାବଧାରାକୁ ଲିପିବଦ୍ଧ କରାଇବାରେ ସେ ଆଗ୍ରହୀ । ମୋର ମନେ ଅଛି ଥରେ ଏକ ଆଲୋଚନା ଚକ୍ରରେ ମୁଁ ମୁଖ୍ୟବକ୍ତା ଭାବରେ ଯୋଗଦେଇ ପ୍ରାୟ ଘ-୧/୩୦ମିନିଟର ମୋର ଦୀର୍ଘ ଭାଷଣଟି ଦେଇସାରିବା ପରେ ମଞ୍ଚ ଉପରୁ ତଳକୁ ଆସିଥାଏ । ସେ ଦିନର ସାରସ୍ୱତ କାର୍ଯ୍ୟକ୍ରମ ସରିଯାଇଥାଏ । କବି ଓ ସାହିତ୍ୟିକ ବଂଧୁମାନେ ସ୍ନେହ-ସମ୍ଭାଷଣ ପୂର୍ବକ ପରସ୍ପର ଠାରୁ ବିଦାୟ ନେଉଥାନ୍ତି । ବସନ୍ତ ବାବୁ ନିକଟକୁ ଆସି କହିଲେ-ଆପଣ ଆଜି ଯାହା କହିଲେ ତାକୁ ଯଦି ଟିକିଏ ସଜେଇ ଦେବେ ତାହା ଗୋଟିଏ ଉତ୍କୃଷ୍ଟ ପ୍ରବନ୍ଧ ହେବ-ଭାଷଣ ତ ଖୁବ୍ ଭଲ ହେଲା, ଆଲୋଚନା ପ୍ରବନ୍ଧ ରୂପରେ ନ ରହିଲେ ଆପଣଙ୍କ କଥା



Digitized by srujanika@gmail.com

ପବନରେ ଭାସିଯିବ-ଓଡିଆ ସାହିତ୍ୟ ଏହି ଆଲୋଚନାରୁ ଲାଭବାନ ହୋଇ ପାରିବ ନାହିଁ । ଆପଣ ଖାଲି କୁହନ୍ତୁ ନାହିଁ ଲେଖନ୍ତୁ ମଧ୍ୟ । ସେଦିନ ପରେ ବସନ୍ତ ବାବୁଙ୍କ ସେହି କଥାକୁ ମୁଁ ବାରମ୍ବାର ମନେ ପକାଇଛି-ନାନାଦି କାରଣ ଓ ଦୃଢ ସଂକଳ୍ପର ଅଭାବ ଯୋଗୁ ଶହ ଶହ ଭାଷଣ ଓ ଆଲୋଚନା, ମୋର ଦୀର୍ଘ ଦିନର ପ୍ରସ୍ତୁତି ଓ ସାଧନା ଆଜି ଲିଖିତ ରୂପରେ ମୋ ପାଖରେ ନାହିଁ । ବହୁବାର ଏ କଥା ଭାବି ମୁଁ ଲଜ୍ଜିତ ହୋଇଛି । ବସନ୍ତ ବାବୁଙ୍କ ପରାମର୍ଶକୁ କାମରେ ଲଗାଇ ନ ପାରି ମୁଁ ଅନୁତପ୍ତ । ବ୍ୟକ୍ତିଗତ ଜୀବନରେ ମୋର ବଡପୁଅ ବିବେକାନନ୍ଦର ବିୟୋଗରେ ମର୍ମାହତ ହୋଇ ବସନ୍ତ ବାବୁ ମୋତେ ସାନ୍ତ୍ୱନା ଦେଇଛନ୍ତି । ମୋ ପରି ଜଣେ ଅତି ସାଧାରଣ ଲୋକକୁ ଆନୁଷ୍ଠାନିକ ବିଦାୟ ସମ୍ବର୍ଦ୍ଧନା ଅନୁଷ୍ଠାନ ଦେବା ପୂର୍ବରୁ ବନପ୍ରଭା ସାହିତ୍ୟ ସଂସଦ ତରଫରୁ ସେ ମୋତେ ସମ୍ବର୍ଦ୍ଧିତ କରିଛନ୍ତି । ତାଙ୍କ ପ୍ରକାଶନୀ ରଚନାର ବହିଟିଏ ଆଲୋକ ଦେଖିବା ମାତ୍ରେ ସେ ମୋ ପାଖକୁ ପଠାଇବାରେ ହେଳା କରିନାହାନ୍ତି । ଆଜି ଦୂରରେ ଥିଲେ ବି ମୁଁ ବସନ୍ତ ବାବୁଙ୍କ ସ୍ନେହ ଓ ଶ୍ରଦ୍ଧାକୁ ମନେ ପକାଉଛି । ଆଉ ଗୋପବଂଧୁଙ୍କ ବାଣୀ - "ବଂଧୁ ତୁ ତ ଅନୁଭବ ନୋହୁଁ - ସ୍ନେହ ଜାତ ସୁଖ, ସେ ବିଚ୍ଛେଦ ଦୁଃଖ, ଯେ ଜାଣେ ସେ ଆସି କହୁ" - କୁ ସ୍ମରଣ କରୁଛି । ଆଉ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛି-ବସନ୍ତ କିଶୋରଙ୍କ ସାହିତ୍ୟ ସାଧନା ଅତୁଟ ରହୁ ।



ପ୍ଲଟ ନଂ -୧୦୫/୮୮୪
ଅନନ୍ତ ବିହାର, ପୋଖରୀପୁଟ

ସହାୟକ ଗ୍ରନ୍ଥସୂଚୀ :

୧ - ବସନ୍ତ କିଶୋର ରଚନାବଳୀ( ୨ୟ ଖଣ୍ଡ)
୨ - ମୁଁ କିପରି ଗବେଷଣା କଲି
୩- ବସନ୍ତ କିଶୋରଙ୍କ ପ୍ରକାଶିତ ପୁସ୍ତକ ସମୂହ
୪- ଫକୀର ମୋହନ ପରିକ୍ରମା (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ)



Digitized by srujanika@gmail.com

# ସେ ଏକ ସାଧନା ସିଦ୍ଧ ପ୍ରତିଭା

## ନଦିୟା ବିହାରୀ ମହାନ୍ତି(ବଡ଼ଭାଇ)

ଡକ୍ଟର ବସନ୍ତ କିଶୋର ସାହୁ ଓଡିଶାର ବରେଣ୍ୟ ଶିଶୁ ସାହିତ୍ୟିକ ନନ୍ଦ କିଶୋର ବଳ, ନନ୍ଦ କିଶୋର ସାମଲଙ୍କ ଜନ୍ମଭୂମି ତଥା ସାଧନାର ତୀର୍ଥଭୂମି କୁସୁପୁର ଗ୍ରାମରେ ଜନ୍ମ ଗ୍ରହଣ କରି ସେଇ ପବିତ୍ର ଭୂମିରୁ ଶିଶୁସାହିତ୍ୟ ସୃଷ୍ଟି ଦିଗରେ ପ୍ରେରଣା ଲାଭ ସହ ମୀନାବଜାର ସଂଗଠନ ଓ ପତ୍ରିକାର ପରିଚାଳକ ତଥା ସଂପାଦକ ଜହ୍ନୁରୀଭାଇ ଶ୍ରୀ ରାମ ପ୍ରସାଦ ମହାନ୍ତିଙ୍କ ଦିଗ୍‌ଦର୍ଶନ, କଟକ ଆକାଶବାଣୀର ଶିଶୁ କାର୍ଯ୍ୟକ୍ରମ ଓ ପ୍ରାଥମିକ ଶିକ୍ଷା ପାଇଁ ପ୍ରସାରିତ କାର୍ଯ୍ୟକ୍ରମରେ ପ୍ରଚାରିତ ଶିଶୁ ସାହିତ୍ୟର ଗଳ୍ପ, କବିତା, ନାଟକ, ରୂପକ ବିଭାଗ ଗୁଡିକରେ କିଶୋର ବୟସରୁ ଜଣେ ଶିଶୁ ସାହିତ୍ୟ ସ୍ରଷ୍ଟା ଭାବରେ ଲେଖନୀ ଚାଳନା ଆରମ୍ଭ କରି ପାଠକ ମହଲରେ ବିଶେଷ ଆଦୃତ ହୋଇଛନ୍ତି ।

ପରବର୍ତ୍ତୀ ଜୀବନରେ ଆଜି ସେ ଜଣେ ଖ୍ୟାତନାମା ଓଡିଆ ଅଧ୍ୟାପକ ଭାବେ, ଓଡିଆ ଭାଷା ସାହିତ୍ୟକୁ ନିଜର ଗବେଷଣାତ୍ମକ ଦୃଷ୍ଟିକୋଣରୁ ବିଚାର କରି ସାମଗ୍ରିକ ଭାବରେ ସମୃଦ୍ଧ କରିବା ସହ 'ଓଡିଆ ମୌଖିକ ଶିଶୁ ସାହିତ୍ୟ' ସଂପର୍କରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରୀ ଲାଭ କରିଛନ୍ତି । ତାଙ୍କ ଲିଖିତ 'ଓଡିଆ ଶିଶୁ ସାହିତ୍ୟ ଆଲୋଚନା', 'ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ', 'ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ' ତଥା ଇଂରାଜୀ ଭାଷାରେ ପ୍ରକାଶିତ 'who's who in oriya children's literature' ପୁସ୍ତକଗୁଡିକ ଶିଶୁ ସାହିତ୍ୟ କ୍ଷେତ୍ରରେ ଆଗାମୀ ଦିନର ଗବେଷକମାନଙ୍କୁ ଦିଗ୍‌ଦର୍ଶନ ଦେବାରେ ଗୋଟିଏ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ତଥ୍ୟଧର୍ମୀ ପୁସ୍ତକ ।

ଏହା ବ୍ୟତୀତ ବିଶେଷ ଭାବରେ ଶିଶୁ ଓ କିଶୋର ମାନଙ୍କୁ ଆନନ୍ଦ ଓ ଜ୍ଞାନ ଅର୍ଜ୍ଜନ ଦିଗରେ ଆଲୋକ ଯୋଗାଇ ଏ ଦେଶର ସୁନାଗରିକ ଭାବେ ପ୍ରତିଷ୍ଠିତ କରିବା ଲାଗି ତାଙ୍କ ରଚିତ ଜୀବନଧର୍ମୀ ପୁସ୍ତକ " ଏ ମାଟିର ମଣିଷ, ପରିବେଶ ସୁରକ୍ଷା ଦିଗରେ ପ୍ରୋତ୍ସାହନ ଯୋଗାଇବାକୁ " ଗଛ ଆଂମ ଜୀବନ" ବ୍ୟତୀତ ସୁଖପାଠ୍ୟ ଶିଶୁ ପୁସ୍ତକ 'ଉଦୁ ଉଦୁମା', 'ଖରା ବରଷା ଗୀତ', 'ଇଞ୍ଚୁଡି ମିଞ୍ଚୁଡି', 'ଅଗଡ ବଗଡ ଝାଇଁକି ଝୁମ୍ପା' ଭଳି ତାଙ୍କର ଲେଖନୀ ନିସୃତ ବହୁ ଗଳ୍ପ, କବିତା, ଏକାଙ୍କିକା ପ୍ରଭୃତି ଶିଶୁ ଉପଯୋଗୀ ରଚନାବଳୀକୁ ସେ ତାଙ୍କର ବସନ୍ତ କିଶୋର ରଚନାବଳୀ ପୁସ୍ତକରେ ସାଇତି



Digitized by srujanika@gmail.com

ଦେଇଛନ୍ତି । ଏହି ପୁସ୍ତକ ପାଠ କଲେ ବସନ୍ତ ବାବୁଙ୍କର ଶିଶୁ ସାହିତ୍ୟ କ୍ଷେତ୍ରରେ ତାଙ୍କର ମୌଳିକ ଚିନ୍ତାଧାରାର ପରିଚୟ ମିଳେ ।

ଶିଶୁ ପତ୍ରିକା 'ବଗଲା ବଗୁଲୀ' ସଂପାଦନାରେ ସେ ମୁଖ୍ୟ ଅଂଶ ଗ୍ରହଣ କରିବା ସହ ୫୦ରୁ ଉର୍ଦ୍ଧ୍ୱ ଅନ୍ୟାନ୍ୟ ପତ୍ର ପତ୍ରିକା ସଂପାଦନାରେ ସେ ତାଙ୍କର ନିଜସ୍ୱ କୌଶଳର ସ୍ୱାକ୍ଷର ପ୍ରତିଷ୍ଠା କରି ପାରିଛନ୍ତି ।

ଏହା ବ୍ୟତୀତ ଓଡ଼ିଶାର ଶିଶୁ ସାହିତ୍ୟ କ୍ଷେତ୍ରରେ ଗବେଷକ ଭାବେ ପ୍ରତିଷ୍ଠା ଲାଭ କରିଥିବା ମହାନ ଗବେଷକ ଓ ମାର୍ଗଦର୍ଶକ ମାନଙ୍କର ଅଭିନନ୍ଦନ ଗ୍ରନ୍ଥ ରଚନାରେ "ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ", "ସାରସ୍ୱତ ସାଧକ ଡଃ. ଜଗନ୍ନାଥ ମହାନ୍ତି" ତଥା "ନନ୍ଦ କିଶୋର ସାମଲ ରଚନାବଳୀ" ପୁସ୍ତକଗୁଡ଼ିକ ଉଲ୍ଲେଖ ଯୋଗ୍ୟ ।ଏଥିସହ ତାଙ୍କର ଅନ୍ୟ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷାରେ ମଧ୍ୟ କେତୋଟି ପୁସ୍ତକ ମଧ୍ୟ ପ୍ରକାଶ ପାଇଛି ।

ଶିଶୁ ସାହିତ୍ୟର ସମୃଦ୍ଧି ସହ, ଜୟପୁର ଆକାଶବାଣୀ କେନ୍ଦ୍ରରୁ ପ୍ରଚାରିତ ଓ ପ୍ରସାରିତ ତାଙ୍କର ଧାରାବାହିକ "କାହାକୁ କହିବା" କାର୍ଯ୍ୟକ୍ରମର ଲେଖାଗୁଡ଼ିକ ଏବେ ପୁସ୍ତକ ଆକାରରେ ପ୍ରକାଶ ପାଇଛି । ଏହା ଆବାଳବୃଦ୍ଧ ବନିତାଙ୍କୁ ସାମାଜିକ ତ୍ରୁଟି ବିଚ୍ୟୁତି ସୁଧାରିବା ପାଇଁ ଏକ ସୁଖପାଠ୍ୟ, ବ୍ୟଙ୍ଗଧର୍ମୀ ନିର୍ଭୀକ ଚେତାବନୀ ।

ଏହି ଭଳି ଜଣେ ବରେଣ୍ୟ ଶିଶୁ ସାହିତ୍ୟିକ ତଥା ଆଦର୍ଶ ଅଧ୍ୟାପକ, ଗବେଷକ, ଭାବରେ ସେ ବହୁ ସାହିତ୍ୟ, ସଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସଂବର୍ଦ୍ଧିତ ଓ ସମ୍ମାନିତ । ଜଣେ ଶୁଦ୍ଧ, ସିଦ୍ଧ ସାଧକ ଭାବେ ଡଃ ବସନ୍ତ କିଶୋର ସାହୁ ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା ପାଇଁ ଶୈଶବରୁ ଆଗାମୀ ଦିନର ମଣିଷମାନଙ୍କୁ ଶିଶୁ ସାହିତ୍ୟ ମାଧ୍ୟମରେ ସୁନାଗରିକ କରି ଗଢ଼ି ତୋଳିବା ପାଇଁ ଯେଉଁ ବାର୍ତ୍ତା ଦେଇ ଆସିଛନ୍ତି, ମୋର ମନେ ହୁଏ ସେଗୁଡ଼ିକ ସେମାନଙ୍କର ଜୀବନ ଯାତ୍ରା ପଥକୁ ଜୟଯୁକ୍ତ କରିଚାଲିବ ଏଥିରେ ସନ୍ଦେହ ନାହିଁ ।

ତାଙ୍କର ସାହିତ୍ୟିକ ପ୍ରତିଭା କେବଳ ତାଙ୍କ ଅଧ୍ୟାପନା ସ୍ଥଳୀ କୋରାପୁଟ ସ୍ଥିତ ସୁନାବେଡ଼ାସ୍ଥ ଏରୋନଟିକସ୍ କଲେଜ ପରିସର ମଧ୍ୟରେ ଆବଦ୍ଧ ନ ହୋଇ ରାଜ୍ୟ ଓ ରାଜ୍ୟ ବାହାରେ ଜାତୀୟ ସ୍ତରରେ ଆଦୃତ । ଆଗାମୀ ଦିନ ଏହି ସିଦ୍ଧ ସାଧକଙ୍କ ଲେଖନୀ ମୁନରୁ ଅଧିକ ଜ୍ଞାନ ଉଦ୍ଦୀପକ ପୁସ୍ତକ ଜନ୍ମଲାଭ କରି ଏ ଜାତିକୁ ଓଡ଼ିଆ ଭାଷାର ପ୍ରସାର ଦିଗରେ ସହାୟକ ହେଉ-ଏହାହିଁ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ପ୍ରାକ୍ତନ ଶିଶୁ କାର୍ଯ୍ୟକ୍ରମ ପ୍ରଯୋଜକ
ଆକାଶବାଣୀ, କଟକ



Digitized by srujanika@gmail.com

# କିଶୋର-କିଶୋର-ବସନ୍ତ କିଶୋର

ଡକ୍ଟର ବିଜୟାନନ୍ଦ ସିଂହ

ଡକ୍ଟର ବସନ୍ତ କିଶୋର ସାହୁ ଓଡ଼ିଆ ସାହିତ୍ୟରେ ବେଶ୍ ସୁପରିଚିତ । ଦୀର୍ଘ ଚାଳିଶ ବର୍ଷରୁ ଉର୍ଦ୍ଧ୍ୱ କାଳ ଧରି ସେ ଲେଖନୀ ଚାଳନା କରି ଆସୁଛନ୍ତି । ସାହିତ୍ୟ ରଚନା ତାଙ୍କର ନିଶା । ବତିଶ ଖଣ୍ଡ ପାଖାପାଖି ପୁସ୍ତକ ତାଙ୍କର ପ୍ରକାଶିତ ହୋଇସାରିଲାଣି । କବିତା ଲେଖାରୁ ବସନ୍ତ କିଶୋରଙ୍କ ସାହିତ୍ୟର ଶୁଭାରମ୍ଭ-ତାହା ପୁଣି ଶିଶୁ ସାହିତ୍ୟରୁ । ସେ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଆସୁଛନ୍ତି । ତାଙ୍କର ପ୍ରଥମ ଲେଖା ଶିଶୁ କବିତା ପ୍ରକାଶିତ ହୋଇଥିଲା ଦୈନିକ 'ମାତୃଭୂମି'ର କିଶୋର ଫଉଜ ବିଭାଗରେ । ସଂପ୍ରତିକ ଶିଶୁ ସାହିତ୍ୟ କ୍ଷେତ୍ରରେ ବସନ୍ତ କିଶୋର ସୁପ୍ରତିଷ୍ଠିତ । ସେ ଚିର କିଶୋର । ଶିଶୁଟି ପରି ତାଙ୍କ ବ୍ୟକ୍ତିତ୍ୱ । ଶିଶୁ ପରି ସେ ସରଳ ଦେଖାଯାଆନ୍ତି-ସେମିତି ତାଙ୍କ କଥାବାର୍ତ୍ତା-ଆଚରଣ, ବ୍ୟବହାର ମଧ ଶିଶୁ ପରି ସରଳ । 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ସଂପର୍କରେ ସେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରୀ ଲାଭ କରିଛନ୍ତି ।

ବସନ୍ତ କିଶୋରଙ୍କ ଜନ୍ମସ୍ଥାନ-ଓଡ଼ିଆ ସାହିତ୍ୟ ସଂସ୍କୃତିର ପୁଣ୍ୟଭୂମି-ମାହାଙ୍ଗା ଅଞ୍ଚଳର କୁସୁପୁର ଗାଁ । କୁସୁପୁର ନାଁ ଓଡ଼ିଶା ଇତିହାସରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଲାଭ କରିଛି । କୁସୁପୁର ଗାଁରେ ଜନ୍ମଲାଭ କରିଥିବା ପଲ୍ଲୀକବି ନନ୍ଦକିଶୋର ବଳ, ଶିଳ୍ପୀଗୁରୁ ବିମ୍ବାଧର ବର୍ମା, ନୀତନିଷ୍ଠ ରାଜନୀତିଜ୍ଞ ପୂର୍ବତନ ସଂସଦ ପ୍ରଦ୍ୟୁମ୍ନ ବଳ, ବିଶିଷ୍ଟ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ ପ୍ରମୁଖ ଓଡ଼ିଆ ସାହିତ୍ୟ ସର୍ବୋପରି ଓଡ଼ିଆ ଜାତୀୟ ଜୀବନକୁ ସମୃଦ୍ଧ କରିଛନ୍ତି । କୁସୁପୁର ଗାଁ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । ବିରୂପା ନଦୀ କୂଳରେ ଗଢ଼ି ଉଠିଥିବା ଏହି ପ୍ରସିଦ୍ଧ ଗାଁ ନିକଟରେ ବିଶ୍ୱ ପ୍ରସିଦ୍ଧ ଲଳିତଗିରି, ଉଦୟଗିରି, ରତ୍ନଗିରି ପାହାଡ଼ । ପ୍ରାକୃତିକ ବିଭବ ମଣ୍ଡିତ ଏହି ଗାଁରେ ଜନ୍ମ ହୋଇ ନିଶ୍ଚୟ ଗୌରବାନ୍ୱିତ ହୋଇଛନ୍ତି ବସନ୍ତ କିଶୋର ।

ନିଜ ଭୂମିର ମହକରେ ମହକିତ ବସନ୍ତ କିଶୋର ସାହିତ୍ୟ ମନସ୍କ ଛାତ୍ରାବସ୍ଥାରୁ । ଆମ ଅଞ୍ଚଳର ବିଭିନ୍ନ ସମୟରେ ସାରସତ କାର୍ଯ୍ୟକ୍ରମମାନ ଅନୁଷ୍ଠିତ



Digitized by srujanika@gmail.com

ହୋଇଥାଏ । ଏହି ପରମ୍ପରାକ୍ରମେ ସେ ବିଭିନ୍ନ ସାରସତ କାର୍ଯ୍ୟକ୍ରମ ଆୟୋଜିତ କରିବା ମୁଁ ଛାତ୍ରାବସ୍ଥାରୁ ଲକ୍ଷ୍ୟ କରିଆସିଛି । ସାହିତ୍ୟ ଲେଖିବା, ପଢ଼ିବା ଓ ସଭାସମିତି କରି ସାହିତ୍ୟର ପ୍ରସାର କରାଇବା ପାଇଁ ସେ ତତ୍ପର । କୁସୁପୁର ଜନ୍ମସ୍ଥାନ-କର୍ମସ୍ଥାନ ସୁନାବେଡ଼ା ।

ସୁନାବେଡ଼ା ପ୍ରକୃତିର, ସୌନ୍ଦର୍ଯ୍ୟର ଭୂମି । ବସନ୍ତ କିଶୋରଙ୍କୁ ବହୁ ପ୍ରେରଣା, ପ୍ରୋତ୍ସାହନ ଯୋଗାଇଛି । ସରଳ, ନିରବ·ବସନ୍ତ କିଶୋରଙ୍କ ପ୍ରତିଭାର ବିକାଶରେ ସୁନାବେଡ଼ା ସହାୟକ ହୋଇଛି । ସଂପର୍କ ଓ ଆତ୍ମୀୟତାରେ ବିଶ୍ୱାସ କରୁଥିବା ବସନ୍ତ କିଶୋରଙ୍କ ସାରସତ ଦିଗ୍‌ବଳୟ ବିସ୍ତାରିତ ହୋଇଛି । ତାଙ୍କ ଉଦ୍ୟମରେ ଗଢ଼ି ଉଠିଛି ସୁନାବେଡ଼ାରେ ଏକ ସାହିତ୍ୟିକ ପରିବାର । ବିଭିନ୍ନ ଅନୁଷ୍ଠାନ-ଯଥା ବନଫୁଲ ସାହିତ୍ୟ ପରିଷଦ, ବନପ୍ରଭା ସାହିତ୍ୟ ପରିଷଦ, ଓଡ଼ିଆ ଲେଖକ ପାଠକ ସମ୍ମେଳନ ଗଠନ କରିବା ସହିତ ଉତ୍କଳ ସାଂସ୍କୃତିକ ପରିଷଦ, ଶ୍ରୀ ଶ୍ରୀଜଗନ୍ନାଥ ସେବାସଂସ୍ଥା ପ୍ରଭୃତି ସହ ସେ ନିବିଡ଼ ଭାବେ ସଂପୃକ୍ତ । ତାଙ୍କ ଉଦ୍ୟମରେ ସଂଗ୍ରହଣୀୟ ସଂକଳନ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ପ୍ରକାଶିତ ହୋଇଛି । ଯାହା ଗବେଷକମାନଙ୍କୁ ଆକୃଷ୍ଟ କରିଛି । ପ୍ରତିବର୍ଷ ଉତ୍କଳ ଦିବସ ଅବସରରେ ତାଙ୍କ ସଂପାଦନାରେ ଉତ୍କଳ ସାଂସ୍କୃତିକ ପରିଷଦ ଦ୍ୱାରା ପ୍ରକାଶିତ ହେଉଛି ଓଡ଼ିଶାର ବରପୁତ୍ରମାନଙ୍କର ସଂକଳନ ।

ଆଦର୍ଶରେ ବସନ୍ତ କିଶୋରଙ୍କ ଗଭୀର ବିଶ୍ୱାସ ରହିଛି । ପୂଜ୍ୟଗୁରୁ ବିଶିଷ୍ଟ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ଦ୍ୱାରା ସେ ଅନୁପ୍ରାଣିତ । ସେଥିପାଇଁ ବସନ୍ତ କିଶୋରଙ୍କ ଶିଶୁ ସାହିତ୍ୟ ପାଠକପ୍ରିୟ । ନନ୍ଦକିଶୋରଙ୍କ ତିରୋଧାନ ପରେ ତାଙ୍କ ସ୍ମୃତି ରକ୍ଷା ପାଇଁ ବସନ୍ତ କିଶୋରଙ୍କ ଉଦ୍ୟମ ପ୍ରଶଂସନୀୟ । ନନ୍ଦକିଶୋର ରଚନାବଳୀର ସଂପାଦନା କରିବା ସହ ପ୍ରତିବର୍ଷ ସ୍ମୃତି ଉତ୍ସବରେ ସେ ସକ୍ରିୟ ଭୂମିକା ସଂପାଦନ କରିଥାନ୍ତି । ନନ୍ଦକିଶୋର ସାମଲଙ୍କ ସାହିତ୍ୟର ଗବେଷଣା ପାଇଁ ସେ ଉଦ୍ୟମ କରି ସଫଳ ହୋଇଛନ୍ତି । ତାଙ୍କ ତତ୍ତ୍ୱାବଧାନରେ ଗବେଷିକା ଡକ୍ଟର ଜ୍ୟୋତିର୍ମୟୀ ରାଜଗୁରୁ 'ଓଡ଼ିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋରଙ୍କ ଅବଦାନ' ଶୀର୍ଷକରେ ଗବେଷଣା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ଗବେଷକ ଡକ୍ଟର ରାଜକିଶୋର ପାଢ଼ୀ 'ଓଡ଼ିଆ ଶିଶୁ ସାହିତ୍ୟକୁ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଅବଦାନ' ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି ଡକ୍ଟର ସାହୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ।

ବସନ୍ତ କିଶୋର ବନ୍ଧୁ ପ୍ରିୟ । ବନ୍ଧୁ-ସାଙ୍ଗ-ସାଥୀ ସଂପର୍କୀୟମାନଙ୍କ ମେଳରେ ସେ ଜୀବନ ବିତାଇବା ପାଇଁ ଭଲ ପାଆନ୍ତି । ନିରଳସ ଭାବରେ ଜୀବନ ବଞ୍ଚିବା ସହ



Digitized by srujanika@gmail.com

ବାଣୀ ଆରାଧନା କରିବା ସତେ ଯେପରି ତାଙ୍କ ରହସ୍ୟ । ଓଡ଼ିଶାର ଶିଶୁ ସାହିତ୍ୟ ରଚନା ସହ ଶିଶୁ ସାହିତ୍ୟର ପ୍ରସାର ପାଇଁ ତାଙ୍କର ନିଷ୍ଠା ଉଲ୍ଲେଖଯୋଗ୍ୟ । ସେହିପରି କୋରାପୁଟର ପର୍ବପର୍ବାଣି, ଲୋକକଥା ସର୍ବୋପରି କୋରାପୁଟକୁ ନେଇ ତାଙ୍କର ସାହିତ୍ୟ ରଚନା ତାଙ୍କ ବାଙ୍‌ମୟ ଦୃଷ୍ଟିଭଙ୍ଗୀର ପରିଚୟ ।

ନିଜ ଭୂମିକୁ ଭଲ ପାଇବା ଓ ଜୀବନ ବିତାଇବା, ନିଜ ଭୂମିର ଗୁଣଗାନ କରିବା ତାଙ୍କ ଜୀବନର ବୈଶିଷ୍ଟ୍ୟ । ଏହା ପ୍ରମାଣିତ ହୋଇଛି ତାଙ୍କର ବିଭିନ୍ନ ସାରସ୍ଵତ କୃତିରୁ ।

ନିଷ୍ଠାପର ସାହତ୍ୟ ସାଧନା ବ୍ୟର୍ଥ ହୁଏ ନାହିଁ । ତାହା ବିକଶିତ ହୁଏ ଓ ଜନସମାଜକୁ ଆକର୍ଷିତ କରେ । ବସନ୍ତ କିଶୋର ତାହା ପ୍ରମାଣିତ କରିଛନ୍ତି । ତାଙ୍କ ନିଷ୍ଠାପର ସାହିତ୍ୟ ସାଧନା ଓଡ଼ିଶାର ସୁଧୀପାଠକ ସମାଜକୁ ଆଲୋକିତ କରିଛି ।

ବସନ୍ତ କିଶୋରଙ୍କର ରହିଛି ସାଂଗଠନିକ ଦକ୍ଷତା । ମଞ୍ଚ ଠାରୁ ଦୂରରେ ରହି, ପ୍ରଚାର ଓ ପ୍ରଶଂସାକୁ ଅପେକ୍ଷା ନରଖି କାର୍ଯ୍ୟକରିଚାଲିବା ସତେ ଯେପରି ତାଙ୍କ ବ୍ୟକ୍ତିତ୍ୱର ପରିଚୟ ।

ସଦା କିଶୋର-ବସନ୍ତ କିଶୋର । ମନେ ହୁଏ ଚିରକାଳ- କିଶୋର ସେ । ସେଥିପାଇଁ ତାଙ୍କ ସାହିତ୍ୟରେ ତାଙ୍କ ଆଚାର ବ୍ୟବହାର ସଂପର୍କରେ କିଶୋରତ୍ୱର ପରିପ୍ରକାଶ । ବସନ୍ତ କିଶୋର ତେଣୁ ବୟସ ଅତିକ୍ରମ କରିପାରିବେ ନାହିଁ । ସମୟ-ବର୍ଷ, ମସିହା-ମାସ-ତାରିଖ ଅତିକ୍ରମ ହେବ ସିନା ବସନ୍ତ କିଶୋର କିନ୍ତୁ ଆମର ପ୍ରିୟ ବସନ୍ତ ଭାଇ-ବସନ୍ତ କିଶୋର ହୋଇ ରହିବେ ।



ଉପ-ସଭାପତି
ଉତ୍କଳ ସାହିତ୍ୟ ସମାଜ, କଟକ



Digitized by srujanika@gmail.com

# ଶିଶୁ ସାହିତ୍ୟର ସ୍ରଷ୍ଟା ଓ ଗବେଷକ ବସନ୍ତ କିଶୋର

ଡକ୍ଟର ବିବେକାନନ୍ଦ ପାଣିଗ୍ରାହୀ

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡିଆ ଶିଶୁ ସାହିତ୍ୟର ସମୃଦ୍ଧି, ପ୍ରସାର, ଚର୍ଚ୍ଚା, ଆଲୋଚନା ଓ ଗବେଷଣା ଦିଗରେ ନିରବଚ୍ଛିନ୍ନ ପ୍ରୟାସ ଜାରି ରଖିଥିବା କୃତବିଦ୍ୟ ସ୍ରଷ୍ଟା ଓ ଗବେଷକମାନଙ୍କ ମଧ୍ୟରେ ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ । ପଲ୍ଲିକବି ନନ୍ଦ କିଶୋର ବଳଙ୍କ ଗାଁ କୁସୁପୁରରେ ତାଙ୍କର ଜନ୍ମ । କୈଶୋରରୁ ଜନ୍ମଭୂମିର ନିଃସର୍ଗ ପ୍ରକୃତିର ମୋହାଚ୍ଛନ୍ନ ଆକର୍ଷଣ ତାଙ୍କ ତରୁଣ ପ୍ରାଣରେ ଶିଶୁ କବିତା ରଚନାର ପ୍ରବଣତା ଉଦ୍ରେକ କରିଥିଲା । ପରବର୍ତ୍ତୀ କାଳରେ ଓଡିଆ ଭାଷା ଓ ସାହିତ୍ୟରେ ଉଚ୍ଚତର ଅଧ୍ୟୟନ ଓ ଓଡିଆ ଭାଷା ସାହିତ୍ୟରେ ଅଧ୍ୟାପକ ଜୀବନକୁ ଆପଣେଇ ନେବା ପରେ ସେ ଶିଶୁ ସାହିତ୍ୟ ସର୍ଜନା ଓ ଗବେଷଣା ଚର୍ଚ୍ଚାରେ ଅଧିକ ମନୋନିବେଶ କରିଛନ୍ତି ।

ବସନ୍ତ ବାବୁ ଏକାଧାରରେ ଶିଶୁ ସାହିତ୍ୟିକ, ଶିଶୁକବି, ଶିଶୁ ସାହିତ୍ୟର ଗବେଷକ, ଶିଶୁ ସାହିତ୍ୟ ପ୍ରସାରକ ମଧ୍ୟ । ଆମ ଓଡିଆ ସାହିତ୍ୟରେ ଅନ୍ୟାନ୍ୟ ବିଭବ ଅପେକ୍ଷା ଅବହେଳିତ ମନେ ହେଉଥିବା ଶିଶୁ ସାହିତ୍ୟର ସମଧିକ ଚର୍ଚ୍ଚା, ଆଲୋଚନା ଓ ଗବେଷଣା ଦିଗରେ ଆନ୍ତରିକ ପ୍ରୟାସ ଜାରି ରଖିଥିବା ରାଜ୍ୟର ମୁଷ୍ଟିମେୟ ଲେଖକମାନଙ୍କ ମଧ୍ୟରେ ସେ ଅନ୍ୟତମ ଅଗ୍ରଣୀ । ଉତ୍ତର ସତୁରୀରେ ଓଡିଆ ଶିଶୁ କବିତା ରାଜ୍ୟରେ ବସନ୍ତ ବାବୁଙ୍କ ଆବିର୍ଭାବ । ଓଡିଆ ପାଠକ ତାଙ୍କୁ ପ୍ରଥମେ ଶିଶୁକବି ଭାବରେ ଆବିଷ୍କାର କରନ୍ତି ଦୈନିକ ମାତୃଭୂମି ସମ୍ବାଦ ପତ୍ରର 'କିଶୋର ଫଉଜ' ପୃଷ୍ଠାରେ । ତା ପରଠାରୁ ତାଙ୍କ ଶିଶୁ କବିତା ରଚନାର ଧାରା ଆଉ ବନ୍ଦ ହୋଇନାହିଁ । ସେ ପଛକୁ ନଚାହିଁ ଆଗକୁ ମାଡି ଚାଲିଛନ୍ତି । ଉତ୍ସାହ ଓ ପ୍ରେରଣା ପାଇଛନ୍ତି ଶିଶୁ ସାହିତ୍ୟିକ ଗୋଦାବରୀଶ ମହାପାତ୍ର, ବିନୋଦ କାନୁନ୍‌ଗୋ, ଉଦୟନାଥ ଷଡଙ୍ଗୀ, ଉପେନ୍ଦ୍ର ତ୍ରିପାଠୀ, ନନ୍ଦ କିଶୋର ବଳ, ନନ୍ଦ କିଶୋର ସିଂ, ନନ୍ଦ କିଶୋର ସାମଲ ତ କେତେବେଳେ ଜଗନ୍ନାଥ ମହାନ୍ତି, ମନୀନ୍ଦ୍ର ମହାନ୍ତି ଓ ଅନ୍ୟମାନଙ୍କ ଠାରୁ । ସାଧନାମୟ ସାରସ୍ୱତ ଯାତ୍ରା ପ୍ରଲମ୍ବିତ । ପାଖାପାଖି ଦୀର୍ଘ ଚାଳିଶ ବର୍ଷ ୧୯୭୨ରୁ ୧୯୧୨ ମସିହା । ଇତି ମଧ୍ୟରେ ସଂସାରବୃତ୍ତି, ପରିବାର, ସାହିତ୍ୟ ସଂଗଠନ, ପତ୍ରିକା ସଂପାଦନା, ଗୋଷ୍ଠୀ ବିବାଦ, ବଂଧୁ ସୁଲଭ ସହଯୋଗ, ଈର୍ଷା ଓ ପରଶ୍ରୀକାତରତା କେଉଁଠି ସେ ଅଟକି ନାହାନ୍ତି । ସବୁଜ ସମତଳ ଉପକୂଳ ଓଡିଶାର ଅବିଭକ୍ତ କଟକ ଜିଲ୍ଲାରୁ ଆସି ଘନ



Digitized by srujanika@gmail.com

ଅରଣ୍ୟାନୀ ଆଦିବାସୀ ଅଧ୍ୟୁଷିତ କୋରାପୁଟରେ କର୍ମଜୀବନ । ନୂଆ ଇଲାକାରେ ନୂଆ ମଣିଷ । ପ୍ରତିକୂଳ ପରିବେଶକୁ ଅପସାରିତ କରି ଅନୁକୂଳ ସାରସ୍ୱତ ପରିବେଶଟିଏ ସୃଷ୍ଟି କରିବାର ଉନ୍ମାଦନା ଓ ସଂକଳ୍ପ ଶିଶୁ ସାହିତ୍ୟର ଦରବାରରେ ଆସନଟିଏ ଦଖଲ କରିବାର ଅଭୀପ୍‌ସା । ଏଇମିତି ଆରମ୍ଭ ହୁଏ ତାଙ୍କ ସାରସ୍ୱତ ସାଧନା ଓ ଶିଶୁ ସାହିତ୍ୟ ଗବେଷଣାର ଉତ୍ତରଣ ।

ବସନ୍ତ ବାବୁ ଓଡିଆ ଭାଷା ସାହିତ୍ୟର ଅଧ୍ୟାପକ । ସେ କିନ୍ତୁ ଅଧିକ ସୃଜନ ଓ ଗବେଷଣା ମନସ୍କ । ଓଡିଆ ଶିଶୁ ସାହିତ୍ୟ ଉପରେ ଗବେଷଣା କରି ପିଏଚ୍.ଡି ଡିଗ୍ରୀ ଲାଭ କରିବାରେ ସମ୍ଭବତଃ ସେ ରାଜ୍ୟରେ ପଞ୍ଚମ ଗବେଷକ । ଡଃ.ସାହୁଙ୍କ ପିଏଚ୍.ଡି ସନ୍ଦର୍ଭ ଓଡିଆ ମୌଖିକ ଶିଶୁ ସାହିତ୍ୟ ଗବେଷଣା ଦିଗରେ ପ୍ରାଥମିକ ଉଦ୍ୟମ ହେଲେ ବି ଏକ ଉଲ୍ଲେଖନୀୟ ପ୍ରୟାସ । ଏହି ନିବନ୍ଧ ଗବେଷଣା ରୀତି ଓ କୌଶଳ ଦୃଷ୍ଟିରୁ ସ୍ୱାତନ୍ତ୍ର୍ୟ ଦାବୀ କରେ । ଓଡିଆ ଶିଶୁ ସାହିତ୍ୟ ଗବେଷଣା ଦୃଷ୍ଟିରୁ ଏହା ଏକ ପ୍ରାମାଣିକ ସନ୍ଦର୍ଭ । ଏହି ନିବନ୍ଧ ବ୍ୟତୀତ ସେ ଶିଶୁ ସାହିତ୍ୟର ବହୁ ଅନାଲୋଚିତ ଦିଗ ଉପରେ ମଧ୍ୟ ଉପାଦେୟ ପ୍ରବନ୍ଧମାନ ରଚନା କରିଛନ୍ତି । ସେଗୁଡିକ ମଧ୍ୟରୁ ଆଦିବାସୀ ମୌଖିକ ଶିଶୁ ସାହିତ୍ୟ, ଓଡିଆ ମୌଖିକ ଶିଶୁ ଗୀତିରେ ଜହ୍ନ, ଶିଶୁ ରଚିତ ସାହିତ୍ୟ, ଓଡିଆ ମୌଖିକ ଶିଶୁ ସାହିତ୍ୟରେ ସ୍ୱଦେଶ ପ୍ରେମ, ଆଦି ପ୍ରବଂଧ ତାଙ୍କ ଗଭୀର ମନନଶୀଳତା ଓ ଗବେଷଣା ରଚନାର ପରିଚାୟକ ।

ବସନ୍ତ କିଶୋରଙ୍କ ସୃଜନ ସଂସାର କେବଳ ଶିଶୁ ସାହିତ୍ୟ ଗବେଷଣା ମଧ୍ୟରେ ସୀମିତ ନୁହେଁ । ସେ ବହୁ ଶିଶୁ ସାହିତ୍ୟ ଗ୍ରନ୍ଥର ସଫଳ ସ୍ରଷ୍ଟା । ଅଗଡ ବଗଡ ଝାଇଁକି ଝୁମ୍ପା, ଉଦୁଉଦୁମା, ଇଞ୍ଚିଡି ମିଞ୍ଚିଡି, ଖରା ବରଷା ଗୀତ, ହାତ ଦେବା ଭଲ କାମେ, କାଳିଆ ବଳଦ ଗଳାରେ ଗଲା, ଗାଇଦିଅ ପଦେ ଗୀତ ଆଦି ପୁସ୍ତକ ଶିଶୁ ମନସ୍ତତ୍ତ୍ୱ ଓ ରୁଚି ଅନୁକୂଳ ସରସ ସ୍ୱାଦିଷ୍ଟ ରଚନା । ଜଣେ ଶିଶୁ ସାହିତ୍ୟର କବି ଓ ଲେଖକ ଭାବେ ତାଙ୍କର ସ୍ୱତନ୍ତ୍ର ପରିଚୟ ଏହି ସବୁ ପୁସ୍ତକରୁ ଲକ୍ଷ୍ୟ କରାଯାଏ ।

ଶିଶୁସାହିତ୍ୟକୁ ନେଇ ଚର୍ଚ୍ଚା, ଆଲୋଚନା ଓ ଡକୁମେଣ୍ଟାରୀ ରେଫେରେନ୍‌ସର ଅଭାବ ଲକ୍ଷ୍ୟ କରି ସେ ସାରା ରାଜ୍ୟର ଶିଶୁ ସାହିତ୍ୟର କବି ଓ ଲେଖକମାନଙ୍କୁ ନେଇ କିଛି ତଥ୍ୟ ଆଧାରିତ ପୁସ୍ତକ ରଚନା କରିଛନ୍ତି । ସେଗୁଡିକ ମଧ୍ୟରେ 'ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ', 'ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ', 'Who's who in Oriya Children Literature' ଅନ୍ୟତମ । ସେ କ୍ରମାଗତ ଭାବେ ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଥିବା ଶିଶୁ ସାହିତ୍ୟ ଅନୁଷ୍ଠାନ ଓ ଲେଖକ ମାନଙ୍କ ସହିତ ଯୋଗାଯୋଗ କରି ସେମାନଙ୍କୁ ଉତ୍ସାହିତ କରିଛନ୍ତି । ରାଜ୍ୟ ଓ ରାଜ୍ୟ ବାହାରେ ଅନୁଷ୍ଠିତ ସଂପାନ, ସମ୍ମିଳନୀମାନଙ୍କରେ ଯୋଗଦାନ ଓ ପ୍ରତିନିଧିତ୍ୱ କରି ଆସୁଥିବା ସୁଖର ବିଷୟ ।

ସୁନାବେଡା ବସନ୍ତ ବାବୁଙ୍କ ପାଇଁ ତଥା ରାଜ୍ୟର ବହୁ ଶିଶୁ ସାହିତ୍ୟିକ ଓ



Digitized by srujanika@gmail.com

କବିଙ୍କ ଆକର୍ଷଣର ପ୍ରାଣକେନ୍ଦ୍ର । ଏଇଠି ସେ ନିୟମିତ ଆୟୋଜନ କରନ୍ତି ସଭା ଓ ସମ୍ମେଳନ ଯେଉଁଠି ବିଭିନ୍ନ ପ୍ରାନ୍ତର ଶିଶୁ ସାହିତ୍ୟିକ ଓ କବି ଲେଖକମାନଙ୍କ ହୁଏ ଆଗମନ । ହୁଏ ଭାବ ବିନିମୟ ଓ ଆତ୍ମୀୟତା । ଗଢ଼ି ଉଠେ ସାରସତ ବନ୍ଧୁତା । ଗଢିଉଠେ ସାରସତ ସଂଗଠନମାନଙ୍କ ମଧ୍ୟରେ ସଂହତି ଓ ଯୋଗସୂତ୍ର । ସୁନାବେଡାର 'ବନଫୁଲ ସାହିତ୍ୟ ପରିଷଦ' ବସନ୍ତ ବାବୁଙ୍କ ମାନସ ସନ୍ତାନ । ଏହି ବନଫୁଲ ମାଧ୍ୟମରେ ସେ ଅନେକ କବି ଓ ଲେଖକ ସୃଷ୍ଟି କରିଛନ୍ତି । ଅବିଭକ୍ତ କୋରାପୁଟ ଜିଲ୍ଲାରେ ବନଫୁଲ ତରଫରୁ ବିଭିନ୍ନ ଆଲୋଚନାଚକ୍ର ଆୟୋଜନ କରିଛନ୍ତି । 'ବନଫୁଲ' ପରେ ଜନ୍ମ ନେଲା 'ବନପ୍ରଭା । ସରଳା ବେହେରା ଓ ବାବାଜୀ ଚରଣ ଜେନାଙ୍କ ସହଯୋଗରେ ଅନୁଷ୍ଠାନ ତରଫରୁ ପ୍ରକାଶ ପାଏ ତାର ମୁଖପତ୍ର 'ବନପ୍ରଭା' । ବନପ୍ରଭାର ଅନେକ ବିଶେଷାଙ୍କ ଅତ୍ୟନ୍ତ ଉପାଦେୟ ଓ ସଂଗ୍ରହଯୋଗ୍ୟ ଉପାଦାନ ।

ବସନ୍ତ ବାବୁଙ୍କ ସାରସତ ପ୍ରତିଭାର ଅନାଲୋଚିତ ଦିଗ ହେଉଛି ଆଞ୍ଚଳିକ ସଂସ୍କୃତି ଓ ଇତିହାସ ରଚନାର ପ୍ରବଣତା, ଲୋକ ସଂସ୍କୃତି ଗବେଷଣା, ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟରେ ଏବଂ ଗଳ୍ପ ରଚନାରେ ମନୋନିବେଶ । କିନ୍ତୁ ଏସବୁ ଦିଗ ଉପରେ ପାଠକେ କ୍ୱଚିତ ତାଙ୍କୁ ମନେ ପକାନ୍ତି, କାରଣ ଶିଶୁ ସାହିତ୍ୟ ଚର୍ଚ୍ଚା, ଆଲୋଚନା ଭିତରେ ସେ ବେଶୀ ନିମଗ୍ନ ଓ ସୁପରିଚିତ । ରାଜ୍ୟର ବହୁ ପତ୍ରପତ୍ରିକାରେ ତାଙ୍କ ପ୍ରବନ୍ଧ, ଆଲୋଚନା ପ୍ରକାଶ ପାଏ । କଲିକତାରୁ ପ୍ରକାଶିତ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା 'ଆସନ୍ତାକାଲି' ରେ ବହୁଲେଖା ପ୍ରକାଶିତ । ସାହିତ୍ୟରେ ବଂଚିବା, ସଂଗଠନରେ ସାମିଲ ହେବା, ଗବେଷଣା ରୁଚିରେ ଉପାଦନ ସଂଗ୍ରହ କରିବା ପରି ସବୁ ସୁଗୁଣର ସେ ଅଧିକାରୀ ।

ଉତ୍କଳ ପ୍ରସଙ୍ଗ ନନ୍ଦିଘୋଷ, କୋଣାର୍କ, ସହକାର, ଆସନ୍ତାକାଲି ଆଦି ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ବହୁଲେଖା ଏ ଯାବତ ସଂକଳିତ ଓ ସଗୃହୀତ ହୋଇ ପୁସ୍ତକାରରେ ପ୍ରକାଶ ପାଇ ପାରିନାହିଁ । ଶତାଧିକ ପ୍ରବନ୍ଧ ଓ ଶିଶୁ ଲେଖାର ସମ୍ଭାର ସଂଗୃହୀତ ହୋଇ ପ୍ରକାଶିତ ହେଲେ ଓଡିଆ ପାଠକ, ସାହିତ୍ୟ ପ୍ରେମୀ ଓ ଗବେଷକ ତାଙ୍କ ସାଧନାନିଷ୍ଠ ସରସତ ସାଧନାମୟ ଜୀବନର ପୂର୍ଣ୍ଣାଙ୍ଗ ଆଲେଖ୍ୟ ଦେଖିବାର ସୁଯୋଗ ପାଆନ୍ତେ ।

କୋରାପୁଟକୁ ନେଇ ତାଙ୍କ ଲିଖିତ ଓ ସଂପାଦିତ କୋରାପୁଟର ପର୍ବପର୍ବାଣି, ଆମ କୋରାପୁଟ, କୋରାପୁଟର ଲୋକକଥା, କୋରାପୁଟ ପରିକ୍ରମା, ଓଡିଶାର ଲୋକନାଟ୍ୟ ତାଙ୍କ ଗବେଷଣା ରୁଚିର ଏକ ପୃଥକ ଦିଗନ୍ତ ପରି ମନେ ହୁଏ । ସେ ଅଜସ୍ର ସଫଳତା ଓ ପ୍ରଶଂସାର ଅଧିକାରୀ । ଜଣେ ଯଶସ୍ୱୀ ବ୍ୟକ୍ତିତ୍ୱ ।



ନିର୍ଦ୍ଦେଶକ, ଉପେନ୍ଦ୍ର ଭଂଜ ଫାଉଣ୍ଡେସନ୍
ନିବାସ- ପ୍ଲଟ-୨୯୫୬, ନାଗେଶ୍ୱରଟାଙ୍ଗୀ, ଭୁବନେଶ୍ୱର-୨



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ସୃଷ୍ଟି ଓ ଦୃଷ୍ଟି ଏକ ସଂକ୍ଷିପ୍ତ ଅଭିବ୍ୟକ୍ତି

**ଜଳଧର ସାଇଁ**

"ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତା'ର
ଜୀବନର ମାନଦଣ୍ଡ ।"

(ଉତ୍କଳମଣି ଗୋପବନ୍ଧୁ )

ଉତ୍କଳମଣିଙ୍କ ଏହି ଅମ୍ଳାନ ବାଣୀକୁ ମର୍ମେ ମର୍ମେ ଅନୁଭବ କରି କର୍ମକୁ ଜୀବନର ବ୍ରତ ରୂପେ ଗ୍ରହଣ କରି ନେଇଥିବା, ଉଚ୍ଚାରଣ ଓ ଆଚରଣରେ ଭାବଗତ ସାମ୍ୟ ପ୍ରଦର୍ଶନ କରୁଥିବା ବାସ୍ତବବାଦୀ ମଣିଷମାନଙ୍କ ମଧ୍ୟରେ ମୁଁ ଯେଉଁ କେତେ ଜଣଙ୍କୁ ଜାଣିଛି ସେମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ । ସେ ଏକାଧାରରେ ଜଣେ କବି, ଗାଳ୍ପିକ, ଶିଶୁ ସାହିତ୍ୟିକ, ସମାଲୋଚକ, ପ୍ରାବନ୍ଧିକ, ରମ୍ୟ କଥାକାର, ସଫଳ ଗବେଷକ, ଶିକ୍ଷାବିତ୍, ଆଦର୍ଶ ଛାତ୍ରବତ୍ସଳ ଅଧ୍ୟାପକ, ସାହିତ୍ୟ ପ୍ରାଣ, ସତ୍ୟନିଷ୍ଠ, ସଚେତନଶୀଳ ଦରଦୀ ବନ୍ଧୁ ବତ୍ସଳ ମଣିଷ ଓ ଜଣେ ନିଷ୍ଠାପର ସାରସ୍ୱତ ସାଧକ ତଥା ସଂଗଠକ ।

ଓଡିଆ ଭାଷା ସାହିତ୍ୟ ପ୍ରତି ଗଭୀର ଅନୁରକ୍ତି ପ୍ରକାଶ କରୁଥିବା ଶ୍ରୀଯୁକ୍ତ ସାହୁଙ୍କ ଜନ୍ମଭୂମି କଟକ ଜିଲ୍ଲାର କୁସୁପୁର ଗ୍ରାମରେ ହୋଇଥିଲେ ବି ତାଙ୍କର କର୍ମଭୂମି ଭାବେ ସେ ବାଛି ନେଇଛନ୍ତି ଓଡିଶାର ଦକ୍ଷିଣ ପ୍ରାନ୍ତର ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାର ମିଗ୍‌ବିମାନ ତିଆରି କାରଖାନା ଅଞ୍ଚଳ ଭାବେ ପ୍ରସିଦ୍ଧି ଲାଭ କରିଥିବା ସୁନାବେଡା ସହରକୁ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡିଆରେ ଏମ୍.ଏ. କରିବା ସହିତ 'ଓଡିଆ ମୌଖିକ ଶିଶୁ ସାହିତ୍ୟ' ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପ୍ରାପ୍ତ ଶ୍ରୀଯୁକ୍ତ ସାହୁ ଏ ଯାବତ୍ ମିଗ୍ ସହରାଞ୍ଚଳର ଏରୋନଟିକ୍ସ ମହାବିଦ୍ୟାଳୟରେ ଓଡିଆ ଭାଷା ସାହିତ୍ୟ ବିଭାଗର ଅଧ୍ୟାପକ ଭାବେ କାର୍ଯ୍ୟରତ । ଦୀର୍ଘ ୨୯ବର୍ଷ ଧରି ଅଧ୍ୟାପକ ଡ.ସାହୁ ନିଜର ଅଧ୍ୟାପନା, ଗବେଷଣା ତଥା ସାରସ୍ୱତ ସଂଗଠନ ଆଦି କର୍ମ ଦ୍ୱାରା ଯେମିତି ଲୋକ ସଂପର୍କ ସୃଷ୍ଟିକରି ପାରିଛନ୍ତି ସେମିତି



Digitized by srujanika@gmail.com

ସାରସ୍ୱତ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଚେତନା ଆଦି ସୃଷ୍ଟି କରିବାରେ ବିଶେଷ ଭୂମିକା ଲିଭାଇ ଏ ଅଞ୍ଚଳରେ ବହୁ ପରିଚିତ ତଥା ଉଚ୍ଚ ପ୍ରଶଂସିତ ହୋଇପାରିଛନ୍ତି । ତାଙ୍କ ପରାକାଷ୍ଠା ଓ ବ୍ୟକ୍ତିତ୍ୱର ପ୍ରଶଂସକ ଏ ସହରରେ ଅନେକ । ଛାତ୍ର, ଅଭିଭାବକ, ଅଧ୍ୟାପକ, ନାଟ୍ୟକାର, ସଂଗୀତଜ୍ଞ, ଚିତ୍ରଶିଳ୍ପୀ ଏବଂ କବି ଲେଖକ ସବୁରି ମହଲରେ ସେ ଯେମିତି ପରିଚିତ ସେମିତି ଆପଣାର ଲୋକ । ହେଲେ ଯେ ତାଙ୍କର ନିନ୍ଦୁକ ନାହାନ୍ତି ଏକଥା ମଧ୍ୟ କୁହାଯାଇ ନ ପାରେ । ସେ କିନ୍ତୁ ତାଙ୍କର କର୍ମମୟ ଜୀବନରେ ଏଇ କେଇ ବର୍ଷ ଭିତରେ କେବେ ବି ପ୍ରତିହିଂସା ପ୍ରଣୋଦିତ ହୋଇ କାହାର ଦୋଷତୃଟି ସଂପର୍କରେ ପଦଟେ ଉଚ୍ଚାରଣ କରିଥିବା କାହାରି ମୁଖରୁ ଶୁଣିବାକୁ ମିଳେ ନାହିଁ ।

ନିଜର ସ୍ୱାଭିମାନକୁ ନେଇ ତଥା ଜଣେ ଭାଷା ସାହିତ୍ୟ ପ୍ରେମୀ ମଣିଷ ଭାବେ ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ପ୍ରତି ସଚେତନ ରହି ନିଜର ସାରସ୍ୱତ ସୃଜନ କର୍ମରେ ଅବସର ସମୟକୁ ନିୟୋଜିତ କରୁଥିବା ଡକ୍ଟର ସାହୁଙ୍କ ପାଇଁ ସାହିତ୍ୟ ଏକ ସୌଖିନ କଳା କି ବୌଦ୍ଧିକ ବିଳାସ ନୁହେଁ । ସାହିତ୍ୟରେ ସେ ଦେଖନ୍ତି ସାମଗ୍ରିକ ଭାବେ ବ୍ୟକ୍ତି ତଥା ସମାଜର କଲ୍ୟାଣ କର୍ମ, ନିଜସ୍ୱ ସୃଷ୍ଟିରେ ସେ ରଖନ୍ତି ଶିକ୍ଷା ସଂସ୍କୃତି ସାମାଜିକ ଚେତନାରେ କ୍ରମୋନ୍ନତିର ଭିନ୍ନ ଭିନ୍ନ ଉପାଦାନ ତାଙ୍କ ଗଳ୍ପ କବିତାରେ ଯେମିତି ଯୁଗ ଯନ୍ତ୍ରଣାର ସ୍ୱର ଅନୁରଣିତ, ସେମିତି ଜୀବନକୁ ଜୀବନ ପରି ବିକଶିତ କରିବାର ବହୁ ଉନ୍ନତତର ଚିନ୍ତା ଚେତନା ବି ନିହୀତ । ପ୍ରବନ୍ଧ ଓ ଶିଶୁ ସାହିତ୍ୟ ସାଧନ କର୍ମରେ ନିଜକୁ ବହୁ ଭାବେ ସମର୍ପିତ କରି ଦେଇଥିବା ଡ.ସାହୁଙ୍କ କବି କର୍ମକୁ ନିମ୍ନ ମତେ ଆକଳନ କରାଯାଇ ପାରେ ।

**ଆଧୁନିକ କବିତା ସୃଷ୍ଟିରେ ଡକ୍ଟର ବସନ୍ତ କିଶୋର ସାହୁ :**

ଆଲୋଚକ ମାନେ କହନ୍ତି ମଣିଷ ଯେବେ ଠାରୁ ପ୍ରକୃତି କୋଳରେ ଲାଳିତ ପାଳିତ ହୋଇ ଆସିଛି, ସେବେଠୁ ସେ ପ୍ରକୃତିର ରହସ୍ୟ ଭେଦ କରିବାକୁ ଯାଇ ଏଇ ସୁନ୍ଦର ସୃଷ୍ଟି ସଂଭାରକୁ ଯେମିତି ଦେଖିଛି, ଯେମିତି ଅନୁଭବିଛି ତାକୁ ନିଜସ୍ୱ ଢଙ୍ଗରେ ସେମିତି ପ୍ରକାଶ କରିବାକୁ ଯାଇ କେତେ କଳା କୌଶଳର ଆଶ୍ରୟ ନେଇଛି ଏବଂ ପ୍ରକୃତି ଓ ଜୀବନକୁ ତୁଳନାତ୍ମକ ଦୃଷ୍ଟି କୋଣ ନେଇ ଦେଖିବାକୁ ଚେଷ୍ଟା କରିଛି । ଚେଷ୍ଟା କରିଛି ବିମୁଗ୍ଧ ଅତୀତ ସହ ନିଷ୍ଠୁର ବର୍ତ୍ତମାନର ତୁଳନାତ୍ମକ ଚିତ୍ର ଆଙ୍କିବାକୁ । ଏମିତି ଚିତ୍ର ଆଙ୍କୁ ଆଙ୍କୁ ସେ ନିଜ ଅଜାଣତରେ କବି ଡ.ସାହୁଙ୍କ ପରି ପଶିଯାଇଛି ସଂପର୍କର ସେଇ ନିଛକ ଇଲାକାକୁ, ଯେଉଁଠି ଅତୀତ ଭିତରେ ଅନାଗତ ଭବିଷ୍ୟତ ନୂତନ ରୋମାଞ୍ଚ ନେଇ ରୋମାଞ୍ଚିତ ହୋଇ ଉଠୁଥାଏ । ଅତୀତ ପୁନଶ୍ଚ ବସନ୍ତ ହୋଇ ପାଲଟି ଯାଉଥାଏ ନବଜନ୍ମ ନୂତନ ବସନ୍ତ । ଡ.ସାହୁଙ୍କ କବିତା କହେ -



Digitized by srujanika@gmail.com

"ଫଗୁଣର ଚୋରା ଚଇତାଳି/ କହୁକୁହୁ କହି ଦିଏ /
ଖୋଲୁ ଖୋଲୁ ଖୋଲି ଦିଏ /
ସଂପର୍କର ନଚ୍ଛକ ଇଲାକା /
ପୃଷ୍ଠା ପୃଷ୍ଠା ଦୁଃଖର ପାଣ୍ଡୁଲିପି /
ଆପେ ଆପେ ଫିଟିଯାଏ । ଅଜଣା ଆତଙ୍କ ଓ ମିଛ ଛଳନାରେ /
ନୂଆ ନୁହେଁ କିଛି ଏଠି / ସବୁତ ପୁରୁଣା /
ତଥାପି ନୂତନ ରୋମାଞ୍ଚ / ସବୁ ପୁଣି ଏକାନ୍ତ ଜୀବନ୍ତ /
ଏମିତିତ ଋତୁଚକ୍ର ପୁନଶ୍ଚ ବସନ୍ତ ।"

(ପୁନଶ୍ଚ ବସନ୍ତ,ବନଫୁଲ-୧)

ସଂପର୍କର ନଚ୍ଛକ ଇଲାକାକୁ ଧସେଇ ପଶୁଥିବା ଏଇ ଦରଦୀ କବି ନିଜ ସୃଷ୍ଟିଧାରା ପ୍ରତି ଯେତେ ସଚେତନ, ତତୋଽଧିକ ସଚେତନ ସମୟ ଜୀବନ ତଥା ସାଂପ୍ରତିକ ସମାଜ ଲୋଡୁଥିବା ମଣିଷର ସମ୍ବେଦନଶୀଳ ମନୋଭାବ ପ୍ରତି । ଯେମିତି ସେ ତାଙ୍କର ଅନ୍ୟ ଏକ କବିତା "ଇଚ୍ଛା" ରେ କହନ୍ତି -

"ସବୁଠି ସବୁ ଅଛି / କେଉଁଠି କିଛି ନାହିଁ /
ସମସ୍ତେ ସମସ୍ତଙ୍କର / କେହି କାହାର ନୁହେଁ /
ଚାହିଁଲେ ସବୁକିଛି / ନ ଚାହିଁଲେ କିଛି ନାହିଁ ।"

(ବସନ୍ତ ବର୍ଣ୍ଣାଳୀ, ବସନ୍ତ କିଶୋର ରଚନାବଳୀ, ୧ମ ଭାଗ-ପୃ.୧୦୦)

ଏତଦ୍ ବ୍ୟତୀତ ଖରା, ବର୍ଷା, କେମିତି ବୁଝନା ତୁମେ, ପ୍ରଭୃତି ସର୍ବମୋଟ ତାଙ୍କ ଦ୍ୱାରା ରଚିତ ଓ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଓ ସଂପ୍ରତି 'ପୁନଶ୍ଚ ବସନ୍ତ' ଶୀର୍ଷକରେ 'ବସନ୍ତ କିଶୋର ରଚନାବଳୀ' ୧ମ ଖଣ୍ଡରେ ସ୍ଥାନୀତ ମୋଟ ୬୫ଟି କବିତାକୁ ଅଧ୍ୟୟନ କଲେ ଦେଖାଯାଏ କବିତାଗୁଡିକ ଆତ୍ମୀକ ତଥା ଆଙ୍ଗିକ ଗଠନ ଦୃଷ୍ଟିରୁ ବେଶ୍ ସ୍ୱଚ୍ଛ ଓ ସରଳ । କବି ଭାଷାର କୁହୁକ ଓ ବୌଦ୍ଧିକତାର ଇନ୍ଦ୍ରଜାଲରେ ତଥା ଦୁର୍ବୋଧ୍ୟ ତା'ର ଚକ୍ରବ୍ୟୁହରେ ପାଠକମାନଙ୍କୁ ପୁରେଇବାକୁ ନ ଚାହିଁ ସରଳ ତରଳ ତଥା ସାବଲୀଳ ଭାବେ ନିଜ ମନକଥାକୁ କବତାଗୁଡିକରେ ବ୍ୟକ୍ତ କରିବାକୁ ଚାହିଁଛନ୍ତି । କେତେକ କବିତାରେ କବି ସାଂପ୍ରତିକ ଜୀବନର ସ୍ଥିତି ଓ ଦୁଃସ୍ଥିତି, ବିଚ୍ଛିନ୍ନତାବୋଧ, ପ୍ରେମ, ପ୍ରତାରଣା, ପ୍ରତିଶୋଧ, ପ୍ରଣୟର ଅସଜଡା ଜୀବନ ଚିତ୍ର ସବୁକୁ ଉପସ୍ଥାପିତ କରିଥିଲା ବେଳେ, କେତେକ କବିତାରେ କବି ପାଠକଙ୍କୁ କିଛି ଦୁଷ୍କର୍ମର ଚରମ ପରିଣତି ସଂପର୍କରେ ଚେତେଇ ଦେବାକୁ ପ୍ରୟାସ କରିଛନ୍ତି । କେଉଁ କବିତାରେ ମଣିଷର ଗର୍ବ ଅହଂକାର କେମିତି ବିନାଶର ଦ୍ୱାର ଉନ୍ମୁକ୍ତ କରିଦିଏ କୁହାଯାଇଥିଲା ବେଳେ, ଆଉ କେଉଁଥିରେ ମାଟି, ଆକାଶ, ପରିସ୍ଥିତି ପରିବେଶ କାହାରି



Digitized by srujanika@gmail.com

ଠାରୁ ମଣିଷ ନିଜକୁ ଦୂରେଇ ନେଇ ପାରିବ ନାହିଁ  ବୋଲି ସୂଚେଇ ଦିଆଯାଇଛି । ଜୀବନ ଓ ଜଗତର ସବୁ କିଛିକୁ ନିଜ ଭାବ ସତ୍ତାରେ ମିଶେଇ ଦେଇ ଭାବ ଓ ଅଭାବର ମିଶ୍ରିତ ସତ୍ତାଟିଏ ପାଲଟି ଯାଇଥିବା କବି ଡ.ସାହୁଙ୍କ ଅଧିକାଂଶ ଆଧୁନିକ କବିତାରେ ଅତୀତର ଆମୁଖତା ଯେମିତି ପରିଲକ୍ଷିତ ହୋଇଥାଏ, ସେମିତି ବର୍ତ୍ତମାନର ଦୁଃଖଦ ସ୍ଥିତିକୁ ଏଡେଇ ପାରିନି ତାଙ୍କ ସାମୂହିକ ସୃଷ୍ଟି । କିଛି କବିତାରେ ପ୍ରେମ ପ୍ରବଣତାର ଝଲକ ଦେଖିବାକୁ ମିଳୁଥିବା ବେଳେ ଆଉ କିଛି କବିତାରେ ଅପୂର୍ଣ୍ଣତା ଓ ଅଭାବି ପଣିଆର ଚିତ୍ର ଝଲମଲ ହେଉଥିବା ପାଠକଙ୍କ ଦୃଷ୍ଟିକୁ ଆସିଥାଏ । ସାମଗ୍ରିକ ଭାବେ ତାଙ୍କ ଆଧୁନିକ କବିତାଗୁଡିକୁ ନେଇ ଏତିକି କୁହାଯାଇ ପାରେ ଯେ, ସେ ତାଙ୍କ ଶିଶୁ କବିତା ରଚନା କ୍ଷେତ୍ରରେ ସଫଳତାର ଯେଉଁ ପାହାଚରେ ପହଂଚି ପାରିଛନ୍ତି ଆଧୁନିକ କବିତା କ୍ଷେତ୍ରରେ ତା'ଠୁ ଯଥେଷ୍ଟ ପଛରେ ରହିଯାଇଛନ୍ତି । ଆଧୁନିକ କବିତା ରଚନା କ୍ଷେତ୍ରରେ ସଫଳତା ପାଇବା ପାଇଁ ଯେଉଁ ଶ୍ରମ ଓ ସାଧନାର ଆବଶ୍ୟକତା ରହିଛି ଡ.ସାହୁ ସେ କ୍ଷେତ୍ରରେ ସେତିକି ଦୂର ଯାଇପାରି ନାହାନ୍ତି ।

**ଶିଶୁ ସାହିତ୍ୟରେ :**

ଡକ୍ଟର ବସନ୍ତ କିଶୋର ସାହୁ ସାମୟିକ ଭାବେ କିଛି ଆଧୁନିକ କବିତା ରଚନା କରିଥିଲେ ବି ତାଙ୍କର ସମସ୍ତ ଶ୍ରମ ଓ ସାଧନାକୁ ସେ ଶିଶୁ ସାହିତ୍ୟ କ୍ଷେତ୍ରରେ ବିନିଯୋଗ କରି ଆମ ସମୟର ଶିଶୁମାନଙ୍କୁ ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଅଗ୍ରଗତି ପାଇଁ ଯାହା କିଛି ସୃଷ୍ଟି କରିଛନ୍ତି ତାହାର ତୁଳନା ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୂଳତଃ ସେ ଜଣେ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ହୋଇଥିବାରୁ ଶିଶୁ ମାନସିକତା ଗ୍ରହଣଶୀଳତା, ଭାଷାଗତ ଦକ୍ଷତା, ବିଚାରଶକ୍ତି, ଅଭିରୁଚି ତଥା କଳ୍ପନା ଶକ୍ତି ସଂପର୍କରେ ସଚେତନ ରହି ଓଡିଶାର ଯେଉଁ କେତେଜଣ ସ୍ରଷ୍ଟା  ଶିଶୁ ସାହିତ୍ୟ ସୃଷ୍ଟି କରୁଛନ୍ତି ସେ ସେମାନଙ୍କ ଠାରୁ ବର୍ତ୍ତମାନ ଯଥେଷ୍ଟ ଆଗରେ ଅଛନ୍ତି । ଡ.ସାହୁ ଶିଶୁ ସାହିତ୍ୟ ପଢିବା ଓ ଲେଖିବା ଆରମ୍ଭ କଲେଣି ଆଜିଠାରୁ ଚାଳିଶ ବର୍ଷ ତଳୁ, ଅର୍ଥାତ୍ ୧୯୭୨ ମସିହାରୁ । ଦୀର୍ଘ କୋଡିଏ ବର୍ଷ ସାଧନାରତ ରହିଲା ପରେ ତାଙ୍କର ପ୍ରଥମ ଶିଶୁ କବିତା ସଂକଳନ "ଫୁଲ ଆମେ ଫୁଲ" ଆତ୍ମପ୍ରକାଶ କରେ ୧୯୯୨ ମସିହାରେ । ଏହି ପୁସ୍ତକଟିରେ ସ୍ଥାନ ପାଇଥିବା କବିତା ଗୁଡିକୁ ଲକ୍ଷ୍ୟ କଲେ ଯେ କୌଣସି ପାଠକ ଅନୁଭବ କରିପାରିବ କବିତାଗୁଡିକ ବାସ୍ତବରେ ଶିଶୁମନ ଓ ହୃଦୟକୁ ଛୁଇଁବା ପାଇଁ କେତେ ସକ୍ଷମ ଓ ନିର୍ଦ୍ୱନ୍ଦ୍ୱରେ କହିପାରିବ ଏ ସୃଷ୍ଟି ଶିଶୁ ପାଇଁ ସାହିତ୍ୟ ଭାବରେ କେତେ ସଫଳ । ଆଲୋଚକର ଦୃଷ୍ଟି ନେଇ ଦେଖିଲେ ଜଣାଯାଏ ସ୍ରଷ୍ଟା ଡ.ସାହୁ ଏଠି ନିଜେ ନିଜ ମନ ଓ ବୟସରେ ନରହି ଗୋଟିଏ ଶିଶୁର ମନ ଓ ବୟସ ନେଇ ଶିଶୁଟିଏର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ଶିଶୁର ମନଭୂମିରେ ରହି ସେ ତାଙ୍କର ପାରିପାର୍ଶ୍ୱିକ ପରିବେଶକୁ ଦେଖିଛନ୍ତି । ଅନୁଭବିଛନ୍ତି ଶିଶୁଟିଏ ଯେମିତି ନିଜ ପାରିପାର୍ଶ୍ୱିକ ପରିବେଶ ମଧ୍ୟରେ ରହି ଯାହା ଦେଖେ ଓ ତା



Digitized by srujanika@gmail.com

ସଂପର୍କରେ ଜାଣିବା ପାଇଁ ଓ କହିବା ପାଇଁ ଯେପରି ଆଗ୍ରହ ପ୍ରକାଶ କରେ ସେ ସବୁକୁ ଠିକ୍ ସେମିତି ସେ ପ୍ରକାଶ କରିଛନ୍ତି । ଶିଶୁର ପ୍ରୟୋଜନ ତଥା ସହଜରେ ଶିଖିବା ପରି ଆଗ୍ରହ ପ୍ରକାଶର ଉପାଦାନକୁ ନେଇ ସେ କବିତା ଲେଖିଛନ୍ତି । ପୁସ୍ତକଟିର ପ୍ରଥମ କବିତା 'ଫୁଲ ଆମେ ଫୁଲ'ରେ ଶିଶୁକୁ ଫୁଲଟିଏ ସହିତ ତୁଳନା କରାଯାଇ, ଶିଶୁର ମନରେ ଏଇ ଧାରଣା ସୃଷ୍ଟି କରାଯାଇଛି ଯେ, ଫୁଲ ଯେମିତି ସୁନ୍ଦର, ସବୁରି ଆଦର ପାଇବାକୁ ଯୋଗ୍ୟ, ଫୁଲ ଯେମିତି ଆପଣା ସୁବାସରେ ଅନ୍ୟକୁ ଆକୃଷ୍ଟ କରେ, ଅନ୍ୟର ସେବାରେ ଲାଗେ, ନିଜର ମଧୁର ମହକ ସହିତ ନିଜ ଭିତରେ ଥିବା ମଧୁକୁ ବାଣ୍ଟେ, ସେମିତି ଶିଶୁଟିଏ ମଧ୍ୟ ଫୁଲ ଠାରୁ କୌଣସି ଗୁଣରେ ଊଣା ନୁହେଁ ।

ଫୁଲର ମୂଲ୍ୟ ଯେମିତି କଳନା କରାଯାଇ ପାରେନି ଓ ଫୁଲ ସବୁ କେଉଁ ରଙ୍ଗର ଥାଏ ଏଇ କଥା ଜଣେଇ ଦେବା ପାଇଁ ଶିଶୁକୁ ଫୁଲ ସହିତ ପରିଚିତ କରାଇ ଦେବାର ଇଚ୍ଛା ନେଇ ଡ. ସାହୁ ତାଙ୍କ ଫୁଲ ଆମେ ଫୁଲ କବିତାରେ କହନ୍ତି -

" ଫୁଲ ଆମେ ଫୁଲ
ଘଡିକ ପାଇଁ ଫୁଟୁଚୁ ସିନା
ଅମୂଲ ଆମ ମୂଲ
କିଆ କେତକୀ, ମାଳତୀ, ମଲ୍ଲୀ
ଯୁଇ, ଜାଇ ଓ ଗୋଲାପ କଳି
ଏମିତି ପୁଣି କେତେ ଜାତିର
ଅଟଇ ଆମ କୁଳ
ଫୁଲ ଆମେ ଫୁଲ ।"

ସେହିପରି ଏହି କବିତାଟି ପରବର୍ତ୍ତୀ ପଦରେ ସୁନାରୂପା ମଣିମାଣିକ ଠାରୁ ଫୁଲର ମୂଲ୍ୟ କିପରି ଅଧିକ ଏକଥା ଶିଶୁମନକୁ ଆଣିବା ସହ ଶିଶୁଙ୍କୁ ବିଭିନ୍ନ ରଙ୍ଗର ଫୁଲ ସହ ପରିଚିତ କରେଇବାକୁ ଯାଇ କୁହାଯାଇଛି -

ଫୁଲ ଆମେ ଫୁଲ
ସୁନାରୂପା କି ମଣି ମାଣିକ,
ନୁହଁଇ ଆମ ତୁଲ
ଆମରି ରଙ୍ଗ ନାଲି ଓ ଧଳା
କିଏ ସେ ପୁଣି ଗୋଲାପି, କଳା
ନେଳି, ହଳଦୀ,ନାରଙ୍ଗୀ ପୁଣି
ଏଥିରେ ନାହିଁ ଭୁଲ
ଫୁଲ ଆମେ ଫୁଲ ।।"



Digitized by srujanika@gmail.com

ଏହିପରି କବିତାଟିର ଅନ୍ୟାନ୍ୟ ପଂକ୍ତି ଗୁଡିକରେ-ପ୍ରଜାପତି କିପରି ଫୁଲରୁ ଫୁଲକୁ ଉଡି ବୁଲେ, ମହୁମାଛି କିପରି ଫୁଲରୁ ମହୁ ସଂଗ୍ରହ କରି ନେଇ ଜଗତର ହିତରେ ଲଗାଏ । ପୂଜାପାର୍ବଣରେ ଫୁଲ କେମିତି ମାଳାରେ ପରିଣତ ହୋଇ ଘରଦ୍ୱାର ଦେବତା ମନ୍ଦିର ଆଦିକୁ ସୁନ୍ଦର ଭାବେ ସଜାଏ । ଫୁଲ କେମିତି ପୂଜା ବେଳେ ଠାକୁରଙ୍କ ପାଇଁ ବ୍ୟବହୃତ ହୁଏ ଇତ୍ୟାଦି ଫୁଲର ବିଭିନ୍ନ କାମ ସହିତ ପିଲାଙ୍କୁ ପରିଚିତ କରାଯିବା ସହିତ ଶେଷ ପଦଟିରେ ପିଲାମାନଙ୍କୁ ଫୁଲ ପରି ନିଜର ମୂଲ୍ୟକୁ ବୁଝି ନିଜକୁ ଅନ୍ୟର ସେବାରେ ନିୟୋଜିତ କରିବା ଓ ମିଠା କଥା କହି ଅନ୍ୟର ମନଖୁସି କରି ସମସ୍ତଙ୍କର ଆଦରର ପାତ୍ର ହେବା ପାଇଁ ଶିକ୍ଷା ଦିଆଯାଇଛି ।

ଏହି ପୁସ୍ତକଟିରେ ଥିବା ମୋଟ ୧୬ ଗୋଟି କବିତାକୁ ଆଲୋଚନା ପରିସରକୁ ନେଲେ ଦେଖାଯାଏ, ଏଗୁଡିକ ଶିଶୁର ପଠନ ରୁଚିକୁ ନେଇ ଯେମିତି ପରିବେଷଣ କରାଯାଇଛି, ସେମିତି ଶିଶୁର ମାନସିକ ଓ ଭାବାତ୍ମକ ବିକାଶ କ୍ଷେତ୍ରରେ ମଧ୍ୟ ବେଶ୍ ସହାୟକ ଭୂମିକା ଲିଭାଇ ପାରିଛି । ଶିଶୁକୁ ନୂତନ ପରିବେଶ ସହିତ ପରିଚିତ କରାଇବା, ଶିଶୁ ମନରେ କଳ୍ପନା ଭାବର ବିକାଶ ପାଇଁ ସୁଯୋଗ ସୃଷ୍ଟି କରାଇବା ସମେତ ଶିଶୁଶିକ୍ଷା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଲିଭାଉଥିବା ଏହି କବିତା ପୁସ୍ତକଟି ବ୍ୟତୀତ ୧୯୯୭ରେ ପ୍ରକାଶ ପାଏ କବିଙ୍କର 'ଅଗଡ ବଗଡ ଝାଇଁକି ଝୁମା' ଶିଶୁକବିତା ପୁସ୍ତକ । ଶିଶୁର ସ୍ୱଭାବ ସାମର୍ଥ୍ୟକୁ ଦୃଷ୍ଟିରେ ରଖି ପ୍ରୟୋଗାତ୍ମକ ଶୈଳୀରେ ସଚିତ୍ର ଆକର୍ଷଣୀୟ ପରିପାଟିରେ ସଜ୍ଜିତ ଉକ୍ତ ପୁସ୍ତକଟିର କବିତା ଗୁଡିକର ପ୍ରୟୋଗ ଶିଶୁ ପାଇଁ ଯେମିତି ସହଜ ବୋଧଗମ୍ୟ, ସେମିତି ଶିକ୍ଷଣୀୟ ଓ ଗ୍ରହଣୀୟ ମଧ୍ୟ ହୋଇ ପାରିଛି । ଉକ୍ତ କବିତା ଗୁଡିକରେ ମୌଖିକ ଶିଶୁ ଗୀତକୁ କେତୋଟି କ୍ଷେତ୍ରରେ କବିତାର ଶିରୋନାମା ଭାବେ ନିଆଯାଇଥିବା ବେଳେ, କେତେକ ସ୍ଥଳରେ ଶିଶୁର ଆଗ୍ରହ ସୃଷ୍ଟି ପାଇଁ ଧ୍ୟାନ ଆକର୍ଷଣକାରୀ ଧ୍ୱନ୍ୟାତ୍ମକ ଶବ୍ଦ, ଯଥା - ଧପଡ ଧପଡ ଧପତ ଧାଇଁ , କଟର କଟର କଟର କେଁ, ଝଗଡ ଝଗଡ ଝଗଡ ଝାଇଁ, ଫକର ଫକର ଫକର ଫାକୁ, ଅଲର ମଲର ଝଲର ଝାଇଁ, ରୁମୁ ଝୁମୁ ଝୁମୁ ଝୁମୁକୁ ଝୁମା, ଇଞ୍ଚିଡି ମିଞ୍ଚିଡ଼ି, ଆଦିର ବ୍ୟବହାର କବିତାଗୁଡିକ ପଢିବା ପାଇଁ ଶିଶୁ ମନକୁ ବେଶ୍ ଆକୃଷ୍ଟ କରିପାରିଛି । ପୁସ୍ତକଟିରେ ସନ୍ନିବେଶିତ ପ୍ରତିଟି କବିତା ବାସ୍ତବବାଦୀ ଦୃଷ୍ଟିକୋଣ ନେଇ ଶିଶୁକୁ ଯେମିତି ବିଭିନ୍ନ କାର୍ଯ୍ୟ ଓ କାରଣ ସହିତ ପରିଚିତ କରାଇବାକୁ ସକ୍ଷମ, ସେମିତି ଶବ୍ଦଜ୍ଞାନ ବୃଦ୍ଧିରେ ମଧ୍ୟ ବେଶ୍ ସହାୟକ ହୋଇ ପାରିଛି । ଏତଦ୍‌ଭିନ୍ନ ଉକ୍ତ ପୁସ୍ତକଟିରେ ଡ.ସାହୁଙ୍କ ଶିଶୁ ସାହତ୍ୟ ସୃଷ୍ଟି କ୍ଷେତ୍ରରେ ତଥା ଶିଶୁ ଶିକ୍ଷା ପ୍ରଦାନର ପ୍ରୟୋଗାତ୍ମକ ଦିଗରେ କିପରି ଗଭୀର ପ୍ରବେଶ ରହିଛି ତାହା ସହଜରେ ବାରି ହୋଇ ପଡିଥାଏ । ସେହିପରି ତାଙ୍କ ଶିଶୁ ସାହିତ୍ୟ ସୃଷ୍ଟିର ସ୍ୱତନ୍ତ୍ର ଶୈଳୀକୁ ମଧ୍ୟ ଅନୁଭବର ପରିସରକୁ ନେଇ ବିଚାର ଆଲୋଚନା କରି ଦେଖିଲେ ଏହା କିପରି ସ୍ୱାଭାବିକ ବୋଧଗମ୍ୟ ଓ ପ୍ରଭାବଶାଳୀ



Digitized by srujanika@gmail.com

ତଥା ଶିଶୁମାନଙ୍କ ପଠନ ଆଗ୍ରହ ବୃଦ୍ଧି ପାଇଁ ସହାୟକ ତାହା ସହଜରେ ଉପଲବ୍ଧ ହୋଇଥାଏ ।

ଏହି ପୁସ୍ତକର ପ୍ରଥମ କବିତା- 'କଇଁଅ଼ି କାକୁଡି ପିତା ନଳିତା' ଓ ଶେଷ କବିତା 'ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ'ଦୁଇଟିଯାକ ଶୀର୍ଷକ ମୌଖିକ ଶିଶୁ ସାହିତ୍ୟରୁ ଗ୍ରହଣ କରାଯାଇ ଶିଶୁ ମନରେ ଉଠୁଥିବା କାହିଁକି, କିପରି ପ୍ରଶ୍ନର ଉତ୍ତର ଦେବା ପାଇଁ ସମର୍ଥ ହେବା ସହିତ ଶିକ୍ଷଣୀୟ ଓ ଆକର୍ଷଣୀୟ । ପ୍ରଥମ କବିତାଟିର ପ୍ରଥମ ପଂକ୍ତିରେ ଅଛି -

"କଇଁଅ଼ି କାକୁଡି ପିତା ନଳିତା
ମାଆ ବଳୁଥିଲେ ବସି ବଳିତା
ବଳିତାରେ ଘିଅ ଲଗାଇ ଦିଅ
ବଳିତା ଜଳିଲେ ହୁଏ ଆଲୁଅ ।"

ଏଥିରୁ ଶିଶୁଟିଏ ସହଜରେ ଶିଖିଥାଏ କେମିତି ବଳିତା ତିଆରି ହୁଏ ଓ ଏହା କିପରି କେଉଁ କାମରେ ଲାଗେ । ପୁନଶ୍ଚ ଦ୍ୱିତୀୟ ପଂକ୍ତିରେ ଉପର ପଂକ୍ତିର କାର୍ଯ୍ୟକାରୀ ସଂପର୍କକୁ ନେଇ ରହିଛି ସରଳ ପ୍ରଶ୍ନଟିଏ ।

"ଆଲୁଅରେ ଘର ଆଲୋକମୟ
କେମିତି ହୋଇଲା ତୁମେ ତ କୁହ ।"

ଏଠାରେ ଶିଶୁକୁ ବଳିତା କିଏ ତିଆରି କରେ, କେମିତି ତିଆରି କରେ ଓ ବଳିତାରେ କଣ ଲଗାଯାଇ କଣ କରାଗଲେ ବଳିତାଟି କିପରି ଜଳେ ସୁନ୍ଦର ଆକର୍ଷଣୀୟ ଚିତ୍ରଦ୍ୱାରା ଦେଖାଇ ଓ ଶିଖାଇ ଦିଆଗଲା ପରେ ପ୍ରଶ୍ନଟିଏ କିପରି ପଚରାଯାଏ ଓ ତାହାର ଉତ୍ତର କ'ଣ ହେବ ଏ ସଂପର୍କିତ ଧାରଣାଟିଏ ନିଜ ଭିତରେ ଆଣିପାରୁଛି । ଏହା ଦ୍ୱାରା ଶିଶୁର ମାନସିକ ସ୍ତରରେ କଳ୍ପନା ତଥା ବିଚାର ଶକ୍ତିର ବିକାଶ ସାଧନ ହୋଇପାରୁଛି । ସେହିପରି ଏହି ପୁସ୍ତକଟିର ଶେଷ କବିତା-'ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ' କବିତାରେ ଶିଶୁଟିଏ ଗୀତଟିକୁ ଗାଇଲା ବେଳେ ଯେମିତି ଆନନ୍ଦ ଅନୁଭବ କରୁଛି, ସେମିତି ପାଣି ଆମର କି କାମରେ ଲାଗେ, ବରଷା ହେଲେ ପାଣିରେ କେମିତି ନଈ ସମୁଦ୍ର ଭରିଯାଏ, ମରୁଡି ମଡକରୁ ଗାଁ ସହର ରକ୍ଷା ପାଏ ଇତ୍ୟାଦି ବିଷୟରେ ଧାରଣାଟିଏ ନିଜ କଳ୍ପନା ପରିସର ମଧ୍ୟକୁ ଆଣିପାରୁଛି ।

ଏମିତି ଅନେକ ଶିକ୍ଷଣୀୟ ଦୃଷ୍ଟିକୋଣ ଡ.ବସନ୍ତ କିଶୋର ସାହୁଙ୍କ-ଅନ୍ୟାନ୍ୟ ଅନେକ ଶିଶୁ ସାହତ୍ୟ ପୁସ୍ତକରେ ଦେଖିବାକୁ ମିଳୁଥିବାରୁ ସାମଗ୍ରିକ ଭାବେ ତାଙ୍କ ଶିଶୁ ସାହିତ୍ୟ ସୃଷ୍ଟିଗୁଡିକୁ, ବିଶେଷ କରି ଶିଶୁ କବିତା ସଂକଳନଗୁଡିକୁ ବିଚାରକୁ ନେଇ



Digitized by srujanika@gmail.com

ଜଣେ ଆଲୋଚକ ଏଇଥି ପାଇଁ ଏଗୁଡିକୁ ସଫଳ ଶିଶୁ ସାହିତ୍ୟ ସୃଷ୍ଟିର ପର୍ଯ୍ୟାୟଭୁକ୍ତ କରିଥାଏ ଯେ, ସେ ଅନୁଭବ କରିଥାଏ ଏଥିରେ ଥିବା ସାଙ୍ଗୀତିକତା ବା ଗୀତିମୟ ମୂର୍ଚ୍ଛନା ଶିଶୁ ଭିତରେ ପଠନ ଆଗ୍ରହ ବା ରୁଚି ବୃଦ୍ଧିରେ ଯେପରି ବିଶେଷ ଦକ୍ଷତା ରଖେ ସେହିପରି ଶିଶୁ ମନରେ ଜିଜ୍ଞାସା, ଆକାଂକ୍ଷା ଓ କଳ୍ପନା ଶକ୍ତିର ଅଭିବୃଦ୍ଧିରେ ସହାୟତା କରିବାକୁ ବେଶ୍ ସକ୍ଷମ ।

ଏଇ ସମସ୍ତ ପୁସ୍ତକଗୁଡିକର ଆକଳନରୁ ଜଣାଯାଏ ଏହା ସଂପ୍ରତି ଶିଶୁର ମନସ୍ତତ୍ତ୍ୱ ଚରିତ୍ର ଗଠନ ଓ ସମାଜ ସଚେତନତା ତଥା କଳ୍ପନା ଶକ୍ତିର ବିକାଶରେ କିପରି ସହାୟକ ହୋଇପାରିବ ସେ ସବୁକୁ ଦୃଷ୍ଟିରେ ରଖି ରଚନା କରାଯାଇଛି । ପ୍ରତିଟି ପୁସ୍ତକର ବିଷୟ ବସ୍ତୁ ସତ୍ୟ ମୂଳକ ବାସ୍ତବତାରେ ବିଜ୍ଞାନ ସମ୍ମତ ଭାବେ ନିର୍ବାଚିତ କରାଯାଇ ଉପସ୍ଥାପନ କରାଯାଇଛି । ପ୍ରତିଟି ବିଷୟବସ୍ତୁ ଚୟନ କଲାବେଳେ ଲେଖକ ଶିଶୁର ଅନୁଭୂତି, ବୟସ, ଆଗ୍ରହ, ରୁଚି ଆଦି ପ୍ରତି ଦୃଷ୍ଟି ଦେଇ ଏହାକୁ ତଦନୁରୂପ ସଜାଇଛନ୍ତି । ଡ.ସାହୁଙ୍କ ଶିଶୁ ସାହିତ୍ୟ ପୁସ୍ତକଗୁଡିକୁ ଅନୁଧ୍ୟାନ କଲେ ଏହା ଶିଶୁ ଶିକ୍ଷା ପାଇଁ ଏକ ପ୍ରକାର ତୃଟିଶୂନ୍ୟ ଶିଶୁ ସାହିତ୍ୟ ଭାବେ ପରିଲକ୍ଷିତ ହୋଇଥାଏ । ଶବ୍ଦ ବା ପଦାବଳୀରେ ବିଶେଷ କିଛି ଭାବନା ସଂଘତିର ଅଭାବ ଦେଖାଯାଏ ନାହିଁ ।

**ପ୍ରବନ୍ଧ ରଚନା କ୍ଷେତ୍ରରେ ଡ.ବସନ୍ତ କିଶୋର ସାହୁଙ୍କ ଭୂମିକା :**

ଡ.ବସନ୍ତ କିଶୋର ସାହୁ କେବଳ ଶିଶୁମାନଙ୍କ ପାଇଁ ମଜାଗପ, ମଜାଗୀତ କି କବିତା ପୁସ୍ତକ ରଚନା କରିନାହାନ୍ତି, ସେ ଓଡିଆ ଭାଷାରେ ରଚିତ ଶିଶୁ ସାହିତ୍ୟକୁ କିପରି ଉନ୍ନତ ମାନର କରାଯାଇ, ଅନ୍ୟ ଭାଷାର ଶିଶୁ ସାହିତ୍ୟ ଠାରୁ ଆଗରେ ରଖାଯାଇ ପାରିବ, ଆମ ଶିଶୁ ସାହିତ୍ୟରେ ଥିବା ତଟି ବିଚ୍ୟୁତି ତଥା ଦୋଷ ଦୁର୍ବଳତାଗୁଡିକୁ କିପରି ସଂଶୋଧନ କରାଯାଇ ପାରିବ, ଓଡିଆ ଶିଶୁ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ କି କି ସମସ୍ୟା ଓ ସଙ୍କଟ ରହିଛି ଏବଂ ସେ ସବୁକୁ କିପରି ଦୂର କରାଯାଇପାରିବ, ଏ ଦିଗରେ ଉଦ୍ୟମ ଅବ୍ୟାହତ ରଖି ସେ ୬୫ଟିରୁ ଅଧିକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କର ଉଲ୍ଲେଖନୀୟ ପ୍ରବନ୍ଧ ଗୁଡିକ ମଧ୍ୟରେ ରହିଛି-ଶିଶୁର ମାନସିକ ବିକାଶରେ ଶିଶୁ ସାହିତ୍ୟର ସ୍ୱରୂପ, ଓଡିଆ ଶିଶୁ ସାହିତ୍ୟର ଗତି ଓ ସ୍ଥିତି, ଶିଶୁ ସାହିତ୍ୟ ବିକାଶରେ ଶିଶୁ ସାହିତ୍ୟ ସଂଗଠନର ଭୂମିକା, ନାଁ ଦିଆ ମୌଖିକ ଶିଶୁ ସାହିତ୍ୟର ଅମୂଲ୍ୟ ସଂପଦ, ଶିଶୁ ଗୀତରେ ଶିଶୁ ମନସ୍ତତ୍ତ୍ୱର ସ୍ୱରୂପ, ସାଂପ୍ରତିକ ଶିଶୁଗୀତ କବିତାର ସ୍ୱରୂପ ଓ ବିକାଶ, ମୋ ଗବେଷଣା କଥା, ଓଡିଆ ମୌଖିକ ଶିଶୁ ସାହିତ୍ୟ, ଶିଶୁର ମାନସିକ ବିକାଶରେ ନାଟକର ଭୂମିକା, ଶିଶୁ ସାହିତ୍ୟର ସମୃଦ୍ଧି ଓ ପ୍ରସାର ପାଇଁ ଆମେ ସଚେତନ କି ? ଆଦି ଅନ୍ୟତମ । ଓଡିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ସମାଲୋଚନା ତଥା ମୌଳିକ ସୃଜନାତ୍ମକ ଦୃଷ୍ଟିକୋଣ ନେଇ ପ୍ରବନ୍ଧ ଆଲୋଚନାର ଯେଉଁ ବିଶେଷ ଅଭାବ ଦୀର୍ଘ



Digitized by srujanika@gmail.com

କାଳଧରି ଦେଖା ଦେଇ ଆସିଥିଲା, ଡ.ସାହୁ ସେହି ଅଭାବ ପୂରଣ ସହିତ ସାଂପ୍ରତିକ ଓଡିଆ ଶିଶୁ ସାହିତ୍ୟର ମୂଲ୍ୟାଙ୍କନ ସହ ଏହା କିପରି ଅଧିକ ରୁଚିପୂର୍ଣ୍ଣ ତଥା ଶିଶୁ ଶିକ୍ଷା ଉପଯୋଗୀ ହୋଇ ପାରିବ ସେ ସଂପର୍କିତ ଦାୟିତ୍ୱ ନିର୍ବାହ କରିଛନ୍ତି ।

ଉପରୋକ୍ତ ମୌଳିକ ତଥ୍ୟନିଷ୍ଠ ଗବେଷଣା ମୂଳକ ପ୍ରବନ୍ଧଗୁଡିକୁ ବାଦ ଦେଲେ ଶିଶୁ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ଓ ଅନୁସଂଧାନକୁ ନେଇ ନୀଳକଣ୍ଠ ଦାଶଙ୍କ ଶିଶୁ ସାହିତ୍ୟଠୁ ଆରମ୍ଭ କରି ପଲ୍ଲୀକବି ନନ୍ଦ କିଶୋରଙ୍କ ବାଟ ଦେଇ ଡ.ଜଗନ୍ନାଥ ମହାନ୍ତି ଓ ଡ. ମନୀନ୍ଦ୍ର ମହାନ୍ତି ତଥା ନନ୍ଦ କିଶୋର ସିଂହଙ୍କ ପର୍ଯ୍ୟନ୍ତ ପ୍ରାୟ ଆମ ସମୟର ବେଶ୍ ଜଣାଶୁଣା ସମସ୍ତ ଶିଶୁ ସାହିତ୍ୟ ସ୍ରଷ୍ଟାଙ୍କୁ ଆଲୋଚନାର ପରିସରକୁ ଆଣି ସେ ୨୦ଟିରୁ ଅଧିକ ପ୍ରବନ୍ଧ ରଚନା କରି ସେମାନଙ୍କ ଶିଶୁ ସାହିତ୍ୟରେ ଥିବା ସଫଳ ଓ ବିଫଳ ଦିଗକୁ ଦର୍ଶାଇବା ସହିତ ଓଡିଆ ଶିଶୁ ସାହିତ୍ୟକୁ କିପରି ଆଗେଇ ନିଆଯାଇ ପାରିବ ଏ ସଂପର୍କରେ ନିଜ ଦୃଷ୍ଟିକୋଣ ଉପସ୍ଥାପନ କରିଛନ୍ତି । ୧୯୮୮ ରୁ ୨୦୧୨ ଯାଏ ଡ.ସାହୁଙ୍କର ଶିଶୁ ସାହିତ୍ୟ ସଂପର୍କିତ ପ୍ରବନ୍ଧ ରଚନାଧାରା ଯେମିତି ଅବ୍ୟାହତ ରହିଛି ସେମିତି କୋରାପୁଟ ଆଦିବାସୀ ଭାଷା ସାହିତ୍ୟ ସଂସ୍କୃତି ଓ ନୃତ୍ୟ ଗୀତକୁ ଅନୁଧ୍ୟାନ କରି ଡ.ସାହୁ ରଚନା କରିଛନ୍ତି ସଂସ୍କୃତି ଭିତ୍ତିକ ୧୦ଗୋଟି ଗବେଷଣାତ୍ମକ ପ୍ରବନ୍ଧ ଯାହା ଓଡିଶାର ପ୍ରତିଷ୍ଠିତ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ଏହି ପ୍ରବନ୍ଧ ଗୁଡିକରେ କୋରାପୁଟ ଜିଲ୍ଲା ଆଦିବାସୀ ସଂସ୍କୃତିରେ ପ୍ରଚଳିତ ପ୍ରଥା ପରମ୍ପରା, ଲୋକାଚାର, ଲୋକ ବିଶ୍ୱାସ, ନାଚ ଗୀତକୁ କେବଳ ଉପସ୍ଥାପିତ କରା ନଯାଇ, ଏଗୁଡିକର ସାମାଜିକ, ଅର୍ଥନୈତିକ, ବୈଜ୍ଞାନିକ, ଧର୍ମୀୟ ଓ ମନସ୍ତାତ୍ତ୍ୱିକ ସମୀକ୍ଷା ମଧ୍ୟ କରାଯାଇଛି ।

ଏତଦ୍ ବ୍ୟତୀତ ସଂପ୍ରତି ଆମ ସମୟର ପ୍ରଗତି ପରିବର୍ତ୍ତନ ତଥା ସାଂସ୍କୃତିକ ଓ ମୂଲ୍ୟବୋଧ ଭିତ୍ତିକ ଅବକ୍ଷୟକୁ ଦୃଷ୍ଟିରେ ରଖି ଡ.ସାହୁ ଶାଣିତ ବ୍ୟଙ୍ଗକୁ ଅମ୍ଳଭାବେ ବ୍ୟବହାର କରି ରଚନା କରିଛନ୍ତି କାହାକୁ କହିବା । ଲେଖକ ଡ.ସାହୁ ଏହି ପ୍ରବନ୍ଧଗୁଡିକ ମାଧ୍ୟମରେ ଆମ ରଚି, ଉଚ୍ଚ ବିଚାରଧାରା, ଚାଲିଚଳଣି, ଖାଦ୍ୟ ପେୟ, କଥାବାର୍ତ୍ତା, ବେଶଭୂଷା, ସବୁକିଛିର ପରିବର୍ତ୍ତନ ଘଟିବା ଓ ନିଜ ସୁସ୍ଥ ପରଂପରା ସହିତ ଆମେ ଦୂରେଇ ବସିଥିବା ଭାଇଚାରା, ପରୋପକାର, ନିଃସ୍ୱାର୍ଥପର ସେବା, ସତ୍ୟ ଧର୍ମ ନ୍ୟାୟର ପଥଠୁ ଦୂରେଇ ଯାଇ ଆମେ କେମିତି ହିନସ୍ତା ହେଉଛୁ, କେମିତି ନିସ୍ୱ ପାଲଟି ଯାଇଛୁ ତାହା ବେଶ୍ ଶାଣିତ ବ୍ୟଙ୍ଗ ମାଧ୍ୟମରେ ଦେଖାଇ ଦେବାକୁ ଯେମିତି ଚେଷ୍ଟା କରାଯାଇଛି ସେମିତି ସାଂପ୍ରତିକ ସମାଜର ସବୁ କ୍ଷେତ୍ରରେ ଦେଖା ଦେଇଥିବା ନୈତିକ ଅବକ୍ଷୟ, ସର୍ବବ୍ୟାପୀ ଭୋଗ ବାଦର ପ୍ରବୃତ୍ତି ସରକାରୀ ରାଜସ୍ୱ ନିଜସ୍ୱ କରିନେବାର ଆତୁରତା, ଦୁର୍ନୀତି, ବାଟମାରଣା ଆଦିର ଯଥାର୍ଥତା ମଧ୍ୟ ଉକ୍ତ ସମାଲୋଚନାରେ ଦେଖାଇ ଦିଆଯାଇଛି । ଏହି ସଙ୍କଳନଟିରେ ସ୍ଥାନୀତ ପ୍ରଥମ ଆଲୋଚନାରେ "ଆମ ରାସ୍ତା



Digitized by srujanika@gmail.com

ଘାଟର ହାଲଚାଲ" ପ୍ରସଙ୍ଗରେ - କହିବାକୁ ଯାଇ ବେହାଲ ହୋଇଯାଇଥିବା ଲେଖକ ଆମର ମାନବିକ ଅବମୂଲ୍ୟାୟନକୁ ଉପସ୍ଥାପନ କରିବାକୁ ଯାଇ କହିଛନ୍ତି - "ସତ କହିବାକୁ ସଦା ଡରିବି, ସତ କହି ମୁହିଁ କିଆଁ ମରିବି ।" ସେହିପରି ତାଙ୍କର ଦ୍ୱିତୀୟ ଆଲୋଚନା ଛାତ୍ରପୂଜାରେ ଅଧ୍ୟୟନ ପାଇଁ ଶ୍ରମ ଓ ସାଧନାର ଅନାବଶ୍ୟକତାକୁ ଦର୍ଶାଇବାକୁ ଯାଇ କହିଛନ୍ତି - "ବହିଖାତା ସବୁ ଚୁଲିକୁ ଯାଉ / ବିନା ଅଧ୍ୟୟନେ ପାଶ୍ ହେଉଁ ।" ଅନ୍ୟ ପକ୍ଷରେ ଏହାର ବିଷମୟ ପରିଣତି ସଂପର୍କରେ ସତର୍କ ରହିବାକୁ ସୂଚେଇ ଦେବାକୁ ଯାଇ ସେ ମୁକୁତା ଦେଇ ବୋଲିରୁ ଉଦ୍ଧାର କରି ପଦଟିଏ କହିଛନ୍ତି - "ପାଣି ରହୁ ବନ୍ଧ ବାନ୍ଧରେ କୁମର / ପୁରି ରହୁ ସରୋବର / ପାଣି ଶୁଖି ଗଲେ ତୋ ହଂସା ଉଡିବ / ପିଣ୍ଡ ହେବ ନାରଖାର ।" ସେହିପରି ମଣିଷ ଅନେକ ଘାତ ପ୍ରତିଘାତ ସତ୍ତ୍ୱେ ନିଜର କୁ ପ୍ରକୃତି ଛାଡ଼ି ପାରୁନଥିବା ସଂପର୍କରେ ଦର୍ଶାଇବାକୁ ଯାଇ କୁହାଯାଇଛି- "ସର୍ପରେ ଜାତକଲୁ ମୋତେ-ସଭାବ ଛାଡିବି କେମନ୍ତେ ।" ଆପେ ମରି ସଙ୍ଗଲୋଡ଼ି ଆଲୋଚନାରେ-"ମିଶୁ ଦେଶ ପାଣ୍ଠି ମୋ ନିଜ ପାଣ୍ଠିରେ / ଦେଶବାସୀ ମଲେ ମରନ୍ତୁ ଭୋକରେ ।" ଛୁଞ୍ଚିମୁହାଁଙ୍କ ସପକ୍ଷରେ ଆଲୋଚନାରେ - "ସାରା ସଂସାରଟା ଦୁଃଖ ଯନ୍ତ୍ରଣାରେ / ନରକକୁ ପଛେ ଯାଉ / ବିଳାସ ବ୍ୟସନ ସରଗର ସୁଖ / ସଦା ମୋତେ ମିଳୁଥାଉ ।" ତୁଣ୍ଡବାଇଦ ଆଲୋଚନାରେ-"ଗୋଡ ଖସିଗଲେ ଜଣେ ମରେ / ତୁଣ୍ଡ ଖସିଗଲେ ସହସ୍ର ମରନ୍ତି ।" ନ ଦେଖିଲା ଓଉ ରେ-"ଆଜିର ଯୁଗ ଚଳଣି ସହ ହେବୁ ତୁ ଯଦି ଫିଟ୍ / ଆପଣା ଢୋଲ ପିଟ୍ ଭାଇ ଆପଣା ଢୋଲ ପିଟ୍" ଆଦି ଅନେକ ଉଦ୍ଧୃତିର ପ୍ରୟୋଗ କରି ଆଲୋଚନାଗୁଡିକୁ ବେଶ ସରସ ଓ ସୁଖପାଠ୍ୟ କରି ଉପସ୍ଥାପିତ କରିଛନ୍ତି ।

ଏତଦ୍ ବ୍ୟତୀତ ଡ.ସାହୁ ଆମ ଭାଷା ସାହିତ୍ୟ ସଂସ୍କୃତି ସଂପର୍କରେ ନିଜସ୍ୱ ମତ ଉପସ୍ଥାପନ କରିବାକୁ ଯାଇ ରଚନା କରିଛନ୍ତି ୧୬ଟି ପ୍ରବନ୍ଧ । ଏହି ସବୁ ପ୍ରବନ୍ଧଗୁଡିକ ମଧ୍ୟରୁ ଅଧିକାଂଶ ପ୍ରବନ୍ଧରେ ଓଡିଆ ଭାଷାର ପ୍ରସାର ପ୍ରଚାର ଉନ୍ନତି କ୍ଷେତ୍ରରେ ଦେଖାଦେଇଥିବା ସମସ୍ୟାଗୁଡିକ ସଂପର୍କରେ ଓ ସେ ସବୁର ନିରାକରଣ ଉପରେ ସେ ନିଜେ ଗୁରୁତ୍ୱ ଦେଇଛନ୍ତି । ମୂଲ୍ୟବୋଧ ଭିତ୍ତିକ ଶିକ୍ଷାର ବିକାଶରେ ଭାଷା ଶିକ୍ଷକଙ୍କ ଭୂମିକା ପ୍ରବନ୍ଧଟିରେ ଶିକ୍ଷା ଅପେକ୍ଷା ଶିକ୍ଷକଙ୍କ ଭୂମିକା ଉପରେ ଡ.ସାହୁ ଯେମିତି ଗୁରୁତ୍ୱ ପ୍ରଦାନ କରିଛନ୍ତି, ସେମିତି ଶିକ୍ଷାରେ କେଉଁ ପ୍ରକାର ନୈତିକ ମୂଲ୍ୟବୋଧ ରହିବା ବାଞ୍ଛନୀୟ ଏବଂ ସେ ସବୁକୁ ଶିଶୁଙ୍କୁ କେଉଁ କୌଶଳ ଅବଲମ୍ବନ କିପରି ପିଲାମାନଙ୍କ ଜୀବନ ଶୈଳୀରେ ପ୍ରୟୋଗ କରିବା ସଂଭବ ହୋଇପାରିବ ସେଥିପାଇଁ ମଧ୍ୟ ମାର୍ଗ ପ୍ରଦର୍ଶନ କରିବା କ୍ଷେତ୍ରରେ ଯତ୍ନବାନ ହୋଇଛନ୍ତି । ଏତଦ୍ ବ୍ୟତୀତ 'ବହି ପଢ଼ା ଅଭ୍ୟାସ'ର ଆବଶ୍ୟକତା ଏବଂ ଶିଶୁକୁ ଏ ଦିଗରେ ଅଭ୍ୟସ୍ତ କରେଇବା କ୍ଷେତ୍ରରେ ପିତାମାତା ଅଭିଭାବକମାନଙ୍କ ଭୂମିକା ଓ କର୍ତ୍ତବ୍ୟ ସଂପର୍କିତ ଆଲୋଚନା, ଓଡିଆ



Digitized by srujanika@gmail.com

ଶିଶୁ ସାହିତ୍ୟର କେତୋଟି ଦିଗ ଶୀର୍ଷକ ପ୍ରବନ୍ଧରେ ଶିଶୁ ସାହିତ୍ୟ ସ୍ରଷ୍ଟାମାନଙ୍କୁ ଶିଶୁ ମାନସିକତା ସହିତ ପରିଚିତ କରାଇବା ସହ ଶିଶୁ ମନସ୍ତତ୍ତ୍ୱ ଆଧାରରେ ଶିଶୁମାନଙ୍କ ପାଇଁ ଲେଖା ସୃଷ୍ଟି କରିବାର ଆବଶ୍ୟକତା ସଂପର୍କରେ ଦୃଢୋକ୍ତି, 'ଓଡିଆ ଶିଶୁ ସାହିତ୍ୟ ସମାଲୋଚନାର ସମାଲୋଚନା' ଶୀର୍ଷକରେ ଆଲୋଚନା କରି ସେ ଶିଶୁ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଏକ ଦୃଷ୍ଟାନ୍ତ ସୃଷ୍ଟି କରି ପାରିଛନ୍ତି । ଶିଶୁ ସାହିତ୍ୟକୁ ତ୍ରୁଟି ଶୂନ୍ୟ ଭାବେ ଶିଶୁମାନଙ୍କ ପାଖରେ କିପରି ଉପସ୍ଥାପନ କରାଯାଇ ପାରିବ ସର୍ବୋପରି- ଶିଶୁର ମନୋରଞ୍ଜନ ସହିତ ତାର ବ୍ୟକ୍ତିତ୍ୱ ଓ ଚରିତ୍ର ଗଠନ ଦିଗରେ ଏହା କିପରି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଲିଭାଇ ପାରିବ ଏ ଦିଗଟି ପ୍ରତି ଆଲୋଚକ ବିଶେଷ ଦୃଷ୍ଟି ଦେଇ ତାଙ୍କର ଆଲୋଚନାଗୁଡିକ ଉପସ୍ଥାପନ କରିଛନ୍ତି । ତାଙ୍କ ମତରେ ଶିଶୁ ସାହିତ୍ୟର ଦୃଢ଼ ଭିତ୍ତିଭୂମି ବ୍ୟତୀତ ଓଡିଆ ସାହିତ୍ୟର ସୁଉଚ୍ଚ ଅଟ୍ଟାଳିକା ନିର୍ମାଣ କରିବା ସମ୍ଭବ ନୁହେଁ । ତେଣୁ ସେ ଶିଶୁ ସାହିତ୍ୟର ସୃଷ୍ଟି ଓ ଅଗ୍ରଗତି ପାଇଁ ବହୁ ମୌଳିକ ତଥ୍ୟ ତାଙ୍କ ପ୍ରବନ୍ଧଗୁଡିକରେ ଉପସ୍ଥାପନ କରିବା ସହ, କି ପ୍ରକାର ଉପାୟ ଅବଲମ୍ବନ କଲେ ଶିଶୁ ସାହିତ୍ୟର ସୃଷ୍ଟି ତଥା ସ୍ରଷ୍ଟାଙ୍କର ଅଭିବୃଦ୍ଧି ସାଧନ କରାଯାଇ ପାରିବ ଆଦି ଦିଗକୁ ଆଲୋଚନା ପରିସରକୁ ଆଣିଥିଲା ବେଳେ ଓଡିଆ ମୌଖିକ ଶିଶୁ ସାହିତ୍ୟ ଉପରେ ସେ ଅନେକ ପ୍ରବନ୍ଧ ତଥା ଓଡିଆ ଶିଶୁ ସାହିତ୍ୟ ଆଲୋଚନା ନାମକ ଏକ ପୁସ୍ତକ ପ୍ରକାଶ କରିଛନ୍ତି ।

ପ୍ରାୟ ୪ହଜାରରୁ ଉର୍ଦ୍ଧ କର୍ମଚାରୀଙ୍କ ପରିବାରକୁ ନେଇ ଗଢିଉଠିଥିବା ମିଗ୍ ସହର ପ୍ରାୟ ୨୦ବା ୩୦ ହଜାର ଲୋକଙ୍କ ମଧ୍ୟରେ ସୁସଂପର୍କ ପ୍ରତିଷ୍ଠା, ଭାଇଚାରା ବଜାୟ ରଖିବା ଭାରତର ବିଭିନ୍ନ ଅଞ୍ଚଳରୁ ଆସି ଏଠାରେ କର୍ମରତ ବିଭିନ୍ନ ଭାଷାଭାଷୀଙ୍କ ମଧ୍ୟରେ ନିଜ ଭାଷାର ଅସ୍ତିତ୍ୱ ଜାହିର କରାଇବା ପାଇଁ ୧୯୬୪ରେ ପ୍ରତିଷ୍ଠା କରାଯାଇ ୧୯୬୬ରେ କାର୍ଯ୍ୟକାରୀ ହୋଇଥିବା ହିନ୍ଦୁସ୍ଥାନ ଏରୋନଟିକ୍ସ ଲିମିଟେଡର ସହର ସୁନାବେଡା ଠାରେ ଉତ୍କଳ ସାଂସ୍କୃତିକ ପରିଷଦ ନାମକ ଅନୁଷ୍ଠାନଟିଏ ଗଢିଉଠିଥିଲେ ମଧ୍ୟ ଅନେକ ପରେ ୧୯୮୩ ମସିହାରେ ଆରମ୍ଭ ହୋଇଥିଲା ଓଡିଆ ମାନଙ୍କ ଇଷ୍ଟଦେବତା ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଓ ପ୍ରତିଷ୍ଠିତ ହୋଇଥିଲା ଦାରୁବିଗ୍ରହ, ଏହି ଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥା ସହ ଜଡିତ ରହି ଡ.ସାହୁ ଶ୍ରୀଜଗନ୍ନାଥ ଧର୍ମ, ଭକ୍ତିଭାବକୁ ଆଧାର କରି ଯେଉଁ କେତୋଟି ପ୍ରବନ୍ଧ ରଚନା କରିଛନ୍ତି ସେ ସବୁ ମଧ୍ୟରୁ-ସୁନାବେଡାର ସର୍ଣ୍ଣକ୍ଷେତ୍ରରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା, ଭାରତେ ଉତ୍କଳ ଦେଶେ ଭୂସର୍ଗେ ପୁରୁଷୋତ୍ତମେ, ଶ୍ରୀଜଗନ୍ନାଥ ଚେତନାରେ ପ୍ରକୃତି ଓ ମଣିଷ, ଭକ୍ତକବି ସାଲବେଗଙ୍କ ରଚନାରେ ଶ୍ରୀଜଗନ୍ନାଥ ଆଦି ପ୍ରବନ୍ଧଗୁଡିକ ବେଶ୍ ଉଲ୍ଲେଖ ଯୋଗ୍ୟ ଓ ପ୍ରଭାବଶାଳୀ ରଚନା ଭାବେ ପରିଗଣିତ ହୋଇପାରିଛି ।



Digitized by srujanika@gmail.com

ଏ ସବୁକୁ ବାଦ ଦେଲେ ନିଜ ବିଚାର ପରିସରକୁ ତଥା ନିଜକୁ ପ୍ରଭାବିତ କଲାପରି ଯେଉଁ କିଛି ବ୍ୟକ୍ତି ବା ବ୍ୟକ୍ତିତ୍ୱ ଲେଖକଙ୍କ ଦୃଷ୍ଟିକୁ ଆସିଛନ୍ତି, ସେ ସେମାନଙ୍କ ସଂପର୍କରେ କିଛି ଆଲୋଚନା କରିଛନ୍ତି । ଏପରି ଆଲୋଚନାଗୁଡ଼ିକ ମଧ୍ୟରେ ରହିଛି ଡ.ସାହୁଙ୍କ ନଅଗୋଟି ଉଲ୍ଲେଖନୀୟ କୃତି । ଏଇ ନଅଗୋଟି ଆଲୋଚନାର ଅଧ୍ୟୟନରୁ ଜଣାଯାଏ ଯେ ସେ ଏସବୁ ବ୍ୟକ୍ତି ଓ ବ୍ୟକ୍ତିତ୍ୱମାନଙ୍କୁ ଅତି ପାଖରୁ ଦେଖିଛନ୍ତି ବା ବେଶ୍ ଭଲ ଭାବେ ଅଧ୍ୟୟନ କରିଛନ୍ତି । ସେମାନଙ୍କ ସୃଷ୍ଟି ତଥା ବ୍ୟକ୍ତିଗତ କୃତି ସବୁକୁ ପୁଙ୍ଖାନୁପୁଙ୍ଖ ଭାବେ ଅନୁସଂଧାନ କରି ଅତି ସଚେତନ ଭାବେ ସେମାନଙ୍କ ସଂପର୍କରେ ନିଜର ମତାମତ ରଖିଛନ୍ତି । ତାଙ୍କର ଉପରୋକ୍ତ ନଅଟି ଯାକ ଆଲୋଚନାରେ କୌଣସି ଠାରେ ଅସତ୍ୟ କି ଅମୂଳକ ବା ଅତିରଂଜିତ ମନ୍ତବ୍ୟ ଥିବା ପାଠକଙ୍କ ଦୃଷ୍ଟି ପରିସରକୁ ଆସେ ନାହିଁ ।

**ସଂଗଠକ ଭୂମିକାରେ ଡ.ବସନ୍ତ କିଶୋର ସାହୁ :**

ସ୍ମରଣିକା 'ସୁନାବେଡା ବିଶେଷାଙ୍କ'ରେ ସଂପାଦକୀୟ ବକ୍ତବ୍ୟ ରଖିବାକୁ ଯାଇ ଡ.ବସନ୍ତ କିଶୋର ସାହୁ ଦର୍ଶାଇଛନ୍ତି ଯେ ସୁନାବେଡା ତାଙ୍କର କର୍ମଭୂମି । ତା'ରି ପାଣି ପବନ ତାଙ୍କୁ ବଞ୍ଚିବା ଶିଖାଇଛି ଓ ବଞ୍ଚିବା ଶିଖାଇଛି ସମଗ୍ର ସୁନାବେଡା ଶିଳ୍ପାଞ୍ଚଳରେ କର୍ତ୍ତବ୍ୟ ରତ ୪ହଜାରରୁ ଉର୍ଦ୍ଧ୍ୱ କର୍ମଚାରୀ ତଥା ସେମାନଙ୍କ ପରିବାର ବର୍ଗଙ୍କୁ । ଯେଉଁ କର୍ମଭୂମି ସେମାନଙ୍କୁ ଭରଣ ପୋଷଣ ଯୋଗାଇବା ସହ ସେମାନଙ୍କ ପିଲାମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ ତଥା ସୃଜନଶୀଳତାର ବିକାଶ ପାଇଁ ଦାୟିତ୍ୱ ନିଜ କାନ୍ଧରେ ବୋହିଛି, ସେଇ ମାଟି ପ୍ରତି ତାଙ୍କର କିଛି ଦାୟିତ୍ୱ ତଥା କର୍ତ୍ତବ୍ୟ ରହିଛି ନିଶ୍ଚୟ । ଏହି ଦାନକୁ ନେଇ ଅଧ୍ୟାପକ ଡ. ବସନ୍ତ କିଶୋର ସାହୁ ୧୯୮୪ ମସିହାରେ ସୁନାବେଡାସ୍ଥିତ ଏରୋନଟିକ୍ସ ମହାବିଦ୍ୟାଳୟରେ ଯୋଗ ଦେଲା ପରେ ନିଜର ଶିକ୍ଷାଦାନ ଦାୟିତ୍ୱ ତୁଲେଇବା ସହ ଆଉ କିଛିଟା ଦାୟିତ୍ୱ ନିଜ ହାତକୁ ନେବାର ଆବଶ୍ୟକତା ଅନୁଭବିଛନ୍ତି ।

ସେ ଚାହିଁ ନାହାନ୍ତି ବହୁ ଭାଷାଭାଷୀଙ୍କ ଦ୍ୱାରା ପରିଚାଳିତ ଏ ଯାନ୍ତ୍ରିକ ସହରର ମଣିଷମାନେ ଯନ୍ତ୍ରବତ୍ ଜୀବନ ଜୀଅନ୍ତୁ । ଏଠି ବିରାଜୁଥିବା ନିୟତ ନିରବତାକୁ କୋଳାହଳରେ ପରିଣତ କରିବା ପାଇଁ, ଏଠି ଅନ୍ଧଗଳିର ଅନ୍ଧାର ଭିତରେ ହଜି ଯାଉଥିବା ମାନବିକତା ତଥା ଭାଇଚାରା ପବନକୁ ଉଦ୍‌ଜୀବିତ ରଖିବା ପାଇଁ ୧୯୮୫ ମସିହାରେ ସେ ଏଠି ଆରମ୍ଭ କରିଥିଲେ 'ବନଫୁଲ ସାହିତ୍ୟ ପରିଷଦ' । ଉଦ୍ଦେଶ୍ୟ ଥିଲା ବହୁଭାଷା ଭାଷୀ ଶିଳ୍ପାଞ୍ଚଳରେ ଓଡିଆ ଭାଷାର ପ୍ରସାର ପ୍ରଚାର ଓ ସୁରକ୍ଷା କରିବା ସହିତ ଏ ଅଞ୍ଚଳର ଲୋକମାନଙ୍କ ମନପ୍ରାଣକୁ ବନଫୁଲର ମହକରେ ମହକେଇ ଦେଇ ସେମାନଙ୍କୁ କମନୀୟତା ତଥା ନମନୀୟତାର ଏକ ସୁମଧୁର ସମାହାରରେ ପରିଣତ କରିଦେବା ।

ଡ.ସାହୁ ଏ କ୍ଷେତ୍ରରେ ଅନେକାଂଶରେ ସଫଳ ହୋଇଛନ୍ତି ଏକଥା ସୂଚନା



Digitized by srujanika@gmail.com

ମିଳିଥାଏ ଏହି ଶିଳ୍ପାଞ୍ଚଳରେ ଗଢି ଉଠିଥିବା ଅନ୍ୟାନ୍ୟ ଅନେକ ସାଂସ୍କୃତିକ ଅନୁଷ୍ଠାନ ମାନଙ୍କର ସ୍ଥିତିର ଅନୁଧ୍ୟାନରୁ । ଡ.ସାହୁଙ୍କ ଦ୍ୱାରା ସୁନାବେଡା ସହରରେ ୧୯୮୬ ରେ ଆରମ୍ଭ ହୁଏ ପ୍ରଥମ ବିଷୁବ ମିଳନ । ଏହା ପୂର୍ବରୁ କୋରାପୁଟରେ ସତ୍ତା ସାହିତ୍ୟ ସଂସଦ ଦ୍ୱାରା ମହାବିଷୁବ ସଂକ୍ରାନ୍ତି ତିଥିରେ ଜିଲ୍ଲା ସ୍ତରୀୟ ସାହିତ୍ୟ ଉତ୍ସବ ଅନୁଷ୍ଠିତ ହୋଇ ଆସୁଥିଲା । ତେଣୁ ବନଫୁଲ ସାହିତ୍ୟ ପରିଷଦ ମହାବିଷୁବ ସଂକ୍ରାନ୍ତି ପରେ ବା ପୂର୍ବରୁ ଏକ ନିର୍ଦ୍ଧାରିତ ଛୁଟି ଦିନରେ ଏହି ବିଷୁବ ମିଳନର ଆୟୋଜନ କରିଥିଲା । ଯେଉଁଥିରେ ସୁନାବେଡା ଶିଳ୍ପାଞ୍ଚଳର ବହୁ ଓଡିଆ ଭାଷା ଭାଷୀ ସାରସ୍ୱତ ବ୍ୟକ୍ତିତ୍ୱଙ୍କ ସହ କିଛି ଅଣ ଓଡିଆ ବ୍ୟକ୍ତି ମଧ୍ୟ ଉପସ୍ଥିତ ରହିଥିଲେ । ୧୯୮୭ରେ ଡ.ସାହୁଙ୍କ ଉଦ୍ୟମରେ ବନଫୁଲ ସାହିତ୍ୟ ପରିଷଦ ତରଫରୁ ବିଷୁବ ମିଳନ ଅବସରରେ ପ୍ରକାଶ ପାଇଲା ବନଫୁଲ କବିତା ସଂକଳନ । ପରେ ପରେ ୧୯୮୮ ବିଷୁବ ମିଳନ ଅବସରରେ ବନଫୁଲ-୨ର ଗଳ୍ପ ସଂକଳନ, ୧୯୯୮ରେ ବନଫୁଲ-୩ର ଗଳ୍ପ ସଂକଳନ ୧୯୯୦ରେ ବନଫୁଲ-୪ ର କବିତା ସଂକଳନ ଆତ୍ମପ୍ରକାଶ କଲା ।

ସେହି ଏକା ବର୍ଷରେ ଏ ଅଞ୍ଚଳର କିଛି ଆୟୋଜକଙ୍କ ପ୍ରଚେଷ୍ଟାରେ ଗଢି ଉଠିଥିବା ଓଡିଆ ଲେଖକ ପାଠକ ସମ୍ମେଳନ ଅନୁଷ୍ଠିତ ହୋଇଥିଲା ଏବଂ ଡ.ବସନ୍ତ କିଶୋର ସାହୁ ଏହାର ସଂପାଦକ ଦାୟିତ୍ୱ ତୁଲାଇଥିଲେ । ପରେ ପରେ ସମାନ୍ତରାଳ ଭାବେ ୧୯୮୩ରେ ଜନ୍ମ ନେଇଥିବା ସତ୍ତା ସାହିତ୍ୟ ସଂସଦର ସତ୍ତା ତ୍ରୟମାସିକ ପତ୍ରିକା, ବନଫୁଲ ବାର୍ଷିକ ସଂଖ୍ୟା ଏବଂ ଓଡିଆ ଲେଖକ ପାଠକ ସମ୍ମେଳନର ସ୍ମରଣିକା ଆତ୍ମ ପ୍ରକାଶ କରି ସମଗ୍ର ଅବିଭକ୍ତ କୋରାପୁଟ ଜିଲ୍ଲାରେ ଏକ ସାରସ୍ୱତ ବାତାବରଣ ସୃଷ୍ଟି କରିବା ସହ ସମଗ୍ର ରାଜ୍ୟରେ ତଥା ଓଡିଆ ସାହିତ୍ୟ କ୍ଷେତ୍ରରେ ବେଶ୍ ଚମକ ସୃଷ୍ଟି କରି ପାରିଥିଲେ । ୧୯୮୮ରେ ବନଭାରତୀ, ସତ୍ତା, ଡ.ବସନ୍ତ କିଶୋର ସାହୁ ତଥା ଶିଶୁ ସାହିତ୍ୟ ଗବେଷଣା ପରିଷଦ ସହଯୋଗରେ ତ୍ରିଦିବସୀୟ ଶିଶୁ ସାହିତ୍ୟ କର୍ମଶାଳା ଅନୁଷ୍ଠିତ ହୋଇଥିଲା ବେଳେ ୧୯୯୧ରେ ବନଫୁଲ ସାହିତ୍ୟ ପରିଷଦ ଆନୁକୂଲ୍ୟରେ ଓଡିଶାର ଲୋକନାଟ୍ୟ ଉପରେ ଏକ କର୍ମଶାଳା ଅନୁଷ୍ଠିତ କରାଯାଇ ୧୯୯୨ ବିଷୁବ ଅବସରରେ ବନଫୁଲ-୬ ର କବିତା ସଂକଳନ ସହିତ ଓଡିଆ ଲୋକନାଟ୍ୟ ସଂକଳନ ପ୍ରକାଶ ପାଇଲା । ୧୯୯୩ରେ ବନଫୁଲ-୭ ଗଳ୍ପ ସଂକଳନ ସହିତ ଡ.ବସନ୍ତ କିଶୋର ସାହୁଙ୍କ ସଂପାଦନାରେ ପ୍ରକାଶ ପାଇଲା । 'କୋରାପୁଟ ପରିକ୍ରମା' ନାମକ ଏକ ଗବେଷଣାଧର୍ମୀ ତଥ୍ୟ ମୂଳକ ପ୍ରବନ୍ଧ ପୁସ୍ତକ । ୧୯୯୪ - ବନଫୁଲ-୮ କବିତା ସଂକଳନ ସହ ଓଡିଆ ଲେଖକ ପାଠକ ସମ୍ମେଳନ ସ୍ମରଣିକା କ୍ରମାଗତ ଭାବେ ୧୯୯୬ ଯାଏ ପ୍ରକାଶ ପାଇ ଆସିଥିଲା । ଏହା ପରେ ଡ.ସାହୁ ନିଜକୁ ବହୁ ଆନୁଷ୍ଠାନିକ କାର୍ଯ୍ୟରେ ଲିପ୍ତ କରିବା ସହ ସୁନାବେଡାର ବିଭିନ୍ନ ଅନୁଷ୍ଠାନ ପାଇଁ ନିଜ ସମୟରୁ କିଛି କିଛି ଦେଇଛନ୍ତି । ଉତ୍କଳ ସାଂସ୍କୃତିକ ପରିଷଦ, ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥା,



Digitized by srujanika@gmail.com

ନୀଳାଚଳ ସାରସ୍ୱତ ସଂଘ, ମଧୁସୂଦନ ସେବାସଂଘ, ସ୍ନେହୀ ସମାଜ, ବନପ୍ରଭା ସାହିତ୍ୟ ସଂସଦ, ପ୍ରଗତି ସାହିତ୍ୟ ସଂସଦ, ଚନ୍ଦ୍ରିକା ସାହିତ୍ୟ ସଂସଦ ପ୍ରଭୃତିରେ ତାଙ୍କର କେଉଁଠି ପ୍ରତ୍ୟକ୍ଷ ସହଯୋଗ କାମ କରିଛିତ ଆଉ କେଉଁଠି ପରୋକ୍ଷ ସାହାଯ୍ୟ ସହଯୋଗ ରହିଛି । ଏତଦ୍ ବ୍ୟତୀତ ଡ.ସାହୁଙ୍କ ସଂପାଦନାରେ ସର୍ଣ୍ଣକ୍ଷେତ୍ର ରଥଯାତ୍ରା ବିଶେଷାଙ୍କ ପ୍ରକାଶ ପାଇଥିବା ବେଳେ ୨୦୦୩ରୁ ଏଯାବତ୍ ଉତ୍କଳ ସାଂସ୍କୃତିକ ପରିଷଦ ଦ୍ୱାରା-ସ୍ୱତନ୍ତ୍ର ଓଡିଶା ବିଶେଷାଙ୍କ, କୃଷ୍ଣ ଚନ୍ଦ୍ର ଗଜପତି ବିଶେଷାଙ୍କ, ଉତ୍କଳ ଗୌରବ ମଧୁସୂଦନ ବିଶେଷାଙ୍କ, ଫକୀର ମୋହନ ବିଶେଷାଙ୍କ, ଉତ୍କଳମଣି ଗୋପବନ୍ଧୁ ବିଶେଷାଙ୍କ, ସ୍ୱଭାବକବି ଗଙ୍ଗାଧର ମେହେର ବିଶେଷାଙ୍କ, ସୁନାବେଡା ବିଶେଷାଙ୍କ ଆଦି ପ୍ରକାଶ ପାଇଆସୁଛି ।

ଏହିପରି ଡକ୍ଟର ବସନ୍ତ କିଶୋର ସାହୁଙ୍କ କାର୍ଯ୍ୟଧାରା ଆନୁଷ୍ଠାନିକ ସଂପୃକ୍ତି ସହିତ ତା଼ଙ୍କ ପ୍ରେରଣା ତଥା ପ୍ରୋତ୍ସାହନରେ ଅଗ୍ରଣୀ ପ୍ରକାଶନ ଅନୁଷ୍ଠାନ ଆନୁକୂଲ୍ୟରେ ସେ ଏ ଅଞ୍ଚଳର ଅନେକ ଲେଖକ ଲେଖିକାଙ୍କୁ ପ୍ରକାଶନର ସୁଯୋଗ ମଧ୍ୟ ଆଣି ଦେଇଛନ୍ତି । ତାଙ୍କ ପ୍ରଚେଷ୍ଟାରେ ସେମିଳିଗୁଡାଠାରେ ପ୍ରତିଷ୍ଠିତ ହୋଇପାରିଛି ପୂର୍ଣ୍ଣିମା ଅଫ୍‌ସେଟ୍ ପ୍ରେସ୍ । ଏମିତି ଆହୁରି ଅନେକ କିଛି ସାରସ୍ୱତ, ସାଂସ୍କୃତିକ ଓ ଧାର୍ମିକ ଅନୁଷ୍ଠାନ ସହିତ ଅନୁବନ୍ଧିତ ଡ.ସାହୁ ଏ ସହରର ଏକ ପ୍ରତିଷ୍ଠିତ, ପରିଚିତ ଓ ବହୁଚର୍ଚ୍ଚିତ ବ୍ୟକ୍ତିତ୍ୱ । ଦୀର୍ଘ ଦିନ ପ଼ରେ ତାଙ୍କୁ ତାଙ୍କର ଅବସରକାଳୀନ ବିଦାୟ ସଂବର୍ଦ୍ଧନା ପାଇଁ ବନପ୍ରଭା ସାହିତ୍ୟ ଅନୁଷ୍ଠାନ ତାଙ୍କ ସ୍ମୃତିରେ ଏକ ପୁସ୍ତକ ପ୍ରକାଶ କରୁଥିବାରୁ ଅନୁଷ୍ଠାନର କର୍ମକର୍ତ୍ତାଙ୍କୁ ସାଧୁବାଦ ଜଣାଇ ସଂକ୍ଷିପ୍ତ ସ୍ମୃତିଚାରଣ ସହ ରହୁଛି ।



ସଭାପତି
ସତ୍ତା ସାହିତ୍ୟ ସଂସଦ
କୋରାପୁଟ



Digitized by srujanika@gmail.com

# ଗାଆଁରୁ ସହର : ସବୁଠି ବସନ୍ତ କିଶୋର

ସରଳା ବେହେରା

'ଏକୁଟିଆ ଚାଲିବାକୁ
ପଣ ଯେ କରିଛି
ଅନ୍ଧାରକୁ ଅପସାରି
ଜ୍ଞାନର ଆଲୋକ ବାଣ୍ଟିଛି
ନୀରବ ସାଧକ ସେ ଯେ
ସତେ ଅବା
ସାହିତ୍ୟର କୋଣାର୍କ ତୋଳୁଛି ।'

ଯୋଗଜନ୍ମା ଅନନ୍ୟ ପ୍ରତିଭାଧର, ଓଡିଆ ଶିଶୁ ସାହିତ୍ୟର ବିଶୁ ମହାରଣା, ଉତ୍କଳ ଭାରତୀର ନୀରବ ସାଧକ, ପ୍ରଜ୍ଞାବାନ୍ ପୁରୁଷ ହେଉଛନ୍ତି ଡଃ.ବସନ୍ତ କିଶୋର ସାହୁ । ସରୂପା ବିରୂପା ତଟ ମଣ୍ଡନ କରୁଥିବା, ସାହିତ୍ୟର ମହାମହା ରଥୀଙ୍କୁ କୋଳରେ ଧାରଣ କରିଥିବା କୁସୁପୁର ଗାଁର ଇତିହାସରେ ସେ ଦିନ ଆଉ ଏକ ଫର୍ଦ୍ଦ ଯୋଡି ହୋଇଯାଇଥିଲା, ଯେଉଁଦିନ ମାଟି ଅଗଣାକୁ ମହମହ ବାସ୍ନାରେ ଭରିଦେଇ ବସନ୍ତ ମଳୟର ମହକ ମହକେଇ ଦେଇଥିଲା ମା କୋଳକୁ । ୧୯୫୬ ମସିହା ମାଘ ଶୁକ୍ଳପଞ୍ଚମୀ-ବିଦ୍ୟାଦାୟିନୀ ମା' ସରସ୍ୱତୀଙ୍କ ପୂଜା, ବରଦାଙ୍କ ଶୁଭ ଆଶୀର୍ବାଦରୁ ଜନ୍ମ ନେଲେ ବାଣୀପୁତ୍ର ବସନ୍ତ କିଶୋର ।

ତୁଳସୀ ଦୁଇପତ୍ରରୁ ବାସିଲା ପରି ଆଦ୍ୟ କୈଶୋରରୁ ତାଙ୍କ ଠାରେ ସାହିତ୍ୟ ପ୍ରତିଭା ପ୍ରସ୍ଫୁଟିତ ହୋଇଥିଲା । ଯେଉଁ ବୟସରେ ପିଲା ପାଠପଢି ବଡ ହେବାର ସ୍ୱପ୍ନ ଦେଖନ୍ତି, ସେଇ ବୟସରୁ ସେ ସାହିତ୍ୟ ସର୍ଜନା କରି ଅନନ୍ୟ ପ୍ରତିଭାର ପରିଚୟ ଦେଇଛନ୍ତି । କିଶୋର ବୟସରେ ପତ୍ରିକା ସଂପାଦନା କରିବାର ଝୁଙ୍କ ଥିଲା । ପରବର୍ତ୍ତୀ କାଳରେ ତାହା ତାଙ୍କୁ ବହୁ ପତ୍ରିକା ସଂପାଦନା କରିବାକୁ ପ୍ରେରିତ କରିଛି । ବାଲ୍ୟ କାଳରୁ ତାଙ୍କର ଏପରି ଚିନ୍ତା କରିବାର ଯଥେଷ୍ଟ କାରଣ ଥିଲା । କାରଣ ତାଙ୍କ ଚତୁଃପାର୍ଶ୍ୱରେ ଥିଲା ସାହିତ୍ୟିକ ବାତାବରଣ ଓ ସାହିତ୍ୟିକ ଗୁରୁମାନଙ୍କର ସଂସର୍ଗ । ତେଣୁ ସାହିତ୍ୟ କଥା ନ ଭାବି ସେ ଆଉ କଣ ଭାବିଥାନ୍ତେ ।

ସବୁ ଶିଶୁ ଶୈଶବରୁ ଏପରି ଭାବି ନ ଥାନ୍ତି । ସାଧାରଣ ଭିତରେ ଅସାଧାରଣ



Digitized by srujanika@gmail.com

ବ୍ୟକ୍ତିତ୍ୱ ଖୁବ୍ ଶିଘ୍ର ବାରି ହୋଇପଡେ । ପିଲା ଦିନରୁ ସେ ନିର୍ଭୀକ ଓ ସ୍ପଷ୍ଟବାଦୀ । ସ୍ମିତ ହସ, ସ୍ୱଳ୍ପ କଥା, ସୁଦୂର ପ୍ରସାରୀ ଯୋଜନା, ସର୍ବଦା କର୍ମତତ୍ପର ରହିବା ତାଙ୍କ ବ୍ୟକ୍ତିତ୍ୱର ଗାମ୍ଭୀର୍ଯ୍ୟକୁ ଦ୍ୱିଗୁଣିତ କରେ । ବାଲ୍ୟକାଳରୁ ଅନେକ ନିଷ୍ଠୁର ବାସ୍ତବତାକୁ ସାମ୍ନା କରି ଯିଏ ଆଗକୁ ଗୋଡ ବଢେଇଛି, ନିଶ୍ଚିତ ଭାବରେ ସେ ଜଣେ ସାଧକ ହିଁ ହୋଇପାରେ ।

ତାଙ୍କ କିଶୋର ମନରେ କୁସୁପୁରର 'ପଲ୍ଲୀଜ୍ୟୋତି ପାଠାଗାର' ହାତରେ ଧରେଇ ଦେଇଥିଲା କଲମ । ଆଦ୍ୟ ଓଁକାରର ଗୁଞ୍ଜରଣରେ ଗୁଞ୍ଜରିତ ହେଲା କବିତା 'ବରଷକେ ଆଜି ଆସିଛି ବସନ୍ତ' । ମାତୃଭୂମିର 'କିଶୋର ଫଉଜ' କିଶୋରଶ୍ରୀ ଉପାଧିରେ ମଣ୍ଡିତ କରି ଆଖିରେ ଭରିଦେଲା ଆଖିଏ ସ୍ୱପ୍ନ । ସେଇ ଦିନଠୁ ସେ ସ୍ୱପ୍ନ ଦେଖିଛନ୍ତି, ଦେଖାଇଛନ୍ତି । ସାହିତ୍ୟାକାଶରେ ଉଡିଛନ୍ତି, ଉଡା ବି ଶିଖେଇଛନ୍ତି । ସେ ଯୁଆଡେ ଯାଇଛନ୍ତି ସେଠି ସୃଷ୍ଟି କରିଛନ୍ତି ସାହିତ୍ୟିକ ବାତାବରଣ ଓ ସାହିତ୍ୟପ୍ରେମୀ । ବେପଥୁ ପ୍ରାଣରେ ତୋଳିଛନ୍ତି ଶୀତ୍କାର । ଚଲାପଥରେ ଛାଡି ଯାଇଛନ୍ତି ଅସଂଖ୍ୟ ପାଦଚିହ୍ନ ।

ତୂଣୀରରୁ ବାହାରିଥିବା ସର ଓ ନିମ୍ନଗାମୀ ସ୍ରୋତର କିଏ ବା ପ୍ରତିରୋଧ କରିପାରିବ ? ସାହିତ୍ୟର ବିସ୍ତୀର୍ଣ୍ଣ ଖଳା ପ୍ରସ୍ତୁତ କରିବା ପାଇଁ ଯିଏ ଅଭିପ୍ରେତ ସେ ବା ସୀମିତ ବଳୟ ମଧରେ ବାନ୍ଧି ହୋଇ ରହନ୍ତେ କିପରି ? ଗାଁ ମାଟିର ମୋହ ଓ ଧୂଳିଖେଳର ସ୍ୱପ୍ନ ଛାଡି କର୍ମପ୍ରବାହର ତାଡନାରେ କୁସୁପୁରରୁ ଆସିଲେ କୋରାପୁଟ । ଓଡିଆ ଅଧାପକ ଭାବେ ଯୋଗ ଦେଲେ ଏରୋନଟିକସ୍ କଲେଜରେ । ସୁନାବେଡାକୁ ବାଛିନେଲେ ନିଜର କର୍ମଭୂମି ରୂପେ । ଆରମ୍ଭ ହେଲା ସାଧନା । ଅଧୁରା ସ୍ୱପ୍ନକୁ ସାକାର କରିବାର ଜୟଯାତ୍ରାରେ ଆଗେଇ ଚାଲିଲେ ସୋପାନ ପରେ ସୋପାନ । ପଛକୁ ଚାହିଁବାର ଅବକାଶ ନାହିଁ କି ସ୍ପୃହା ନାହିଁ । 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ'-ଗୀତାର ବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରି ପେଶା ଓ ନିଶାକୁ ନେଇ ଚାଲିଲେ ସମାନ୍ତରାଳ ଭାବରେ ।

ସୁନାବେଡାର ପାଣି, ପବନ, ପାହାଡ, ଜଙ୍ଗଲ ତାଙ୍କ ସାହିତ୍ୟିକ ଜୀବନକୁ ବଦଳେଇ ଦେଲା । କୋରାପୁଟ ପରି ଉପାନ୍ତ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାର ପ୍ରୟାସରେ ସେ ଅଗ୍ରଣୀ ଭୂମିକା ନେଲେ । ନୂଆ ନୂଆ ଭାବନାରେ ମସଗୁଲ ହୋଇ ଗଢିଲେ 'ବନଫୁଲ ସାହିତ୍ୟ ପରିଷଦ' । ବନଫୁଲର ମହକ ସୁନବେଡା ଛାଡି ସମଗ୍ର ଓଡିଶାରେ ତାର ମହକକୁ ଖେଳେଇ ଦେଲା । ବହୁ ନୂତନ କବିଙ୍କୁ କଲମ ଧରିବା ଶିଖେଇଛି ଏଇ ଅନୁଷ୍ଠାନ । ଶାଣିତ କରିଛି ନୂଆ ନୂଆ ଲେଖୁଥିବା କବିଙ୍କ ଲେଖନୀକୁ । ବନଫୁଲ ଅନୁଷ୍ଠାନ ମୋ ପାଇଁ ସ୍ମରଣୀୟ । ସେଇଠି ଆରମ୍ଭ ହୋଇଥିଲା ମୋ ଲେଖିକା ଜୀବନର ଆଦ୍ୟ ପାବଚ୍ଛ । କିଛି ଲେଖିବା ଓ ନିଜ ଲେଖାକୁ ବହିରେ ଛପା ହେବା ଦେଖିଲି ବନଫୁଲ ପତ୍ରିକା ମାଧମରେ । ଅପାର ଆନନ୍ଦ



Digitized by srujanika@gmail.com

ଖେଳିଗଲା ମନରେ । ତା' ପରେ ମନରେ ନିଶା ଲାଗିଲା । ବନଫୁଲର ସବୁ କାର୍ଯ୍ୟକ୍ରମରେ ଯୋଗ ଦେଲି । ମନେ ପଡେ ପ୍ରଥମ ଦିନର ସ୍ମୃତି । ସୁନାବେଡା-୧ ସ୍ଥିତ ସରକାରୀ ବିଦ୍ୟାଳୟ ପ୍ରାଙ୍ଗଣ । ଆମ୍ର ବୃକ୍ଷର ସୁଶୀତଳ ଛାୟାତଳେ କବିତା ପାଠ । ମୋ କବିତାର ଶୀର୍ଷକ ଥିଲା 'ସଂପର୍କ' । ସେହି ଯେ ସଂପର୍କର ଆୟମାରମ୍ଭ ହେଲା ଆଉ ପରିଣତ ହେଲା ସୁଦୃଢ ବନ୍ଧନରେ । ଓଡିଆ ଲେଖକ ପାଠକ ସମ୍ମେଳନ ମଧ୍ୟ ଯମଜ ଭଗିନୀ ସଦୃଶ ସାହିତ୍ୟ ଓ ସାହିତ୍ୟିକମାନଙ୍କୁ ଆପଣେଇ ନେଇ ଆଉ ପାଦେ ଆଗେଇ ଯାଇ ଏ ଯାବତ୍ ତା'ର ପ୍ରୟାସ ଜାରି ରଖିଛି । ସେଥିରେ ମଧ୍ୟ ସେ ସମ୍ପାଦକର ଗୁରୁ ଦାୟିତ୍ୱ ତୁଲାଇବାରେ ସଫଳ ହୋଇଛନ୍ତି ।

ସାର୍‌ଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ଗଢ଼ି ଉଠିଲା ୨୦୦୪ ମସିହାରେ । ଏକ ଅଳସ ଅପରାହ୍ଣରେ ବାବାଜୀ ବାବୁଙ୍କ ସହିତ ତାଙ୍କ ବାସଭବନକୁ ଯାଇଥିଲି । ହାତରେ ଥିଲା ମୋ ପାଣ୍ଡୁଲିପି । ଉଦ୍ଦେଶ୍ୟ ଥିଲା ଏକ ବହି ପ୍ରକାଶ କରିବା । ସେତେବେଳେ ସୁନାବେଡା କାହିଁକି ସମଗ୍ର ଅଞ୍ଚଳରେ ସାର୍ ଥିଲେ ଏକମାତ୍ର ବ୍ୟକ୍ତି, ଯିଏକି କମ୍ପ୍ୟୁଟରରେ ଓଡିଆ ଅକ୍ଷର ଡି.ଟି.ପି କରାଇବା ପାଇଁ 'ଅଗ୍ରଣୀ ମୁଦ୍ରଣ' ନାମକ ନୂଆ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ସାର୍‌ଙ୍କ ସହିତ କଥାବାର୍ତ୍ତା ହେଲା ପରେ ମନରେ ଅନେକ ଦମ୍ଭ ଓ ଭରସା ଆସିଲା । ପାଣ୍ଡୁଲିପିଟି ହାତକୁ ବଢେଇ ଦେଇ ମୁଁ ପୁରା ନିଶ୍ଚିନ୍ତ ହେଲି । ମୋତେ ଲାଗିଲା ସାର୍‌ଙ୍କ ପାଖରେ ପହଞ୍ଚିଛି ମାନେ ମୁଁ ମୋ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଛି । ତା'ପରେ ବହି ବିଷୟରେ ମୁଁ ଆଉ କିଛି ଭାବିନି । ବହିରେ କିଏ ଚିତ୍ର କରିବ, ବହି କେଉଁଠି ଛପା ହେବ-ସବୁ ଦାୟିତ୍ୱ ସାର୍ ନେଇଥିଲେ । ଏପରିକି ବହି ମୋ ଘରେ ପହଞ୍ଚାଇବାର ବ୍ୟବସ୍ଥା କରିଦେଲେ ।

ମୋ ଭାବନାଗୁଡିକ ପୁସ୍ତକ ଭିତରେ ବାନ୍ଧି ହୋଇଗଲା । ୨୦୦୫ ମସିହା ଜାନୁଆରୀ ୧୪ ତାରିଖ ପବିତ୍ର ମକର ସଂକ୍ରାନ୍ତି ଦିନ 'ବନପ୍ରଭା' ଅନୁଷ୍ଠାନର ଶୀତ ଆସରରେ 'ତୁମପାଇଁ' କବିତା ପୁସ୍ତକ ଲୋକାର୍ପିତ ହେଲା । ସେ ଦିନ ମନରେ ଯେଉଁ ଆନନ୍ଦ ଭରିଯାଇଥିଲା ତାକୁ ଭାଷାରେ ପ୍ରକାଶ କରିପାରିବିନି । ସାର୍‌ଙ୍କୁ କିପରି ଭାବରେ କୃତଜ୍ଞତା ଜଣାଇବି ? ତାଙ୍କ ପାଖରେ ମୁଁ ଆଜୀବନ ଋଣୀ ହୋଇ ରହିଗଲି । ପରବର୍ତ୍ତୀ ଦୁଇଟି ଶିଶୁ କବିତା ଓ ଗଳ୍ପ ସଂକଳନ ମଧ୍ୟ ତାଙ୍କରି ପ୍ରଚେଷ୍ଟା ଓ ସହଯୋଗରେ ପ୍ରକାଶ ପାଇଛି । ଦୁଇଖଣ୍ଡ ଯାକ ବହି ମଧ୍ୟ ରାଜା ରାମମୋହନ ଲାଇବ୍ରେରୀ ପାଇଁ ନିର୍ବାଚିତ ହୋଇଛି । 'ଗାଁ ବରଗଛ ଛାଇ' ପୁସ୍ତକଟି ତିନିଥର ଶ୍ରେଷ୍ଠ ପୁସ୍ତକ ଭାବେ ତିନୋଟି ଅନୁଷ୍ଠାନ ତରଫରୁ ଯୋଗ୍ୟ ବିବେଚିତ ହୋଇଛି । ଶେଷରେ ଭୁବନେଶ୍ୱର ପୁସ୍ତକ ମେଳା ସମ୍ମାନ ମଧ୍ୟ ପାଇଛି । ଶିଶୁ ସାହିତ୍ୟରେ ମୋର ବିଶେଷ ଆଗ୍ରହ ଦେଖି ସାର୍ ମୋତେ 'ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ' (RIOCL)ରେ ଯୋଗ ଦେବାପାଇଁ ପରାମର୍ଶ ଦେଲେ । ୨୦୦୮ ମସିହାରୁ RIOCLର ପ୍ରତ୍ୟେକ



Digitized by srujanika@gmail.com

କର୍ମଶାଳାରେ ମୁଁ ଯୋଗ ଦେଇ ଆସୁଛି । ଶିଶୁ ସାହିତ୍ୟର ଅନ୍ୟତମ ସାରଥୀ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ନିଜସ୍ୱ ପ୍ରଚେଷ୍ଟାରେ ଶିଶୁ ସାହିତ୍ୟ ଗବେଷଣା ପରିଷଦ ଗଠିତ ହୋଇଛି । ଏହି ଅନୁଷ୍ଠାନ ଦୀର୍ଘ ବର୍ଷଧରି ବିଭିନ୍ନ ଜିଲ୍ଲାରେ କର୍ମଶାଳାର ଆୟୋଜନ କରି ଶିଶୁ ସାହିତ୍ୟିକମାନଙ୍କୁ ଦିଗ୍‌ଦର୍ଶନ ଦେଇ ଆସୁଛି । ସେଠାରେ ବିଶିଷ୍ଟ ଶିଶୁ ସାହିତ୍ୟିକମାନେ ପ୍ରଶିକ୍ଷକ ଭାବେ ଯୋଗ ଦେଇ ଶିଶୁ ସାହିତ୍ୟ ରଚନାଶୈଳୀ ସମ୍ପର୍କରେ ମାର୍ଗଦର୍ଶନ ଦିଅନ୍ତି । ସେଥିରେ ଯୋଗ ଦେଇ ମୁଁ ମୋ ସୃଜନଶୀଳତାକୁ ଅଧିକ ବିକଶିତ କରିପାରିଛି । ସାର୍ ପରିଚାଳନା ସମିତିର ଜଣେ ସଦସ୍ୟ । ଏହି କର୍ମଶାଳାରେ ମୁଁ ସାର୍‌ଙ୍କର ସଂପୃକ୍ତି ଦେଖିଛି । ଖାଇବା ପାଖରେ ବାଲଟି ଧରି ବାଢିବା ଠାରୁ ଆରମ୍ଭ କରି ଶିଶୁ ସାହିତ୍ୟିକମାନଙ୍କର କ୍ଲାସ୍ ନେବା ପର୍ଯ୍ୟନ୍ତ-ପ୍ରତ୍ୟେକ କାର୍ଯ୍ୟରେ ସେ ତତ୍ପର ଥାଆନ୍ତି । ରହିବା, ଖାଇବା, ଶୋଇବା-ସବୁ ଅବ୍ୟବସ୍ଥା ଭିତରେ ୪/୫ ଦିନ ସମସ୍ତଙ୍କ ସହିତ ସେ ଯେଉଁ କଷ୍ଟ ସ୍ୱୀକାର କରନ୍ତି ତାହା କେବଳ ଜଣେ ସାହିତ୍ୟପ୍ରାଣ ବ୍ୟକ୍ତି ହିଁ କରିପାରେ ।

ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ (RIOCL)ର website, www.riocl.org ଉଦ୍‌ଘାଟନ ସାର୍‌ଙ୍କ ଚିନ୍ତାଧାରାର ଏକ ଯୁଗାନ୍ତକାରୀ ପଦକ୍ଷେପ । website ମାଧ୍ୟମରେ ଓଡ଼ିଆ ଶିଶୁ ସାହିତ୍ୟିକଙ୍କ କୃତି ଓ କୃତିତ୍ୱକୁ ବିଶ୍ୱଦରବାରରେ ପହଞ୍ଚାଇବା ପାଇଁ ସେ ଏକ ବଳିଷ୍ଠ ପଦକ୍ଷେପ ନେଇଛନ୍ତି । ସେଥିପାଇଁ ସେ ଧନ୍ୟବାଦାର୍ହ । କର୍ମଶାଳାରେ ସାହିତ୍ୟିକ ବନ୍ଧୁ ଓ ପ୍ରବୀଣ ସାହିତ୍ୟିକମାନଙ୍କ ଗହଣରେ ଦୀର୍ଘ ୩ ଦିନ ଧରି ସମୟ କାଟିବା ମୋ ପାଇଁ ସୌଭାଗ୍ୟର କଥା । ଏ ସବୁ ସାର୍‌ଙ୍କ ଯୋଗୁ ସମ୍ଭବ ହୋଇଛି । ତାଙ୍କର ଚିନ୍ତାଧାରା ସବୁବେଳେ ସୁଦୂର ପ୍ରସାରୀ । ସବୁବେଳେ କହନ୍ତି 'ଗୋଟିଏ ଲେଖା ହେଉ ପଛେ, ତାହା ଯେପରି କାଳଜୟୀ ହୁଏ ସେଥିପ୍ରତି ଯତ୍ନବାନ୍ ହେବା ଉଚିତ୍ ।' ବାସ୍ତବରେ ସେ କାଳକୁ ଜୟ କରିପାରିଛନ୍ତି ତାଙ୍କର ଲେଖନୀ ମାଧ୍ୟମରେ ।

ସୁନାବେଡାରେ ଉତ୍କଳ ସାଂସ୍କୃତିକ ପରିଷଦର 'ସ୍ମରଣିକା' ଓ ଶ୍ରୀ ଜଗନ୍ନାଥ ସେବା ସଂସ୍ଥାର ମୁଖପତ୍ର 'ସ୍ୱର୍ଣ୍ଣକ୍ଷେତ୍ର'ର ସଂପାଦନା ତାଙ୍କ ଦକ୍ଷତାର ଅନନ୍ୟ ଉଦାହରଣ । ଦୀର୍ଘ ପାଞ୍ଚ ବର୍ଷ ହେବ ସାର୍‌ଙ୍କ ସହିତ ମୁଁ ସହ-ସଂପାଦନା କାମ କରୁଛି । ସେଥିରୁ ଜାଣିଛି, ତାଙ୍କର କାର୍ଯ୍ୟଶୈଳୀର ନିଆରା ପଣ । ସୁନାବେଡାବାସୀ ତଥା ଅନୁଷ୍ଠାନର କର୍ମକର୍ତ୍ତା ଏ କଥା ମର୍ମେ ମର୍ମେ ଅନୁଭବ କରିଥିବେ । ସବୁଠାରୁ ବଡ କଥା ହେଲା ସାର୍ ଆମ 'ବନପ୍ରଭା'ର ମୁଖ୍ୟ ଉପଦେଷ୍ଟା । ତାଙ୍କ ସୁପରାମର୍ଶରେ ଦୀର୍ଘ ୧୪ ବର୍ଷ ହେଲା ବନପ୍ରଭା ଅନେକ ଆଖିଦୃଶିଆ କାର୍ଯ୍ୟକ୍ରମ କରିଆସୁଛି ସୁନାବେଡ଼ାରେ । ତାଙ୍କ ଉପସ୍ଥିତି ହିଁ ସମସ୍ତଙ୍କୁ କର୍ମଚଞ୍ଚଳ କରିଦିଏ । ପ୍ରତ୍ୟେକ କାର୍ଯ୍ୟ କିପରି ଶୃଙ୍ଖଳିତ ଭାବେ ହେବ, ସେଥିପ୍ରତି ସେ ବେଶୀ ଗୁରୁତ୍ୱ ଦିଅନ୍ତି । ଖୁବ୍ ସାଧୀନଚେତା ଓ ସ୍ପଷ୍ଟବାଦୀ ।



Digitized by srujanika@gmail.com

ନିଜସ୍ୱ ମତାମତକୁ ଦୃଢ଼ତାର ସହ ଉପସ୍ଥାପନ କରନ୍ତି । ବନପ୍ରଭା-୧ରୁ ୪ ପର୍ଯ୍ୟନ୍ତ ସଂକଳନ ସାର୍‌ଙ୍କର ବଳିଷ୍ଠ ସଂପାଦନାର ଏକ ଉଚ୍ଚକୋଟୀର ନିଦର୍ଶନ । ଧୈର୍ଯ୍ୟର ସୀମାହୀନ ସାଗର ସେ । ବେଳେ ବେଳେ ଆଶ୍ଚର୍ଯ୍ୟ ଲାଗେ, ଏକ ସମୟରେ ସେ ଏକାଧିକ କାମ କେମିତି କରିପାରନ୍ତି । ତାଙ୍କ ଠାରୁ ଯିଏ ଯେତେବେଳେ ଯେଉଁ ପ୍ରକାର ସାହାଯ୍ୟ ଚାହିଁଛି, ସେ ପାଇଛି ଓ ଉପକୃତ ମଧ୍ୟ ହୋଇଛି । ତାଙ୍କ ମୁହଁରୁ କେବେ 'ନାହିଁ' ଶବ୍ଦ ଆମେ ଶୁଣିନାହୁଁ ।

ବିଭିନ୍ନ ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ ହସି ହସି କାମ କରନ୍ତି । ନିଜ ବିଷୟରେ କାହାକୁ ଜାଣିବାକୁ ସୁଯୋଗ ଦିଅନ୍ତି ନାହିଁ । ଏତେ ବାସ୍ତବବାଦୀ ଓ ନିଷ୍ପାପର ବ୍ୟକ୍ତିତ୍ୱ ମୁଁ ଆଜିଯାଏ କେଉଁଠି ଦେଖିନାହିଁ । ମୁଁ ଭାବେ ସେ ଏକ ବିଶାଳ ତରୁବର । ତାଙ୍କ ଠାରୁ କିଏ କିପରି ଭାବେ ଉପକୃତ ହୋଇଛି, ସେ ହିଁ ଜାଣେ ।

ସାର୍ ଏକାଧାରରେ ଛାତ୍ରବତ୍ସଳ ଅଧ୍ୟାପକ, ଶିଶୁ ପ୍ରିୟ ଶିଶୁ-ସାହିତ୍ୟିକ, ଗାଳ୍ପିକ, କବି, ରମ୍ୟ କଥାକାର, ପ୍ରାବନ୍ଧିକ, ଉତ୍ତମ ସଂଗଠକ ଓ ବଳିଷ୍ଠ ସଂପାଦକ । ଶିଶୁମାନଙ୍କୁ ସେ ଖୁବ୍ ଭଲ ପାଆନ୍ତି । ଶିଶୁ ମନସ୍ତତ୍ତ୍ୱକୁ ନେଇ ସହଜ, ସରଳ ସାବଲୀଳ ଭାଷାରେ ସେ ରଚନା କରିଛନ୍ତି ଶତାଧିକ କବିତା ଓ ଗଳ୍ପ । ସାରଙ୍କର ସାମଗ୍ରିକ କୃତି ଓ ବ୍ୟକ୍ତିତ୍ୱର ସୟଂ ସଂପୂର୍ଣ୍ଣ ଦିଗଟିକୁ ଆଲୋଚନା କଲେ ଏକ ଗବେଷଣା ନିବନ୍ଧ ହେବ । ଜଣେ ନିରୁତା ସାହିତ୍ୟ ସାଧକ ଭାବରେ ସେ ବହୁ ସମ୍ମାନ ଓ ପଦବୀର ଅଧିକାରୀ ହୋଇ ମଧ୍ୟ ତାଙ୍କ ମନକୁ ଅହଂ ଭାବ ଛୁଇଁନାହିଁ । କିପରି ଉଚ୍ଚାଙ୍ଗ ଓ ପ୍ରଭାବଶାଳୀ ସାହିତ୍ୟ ସୃଷ୍ଟି କରାଯିବ ସେ ବିଷୟରେ ସବୁବେଳେ ଉପଦେଶ ଦିଅନ୍ତି । ତାଙ୍କର ଲୋକପ୍ରିୟତା ଓ ଲୋକ ସଂପର୍କ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡେ । ପ୍ରତ୍ୟେକ ବିଶିଷ୍ଟ ଦିନ ମାନଙ୍କରେ ତାଙ୍କ ଠାରୁ SMS ଟିଏ ନିଶ୍ଚିତ ଆସେ । ପୂଜ୍ୟପୂଜାର ପରମ୍ପରାରେ ବିଶ୍ୱାସ ରଖୁଥିବା ସାର୍ ତାଙ୍କର ପ୍ରତ୍ୟେକ ପୁସ୍ତକ କାହାକୁ ନା କାହାକୁ ଉତ୍ସର୍ଗ କରିଛନ୍ତି । ଏହା ତାଙ୍କର ମହାନତାର ନିଦର୍ଶନ । ତାଙ୍କର 'ପୁନଶ୍ଚ ବସନ୍ତ' ପୁସ୍ତକଟି ବାବାଜୀ ବାବୁ ଓ ମୋ ନାମରେ ଉତ୍ସର୍ଗ କରିଥିବାରୁ ମୁଁ କୃତଜ୍ଞ । ଲୁକ୍‌କାୟିତ ସୃଜନଶୀଳ ପ୍ରତିଭାକୁ ଲୋକଲୋଚନକୁ ଆଣିବା ପାଇଁ ସେ ସବୁବେଳେ ପ୍ରୟାସୀ । ମୁଁ ଆଜି ଯେଉଁଠି ପହଞ୍ଚିଛି, ଏହା ସମ୍ଭବ ହୋଇଛି କେବଳ ସାର୍‌ଙ୍କ ସ୍ନେହ ସଦିଚ୍ଛା ଓ ପ୍ରେରଣା ଯୋଗୁ । ଅଗ୍ରଜ ତୁଲ୍ୟ ସର୍ବଦା କର୍ମତତ୍ପର ରହିବାକୁ ପ୍ରେରଣା ଦେଇଛନ୍ତି । ତାଙ୍କର ଆଶୀର୍ବାଦ ମୋ ପାଇଁ ବରଦାନ ସଦୃଶ । ତାଙ୍କର ଗୋଟିଏ କଥା ମୋ କାନରେ ସବୁବେଳେ ଗୁଞ୍ଜରିତ ହେଉଥାଏ-"ଲେଖି ଚାଲ, ଫଳାଫଳକୁ ଆଶା ରଖ ନାହିଁ । ସମୟ ତାର ମୂଲ୍ୟାଙ୍କନ କରିବ ।" ତାଙ୍କ ପାଖରେ ଶତ୍ରୁ ମିତ୍ରର ପ୍ରଭେଦ ନାହିଁ । ସମସ୍ତଙ୍କ ପ୍ରତି ସେ ସମଭାବାପନ୍ନ । ବର୍ଷ ବର୍ଷ ଧରି ସେହି ଭାବନାକୁ ହୃଦୟରେ ପୋଷଣ କରି ରଖିବା, ତାଙ୍କ ବିରଳ ବ୍ୟକ୍ତିତ୍ୱର ପରିପ୍ରକାଶ ବୋଲି ସ୍ୱୀକାର କରାଯିବ ।



Digitized by srujanika@gmail.com

ପ୍ରତ୍ୟେକ ସଫଳ ପୁରୁଷ ପଛରେ ଜଣେ ନାରୀ ଥାଏ । ସାର୍‌ଙ୍କର ସମସ୍ତ ସଫଳତାର ଶ୍ରେୟ ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ବୀଣାପାଣିଙ୍କର । ବସନ୍ତରେ 'ବୀଣା'ର ଝଙ୍କାର 'ଗୀତିମୟ' କରିଛି 'ବୁଲବୁଲ'ର ସଙ୍ଗୀତ । ସୁନ୍ଦର ସୁଖୀ ପରିବାର ପୁଅ 'ଗୀତିମୟ' ଓ ଝିଅ 'ବୁଲ୍‌ବୁଲ୍‌କୁ' ନେଇ । ସମସ୍ତେ ସାର୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ । ଜଣେ ସହଧର୍ମିଣୀ, ସହକର୍ମିଣୀ ଓ ସହଗାମିନୀ ଭାବରେ ମାଡାମ୍ ସବୁବେଳେ ସହଯୋଗ କରିଛନ୍ତି ସାର୍‌ଙ୍କୁ । କେବେ ବିବ୍ରତ କରିବାକୁ ଚେଷ୍ଟା କରିନାହାନ୍ତି । ତାଙ୍କର ଏହି ମହାନ ତ୍ୟାଗର ଫଳପ୍ରସୂ ସ୍ୱରୂପ ସାର୍‌ଙ୍କର ସୁନାମ ଆଜି ସର୍ବବିଦିତ । ସେଥିପାଇଁ ତ ସାର୍ ପ୍ରତିଦାନ ସ୍ୱରୂପ ସମସ୍ତ ପୁସ୍ତକର ସତ୍ତ୍ୱାଧିକାରିଣୀ ଭାବେ ମାଡାମଙ୍କୁ ବାଛିଛନ୍ତି । ଯେଉଁମାନେ ତାଙ୍କ ପରିବାର ସହିତ ଜଡିତ ହୋଇଛନ୍ତି, ସମସ୍ତେ ବାନ୍ଧି ହୋଇଯାଇଛନ୍ତି ତାଙ୍କ ସ୍ନେହରେ । ମାଡାମ୍ ଭାରି ସ୍ନେହୀ ଓ ମିଷ୍ଟଭାଷିଣୀ । ଏମିତି କେହି ନାହିଁ ବିନା ଜଳ ଯୋଗରେ ତାଙ୍କ ଘରୁ କେବେ ଫେରିଛି । ସେଇ ସ୍ନେହ, ସେଇ ଆଦରକୁ ଜୀବନ ବ୍ୟାପୀ କେବେ ଭୁଲି ହେବନି । ଠାକୁରେ କରନ୍ତୁ ଏ ପରିବାର ଏମିତି ହସୁ ଥାଉ ।

କୁସୁପୁରରୁ ସୁନାବେଡା-ସୁଦୀର୍ଘ ପଥ । ଗୋଟିଏ ଜନ୍ମସ୍ଥଳ-ଅନ୍ୟଟି କର୍ମସ୍ଥଳ । ଯିବା ପୂର୍ବରୁ କର୍ମସ୍ଥଳର ଋଣ ମଧ୍ୟ ସାର୍ ସୁଝିବାକୁ ଚେଷ୍ଟା କରିଛନ୍ତି । ସ୍ମରଣିକା 'ସୁନାବେଡ଼ା ବିଶେଷାଙ୍କ' ପ୍ରକାଶ କରି ସୁନାବେଡ଼ାର ଇତିହାସକୁ ସାଇତି ରଖିଦେଇଛନ୍ତି । ସେ ବହି ଯିଏ ପଢ଼ିବ ସିଏ ନିଶ୍ଚୟ ସାର୍‌ଙ୍କୁ ସ୍ମରଣ କରିବ । ଏ ଯାତ୍ରା ଏଇଠି ସରିନି କି ସରିବ ନାହିଁ । ଚଲାପଥ ଦୂର ଦିଗ୍‌ବଳୟରେ ଶେଷ ହେଲା ପରି ପ୍ରତୀୟମାନ ହେଉଥିଲେ ବି ସେଇଠି ପହଞ୍ଚିଗଲେ ପୁନଶ୍ଚ ପୁନଶ୍ଚ ଲମ୍ୱମାନ ଥାଏ ଆଉ ଏକ ଦିଗ୍‌ବଳୟ ପର୍ଯ୍ୟନ୍ତ । ସେଇ ଅସରନ୍ତି ପଥରେ ମାଡାମ୍ ସାରଙ୍କ ହାତ ଧରି, ପରିଣତ ବୟସର ବନ୍ଧୁଟିଏ ପରି ଆଗକୁ ଆଗକୁ ଚାଲୁଥାନ୍ତୁ । ଚଲାପଥରେ ଫୁଟିଉଠୁ ସାହିତ୍ୟ କୁସୁମ ।

କର୍ମକ୍ଷେତ୍ରରୁ ଅବ୍ୟାହତି ନେବା ତ ଗୋଟିଏ ପ୍ରବହମାନ ଧାରା । ତଥାପି ମନରେ ଦୁଃଖ ଆସୁଛି, ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସାର୍ ଆମମାନଙ୍କ ଗହଣରୁ ପୁନର୍ବାର ଜନ୍ମସ୍ଥାନକୁ ଫେରିଯାଉଛନ୍ତି । ଯେତେ ଦୂରରେ ଥିଲେ ମଧ୍ୟ ତାଙ୍କ ଠାରୁ ସେଇ କର୍ମପ୍ରେରଣା ଆଶା କରିବି । ସେଇ ଶ୍ରଦ୍ଧାକୁ ଦାବୀ କରିବି । ସେ ଯେଉଁଠି ରୁହନ୍ତୁ, ସପରିବାର ଖୁସିରେ ରୁହନ୍ତୁ, ସାହିତ୍ୟ ସାଧନାରେ ବ୍ରତୀ ରୁହନ୍ତୁ । ଏହାହିଁ ମଙ୍ଗଳମୟଙ୍କ ନିକଟରେ ପ୍ରାର୍ଥନା ।



ସଭାପତି
ବନପ୍ରଭା ସାହିତ୍ୟ ସଂସଦ, ସୁନାବେଡ଼ା-୨
ମୋ : ୯୪୩୭୭୪୬୪୬୭



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁ
# -ଏକ ବିହଙ୍ଗାବଲୋକନ

## ଲଳିତ ମୋହନ ପଟ୍ଟନାୟକ

ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହ ମୋର ଅନ୍ତରଙ୍ଗ ପରିଚିତି ତିନି ଦଶନ୍ଧିରୁ ଅଧିକ ହେବ । ସେ ଜଣେ ଉତ୍ତମ ସାହିତ୍ୟ ସଙ୍ଗଠକ । ବନଫୁଲ ସାହିତ୍ୟ ପରିଷଦ, ସୁନାବେଡାର ସେ ପ୍ରତିଷ୍ଠାତା ଜନକ । ଅତୀତରେ ଏହି ପରିଷଦ ତରଫରୁ ସେମିଲିଗୁଡା ମହାବିଦ୍ୟାଳୟ ଠାରେ ଅନେକ ସାହିତ୍ୟ ସମ୍ମେଳନ, କବିତା ପାଠୋତ୍ସବ ଅନୁଷ୍ଠିତ ହୋଇଯାଇଛି, ଯେଉଁଥିରେ ଅବିଭକ୍ତ କୋରାପୁଟ ଜିଲ୍ଲାର କବି, ଲେଖକ, ବକ୍ତା, ଅତିଥି, ଆମେ ସବୁ ଯୋଗ ଦେଉଥିଲୁ । ସାରସ୍ୱତ ଉତ୍ସବ ଉପଲକ୍ଷେ ସ୍ମରଣିକା, ସଂକଳନ ଇତ୍ୟାଦି ମଧ୍ୟ ପ୍ରକାଶିତ ହେଉଥିଲା । ବସନ୍ତ ବାବୁ ଆମ ସମସ୍ତଙ୍କ ପାଇଁ (ସେତେବେଳର ଉଦୀୟମାନ, ନୂତନ, ବରିଷ୍ଠ ଲେଖକ-ଲେଖିକାଙ୍କର) ପ୍ରେରଣା, ଅଗ୍ରଗତି ଓ ବିକାଶର ଉତ୍ସ ଥିଲେ । ମୁଁ ଦେଖିଛି, ଅଙ୍ଗେ ନିଭାଇଛି, କାର୍ଯ୍ୟକ୍ରମ ଆୟୋଜନ କାଳୀନ ତାଙ୍କର ନିଷ୍ଠା, ଆନ୍ତରିକତା, ଉତ୍ସାହ, ସକ୍ରିୟତା, ବନ୍ଧୁତା, ଅତିଥିଚର୍ଚ୍ଚା, ନିପୁଣ କାର୍ଯ୍ୟଦକ୍ଷତା । କେଉଁ ଅତିଥି କେଉଁଠି ରହିବେ, କିଏ କ'ଣ ଖାଇବେ, ପ୍ରାରମ୍ଭିକ ସଙ୍ଗୀତ ଅଭ୍ୟାସ ହେଲାଣି କି ନାହିଁ, ଷ୍ଟେଜ, ମାଇକ୍, ଲାଇଟ୍, ରୋଷେଇ, ଡାଇନିଙ୍ଗ୍, ଫୁଲତୋଡା ଇତ୍ୟାଦି ଇତ୍ୟାଦି ପ୍ରତ୍ୟେକ ଆନୁଷଙ୍ଗିକ କାର୍ଯ୍ୟର ଟିକିନିଖି ତଦାରଖ କରନ୍ତି ସେ । ଏକ ପ୍ରକାର ପାଗଳାମୀ, ଏକ ପ୍ରକାର ନିଶାଗ୍ରସ୍ତ ଉଦ୍ଦୀପନାଟିଏ ଥାଏ ସାହିତ୍ୟ ସଙ୍ଗଠନରେ ।

୧୯୬୦ ରୁ ୧୯୯୦ ସମୟରେ ସାହିତ୍ୟ ସମ୍ମିଳନୀ ଯିଏ କରିଛି, ସିଏ ଜାଣିଛି ସାରସ୍ୱତ ପ୍ରସବ ବେଦନା । ସେତେବେଳେ ଅର୍ଥ ସଂଗ୍ରହ ଠାରୁ ମଞ୍ଚ ଉପକରଣ ଯାଏ, ଅତିଥି ସ୍ୱାଗତ ଠାରୁ ସବୁକିଛି ଥିଲା କଷ୍ଟସାଧ୍ୟ । ଏହି ଭଳି ସାରସ୍ୱତ ସାଧନାକ୍ଲିଷ୍ଟ ସମୟରେ ବସନ୍ତ ବାବୁ ସେତେବେଳର କତିପୟ, ମୁଷ୍ଟିମେୟ ସହଯୋଗୀଙ୍କୁ ନେଇ ସେମିଲିଗୁଡା କଲେଜର ପାହାଡ ମଞ୍ଚରେ ରାଜ୍ୟସ୍ତରୀୟ, ଆଞ୍ଚଳିକ ଓ ଜିଲ୍ଲାସ୍ତରୀୟ ଅନେକ ସାହିତ୍ୟ ଉତ୍ସବ କରିପାରିଥିବାରୁ ସେ ନିଶ୍ଚିତ ଭାବେ ଆମ ସମସ୍ତଙ୍କର ଧନ୍ୟବାଦାର୍ହ ।

ସେ ଅତିଥିମାନଙ୍କ ସହ (୰ଭାଗୀରଥି ପାତ୍ର, ଶ୍ରୀ କାଳୀକିଙ୍କର ମିଶ୍ର, ଶ୍ରୀ



Digitized by srujanika@gmail.com

ଲଳିତ ମୋହନ ପଟ୍ଟନାୟକ) ପ୍ରମୁଖଙ୍କ ସହ ଥରେ ସମ୍ମିଳନୀ ମଞ୍ଚ ଉପରେ ମଶା ଡାଆଁଶ ଭାଲୁଙ୍କ ଗହଣରେ ସେମିଳିଗୁଡା କଲେଜ ପାହାଡରେ ରାତ୍ରିଯାପନ କରି ମହାନ୍ ସାଙ୍ଗଠନିକ କର୍ତ୍ତବ୍ୟ ପରାୟଣତାର ପରିଚୟ ଦେଇପାରିଛନ୍ତି ଯାହା ଏହି ଲେଖକଙ୍କର ଚିରସ୍ମରଣୀୟ ହୋଇ ରହିଛି ।

ଏକ ହସହସ ମୁଖ, ସରଳ ଶିଶୁ ସୁଲଭ ମିଷ୍ଟାଳାପ, ସସ୍ନେହ ବ୍ୟବହାର ପାଇଁ ସେ ସମସ୍ତଙ୍କ ଶ୍ରଦ୍ଧାଭାଜନ ହୋଇପାରିଛନ୍ତି ।

ଓଡିଆ ସାହିତ୍ୟକୁ ବସନ୍ତ ବାବୁଙ୍କ ଅବଦାନ ଉଲ୍ଲେଖନୀୟ । ବିଶେଷକରି ଶିଶୁ ସାହିତ୍ୟ କ୍ଷେତ୍ରରେ ସେ ଜଣେ ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟା । ଉଭୟ ପରିମାଣ ଓ ଗୁଣାତ୍ମକ ଦୃଷ୍ଟିରୁ ସେ ପ୍ରାୟ ୩୨ ଖଣ୍ଡ ପୁସ୍ତକ ରଚନା କରିଛନ୍ତି । ତାଙ୍କ ରଚିତ ସମସ୍ତ ଶିଶୁ ସାହିତ୍ୟ ପୁସ୍ତକ ପ୍ରତ୍ୟେକ ଓଡିଆ ପାଠକ ଓ ସଂଗ୍ରହକାରୀ ଅଧ୍ୟୟନ କରିବା ଉଚିତ ।

ତାଙ୍କ ପ୍ରକାଶିତ ଗ୍ରନ୍ଥ ମଧ୍ୟରୁ ଦୁଇଟି ପୁସ୍ତକ ହିନ୍ଦୀ ଓ ବଙ୍ଗଳାରେ ଅନୁବାଦିତ ହୋଇ ପ୍ରକାଶ ପାଇବା ସହିତ ଗୋଟିଏ ଦୁଇଟି ବହି ମଧ୍ୟ ଇଂରାଜୀ ଭାଷାରେ ପ୍ରକାଶ ପାଇଛି । ଚାରୋଟି ଭାଷାର ପାଠକ ତାଙ୍କ କୃତି ସହିତ ପରିଚିତ ବୋଲି ଏହା ପ୍ରମାଣ କରେ । ଓଡିଆ ଶିଶୁ ସାହିତ୍ୟରେ ସେ ଡକ୍ଟରେଟ୍ କରିଛନ୍ତି । ଶିଶୁ ସାହିତ୍ୟ ପ୍ରତି ତାଙ୍କର ଅହେତୁକ ଶ୍ରଦ୍ଧା ଓ ପ୍ରବେଶ ଥିଲେ ସୁଦ୍ଧା ସେ ପ୍ରବନ୍ଧ ଓ ଗଳ୍ପ ସାହିତ୍ୟରେ ମଧ୍ୟ ନିଜର ପ୍ରତିଭା ପ୍ରଦର୍ଶନ କରିପାରିଛନ୍ତି । ପ୍ରବନ୍ଧ ଓ ଗଳ୍ପର ଭାଷା, ଶୈଳୀ, ପରିପ୍ରକାଶ ତଥା ଅଭିବ୍ୟକ୍ତିର ମନୋଜ୍ଞ ଭାବରାଜି ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବିଭବ । ବସନ୍ତ କିଶୋର ରଚନାବଳୀ-୨ୟ ଖଣ୍ଡ (ତୃତୀୟ ଅର୍ଘ୍ୟ)ରେ ସନ୍ନିବେଶିତ ଆଠଟି ଗଳ୍ପ ଏକାନ୍ତ ହୃଦୟସ୍ପର୍ଶୀ ଓ ସୁଖପାଠ୍ୟ । ଗଳ୍ପଗୁଡିକର ନାମକରଣର ସାର୍ଥକତା ରହିଛି, ସାମାଜିକ ମୂଲ୍ୟବୋଧ ଭିତ୍ତିକ ତଥା ସମୟୋପଯୋଗୀ ହୋଇଛି ।

ବସନ୍ତ ବାବୁଙ୍କ "ଭାତ ଓ ଭାତିଆ" ଦେଇଛି ଏଇ କୋରାପୁଟର ସୁନାବେଡା ମାଟି । ଏଇ ମାଟିରେ ତାଙ୍କର ବିତିଛି ଅଧ୍ୟାପକ ଜୀବନ । ଏଇ ମାଟି ଦେଇଛି ତାଙ୍କୁ ଡକ୍ଟରେଟ୍ ଉପାଧି । ତେଣୁ ଏହି ମାଟିର ମହକରେ ଓ ଆତ୍ମୀୟତାରେ ବିଭୋର ଓ ବିମୁଗ୍ଧ ହୋଇ ବସନ୍ତ ବାବୁ ଏହି ମାଟିର ପ୍ରେମରେ ପଡିଯାଇଛନ୍ତି । କୋରାପୁଟର ମାଟି, ପାଣି, ପବନ, ଜୀବନ, ଜୀବିକା, କଳା, ସାହିତ୍ୟ, ପ୍ରକୃତି, ଆଦିବାସୀ, ସଂସ୍କୃତି, ପରମ୍ପରାକୁ ପ୍ରତିଦାନରେ ତାଙ୍କ ଲେଖନୀରୁ ନିଃସୃତ ହୋଇଛି :- ଓଡିଶାର ଭୂସର୍ଗ କୋରାପୁଟ, କୋରାପୁଟର ପର୍ବପର୍ବାଣି ଓ ଯାନିଯାତ୍ରା, କୋରାପୁଟର ପରଜା ସଂସ୍କୃତି ଏକ ସଂକ୍ଷିପ୍ତ ପରିଚୟ, ଅବିଭକ୍ତ କୋରାପୁଟର କେତେକ ଲୋକପ୍ରିୟ ଲୋକନୃତ୍ୟ, ଆଦିବାସୀଙ୍କ କୃଷିଭିତ୍ତିକ ପର୍ବପର୍ବାଣି, ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀଙ୍କ ଦେବାଦେବୀ, ରାୟଗଡାର କନ୍ଧ ସଂସ୍କୃତି ଏକ ସଂକ୍ଷିପ୍ତ ଦୃଷ୍ଟିପାତ, ବଣ୍ଡା ସମ୍ପ୍ରଦାୟର



Digitized by srujanika@gmail.com

ଜୀବନ ଚିତ୍ର, କୋରାପୁଟର ନୃତ୍ୟ ଓ ସଙ୍ଗୀତ, କୋରାପୁଟର ଚଇତିପର୍ବ ପ୍ରମୁଖ ଅତି ଉଚ୍ଚକୋଟୀର ତଥ୍ୟ ଭିତ୍ତିକ, ଗବେଷଣାଧର୍ମୀ ପ୍ରବନ୍ଧ ଯାହାର ଅବଦାନ ଓଡିଆ ସାହିତ୍ୟକୁ ଅତୁଳନୀୟ । ପ୍ରବନ୍ଧଗୁଡିକର, ଭାଷା, ତଥ୍ୟ, ଶୈଳୀ ଏତେ ନିଖୁଣ ଯେ, ପାଠକଙ୍କ ମାନସ ପଟରେ ଉକ୍ତ ବିଷୟ ଭିତ୍ତିକ ଜୀବନ୍ତ ଚିତ୍ର ଉଦ୍‌ଭାସିତ ହୋଇଉଠେ । କୋରାପୁଟର ଯାନିଯାତ୍ରା, ନୃତ୍ୟ ସଙ୍ଗୀତ, ଜୀବନ ଜୀବିକା, ପର୍ବ ପର୍ବାଣି, ସାଂସ୍କୃତିକ ବୈଚିତ୍ର୍ୟ, ଆଦିବାସୀଙ୍କ ନିଷ୍କପଟ ପ୍ରେମ-ପ୍ରଣୟ ସବୁକିଛି ଅତି ସୁନ୍ଦର ଭାବେ ଫୁଟି ଉଠିଛି ତାଙ୍କ ରଚନାରେ ।

ବସନ୍ତ ବାବୁ "ଓଡ଼ିଆ ଭାଷା, ସାହିତ୍ୟ ଓ ଜାତୀୟତାର ଜଣେ ଜାଗ୍ରତ ପ୍ରହରୀ" କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡାର ମୁଖ୍ୟ କର୍ଣ୍ଣଧାର ଭାବେ ବିଗତ ବର୍ଷମାନଙ୍କରେ ଉତ୍କଳ ଦିବସ ଉପଲକ୍ଷେ ଓଡିଶାର ବରପୁତ୍ରମାନଙ୍କ ଏକ ବିଶେଷ ସ୍ମରଣିକାମାନ ଯଥା : ଉତ୍କଳ ଗୌରବ ମଧୁସୂଦନ, ବ୍ୟାସକବି ଫକୀର ମୋହନ, ଉତ୍କଳମଣି ଗୋପବନ୍ଧୁ, କୃଷ୍ଣଚନ୍ଦ୍ର ଗଜପତି, ସ୍ୱଭାବକବି ଗଙ୍ଗାଧର ପ୍ରମୁଖ ସମ୍ପାଦନା କରି ନିଜ ପ୍ରତିଭାକୁ ପ୍ରତିଷ୍ଠିତ କରିପାରିଛନ୍ତି । ଅନେକ ବର୍ଷ ହେଲା ଉତ୍କଳ ଦିବସ ଅବସରରେ ବିଚ୍ଛିନ୍ନାଞ୍ଚଳକୁ ଯାଇ ଓଡିଆ ଭାଷା-ସାହିତ୍ୟ-ଶିକ୍ଷା-ସଂସ୍କୃତି ଓ ଜାତୀୟତାର ସୁରକ୍ଷା ଓ ସମୃଦ୍ଧି ପାଇଁ ବିଶେଷ କାର୍ଯ୍ୟକ୍ରମ ସମ୍ପାଦନ କରି ସେ ନିଜର ଉଚ୍ଚ ଆଦର୍ଶ ବ୍ୟକ୍ତିତ୍ୱକୁ ବଜାୟ ରଖିଛନ୍ତି, ଯାହା ସମସ୍ତଙ୍କ ପାଇଁ ଅନୁସରଣୀୟ ।

ଓଡିଆ ଲେଖକ-ପାଠକ ସମ୍ମେଳନର ବିକାଶ ଓ ସଂଗଠନରେ ବସନ୍ତ ବାବୁଙ୍କ ସାଂଗଠନିକ ଭୂମିକା ଚିର ସ୍ମରଣୀୟ । ବସନ୍ତ ବାବୁଙ୍କ ସାରସତ ବ୍ୟକ୍ତିତ୍ୱ ଓଡିଆ ସାହିତ୍ୟ ସଂଗଠନ କ୍ଷେତ୍ରରେ ଏକ ଅତ୍ୟନ୍ତ ଉଲ୍ଲେଖନୀୟ ମାଇଲଖୁଣ୍ଟ । ସେ ମୋର ଅତି ଆପଣାର ସାହିତ୍ୟିକ ବନ୍ଧୁ । ତାଙ୍କର ଦୀର୍ଘ ସୁସ୍ଥ ଜୀବନ ପାଇଁ ପରମପ୍ରଭୁଙ୍କ ଠାରେ ଆନ୍ତରିକ ପ୍ରାର୍ଥନା ନିବେଦନ କରେ । ତାଙ୍କ ଲେଖନୀ ଓଡିଆଙ୍କ ଜନ ଜୀବନର ବାର୍ତ୍ତାସହ ଓଡିଆ ସାହିତ୍ୟକୁ ଆହୁରି ସମୃଦ୍ଧ କରୁ-ଏହା ହିଁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ।



ପ୍ରାକ୍ତନ ସଦସ୍ୟ, ଓଡିଶା ସାହିତ୍ୟ ଏକାଡେମୀ,
ନୂଆବନ୍ଧ ସାହି, ନବରଙ୍ଗପୁର



Digitized by srujanika@gmail.com

# ବସନ୍ତ ସାର୍‌ଙ୍କ କୃତି ସହ କିଛିଟା ଅପାସୋରା ସ୍ମୃତି

ଡକ୍ଟର ପ୍ରବୀଣା ପରିଡା

ବସନ୍ତ ସାର୍‌ଙ୍କ ସହ ମୋର ପ୍ରଥମ ପରିଚୟ ବହିରୁ ହୋଇଥିଲା । ମୁଁ ଗବେଷଣା କରୁଥିଲି । ମୋର ବିଷୟ ବସ୍ତୁ ଥିଲା "ଓଡିଆ ଶିଶୁ ସାହିତ୍ୟକୁ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଅବଦାନ" । ତାହା ଥିଲା ୧୯୯୮ ମସିହାର କଥା । Research Institute of Odia Children's Literature ର ସଂଚାଳକ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ସହ ପତ୍ରାଳାପ ମାଧ୍ୟମରେ ଅନେକ ତଥ୍ୟ ସଂଗ୍ରହ କରୁଥାଏ । ସେ ସମୟରେ ମନୀନ୍ଦ୍ର ସାର୍ କେତେ ଜଣ ଲେଖକ, ଗବେଷକଙ୍କର ପୁସ୍ତକ ନିବନ୍ଧ ଆଦି ସଂଗ୍ରହ କରି ପାଠ କରିବାକୁ ପରାମର୍ଶ ଦେଇଥିଲେ । ଡକ୍ଟର ବସନ୍ତ ସାହୁଙ୍କର ଗବେଷଣା ପୁସ୍ତକଟି "ଓଡିଆ ମୌଖିକ ଶିଶୁ ସାହିତ୍ୟ" ମୋ ଗବେଷଣା କ୍ଷେତ୍ରରେ ଅନେକ ସହାୟକ ହୋଇଥିଲା । ସେଥିରୁ ମୁଁ ଅନେକ ଉପାଦେୟ ତଥ୍ୟ ସଂଗ୍ରହ କରିଥିଲି ।

ତା'ପରେ ବସନ୍ତ ସାର୍‌ଙ୍କ ସହ ବ୍ୟକ୍ତିଗତ ଭାବେ ୨୦୦୯ରେ କଟକର ରେଭେନ୍‌ସା କଲିଜିଏଟ ସ୍କୁଲରେ ସାକ୍ଷାତ ହୋଇଥିଲା । ସେଠାରେ RIOCL ତରଫରୁ ଏକ ଶିଶୁ ସାହିତ୍ୟିକ କର୍ମଶାଳା ହେଉଥାଏ । ସେହି କର୍ମଶାଳାରେ ଶିଶୁ ସାହିତ୍ୟର ବିଭିନ୍ନ ଦିଗକୁ ନେଇ ଆଲୋଚନାମାନ ଆୟୋଜିତ ହୋଇଥିଲା । ସେହି କାର୍ଯ୍ୟକ୍ରମରେ ବସନ୍ତ ସାର୍‌ଙ୍କର ଆଗ୍ରହ, ନିଷ୍ଠା, ସହଜରେ ଜ୍ଞାତ ହୋଇଥିଲା । ଓଡିଆ ଭାଷା, ସାହିତ୍ୟ, ସଂସ୍କୃତିର ପ୍ରସାରକୁ ନେଇ ସାର୍‌ଙ୍କର ସୃଜନଶୀଳ ମନୋବୃତ୍ତି, ଉନ୍ନତ ଚିନ୍ତାଧାରା, ମୋତେ ଅନେକ ମାତ୍ରାରେ ପ୍ରଭାବିତ କରିଥିଲା । ତାଙ୍କ ପ୍ରଚେଷ୍ଟା ନିଶ୍ଚିତ ସ୍ୱାଗତଯୋଗ୍ୟ । ଶିଶୁ ସାହିତ୍ୟର ବିକାଶ, ଉନ୍ନତିର ଧାରାକୁ ନେଇ ତାଙ୍କର ବକ୍ତବ୍ୟ ବେଶ୍ ଶିକ୍ଷଣୀୟ । ବସନ୍ତ ସାର୍‌ଙ୍କର ବକ୍ତବ୍ୟରୁ ତାଙ୍କର ବାଗ୍ମୀତାର ପରିଚୟ ମିଳିଥାଏ । ଯାହାଦ୍ୱାରା ମୁଁ ମଧ୍ୟ ପ୍ରେରିତ ହୋଇଥିଲି ।

**ବସନ୍ତ ସାର୍‌ଙ୍କ ନିବନ୍ଧ ଓଡିଆ ମୌଖିକ ଶିଶୁ ସାହିତ୍ୟ ର ସଂକ୍ଷିପ୍ତ ବିଶ୍ଲେଷଣ :**

ନିବନ୍ଧଟି ଉତ୍କଳ ବିଶ୍ୱବିଦ୍ୟାଳୟରେ ୧୯୯୨ରେ ଉପସ୍ଥାପିତ ହୋଇଥିଲା



Digitized by srujanika@gmail.com

ଓ ୧୯୯୩ ମସିହାରେ ଯୋଗ୍ୟ ବିବେଚିତ ହୋଇଥିଲା । ଉକ୍ତ ନିବନ୍ଧରେ ସେ ଶିଶୁ ସାହିତ୍ୟର ପରିଚୟ, ପ୍ରକାର ଭେଦ, କାର୍ଯ୍ୟ ଓ ଉଦ୍ଦେଶ୍ୟକୁ ଖୁବ୍ ମନନଶୀଳ ଭାବେ ପରିପୁଷ୍ଟ କରିଛନ୍ତି । ସେଥିରେ ମୌଖିକ ଶିଶୁ ସାହିତ୍ୟ କ୍ରମରେ ନାନାବାୟା ଗୀତ, ଶିଶୁ ଗୀତ, ଖେଳଗୀତ, ନାଁ ଦିଆ, ପ୍ରବଚନ, ଓଷା, ପର୍ବପର୍ବାଣି ଗୀତ, ମୌଖିକ ଶିଶୁ ଗଳ୍ପର ଆଲୋକପାତ କରିଛନ୍ତି । ଯାହାକି ଗବେଷକମାନଙ୍କ ପାଇଁ ପଥ ପ୍ରଦର୍ଶନ କରିବାରେ ଅନେକ ସହାୟକ ହୋଇଛି ।

ଶିଶୁର ମନ ଅନାବିଳ ଓ ସମ୍ବେଦନଶୀଳ । ଶିଶୁ ମନୋବୈଜ୍ଞାନିକ ଅଧ୍ୟୟନ କ୍ରମରେ ଶିଶୁ ମନୋଜଗତକୁ ନେଇ ଯେପରି ବ୍ୟାଖ୍ୟା କରିଛନ୍ତି, ତାହା ବେଶ୍ ଶିକ୍ଷଣୀୟ । ତାଙ୍କ ମତରେ ଶିଶୁ ଯେ ବୟସ୍କ ବ୍ୟକ୍ତିର ଏକ କ୍ଷୁଦ୍ର ରୂପ ନୁହେଁ । ଏହା ଶିଶୁ ମନୋବିଜ୍ଞାନୀମାନେ ବିଭିନ୍ନ ପରୀକ୍ଷା କରି ପ୍ରମାଣିତ କରିଛନ୍ତି । ଜଣେ ବୟସ୍କ ବ୍ୟକ୍ତିର ଯେପରି ନିଜସ୍ୱ ଚିନ୍ତା ବିଚାରଶକ୍ତି ଭାବପ୍ରବଣତା ଆଦି ରହିଛି, ସେହିପରି ଗୋଟିଏ ଶିଶୁର ମଧ୍ୟ ନିଜର ସ୍ୱତନ୍ତ୍ର କଳ୍ପନା, ଜିଜ୍ଞାସା ରୁଚିବୋଧ ଚିନ୍ତା ଓ ଭାବ ପ୍ରବଣତା ଆଦି ଗୁଣ ରହିଛି ।

ଶିଶୁ ମନର ବିଭିନ୍ନ କ୍ରିୟା ପ୍ରକ୍ରିୟା, ମୌଖିକ ଶିଶୁ ସାହିତ୍ୟ ସହ ସମ୍ପର୍କ ନିବିଡ ଭାବେ ରହିଛି । ମୌଖିକ ଶିଶୁ ସାହିତ୍ୟ ଏକ ସଚେତନ ସୃଷ୍ଟି ନ ହେଲେ ହେଁ ଏଥିରେ ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନମାନ ରହିଛି । ଏତଦ୍ ବ୍ୟତୀତ ଶିଶୁ ମନର ଗତି ଓ ଅବସ୍ଥା ସହିତ ତାଳ ଦେଇ ମୌଖିକ ଶିଶୁ ସାହିତ୍ୟର ବିଭାଗ ଗୁଡିକ କିପରି ପ୍ରକାଶିତ ହୋଇଛି ତାହା ଉଦାହରଣ ମାଧ୍ୟମରେ ଦର୍ଶାଯାଇଛି । ମନୋବିଜ୍ଞାନ ସମର୍ଥିତ ଉପାଦାନ ଗୁଡିକ ହେଲା-ଧାରଣା, ଜ୍ଞାନ, ପରିଚୟବୋଧ, ଶିଶୁ ପରିବେଶ, ସ୍ମୃତି, ଶିଶୁ କଳ୍ପନା, ବାକ୍‌ଶକ୍ତି, ମନଯୋଗ କ୍ଷମତା, ଭାବାବେଗ, ସୃଜନଶକ୍ତି, ଆନନ୍ଦ, ସମବେଦନା, ଈର୍ଷା, ପରଶ୍ରୀକାତରତା, ସ୍ୱତନ୍ତ୍ରତାବୋଧ ଇତ୍ୟାଦି । ଏ ସବୁର ତନ୍ନତନ୍ନ କରି ଯେପରି ବିଶ୍ଳେଷଣ କରାଯାଇଛି ତାହା ବେଶ୍ ଗ୍ରହଣଯୋଗ୍ୟ ମନେହୁଏ ।

ମୌଖିକ ଶିଶୁ ସାହିତ୍ୟରେ ସମାଜ ଚିତ୍ରର ରୂପକୁ ବ୍ୟକ୍ତ କରି ସେ ଲେଖିଛନ୍ତି ଯେ-ସମାଜ ମଧ୍ୟରେ ହିଁ ମୌଖିକ ଶିଶୁଗୀତର ସୃଷ୍ଟି । ନିଜର ମନୋଭାବକୁ ବ୍ୟକ୍ତ କରିବା ପାଇଁ ଶିଶୁ ତାର ଅବସର ସମୟକୁ ଗୀତ ଗାଇବାରେ କାଟିଥାଏ । ଗୀତ ଗାଇଲା ବେଳେ ତା'ର ଚତୁଃପାର୍ଶ୍ୱରେ ଥିବା ସମସ୍ତ ଚିତ୍ର, ଘଟଣା, ପରିସ୍ଥିତିକୁ ରୂପାୟିତ କରିବାକୁ ଚେଷ୍ଟା କରିଥାଏ । ପାରିପାର୍ଶ୍ୱିକ ଚିତ୍ର ମଧ୍ୟରେ ସେ ମୁଖ୍ୟତଃ ପରିବାର ଓ ସମାଜକୁ ଲକ୍ଷ୍ୟ କରି ସଂଗ୍ରହ କରେ । ଏ ସବୁ ଭାବନା ମଧ୍ୟରେ ଯେଉଁ ସାମାଜିକ ଚିତ୍ର ଚିତ୍ରିତ ହୋଇଛି ତାହା ବେଶ୍ ଶିକ୍ଷଣୀୟ ।



Digitized by srujanika@gmail.com

ଦୀର୍ଘ ଚାରି ଦଶନ୍ଧି ଧରି ନିରବଚ୍ଛିନ୍ନ ଭାବେ ଓଡିଆ ସାହିତ୍ୟର ଜଣେ ସୃଜନଶୀଳ ସ୍ରଷ୍ଟା, ଗବେଷକ, ଆଲୋଚକ, ସଂଗଠକ, ସମ୍ପାଦକ, ସଂକଳକ ତଥା ପ୍ରାବନ୍ଧିକ ଭାବେ ସେ କାର୍ଯ୍ୟ କରି ଆସୁଛନ୍ତି । 'ବଗଲା ବଗୁଲୀ' ର ସୁଦକ୍ଷ ସଂପାଦକ ଭାବେ ସେ ନିଜର କର୍ମ ନିପୁଣତା ପ୍ରକାଶ କରିଛନ୍ତି । ଏତଦ୍ ବ୍ୟତୀତ ବନପ୍ରଭା, ସ୍ୱର୍ଣ୍ଣକ୍ଷେତ୍ର ଓ ସ୍ମରଣିକାର ବିଶେଷ ସଂଖ୍ୟାମାନ ପ୍ରକାଶ କରି ନିଜର ସ୍ୱତନ୍ତ୍ର ସରଣୀ ସୃଷ୍ଟି କରିଛନ୍ତି । ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ, ଓଡିଆ ଗବେଷଣା ପରିଷଦ ଆଦି ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ ସହିତ ଜଡିତ ରହି ଓଡିଆ ସାହିତ୍ୟର ବିକାଶ ପାଇଁ କାର୍ଯ୍ୟ କରିଛନ୍ତି ।

ସେ ନିଜର କୃତି ଓ କୃତିତ୍ୱ କ୍ରମରେ ବତିଶ୍ (୩୨) ଗୋଟି ପୁସ୍ତକର ସୃଷ୍ଟି ସହ ଷାଠିଏ (୬୦)ରୁ ଊର୍ଦ୍ଧ୍ୱ ପତ୍ରପତ୍ରିକାର ଓ ପୁସ୍ତକର ସଂକଳକ ଭାବେ ନିଜର ସ୍ୱାତନ୍ତ୍ର୍ୟତା ପ୍ରତିଷ୍ଠା କରି ପାରିଛନ୍ତି । ନିଜ ପ୍ରତିଭାର ସ୍ମାରକୀ ସ୍ୱରୂପ ୨୦ରୁ ଊର୍ଦ୍ଧ୍ୱ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି ମଧ୍ୟ । ବନପ୍ରଭା ସାହିତ୍ୟ ସଂସଦ ଡକ୍ଟର ବସନ୍ତ କିଶୋର ସାହୁଙ୍କ ଜନ୍ମତିଥି ତଥା ଅବସର ପାଇଁ ଏକ ଅଭିନନ୍ଦନ ପୁସ୍ତକ ପ୍ରକାଶ କରିବା ନିଷ୍ପତ୍ତି ସ୍ୱାଗତଯୋଗ୍ୟ ପଦକ୍ଷେପ । ଏଥିପାଇଁ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ । ଏହିପରି ଜଣେ ପ୍ରତିଭାବାନ ଚିର ଯଶସ୍ୱୀ ସାରସ୍ୱତ ଶିଳ୍ପୀଙ୍କର ଲେଖନୀ ଚଳଚଞ୍ଚଳ ରହୁ, ସେ ସୁସ୍ଥ, ନିରାମୟ ଜୀବନ ଅତିବାହିତ କରନ୍ତୁ ; ବିଭୁଙ୍କ ପାଖେ ଅନ୍ତରରୁ ପ୍ରଣତି ଜଣାଉଛି ।



ଷ୍ଟାର ସିଟି, କିଟ୍,
ପଟିଆ, ଭୁବନେଶ୍ୱର



Digitized by srujanika@gmail.com

# ଚିର ବସନ୍ତ : ବସନ୍ତ କିଶୋର

## (ଶିଶୁ ସାହିତ୍ୟର ଅନ୍ୟତମ କୁଶଳୀ ବିନ୍ଧାଣୀ)

**ସୂର୍ଯ୍ୟମଣି ସାମନ୍ତରାୟ**

ଲେଖକ ହେଉ ବା କଳାକାର ଅଥବା କ୍ରୀଡାବିତ ହେଉ, ଯେ କୌଣସି କଳାକୃତି ବ୍ୟକ୍ତି ହେଉନା କାହିଁକି କିଶୋର ଅବସ୍ଥାରେ ସମସ୍ତଙ୍କର କିଛି ନା କିଛି ସ୍ୱପ୍ନ ମନରେ ଜାଗ୍ରତ ହୋଇଥାଏ । ସେହିପରି ଏକ ଚପଳମତି କିଶୋରଟିର ଇଛା କେମିତି କବିତା ଲେଖନ୍ତା । କବିଟିଏ ହୁଅନ୍ତା । ଖବରକାଗଜରେ ଅନ୍ୟମାନଙ୍କ ଭଳି କେମିତି ତାର କବିତା ପ୍ରକାଶିତ ହୁଅନ୍ତା ? ଏହି କିଶୋରଟି ଆଉ କେହି ନୁହନ୍ତି ସେ ହେଲେ ବସନ୍ତ କିଶୋର ।

କୋମଳ ହାତରେ କୋମଳମତି ମନରେ କଲମ ଧରି ସେ ଲେଖି ଚାଲିଲେ କୁନିକୁନି କବିତା ଆଉ କବିତା । ଖାଲି ଲେଖିଗଲେ ହେବନି, ଝୁଙ୍କ କେମିତି ପତ୍ରପତ୍ରିକାରେ ଲେଖା ପ୍ରକାଶ ପାଆନ୍ତାକି ? ଏହି ନିଶାରେ ବୁଡି ରହିଲେ ବସନ୍ତ କିଶୋର । କବିତା ଲେଖାଗଲା । ପ୍ରଥମେ ପଠାଗଲା ଦୈନିକ ସମ୍ବାଦପତ୍ର 'ମାତୃଭୂମି'କୁ ପ୍ରକାଶ ପାଇଁ । ସ୍ୱପ୍ନ ସଫଳ ହେଲା । କବିତା ତା ୧୧-୩-୭୨ରେ ମାତୃଭୂମିର 'କିଶୋର ଫଉଜ' ପୃଷ୍ଠାରେ ପ୍ରକାଶିତ ହେଲା । ଶୀର୍ଷକ 'ବରଷକେ ଆଜି ଆସିଛି ବସନ୍ତ ।' ତାଙ୍କର ଏହି ପ୍ରଥମ ପ୍ରକାଶିତ ଲେଖା ପାଠ କରି ଏତେ ଖୁସି ହୋଇଯାଇଥିଲେ ସତେକି କୋଟିନିଧିକୁ ପାଇଛନ୍ତି ଅବା ଆକାଶରୁ ଚନ୍ଦ୍ର ଯେମିତି ତାଙ୍କ ହାତକୁ ଖସିପଡିଛି । ତାଙ୍କ ଆନନ୍ଦର ସୀମାର ଅନ୍ତ ନାହିଁ ।

ଏହା ପରେ ସେ ଆଉ ପଛକୁ ଚାହିଁ ନାହାନ୍ତି । ଲେଖି ଚାଲିଲେ କବିତା ଆଉ କବିତା । କ୍ରମେ ଅନ୍ୟାନ୍ୟ ପତ୍ରପତ୍ରିକାରେ ମଧ୍ୟ ତାଙ୍କ ରଚିତ କବିତା ପ୍ରକାଶ ପାଇଲା । ପୁଣି ତାଙ୍କର ପ୍ରାରମ୍ଭିକ କବି ଜୀବନର ସଫଳତାର ପ୍ରଥମ ମାଇଲ ଷ୍ଟମ୍ଭ ସଦୃଶ ୧୯୭୩ ମସିହାରେ ମାତୃଭୂମି ଦ୍ୱାରା "କିଶୋରଶ୍ରୀ" ଉପାଧିରେ ଭୂଷିତ ହେଲେ । ଏହା ଦ୍ୱାରା କବି ମାନସରେ ଏକ ଦୃଢତାର ମନୋବିଜ୍ଞାନର ପ୍ରଭାବ ପଡିଲା ।

ଏତିକିରେ ସେ ଚୁପ ହୋଇ ଆଉ ରହି ନାହାନ୍ତି । ଯୁବକ ଅବସ୍ଥାରେ ୧୯୮୨ରେ ସାରସ୍ୱତ କ୍ଷେତ୍ରରେ ଆଉ ପାଦେ ଆଗେଇ ଗଲେ । ତାଙ୍କ ଦ୍ୱାରା ସଂପାଦିତ "ବଗଲାବଗୁଲୀ" ଦ୍ୱିମାସିକ ଶିଶୁ ପତ୍ରିକା ପ୍ରକାଶ ପାଇଲା । ପାଠକଙ୍କ ଦ୍ୱାରା ଆଦୃତ ମଧ୍ୟ ହେଲା । ଏହା ଅବଶ୍ୟ ୧୯୮୫ ପର୍ଯ୍ୟନ୍ତ ପ୍ରକାଶ ପାଇଲା ।



Digitized by srujanika@gmail.com

ପବିତ୍ର ବିରୂପା ନଈ କୂଳ କୁସୁପୁର ମାଟିର ବାସ୍ନାରେ ପଲ୍ଲୀକବି ନନ୍ଦ କିଶୋର ବଳ, ଶିକ୍ଷାଗୁରୁ ବିଦ୍ୟାଧର ବର୍ମା, କବି ନନ୍ଦ କିଶୋର ସାମଲ ଯେଉଁପରି ଭାବେ ଆଜି ବାସ୍ନାୟିତ ସେହି ମାଟିରେ ଜନ୍ମ ନେଇ ବସନ୍ତ କିଶୋର ଅବା ବାଦ୍ ପାଇବେ କିପରି ? ସେ ମଧ୍ୟ ତାଙ୍କର ସାରସ୍ୱତ ଜୀବନର ଜୟ ଯାତ୍ରାର ଅୟମାରମ୍ଭ କରିଦେଲେ । ଏହାକୁ ସଫଳ କରିବା ପାଇଁ ଭଗବାନଙ୍କର ଏକ ସଂଯୋଗ ସେ ସୁନାବେଡ଼ା କଲେଜରେ ଓଡ଼ିଆ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ସରସ୍ୱତୀଙ୍କ ଅପାର କୃପାରୁ ମୁଦ୍ରାର ଦୁଇଟି ପାର୍ଶ୍ୱ ଭଳି ତାଙ୍କ ପାଖରେ ସାରସ୍ୱତ ସାଧନାର ଦୁଇଟି ଦିଗ ହସ୍ତଗତ ହେଲା । ଶିକ୍ଷାଦାନ କରିବା ସହ ସାରସ୍ୱତ କ୍ଷେତ୍ରରେ ସାଧନା ପାଇଁ ପ୍ରକୃଷ୍ଟ କ୍ଷେତ୍ର ମିଳିଗଲା ଏବଂ ସୁନାବେଡ଼ା ହେଲା ତାଙ୍କର ସାଧନା ପୀଠ ।

ସାଧନା ସ୍ୱରୂପ ଶିଶୁ ସାହିତ୍ୟ ସାଗର ମଧ୍ୟରେ ବୁଡି ରହି ଖୋଜି ଚାଲିଲେ ମଣି, ମୁକ୍ତା, ହୀରା, ନୀଳା, ମୋତି, ମାଣିକ । ଫଳ ସ୍ୱରୂପ ଏହା ସଦୃଶ ପାଇଲେ ଶିଶୁ ସାହିତ୍ୟର ବିଭିନ୍ନ ବିଭବର ପଟୁ କୁଶଳୀ କାରିଗରୀପଣିଆ ଯଥା - ଗଳ୍ପ, କବିତା, ପ୍ରବନ୍ଧ, ଅନୁବାଦ, ଆଲୋଚନା, ସମାଲୋଚନା, ସଂପାଦନା ଇତ୍ୟାଦିରେ ସିଦ୍ଧହସ୍ତ । ସେହିପରି ବିଦଗ୍ଧ ସାହିତ୍ୟର ପ୍ରତ୍ୟେକ ବିଭାଗରେ ମଧ୍ୟ ତାଙ୍କ ସୃଷ୍ଟି କମ୍ ନୁହେଁ । ଏପରିକି ତାଙ୍କର କଲମରୁ ଝରିଯାଇଛି ବିଭିନ୍ନ ସ୍ୱାଦର କବିତା-ଶିଶୁ, କିଶୋର, ଯୁବକ ଓ ପ୍ରୌଢ ଆଦି ସମସ୍ତ ବର୍ଗର ପାଠକ ପାଠିକାଙ୍କ ପାଇଁ ।

ଏହିପରି ସାରସ୍ୱତ ସାଧକ ତଥା ବିଦ୍ୟାଧ୍ୟୟନ ପ୍ରେମୀ ବସନ୍ତ କିଶୋର ଏତିକିରେ କ'ଣ ସନ୍ତୁଷ୍ଟ ହେଉଛନ୍ତି ? ଗବେଷଣାରେ ମନୋନିବେଶ କରି ବିଶେଷ କରି ଶିଶୁ ସାହିତ୍ୟିକ ଭାବେ "ଓଡିଆ ମୌଖିକ ଶିଶୁ ସାହିତ୍ୟ" ସମ୍ବନ୍ଧରେ ପ୍ରଥମ ଶିଶୁ ସାହିତ୍ୟ ଗବେଷକ ଡଃ. ମନୀନ୍ଦ୍ର ମହାନ୍ତିଙ୍କ ଦିଗ୍‌ଦର୍ଶନରେ ଗବେଷଣା କରି ୧୯୯୩ରେ ପିଏଚ୍.ଡି ଲାଭ କଲେ ଓ ଓଡିଆ ଶିଶୁ ସାହିତ୍ୟ ବିଭାଗର ୫ମ ଗବେଷକ ଭାବେ ନାମ ଲିପିବଦ୍ଧ କରି ଖ୍ୟାତି ଅର୍ଜନ କରିବା ସହ ଅବହେଳିତ ଶିଶୁ ସାହିତ୍ୟର ମର୍ଯ୍ୟାଦା ବୃଦ୍ଧିରେ ସହାୟକ ହେଲେ । ଗୋଟିଏ ଜଳନ୍ତା ମହମବତୀ ଯେପରି ଅନ୍ୟ ମହମବତୀକୁ ଜଳାଇ ଆଲୋକ ପ୍ରଦାନରେ ସହାୟକ ହୋଇଥାଏ ସେହିପରି ଡଃ. ସାହୁ ଏ ମଧ୍ୟରେ ଶିଶୁ ସାହିତ୍ୟର ମାନବୃଦ୍ଧି ସକାଶେ ଶିଶୁ ସାହତ୍ୟ ସମ୍ବନ୍ଧରେ ତିନିଜଣ ଗବେଷକଙ୍କର ମାର୍ଗଦର୍ଶକ ହୋଇ ସଫଳତା ହାସଲ କରିପାରିଛନ୍ତି । ଏହା ଶିଶୁ ସାହିତ୍ୟ କ୍ଷେତ୍ରରେ ଗର୍ବ ଓ ଗୌରବର କଥା ଏବଂ ଡଃ.ସାହୁ ଏଥିପାଇଁ ଧନ୍ୟବାଦାର୍ହ ।

ଡଃ. ସାହୁଙ୍କ ଜନ୍ମସ୍ଥାନ କଟକ ଜିଲ୍ଲାର କୁସୁପୁରରେ ହୋଇଥିଲେ ହେଁ ତାଙ୍କର କର୍ମସ୍ଥଳୀ ଯେଉଁଠାରେ ତାଙ୍କର ୨୯ ବର୍ଷର କର୍ମମୟ ଜୀବନକୁ ଉତ୍ସର୍ଗ କରି ଦେଇଛନ୍ତି, ସେହି ସୁନାବେଡ଼ା ତଥା କୋରାପୁଟ ଜିଲ୍ଲାକୁ ଆନ୍ତରିକ ଭାବେ ଭଲପାଇବା କୌଣସି ମତେ ଊଣା ନଥିଲା । ତାହାର ନିଦର୍ଶନ ସ୍ୱରୂପ ଏହି ଅଞ୍ଚଳର ବହୁ ସାରସ୍ୱତ, ସାଂସ୍କୃତିକ



Digitized by srujanika@gmail.com

ସଂଗଠନ, ଅନୁଷ୍ଠାନ ଇତ୍ୟାଦି ସହିତ ସେ ନିବିଡ଼ ଭାବରେ ଜଡ଼ିତ । ଏପରିକି ମୁଖ୍ୟ କାର୍ଯ୍ୟ ନିର୍ବାହୀ ଭାବରେ କାର୍ଯ୍ୟ କରିଛନ୍ତି । ବହୁବିଧ ଉନ୍ନତି କରାଇଛନ୍ତି । ଏପରିକି ସୁନାବେଡ଼ା ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା, ସାଂସ୍କୃତିକ କାର୍ଯ୍ୟରେ ଜଡ଼ିତ ହେବା ସହ ମନ୍ଦିରର ପ୍ରକାଶ ପାଉଥିବା 'ସର୍ଣ୍ଣକ୍ଷେତ୍ର' ପତ୍ରିକାଟି ତାଙ୍କ ଦ୍ୱାରା ସଂପାଦିତ ହୋଇ ଗବେଷକମାନଙ୍କ ଦ୍ୱାରା ଆଦୃତ ହୋଇଆସୁଛି । 'ବନପ୍ରଭା ସାହିତ୍ୟ ସଂସଦ'ର ଉତ୍ତରୋତ୍ତର ଉନ୍ନତିରେ ତାଙ୍କ ଭୂମିକା ମଧ୍ୟ ପ୍ରଶଂସନୀୟ ।

ବଣ, ଜଙ୍ଗଲ, ପର୍ବତ ଘେରା ଆଦିବାସୀ ବହୁଳ କୋରାପୁଟ ଜିଲ୍ଲାକୁ ସେ ଖୁବ୍ ଭଲ ପାଇଛନ୍ତି । ସୁନାବେଡ଼ାଠାରେ ତାଙ୍କର କର୍ମମୟ ଜୀବନକୁ ୨୯ ବର୍ଷ କାଳ ମଧ୍ୟରେ ବିଭିନ୍ନ ସେବା କାମରେ ନିଜକୁ ନିୟୋଜିତ କରିଛନ୍ତି । ତାହାର ନିଦର୍ଶନ ସ୍ୱରୂପ ଏହାର ସଂସ୍କୃତି, ପର୍ବପର୍ବାଣି ଓ ପାଣି ପବନକୁ ସମସ୍ତଙ୍କୁ ଅବହିତ କରିବା ଉଦ୍ଦେଶ୍ୟରେ ପୁସ୍ତକ ରଚନା କଲେ-କୋରାପୁଟର ପର୍ବପର୍ବାଣି, କୋରାପୁଟର ଲୋକକଥା ଏବଂ ଆମ କୋରାପୁଟ, ଆମ ଜିଲ୍ଲା କୋରାପୁଟ । ମୋର ସୌଭାଗ୍ୟର କଥା ଏବଂ ତାଙ୍କ ମହନୀୟତା ପ୍ରତି ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ ସ୍ୱରୂପ 'କୋରାପୁଟ ଲୋକକଥା' (୨୦୧୦) ପୁସ୍ତକଟି ମୋ ନାମରେ ଉତ୍ସର୍ଗ କରାଯାଇଛି । ଏଥିପାଇଁ ସେ ଧନ୍ୟବାଦାର୍ହ । କୃତଜ୍ଞତା ଜଣାଉଛି ।

ସେତିକି ନୁହେଁ, ଆହୁରି ମଧ୍ୟ ଏହି ଅବହେଳିତ ଅବିଭକ୍ତ କୋରାପୁଟ ଜିଲ୍ଲାର କୋଣ ଅନୁକୋଣରେ ବୁହାଇ ଦେଇଛନ୍ତି ସାରସ୍ୱତ ଫଲ୍‌ଗୁର ଧାରା ଭାଗିରଥୀ ଭଳି । ଡଃ. ସାହୁଙ୍କ ଦ୍ୱାରା ଲିଖିତ ପୁସ୍ତକ ଗୁଡ଼ିକ ଯେତିକି ମୁଁ ଅଧ୍ୟୟନ କରିପାରିଛି ଏଥିରେ ଦୃଷ୍ଟିଗୋଚର ହୁଏ ବନ୍ଧୁ, ପ୍ରିୟଜନ, ଗୁରୁଜନ, ସମ୍ମାନାସ୍ପଦ ବ୍ୟକ୍ତିଙ୍କ ନାମରେ ସେ ଉତ୍ସର୍ଗ କରିଛନ୍ତି, କେଉଁଠି ବି ତାଙ୍କର ସେମାନଙ୍କର କୃତିକୁ ଅବତାରଣା କରିଛନ୍ତି । ଏଥିରୁ ଜଣାଯାଏ ତାଙ୍କର ଲେଖନୀ ରୂପକ ସୂଚୀରେ ଏହି ସମସ୍ତଙ୍କୁ ପୁସ୍ତକ ରୂପକ ଫୁଲରେ ମାଳା ଗୁନ୍ଥି ଗୋଟିଏ ମାଳାରେ ସାଇତି ରଖିଛନ୍ତି । ଏହାହିଁ ତାଙ୍କର ଅନାବିଳ ସ୍ନେହ, ଶ୍ରଦ୍ଧା, ସମ୍ମାନ ତଥା ଆନ୍ତରିକତାର ସହ ଭଲ ପାଇବାର ପରିଚୟ ଏବଂ ଅନାବିଳ ପ୍ରେମର ନିଦର୍ଶନ ।

ବସନ୍ତ କିଶୋର ସାରସ୍ୱତ କ୍ଷେତ୍ରରେ ସ୍ୱୟଂସଂପୂର୍ଣ୍ଣ ବିରଳ ବ୍ୟକ୍ତିତ୍ୱ । ସେ ଏକାଧାରରେ ଜଣେ ଅଧ୍ୟାପକ, ଲେଖକ, ଗବେଷକ, ଦିଗ୍‌ଦର୍ଶକ, ଉପଦେଷ୍ଟା, ପ୍ରକାଶକ, ସଂପାଦକ, ସଂଗଠକ, ଅନୁଷ୍ଠାନ ପ୍ରିୟ ହୋଇଥିଲା ବେଳେ, ଅନ୍ୟ ଦିଗଟି ହେଉଛି ମୁଦ୍ରକ ଓ ପ୍ରେସ୍ ମାଲିକ ମଧ୍ୟ । ମୁଦ୍ରାର ଦୁଇ ପାର୍ଶ୍ୱ ସଦୃଶ ଯାହାକୁ କହନ୍ତି ପ୍ରକୃତ ସାହିତ୍ୟିକ, ସାରସ୍ୱତ ସାଧକ, ସାହିତ୍ୟର ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ହସ୍ତଚାଳନା ପାଇଁ ସେ ଧନ୍ୟବାଦାର୍ହ । ସେ ଜଣେ ଶିଶୁ ସାହିତ୍ୟର କୁଶଳୀ ବିନ୍ଧାଣୀ ତଥା ଶିଶୁ ସାହିତ୍ୟର ମଣି । ଜଣେ ଖାଣ୍ଟି ସାହିତ୍ୟିକ କହିଲେ ଅତ୍ୟୁକ୍ତି ହେବ ନାହିଁ ।



Digitized by srujanika@gmail.com

ସାରସ୍ୱତ ସାଧନାର ପ୍ରତ୍ୟେକ ବିଭାଗରେ ପୂର୍ଣ୍ଣତା ହାସଲ କରି ଆଜି ଯିଏ ସ୍ୱୟଂ ସମ୍ପୂର୍ଣ୍ଣର ପ୍ରତୀକ ତଥା ଅନନ୍ୟ ବିରଳ ବ୍ୟକ୍ତିତ୍ୱ । ଡଃ. ସାହୁ ସୁନାବେଡାରେ ସାରସ୍ୱତ ସାଧନା କରି ସାଧନାର ସିଦ୍ଧି ସ୍ୱରୂପ ପାଇଛନ୍ତି ୧୭ଖଣ୍ଡ ଶିଶୁ ସାହିତ୍ୟ ପୁସ୍ତକ, ୧୫ଟି ବିବିଧ ଆଲୋଚନା ଓ ଅନ୍ୟାନ୍ୟ । ଏଗୁଡିକ ଗୋଟିଏ ଗୋଟିଏ ଓଡିଆ ସାରସ୍ୱତ ଭଣ୍ଡାରର ମଣି,ମୁକ୍ତା ସଦୃଶ କହିଲେ ଅତ୍ୟୁକ୍ତି ହେବନାହିଁ ।

ତାଙ୍କ କର୍ମପ୍ରବଣତା, ମନନ, ଚିନ୍ତନ, ପ୍ରତିବଦ୍ଧତା ତଥା ନିଷ୍ଠାପର ଉଦ୍ୟମ ପାଇଁ ସାଧାରଣ ପରିବାରରେ ଜନ୍ମ ଗ୍ରହଣ କରି ନିଜର ଇଚ୍ଛା ଶକ୍ତି ଯୋଗୁ ଆଜି ସେ ଏ ଯାଏ ପହଞ୍ଚିପାରିଛନ୍ତି । ଏହାହିଁ ଅନ୍ୟମାନଙ୍କ ପାଇଁ ସେ ଉଦାହରଣ ନିଶ୍ଚୟ । ଅନ୍ତରଙ୍ଗ ଭାବେ ମୁଁ ଯେତେ ଦୂର ତାଙ୍କୁ ଯୁବାବସ୍ଥାରୁ ଦେଖିଛି ବା ପଢିଛି କର୍ମହିଁ ତାଙ୍କର ନିଜଗୁରୁ । କୌଣସି ପୁରସ୍କାର, ସମ୍ବର୍ଦ୍ଧନା ପାଇଁ ବ୍ୟାକୁଳତା ନାହିଁ । ସେ ଜଣେ ଶାନ୍ତ ଶିଷ୍ଟ, ଭଦ୍ର, ସ୍ଥିତପ୍ରଜ୍ଞ, ଅମାୟିକ, ସ୍ନେହୀ, ବନ୍ଧୁବତ୍ସଳ, କର୍ମଠ, ନିର୍ମଳ ଖୋଲାମନ, ପରୋପକାରୀ, ସମାଜସେବୀ, ଉପଯୁକ୍ତ ସହଯୋଗୀ ଏବଂ ସ୍ୱଭାବରେ ଗମ୍ଭୀର ହେଲେବି ସହାସ୍ୟବଦନ । ମହତ ବାଣୀରେ କଥା ଅଛି-'କଥା କମ୍ କାମ ଅଧିକ' ଏହି ଉକ୍ତିକୁ ସେ ଠିକ୍ ଭାବେ ପାଳନ କରନ୍ତି ବୋଲି ମୋର ବିଶ୍ୱାସ ।

ତାଙ୍କ ସହଧର୍ମିଣୀଙ୍କ କଥା ଏହିଠାରେ କିଛି ଅବତାରଣା ନକଲେ ଲେଖା ଅଧୁରା ହୋଇଯିବ । କଥାରେ ଅଛି ଜଣେ ପୁରୁଷର କୃତକାର୍ଯ୍ୟରେ ଜଣେ ବ୍ୟକ୍ତି ଥାଏ ସେ ହେଉଛନ୍ତି ସ୍ତ୍ରୀ । ତାହା ହିଁ ଡଃ. ବସନ୍ତ ସାହୁଙ୍କ ଠାରେ ପ୍ରଯୋଜ୍ୟ ବୋଲି ମୋର ହୃଦ୍‌ବୋଧ ହୁଏ । ତାଙ୍କ ଧର୍ମପତ୍ନୀ ଶ୍ରୀମତୀ ବୀଣା ଦେବୀ ଜଣେ ଉତ୍ତମ ସୁଗୃହୁଣୀ ତଥା ଡଃ. ସାହୁଙ୍କର ପ୍ରଥମ ସହଯୋଗୀ ତଥା ଉତ୍ସାହ ପ୍ରଦାନକାରୀ । ସେ ଜଣେ କର୍ମଠ, ବନ୍ଧୁବତ୍ସଳା, ସ୍ନେହୀ, ସୁଗୃହିଣୀ, ଆତିଥ୍ୟପରାୟଣା, ଅମାୟିକ ସ୍ୱଭାବର ଭଦ୍ର ମହିଳା । ପୁତ୍ର କନ୍ୟା ମଧ ଶାନ୍ତ, ସରଳ, ନମ୍ର ସ୍ୱଭାବ୍‌ର । ଫଳରେ ତାଙ୍କର ସାରସ୍ୱତ ସାଧନାରେ କୌଣସି ପ୍ରତିବନ୍ଧକ ହୋଇନଥାଏ ।

ଶେଷରେ ମୋର ଭଗବାନଙ୍କଠାରେ ନିବେଦନ ଏହି ଭଳି ବିରଳ ସାରସ୍ୱତ ସାଧକ ବସନ୍ତ କିଶୋରଙ୍କ ଜୀବନ ଚିର ବସନ୍ତ ହୋଇ ରହିଥାଉ ଏବଂ ତାଙ୍କ ଲେଖନୀ ମୁନରୁ ଝରିଯାଉ ଆହୁରି ଅନେକ ଅନେକ ସାରସ୍ୱତ ସାକ୍ଷର, ସମୃଦ୍ଧ ହେଉ ଓଡିଆ ସାରସ୍ୱତ ଭଣ୍ଡାର ବିଶେଷ କରି ଅବହେଳିତ ଶିଶୁ କିଶୋର ସାହିତ୍ୟ ହେଉ ସମୃଦ୍ଧ ।



ସଭାପତି ଶିଶୁ ଓ ଶିଶୁ ସାହିତ୍ୟ ସୁରକ୍ଷା ସଂସଦ
ଏଲ୍.ବି-୧୧୮, ବଡଗଡ
ବ୍ରିଟ କଲୋନୀ,ଭୁବନେଶ୍ୱର - ୧୮



Digitized by srujanika@gmail.com

# ତମେ ସ୍ମୃତିର ବରଷା ଟୋପା

ସୁବାସ ଚନ୍ଦ୍ର ମିଶ୍ର

ଜୀବନ ଏକ ଚିରସ୍ରୋତା ନଈ । କେତେବେଳେ ବାଟରେ ପଡେ ଝାଡ ଜଙ୍ଗଲ ତ କେତେବେଳେ ପାହାଡ, ପର୍ବତ, ସବୁଜ ଉପତ୍ୟକା । କେଉଁଠି ଜଙ୍ଗଲ ଫୁଲର ବାସ୍ନାତ କେଉଁଠି ଉପବନମୟ ଚିର ହସନ୍ତ ପୁଷ୍ପର ମହକ । ଏମିତି ଜୀବନର ଚଲାବାଟରେ ଭେଟି ହୋଇଯାଏ କେତେ ସପ୍ନ ଦେଖୁଥିବା, କେତେ ସମ୍ଭାବନାରେ ନିଜକୁ ମଜାଇ ରଖିଥିବା, କେତେ ବନ୍ଧୁ ପଣିଆରେ କୋଳେଇ ନେଉଥିବା, ସୁଖକୁ ବାଣ୍ଟୁଥିବା ଦୁଃଖକୁ ପିଇ ଯାଉଥିବା ମଣିଷ ମାନଙ୍କୁ, କିଏ କିଏ ଲାଗନ୍ତି ଦେବତା ପରି ତ କିଏ କିଏ ଲାଗନ୍ତି ନିରାସକ୍ତ ସିଦ୍ଧ ତାପସ ପରି ତ କିଏ କିଏ କ୍ଷତର ଯନ୍ତ୍ରଣା ପରି, ଆନନ୍ଦର ପୁଲକ ପରି ଜୀବନର ଖରା ଛାଇରେ କିଏ କିଏ ବ୍ରାହ୍ମମୁହୂର୍ତ୍ତର ଶାନ୍ତ ପରିବେଶ ପରି ତ ମ୍ଳାନ ଗୋଧୂଳିର ପଶ୍ଚିମ ଦିଗନ୍ତରେ ଅସ୍ତମିତ ସୂର୍ଯ୍ୟପରି ନିଷ୍ପ୍ରଭ ରଙ୍ଗବିଭା ପରି ମନେ ହୁଅନ୍ତି । ଏମିତି ବହୁ ସ୍ମୃତିକୁ ନେଇ ଗଢି ହୋଇଯାଏ ଜୀବନର ବଡଦାଣ୍ଡ, ସେଇ ବଡଦାଣ୍ଡରେ କେହି କେହି ହଠାତ୍ ଦିଶିଯାଆନ୍ତି ସ୍ମୃତିର ପରଦା ଆଢୁଆଳରୁ, କେମିତି ବନ୍ଧୁପଣିଆର ସ୍ମିତ ହାସରେ କେତୋଟି ମୁହୂର୍ତ୍ତ ହୋଇଯାଏ ଉଜ୍ଜ୍ୱଳ, ମନ ମୁକ୍ତ ହୋଇଯାଏ କିଛି ସମୟ ପାଇଁ-ସେମିତି ଏକ ସ୍ମୃତିର ବରଷା ଟୋପା ତା'ର ଭିଜା ଭିଜା ପଣିଆରେ ଭିଜେଇ ଦିଏ ମନକୁ, ସେତେବେଳେ ତମେ ମନେ ପଡ ତମ ହସରେ, ତମ କଥାରେ ତମ ସାହିତ୍ୟରେ ତମ ବାଗ୍ମିତାରେ ତମ ସଂପାଦନାରେ ଆଉ ମନ ଭିତରେ ତମେ ପାଲଟିଯାଅ ବହୁ ପୁରୁଷାର୍ଥର, ବହୁଦିଗନ୍ତର, ବହୁ ପ୍ରଜ୍ଞାଶୀଳ ଉନ୍ମେଷାର ନିସ୍ତରଙ୍ଗ ଭାବପକ୍ଷ ପରି, ତମ ସଂପର୍କରେ ଥରେ ଆସିଲା ପରେ ତମେ ହୋଇଯାଅ ଅତି ନିଜର, ଅତି ଆପଣାର, ତମର ସେଇ ସବୁ ଆପଣେଇ ନେବାର ଅନ୍ତରଙ୍ଗତାକୁ କହିବା ସମ୍ଭବ ହୁଏ ନାହିଁ ବୋଲିତ ଏତେ ଶବ୍ଦ ଆଡମ୍ବରକୁ ନେଇ ଭାବଭୂମିରେ ଗଢିବାକୁ ପଡୁଛି ଏବେ-ଡଃ. ବସନ୍ତ କିଶୋର ସାହୁଙ୍କୁ ନେଇ ।

ବନପ୍ରଭା ସାହିତ୍ୟ ସଂସଦ, ସୁନାବେଡ଼ାର ସଭାପତି ମାଡ଼ାମ ସରଳା ବେହେରା ସେଦିନ ବଢ଼େଇ ଦେଲେ ଅନୁରୋଧପତ୍ରଟିଏ । ତାହା ଥିଲା ଡଃ. ବସନ୍ତ କିଶୋର ସାହୁଙ୍କ ଚାକିରି କାଳ ଅବସର ସମୟରେ ତାଙ୍କ ବହୁ ଦିଗନ୍ତୀୟ ବ୍ୟକ୍ତିତ୍ୱକୁ



Digitized by srujanika@gmail.com

ନେଇ ପ୍ରକାଶ ପାଇବାକୁ ଯାଉଛି ଏକ 'ଅଭିନନ୍ଦନ ଗ୍ରନ୍ଥ'। ମୋର ବସନ୍ତ ବାବୁଙ୍କ ସହ ଥିବା ସାରସତ ସଂପର୍କକୁ ନେଇ ଲେଖାଟିଏ ଦେବା ପାଇଁ ଅନୁରୋଧ କଲେ । ତାଙ୍କ ସାଗ୍ରହ ଅନୁରୋଧ ହିଁ ଏହି ଲେଖାର ହେତୁ ହୋଇଛି, ଏଥିରେ ସନ୍ଦେହ ନାହିଁ।

ଏବେକୁ ଓଡିଆ ଭାଷା ସାହିତ୍ୟରେ ଏକ ରକମ ନୂଆ ବିଧିଟିଏ ଦେଖିବାକୁ ମିଳୁଛି ଯାହାକୁ ସଂସ୍ମରଣ ସାହିତ୍ୟ ବୋଲି କେହି କେହି ନାଆଁ ଦେଇ ଏକ ସାହିତ୍ୟ ସରଣୀ ତିଆରି କରିବାରେ ଲାଗିପଡିଛନ୍ତି । ଏହାକୁ କେହି କେହି ଅଭିନନ୍ଦନ ଗ୍ରନ୍ଥ ବୋଲି ମଧ କହୁଛନ୍ତି । ଏହା ଅବଶ୍ୟ ଗୋଟିଏ ଭଲକଥା କାହିଁକି ନା ଏହା ଯୋଗୁଁ ଯେଉଁ ମଣିଷ ନିଜ ଭଲ ମନ୍ଦ କରଣିରେ ଅନ୍ୟ ଆଖିରେ କିଛି ଅନନ୍ୟ ହୋଇଯାଏ, ସେହି ଆଖିଥିବା ମଣିଷମାନେ ତାଙ୍କର ସେହି ଭଲ ପାଉଥିବା, ସ୍ନେହ କରୁଥିବା ଆଦର କରୁଥିବା ଭକ୍ତି କରୁଥିବା ଏମିତିକି କେହି କେହି ନିନ୍ଦା କରୁଥିବା, ଈର୍ଷା କରୁଥିବା, ପରଶ୍ରୀକାତରକୁ ନିଜର ଗୁଣ ମଣି ଅନ୍ୟକୁ ହୀନ ମନେ କରୁଥିବା ଗୁଣାଶ୍ରୟୀ ମାନେ ପ୍ରବୃତ୍ତି ଅଧୀନମାନେ ନିଜ ଭାବ, ଅନୁଭାବକୁ ଶବ୍ଦ ଦ୍ୱାରା ସଞ୍ଚାରୀ ଭାବରେ ପରିଣତ କରି ଅଭିନନ୍ଦନ ଜଣାଇବାର କେତେ କଳା ଓ କୌଶଳକୁ ଅନ୍ୟମାନଙ୍କ ଆଗରେ ଇନ୍ଦ୍ରଜାଲ ପରି କଥା କୁହୁକରେ କୁହୁକାୟିତ କରିବାର ଅଭିଳାଷଟିକୁ ରୂପାନ୍ୱିତ କରନ୍ତି । ଏହା ସତ୍ୟ ଯେ ସଂସ୍କରଣ ଓ ଅଭିନନ୍ଦନଗ୍ରନ୍ଥ ଗୁଡିକରୁ ଅଭିନନ୍ଦିତ ବ୍ୟକ୍ତିଙ୍କ ସମ୍ବନ୍ଧରେ ତାଙ୍କ ସାମାଜିକ, ମନସ୍ତାତ୍ତ୍ୱିକ, ସମସାମୟିକ ଇତିହାସ, ପରିବେଶ ତାଙ୍କ ବାହାର ଭିତର ଆଦିର ପରିଚୟ ମିଳିବା ସଙ୍ଗେ ସଙ୍ଗେ ମାନବୀୟ ପକ୍ଷର ସର୍ବାଙ୍ଗୀନ ଶବ୍ଦ ଚିତ୍ରଟିଏ ଉଦ୍‌ଭାସିତ ହୋଇଥାଏ ।

ଡଃ. ବସନ୍ତ କିଶୋର ସାହୁଙ୍କ କ୍ଷେତ୍ରରେ ମଧ ଏହା ହେବ ଏବଂ ଏହା ଯେ ଗ୍ରନ୍ଥ ସଂପାଦକଙ୍କ ଆଗ୍ରହ, ଦୂରଦୃଷ୍ଟି, ସଂପାଦନା ଜନିତ ସତର୍କତା ଓ ସାବଧାନତା, ଲୋକ ସଂପର୍କ ଲେଖା ଚୟନରେ ନିରପେକ୍ଷତା ଏବଂ ସର୍ବୋପରି ଅଭିନନ୍ଦିତ ବ୍ୟକ୍ତିଙ୍କ ସମ୍ପର୍କରେ ତାଙ୍କର ଗବେଷଣାତ୍ମକ ଚିତ୍ତବୃତ୍ତି, ନୈର୍ବ୍ୟକ୍ତିକ ବିଚାରଧାରା ସତ୍ୟବନ୍ଧତା, ଦୋଷାଦୋଷ ଗୁଣାଗୁଣ, ଚରିତ୍ରବତ୍ତା ଓ ଧୀଶକ୍ତି ଏବଂ ଜ୍ଞାନ ଉପରେ ନିର୍ଭର କରିବ, ଏଥିରେ କେହି ଦ୍ୱିମତ ହେବେ ନାହିଁ। ଏବେ ମୁଁ ଡଃ. ବସନ୍ତ କିଶୋର ସାହୁଙ୍କୁ ଯେତିକି ଅନୁଭବିଛି, ଯେତିକି ଜାଣିଛି ତାକୁ ଲେଖିବାର ବେଳ -

ମୋର ଅନୁଭବ ଡଃ. ବସନ୍ତ କିଶୋର ସାହୁ ସାର୍ଥକ ଜୀବନ ଜୀଇଁଥିବା ମଣିଷଟିଏ । 'ସେବା କାର୍ପଣ୍ୟ ତପ ଫଳେ । କିବା ଅସାଧ ମହୀତଳେ ।' ଭାଗବତୀୟ ବାଣୀର ସେ ଯେ ଜଣେ ଜୀବନ୍ତ ଉଦାହରଣ ଏମିତି ମନେ ହୁଏ ତାଙ୍କୁ ଓ ତାଙ୍କ କୃତି କୃତିତ୍ୱକୁ ଦେଖିଲେ । ସବୁ ମଣିଷ ସବୁ କାମ କରି ପାରନ୍ତି ନାହିଁ, କିଛି ମଣିଷ ବହୁ କାମ କରିବା ପାଇଁ ଯେମିତି ବିଧି ପ୍ରେରିତ ହୋଇଥାନ୍ତି, ଯେମିତି ବସନ୍ତ ବାବୁ । ତାଙ୍କ



Digitized by srujanika@gmail.com

ଅମାୟିକ ସ୍ମିତ ହସ, ତାଙ୍କ ଶାଳୀନ, ସଂଯତ କଥାବାର୍ତ୍ତା, ପରିଚ୍ଛନ୍ନ ବ୍ୟବହାର, ମଣିଷ ପଣିଆ ମୋତେ ବିଶେଷ ଭଲ ଲାଗିଛି ମୁଁ ଯେତେବେଳେ ତାଙ୍କ ସଂପର୍କରେ ଆସିଛି । ମୋର ସବୁବେଳେ ମନେ ହୋଇଛି ଏହି ମଣିଷଟି ମୋର ସତୀର୍ଥ, ସୁହୃଦ, ଗୁଣବତ୍ତା, ନିଷ୍କପଟ ଖୋଲାମନ, ଉଦାର ପ୍ରଶସ୍ତ ହୃଦୟକୁ ନେଇ ଯେମିତି ପ୍ରେରିତ ମଣିଷଟିଏ ସେ, ସୃଷ୍ଟି ସୃଜନର କଳାତ୍ମକ ପକ୍ଷ ସେ ସରସ୍ଵତୀ ପୁତ୍ର ।

ତାଙ୍କ ସାରସ୍ଵତ ସାଧନାକୁ ଦେଖିଲେ ସେ ଯେ ନିଜ କଳ୍ପଲୋକରେ କେତେ ନିମଜ୍ଜମାନ ତାହା ତାଙ୍କ ସତୀର୍ଥମାନେ ଜାଣନ୍ତି । ତାଙ୍କ ପ୍ରକାଶିତ ଶିଶୁ ସାହିତ୍ୟ ସଂପର୍କିତ ପ୍ରବନ୍ଧ ଓ ଆଲୋଚନା ତାଙ୍କ ସାଧନାରେ ସିଦ୍ଧି ଆଣି ଦେଇଛି । ଓଡ଼ିଆ ଭାଷା ସାହିତ୍ୟରେ ଶିଶୁମାନଙ୍କୁ ନେଇ ଏତେ ସଂଖ୍ୟକ ପ୍ରବନ୍ଧ ପ୍ରାୟତଃ କ୍ୱଚିତ ଦେଖାଯାଏ । ଏହା ଯେ ବହୁ ଗବେଷଣା ଫଳଶ୍ରୁତି ଏଥିରେ ଦ୍ୱିମତ ହେବାର ନାହିଁ । ପ୍ରବନ୍ଧ ରଚନା କ୍ଷେତ୍ରରେ ତାଙ୍କ ଦୃଷ୍ଟିକୋଣ, ବହୁ ପଠନ, ପ୍ରସ୍ତୁତି ଓ ଉପସ୍ଥାପନା ତଥା ସର୍ବୋପରି ପ୍ରବନ୍ଧଗୁଡ଼ିକରେ ଗୁଣବତ୍ତା, ପାଠକୀୟ ଆବେଦନ ତାଙ୍କୁ ଜଣେ ବିଶିଷ୍ଟ ପ୍ରାବନ୍ଧିକର ସ୍ୱୀକୃତି ପ୍ରଦାନ କରିଛି । ପଞ୍ଚଷଠି ଗୋଟି ଶିଶୁ ସାହିତ୍ୟ ସମ୍ବନ୍ଧୀୟ ପ୍ରବନ୍ଧର ସ୍ରଷ୍ଟା ଭାବେ ସେ ସାହିତ୍ୟ କ୍ଷେତ୍ରରେ ଏକ ସମ୍ମାନୀୟ ଉଚ୍ଚାରଣ ।

କୋରାପୁଟ ସଂପର୍କିତ ବସନ୍ତ ବାବୁଙ୍କ ଆଦିବାସୀ ଜନଜୀବନ, ସେମାନଙ୍କ ସଂସ୍କାର, ସଂସ୍କୃତିକୁ ନେଇ ରଚିତ ବହୁ ପ୍ରବନ୍ଧ ଆଦିବାସୀ ଜନଜୀବନକୁ ନେଇ ଗବେଷଣା କରୁଥିବା ଗବେଷକମାନଙ୍କ ପାଇଁ ଏକ ପ୍ରେରଣାର ଉତ୍ସ ହୋଇ ରହି ଆସିଛି । ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କ ଭାଷା ସାହିତ୍ୟ ଓ ସଂସ୍କୃତି ସଂପର୍କିତ ପ୍ରବନ୍ଧ ଓ ଆଲୋଚନା, ଓଡ଼ିଶାର ପ୍ରଥିତଯଶା ବ୍ୟକ୍ତିତ୍ୱମାନଙ୍କୁ ନେଇ ତାଙ୍କ ରଚନାଚୟ ଓ ଜଗନ୍ନାଥ ସଂମ୍ପର୍କିତ ପ୍ରବନ୍ଧ ସମୂହ ତାଙ୍କ ବହୁ ଆୟାସ ଲବ୍ଧ ସୃଷ୍ଟି ସର୍ଜନା । ସମୟର ସମୁଚିତ ବ୍ୟବହାର, ଯୋଜନାବଦ୍ଧ ପ୍ରେରଣା, ପ୍ରଚଣ୍ଡ ଇଚ୍ଛାଶକ୍ତି ଓ ଜ୍ଞାନଦୀପ୍ତ ହୃଦୟର ଅଫୁରନ୍ତ ଉଚ୍ଚାରଣ ଏକ ଦୃଢ଼ ମାନସିକତା ତାଙ୍କ ଅନନ୍ୟତାର କାରଣ ବୋଲି ମନେହୁଏ । ୧୯୯୨ରୁ ୨୦୧୨ ମଧ୍ୟରେ ତାଙ୍କର ବହୁ ପୁସ୍ତକ ପ୍ରକାଶିତ ଓ ଆଦୃତ ।

ସେ ଯେ ଜଣେ ସୁସଂପାଦକ ତାହା ତାଙ୍କ ସଂପାଦିତ "କୋରାପୁଟ ପରିକ୍ରମା" ପ୍ରବନ୍ଧ ସଂକଳନ କୋରାପୁଟ ପରିକ୍ରମା କବିତା ସଂକଳନ, ଓଡ଼ିଶାର ଲୋକନାଟ୍ୟ, ସାଂପ୍ରତିକ ଶିଶୁ ସାହିତ୍ୟ, ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ, ସାରସ୍ଵତ ସାଧକ ଡଃ.ଜଗନ୍ନାଥ ମହାନ୍ତି, ନନ୍ଦ କିଶୋର ରଚନାବଳୀ ଆଦି ସଂପାଦିତ ଗ୍ରନ୍ଥ ଓଡ଼ିଆ ଭାଷା ସାହିତ୍ୟରେ ଏକ ଏକ ଅମୂଲ୍ୟ ଗ୍ରନ୍ଥ । ଜଣେ ସୁସଂପାଦକ ହେବାର ସମସ୍ତ ଲକ୍ଷଣର ସେ ଧାରକ ଅଟନ୍ତି ।

ପ୍ରଥମତଃ ପାରିବାରିକ ଦାୟ ବଦ୍ଧତା, ଦ୍ୱିତୀୟତଃ ସାମାଜିକ ଆନୁଷ୍ଠାନିକ



Digitized by srujanika@gmail.com

ଦାୟିତ୍ୱ, ତୃତୀୟତଃ ଜୀବନ ଜୀବିକାର ଉଚ୍ଚ ମହାବିଦ୍ୟାଳୟରେ ଅଧ୍ୟାପନା ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଦାୟିତ୍ୱ ଓ କର୍ତ୍ତବ୍ୟକୁ ନେଇ ସଦା ବ୍ୟସ୍ତ ଏହି ମଣିଷଟି କେମିତି ଯେ ଏତେ ସମୟ ଲେଖା ପାଇଁ ଦେଇ ପାରନ୍ତି, ତାହା ଭାବିଲେ ଏହା ଦୈବୀ ପ୍ରଦତ୍ତ ବରଦାନ ବୋଲି ମନେହୁଏ । ଏହା ଯେ ତାଙ୍କ ନିରନ୍ତର ଉଦ୍ୟମର ଏକ ତପସ୍ୟା, ଏକନିଷ୍ଠ ସାଧନା, 'ଚାଲିବି ଚାଲିବି ନ ପଡିବି ଥକି' ସଂକଳ୍ପିତ ମନନଶୀଳତା ଏମିତି ମନେ ହୁଏ ।

ନା ବ୍ୟସ୍ତତା, ନା ବିବ୍ରତ ଭାବ, ଧୀର ପାଣି ପରି ଅବାରିତ ସ୍ରୋତ ଯେମିତି ତାଙ୍କ ଧୈର୍ଯ୍ୟଶୀଳତା, ଶାଳୀନତା, ସହଭାଗିତା ଓ ସହଯୋଗିତାକୁ ମୁଁ ଯେତିକି ପାଖରୁ ଦେଖିଛି, ତାଙ୍କ ଅତିଥି ପରାୟଣକୁ ସେତିକି ଚାଖିଛି, ସେତିକି ମୁଗ୍ଧ ହୋଇଛି ତାଙ୍କ ଅନ୍ତରଙ୍ଗ ଆପଣେଇ ନେବାର ଉଦାରତାକୁ, ଦେଖିଛି ତାଙ୍କ ସାଂସ୍କୃତିକ ଜୀବନାୟନକୁ । ସେ ଯେ ମାନବୀୟ ଗରିମାର ଏକ ଉଜ୍ଜ୍ୱଳ ପ୍ରତିଭୂ ଏହା ହିଁ ମନେ ହୋଇଛି ।

ଶୁଣିଲି ସେ ଏବେ ତାଙ୍କ କର୍ମମୟ ଅଧ୍ୟାପନା କ୍ଷେତ୍ରରୁ ଅବସର ନେବେ, ଏଣୁ ତାଙ୍କ ପାଇଁ ଏକ ଅଭିନନ୍ଦନ ଗ୍ରନ୍ଥର ପ୍ରସ୍ତୁତି ଆଉ ସେହି ଗ୍ରନ୍ଥରେ କେତେ ସ୍ମୃତି, କେତେ ସଂପର୍କ କେତେ ମାନବୀୟ ସଂବେଦନାର ଶବ୍ଦ ଚିତ୍ର ସ୍ଥାନିତ ହେବ ମୋର ସୌଭାଗ୍ୟ ଯେ ମୋ ଭଳି ଜଣେ ଅକିଂଚନ, ଅତି ସାଧାରଣ, ଦୁର୍ବଳ ମଣିଷର ଅନୁଭବକୁ ନେଇ ଲେଖାଟିଏ ସେହି ଗ୍ରନ୍ଥ ପାଇଁ ଆମନ୍ତ୍ରିତ, ଆମନ୍ତ୍ରଣ କର୍ତ୍ତାଙ୍କ ସାଗ୍ରହ ଅନୁରୋଧକୁ ଏଡାଇ ନପାରି ଲେଖାଟିଏ ଲେଖିଲି । ଏଥିରେ ଡଃ. ବସନ୍ତ କିଶୋର ସାହୁଙ୍କ ସମ୍ବନ୍ଧରେ ଯାହା ବି ଲେଖିଛି ତାହା ମୋର ନିଜସ୍ୱ ଅନୁଭବକୁ ନେଇ ।

ଶେଷରେ ଏତିକି କାମନା କରିବି ଅବସର ନେବାପରେ ସେ ଆହୁରି କର୍ମ ଚଞ୍ଚଳ, ଆହୁରି ନିବିଡ ଭାବରେ ସାରସ୍ୱତ ସାଧନାରେ ରତ, ଆହୁରି ତପନିଷ୍ଠ ହୁଅନ୍ତୁ । ଆହୁରି ଆହୁରି ମଧୁକ୍ଷରା ହୁଅନ୍ତୁ ସେ, ଆକାଶ ଆଉ ହାତ ପାଆନ୍ତାରେ ଶତେକ ଶରତର ମହୋଲ୍ଲାସରେ ସେ ମଧୁ ମୁଦିରିତ ହୋଇ ମନ୍ଦ୍ରିତ ହେଉଥାନ୍ତୁ-ଲକ୍ଷ୍ୟ ସବୁବେଳେ ଦୂରରେ ଥାଉ, ସେ ଅଧିକ ପଦଯାତ୍ରୀ ହୋଇ ବାଟ ଚାଲୁଥାନ୍ତୁ ସାରା ଜୀବନ ।



ମୁକ୍ତା ନିଳୟ, ରାଜୁସାହି
ଜୟପୁର, କୋରାପୁଟ



Digitized by srujanika@gmail.com

# ଡକ୍ଟର ସାହୁ ଏକ ପ୍ରେରଣାପ୍ରଦ ବ୍ୟକ୍ତିତ୍ୱ

**ବାଳକୃଷ୍ଣ ଦାଶ**

ମୋର ସମ୍ପର୍କ ବସନ୍ତ କିଶୋର ସାହୁଙ୍କ ସହ କେବଳ ଦୂରଭାଷ ବା ଫୋନ୍ ମାଧ୍ୟମରେ । ତାଙ୍କ ସହ ସାକ୍ଷାତ ଏ ପର୍ଯ୍ୟନ୍ତ ହେବାର ସୁଯୋଗ ଜୁଟିନାହିଁ । ସୁନାବେଢ଼ାସ୍ଥ 'ଶ୍ରୀଜଗନ୍ନାଥ ସେବାସଂସ୍ଥା' ସହ ମୋର ଯୋଗାଯୋଗ ଦିବଙ୍ଗତ ନଳିନୀରଞ୍ଜନ ମିଶ୍ରଙ୍କ ଆନୁକୂଲ୍ୟରେ । ସ୍ୱର୍ଗତ ମିଶ୍ର ୨୦୦୭ ମସିହା ଠାରୁ ଅସୁସ୍ଥ ଅବସ୍ଥାରେ ମଧ୍ୟ ନିଜେ ପୁରୀ ମୋ ବାସଭବନକୁ ଦୁଇ ତିନିଥର ଆସିଛନ୍ତି । ତାଙ୍କର ସୁମଧୁର ବ୍ୟବହାର ଓ ଆନ୍ତରିକତାରେ ମୋତେ ଓ ମୋ ଅନୁଜାକଳ୍ପ ମନ୍ଦାକିନୀ ପଟ୍ଟନାୟକ (ଟିଟି)କୁ ଯେପରି ମନ୍ତ୍ରମୁଗ୍ଧ କରିଦେଇଥିଲେ । ସେବେଠାରୁ ଆମେ ଦୁଇଜଣ ସୁନାବେଢ଼ାସ୍ଥ ଶ୍ରୀଜଗନ୍ନାଥ ସେବା ସଂସ୍ଥା ସହ ଜଡ଼ିତ ରହି ସଂସ୍ଥାର ମୁଖପତ୍ର 'ସ୍ୱର୍ଣ୍ଣକ୍ଷେତ୍ର'ର ରଥଯାତ୍ରା ସଂଖ୍ୟାରେ ଭିନ୍ନ ଭିନ୍ନ ପ୍ରବନ୍ଧ ଯୋଗାଇ ପାଠକମଣ୍ଡଳୀଙ୍କୁ ଆପ୍ୟାୟିତ କରିଆସିଛୁ ।

ସ୍ୱର୍ଗତ ନଳିନୀ ରଞ୍ଜନ ମିଶ୍ରଙ୍କ ସହିତ ଶ୍ରୀମାନ ସାହୁଙ୍କ ସହ ଚିଠିର ଆଦାନ ପ୍ରଦାନ ଓ ଦୂରଭାଷରେ କଥାବାର୍ତ୍ତା ହୋଇ ଭାବାବେଗ ସୃଷ୍ଟି ହେଲା । ପରିଣତ ବୟସରେ କନିଷ୍ଠମାନଙ୍କର ଆଶ୍ୱାସନା ଓ ପ୍ରବୋଧନା ମନର ବେଦନାକୁ କିଛି ମାତ୍ରାରେ ଲାଘବ କରିଥାଏ । ପ୍ରତ୍ୟେକ ପର୍ବପର୍ବାଣି, ଯାନିଯାତ୍ରା ଓ ମହୋତ୍ସବମାନଙ୍କରେ ତାଙ୍କ ପ୍ରେରିତ ଶୁଭେଚ୍ଛାବାର୍ତ୍ତା ମନରେ ଯୁଗପତ୍ ଆନନ୍ଦ ଓ ଆଗକୁ ଆଗେଇବା ପାଇଁ ପ୍ରେରଣା ଯୋଗାଇଥାଏ । ଫୋନ୍ ମାଧ୍ୟମରେ ତାଙ୍କର ମିଠା କଥା ସ୍ୱରରୁ ସେ ଜଣେ ଅତି ଉତ୍ତମ ଲୋକ ବୋଲି ମୁଁ ଭାବି ନେଇଛି । କିଛିଦିନ ପରେ ଜାଣିବାକୁ ପାଇଲି ଏଇ ବାବୁ ଆଉ କେହି ନୁହଁନ୍ତି, ସେହି ବସନ୍ତ କିଶୋର ସାହୁ ଯିଏକି ପ୍ରଖ୍ୟାତ ଶିଶୁ ସାହିତ୍ୟିକ । ଯିଏକି ବହୁ ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କରୁ ପ୍ରେରଣାପ୍ରଦ ପୁରସ୍କାର ସହ ବହୁ ସମ୍ମାନର ଅଧିକାରୀ । ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ଚତୁର୍ଦ୍ଦଶ ପୁସ୍ତକମେଳା, ଭୁବନେଶ୍ୱର, ମାତୃଭୂମି, କଟକ ଏପରିକି ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ, ପୁରୀ ଏବଂ ସୁଲେଖା, ପୁରୀ ଆଦି ଅନୁଷ୍ଠାନ ଶ୍ରୀମାନ୍ ସାହୁଙ୍କୁ ଶ୍ରେଷ୍ଠ ସାହିତ୍ୟିକ, ଗବେଷକ ଓ ପ୍ରାବନ୍ଧିକ ଭାବରେ ପୁରସ୍କୃତ ଓ ସମ୍ବର୍ଦ୍ଧିତ କରିଛନ୍ତି ।

ଶ୍ରୀମାନ ସାହୁ ଜଣେ ପ୍ରତିଷ୍ଠିତ ଲେଖକ, ଶିଶୁ ସାହିତ୍ୟିକ ଓ ଗବେଷକ



Digitized by srujanika@gmail.com

ହିସାବରେ ବହୁ ଅନୁଷ୍ଠାନ ଓ ପ୍ରକାଶନ ସଂସ୍ଥା ତାଙ୍କର ସଂଖ୍ୟାଧିକ ପୁସ୍ତକ ପ୍ରକାଶ କରି ଲୋକଲୋଚନକୁ ଆଣିଛନ୍ତି । ସୁନାବେଡ଼ାସ୍ଥ ଶ୍ରୀଜଗନ୍ନାଥ ସେବାସଂସ୍ଥା ତରଫରୁ ପ୍ରକାଶିତ "ସ୍ୱର୍ଣ୍ଣକ୍ଷେତ୍ର" ର ବିଶେଷାଙ୍କମାନଙ୍କରେ ତାଙ୍କର ସମ୍ପାଦକୀୟ ପ୍ରତିବର୍ଷ ନୂତନ ନୂତନ ଭାବଧାରାରେ ଉଦ୍‌ଭାସିତ । ତାଙ୍କର ଚିନ୍ତାଧାରାକୁ ସମ୍ମାନ କରି ପ୍ରତିବର୍ଷ ରଥଯାତ୍ରା ବିଶେଷାଙ୍କ ପ୍ରକାଶ ପୂର୍ବରୁ କେଉଁ ବିଷୟ ଆଧାରରେ ଓ କେଉଁ ବିଷୟବସ୍ତୁ ଉପରେ ପର୍ଯ୍ୟବେଶିତ କରି ପ୍ରବନ୍ଧ ଲେଖିବାକୁ ହେବ ତା'ର ଏକ ମାର୍ଗଦର୍ଶନ (ଗାଇଡ୍‌ଲାଇନ୍) ପଠାଇ ଲେଖିବାର ପ୍ରେରଣା ପାଇଁ ଖୋରାକ ଯୋଗାଇଥାନ୍ତି । ତାଙ୍କ ରଚିତ ବହୁ କବିତାବଳୀ ଓ ପୁସ୍ତକମାନଙ୍କ ମଧ୍ୟରୁ ଶିଶୁମାନଙ୍କ ପାଇଁ ରଚିତ "କାଳିଆ ବଳଦ ଗଳାରେ ଗଲା" ପୁସ୍ତକଟିକୁ ପଢ଼ିବାର ସୁଯୋଗ ପାଇଛି । ସେଥିରେ କୁନିକୁନି ପିଲାମାନଙ୍କ ପାଇଁ ପ୍ରେରଣାପ୍ରଦ କବିତାଗୁଡ଼ିକ ସୁଖପାଠ୍ୟ, ଭାବବ୍ୟଞ୍ଜକ ଓ ଛନ୍ଦମୟ ହୋଇ ଉଠିଛି । ବୋଧହୁଏ ବସନ୍ତ ନାମର ସୁଗନ୍ଧରେ ଏହି କବିତା ଗ୍ରନ୍ଥ ସୁଗନ୍ଧିତ । ଗୋଟିଏ କବିତା 'ଚୁନୁମୁନୁ ଖଇରକାଠି' କବିତାଟିରେ ସେ ବୁଝାଇଛନ୍ତି-

"ଜାତି ଫାତି ସବୁ ମଣିଷ ଗଢ଼ା
ମାଡ଼ି ଚାଲ ସଦା ବାଟ ଅମଡା ।
ଅମଡ଼ା ବାଟରେ ମିଳଇ ସିଦ୍ଧି
ପଢ଼ିଲେ ଜାଣିଲେ ବଢ଼ଇ ବୁଦ୍ଧି ।
X X X
ଛାନିଆ ମଣିଷ କରେନି କିଛି
ଘର କୋଣେ ଖାଲି ରହଇ ଲୁଚି ॥"

ସେହିପରି 'ନହନହକା ପତର ବଙ୍କା' କବିତାରେ ଲେଖିଛନ୍ତି-

'ମହମହକା ବାସଇ ଫୁଲ
ଜଗତେ କେହି ନୁହେଁ ତା ତୁଲ ।
ଆଜିର ଶିଶୁ କାଲିକି ବଡ଼
ବଡ଼ ହୋଇକି ଦେଶକୁ ଗଢ଼ ।'

'କାଳିଆ ବଳଦ ଗଳାରେ ଗଲା' କବିତାରେ କବି ସୂଚାଇ ଦେଇଛନ୍ତି ଯେ ଧନୀ ହୁଅନ୍ତୁ କି ନିର୍ଦ୍ଧନ ହୁଅନ୍ତୁ ବାପାମାଆଙ୍କ ପାଇଁ ପୁଅ ବା ସନ୍ତାନ ଠାରୁ ବଳି ଆଉ ଅମୂଲ୍ୟ ପଦାର୍ଥ କିଛି ନାହିଁ -

'ମାଆ କହୁଛନ୍ତି ପୁଅକୁ ଆଣ
ତେବେ ଯାଇ ଅନ୍ନ ଛୁଇଁବି ଜାଣ ।



Digitized by srujanika@gmail.com

ଲୋଡା ନାହିଁ ଧନ ମାଣିକ ହୀରା
ପୁଅ ଅଟେ ମୋର ଆଖିର ତୋଳା ।'

ସତରେ ଆଖିର ଡୋଳା ଯେପରି ମଣିଷ ପାଇଁ ସବୁଠାରୁ ମୂଲ୍ୟବାନ୍, ସେହିପରି ବାପ-ମାଆଙ୍କ ନିମନ୍ତେ ପୁତ୍ର ବା କନ୍ୟା ସନ୍ତାନ ସବୁଠାରୁ ମୂଲ୍ୟବାନ । ସେହିପରି ଅନ୍ୟ ଏକ କବିତା 'ଦୂର ପରବତ ଢେ଼ଉ ଢେ଼ଉକା'ରେ କବି କାମର ମହତ୍ତ୍ୱ କେତେ ବଡ଼ ତାହା ସୂଚାଇ ଦେଇ ଲେଖିଛନ୍ତି-

'ନାମ ଠାରୁ କାମ ଅଟଇ ବଡ଼
ମନେ ରଖି ସଦା ନିଜକୁ ଗଢ଼ ।
ତେବେ ଯାଇ ତୁମେ ହୋଇବ ଭଲ
ଜଗତ ବୁଝିବ ତୁମର ମୂଲ ।'

ଅନ୍ୟ ଏକ କବିତା 'ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର' କବିତାରେ କବି ନିର୍ଭୟ ହୋଇ ଯେ କୌଣସି କାମ କଲେ ସେଥିରେ ସିଦ୍ଧି ମିଳିଥାଏ ବୋଲି ଦର୍ଶାଇ ଲେଖିଛନ୍ତି-

'ଉଡ଼ିଗଲା ଗେଣ୍ଡାଳିଆ ଝାଡ଼ି ଦେଲା ପର
ନିରିଭୟେ କାମ କର, ମନୁ ପୋଛି ଡର ।
ଡରକୁଳା ମଣିଷଟି କରେ ନାହିଁ କିଛି
ଡର ସଦା ରହିଥାଏ ତା'ର ମନେ ଲୁଚି ।'

ଏପରି ଲେଖକଙ୍କ କଲମରୁ ବହୁ କବିତା ଶିଶୁମାନଙ୍କ ଉଦ୍ଦେଶ୍ୟରେ ଲେଖା ଯାଇଥିଲେ ମଧ୍ୟ ଜଣଜଣଙ୍କ କଲମରୁ ଝରିପଡିଥିବା କବିତାବଳୀ ଯେପରି ପିଲାମାନଙ୍କ ମନକୁ ଛୁଇଁ ପାରିଛି, ସେହିପରି ସୁଖପାଠ୍ୟ ଓ ଭାବବ୍ୟଞ୍ଜକ ମଧ୍ୟ ହୋଇଛି । ଏହି ଗୋଷ୍ଠୀର ହାତଗଣତି କବିମାନଙ୍କ ମଧ୍ୟରେ ଶ୍ରୀମାନ ସାହୁ ଅନ୍ୟତମ ।

ତାଙ୍କ ପ୍ରଚେଷ୍ଟା ଓ ଦୂରଦୃଷ୍ଟିରୁ ଏ ବର୍ଷ "ସ୍ୱର୍ଣ୍ଣକ୍ଷେତ୍ର" ପୁସ୍ତକାରରେ ଛପାଯାଇ ପାରିଛି । ଯାହାକି ଭବିଷ୍ୟତ ଗବେଷକମାନଙ୍କ ପାଇଁ ସାଇତା ସମ୍ପତ୍ତି ହୋଇ ରହିବ । ଶ୍ରୀମାନ ସାହୁଙ୍କ ସମ୍ବନ୍ଧେ ଲେଖୁ ଲେଖୁ ଭାବାବେଗରୁ ଅନ୍ୟକଥାକୁ ପଶିଯିବାକୁ ପଡିଲେ ମଧ୍ୟ ସେଥିରୁ କ୍ଷାନ୍ତ ହୋଇ କଲମ ଚଳାଇଛି । ଶେଷରେ ନିଳାଦ୍ରୀନାଥ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା ଶ୍ରୀମାନ ସାହୁଙ୍କ ଭବିଷ୍ୟତ କର୍ମକ୍ଷେତ୍ର ଅଧିକ ପ୍ରସାରିତ କରନ୍ତୁ ଓ ତାଙ୍କ ଚଲାବାଟ କୁସୁମିତ କରନ୍ତୁ ।



ଚୈତନ୍ୟ ବିହାରୀ, ପୁରୀ-୨



Digitized by srujanika@gmail.com

# ଶିଶୁ ସାହିତ୍ୟିକ ଡକ୍ଟର ବସନ୍ତ କିଶୋର ସାହୁ

## ନିତ୍ୟାନନ୍ଦ ପଣ୍ଡା

୧୯୭୨ ମସିହାରେ ମୁଁ ପାରାଦ୍ୱୀପ ବନ୍ଦରରେ ଅର୍ଥ ବିଭାଗରେ ଜଣେ ସାଧାରଣ କିରାଣୀ ଭାବରେ ନିଯୁକ୍ତି ପାଇବା ପରେ, ସେକ୍ଟର-୨୧ରେ ରହୁଥିଲି । ସେଠାରେ ଷଷ୍ଠ, ସପ୍ତମ, ଅଷ୍ଟମ ଓ ନବମ ଶ୍ରେଣୀର କେତେ ଜଣ ପିଲାଙ୍କୁ ନେଇ ଏକ ପାଠାଗାର ସ୍ଥାପନା କଲି । ସେହି ପାଠାଗାର ତରଫରୁ 'ମଣିମୁକ୍ତା' ନାମରେ ଏକ ଶିଶୁ ପତ୍ରିକା ପ୍ରକାଶ କଲୁ । ଏଥିରେ ସେତେବେଳର ଶିଶୁମାନେ ପତ୍ରିକାର କର୍ମକର୍ତ୍ତା ରହିଲେ । ଆଜି ସେମାନଙ୍କ ମଧ୍ୟରୁ ବହୁ ଉଚ୍ଚଶିକ୍ଷିତ ଓ ଉଚ୍ଚପଦସ୍ଥ ଅଧିକାରୀ ମଧ୍ୟ ହୋଇପାରିଛନ୍ତି । ମୋର ଏଠାରେ କହିବାର ଉଦ୍ଦେଶ୍ୟ ଘରର ମୂଳଦୁଆ ମଜବୁତ୍ ନ ହେଲେ ଯେପରି କାନ୍ଥ ଭୁଷୁଡି ପଡିବ, ପାଠ ପଢିବା ସଙ୍ଗେସଙ୍ଗେ ବିଭିନ୍ନ ପତ୍ରପତ୍ରିକା ପଢିଲେ ଶିଶୁର ଅଧିକ ଜ୍ଞାନ ଅର୍ଜନ ହୁଏ । ସେହି ମଣିମୁକ୍ତା ଶିଶୁ ପତ୍ରିକାରେ ବୀରେନ୍ଦ୍ର ମହାନ୍ତି, ନିରଞ୍ଜନ ବେହେରା, କୃତ୍ତିବାସ ନାୟକ, ଜଗନ୍ନାଥ ମହାନ୍ତି, ବସନ୍ତ କିଶୋର ସାହୁ ଆଦି ଲେଖକଙ୍କ ଲେଖା ପ୍ରକାଶ ପାଏ ।

ଏ କଥା ଅନୁଭବ ଓ ଉପଲବ୍ଧ କରି ଡ.ବସନ୍ତ କିଶୋର ସାହୁ ନିଜ ଗ୍ରାମ କୁସୁପୁରରୁ ପ୍ରକାଶ କଲେ 'ବଗଲାବଗୁଲୀ' ଶିଶୁ ପତ୍ରିକା ଶିଶୁଙ୍କ ପାଇଁ । ଏଥିରେ ଶିଶୁମାନେ ଯେ ଖାଲି ଉପକୃତ ହେଲେ ତା ନୁହେଁ, ତା ସହିତ ବହୁ କବି, ଲେଖକ ମଧ୍ୟ ସୃଷ୍ଟି ହେଲେ । ତାଙ୍କ ପରିଚିତ ଜଣେ ବ୍ୟକ୍ତି ସେହି କୁସୁପୁରର ସେ ମଧ୍ୟ ପାରାଦ୍ୱୀପ ବନ୍ଦରରେ କିରାଣୀ ଚାକିରି କରୁଥାନ୍ତି । ତାଙ୍କୁ ଧରି ବସନ୍ତ ବାବୁ ଆସିଥିଲେ ମୋ ପାଖକୁ । ସେଠାରେ ପ୍ରଥମ ସାକ୍ଷାତ କଥାବାର୍ତ୍ତା ପରେ ମୋତେ 'ବଗଲାବଗୁଲୀ' ପାଇଁ ଲେଖା ମାଗିଥିଲେ । ତାହା ଥିଲା ପ୍ରଥମବର୍ଷ ପ୍ରଥମ ଖଣ୍ଡ ପାଇଁ । କିନ୍ତୁ ତା ଆଗରୁ ତାଙ୍କ ମାଧ୍ୟମରେ ପତ୍ର, ଲେଖା ଦେଇଥିଲେ, ଚିଠି ଦ୍ୱାରା ମନ କଥା ଆଦାନ ପ୍ରଦାନ ହୋଇଥିଲା । ବଗଲାବଗୁଲୀ ପ୍ରଥମ ଖଣ୍ଡରେ ମୋ ଲେଖାଟିଏ ପ୍ରକାଶ ପାଇଥିଲା । ତାହା ଦେଖି ମୁଁ ବହୁତ ଖୁସି ହୋଇଥିଲି ଓ ପତ୍ରିକାର ବହୁ ପ୍ରଶଂସା କରିଥିଲି । ସେତେବେଳେ ବଗଲାବଗୁଲୀର ପ୍ରଥମ ଖଣ୍ଡଟି ଖୁବ୍ ସୁନ୍ଦର ହୋଇଥିଲା ଓ ସେ ସମୟରେ ପ୍ରକାଶ



Digitized by srujanika@gmail.com

ପାଉଥିବା ଶିଶୁ ପତ୍ରିକା ସାଙ୍ଗରେ ତାଳ ଦେଇଥିଲା । ଲେଖା ସହିତ କଭର ପେଜ୍‌ରେ ଦୁଇଟି ବଗଲାବଗୁଲୀ ଚିତ୍ର କରା ଯାଇଥିଲା । ଏ ପର୍ଯ୍ୟନ୍ତ ମୋର ମନେ ଅଛି, ଚିତ୍ରଟି ଆଖିରେ ନାଚୁଛି । ସେ ଚିତ୍ର (କଭର ପେଜ ପତ୍ରିକାଟିକୁ ମୁଁ ସାଇତି ରଖିଥିଲି । ଦୁଃଖର ବିଷୟ ୧୯୯୯ ବାତ୍ୟାରେ ହଠାତ୍ ଘାଇ ଭାଙ୍ଗି କ୍ୱାଟରରେ ପାଣି ପଶି ଅନେକ ପୁସ୍ତକ, ପତ୍ର ପତ୍ରିକା ସହିତ ଏ କଭର ପେଜଟି ନଷ୍ଟ ହୋଇଗଲା ।

ତା ପରେ ଭୁବନେଶ୍ୱର ପୁସ୍ତକ ମେଳାରେ ମୋ ସହିତ ତାଙ୍କର ଦେଖା ହୋଇଥିଲା । ପ୍ରାୟ ୧୫ ମିନିଟ୍ ବସି ବିଭିନ୍ନ କଥା ଆଲୋଚନା କରିଥିଲୁ । ସେଦିନ ମୁଁ ଯାଇଥାଏ ପୁସ୍ତକ ପ୍ରକାଶକ ଓ ଷ୍ଟଲ ମାଲିକମାନଙ୍କୁ ପାରାଦୀପ ପୁସ୍ତକ ମେଳାକୁ ଆସିବାକୁ ଅନୁରୋଧ ଜଣାଇବାକୁ । ସେଥିରେ ମଧ୍ୟ ସେ ମୋତେ ଅନେକ ସହଯୋଗ କରିଥିଲେ । ଏ କଥା ଭୁଲି ହେବନାହିଁ । ତାଙ୍କର ବ୍ୟବହାର ମୋତେ ଖୁବ୍ ଭଲଲାଗେ । ମୁଁ ପାରାଦ୍ୱୀପ ଜଗନ୍ନାଥ ସମାଜର ସାଧାରଣ ସଂପାଦକ ଦୀର୍ଘ ୭ବର୍ଷ ହେବ ଅଛି ସତ କିନ୍ତୁ ଦୀର୍ଘ ୨୨ବର୍ଷ ହେଲା ଉଦୟନ୍ତୁର ସଂପାଦକ ମଣ୍ଡଳୀରେ ରହି କାର୍ଯ୍ୟ କରୁଛି । ତାଙ୍କର କେତୋଟି ଲେଖା 'ଉଦୟନ୍ତୁ' ଜଗନ୍ନାଥ ସମାଜର ମୁଖପତ୍ରରେ ପ୍ରକାଶ ପାଇଛି । ସେଥି ମଧ୍ୟରୁ ଏବର୍ଷ ୨୦୧୨ ରଥଯାତ୍ରା ସଂଖ୍ୟାରେ ଉଦୟନ୍ତୁରେ 'ସାଂପ୍ରତିକ ଗୀତି କବିତାରେ ଶ୍ରୀ ଜଗନ୍ନାଥ' ଲେଖାଟି ପ୍ରକାଶ ପାଇଛି । ଯାହା ସେ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଆସନ୍ତା ସଂଖ୍ୟା ପାଇଁ ମଧ୍ୟ ମୋ ପାଖରେ ଲେଖାଟିଏ ରହିଛି ।

ସେ କୋରାପୁଟ ସୁନାବେଡାର ଜଗନ୍ନାଥ ମନ୍ଦିର ଦାୟିତ୍ୱରେ ରହି ମନ୍ଦିରର ମୁଖପତ୍ର ସ୍ୱର୍ଣ୍ଣକ୍ଷେତ୍ରରେ ସଂପାଦକ ରୂପେ ପତ୍ରିକାଟିକୁ ସୁନ୍ଦର ଭାବରେ ସମ୍ପାଦନା କରି ପ୍ରକାଶ କରୁଛନ୍ତି । ଏ ସାଧୁ କାର୍ଯ୍ୟ ପାଇଁ ତାଙ୍କୁ ଅଶେଷ ଧନ୍ୟବାଦ । କାରଣ ଗୋପବନ୍ଧୁଙ୍କ ଭାଷାରେ 'ଦୁଃଖୀ ସିନା ଜାଣେ ଦୁଃଖୀର ଅନ୍ତର, ଛଟ ପଟ ନୁହେଁ ଧନୀଙ୍କ ଅନ୍ତର' ଅର୍ଥାତ୍ ମୁଁ ଜଣେ ସଂପାଦକ ଉଦୟନ୍ତୁର । ପତ୍ରିକା ଖଣ୍ଡେ ପ୍ରକାଶ ଓ ସଂପାଦନା ପାଇଁ କେତେ କଷ୍ଟ କରିବାକୁ ହୁଏ ତାହା ମୁଁ ନିଜେ ଅଙ୍ଗେ ଲିଭାଇଛି । ତେଣୁ ତାଙ୍କୁ କେତେ କଷ୍ଟ କରିବାକୁ ପଡୁଥିବ ତାହା ମୁଁ ଅନୁମାନ କରିପାରୁଛି । ସେ ସ୍ୱର୍ଣ୍ଣକ୍ଷେତ୍ରରେ ମଧ୍ୟ ମୋର କେତୋଟି ଲେଖା ପ୍ରକାଶ କରିଛନ୍ତି ।

ଓଡିଆ ଶିଶୁ ସାହିତ୍ୟର ସେ ଜଣେ ଗବେଷକ, ସ୍ରଷ୍ଟା, ବିଭିନ୍ନ ପତ୍ରପତ୍ରିକାର ସଂପାଦକ, ତା ସହିତ ବିଭିନ୍ନ ସାହିତ୍ୟ ଅନୁଷ୍ଠାନର ମୁଖ୍ୟ କର୍ମକର୍ତ୍ତା ରହି ଓଡିଆ ସାହିତ୍ୟର ବିକାଶ ପାଇଁ ବହୁ କାର୍ଯ୍ୟ କରିଛନ୍ତି । ସେଥିପାଇଁ ସେ ପ୍ରଶଂସନୀୟ । ସେ ଭୁବନେଶ୍ୱର ପୁସ୍ତକମେଳା ଓ ମୀନାବଜାର ଶିଶୁ ସାହିତ୍ୟ ଆଦି ବିଭିନ୍ନ ଅନୁଷ୍ଠାନ ତରଫରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ତାଙ୍କର ପ୍ରଥମେ ଫୁଲ ଆମେ ଫୁଲ,



Digitized by srujanika@gmail.com

ଅଗଡ ବଗଡ ଝାଇଁକି ଝୁମ୍ପା ଓ କାଳିଆ ବଳଦ ଗଲାରେ ଗଲା ଆଦି ପ୍ରାୟ ୩୨ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ସେ ସବୁ ଓଡ଼ିଆ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ ।

ସେ ଶିଶୁ ସାହିତ୍ୟର ଗବେଷକ ଭାବେ ପରିଚିତ ହେବା ସହିତ ଓଡିଆ ଭାଷା ସାହିତ୍ୟ ବିଭାଗର ଅଧାପକ ମଧ । ସଂପ୍ରତିକ ଶିଶୁ କବିତା ସଂକଳନର ସଂପାଦନା କରିଛନ୍ତି ତାହା ୨୦୦୦ ମସିହାରେ ପ୍ରକାଶ ପାଇଛି । ତାଙ୍କର ବହୁ ପୁସ୍ତକ ମୁଁ ପାଠ କରିଛି । ସଂପ୍ରତିକ ଶିଶୁ କବିତା ସଂକଳନରେ ସଂପ୍ରତିକ ଶିଶୁ କବିତାର ଭାଷା ସଂପଦ ଲେଖାଟି ଖୁବ୍ ସୁନ୍ଦର ଢଙ୍ଗରେ ଆଲୋଚନା କରିଛନ୍ତି । ଅନ୍ୟାନ୍ୟ ପୁସ୍ତକ ଲେଖାରେ ମଧ ସୁନ୍ଦର ଆଲୋଚନା କରିଛନ୍ତି । ଏହି ଲେଖାରେ ଆଲୋଚନା କଲା ବେଳେ ବହୁ କଥା ଆଲୋଚନା କରି କହିଛନ୍ତି 'ଅନର୍ଥକ' ଶବ୍ଦଗୁଡ଼ିକ ଧ୍ୱନ୍ୟାତ୍ମକ ଶବ୍ଦର ନିକଟବର୍ତ୍ତୀ ହୋଇଥିବାରୁ ସେ ସବୁ ଶୁଣିବା ପାଇଁ ଶିଶୁ ଅଧିକ ଆଗ୍ରହ ପ୍ରକାଶ କରେ । ସଂପ୍ରତିକ ଶିଶୁ କବିତାରେ ଅନର୍ଥକ ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ । ନିଜ କବିତାରୁ ଗୋଟିଏ ଉଦାହରଣ ଦେଇ ଲେଖିଛନ୍ତି ।

"ପାଟି ଶୁଣି ମାଆ ଆସିବେ ଧାଇଁ
କହିବେ କଅଣ ହେଲା କହ୍ନାଇ
କହ୍ନାଇ ଉଠିକି ମାରିବ ତାଳି
ଆଇକମ୍ ବାଇକମ୍ ତାରା ତୂରୀ ।"

(ଆଇକମ୍ ବାଇକମ୍ ତାରାତୂରୀ, ଅଗଡ଼ ବଗଡ଼ ଝାଇଁକି ଝୁମ୍ପା)

ତାଙ୍କ ସହିତ ଫୋନ୍‌ରେ ବହୁବାର ଉଦୟନ୍ତୁ ଓ ସର୍ଣ୍ଣକ୍ଷେତ୍ର ସମ୍ବନ୍ଧରେ ଆଲୋଚନା କରିଛି । ସେଥିରୁ ତାଙ୍କ କଥା, ବ୍ୟବହାର ମୋତେ ଖୁବ୍ ଭଲ ଲାଗେ । ଶେଷରେ ଶ୍ରୀଜଗନ୍ନାଥଙ୍କ ପାଖରେ ନିବେଦନ କରେ ସେ ଆହୁରି କୃପା କରନ୍ତୁ ଓ ଭବିଷ୍ୟତରେ ଅଧିକରୁ ଅଧିକ ଉନ୍ନତି କରନ୍ତୁ ।



ସାଧାରଣ ସଂପାଦକ
ଜଗନ୍ନାଥ ସମାଜ
ମଧୁବନ, ପାରାଦ୍ୱୀପ



Digitized by srujanika@gmail.com

# ଅନନ୍ୟ ଶିଶୁ-ସାହିତ୍ୟ ଗବେଷକ
# ଡକ୍ଟର ବସନ୍ତ କିଶୋର ସାହୁ

**ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ**

ଡକ୍ଟର ବସନ୍ତ କିଶୋର ସାହୁ ଓଡ଼ିଆ ଶିଶୁ-ସାହିତ୍ୟର ଜଣେ ସଫଳ ଗବେଷକ । ଓଡିଆ ମୌଖିକ ଶିଶୁ-ସାହିତ୍ୟ ହିଁ ତାଙ୍କର ଗବେଷଣାର ମୁଖ୍ୟ ବିଷୟ । ଏହା ଦୀର୍ଘ ୩୫୦ପୃଷ୍ଠାର ଏକ ସଫଳ ଶିଶୁ-ସାହିତ୍ୟ ନିବନ୍ଧ ଗ୍ରନ୍ଥ ଯାହାକି ୧୯୯୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ୱୀକୃତି ଲାଭ କରିଛି ଏବଂ ଏହି ନିବନ୍ଧ ଗ୍ରନ୍ଥଟି ୧୯୯୬ ମସିହାରେ ପ୍ରକାଶିତ ହୋଇ ଉତ୍କଳ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛି । ଏହି ନିବନ୍ଧଟି ପ୍ରକାଶିତ ଶିଶୁ ସାହିତ୍ୟ ନିବନ୍ଧ ଭାବେ ତୃତୀୟ ନିବନ୍ଧ ଗ୍ରନ୍ଥର ମାନ୍ୟତା ପାଇଛି । ଏହାର ସଫଳ ମାର୍ଗଦର୍ଶକ ଥିଲେ ଡଃ. ମନୀନ୍ଦ୍ର ମହାନ୍ତି ।

ଗବେଷଣା ବ୍ୟତୀତ ଡଃ.ସାହୁଙ୍କ ଲେଖନୀରୁ ଝରିପଡିଛି ଗୋଟିଏ ପରେ ଗୋଟିଏ ଶିଶୁ-ସାହିତ୍ୟ, ବହୁ ପ୍ରବନ୍ଧ ଆଲୋଚନା ଓ ସମାଲୋଚନା ଗ୍ରନ୍ଥ । ଗବେଷଣା ଧର୍ମୀ ଗ୍ରନ୍ଥ ମଧ୍ୟରେ ଓଡିଆ ଶିଶୁ-ସାହିତ୍ୟ ଆଲୋଚନା, ଓଡିଆ ମୌଖିକ ଶିଶୁ-ସାହିତ୍ୟ, ଓଡିଆ ଲୋକନାଟ୍ୟ (ସଂପାଦିତ), କୋରାପୁଟ ପରିକ୍ରମା (ସଂପାଦିତ), Who's who in Oriya children's literature Vol. I, ଓ Who's who in Oriya children's literature Vol. II ଇତ୍ୟାଦି ପ୍ରଧାନ ।

ତାଙ୍କ ସାଂପ୍ରତିକ ଶିଶୁ-ସାହିତ୍ୟ ଓ ସାହିତ୍ୟିକ (ଆଲୋଚନା) ଗ୍ରନ୍ଥଟି ୨୦୦୦ ମସିହା ଅକ୍ଟୋବର ମାସରେ ପ୍ରକାଶ ପାଇଥିଲା । ସେହି ପୁସ୍ତକଟି ମୋର ମୁଖ୍ୟ ଆଲୋଚନାର ବିଷୟ ବସ୍ତୁ । ଏହି ପୁସ୍ତକଟିରେ ଡକ୍ଟର ସାହୁ ଓଡିଶାର ବିଶିଷ୍ଟ ବୟୋଜ୍ୟେଷ୍ଠ ବାରଜଣ ଶିଶୁ-ସାହିତ୍ୟିକଙ୍କର କୃତି ଓ କୀର୍ତ୍ତିର ସଫଳ ଆଲୋଚନା କରିଛନ୍ତି । ସେମାନେ ହେଲେ-ନନ୍ଦ କିଶୋର ସାମଲ(୧୯୨୫-୨୦୦୩), ସ୍ନେହଲତା ମହାନ୍ତି (୧୯୩୨),ଧନେଶ୍ୱର ସାମଲ(୧୯୩୨),ଡଃ. ଜଗନ୍ନାଥ ମହାନ୍ତି (୧୯୩୭-୨୦୧୨), କ୍ଷୀରୋଦ ପୋଥାଳ (୧୯୩୯-୨୦୧୨), ଭଗବାନ ପାଢୀ (୧୯୪୦), ରାଜ କିଶୋର ପାଢୀ(୧୯୪୨), ନନ୍ଦ କିଶୋର ସିଂହ (୧୯୪୨), ଅନନ୍ତ ଚରଣ ବେହେରା (୧୯୪୪), ପ୍ରଫୁଲ୍ଲ କୁମାର ଗିରି(୧୯୪୫-୨୦୦୪), ରଘୁନାଥ ରାଉତ(୧୯୫୦)ଓ ଦାଶ ବେନହୁର (୧୯୫୩) । ଏହି ବାର ଜଣ ଶ୍ରେଷ୍ଠ,



Digitized by srujanika@gmail.com

ବରିଷ୍ଠ ବୟୋଜ୍ୟେଷ୍ଠ ଶିଶୁ-ସାହିତ୍ୟିକଙ୍କର ସମୟାନୁକ୍ରମରେ ସେମାନଙ୍କର ଶିଶୁ-ସାହିତ୍ୟ ସୃଷ୍ଟିକୁ ଆଲୋଚନା କରାଯାଇଛି ।

ଏହି ଆଲୋଚନା ଗ୍ରନ୍ଥଟିକୁ ଅନୁଧାନ କଲେ ଜଣାଯାଏ ଯେ ଶିଶୁ କବି ସ୍ନେହଲତା ମହାନ୍ତିଙ୍କ ଶିଶୁ କବିତାର ମନସ୍ତତ୍ତ୍ୱ, କ୍ଷୀରୋଦ ପୋଥାଳ ଶିଶୁ କବିତାରେ ମନସ୍ତାତ୍ତ୍ୱିକ ଅଧ୍ୟୟନ, ରାଜକିଶୋର ପାଢୀଙ୍କ ଶିଶୁ କବିତାରେ ଶିଶୁ ମନସ୍ତତ୍ତ୍ୱ ଓ ନନ୍ଦ କିଶୋର ସିଂହଙ୍କର ଗପରେ ଏକ ମନସ୍ତାତ୍ତ୍ୱିକ ଅଧ୍ୟୟନ ଉପରେ ବିଶେଷ ଆଲୋଚନା କରିବା ସହିତ, ସାହିତ୍ୟିକ ମୂଲ୍ୟାୟନରେ ଧନେଶ୍ୱର ସାମଲଙ୍କ ଶିଶୁଗପ, ଅନନ୍ତ ଚରଣ ବେହେରା ଓ ଦାଶ ବେନହୁରଙ୍କ ଶିଶୁ ସାହିତ୍ୟକୁ ଆଲୋଚନାରେ ଗ୍ରହଣ କରିଥିବା ବେଳେ ଶିଶୁ ସାହିତ୍ୟର ସ୍ୱରୂପ ଆଲୋଚନାରେ ପ୍ରଫୁଲ୍ଲ ଗିରି ଓ ରଘୁନାଥ ରାଉତଙ୍କୁ ଆଲୋଚନାର ପରିସରଭୁକ୍ତ କରିଛନ୍ତି । ସଫଳ ସ୍ରଷ୍ଟା ଭାବରେ ନନ୍ଦ କିଶୋର ସାମଲଙ୍କୁ ଆଲୋଚନାର ପରିସରକୁ ଆଣିବାରେ ପ୍ରାବନ୍ଧିକ ଡଃ. ସାହୁ ଯେପରି ସଫଳ ହୋଇ ପାରିଛନ୍ତି, ଡଃ. ଜଗନ୍ନାଥ ମହାନ୍ତି ଓ ଭଗବାନ ପାଢୀ ଶିଶୁ-ସାହିତ୍ୟିକଙ୍କର ଅବଦାନରେ ସେ ଆତ୍ମ ବିଭୋର ହୋଇଛନ୍ତି ।

**ଶିଶୁ ମନସ୍ତତ୍ତ୍ୱ :**

ମନୋବୈଜ୍ଞାନିକମାନଙ୍କ ମତରେ ଦୁଇରୁ ତିନି ବର୍ଷ, ତିନିରୁ ଛଅ ବର୍ଷ, ଛଅରୁ ଦଶ ବର୍ଷ ଏବଂ ଦଶରୁ ଚଉଦ ବର୍ଷ ଏହି ପରି ବୟସର ବିଭାଗୀ କରଣରେ ଶିଶୁର ମାନସିକ ବିକାଶକୁ ଲକ୍ଷ୍ୟ କରାଯାଇଛି ଏବଂ ଏହି କ୍ରମରେ ସ୍ନେହଲତା ମହାନ୍ତି, ରାଜ କିଶୋର ପାଢୀ, ନନ୍ଦକିଶୋର ସିଂହଙ୍କର ଶିଶୁ ସାହିତ୍ୟକୁ ଏହି ପ୍ରବନ୍ଧ ମାଧ୍ୟମରେ ଡଃ. ସାହୁ ଆଲୋଚନା କରିଛନ୍ତି । ସ୍ନେହଲତା ମହାନ୍ତିଙ୍କ  ଶିଶୁ ସାହିତ୍ୟ ଆଲୋଚନା କରିବାକୁ ଯାଇ ସେ ସେଥିରେ ରହିଥିବା ମୌଖିକ ଶିଶୁଗୀତ ଶୈଳୀର ସ୍ୱରୂପ ଉଦ୍‌ଘାଟନ୍ କରିଛନ୍ତି ।

ଶିଶୁର ହସ, କାନ୍ଦ, ରାଗ, ରୁଷା, କଳ୍ପନା, ସ୍ୱପ୍ନ, ରୁଚି ଆଦିର ମନସ୍ତତ୍ତ୍ୱ ଉପରେ ସେ ଯେଉଁ ଆବିଷ୍କାର କରିଛନ୍ତି, ସେଗୁଡିକର ସଫଳ ଆଲୋଚନା କରିବାରେ ଡଃ. ସାହୁଙ୍କ ପ୍ରୟାସ ଯଥେଷ୍ଟ ପ୍ରସଂଶନୀୟ । କେବଳ ସେତିକି ନୁହେଁ, କବି ସ୍ନେହଲତାଙ୍କର ପିଲାଙ୍କ ପରିବେଶ, ପରିଚୟ ବୋଧ, ସର୍ବପ୍ରାଣ ବାଦ, ଆଦିକୁ ସୁନ୍ଦର ଭାବରେ ଆଲୋଚନାର ପରିସରକୁ ଆଣିବାରେ ସଫଳତା ଅର୍ଜନ କରିଛନ୍ତି ।

ମୌଖିକ ଶିଶୁ କବିତାର ଶୈଳୀକୁ ଡଃ. ସାହୁ କିପରି ଉନ୍ମୋଚନ କରିଛନ୍ତି ତାର ତୁଳନାତ୍ମକ ରୂପ କଳ୍ପନାକୁ ଏହି ଆଲୋଚନାରେ ପ୍ରଦାନ କରିଛନ୍ତି । ବିଭିନ୍ନ କବିଙ୍କ କବିତା ଉପରେ କିପରି ମୌଖିକ ଶିଶୁ ସାହିତ୍ୟର ପ୍ରଭାବ ପଡିଛି ତାହା କବି ଅତି ସୁନ୍ଦର ଭାବରେ ଆଲୋଚନା କରି ଦର୍ଶାଇ ଦେବାରେ ସଫଳ ହୋଇଛନ୍ତି । ଏଣୁ



Digitized by srujanika@gmail.com

ଲିଖିତ ଶିଶୁ ଗୀତ ପୂର୍ବରୁ ଯେଉଁ ମୌଖିକ ଶିଶୁ ଗୀତ ଥିଲା, ତାର ମନୋରଞ୍ଜନର ମୁଖ୍ୟ ମାଧ୍ୟମ ଥିଲେ ମା ଓ ଜେଜେ ମା । କବି ରାଜକିଶୋର ପାଢୀଙ୍କର ମୌଖିକ ଶିଶୁ ଗୀତକୁ ଆଧାର କରି ବହୁ ନାଁ' ଦିଆ ଗୀତ ଓ ନାନାବାୟା ଗୀତର ଶୈଳୀକୁ ଡଃ. ସାହୁ ଲୋକ ଲୋଚନକୁ ଆଣିଛନ୍ତି । ସେହିପରି ଦେଖିବାକୁ ଗଲେ ସାହିତ୍ୟିକ ମୂଲ୍ୟାୟନ ଶିଶୁ କବିତାର ସ୍ୱରୂପକୁ ମଧ୍ୟ ଡଃ. ସାହୁ ଯେଉଁ ଭିନ୍ନ ଦୃଷ୍ଟିଭଙ୍ଗୀରେ ଆଲୋଚନା କରିଛନ୍ତି ତାହା ତାଙ୍କର ଏକ ଦିଗନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ନନ୍ଦ କିଶୋର ସାମଲ ହୁଅନ୍ତୁ ବା ଡଃ. ଜଗନ୍ନାଥ ମହାନ୍ତି  ସେମାନଙ୍କର ଶିଶୁ ସାହିତ୍ୟର ମୂଲ୍ୟାଙ୍କନ କରିବା ସହଜ ନୁହେଁ । ଏଠାରେ ଡଃ. ବସନ୍ତ କିଶୋର ସାହୁଙ୍କର ସଫଳ ଉଦ୍ୟମରେ ଭରି ରହିଛି ଅନ୍ୱେଷାର ଏକ ଗଭୀର ତମ ଚିନ୍ତା ଓ ଚିନ୍ତନ । ଏହିପରି ଉପରୋକ୍ତ ସମସ୍ତ ବାର ଜଣ ଶିଶୁ ସାହିତ୍ୟିକଙ୍କର ବିଭିନ୍ନ ଦିଗକୁ ଡଃ ସାହୁ ସବିଶେଷ ଆଲୋଚନା କରି ଜଣେ ଶ୍ରେଷ୍ଠ ଆଲୋଚକର ଆସନ ଅଳଙ୍କୃତ କରିପାରିଛନ୍ତି ବୋଲି ମୋର ବିଶ୍ୱାସ ।

ମୋଟ ଉପରେ କହିବାକୁ ଗଲେ ପ୍ରବନ୍ଧ ଆଲୋଚନାର ଲେଖନୀ ଧରିଲେ ତାଙ୍କର ହୃଦୟ ଭିତରେ ଥିବା ଅନ୍ୱେଷାର ପରୀକ୍ଷାଗାରଟି ସ୍ୱତଃ ବିକଶିତ ହୋଇଯାଏ । ଏଣୁ ଏ ଦିଗରେ ତାଙ୍କର ସାମ୍ପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ (ପ୍ରଥମ ଭାଗ) ଗ୍ରନ୍ଥଟି ଏକ ସଫଳ ଆଲୋଚନା ଗ୍ରନ୍ଥ ବୋଲି ପ୍ରତିପାଦିତ ହୁଏ ।

**ସଂପର୍କର ସେତୁ :**

ଡଃ. ସାହୁଙ୍କ ସହିତ ମୋର ସଂପର୍କ ବହୁ ଦିନର । ଏହି ସଂପର୍କର ସେତୁ ମୁଖ୍ୟତଃ ଶିଶୁ ସାହିତ୍ୟକୁ ନେଇ । ଦ୍ୱାପରରେ ରାମଚନ୍ଦ୍ର ମହାପ୍ରଭୁ ଜାନକୀଙ୍କୁ ଉଦ୍ଧାର ନିମିତ୍ତ ସେତୁ ବନ୍ଧଟିଏ ନିର୍ମାଣ କରିଥିଲେ । ସେହିପରି ଓଡିଆ ଶିଶୁ ସାହିତ୍ୟର ସେତୁ ବନ୍ଧଟିର ଭିତ୍ତି ପ୍ରସ୍ତର ଡଃ ମନୀନ୍ଦ୍ର ମହାନ୍ତିଙ୍କ ଦ୍ୱାରା ହିଁ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ଏବଂ ସେହି ସେତୁବନ୍ଧଟିର ମାଧ୍ୟମଟି ଥିଲା ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ । ଏହା ୧୯୭୯ରୁ ଅବଧି ତିନି ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଧରି ସୂଚାରୁ ରୁପେ କାର୍ଯ୍ୟ କରି ଆସୁଛି । ଏହି ସେତୁ ବନ୍ଧଟିର ନିର୍ମାଣ ଓ ତାର ସ୍ଥାୟିତ୍ୱ ଦିଗରେ  ଡଃ. ଆଦିକନ୍ଦ ମହାନ୍ତ, ଡଃ. ବସନ୍ତ କିଶୋର ସାହୁ, ଡଃ. ବ୍ରଜ ଗୋପାଳ ମହାନ୍ତି, ଡଃ.ଦିଗରାଜ ବ୍ରହ୍ମା, ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ, ସୂର୍ଯ୍ୟମଣି ସାମନ୍ତରାୟ, ରମେଶ ଚନ୍ଦ୍ର ଦାସ, ରବୀନ୍ଦ୍ର ମାଝୀ,  ଶରତ କୁମାର ନାୟକ, ଡଃ. ଲକ୍ଷ୍ମୀକାନ୍ତ ଖୁଣ୍ଟିଆ ପ୍ରମୁଖ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଏବଂ ସେଥିରେ ମୋର ଭୂମିକା ଗୁଣ୍ଡୁଚି ମୂଷା ପରି ଅତି ନଗନ୍ୟ ।

ବନ୍ଧୁ ବସନ୍ତ ବାବୁ ୧୯୮୮ ମସିହାରେ ଷଷ୍ଠ କର୍ମଶାଳାରେ କୋରାପୁଟରେ ଯୋଗଦାନ କରିବା ସହିତ ନିଜେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଏବଂ ଅଷ୍ଟମ କର୍ମଶାଳା



Digitized by srujanika@gmail.com

୧୯୯୦ ମସିହାରେ ଆମେ ଦୁଇ ବନ୍ଧୁ ଭବାନୀପାଟଣାରେ ଯୋଗଦାନ କରିଥିଲୁ । ପୁନର୍ବାର ଏକାଦଶ କର୍ମଶାଳାର ରାହାମା(କଟକ)ରେ ୧୯୯୩ ମସିହାରେ ମିଳିତ ହୋଇଥିଲୁ । ସେତେବେଳକୁ ମୋର ବନ୍ଧୁ 'ବସନ୍ତ ବାବୁ' ବସନ୍ତ କିଶୋର ହୋଇ ରହି ନ ଥିଲେ । ସେ ଶିଶୁ-ସାହିତ୍ୟରେ ଏକ ଦକ୍ଷ ବିଶେଷଜ୍ଞ ଭାବେ ଡକ୍ଟରେଟ୍ ଉପାଧିରେ ଭୂଷିତ ହୋଇ ସାରିଥିଲେ । ତେଣୁ ମୁଁ ନିଜକୁ ନିଜେ ତାଙ୍କ ଠାରୁ ଦୂରତା ରକ୍ଷା କରିବାକୁ ଚାହୁଁଥିଲି । କିନ୍ତୁ ତାଙ୍କର ମୋ ପ୍ରତି ଅନାବିଳ ପ୍ରେମର ସଂପର୍କ ପୂର୍ବପରି ଅତୁଟ ଥିଲା । ବାଣୀବିହାରରେ ଅନୁଷ୍ଠିତ ହୋଇଥିବା ତ୍ରୟୋଦଶ ଶିଶୁ-ସାହିତ୍ୟ କର୍ମଶାଳାରେ ଡଃ ବସନ୍ତ କିଶୋର ସାହୁ ଯୋଗ ଦେଇଥିଲେ ହେଁ ମୁଁ ମୋର ଅସୁବିଧା ବଶତଃ ଯୋଗ ଦେଇପାରିନଥିଲି । ସରକାରୀ ଚାକିରିର ତାଡନାରେ ଉକ୍ତ କର୍ମଶାଳାରେ ଯୋଗ ଦେଇ ନପାରିଥିବାରୁ ମୁଁ ବହୁତ ଅନୁତପ୍ତ ।

ଓଡିଆ ଶିଶୁ-ସାହିତ୍ୟ କର୍ମଶାଳାର ସଞ୍ଚାଳକ ମହୋଦୟ ପୂର୍ବରୁ ଘୋଷଣା କରିଥିଲେ କି ତେର ଗୋଟି ଜିଲ୍ଲା ପାଇଁ ତେରଗୋଟି କର୍ମଶାଳା ହେବ ଓ ସେହି ତେର ନମ୍ବର କର୍ମଶାଳାଟି ପୂର୍ଣ୍ଣାହୁତି କର୍ମଶାଳା ହେବ । ୧୯୯୫ ପୂର୍ଣ୍ଣାହୁତି ଆସର ହେବା ପୂର୍ବରୁ ୧୯୯୫ ମସିହା ମଧ୍ୟରେ ସମୁଦାୟ ସାତ ଗୋଟି କର୍ମଶାଳାର ସ୍ମୃତି ଆସର ମାନ ଅନୁଷ୍ଠିତ ହୋଇଥିଲା ଏବଂ ସେହି ଆସର ଗୁଡିକ ଓଡିଶାରେ ବିଭିନ୍ନ ଜିଲ୍ଲାରେ ଅନୁଷ୍ଠିତ ହୋଇଥିଲା । ଯଥା- ମୟୁରଭଞ୍ଜ, ବାଲେଶ୍ୱର, କୋରାପୁଟ, ବରଗଡ (ସମ୍ବଲପୁର), ବ୍ରହ୍ମପୁର(ଗଞ୍ଜାମ) ଓ ଫିରିଙ୍ଗିଆ (ଫୁଲବାଣୀ) । ବାଲେଶ୍ୱର ଜିଲ୍ଲା ପାଇଁ ଡଃ ବ୍ରଜ ଗୋପାଳ ମହାନ୍ତି ଓ ମୁଁ ଦୁଇଜଣ ଆବାହକ ଥିଲୁ । ତାହା ତା ୧୮-୦୬-୯୫ରେ ବାଲେଶ୍ୱର ଶାନ୍ତି କାନନ ଠାରେ ଅନୁଷ୍ଠିତ ହୋଇଥିଲା । ପରବର୍ତ୍ତୀ ମାସରେ ତା-୧୬-୭-୧୯୯୫ ରିଖରେ ବନ୍ଧୁ ଡଃ. ବସନ୍ତ କିଶୋର ସାହୁ, ନିମାଇଁ ଭାଇ ଓ ଜଳଧର ସାଇଁଙ୍କ ଆବାହକତ୍ୱରେ ବନଭାରତୀ କୋରାପୁଟ ଠାରେ ଅନୁଷ୍ଠିତ ହୋଇଥିଲା । ତେଣୁ ଓଡିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦରେ ଆମ ଦୁଇ ବନ୍ଧୁଙ୍କର ସଂପର୍କର ସେତୁ ଯଥେଷ୍ଟ ଦୃଢ ଥିଲା ।

୧୯୯୫ ମସିହାରେ ଆମ ଦୁଇଜଣଙ୍କର ସଂପର୍କର ସେତୁକୁ ବନ୍ଧୁ ଡଃ ସାହୁ ଆହୁରି ଦୃଢ କରି ଦେଲେ "Who's who in Oriya Children's Literature" RIOCL ଓ ମୟୁର ପବ୍ଲିକେଶନ ମାଧ୍ୟମରେ । ଏହା ପରେ କଲିକତାର ଶାନ୍ତିନିକେତନ କଥା ତ ନିଆରା । ଡଃ. ବସନ୍ତ କିଶୋର ସାହୁ ଓ ଡଃ. ମନୀନ୍ଦ୍ର ମହାନ୍ତିଙ୍କ ସଂପାଦନାରେ ପ୍ରକାଶ ପାଇଲା 'ସାମ୍ପ୍ରତିକ ଶିଶୁ-କବିତା' । ସେଥିରେ ମୋର ପ୍ରବନ୍ଧକୁ ସ୍ଥାନିତ କରାଇ କେବଳ ବନ୍ଧୁତ୍ୱର ପରାକାଷ୍ଠାତ ଦର୍ଶାଇ ନଥିଲେ ବରଂ ସେ ମୋତେ ସବୁଦିନ ପାଇଁ ଚିର ଋଣୀ କରିଦେଲେ । ଏତ କେବଳ କାଗଜ କଲମର ମାଧ୍ୟମ । କିନ୍ତୁ



Digitized by srujanika@gmail.com

୨୦୦୮ ମସିହା ଶିଶୁ-ସାହିତ୍ୟ କର୍ମଶାଳାରେ ଉପସ୍ଥାପିତ ପ୍ରବନ୍ଧର ବିଷୟବସ୍ତୁ ଥିଲା ଓଡିଶାର ପ୍ରଥମ ଶିଶୁ ପତ୍ରିକା 'ପ୍ରଭାତ' । ସେହି ବର୍ଷ ଅର୍ଥାତ୍ ୨୦୦୮ ମସିହା ପାଇଁ ଉଦ୍ଦିଷ୍ଟ ଥିବା ପ୍ରବନ୍ଧ ପ୍ରଭାତ ବିଷୟରେ କୌଣସି ଆଲୋଚକ ଲିଖିତ ପ୍ରବନ୍ଧରେ ଅଂଶ ଗ୍ରହଣ କରି ପାରି ନଥିଲେ । କିନ୍ତୁ ମୁଁ ପ୍ରବନ୍ଧ ଉପସ୍ଥାପିତ କରିଥିଲି । ମନୋନୟନ କମିଟିର ସିଦ୍ଧାନ୍ତ କ୍ରମେ ଉକ୍ତ ପ୍ରବନ୍ଧଟିକୁ ଗ୍ରହଣ କରାଯାଇ ନ ଥିଲା । ଯେହେତୁ ମୋ ପ୍ରବନ୍ଧଟି ଏକମାତ୍ର ଥିଲା । ଏଥିରେ ମୁଁ ଭାଙ୍ଗି ପଡିଥିଲି । କିନ୍ତୁ ବନ୍ଧୁ ଡଃ. ବସନ୍ତ କିଶୋର ସାହୁ କହିଲେ-ଆପଣ ଏହି ପ୍ରବନ୍ଧଟିକୁ କୋଣାର୍କକୁ ପଠାଇ ଦିଅନ୍ତୁ । ନିଶ୍ଚୟ ଏହା ପ୍ରକାଶ ପାଇବ । ତାଙ୍କ କଥା ମାନି ଉକ୍ତ ପ୍ରବନ୍ଧଟିକୁ କୋଣାର୍କକୁ ଦେଇଥିଲି ଏବଂ ତାହା କୋଣାର୍କରେ ୧୫୮ ସଂଖ୍ୟାରେ ପ୍ରକାଶ ପାଇଥିଲା । ସେଥିରୁ ମୁଁ ଅନୁମାନ କରିଛି ବନ୍ଧୁ ବସନ୍ତ ବାବୁଙ୍କର ଦରଦ ମୋ ପ୍ରତି କେତେ ନିବିଡ । ବନ୍ଧୁଙ୍କର ମୋ ପ୍ରତି ଯେଉଁ ଉଦାରତା ତାହା ମୁଁ କେବେ ଭୁଲି ପାରିବି ନାହିଁ । ନିକଟରେ ଖବର ପାଇଲି କଟକର ରାଜୀବ କୁମାର ଷଡଙ୍ଗୀ ରେବାରାୟ ଓ ପ୍ରଭାତ ଉପରେ ଗବେଷଣାରତ ଏବଂ କୋଣାର୍କରେ ପ୍ରକାଶିତ ପ୍ରବନ୍ଧ ପ୍ରଭାତ ତାଙ୍କ ନିବନ୍ଧର ଏକ ପ୍ରଧାନ ମାଧ୍ୟମ ।

ବନ୍ଧୁ ବସନ୍ତ ବାବୁ ସର୍ବଦା ହସ ହସ ମୁଖ, ଶିଶୁ-ସାହିତ୍ୟ ତାଙ୍କର ପ୍ରାଣ । ଶିଶୁ-ସାହିତ୍ୟ କର୍ମଶାଳାରେ ରମେଶ ଦାସ, ଡଃ. ସାହୁ, ଶରତ ନାୟକ, ଡଃ. ଆଦିକନ୍ଦ ମହାନ୍ତ, ସୂର୍ଯ୍ୟମଣି ସାମନ୍ତରାୟ, ଡଃ. ଲକ୍ଷ୍ମୀକାନ୍ତ ଖୁଣ୍ଟିଆ ପ୍ରମୁଖଙ୍କ କାର୍ଯ୍ୟକଳାପ ମୋ ଠାରେ ସର୍ବଦା ଅଭୁଲା ହୋଇ ରହିବ । କର୍ମଶାଳାରେ ବନ୍ଧୁ ଡଃ. ସାହୁ ବାଲଟି ଧରିବା ଠାରୁ ଆରମ୍ଭ କରି ବାଗ୍ମିତା ପ୍ରଦର୍ଶନରେ ସମସ୍ତ ଦିଗରେ ବନ୍ଧୁମାନଙ୍କ ସହିତ ସେ ସର୍ବଦା ଚଳଚଞ୍ଚଳ । ବନ୍ଧୁ ବସନ୍ତଙ୍କ ଅନ୍ୟ ଏକ ଭଲ ଗୁଣ ହେଲା ଉଦାରତା । ସେ ଉଚ୍ଚଶିକ୍ଷାର ଅଧିକାରୀ ହୋଇ ମଧ୍ୟ ତାଙ୍କ ମନରେ ଟିକିଏ ବି ଅହଂ ଭାବ ନଥାଏ । ସତେ ଯେପରି ତାଙ୍କୁ ଅହମିକା ସ୍ପର୍ଶ କରି ପାରିନାହିଁ ।

ଓଡିଆ ଶିଶୁ-ସାହିତ୍ୟରେ ଶ୍ରୀମନ୍ଦିରର ସିଂହଦ୍ୱାର ହୋଇ ସେ ନିଜକୁ ଉତ୍ସର୍ଗ କରିବାକୁ ଚାହାଁନ୍ତି । ସେ କୁହନ୍ତି ଶିଶୁ-ସାହିତ୍ୟରେ ସିଂହଦ୍ୱାର ଦେଇ ଗବେଷକ, ଶିଶୁ-ସାହିତ୍ୟିକ, ଶିଶୁ-ସାହିତ୍ୟ ପାଠକଗଣ ପ୍ରବେଶ ଦ୍ୱାର ଦେଇ ଶିଶୁ-ସାହିତ୍ୟର ଶ୍ରୀମନ୍ଦିରକୁ ପ୍ରବେଶ କଲେ ସେ ନିଜକୁ ଧନ୍ୟ ମନେ କରିବେ । ଶ୍ରୀ ଜଗନ୍ନାଥଙ୍କ କୃପା ତାଙ୍କ ସାଧନା ପଥକୁ କୁସୁମିତ କରନ୍ତୁ ଏହାହିଁ ପ୍ରଭୁଙ୍କ ଠାରେ ମୋର ପ୍ରାର୍ଥନା ।



ଭାଟ୍ରପଡା
ତିହିଡି, ଭଦ୍ରକ



Digitized by srujanika@gmail.com

# ବନ୍ଧୁ ବସନ୍ତ କିଶୋର ସାହୁ

**ଡକ୍ଟର ଶ୍ରୀଚରଣ ମହାନ୍ତି**

ବନ୍ଧୁ ବସନ୍ତ ବାବୁଙ୍କୁ ମୁଁ ୧୯୭୩ ମସିହା ଫେବୃଆରୀ ମାସରୁ ଜାଣିଥିଲି । ତାଙ୍କର ଅବସରକାଳୀନ ଅଭିନନ୍ଦନ ଗ୍ରନ୍ଥରେ ସେ ପ୍ରସଙ୍ଗରେ ଉଲ୍ଲେଖ କରିବାର ଅଭିପ୍ରାୟ ହେଲା ଓଡ଼ିଆ ଶିଶୁସାହିତ୍ୟ ପତ୍ରିକାର ଚଲାପଥର ଗୋଟିଏ ଘଟଣା ସଂପର୍କରେ ଅବତାରଣା କରିବା ।

ସେତେବେଳେ ବସନ୍ତ ବାବୁ କୁସୁପୁର ନନ୍ଦକିଶୋର ବିଦ୍ୟାମନ୍ଦିରର ଏକାଦଶ ଶ୍ରେଣୀର ଛାତ୍ର । ଏକାଦଶ ଶ୍ରେଣୀ ପରୀକ୍ଷାର ଯଥେଷ୍ଟ ଗୁରୁତ୍ୱ ବି ଥିଲା । ବିଦ୍ୟାଳୟର ଶିକ୍ଷକ ଓ ପରିବାରର ଲୋକମାନେ ଛାତ୍ର ବା ଛାତ୍ରୀଙ୍କର ମାଟ୍ରିକ ପରୀକ୍ଷାକୁ ଗିରିଲଂଘନ କରିବାର ଆଶଙ୍କା ଭାବରେ ବିଚାର କରୁଥିଲେ । କାରଣ ସେତେବେଳର ପାଠ୍ୟକ୍ରମ ଓ ସମୁଦାୟ ପାଠ୍ୟଖସଡ଼ା ବେଶ୍ ଗୁରୁତର ଥିଲା । ଏଭଳି ସମୟରେ ବସନ୍ତବାବୁ ପତ୍ରପତ୍ରିକା କିଣି ପଢ଼ିବା ତଥା ଲେଖାଲେଖି କରିବାର ଅଭ୍ୟାସ ରଖିଥିଲେ । ଅବଶ୍ୟ ଏ ଅଭ୍ୟାସ ତାଙ୍କର ଅନେକ ଦିନର ପ୍ରାୟ ଷଷ୍ଠ-ସପ୍ତମ ଶ୍ରେଣୀରୁ ।

ଘଟଣାଟି ଏହିପରି-ସେତେବେଳେ ମୁଁ ପଢୁଥାଏ କେନ୍ଦ୍ରାପଡ଼ା କଲେଜରେ । ଓଡ଼ିଆ ସାହିତ୍ୟ ପରିଷଦ ଓ ଶ୍ରାବଣୀ ସାହିତ୍ୟ ସଂସଦ ସେତେବେଳେ ଖୁବ୍ ଜାଗ୍ରତ ଅବସ୍ଥାରେ ଥାଏ । କବି ଓ ଅଧ୍ୟାପକ ସ୍ୱର୍ଗତ ବ୍ରହ୍ମାନନ୍ଦ ଦାସ, କବି ଓ ଅଧ୍ୟାପକ ସ୍ୱର୍ଗତ ଦୀପକ ମିଶ୍ର, କଥାକାର-ଔପନ୍ୟାସିକ ରାମଚନ୍ଦ୍ର ବେହେରା ଓ ଅବସରପ୍ରାପ୍ତ ଅଧ୍ୟକ୍ଷ ନନ୍ଦକିଶୋର ପରିଡ଼ା ତଥା ଅବସର ପ୍ରାପ୍ତ ଅଧ୍ୟକ୍ଷ କାର୍ତ୍ତିକେଶ୍ୱର ସାହୁଙ୍କ ସମେତ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ସହଯୋଗରେ ସାହିତ୍ୟିକ ବାତାବରଣ ବେଶ୍ ଜୀବନ୍ତ ଥାଏ ।

ପୂର୍ବତନ ଉଚ୍ଚଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଭାଗବତ ପ୍ରସାଦ ମହାନ୍ତିଙ୍କର ବଡ଼ପୁଅ ଗୁରୁପ୍ରସାଦ ମହାନ୍ତି ସେତେବେଳେ ଛାତ୍ର ଥାଆନ୍ତି । ସେ ଖୁବ୍ ଉଦ୍ୟମୀ ସାହିତ୍ୟ ପ୍ରେମୀ ଯୁବକ । ୧୯୭୨ ମସିହା ଗ୍ରୀଷ୍ମଛୁଟି ପରେ ପରେ ସେ ଗୋଟିଏ ଶିଶୁପତ୍ରିକା ପ୍ରକାଶ କରିବା ପାଇଁ ଉଦ୍ୟମ କରୁଥାନ୍ତି । ଅମ୍ବିକା ବୁକ୍‌ଷ୍ଟୋରର ବାଇଧର ପାଣି ଓ ତାଙ୍କ ସହଯୋଗୀ ଅନନ୍ତ ନାଏକଙ୍କ ମାଧ୍ୟମରେ ସେ ମୋ ସହିତ ଯୋଗାଯୋଗ କଲେ । ପତ୍ରିକା ପାଇଁ ପ୍ରେସ, ଆର୍ଟିଷ୍ଟ ଓ ଅର୍ଥର ବ୍ୟବସ୍ଥା ଗୁରୁପ୍ରସାଦ ବାବୁ କଲେ । ତାଙ୍କ ଚେଷ୍ଟାରେ ସାମ୍ନାଦିକ



Digitized by srujanika@gmail.com

ବଂଧୁମାନଙ୍କ ସହଯୋଗରେ ଖବର କାଗଜ ମାଧ୍ୟମରେ ଓ ବ୍ୟକ୍ତିଗତ ଚିଠି ଲେଖି ପତ୍ରିକାର ଲେଖାପାଇଁ ଅନୁରୋଧ ବି କରାଗଲା । ତାଙ୍କର ପାରିବାରିକ ବଂଧୁ ଲେଖକମାନଙ୍କ ଠାରୁ କିଛି ଲେଖା ଆସିଲା କିନ୍ତୁ ଯଥେଷ୍ଟ ନ ହେବାରୁ ୧୯୭୩ ଜାନୁଆରୀ ନବବର୍ଷରେ ପତ୍ରିକା ପ୍ରକାଶ କରିବା ସମ୍ଭବ ହେଲାନାହିଁ । ଗୁରୁପ୍ରସାଦ ବାବୁ ଉଦ୍ୟମ ଅବ୍ୟାହତ ରଖି ମୋତେ ପ୍ରସ୍ତାବ ଦେଲେ ସରସ୍ୱତୀ ପୂଜାରେ ଫେବୃଆରୀ ସଂଖ୍ୟାରୁ ପତ୍ରିକା ପ୍ରକାଶ ପାଇବ, ପୃଷ୍ଠା ପୂରଣ ପାଇଁ ଯେତେ ଅଭାବ ହେବ ସମସ୍ତ ଲେଖା ଭିନ୍ନଭିନ୍ନ ନାମରେ ମୋତେ ହିଁ ଦେବାକୁ ହେବ । ହସହସ ମୁହଁରେ ସେ ଆଗତ କରିଥିବା ପ୍ରସ୍ତାବକୁ ମୁଁ ଗ୍ରହଣ କରି ପ୍ରଥମ ସଂଖ୍ୟାରେ ଛଅଟି ଲେଖା ଓ ପରେ ଯେତେବେଳେ ଦରକାର ହୁଏ ସେହି ପ୍ରକାର ସହଯୋଗ କରିଥିଲି । କେନ୍ଦ୍ରାପଡ଼ାରୁ **ପାରିଜାତ** ପ୍ରକାଶ ପାଇଲା ।

ପ୍ରଥମ ପାଞ୍ଚଟି ସଂଖ୍ୟା ଫୁଲସ୍କେପ୍ ୧/୪ ଓ ପରବର୍ତ୍ତୀ ଛଅଟି ସଂଖ୍ୟା ଡିମାଇଁ ୧/୮ରେ ବାହାରିବା ପରେ ପାରିଜାତ ମଉଳି ଯାଇଥିଲା । ପ୍ରଥମ ସଂଖ୍ୟାରୁ ସହସଂପାଦକ ଭାବରେ ମୋ ନାମ ଚନଭାଇ ଭାବରେ ପତ୍ରିକାରେ ଲେଖାଯାଉଥିଲା ।

ବର୍ତ୍ତମାନ ଅସଲ ବିଷୟକୁ ଆସିବା ପାରିଜାତର ଆରମ୍ଭରୁ ବସନ୍ତ ବାବୁ ତାର ଶିଶୁସାଥି ଭାବରେ ଯୋଗଦାନ କରିଥିଲେ । ଶିଶୁସାଥୀ ବିଭାଗକୁ ଚଳାଇବା ପାଇଁ ଆମେ ପ୍ରଥମେ ପାଞ୍ଚ ଜଣଙ୍କ ନାମ ଖାତାରେ ଲେଖିଲା ପରେ ବସନ୍ତ ବାବୁଙ୍କ ଚିଠି ଓ ଲେଖା ପହଁଚିଲା । ଏଣୁ ତାଙ୍କର ସାଥି ନମ୍ବର ୬ ହେଲା ମାତ୍ର ପ୍ରକୃତରେ ଜଣେ ଶିଶୁ ଲେଖକ ଭାବରେ ତାଙ୍କ ନାମ ପ୍ରଥମେ ହିଁ ପହଁଚିଥିଲା । ସେତେବେଳରେ ମୋର ବଂଧୁ ଲେଖକ ଓ ପରେ ଓଡ଼ିଆ ଭାଷାରୁ ବଙ୍ଗଳାକୁ ଅନୁବାଦ କରୁଥିବା ଜଣେ ସଫଳ ଅନୁବାଦକ ନିରଂଜନ ଜେନାଙ୍କ ସହିତ ବସନ୍ତ ବାବୁ କୁସୁପୁରରୁ କେନ୍ଦ୍ରାପଡ଼ାକୁ ଯାଇଥିଲେ । ତାଙ୍କର ଆଗ୍ରହ ଉଦ୍ୟମ ସେତେବେଳେ ଖୁବ୍ ଉତ୍ସାହ ଜନକ ଲାଗିଥିଲା ।

ବସନ୍ତବାବୁ ଛାତ୍ର ଜୀବନରୁ ତଥା ଅଧ୍ୟାପନା ମଧ୍ୟ ଦେଇ ଅବସର ଜୀବନରେ ଶିଶୁସାହିତ୍ୟକୁ ଯେଉଁ ଶ୍ରଦ୍ଧାର ସହିତ ଗ୍ରହଣ କରିଛନ୍ତି ତାହା ଅଳ୍ପ ଲେଖକଙ୍କ ପାଖରେ ଦେଖାଯାଏ । ନିରବଚ୍ଛିନ୍ନ ଭାବରେ ପିଲାଙ୍କ ପାଇଁ ଲେଖିବା, ଲେଖା ପତ୍ରପତ୍ରିକାକୁ ପଠାଇବା ଓ ପୁସ୍ତକ ଭାବରେ ପ୍ରକାଶ କରିବା କାର୍ଯ୍ୟ ସହିତ ସଂଗଠକ ବନ୍ଧୁମାନଙ୍କ ସହିତ ମିଶି ଶିଶୁସାହିତ୍ୟ ସଂପର୍କୀୟ କର୍ମଶାଳା କରାଇବା ତାଙ୍କ ସାଧକ ଜୀବନର ଏକ ଏକ ବିଶେଷ ଅଧ୍ୟାୟ ।

ପଲ୍ଲୀକବି ନନ୍ଦକିଶୋର ବଳ, ଗଣକବି ବୈଷ୍ଣବ ପାଣି, ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ, ଶିଳ୍ପୀଗୁରୁ ବିମ୍ବାଧର ବର୍ମା, ଆନ୍ତର୍ଜାତିକ ଚିତ୍ରଶିଳ୍ପୀ ପ୍ରଫୁଲ୍ଲ ମହାନ୍ତି, ନିଖୁଣ ଓ ବିଶାଳ ବ୍ରୋଞ୍ଜମୂର୍ତ୍ତି ନିର୍ମାଣ କରି ଓଡ଼ିଶା ଓ ଓଡ଼ିଶା ବାହାରେ ଚହଳ ସୃଷ୍ଟି କରିଥିବା ପ୍ରଫେସର ବିପ୍ରଚରଣ ମହାନ୍ତିଙ୍କ ସହିତ ସୁରେନ୍ଦ୍ରମହାନ୍ତି, କିଶୋରୀଚରଣ ଦାସ, ଶିଶୁସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ସମେତ ବହୁଯୁଗଜନ୍ମା ପ୍ରତିଭାର ଭୂମି



Digitized by srujanika@gmail.com

ମାହାଙ୍ଗା ମାଟିର କୃତି ସନ୍ତାନ ଭାବରେ ବସନ୍ତକିଶୋର ସାହୁ ନିଜର ସାଧୁଉଦ୍ୟମକୁ ଏଯାବତ ଗତିଶୀଳ କରି ରଖିଛନ୍ତି, ତାହାହିଁ ଗୌରବର ବିଷୟ ।

ଶିଶୁପତ୍ରିକା ସମ୍ପାଦନା, ପୁସ୍ତକ ସମ୍ପାଦନା, ଅଭିନନ୍ଦନଗ୍ରନ୍ଥ ସଂପାଦନା ସହିତ ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ ସଂପର୍କରେ ଗବେଷଣା କରିବା ତାଙ୍କର ନିଷ୍ଠାପର ଲେଖକ ଜୀବନର ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ । ଓଡ଼ିଆ ଶିଶୁ ସାହିତ୍ୟ, ସାହିତ୍ୟିକ ଓ ସାହିତ୍ୟ ଚର୍ଚ୍ଚା ସହିତ ନିଜର କର୍ମଭୂମି କୋରାପୁଟ ସଂପର୍କରେ, ଓଡ଼ିଆ ଭାଷା-ସାହିତ୍ୟ-ସଂସ୍କୃତି ଓ ସାହିତ୍ୟିକଙ୍କ ସଂପର୍କରେ ୧୨୦ରୁ ଅଧିକ ପ୍ରବନ୍ଧ ଓ ଆଲୋଚନା ପ୍ରକାଶ କରି ସାହିତ୍ୟିକ-ସଂପର୍କ-ଗୁନ୍ଥିବା ସହିତ ସାଧାରଣ ପାଠକ ମହଲରେ ପରିଚିତି ସୃଷ୍ଟି କରିବା ବସନ୍ତ କିଶୋରଙ୍କର ଉଦାରବାଦୀ ହୃଦୟର ଗୋଟିଏ ଗୋଟିଏ ନମୁନା ।

କର୍ମକ୍ଷେତ୍ରର ମାଟିକୁ ଭଲପାଇବା ବସନ୍ତକିଶୋରଙ୍କର ଅନ୍ୟତମ ମହତ ପ୍ରାଣର ସୂଚନା । ସୁନାବେଡ଼ା,କୋରାପୁଟରେ ଜୀବନର ଅସଲ ସମୟ ବିତାଇଛନ୍ତି ସେ । ଅଧ୍ୟାପନାକୁ ବୃତ୍ତି କରିଥିଲେ ବି ଭାଷା, ସାହିତ୍ୟ, ଚଳଣି, ପରଂପରାକୁ ଆଦରିନେଇ ନିଜର ପ୍ରବୃତ୍ତିର ସେ କରିଛନ୍ତି ପରିପ୍ରକାଶ । କୋରାପୁଟର ମାଟି, ମାନବ ଓ ମହାନତାକୁ ସେ ପ୍ରକାଶ କରିଛନ୍ତି ନିଜର ଲେଖନୀରେ । ହଜିଯାଉଥିବା, ଲୁଚିଯାଉଥିବା ଚଳଣିକୁ ସାଉଁଟି ଆଣି ଗୁନ୍ଥିଛନ୍ତି ମାଳା ଆଉ ସମର୍ପଣ କରି ଲମ୍ବାଇ ଦେଇଛନ୍ତି ଉତ୍କଳଭାରତୀଙ୍କ ଗଳାରେ । ଭଲପାଇବାର ନମୁନା ସ୍ୱରୂପ ପତ୍ରପତ୍ରିକା, ଆକାଶବାଣୀ ଓ ଶେଷରେ ପୁସ୍ତକଭାବରେ ଉତ୍ସର୍ଗ କରିଛନ୍ତି ଶ୍ରଦ୍ଧାକୁ ପାଠକ ପାଠିକାଙ୍କ ପାଇଁ ଆପଣାର କର୍ମଭୂମି ସବୁଜ ସୁନ୍ଦର କୋରାପୁଟକୁ । ବସନ୍ତକିଶୋର ରଚନାବଳୀର ୨ୟ ଖଣ୍ଡ ଡିମାଇ ୧/୮ର ୨୫୬ ପୃଷ୍ଠାର କଳେବର ମଧ୍ୟରେ ଦ୍ୱିତୀୟ ଅର୍ଘ୍ୟରେ ୯ଟି ପ୍ରବନ୍ଧରେ କୋରାପୁଟ ସଂପର୍କରେ ଲେଖିଛନ୍ତି- ଓଡ଼ିଶାର ଭୂସ୍ୱର୍ଗ କୋରାପୁଟ,କୋରାପୁଟର ପର୍ବପର୍ବାଣି ଓ ଯାନିଯାତ୍ରା, କୋରାପୁଟର ପରଜା ସଂସ୍କୃତି ଏକ ସଂକ୍ଷିପ୍ତ ପରିଚୟ, ଅବିଭକ୍ତ କୋରାପୁଟର କେତେକ ଲୋକପ୍ରିୟ ଲୋକନୃତ୍ୟ, ଆଦିବାସୀଙ୍କ କୃଷିଭିତ୍ତିକ ପର୍ବପର୍ବାଣି, ଅବିଭକ୍ତ କୋରାପୁଟ ଜିଲାର ଆଦିବାସୀଙ୍କ ଦେବଦେବୀ, ରାୟଗଡ଼ାର କନ୍ଧ ସଂସ୍କୃତି ଏକ ସଂକ୍ଷିପ୍ତ ଦୃଷ୍ଟିପାତ, ବଣ୍ଡା ସଂପ୍ରଦାୟର ଜୀବନ ଚିତ୍ର, କୋରାପୁଟର ନୃତ୍ୟ ଓ ସଂଗୀତ ତଥା କୋରାପୁଟର ଚଇତି ପର୍ବ ।

ବସନ୍ତକିଶୋର ରଚନାବଳୀର ୨ୟ ଖଣ୍ଡ ତୃତୀୟ ଅର୍ଘ୍ୟରେ ସ୍ଥାନିତ କରିଛନ୍ତି ୫୦ପୃଷ୍ଠାର ୮ଟି ମନଛୁଆଁ ଗଳ୍ପ । ଜୀବନର ଚଲାପଥରେ ଭେଟୁଥିବା କଥା, ଘଟୁଥିବା ଘଟଣା, ସାଉଁଟୁଥିବା ଅନୁଭୂତି ହିଁ ତାଙ୍କ ସାହିତ୍ୟ । ତାଙ୍କ ଲେଖାରେ କଳ୍ପନାର କୁହୁକ ଅପେକ୍ଷା ସାମାଜିକ ଜୀବନର ମହକ ବେଶି ରହିଛି । କେତେଦିନ ତଳେ ପଢ଼ିଥିଲି ତାଙ୍କର-**କାହାକୁ କହିବା** ପୁସ୍ତକଟି । ଆକାଶବାଣୀ ଜୟପୁରରୁ ପ୍ରସାରିତ ୧୪ଟି ଲେଖା/ଘଟଣାର ଅବତାରଣା । ମାତ୍ର ୭୨ ପୃଷ୍ଠାର ବହି ହେଲେ ବି ଦୁଇଟି ବୈଠକରେ



Digitized by srujanika@gmail.com

ସାରିଥିଲି, ଆମ ଜୀବନରେ ଘଟୁଥିବା ସବୁଦିନର ଘଟଣା । ଆମେ ସମସ୍ତେ ଦେଖୁଛେ,ବାଟରେ ପଡ଼ିଥିବା କଣ୍ଟାକୁ ନ ଉଠାଇ ବାଟଭାଙ୍ଗି ଯାଉଛେ । ଲେଖକ ବି ଦେଖିଛନ୍ତି । ସ୍ୱାର୍ଥପର ସମାଜକୁ ଚାହିଁ କହିଛନ୍ତି-କାହାକୁ କହିବା,ଶୁଣିବ କିଏ ? ତାଙ୍କ ଭାଷାରେ-ସତ କହିବାକୁ ଯେମିତି ଆଜି କାହାର ସାହସ ନାହିଁ-ଯିଏ ସତ କହିଲା,ସିଏ ତିନି ପାଞ୍ଚିରୁ ଗଲା ? କାରଣ ସତ୍ୟ, ଧର୍ମ ଓ ନ୍ୟାୟର ସଂଜ୍ଞା ଆଜି ବଦଳି ଗଲାଣି ।

ନିଜ ସଂପର୍କରେ ସେ ଲେଖିଛନ୍ତି- ଦୀର୍ଘ ଚାଳିଶ ବର୍ଷ(୧୯୭୨ରୁ ୨୦୧୨) ପାଖାପାଖି ଲେଖାଲେଖି କଲିଣି । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛି । ଶିଶୁ କବିତା ଠାରୁ ଆରମ୍ଭ କରି ଗଳ୍ପ,ପ୍ରବନ୍ଧ ଓ ଲଘୁ ଆଲୋଚନା ଯାଏ । ପ୍ରାୟ ୩୨ ଖଣ୍ଡ ବହି ପ୍ରକାଶ ପାଇସାରିଲାଣି । ୨ ଖଣ୍ଡ ହିନ୍ଦୀ ଓ ବଙ୍ଗଳାରେ ଅନୁବାଦ ହୋଇ ମଧ୍ୟ ପ୍ରକାଶ ପାଇସାରିଲାଣି ।--

ଡକ୍ଟର ସାହୁ, ସମସାମୟିକ ଓ ନିକଟ ଅତୀତର ବହୁ ଲେଖକଙ୍କ ପରିଚିତି ପ୍ରକାଶ କରିଛନ୍ତି ବିଭିନ୍ନ ପତ୍ରପତ୍ରିକା ଓ ଅଭିନନ୍ଦନ ଗ୍ରନ୍ଥରେ । ନିଜମାଟିର ନନ୍ଦକିଶୋର ତ୍ରୈୟୀ- ପଲ୍ଲୀକବି ନନ୍ଦକିଶୋର ବଳ, ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ, ଗୀତିକବି ନନ୍ଦକିଶୋର ସିଂହଙ୍କ ଲେଖାରେ ପଲ୍ଲୀଚିତ୍ରର ଏକ ତୁଳନାତ୍ମକ ଆଲେଖ୍ୟ ପ୍ରଦାନ କରିଛନ୍ତି ସେହିମାଟିର ଅନ୍ୟତମ କିଶୋର- ବସନ୍ତ କିଶୋର ସାହୁ ।

ଏବେବି ତାଙ୍କର ଅନେକ ଲେଖା ପ୍ରକାଶ ଅପେକ୍ଷାରେ ରହିଛି । ଏବେ ବି ତାଙ୍କ କଲମ ଜାଗ୍ରତ ରହିଛି । ନିଜେ ଲେଖିବା, ନୂଆ ଲେଖକ ଲେଖିକାଙ୍କୁ ପ୍ରେରଣା ଦେଇ ଲେଖାଇବା, ସଂଗଠନ କରିବା, ସାହିତ୍ୟ ଚାଷ କରାଇବା କାର୍ଯ୍ୟରେ ସେ ତତ୍ପର ଅଛନ୍ତି । ପ୍ରଭୁ କାଳିଆ ସାଆନ୍ତ ତାଙ୍କୁ ନିରାମୟ ଜୀବନରେ ଆଗକୁ ଚାଲିବାକୁ ବାଟ କଢ଼ାଇ ନିଅନ୍ତୁ । କଲମ ଜାଗ୍ରତ ରହୁ ପାଦରେ ଶକ୍ତି ରହୁ, ଏହାହିଁ ପରମେଶ୍ୱରଙ୍କ ନିକଟରେ କାମନା ।

କବି, ଗାଳ୍ପିକ, ସମାଲୋଚକ, ସଂଗଠକ, ଗବେଷକ, ଶିଶୁ ସାହିତ୍ୟିକ ତଥା ଶିକ୍ଷାଦାନକୁ ଜୀବନର ବ୍ରତ ଭାବରେ ଗ୍ରହଣ କରିଥିବା ବଂଧୁ ବସନ୍ତକିଶୋର ସାହୁଙ୍କ ଅଭିନନ୍ଦନ ଗ୍ରନ୍ଥର ସଂପାଦନା ମଣ୍ଡଳୀ ବସନ୍ତ ବାବୁଙ୍କ ପାଇଁ ଯେଉଁ ଉଦ୍ୟମ କରିଛନ୍ତି ସମସ୍ତଙ୍କୁ ମୁଁ ଅଭିନନ୍ଦନ ଜଣାଉଛି । ବସନ୍ତ ବାବୁଙ୍କୁ ଅଭିନନ୍ଦନ ଜଣାଇ ରହୁଛି ।



ପ୍ଲଟ ନଂ ୮୮୬,ଚଣ୍ଡିମାତା କଲୋନୀ,କେନାଲ ରୋଡ୍,
ପୋ: ରସୁଲଗଡ଼, ଭୁବନେଶ୍ୱର-୭୫୧ ୦୧୦



Digitized by srujanika@gmail.com

# ଫୁଲ ପରି ଫୁଲଟିଏ

ଡକ୍ଟର ରାମଚନ୍ଦ୍ର ଦେଓ

ସମୟ ଗୋଟିଏ ମହାକାବ୍ୟ । ତାର ଆଦି ଅନ୍ତ ର କୌଣସି ସୀମାରେଖା ନଥାଏ । ପ୍ରତିଟି ମଣିଷର ଜୀବନ ସେଇ ମହାକାବ୍ୟର ଗୋଟିଏ ଗୋଟିଏ ପୃଷ୍ଠା । ଅର୍ଥାତ୍ ଏହା ସମୟର ଏକ ଅଂଶ ବିଶେଷ । ଦୁଃଖ, ଆନନ୍ଦ, ବିଷାଦ, ଆଶା, ନିରାଶା, ସଫଳତା ବିଫଳତାର ପରସ୍ତ ପରସ୍ତ ଅଧ୍ୟାୟକୁ ନେଇ ଗଢା ଏ ମହାର୍ଘ୍ୟ ଜୀବନ ।

ମାଟି ଭିତରୁ ବୃକ୍ଷଟିଏ ଗଜୁରି ଉଠି ଶାଖା ପ୍ରଶାଖା ପ୍ରସାରି ଦେଲା ପରି ମୁହୂର୍ତ୍ତମାନେ, ଘଟଣାମାନେ ଅଙ୍କୁରି ଉଠନ୍ତି ସମୟର ମାଟି ପିଣ୍ଡରୁ । ମାଟିରୁ ଜନ୍ମ ନେଇଛି ଗଛ ପୁଣି ମାଟି ଧୋଇ ନ ଯିବା ପାଇଁ ଗଛର ଚେର ତାକୁ ଜାବୁଡି ଧରି ତାର ଅସ୍ତିତ୍ୱ ବଜାୟ ରଖୁଛି । ଏଣୁ ବୁଝି ହୁଏନି କିଏ କାହାକୁ ସ୍ୱୀକାର କରି ନେଇଛି - ମାଟି ନା ବୃକ୍ଷ । ଅନୁଭୂତି ସର୍ବସ୍ୱ ମଣିଷର ଜୀବନ ବି ଏମିତି ସମୟ ଛାତିରେ ଆଙ୍କି ଦେଉଥାଏ ସୂକ୍ଷ୍ମ ଚେତନାର ପ୍ରତିଛବି । ମନେହୁଏ ସେମାନେ ଯେମିତି ପରସ୍ପର ପାଇଁ ଅଙ୍ଗୀକାରବଦ୍ଧ । ହୋଇପାରେ ଘଟଣା ଭିନ୍ନ ଅଥବା ପରିବେଶ ଭିନ୍ନ, କିନ୍ତୁ ଯେଉଁ ମୁହୂର୍ତ୍ତକୁ ସମୟ ଅତିକ୍ରମ କଲାବେଳେ ଦଣ୍ଡେ ନିମିଷେ ଅଟକିଯାଏ, ଯେଉଁ ଅନୁଭବ ମଣିଷକୁ ମଗ୍ନତା ଭିତରକୁ ଟାଣିନିଏ-ତା ପାଇଁ ସ୍ଥାନ କାଳ ପାତ୍ରର ବିବେଚନା ଲୋଡା ହୁଏନାହିଁ ।

ସମୟ ଚକ୍ରରେ ବହୁ ଘଟଣା ପଛକୁ ଠେଲି ହୋଇଯାଏ ଅତୀତ, ଆଉ ସେଇ ଅତୀତର ଘଟଣାବଳୀ ଇତିହାସର ସ୍ତମ୍ଭ ହୋଇ ପୁଣି ଆମ ଆଗରେ ପ୍ରତିଭାତ ହୁଏ । ଏହାହିଁ ଜୀବନ, ଆଉ ଏହାହିଁ ସମୟର ମହାକାଳ ସ୍ରୋତ । ସମସ୍ତ ମଣିଷ ଜାତି ସମୟ-ମହାକାବ୍ୟର ଏକ ଏକ ପୃଷ୍ଠା । ସମୟର ଚକ ଯେତିକି ଯେତିକି ଆଗକୁ ବଢି ଚାଲିଛି, ସମୟ ମହାକାବ୍ୟର ପୃଷ୍ଠା ସେତିକି ସେତିକି ପଛକୁ ପଛକୁ ଓଲଟି ଯାଉଛି ଓ ଇତିହାସ ପାଲଟି ଯାଉଛି । ଧୂଳିଜମି ଜୀର୍ଣ୍ଣ ଶୀର୍ଣ୍ଣ ହୋଇଯାଇଥିବା ସେଇ ଅସ୍ପଷ୍ଟ ଅତୀତ-ମହାକାବ୍ୟର ପୃଷ୍ଠା ଓଲଟାଇବା ପାଇଁ ମୋତେ ବାଧ୍ୟ କଲା ବନପ୍ରଭା ସାହିତ୍ୟ ସଂସଦର ସଭାପତି ସରଳା ବେହେରାଙ୍କ ଅନୁରୋଧ । ଭାବନା ମୋର ଫେରିଗଲା କେଇ ବର୍ଷ ପଛକୁ । ଅତୀତର ସେଇ ଘସରା ଆଇନାରେ ମୁଁ ଦେଖିବାକୁ ପାଇଲି ଏକ ସୌମ୍ୟ ସୁଠାମ ଚେହେରା । ଅମଳିନ ହସକୁରା ଓଠ । ଦୀର୍ଘ ଅବୟବ । ବଳିଷ୍ଠ ବପୁ । ଆଖିରେ



Digitized by srujanika@gmail.com

ଝଳସୁ ଥିଲା ସୁନା ଜଳଦିଆ ଚଷମା । ଚଷମାର କାଚ ତଳେ ଦୀପ୍ତିମାନ ହୋଇଉଠୁଥିଲା ଆଖିର ଗାମ୍ଭୀର୍ଯ୍ୟ ।

କୋରାପୁଟର ବନଫୁଲ ସାହିତ୍ୟ ସଂସଦ ଏକ ବଳିଷ୍ଠ ସାହିତ୍ୟ ଅନୁଷ୍ଠାନ । ଏହି ଅନୁଷ୍ଠାନର ସହାୟତାରେ ଶିଶୁ ସାହିତ୍ୟର ପ୍ରଥମ ଗବେଷକ ଡ. ମନୀନ୍ଦ୍ର ମହାନ୍ତିଙ୍କ ଶିଶୁ ସାହିତ୍ୟର ଏକ କର୍ମଶାଳା ଅନୁଷ୍ଠିତ ହେଉଥାଏ । ସେଇଠି ମୋର ପ୍ରଥମ ଦେଖା ହୁଏ ଏଇ ଯୁବକଙ୍କ ସହିତ । ଗଢା ହେଲା ବନ୍ଧୁତାର ସେତୁ । ଅନ୍ତରଙ୍ଗତାର ପାହାଚ ବଢି ଚାଲିଲା ଆଗକୁ ଆଗକୁ । ଆବୁଡା ଖାବୁଡା ଅସମତଳ ପୃଥିବୀ ଗର୍ଭରେ ଯେ କେତେ ମୂଲ୍ୟବାନ ବସ୍ତୁ ଲୁକ୍କାୟିତ ଅବସ୍ଥାରେ ରହିଛି ଏ କଥା ଉତ୍ତୋଳନ ନ ହେଲା ଯାଏ ଯେମିତି ବିଶ୍ୱାସ କରାଯାଇ ପାରେନାହିଁ, ସେମିତି ଶାନ୍ତ ସରଳ ଯୁବକର ମଗଜରେ ଯେ ଏତେ ଜ୍ଞାନର ଭଣ୍ଡାର ଲୁଚି ରହିଥିଲା ଏକଥା ପାଟି ନ ଖୋଲିଲା ଯାଏ ବା ତାଙ୍କର କାର୍ଯ୍ୟାବଳୀ ଉପରେ ଦୃକପାକ ନ କଲା ଯାଏ ଆକଳନ କରିବା ସମ୍ଭବ ନ ଥିଲା ।

ଆଦ୍ର ନମନୀୟ ମୃତ୍ତିକାକୁ ଶିଳ୍ପୀ ଯେମିତି ତାର କଳା କୁଶଳ ହାତର ସ୍ପର୍ଶରେ ସୁନ୍ଦର ମୂର୍ତ୍ତି ଗଠନ କରି ଆମକୁ ଭେଟି ଦେଇଥାଏ ସେମିତି କେବଳ ଶିକ୍ଷକ ତାର କଳା କୌଶଳ ହାତର ଚାତୁରୀରେ କୋମଳମତି ଶିଶୁଙ୍କୁ ଆଦର୍ଶ ମଣିଷଟେ ଗଢି ସମାଜକୁ ଭେଟି ଦେବାକୁ ସମର୍ଥ ହୋଇଥାଏ । ଜୀବନର ଜୀବିକା ନିର୍ବାହ ପାଇଁ ବିରାଟ ପୃଥିବୀରେ ପଡି ରହିଥିବା ବହୁ ପାଥେୟକୁ ଉପେକ୍ଷା କରି ଶିକ୍ଷକତାକୁ ଜୀବନର ଜୀବିକା ଭାବରେ ବରିନେବା ସାଧାରଣ ମଣିଷ ପକ୍ଷରେ କେବେବି ସମ୍ଭବ ନୁହେଁ । ପିଲାଙ୍କୁ ଅନ୍ତର ସହିତ ଭଲପାଇ ଶିକ୍ଷକତାକୁ ଜୀବନର ଆଦର୍ଶ ଭାବରେ ଗ୍ରହଣ କରି ଏକ ଦୃଷ୍ଟାନ୍ତ ପାଲଟି ଯାଇଥିବା ମଣିଷ ଭିତରେ ଅସାଧାରଣ ମଣିଷଟି ହେଉଛନ୍ତି ଆମର ପ୍ରିୟ ଶିଶୁ ସାହିତ୍ୟିକ ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ । ସେଇ ସୁଠାମ ଯୁବକଟି ଯେ ବସନ୍ତ ପରେ ବସନ୍ତ ଅତିକ୍ରମ କରି ପ୍ରୌଢତାର ପାହାଚ ଛୁଇଁ ସାରିଲେଣି ଏ କଥା ଭାବିଲା ବେଳକୁ ମୁଁ ମୋତେ ବି ବିଶ୍ୱାସ କରି ପାରୁନି । ଏବେ ବି ସେ ଯେମିତି ସେଇ କମନୀୟ ଚେହେରା ନେଇ ମୋ ଆଗରେ ପ୍ରତିଭାତ ।

ବହୁ ପୋଥିର ରଚୟିତା, ବହୁ ଅନୁଷ୍ଠାନ ସହିତ ଜଡିତ ଥିବା, ଅମାୟିକ ବ୍ୟବହାରରେ ବାନ୍ଧି ରଖିଥିବା, ଶିଶୁମାନଙ୍କୁ ପ୍ରାଣଠୁ ଅଧିକ ଭଲପାଉଥିବା ଆଉ ସର୍ବୋପରି ପରଶମଣିରେ ନିୟମିତ ଲେଖୁଥିବା ମୋର ପରମ ହିତୈଷୀ ବନ୍ଧୁ ଡ. ସାହୁ ଦୀର୍ଘଜୀବୀ ହୁଅନ୍ତୁ ଓ ଫୁଲପରି ଫୁଲଟିଏ ହୋଇ ତାଙ୍କର ସମସ୍ତ ଗୁଣକୁ ସମାଜରେ ବାଣ୍ଟୁ ଥାନ୍ତୁ ଏହାହିଁ ପରମେଶ୍ୱରଙ୍କ ଠାରେ ପରଶମଣି ପରିବାରର ଆନ୍ତରିକ କାମନା ।



ସଂପାଦକ-ପରଶମଣି, ବାବୁସାହି, ବାରିପଦା



Digitized by srujanika@gmail.com

# ଓଡିଆ ଶିଶୁ ସାହିତ୍ୟକୁ
# ଡକ୍ଟର ବସନ୍ତ କିଶୋର ସାହୁଙ୍କ ଅବଦାନ

**ବୀରେନ୍ଦ୍ର ମହାନ୍ତି**

କଟକ ଜିଲ୍ଲା କୁସୁପୁର ଗାଆଁ । ଯେଉଁ ଗାଆଁ ଜନ୍ମ ଦେଇଛି ପଲ୍ଲୀକବି ନନ୍ଦକିଶୋର, ଶିକ୍ଷାଗୁରୁ ବିଦ୍ୟାଧର, ଜ୍ଞାନୀନ୍ଦ୍ର ବର୍ମା, ରାଜେନ୍ଦ୍ର ବର୍ମା, ନନ୍ଦ କିଶୋର ସାମଲ ଏବଂ ବସନ୍ତ କିଶୋର ସାହୁଙ୍କ ଭଳି ବରେଣ୍ୟ ସାଧକମାନଙ୍କୁ । ତିନି କିଶୋର ଥିଲେ ଶିଶୁ ସାହିତ୍ୟ ଜଗତର ଉଜ୍ଜ୍ୱଳ ତାରକା । ପଲ୍ଲୀକବି ନନ୍ଦକିଶୋର ଓଡିଆ ଭାଷା ସାହିତ୍ୟର ଥିଲେ ଅନନ୍ୟ ସ୍ରଷ୍ଟା । ଓଡିଆ ଭାଷାରେ ପଲ୍ଲୀର ଧୂଳି, ମାଟି, ପାଣି, ପବନକୁ ନେଇ ସରଳ ତରଳ ଭାଷାରେ ସର୍ବପ୍ରଥମେ ରଚନା କରିଛନ୍ତି ପଲ୍ଲୀ ସାହିତ୍ୟ ଓ ଶିଶୁ ସାହିତ୍ୟ । ସେହିପରି ଅନ୍ୟ ଜଣେ କିଶୋର ହେଲେ ନନ୍ଦ କିଶୋର ସାମଲ । ଶ୍ରୀଯୁକ୍ତ ସାମଲ ଠିକ୍ ନନ୍ଦ କିଶୋର ବଳଙ୍କ ପରି ନିଜ ଗାଁର ମାଟି, ପାଣି ପବନକୁ ନେଇ ଲେଖିଛନ୍ତି ଅନେକ ଶିଶୁ ସାହିତ୍ୟ । ନନ୍ଦ କିଶୋର ସାମଲ ଓଡିଆ ଶିଶୁ ସାହିତ୍ୟ ଜଗତର ଜଣେ ପ୍ରଚଣ୍ଡ ପ୍ରତିଭାଧର ସ୍ରଷ୍ଟା । ତାଙ୍କ 'ଆମଘର' କବିତାଟି ଜୀବନ୍ତ ରୂପ ନେଇ ଓଡିଆ ପିଲା ମାନଙ୍କର ମନଛୁଆଁ ହୋଇପାରିଛି । ପିଲାଙ୍କ ପରିବେଶରୁ ବିଷୟ ଆଣି ଏପରି ଭାବରେ ତାକୁ କବିତାରେ ପ୍ରାଣବନ୍ତ କରିଛନ୍ତି ଯାହା ତାଙ୍କର ଅନ୍ତର୍ନିହିତ କବିସତ୍ତାର ପରିଚୟ ଦେଇଥାଏ ।

ସେହିପରି ଅନନ୍ୟ ପ୍ରତିଭାଧାରୀ କବି ବସନ୍ତ କିଶୋର ତିନି କିଶୋରଙ୍କ ମଧ୍ୟରେ ସର୍ବକନିଷ୍ଠ ହେଲେ ହେଁ, ବସନ୍ତ କିଶୋରଙ୍କର ଜନ୍ମ ସତେ ଯେପରି ନିଜ ଗାଁ ନିଜ ଜନ୍ମମାଟିର ସୁନାମ ବୃଦ୍ଧି କରିବା ପାଇଁ ଥିଲା ଉଦ୍ଦିଷ୍ଟ । ବସନ୍ତ କିଶୋର ପିଲାବେଳୁ ଗାଁର ନନ୍ଦ କିଶୋର ବିଦ୍ୟାମନ୍ଦିରରେ ଅଧ୍ୟୟନ ସମୟରୁ ଗାଆଁର ପୂର୍ବସୂରୀ ମାନଙ୍କର ଜୀବନୀ ଅଧ୍ୟୟନ କରି ତାଙ୍କରି ପଦାଙ୍କ ଅନୁସରଣ କରିବା ପାଇଁ ନେଇଥିଲେ ଶପଥ । ତାଙ୍କର ପ୍ରଥମ ପ୍ରେରଣାର ଉତ୍ସ ଥିଲା ସୌରଭ ପତ୍ରିକାର ଇନ୍ଦ୍ରଧନୁ ବିଭାଗ । ପିଲାବେଳୁ କୁନି କୁନି କବିତା ଲେଖିବା ଅଭ୍ୟାସ କରି ଘରୁ ପଇସା ଲୁଚାଇ ବିଭିନ୍ନ ପତ୍ରପତ୍ରିକାକୁ ଲେଖା ପଠାଇବା ଆଗ୍ରହରୁ ଆଜି ବସନ୍ତ କିଶୋର ଓଡିଶାର ଜଣେ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ । କେବଳ ବିଶିଷ୍ଟ ଶିଶୁ ସାହିତ୍ୟିକ ନୁହଁନ୍ତି ଓଡିଆ ଶିଶୁ ସାହିତ୍ୟର ଆଗ ଧାଡିର ଜଣେ ଗବେଷକ । ଯାହାଙ୍କ ଆପ୍ରାଣ ଉଦ୍ୟମରେ ସର୍ବପ୍ରଥମେ ଓଡିଆ ଶିଶୁ ସାହିତ୍ୟ ଜଗତରେ 'ଓଡିଆ ମୌଖିକ ଶିଶୁ ସାହିତ୍ୟ' ଗବେଷଣା ସନ୍ଦର୍ଭ ପ୍ରକାଶ



Digitized by srujanika@gmail.com

ପାଇପାରିଲା । ଯେତେବେଳେ ଓଡିଆ ଶିଶୁ ସାହିତ୍ୟ ଦିଶା ହୀନ ହୋଇ ପଡିଥିଲା ସେ ସମୟରେ ସର୍ବ ପ୍ରଥମ ଗବେଷଣା ମୂଳକ ପୁସ୍ତକ 'ଓଡିଆ ଶିଶୁ ସାହିତ୍ୟ ଉନ୍ମେଷ ଓ ବିକାଶ' ପ୍ରକାଶିତ ହୋଇଥିଲା ପ୍ରଥମ ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କର । ସେହି ଆଦ୍ୟ ଗବେଷକ ଡକ୍ଟର ମହାନ୍ତିଙ୍କ ତତ୍ତ୍ୱାବଧାନରେ ବସନ୍ତ କିଶୋର 'ଓଡିଆ ମୌଖିକ ଶିଶୁ ସାହିତ୍ୟ' ଉପରେ ଗବେଷଣା କରି ସଫଳ ହୋଇଥିଲେ । ସେହି ମହାନ କାର୍ଯ୍ୟ ପାଇଁ ଚିରସ୍ମରଣୀୟ ହୋଇ ରହିବେ ବସନ୍ତ କିଶୋର । ନିଜ ଗାଁର ନାମକୁ ଆହୁରି ସ୍ମରଣୀୟ କରିଗଲେ ।

କଥାରେ ଅଛି ପ୍ରତିଭାର ବିକାଶ ପାଇଁ ପରିବେଶ ଓ ଅନୁକୂଳ ପରିସ୍ଥିତି ସାହାଯ୍ୟ କରିଥାଏ । ନିଜର ଇଚ୍ଛା, ଆଗ୍ରହ ଓ ନିଷ୍ଠା ବଳରେ ମଧ ଜଣେ ନିଜର ସାଧନାକୁ ସିଦ୍ଧି କରିପାରେ । ବସନ୍ତ କିଶୋର ଯଦିଓ କଟକ ଜିଲ୍ଲାର ସୁନାମଧନ୍ୟ କୁସୁପୁରରେ ଜନ୍ମ ନେଇଥିଲେ ମାତ୍ର ତାଙ୍କର କର୍ମମୟ ଜୀବନ ଆରମ୍ଭ ହେଲା କୋରାପୁଟର ସୁନାବେଡା ସହରରେ । ସୁନାବେଡାର ଏରୋନଟିକସ କଲେଜରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇ ସେ ସେହି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳକୁ ନିଜର କର୍ମମୟ ଇଲାକା ଭାବି ଲେଖନୀ ଚାଳନା କରିଚାଲିଲେ । ଇଚ୍ଛା ଥିଲେ ଉପାୟ ଆସିଲା ପରି ସେ ପ୍ରଥମେ ଗଠନ କରିଥିଲେ 'ବନଫୁଲ ସାହିତ୍ୟ ସଂସଦ' । ବନଫୁଲ ସାହିତ୍ୟ ସଂସଦ କୋରାପୁଟ ଅଞ୍ଚଳର ସାହିତ୍ୟିକମାନଙ୍କୁ ନେଇ ବେଶ ଚଳଚଞ୍ଚଳ ହୋଇ ଉଠିଲା । ସାହିତ୍ୟାନୁରାଗୀ ବନ୍ଧୁମାନଙ୍କୁ ନେଇ ବନଫୁଲ କବିତା ସଂକଳନ ପ୍ରକାଶ ପାଇଲା ଯାହା ଥିଲା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଲେଖକ ଲେଖିକାମାନଙ୍କ ପାଇଁ ଆନନ୍ଦର ବିଷୟ । ସାହିତ୍ୟ ସଂଗଠନ ସହିତ ବସନ୍ତ କିଶୋର କୋରାପୁଟ ପରିକ୍ରମା, ଓଡିଶାର ଲୋକନାଟ୍ୟ ପ୍ରଭୃତି ପୁସ୍ତକ ରଚନା କରି ଉପାନ୍ତ ଅଞ୍ଚଳରେ ବେଶ୍ ସୁନାମ ଅର୍ଜନ କରି ସେ ନିଜକୁ କୋରାପୁଟିଆ ବନ୍ଧୁ ସଜାଇ ପାରିଲେ । କୋରାପୁଟର ଘଞ୍ଚ ଜଙ୍ଗଲ, ପାହାଡ, ପରିବେଶ ତାଙ୍କ କବିପ୍ରାଣକୁ ଅଧିକ ଉଚ୍ଚାଟିତ କଲା । ଲେଖି ଚାଲିଲେ ଅନେକ ଶିଶୁ ସାହିତ୍ୟ । ବସନ୍ତ କିଶୋରଙ୍କର ଗବେଷଣା ମୂଳକ ପ୍ରବନ୍ଧ ପୁସ୍ତକ ମଧ୍ୟରେ ଓଡିଆ ମୌଖିକ ଶିଶୁ ସାହିତ୍ୟ ଛଡା ଓଡିଆ ଶିଶୁ ସାହିତ୍ୟ ଆଲୋଚନା, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ, ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ ସଦୃଶ । ଇଂରାଜୀରେ who's who in oriya children's literature ପୁସ୍ତକଟି ଓଡିଆ ଶିଶୁ ସାହିତ୍ୟିକମାନଙ୍କର ଏକ ଅନନ୍ୟ ପରିଚୟ ଗ୍ରନ୍ଥ । କେବଳ ଜଣେ ସାହିତ୍ୟ ସ୍ରଷ୍ଟା ନୁହଁନ୍ତି, ଜଣେ ସାହିତ୍ୟ ସଂଗଠକ ଭାବରେ ସାରା ଓଡିଶାରେ ଡକ୍ଟର ସାହୁ ବେଶ୍ ସୁନାମ ଅର୍ଜନ କରିଛନ୍ତି । RIOCL ର ସକ୍ରିୟ ସଦସ୍ୟ ଭାବରେ ଓଡିଆ ଶିଶୁ ସାହିତ୍ୟର ପ୍ରଚାର, ପ୍ରସାର ପାଇଁ ପ୍ରତିଶ୍ରୁତି ବଦ୍ଧ ।

ଜଣେ ସଫଳ ସଂପାଦକ ଭାବରେ ଯୁବକ ବୟସରେ 'ବଗୁଲାବଗୁଲୀ' ଶିଶୁ



Digitized by srujanika@gmail.com

ପତ୍ରିକାର ସଂପାଦନା ଆରମ୍ଭ କରି ବେଶ୍ ଚର୍ଚ୍ଚାକୁ ଆସିଥିବା ଡକ୍ଟର ସାହୁ ପରବର୍ତ୍ତୀ ସମୟରେ ବନଫୁଲ ସାହିତ୍ୟ ସଂସଦର ମୁଖପତ୍ର ସଂପାଦନା କରିବା ଠାରୁ କୋରାପୁଟ ଅଞ୍ଚଳରୁ ପ୍ରକାଶିତ ସମସ୍ତ ପତ୍ରପତ୍ରିକା ସଂପାଦନା ଦାୟିତ୍ୱ ନେଇ ନିଷ୍ଠାପର ଭାବରେ କାର୍ଯ୍ୟ କରିବା ଦୃଷ୍ଟାନ୍ତ ଅନେକ ରହିଛି । ପ୍ରାୟ ୮୦ରୁ ଉର୍ଦ୍ଧ୍ୱ ପତ୍ରପତ୍ରିକା ସଂପାଦନ କରି ଡକ୍ଟର ସାହୁ ଇତିହାସ ରଚନା କରିଛନ୍ତି । ଓଡିଆ ଶିଶୁ ସାହିତ୍ୟର ସମୃଦ୍ଧି ନିମନ୍ତେ ଡକ୍ଟର ସାହୁଙ୍କର ଅବଦାନ ଅବିସ୍ମରଣୀୟ । ସବୁଠାରୁ ବଡକଥା କୋରାପୁଟର ସେମିଳିଗୁଡା ଠାରେ ତାଙ୍କ ସହଯୋଗରେ ଗଢି ଉଠିଥିବା 'ଓଡିଆ ଲେଖକ ପାଠକ ସମ୍ମେଳନ' ଓଡିଶାର ଏକ ଅନନ୍ୟ ଅନୁଷ୍ଠାନ ଯେଉଁ ଅନୁଷ୍ଠାନ ଓଡିଆ ଭାଷା ସାହିତ୍ୟର ଲେଖକ ଓ ପାଠକଙ୍କ ମଧରେ ସମନ୍ୱୟ ସୃଷ୍ଟି କରି ସାରା ଓଡିଶାରେ ଚହଳ ପକାଇ ପାରିଛି । ଆଜି ସାରା ଓଡିଶାର ସମଗ୍ର ଜିଲ୍ଲାରୁ ଲେଖକ ଓ ପାଠକମାନଙ୍କୁ ଡାକି ସମ୍ମାନିତ କରିବାର ଗୌରବ ଅର୍ଜନ କରିପାରିଛି । ସେହି ମହାନ ଅନୁଷ୍ଠାନର ସଂପାଦକ ଭାବରେ ଡକ୍ଟର ସାହୁ ଯେତିକି ଗର୍ବିତ ସେତିକି ଚର୍ଚ୍ଚିତ ।

ସର୍ବୋପରି ଓଡିଆ ଭାଷା ସାହିତ୍ୟର ଜଣେ ଅଧ୍ୟାପକ ଭାବରେ ସୁନାବେଡା କଲେଜରେ ବେଶ୍ ସୁନାମ ଅର୍ଜନ କରି ପାରିଛନ୍ତି । ଛାତ୍ରବତ୍ସଳ ଗୁରୁ ଭାବରେ ସେ ସୁନାବେଡା-ସେମିଳିଗୁଡା-କୋରାପୁଟ ଜିଲ୍ଲାରେ ବେଶ ପରିଚିତ । ଡକ୍ଟର ସାହୁଙ୍କ ଜୀବନର ଲକ୍ଷ୍ୟ ସାହିତ୍ୟର ପ୍ରଚାର, ପ୍ରସାର ଓ ସମୃଦ୍ଧି । ଯଦିଓ ଏବେ ଅଧ୍ୟାପନା କାର୍ଯ୍ୟରୁ ଅବସର ନେବାର ବେଳ ଆସିଛି ମାତ୍ର ଲେଖନୀ ଚାଳନା କ୍ଷେତ୍ରରୁ ଅବସର ମିଳିବା ତ ଦୂରର କଥା ଏବେଠୁ ଆରମ୍ଭ ହୋଇଛି ଲେଖନୀର ପାଠଶାଳା । 'ଆଗକୁ ପଡିଛି ପଥ ବହୁଦୂର, ଚାଲିବାକୁ ଅଛି ବାକି, ଚାଲିବି ଚାଲିବି ନ ପଡିବି ଥକି ବୁଜିବା ଆଗରୁ ଆଖି'-ପଣ୍ଡିତ ଗୋପବନ୍ଧୁଙ୍କର ଏଇ କଥାକୁ ପାଥେୟ କରି ଅବଶିଷ୍ଟ ଜୀବନର ପଥକୁ ଅତିକ୍ରମ କରିବାର ସାମର୍ଥ୍ୟ ମହାପ୍ରଭୁ ଶ୍ରୀ ଜଗନ୍ନାଥ ତାଙ୍କୁ ଦିଅନ୍ତୁ ଏତିକି ଶ୍ରୀକ୍ଷେତ୍ର ପୁରୀରୁ ମହାପ୍ରଭୁଙ୍କ ପଦାରବିନ୍ଦରେ ପ୍ରାର୍ଥନା କରୁଛି ।

ସର୍ବଶେଷରେ ଜଣେ ସରଳ, ନିଷ୍କପଟ, ସାଧୁ, ନିର୍ଭୀକ ମଣିଷ ପରି ମଣିଷଟିଏ ବସନ୍ତ ବାବୁ । ପରିବାର ପାଇଁ ଜଣେ ଭଲ ମଣିଷ । ବନ୍ଧୁମାନଙ୍କ ପାଇଁ ବନ୍ଧୁବତ୍ସଳ, ପିଲାମାନଙ୍କ ପାଇଁ ଛାତ୍ର ବତ୍ସଳ, ସମାଜ ପାଇଁ ଜଣେ ସଙ୍ଗ ସେବକ, ସାହିତ୍ୟ ପାଇଁ ଜଣେ ସଚ୍ଚା ଲେଖକ, ସଂଗଠନ ପାଇଁ ସାଧୁ ସଂଗଠକ ଭାବରେ ସଦା ହସୁରା ମଣିଷଟିଏ ପାଇଁ ଏତିକି ନିବେଦନ କରୁଛି ସେ ଚିର ଯୁବକ ହୋଇ ଥାଆନ୍ତୁ । ଓଡିଆ ଶିଶୁ ସାହିତ୍ୟକୁ ଋଦ୍ଧିମନ୍ତ କରୁଥାଆନ୍ତୁ ।



ସଦସ୍ୟ

ଓଡିଶା ସାହିତ୍ୟ ଏକାଡେମୀ, ପୁରୀ



Digitized by srujanika@gmail.com

# ସାରସ୍ୱତ ସାଧକ ଓ ସଂଗଠକ :
# ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ରାଜେନ୍ଦ୍ର ପାଢ଼ୀ

୧୯୮୭ ମସିହା । ସୁନାବେଡାରୁ ପତ୍ରଟିଏ ପାଇଲି । ବନଫୁଲ ସାହିତ୍ୟ ପରିଷଦର ବିଷୁବ ମିଳନରେ ଯୋଗଦେବା ପାଇଁ ନିମନ୍ତ୍ରଣ । ସେଇ ସମୟରେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଜୟପୁର ସାହିତ୍ୟ ପରିଷଦ ଓ ନୂଆ ହୋଇ ଗଢିଥିବା ସତ୍ତା ସାହିତ୍ୟ ପରିଷଦର ବିଭିନ୍ନ ଆସରରେ ମୁଁ ଯୋଗ ଦେଉଥିଲି । ଆଜି ଭଳି ମିଗ୍ ନଗରୀ ସୁନାବେଡା ଓ ଦାମନଯୋଡି ଅଞ୍ଚଳରେ ସାହିତ୍ୟ ପରିବେଶ କି ପାଣି ପାଗ ନଥିଲା । ଲେଖକମାନଙ୍କ ପାଇଁ ପ୍ଲାଟଫର୍ମଟିଏ ନଥିଲା । ବନଫୁଲର ବିଷୁବ ଆସର ପାଇଁ ଡାକରା ପାଇ ମୁଁ ଅତ୍ୟନ୍ତ ଉଲ୍ଲସିତ ହୋଇଥିଲି । ମୁଁ ୧୯୮୧-୮୨ରୁ କିଛି କିଛି କବିତା ଲେଖିବା ଆରମ୍ଭ କରିଥିଲି । ଯେଉଁଠୁ ପତ୍ରଟିଏ ଆସେ, ମୁଁ କାର୍ଯ୍ୟକ୍ରମରେ ଯୋଗ ନଦେଇ ରହିପାରୁନଥିଲି । ଅଶୀ ଦଶକରେ ଅବିଭକ୍ତ କୋରାପୁଟରେ ସେତେଟା ସାହିତ୍ୟ କାର୍ଯ୍ୟକ୍ରମ ହେଉନଥିଲା । ଏଣୁ କବିତା ପାଠ କରିବାର ପ୍ରବଳ ଉତ୍କଣ୍ଠା ନେଇ ସୁନାବେଡାରେ ପହଞ୍ଚିଲି ।

ବନଫୁଲ ସାହିତ୍ୟ ପରିଷଦର ବିଷୁବମିଳନ ଆସରର ପରିବେଶ ଅତ୍ୟନ୍ତ ମନୋଜ୍ଞ ଥିଲା । ୨୫ ବର୍ଷତଳର ଏହି ସରସ ଓ ସୁନ୍ଦର ଆସରଟି ଏବେ ବି ମୋର ମନେ ପଡେ । ସାହିତ୍ୟ ଆସରଟି ଅନୁଷ୍ଠିତ ହେଉଥାଏ ସୁନାବେଡା-୧ରେ ଅବସ୍ଥିତ ଆଦିବାସୀ ଉଚ୍ଚବିଦ୍ୟାଳୟ (ଯେଉଁଠି ପ୍ରଥମେ ସେମିଳିଗୁଡା ମହାବିଦ୍ୟାଳୟ ଚାଲିଥିଲା) ପରିସର ମଧ୍ୟରେ । ମଞ୍ଚଟି ଥିଲା ଅତି ସୁନ୍ଦର ଓ ଆକର୍ଷଣୀୟ । ଅପେକ୍ଷାରତ ଉଦ୍ୟୋକ୍ତାମାନେ ଆଗନ୍ତୁକ କବି ଲେଖକମାନଙ୍କୁ ସମ୍ମାନ ଜଣାଇ ଆସର ସ୍ଥଳକୁ ପାଛୋଟି ନେଉଥାନ୍ତି । ପୁଷ୍ପ ଚନ୍ଦନରେ ସାଦର ଅଭ୍ୟର୍ଥନା ଅବିଭୂତ କରିଥିଲା । ଆମ୍ରକୁଂଜର ଶୀତଳଛାୟାରେ ଗ୍ରୀଷ୍ମର ପ୍ରକୋପ ଆଦୌ ଜଣାପଡୁ ନଥିଲା । ବଉଳର ମହମହ ବାସ୍ନା ଓ କୋଇଲିର କୁହୁତାନ ଆସରର ପରିବେଶକୁ ଅତ୍ୟନ୍ତ ମନମତାଣିଆ କରୁଥିଲା । ଆହୁରି ଅଧିକ ଆମୋଦିତ କରୁଥିଲା ବହୁ ଚିହ୍ନା ଅଚିହ୍ନା ନବୀନ ପ୍ରବୀଣ କବିଙ୍କ କବିତା ପାଠ ଓ ଦେଖାସାକ୍ଷାତ । ନୂଆ ନୂଆ କଲମ ଧରିଥିବା ଯୁବ ସାହିତ୍ୟିକମାନେ ବିଶେଷ ଭାବେ ରୋମାଞ୍ଚିତ ଓ ଆମୋଦିତ ହେଉଥିଲୁ । ଏହି ଉତ୍ସବର ମୁଖ୍ୟ ପୁଷ୍ଟପୋଷକ ଥିଲେ ସମାଜସେବୀ ସାହିତ୍ୟପ୍ରାଣ ଶ୍ରୀଯୁକ୍ତ କୃଷ୍ଣ ସିଂହ, ମୁଖ୍ୟବକ୍ତା



Digitized by srujanika@gmail.com

ଥିଲେ ଆକାଶବାଣୀର କାର୍ଯ୍ୟକ୍ରମ ନିଷ୍ପାଦକ ସାହିତ୍ୟପ୍ରେମୀ ଶ୍ରୀଯୁକ୍ତ କାଳିକିଙ୍କର ମିଶ୍ର । ଶ୍ରୀଯୁକ୍ତ ସିଂହଙ୍କ ବୈପ୍ଳବାତ୍ମକ ଆହ୍ୱାନ ଓ ଶ୍ରୀଯୁକ୍ତ କାଳି ବାବୁଙ୍କ ସ୍ୱାଭିମାନ ଭରା ଓଜସ୍ୱିନୀ ଭାଷଣ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ଅତି ଚମତ୍କାର ସଂପାଦକୀୟ ବକ୍ତବ୍ୟ ପ୍ରଦାନ କରିଥିଲେ ଡଃ.ବସନ୍ତ କିଶୋର ସାହୁ । ଉପସ୍ଥିତ କବି ଲେଖକ ଓ ସାହିତ୍ୟ ପ୍ରେମୀମାନେ ଅତି ଆମୋଦିତ ଓ ଉଦ୍‌ବୁଦ୍ଧ ହେଉଥିଲେ । ଯୁବ ଲେଖକ ମାନେ ଏହି ମଞ୍ଚରୁ ପ୍ରେରଣା ପାଇ ଲେଖିବା ଆରମ୍ଭ କରିଥିଲେ । ଏହି କାର୍ଯ୍ୟକ୍ରମର ପରବର୍ତ୍ତୀ ବର୍ଷମାନଙ୍କରେ ସଂପାଦକ ବସନ୍ତ ବାବୁଙ୍କ ନିମନ୍ତ୍ରଣ ପାଇ ବନଫୁଲର ପ୍ରତ୍ୟେକ କାର୍ଯ୍ୟକ୍ରମରେ ଯୋଗଦେଇଛି । ଆସରରେ ପଠିତ କବିତା ଓ ଗଳ୍ପ ଗୁଡିକୁ ନେଇ ଡଃ. ସାହୁଙ୍କ ସଂପାଦନାରେ ବନଫୁଲ-୧ ରୁ ୮ ସଂକଳନମାନ ପ୍ରକାଶିତ ହୋଇ ବେଶ୍ ପାଠକୀୟ ଶ୍ରଦ୍ଧା ଲାଭ କରିପାରିଛି । ଅବିଭକ୍ତ କୋରାପୁଟର କୋଣ ଅନୁକୋଣରେ ରହିଥିବା କବି ଓ ସାହିତ୍ୟ ପ୍ରେମୀଙ୍କୁ ଖୋଜି ଲୋଡି ଡାକିବା ସେ ସମୟରେ ରାଜ୍ୟସ୍ତରୀୟ ସାହିତ୍ୟ ଆସରର ଆୟୋଜନ କରିବା ସହଜ ସାଧ୍ୟ ନଥିଲା । ସୁନାବେଡାର ରୁଟିନ ବନ୍ଧା ଯାନ୍ତ୍ରିକ ଜୀବନ ବିତାଉଥିବା ମଣିଷମାନଙ୍କ ମନରେ ସାହିତ୍ୟର କ୍ଷେତ୍ର ପ୍ରସ୍ତୁତ କରି ମଂଜିଟିଏ ବୁଣି, ତାହାକୁ ବହୁ ଶ୍ରମ ଦେଇ ଯିଏ ମହାଦ୍ରୁମରେ ପରିଣତ କରାଇବା ନିମନ୍ତେ ଅହରହ ଉଦ୍ୟମ କରିଆସିଛନ୍ତି, ସେହି ସୁସଂଗଠକ ଓ ସାହିତ୍ୟମନସ୍କ ବ୍ୟକ୍ତି ହେଲେ ସମସ୍ତଙ୍କ ପ୍ରିୟ ଡଃ. ବସନ୍ତ କିଶୋର ସାହୁ । ତାଙ୍କର ମଧୁର ବ୍ୟବହାର ଉତ୍ତମ ଲୋକ ସଂପର୍କ, ସାଂଗଠନିକ ଦକ୍ଷତା ଓ ସାହିତ୍ୟ ପ୍ରୀତି ବଳରେ ସେ ବେଳର ସୁନାବେଡାର ଉଷର ମରୁରେ ସାହିତ୍ୟର ସବୁଜିମା ସୃଷ୍ଟି ହୋଇପାରିଥିଲା । ବନଫୁଲ ସାହିତ୍ୟ ପରିଷଦର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ପ୍ରାନ୍ତରେ ଲୁଚି ରହିଥିବା ବନଫୁଲ ସବୁକୁ ସାଉଁଟି ଆଣି ଏକ ମନୋଲୋଭା ମାଳାଗୁନ୍ଥି ଉତ୍କଳ ସାହିତ୍ୟ ଭଣ୍ଡାରର ଶ୍ରୀବୃଦ୍ଧି ସାଧନ କରିବା । ଯଥାର୍ଥରେ ଡଃ. ସାହୁଙ୍କ ଉଦ୍ୟମରେ କୋରାପୁଟର ବନପାହାଡ ଘେରା ଅଞ୍ଚଳରେ ଲୁଚି ରହିଥିବା ବଣମଲ୍ଲୀର ସୁଗନ୍ଧକୁ ରାଜ୍ୟସ୍ତରରେ ପହଞ୍ଚାଇବା ସମ୍ଭବ ହୋଇପାରିଛି । ଅଶୀ ଦଶକରେ ସାହିତ୍ୟରେ ପାଦ ଥାପିଥିବା ନବୀନ ସ୍ରଷ୍ଟାମାନେ ଆଜି ଏକାଧିକ ଗ୍ରନ୍ଥ ପ୍ରକାଶ କରି ବେଶ୍ ପ୍ରତିଷ୍ଠା ଲାଭ କରିଛନ୍ତି ।

ବନଫୁଲ ସାହିତ୍ୟ ପରିଷଦ କବିତା ଓ ଗଳ୍ପ ଆସର ଓ ସଂକଳନ ପ୍ରକାଶନରେ କେବଳ ସୀମିତ ନଥିଲା ୧୯୯୦ରେ ପରିଷଦ ଦ୍ୱାରା ଆୟୋଜିତ ଓଡିଶାର ଲୋକନାଟ୍ୟ ଶୀର୍ଷକ ସଂପାନ ରାଜ୍ୟସ୍ତରରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଏହି ସଂପାନରେ ଓଡିଶାର ବହୁ ବିଶିଷ୍ଟ ଗବେଷକ ଯୋଗଦେଇ ବିଭିନ୍ନ ଅଞ୍ଚଳର ଲୋକନାଟ୍ୟ ପରଂପରା ସଂପର୍କରେ ବହୁ ଉଚ୍ଚକୋଟୀର ପ୍ରବନ୍ଧ ଉପସ୍ଥାପନ କରିଥିଲେ । ଉକ୍ତ ସଂପାନରେ ମୋ ଦ୍ୱାରା ଉପସ୍ଥାପିତ ସନ୍ଦର୍ଭ - 'କୋରାପୁଟର ଲୋକନୃତ୍ୟ ଢେମ୍‌ସା' ଉପସ୍ଥିତ ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । କାରଣ ଏହା ଥିଲା କୋରାପୁଟର



Digitized by srujanika@gmail.com

ସର୍ବଜନାଦୃତ ଲୋକନୃତ୍ୟ 'ଢେମସା'ର ସର୍ବପ୍ରଥମ ଆଲୋଚନା । ପ୍ରକୃତରେ କହିବାକୁ ଗଲେ ଉକ୍ତ ସଂପାନ ହିଁ ମୋର ଲୋକ ସଂସ୍କୃତି ଗବେଷଣାର ବାଟ ଫିଟାଇ ଦେଇଥିଲା । ପରବର୍ତ୍ତୀ ସମୟରେ ମୁଁ କୋରାପୁଟର ଆଦିବାସୀ ଲୋକ ସଂସ୍କୃତି ଗବେଷଣାରେ ମନୋନିବେଶ କଲି । ଏହି ଲୋକନାଟ୍ୟ ସଂପାନରେ ଉପସ୍ଥାପିତ ଓଡିଶାର ବିଭିନ୍ନ ଅଞ୍ଚଳର ପାରଂପରିକ ଲୋକନାଟ୍ୟ ସବୁର ପ୍ରବନ୍ଧଗୁଡିକୁ ନେଇ ଡଃ. ସାହୁଙ୍କ ଉଦ୍ୟମରେ 'ଓଡିଶାର ଲୋକନାଟ୍ୟ' ଶୀର୍ଷକ ଗ୍ରନ୍ଥ ପ୍ରକାଶିତ ହେଲା । ଯାହାକି, ଓଡିଶାର ଲୋକନାଟ୍ୟ ଆଲୋଚନା କ୍ଷେତ୍ରରେ ଏକ ମାଇଲ୍‌ଖୁଣ୍ଟ ଭାବେ ପରିଗଣିତ ହୋଇଅଛି । ବିଶ୍ୱବିଦ୍ୟାଳୟର ଛାତ୍ର ଗବେଷକ, ଅଧ୍ୟାପକଙ୍କ ନିମନ୍ତେ ଏହି ଗ୍ରନ୍ଥଟି ଅତ୍ୟନ୍ତ ଉପାଦେୟ ହୋଇପାରିଥିବା ସଂପର୍କରେ ବହୁ ମତାମତ ଆମର ହସ୍ତଗତ ହୋଇଛି । କୋରାପୁଟ ଜିଲ୍ଲାର ସାମଗ୍ରିକ ତଥ୍ୟ ଯଥା : ଜନଜାତିଙ୍କ ପର୍ବପର୍ବାଣି, ନୃତ୍ୟଗୀତ, ସାମାଜିକ ଜୀବନ ଆଦିର ଏକ ତଥ୍ୟଧର୍ମୀ ସଂକଳନ ହେଉଛି ଡଃ. ବସନ୍ତ ବାବୁଙ୍କ ସଂପାଦିତ 'କୋରାପୁଟ ପରିକ୍ରମା' ଗ୍ରନ୍ଥ । ବସନ୍ତ ବାବୁଙ୍କ ସଂପାଦନାରେ ବନଫୁଲ ସାହିତ୍ୟ ପରିଷଦର ଅନ୍ୟାନ୍ୟ ସଂକଳନ ମଧ୍ୟରେ କୋରାପୁଟ ପରିକ୍ରମା (କବିତା ସଂକଳନ), ଦେଶାତ୍ମବୋଧକ କବିତା ସଂକଳନ, ବନଫୁଲ ଗଳ୍ପ କବିତା ସଂକଳନ ।

ଏତଦ୍ ବ୍ୟତୀତ ସାହିତ୍ୟିକ ଡଃ. ମନୀନ୍ଦ୍ର ମହାନ୍ତିଙ୍କ ପରାମର୍ଶରେ ୧୯୮୮ରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ଏକ ଶିଶୁ ସାହିତ୍ୟିକ କର୍ମଶାଳାର ମୁଖ୍ୟ ଆୟୋଜକ ଥିଲେ ବସନ୍ତ ବାବୁ । ପୂର୍ବରୁ ଶିଶୁ ସାହିତ୍ୟିକମାନଙ୍କୁ ନେଇ ଏ ଭଳି କର୍ମଶାଳା ଅନେକ ନବୀନ ଲେଖକଙ୍କୁ ଶିଶୁ ସାହିତ୍ୟ ରଚନା କରିବାରେ ମାର୍ଗଦର୍ଶନ କରିପାରିଛି ।

ନିଜ ବ୍ୟକ୍ତିଗତ ସାହିତ୍ୟ ସାଧନା ଅପେକ୍ଷା ନୂତନ ସାହିତ୍ୟିକଙ୍କୁ ସାହିତ୍ୟ ସୃଷ୍ଟି କରିବାରେ ଉତ୍ସାହ ଓ ପ୍ରେରଣା ଦେବା ବସନ୍ତ ବାବୁଙ୍କ ସହଜାତ ପ୍ରବୃତ୍ତି । ନୂଆ ଲେଖକଙ୍କ ଲେଖା ସଂଶୋଧନ କରିବା, ପ୍ରକାଶ କରିବା, ବହିର ମୁଖବନ୍ଧ ଲେଖି ଉତ୍ସାହିତ କରିବା, ବିଭିନ୍ନ ଲେଖକଙ୍କ ଲେଖାକୁ ନେଇ ସଂଙ୍କଳନ କରିବା, ପତ୍ରପତ୍ରିକା ସଂପାଦନା କରିବାରେ ସେ କେବେ କୁଣ୍ଠା ପ୍ରକାଶ କରି ନ ଥାନ୍ତି ।

ଗବେଷଣା କ୍ଷେତ୍ରରେ ସେ ମୋ ପରି ଅନେକଙ୍କୁ ଉତ୍ସାହିତ କରିଛନ୍ତି । ନୂଆ କରି ଗବେଷଣାରେ ହାତ ଦେଇଥିବା କେହି ଜଣେ ତାଙ୍କ ଠାରୁ କୌଣସି ବିଷୟ ଜାଣିବାକୁ ପତ୍ରଟିଏ ଦେଲେ, ସେ ତୁରନ୍ତ ତାଙ୍କୁ ପତ୍ର ମାଧ୍ୟମରେ ଜଣେଇବାରେ କେବେ ଅବହେଳା କରନ୍ତି ନାହିଁ । ତାଙ୍କ ପରାମର୍ଶ ଓ ଦିଗଦର୍ଶନରେ ନୂଆ ପିଢିର ଗବେଷକମାନେ ସଫଳତା ହାସଲ କରିପାରିଛନ୍ତି ।

ଡଃ. ସାହୁ ଏକାଧାରରେ ଉତ୍ତମ ସଂଗଠକ, ଉଚ୍ଚକୋଟୀର ଗବେଷକ, ପ୍ରାବନ୍ଧିକ, କବି, ରମ୍ୟରଚନାକାର, ଶିଶୁ ସାହିତ୍ୟିକ ଓ ଛାତ୍ରବତ୍ସଳ ଅଧ୍ୟାପକ । ଓଡିଆ ମୌଖିକ ଶିଶୁ ସାହିତ୍ୟ ସଂପର୍କରେ ତାଙ୍କ ଗବେଷଣା ଗ୍ରନ୍ଥ ଓଡିଶାରେ ଉଚ୍ଚ ପ୍ରଶଂସିତ ।



Digitized by srujanika@gmail.com

ସେ ଜଣେ ସଫଳ ଶିଶୁ ସାହିତ୍ୟିକ ଭାବେ ପ୍ରଜାତନ୍ତ୍ର ପ୍ରଚାର ସମିତି, ଭୁବନେଶ୍ୱର ପୁସ୍ତକମେଳା, ରାଜଧାନୀ ପୁସ୍ତକମେଳା ସହିତ ଅନ୍ୟାନ୍ୟ ବହୁ ପ୍ରତିଷ୍ଠିତ ଅନୁଷ୍ଠାନ ମାନଙ୍କ ଦ୍ୱାରା ପୁରସ୍କୃତ ଓ ସମ୍ବର୍ଦ୍ଧିତ । ତାଙ୍କ ସାରସ୍ୱତ କୃତି ମଧ୍ୟରେ ଫୁଲ ଆମେ ଫୁଲ, ଅଗଡବଗଡ ଝାଇଁକି ଝୁମ୍ପା, କୋରାପୁଟର ପର୍ବପର୍ବାଣି, ଓଡିଆ ଶିଶୁ ସାହିତ୍ୟ ଆଲୋଚନା, ଓଡିଆ ମୌଖିକ ଶିଶୁ ସାହିତ୍ୟ ପ୍ରଭୃତି ବତିଶିରୁ ଉର୍ଦ୍ଧ୍ୱ ଗ୍ରନ୍ଥ ପାଠକୀୟ ଆଦର ଲାଭ କରିଅଛି । ଏତଦ୍ ବ୍ୟତୀତ ତାଙ୍କ ସଂପାଦନାରେ ଅନେକ ପତ୍ର ପତ୍ରିକା, ସ୍ମରଣିକା ଓ ଗ୍ରନ୍ଥ ପ୍ରକାଶିତ । ସର୍ବଭାରତୀୟ ଶିଶୁ ସାହିତ୍ୟ ପରିଷଦ, ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ, ଅନ୍ୟାନ୍ୟ ଗବେଷଣା ଅନୁଷ୍ଠାନ ସହ ସେ ଅଙ୍ଗାଙ୍ଗି ଭାବେ ଜଡିତ ।

ବସନ୍ତ ବାବୁଙ୍କ ପେଶା ଅଧ୍ୟାପନା ଓ ନିଶା ହେଉଛି ସାହିତ୍ୟ । ଓଡିଆ ଭାଷା ଓ ସାହିତ୍ୟର ବିକାଶ, ନୂତନ ପାଠକ ଓ ଲେଖକ ସୃଷ୍ଟି, ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାର ଲୋକ ସଂସ୍କୃତିର ସଂରକ୍ଷଣ ଓ ଅଧ୍ୟୟନରେ ସେ ସର୍ବଦା ବ୍ରତୀ । ତାଙ୍କ ସହ ମୋର ଦୀର୍ଘ ସାରସ୍ୱତ ସଂପର୍କ ଭିତରେ ମୁଁ ତାଙ୍କ ଅନାବିଳ ସ୍ନେହ, ଶ୍ରଦ୍ଧା, ଆଦର, ଉତ୍ସାହ ପ୍ରେରଣା ଓ ପରାମର୍ଶ ପାଇଛି । ଜଣେ ହିତୈଷୀ ବଂଧୁ, ମାର୍ଗଦର୍ଶକ ଭାବେ ମୋତେ ଅଗ୍ରଜ ସୁଲଭ ପରାମର୍ଶ ଦେଇଛନ୍ତି । ଚିଠିପତ୍ର, ଟେଲିଫୋନ୍ ମାଧ୍ୟମରେ ମୋ କଲମକୁ ଚଳଚଞ୍ଚଳ କରାଇଛନ୍ତି, ଚେତେଇ ଦେଇଛନ୍ତି, ଜାଗରିତ କରିଛନ୍ତି, ଏମିତିକି ଲେଖା ଧିମେଇ ଗଲେ ଅନ୍ତରଂଗ ବଂଧୁ ଭାବେ ବିରକ୍ତି ଭାବ ମଧ୍ୟ ପ୍ରକାଶ କରିଛନ୍ତି ।

ଓଡିଆ ଶିଶୁ ସାହିତ୍ୟ, ସାହିତ୍ୟ ସଂସ୍କୃତି ଗବେଷଣା, ପୁସ୍ତକ-ପତ୍ରପତ୍ରିକା ସଂପାଦନା, ସାଂଗଠନିକ କାର୍ଯ୍ୟରେ ବସନ୍ତ ବାବୁଙ୍କ ପାରଦର୍ଶିତା ଓଡିଶାରେ ବେଶ ସୁବିଦିତ । ଜଣେ ନିରଳସ ସାରସ୍ୱତ ସାଧକ, ସଂପାଦକ, ସଂଗଠକ, ଅମାୟିକ ସରଳ ବ୍ୟକ୍ତିତ୍ୱ, ବନ୍ଧୁବତ୍ସଳ ଭାବେ ସେ ସମସ୍ତଙ୍କର ଆଦରଣୀୟ । ମିଗ୍‌ନଗରୀ ସୁନାବେଡାର ନିଦାଘର ଶୁଷ୍କ ମରୁରେ ଥୁଣ୍ଟା ଗଛରେ ସେ ବସନ୍ତର ମଳୟ ପବନ ବୁହାଇ ହସନ୍ତ ସାହିତ୍ୟର ଯେଉଁ ନବକିଶଳୟ ସୃଷ୍ଟି କରିଛନ୍ତି, ତାହା ଆଜି କ୍ରମଶଃ ଶାଖା ପ୍ରଶାଖା ମେଲି ମହାଦ୍ରୁମରେ ପରିଣତ ହେବାରେ ଲାଗିଛି । ତାଙ୍କ ନିଷ୍ଠା, ଆନ୍ତରିକ ଉଦ୍ୟମ, ସାହିତ୍ୟ ପ୍ରେମ ସର୍ବଦା ସ୍ମରଣୀୟ ହୋଇ ରହିଥିବ । ସେ ସଦା ଚଳଚଞ୍ଚଳ ରୁହନ୍ତୁ, ଓଡିଆ ସାହିତ୍ୟରେ ଯଶସ୍ୱୀ ହୁଅନ୍ତି, ପ୍ରଭୁ ଶ୍ରୀଜଗନ୍ନାଥ ତାଙ୍କର ସର୍ବମଙ୍ଗଳ କରନ୍ତୁ, ଏତିକି ମାତ୍ର ପ୍ରାର୍ଥନା ।



ଆଦିବାସୀ ଗବେଷଣା ମଞ୍ଚ
କୁନ୍ଦ୍ରା, ଜୟପୁର, କୋରାପୁଟ



Digitized by srujanika@gmail.com

# ଚିର ବସନ୍ତର ଉଦ୍ଭାସନ: ବସନ୍ତ କିଶୋର

ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର

ସୁନାବେଡ଼ା ମହାବିଦ୍ୟାଳୟ ଓଡ଼ିଆ ବିଭାଗର ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁଙ୍କ ବନ୍ଧୁତ୍ୱର ବନ୍ଧନରେ ବାନ୍ଧି ହେବା ପରେ ତାଙ୍କୁ ଚିହ୍ନିବା, ଜାଣିବା ଓ ବୁଝିବାର ସୁଯୋଗ ପାଇଥିଲେ ହେଁ ବହୁ ପୂର୍ବରୁ ତାଙ୍କର ସାରସ୍ୱତ ସାଧନା ଏବଂ ସୃଷ୍ଟି ସର୍ଜନା ସହ ପରିଚିତ ହୋଇସାରିଥିଲି । ସମ୍ପର୍କର ସେତୁଟିଏ ବାନ୍ଧିବା ନିମନ୍ତେ ତାଙ୍କ ନାମରେ ରହିଛି ବସନ୍ତର ମହକ, କୈଶୋରର ଉନ୍ମାଦତା ଓ ଶିଶୁ ସାହିତ୍ୟ ଜଗତର ସାହୁ ପଣିଆ । ତେଣୁ ସେ ହେଉଛନ୍ତି ବସନ୍ତ କିଶୋର ସାହୁ । ତାଙ୍କର ମୁଖ୍ୟ ଜିଜ୍ଞାସା ହେଉଛି ଶିଶୁ ସାହିତ୍ୟ । ଶିଶୁ ସାହିତ୍ୟ ହେଉଛି ଓଡ଼ିଆ ସାହିତ୍ୟର ଏକ ଉପେକ୍ଷିତ ତଥା ଅବହେଳିତ ବିଭାଗ । ଏହି ବିଭାଗଟିକୁ ପାଠ୍ୟୋପଯୋଗୀ ସ୍ୱୀକୃତି ଦେଇ ପାଠ୍ୟ ଖସଡାର ଅନ୍ତର୍ଭୁକ୍ତ କରି ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ ନିମିତ୍ତ ଉଦ୍ୟମ କରାଯାଇଥିଲେ ମଧ୍ୟ ସ୍ୱାର୍ଥାନ୍ୱେଷୀ, ଦୀର୍ଘସୂତ୍ରୀ ବ୍ୟକ୍ତି ବିଶେଷଙ୍କ ଅହମିକା ପୂର୍ଣ୍ଣ ଅସହଯୋଗ ମନୋଭାବ ଯୋଗୁ ତାହା ଅଦ୍ୟାବଧି ସମ୍ଭବପର ହୋଇପାରି ନଥିବା ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ।

ବନ୍ଧୁ ଡକ୍ଟର ସାହୁଙ୍କର ବାଲ୍ୟାବସ୍ଥାରୁ ଥିବା ପଠନ ଆଗ୍ରହ ଏବଂ ଜିଜ୍ଞାସାବୋଧ ପରବର୍ତ୍ତୀ ସମୟରେ ନିଶାରେ ପରିଣତ ହେବା ଫଳରେ ତାଙ୍କ ସାରସ୍ୱତାକାଶ ହୋଇ ପାରିଛି ବିଚିତ୍ର ବର୍ଣ୍ଣା । ଶିଶୁ ଗଳ୍ପ, କବିତା ଠାରୁ ଆରମ୍ଭ କରି ଲଘୁ ଆଲୋଚନା ଓ ପ୍ରବନ୍ଧ ସମାଲୋଚନା ପର୍ଯ୍ୟନ୍ତ ବିଭିନ୍ନ ବର୍ଣ୍ଣ ବିଭାରେ ତାଙ୍କର ସାରସ୍ୱତ ସାମ୍ରାଜ୍ୟ ଋଦ୍ଧିମନ୍ତ ତଥା ଉଦ୍ଭାସିତ ।

ଡକ୍ଟର ସାହୁଙ୍କ ସର୍ଜନାତ୍ମକ ଶିଶୁ ସାହିତ୍ୟ 'ଫୁଲ ଆମେ ଫୁଲ' (୧୯୯୨), 'କାଳିଆ ବଳଦ ଗଲାରେ ଗଲା'(୨୦୦୦),'ମାରି ନେଲେ ମହାପାତ୍ରେ' (୨୦୦୦),'ଉଦୁ ଉଦୁମା'(୨୦୦୩),'ଇଞ୍ଚୁଡ଼ି ମିଞ୍ଚୁଡ଼ି'(୨୦୦୩),'ଶୀତ ପାଇଁ ଗାଅ ଗୀତ' (୨୦୦୭),'ଖରା ବରଷା ଗୀତ'(୨୦୦୮) ଓ 'ବିଲୁଆ ନନାର ବଣ ଭୋଜି'(୨୦୦୮) ପ୍ରଭୃତି ପୁସ୍ତକଗୁଡ଼ିକ କୋମଳମତି ଶିଶୁପ୍ରାଣକୁ ଛୁଇଁଲା ଭଳି ବିଷୟ



Digitized by srujanika@gmail.com

ଓ ଘଟଣା ଦ୍ୱାରା ସୁସଜ୍ଜିତ । ସରଳ, ତରଳ ଭାଷାରେ ଲିଖିତ ଏହି ପୁସ୍ତକଗୁଡ଼ିକର ଶବ୍ଦ ସଂଯୋଜନା ଯେପରି ସହଜ ଭାବ ପ୍ରେଷଣ କ୍ଷମତାରେ ମଧ୍ୟ ସେପରି ମଧୁର ତଥା ପ୍ରାଞ୍ଜଳ । ପଠନ୍ ମାତ୍ରକେ ଏହା ପାଠକ ପ୍ରାଣରେ ମଧୁର ମଧୁ ମୂର୍ଚ୍ଛନାର ଅଙ୍କୁରୋଦ୍‌ଗମ କରେ । ଏହି ମଧୁର ମଧୁ ମୂର୍ଚ୍ଛନାର ଉଦ୍‌ବେଳନ ଶିଶୁର ମନୋରାଜ୍ୟକୁ ପ୍ରଭାବିତ କରି ଜାତ କରେ ଭାବ ଶିହରଣ । ଯାହା ଫଳରେ ଶିଶୁର ମାନସିକ ଜଗତରେ ଅନୁରଣନ ସୃଷ୍ଟିକରି ବିକଶିତ ହେବା  ସହ ତ଼ାକୁ ସତ୍ ପଥରେ ପରିଚାଳିତ ହେବା ନିମନ୍ତେ ପ୍ରୋତ୍ସାହିତ କରିଥାଏ । ଏହା ହେଉଛି ଡକ୍ଟର ସାହୁଙ୍କ ସର୍ଜନାତ୍ମକ ଶିଶୁ ସାହିତ୍ୟର ଭାବ ସୌନ୍ଦର୍ଯ୍ୟ ତଥା ବୈଶିଷ୍ଟ୍ୟ ।

ସାରସ୍ୱତ ଶିଳ୍ପୀ ଡକ୍ଟର ସାହୁଙ୍କ ସାହିତ୍ୟ ଜଗତର ଅନ୍ୟ ଏକ ପ୍ରମୁଖ ବିଭାଗ ହେଉଛି ପ୍ରବନ୍ଧ ଓ ସମାଲୋଚନା । ବିଭିନ୍ନ ପତ୍ରପତ୍ରିକାରେ ଶ୍ରୀଜଗନ୍ନାଥ, ବିଭିନ୍ନ ବ୍ୟକ୍ତିତ୍ୱ, ଶିଶୁ ସାହିତ୍ୟ, କୋରାପୁଟ ସମ୍ପର୍କିତ, ଭାଷା ଓ ସାହିତ୍ୟ ସମ୍ପର୍କିତ ପ୍ରକାଶିତ ଶତାଧିକ ପ୍ରବନ୍ଧ ଓ ସମାଲୋଚନା ସହିତ 'ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା'(୧୯୯୪), 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' (୧୯୯୬), 'ସାମ୍ପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ' (୨୦୦୦), 'ଓଡ଼ିଆ ଶିଶୁ ସାହିତ୍ୟ ସହାୟକ ପାଠ୍ୟସୂଚୀ'(୨୦୦୨)ପ୍ରଭୃତିକୁ ଅଧ୍ୟୟନ ତଥା ଅନୁଧ୍ୟାନ କଲେ ତନ୍ମଧ୍ୟରେ ତାଙ୍କର ସାହିତ୍ୟ ସାଧନାରେ ଥିବା ଗଭୀର ଅଧ୍ୟବସାୟ, ପ୍ରଗାଢ଼ ଆନ୍ତରିକତା, ନିଷ୍ଠାପରତା ସହ ପ୍ରଚଣ୍ଡ ଜିଜ୍ଞାସାବୋଧ, ଯୁକ୍ତିପ୍ରବଣତା, ଚିନ୍ତାର ମୌଳିକତା, ପରିବେଷଣରେ ସାଧୁତା ପ୍ରଭୃତିର ମୁଦ୍ରାଙ୍କ ସ୍ପଷ୍ଟ ରୂପେ ବାରି ହୋଇଯାଏ । ପାଠକକୁ ଆକର୍ଷିତ କରିବା ସହିତ ଭାବରାଜ୍ୟରେ ବିଚରଣର ସୁଯୋଗ ଦେବା ପାଇଁ ଡକ୍ଟର ସାହୁଙ୍କର ପ୍ରଚେଷ୍ଟା ଅତ୍ୟନ୍ତ ପ୍ରଶଂସନୀୟ । ଡକ୍ଟର ସାହୁଙ୍କର କୃତିଗୁଡ଼ିକୁ ଅନୁଧ୍ୟାନ କଲେ ମନେ ହୁଏ ଆପଣାର ଧାରଣାକୁ ମୁକ୍ତାକାଶର କକ୍ଷହୀନ ଲକ୍ଷ୍ୟଚ୍ୟୁତ ବିହଙ୍ଗମ ଭଳି ବିଚରଣ କରିବାକୁ ନଦେଇ ତାହା ପ୍ରତି  ବିଶ୍ୱସ୍ତ ରହିବା ହେଉଛି ତାଙ୍କ ପ୍ରକୃତିର ବୈଶିଷ୍ଟ୍ୟ ।

ତାଙ୍କର ଅନ୍ୟ ଏକ ବଳିଷ୍ଠ ବିଭାବ ହେଉଛି ସାଂଗଠନିକ ପ୍ରତିଭା ଓ ସମ୍ପାଦନା ଦକ୍ଷତା । ଜନ୍ମଭୂମି କୁସୁପୁର ଠାରୁ କର୍ମଭୂମି ସୁନାବେଡ଼ା ପର୍ଯ୍ୟନ୍ତ ଏହାର ବୈଚିତ୍ର୍ୟମୟ ବ୍ୟାପ୍ତି । ଧାର୍ମିକ ହେଉ କିମ୍ବା ସାରସ୍ୱତ ଅନୁଷ୍ଠାନ ହେଉ ତାହା ସହିତ ନିଃସ୍ୱାର୍ଥପର ଭାବେ ସମ୍ପର୍କର ଡୋରିକୁ ନିବିଡ଼ତାର ସହ ଦୃଢ଼ ବନ୍ଧନରେ ବାନ୍ଧି ଦେବା ହେଉଛି ତାଙ୍କ ଜୀବନର ଅନ୍ୟ ଏକ ଗୁରୁତ୍ୱ ପୂର୍ଣ୍ଣ ବୈଶିଷ୍ଟ୍ୟ । ସେଥି ସକାଶେ ସୁନାବେଡ଼ାର ଶ୍ରୀଜଗନ୍ନାଥ ମନ୍ଦିର ଠାରୁ ଉତ୍କଳ ସାଂସ୍କୃତିକ ପରିଷଦ ପର୍ଯ୍ୟନ୍ତ ବିଭିନ୍ନ ଅନୁଷ୍ଠାନର ପତ୍ରପତ୍ରିକା, ସ୍ମରଣିକା ଠାରୁ ପୁସ୍ତକ ସମ୍ପାଦନାକୁ ନିଜର ନୈତିକ କର୍ତ୍ତବ୍ୟ ତଥା ଦାୟିତ୍ୱ



Digitized by srujanika@gmail.com

ରୂପେ ସେ ବାଛି ନେଇଥିବା ପରି ମନେ ହୁଏ । ଏଥିରେ ସ୍ୱାର୍ଥ କିମ୍ବା ଆଞ୍ଚଳିକତାର ମୋହକୁ ସ୍ଥାନ ନଦେଇ ସେ କେବଳ ଅନୁଷ୍ଠାନକୁ ବିଶେଷ ଗୁରୁତ୍ୱ ଦେଇଥିବାରୁ ସେଗୁଡ଼ିକ ଅତ୍ୟନ୍ତ ରୁଚିକର, ସୁଖପାଠ୍ୟ ଓ ସଂଗ୍ରହଣୀୟ ହୋଇପାରିଛି । ସୁନାବେଡ଼ା ଶ୍ରୀଜଗନ୍ନାଥ ମନ୍ଦିରରୁ ପ୍ରତି ବର୍ଷ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଅବସରରେ ପ୍ରକାଶ ପାଉଥିବା 'ସ୍ୱର୍ଣ୍ଣକ୍ଷେତ୍ର' ହେଉ କିମ୍ବା ଉତ୍କଳ ସାଂସ୍କୃତିକ ପରିଷଦରୁ ଆତ୍ମପ୍ରକାଶ କରିଥିବା 'କୃଷ୍ଣଚନ୍ଦ୍ର ଗଜପତି' (୨୦୦୭), 'ଉତ୍କଳଗୌରବ ମଧୁସୂଦନ' (୨୦୦୮), 'ବ୍ୟାସକବି ଫକୀରମୋହନ' (୨୦୦୯), 'ଉତ୍କଳମଣି ଗୋପବନ୍ଧୁ' (୨୦୧୦), 'ସ୍ୱଭାବକବି ଗଙ୍ଗାଧର' (୨୦୧୧) ଓ 'ସୁନାବେଡ଼ା ବିଶେଷାଙ୍କ' (୨୦୧୨) ପ୍ରଭୃତି ସ୍ମରଣିକାର ବିଶେଷ ସଂଖ୍ୟାକୁ ଏହାର ଉଦାହରଣ ରୂପେ ନିଆଯାଇପାରେ । ଏତଦ୍ ବ୍ୟତୀତ ସୁନାବେଡ଼ା ବାହାରେ ଏହାଙ୍କର ସଂଗଠନ ପ୍ରତିଭା ଓ ସମ୍ପାଦନାର ସୌକୁମାର୍ଯ୍ୟ ପରିଲକ୍ଷିତ ହୋଇଥାଏ ।

ଡକ୍ଟର ସାହୁଙ୍କ ସାରସ୍ୱତ ଜୀବନ ଏହି ଭଳି କର୍ମ ତତ୍ପର ରହିବା ସହିତ ବ୍ୟକ୍ତିଗତ ଜୀବନରେ ସେ ହୋଇଛନ୍ତି ଅତ୍ୟନ୍ତ ଉଦାର, ଧୈର୍ଯ୍ୟବାନ୍, ନୀତିବାନ୍, ନିରହଂକାରୀ, ଦରଦୀ, ହୃଦୟବାନ୍ ଓ ମାନବିକ ମୂଲ୍ୟବୋଧରେ ବିଶ୍ୱାସ କରୁଥିବା ବ୍ୟକ୍ତି । କର୍ମକ୍ଷେତ୍ର ପ୍ରତି ଥିବା ତାଙ୍କର ମମତ୍ୱବୋଧ ଅନ୍ୟମାନଙ୍କ କ୍ଷେତ୍ରରେ କ୍ୱଚିତ୍ ଦେଖିବାକୁ ମିଳିଥାଏ । ସେ ଜଣେ ନିରଳସ କର୍ମୀ, ଖୁବ୍ ଚୁପ୍ ଚାପ୍ ଓ ଅଧ୍ୟବସାୟୀ ।

ସମୟ ଚକ୍ରର ଆହ୍ୱାନରେ ଆଜି ସେ ଚାକିରି ଜୀବନର ଦାସତ୍ୱ ବନ୍ଧନରୁ ମୁକ୍ତ ହେବାକୁ ଯାଉଛନ୍ତି । ଅବସରକାଳୀନ ଜୀବନରେ ନିଜର ନିରଳସ ସାଧନା ତଥା କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିବା ସହ ଦୀର୍ଘାୟୁ ହୁଅନ୍ତୁ ଓ ନିଜ ନାମର ସାର୍ଥକତାକୁ ରକ୍ଷା କରିବାରେ ସମର୍ଥ ହୁଅନ୍ତୁ ଏତିକି ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ବିନମ୍ର ପ୍ରାର୍ଥନା ।



(ଅବସରପ୍ରାପ୍ତ ପ୍ରଫେସର)
ଚନ୍ଦ୍ରପ୍ରଭା ସାହି-୨
ବ୍ରହ୍ମପୁର-୭୬୦୦୧, ଗଞ୍ଜାମ
ମୋ-୯୪୩୮୩୨୩୩୨୦
Email : purnachandramishra.99@gmail.com



Digitized by srujanika@gmail.com

# ଏକ ଅନାବିଳ ବ୍ୟକ୍ତିତ୍ୱ
# ଡକ୍ଟର ବସନ୍ତ କିଶୋର ସାହୁ

**ଅନିଲ ଚନ୍ଦ୍ର ଦାଶ**

ମନୁଷ୍ୟ ଜୀବନର ସାତଟି ପ୍ରମାଦକୁ ବିଜ୍ଞ ବ୍ୟକ୍ତିମାନେ ନିର୍ଦ୍ଧାରଣ କରିଛନ୍ତି । ଯିଏ ଯେଉଁ କର୍ମ ଦ୍ୱାରା ଉଚ୍ଚ ସୋପାନକୁ ଆରୋହଣ କରିଥାଏ ସେଥିରେ ଯଦି କିଛି କଳୁଷ ବା ଦୁର୍ନୀତି ଲୁକ୍‌କାୟିତ ହୋଇଥାଏ ତାହା ହେଲେ ପରବର୍ତ୍ତୀ ସମୟରେ ସେହି ଉଚ୍ଚାସନ ପ୍ରାପ୍ତ ବ୍ୟକ୍ତିଟି ସମାଲୋଚନାର ପରିଧି ମଧ୍ୟକୁ ଚାଲିଆସେ । ସେହି ନିର୍ଦ୍ଧାରିତ ପ୍ରମାଦ ଗୁଡିକ ହେଉଛି-୧) କର୍ମ ବିହୀନ ଉପାର୍ଜନ, ୨) ବିବେକ ବିହୀନ ଆନନ୍ଦ, ୩) ଚରିତ୍ର ବିହୀନ ଜ୍ଞାନ, ୪) ନୈତିକ ବିହୀନ ବ୍ୟବସାୟ, ୫) ମାନବିକତା ବିହୀନ ବିଜ୍ଞାନ, ୬) ତ୍ୟାଗ ବିହୀନ ଉପାସନା, ୭) ନୀତି ବିହୀନ ରାଜନୀତି । କିନ୍ତୁ ଆମ ସମାଜରେ ଏପରି ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କ ବ୍ୟକ୍ତିତ୍ୱ ନିକଟରେ ସପ୍ତ ପ୍ରମାଦ ହାରିଯାଏ ଏବଂ ମଳିନ ପଡିଯାଏ । ସେହି ବରେଣ୍ୟ ବ୍ୟକ୍ତିଙ୍କ ମଧ୍ୟରେ ଓଡିଆ ଶିଶୁ ସାହିତ୍ୟର ସର୍ବଗୁଣ ସଂପନ୍ନ ପ୍ରତିଭାଧର ଡଃ. ବସନ୍ତ କିଶୋର ସାହୁ ଅନ୍ୟତମ । ତାଙ୍କର ନିରଳସ ଜୀବନ ଶୈଳୀ, ପବିତ୍ର ହୃଦୟବତ୍ତା, ବ୍ୟକ୍ତି ସଂପର୍କ, ଛାତ୍ର ବତ୍ସଳତା, ସହୃଦୟତା, ପରୋପକାରିତା, ଅହଂଭାବଶୂନ୍ୟତା ଓ ସର୍ବୋପରି ଅନ୍ୟକୁ ବିକାଶଧାରାରେ ସାମିଲ କରିବା ଦିଗରେ ଯେଉଁ ଉତ୍କର୍ଷତା ପରିଦୃଷ୍ଟ ହୁଏ ସେଥିପାଇଁ କେବଳ ଅବିଭକ୍ତ କୋରାପୁଟ ଜିଲ୍ଲା ନୁହେଁ ସମଗ୍ର ଓଡିଶାରେ ସେ ପରିଚିତ ।

ଶ୍ରୀଯୁକ୍ତ ସାହୁ ପେଷାରେ ଜଣେ ଅଧ୍ୟାପକ ହେଲେ ମଧ୍ୟ ନିଶାରେ ଜଣେ ସାହିତ୍ୟିକ । ବିଶେଷ କରି ଓଡିଆ ସାହିତ୍ୟର ଏକ ଅନିବାର୍ଯ୍ୟ ଦିଗ ଅର୍ଥାତ୍ ଶିଶୁ ସାହିତ୍ୟ ଦିଗରେ ଗତି କରି ପିଏଚ୍.ଡି ଡିଗ୍ରୀ ହାସଲ କରିବା ସହିତ ଓଡିଶାର ଅସଂଖ୍ୟ ଶିଶୁ ଓ ପାଠକପାଠିକାଙ୍କୁ ଯେଉଁ ସ୍ପନ୍ଦନ ଓ ସାରଲ୍ୟ ଭାବର ମଧୁକ୍ଷରଣ ଆସ୍ୱାଦନ କରାଇଛନ୍ତି ତାକୁ ଓଡିଆ ଭାଷା ସାହିତ୍ୟର ସତୀର୍ଥମାନେ କେବେ ହେଲେ ଭୁଲିପାରିବେ ନାହିଁ । ଏଣୁ ଯଥାର୍ଥରେ ପଲ୍ଲିକବି କହିଛନ୍ତି -

" ନଶ୍ୱର ଦେହରେ ଯୌବନ କୁସୁମ
ଫୁଟି ଦୁଇଦିନେ ଝଡେ,



Digitized by srujanika@gmail.com

ଚିରନ୍ତନ ପ୍ରୀତି ତ୍ରିଦିଵ କୁସୁମ
ଫୁଟି ଦିନୁ ଦିନ ବଢେ ।।”

ତାଙ୍କର କବି ପ୍ରାଣରେ ଯାହାସବୁ ଜାଗରିତ ହୋଇଥାଏ ସେ ସବୁକୁ ସେ ଅକୁଣ୍ଠ ଚିତ୍ତରେ ବାଣ୍ଟି ଦେଇଛନ୍ତି ସରଳ ଓ ନିଷ୍ପାପ ଶିଶୁମାନଙ୍କୁ । ନାହିଁ ସେଥିରେ ଦ୍ୱନ୍ଦ, ନାହିଁ ସେଥିରେ ମନ୍ଦ ବରଂ ଝରିଯାଏ ସେଥିରେ ପ୍ରାଣ ପ୍ରାଚୁର୍ଯ୍ୟର ମକରନ୍ଦ । ସେଥିପାଇଁ ତାଙ୍କୁ ଦେଖିବାକୁ ମିଳେ ମୀନାବଜାର, ଶାମୁକା, ପରଶମଣି, ଝୁମୁକା, ବାଲିଘର, ନନ୍ଦନ କାନନ, ବିଲୁଆ ନନା, କାଗଜ ଡଙ୍ଗା, ସରଗତାରା ଓ ମଣିମୁକ୍ତା ଇତ୍ୟାଦି ଶିଶୁ କିଶୋର ପତ୍ରିକାରେ ବିଭିନ୍ନ ଉପଚାର ତଥା ସଦାଚାରର ଅପୂର୍ବ ସମ୍ଭାରରେ ।

ଆମ ଶିଶୁ ସାହିତ୍ୟର ରଂଗମଞ୍ଚରେ ଶ୍ରୀଯୁକ୍ତ ସାହୁ ଏକ ସଫଳ ନାୟକ । କେତେବେଳେ ଗାଳ୍ପିକ, କେତେବେଳେ କବି, ଅନେକ ସମୟରେ ଲୋକକଥାର ସଫଳ ଉପସ୍ଥାପକ ଏବଂ କେତେକ ସ୍ଥାନରେ ଚରିତ୍ର ଗଠନ ଦିଗରେ ଶିଶୁମାନଙ୍କର ଅଦୃଶ୍ୟ ଶିକ୍ଷକ ଭାବରେ ଅବତୀର୍ଣ୍ଣ ହୋଇ ସମାଜର ତଳ ପାହାଚକୁ ଶକ୍ତ କରିବାର କୌଶଳ ଓ ଉପକୌଶଳର ଚିନ୍ତାନାୟକ ଭାବରେ ଉପସ୍ଥିତ । ପରଶମଣିରେ “ମହାଜନ ଝିଅ ଓ ମାକେଡୀ କଥା” ଏକ ଉଚ୍ଚକୋଟୀର ଲୋକଗଳ୍ପ । ସେ ଗଳ୍ପଟି କେବଳ ପିଲାମାନଙ୍କ ମନକୁ ଛୁଇଁନି ବରଂ ବୟସ୍କମାନଙ୍କ ପାଇଁ ଉଦାହରଣ ପାଲଟିଛି । ଶାମୁକା ପତ୍ରିକାରେ ଶ୍ରୀଯୁକ୍ତ ସାହୁଙ୍କର “ଅରଡ ଚଢେଇ ବରଡ ପକ୍ଷୀ” କବିତାଟି ଆଦର୍ଶ ମଣିଷ ଭାବରେ ବଞ୍ଚିବା ପାଇଁ ଶିଶୁମାନଙ୍କୁ ଏକ ଶୃଙ୍ଖଳିତ ଆହ୍ୱାନ । ସେଥିରେ ସେ ଲେଖିଛନ୍ତି -

“ସ୍ନେହ ଓ ମମତା ସଭିଙ୍କୁ ଦିଅ,
ମିଠାକଥା କହି ମନଟି ନିଅ ।
ପରର ଦୁଃଖରେ ହୋଇଲେ ଦୁଃଖୀ,
ତେବେ ଯାଇ ତୁମେ ହୋଇବ ସୁଖୀ ।”

ଡଃ. ମନୀନ୍ଦ୍ର ମହାନ୍ତିଙ୍କର ତତ୍ତ୍ୱାବଧାନରେ ଓଡିଶା ଶିଶୁ ସାହିତ୍ୟ ଗବେଷଣା ପରିଷଦ ଗଠିତ ହୋଇଥିଲା ୧୯୭୯ ମସିହାର ଏକ ଶୁଭ ମୁହୂର୍ତ୍ତରେ । ଉଦ୍ଦେଶ୍ୟ ଥିଲା ସୃଷ୍ଟି କରିବା ଅନେକ ଶିଶୁ ଲେଖକ, ପାଠକ ଓ ଗବେଷକ । ଯାହାର ଏକ ସମାନ୍ତରାଳ ଚିନ୍ତାଧାରାରେ ଓଡିଶାର ଶିଶୁ ସାହିତ୍ୟ ବିକଶିତ ହେବା ସହିତ ପୁଷ୍ଟି ବର୍ଦ୍ଧକ ହୋଇ ସର୍ବଭାରତୀୟ ସ୍ତରରେ ନିଜସ୍ୱ ଗରିମା ଅକ୍ଷୁର୍ଣ୍ଣ ରଖିବ । ଏହି ମହାନ ଅଭିଯାନର ପ୍ରେରଣାଦାତା ଥିଲେ ଅଖିଳ ଭାରତୀୟ ଶିଶୁ ସାହିତ୍ୟ ପରିଷଦର ସମ୍ପାଦକ ଶ୍ରୀଯୁକ୍ତ ରବିରଂଜନ ଚାଟାର୍ଜୀ । ସେଥିରେ ଡଃ.ଜଗନ୍ନାଥ ମହାନ୍ତି, ଡଃ. ଜାନକୀ ବଲ୍ଲଭ ମହାନ୍ତି, ଡଃ.କୃଷ୍ଣ ଚରଣ ବେହେରା, ଡଃ. ଅଧିକାରୀ ଏସ୍. ଦାଶ ଏବଂ ସାଉଦୀ ଆରବର



Digitized by srujanika@gmail.com

ରିଆଜରେ ରହୁଥିବା ବିଶିଷ୍ଟ ଶିଶୁ ଗବେଷକ ଡଃ. ଏ.କେ. ମହାନ୍ତି ଆଦି ଉପଦେଷ୍ଟା ମଣ୍ଡଳୀରେ ସ୍ଥାନୀତ ହୋଇଥିଲେ । ଲକ୍ଷ୍ୟଥିଲା ସେ ସମୟରେ ଓଡିଶାର ୧୩ଟି ଜିଲ୍ଲାରେ ଗୋଟିଏ ଲେଖାଏଁ କର୍ମଶାଳା କରି ଶିଶୁ ସାହିତ୍ୟର ବ୍ୟାପ୍ତି ଓ ବିଶାଳତାକୁ ଚିହ୍ନଟୀକରଣ କରିବା । ଏ ମହତ୍ ଉଦ୍ଦେଶ୍ୟର ଏକ ସଫଳ ଭାଗୀଦାର ଥିଲେ ଡଃ. ବସନ୍ତ କିଶୋର ସାହୁ । କର୍ମଶାଳାର ପ୍ରତ୍ୟେକ କ୍ଷେତ୍ରରେ ଡଃ. ମହାନ୍ତିଙ୍କ ସହିତ ଡଃ. ସାହୁ କୃଷ୍ଣ ଅର୍ଜ୍ଜୁନ ସଂପର୍କ ରଖି ଅଗ୍ରଗତି କରିଥିଲେ ।

ସେ ଦିନର କଥା ମୋର ସ୍ପଷ୍ଟ ମନେ ପଡୁଛି । ତାହା ଥିଲା ୧୯୯୩ ମସିହା ଡିସେମ୍ବର ମାସ ୩୧ ତାରିଖ । କଟକ ପାରାଦ୍ୱୀପ ରାଜପଥ ପାର୍ଶ୍ୱରେ ଥିବା ରାହାମା ଆଦିକବି ଶାରଳା ଦାସ ମହାବିଦ୍ୟାଳୟରେ ଗବେଷଣା ପରିଷଦର ଏକାଦଶ କର୍ମଶାଳା ତିନିଦିନ ଧରି ପାଳିତ ହେଉଥାଏ । ଏଥିରେ ଆଲୋଚନା କରିବା ପାଇଁ ଓଡିଶାର ଅନେକ ବିଜ୍ଞ ଓ ପ୍ରାଜ୍ଞ ବ୍ୟକ୍ତି ବିଶେଷ ନିମନ୍ତ୍ରିତ ହୋଇଥିଲେ । ଶେଷ ଦିନରେ ଏକ ବସ୍ତୁଦୃଶ୍ୟ କବିତା ଲିଖନର କାର୍ଯ୍ୟକ୍ରମ ରହିଥାଏ । କୋରାପୁଟ ଜିଲ୍ଲା (ଅବିଭକ୍ତ) ତରଫରୁ ବସନ୍ତ ବାବୁ ମୋ ନାମଟି ପ୍ରତିଯୋଗିତାରେ ଭାଗନେବାକୁ ଲେଖାଇ ଦେଇ କାର୍ଯ୍ୟବ୍ୟସ୍ତତା ଯୋଗୁ କହିବାକୁ ଭୁଲି ଯାଇଥିଲେ । ଯଥା ସମୟରେ କବିତା ଲିଖନ ପ୍ରତିଯୋଗିତା ଆରମ୍ଭ ହୋଇଗଲା । ଶ୍ରୀଯୁକ୍ତ ସାହୁ ମୋତେ ନ ଦେଖି ବ୍ୟସ୍ତ ବିବ୍ରତ ହେଲେ ଏବଂ ଡଃ. ହୃଷୀକେଶ ମଲ୍ଲିକଙ୍କ ଠାରୁ ମୋର ଉପସ୍ଥିତି ଚା ଦୋକାନ ପାଖରେ ଥିବା ଜାଣି ସେଠାକୁ ଦୌଡି ଦୌଡି ଗଲେ ଏବଂ ମୋତେ କବିତା ଲିଖନ ପ୍ରକୋଷ୍ଠରେ ବସାଇଥିଲେ । ସେତେବେଳକୁ ସାତ ମିନିଟ ସମୟ ଅତିକ୍ରମ କରିଯାଇଥାଏ । ସୌଭାଗ୍ୟର କଥା ସେ ଦିନର ସେହି କବିତା ଲିଖନ ସୋପାନରେ ସର୍ବ ଶ୍ରେଷ୍ଠ କବିତା ପାଇଁ ମୋତେ ଡଃ. କୃଷ୍ଣ ଚରଣ ବେହେରା ଓ ଡଃ. ଜଗନ୍ନାଥ ମହାନ୍ତି ପ୍ରଥମ ପୁରସ୍କାର ପ୍ରଦାନ କରି ସମ୍ବର୍ଦ୍ଧିତ କରିଥିଲେ । ବସନ୍ତ ବାବୁଙ୍କର ସେ ଦିନର ସେହି ସହୃଦୟତା ମୋତେ ଶେଷରେ ଜାତୀୟ ସ୍ତରରେ ପହଞ୍ଚିବା ପାଇଁ ଅନେକ ଖୋରାକ ଯୋଗାଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନି ।

ଇଂରାଜୀରେ କୁହାଯାଏ - "Never find your delight in another's misfortune." ଅର୍ଥାତ୍ ଅନ୍ୟର ଦୁଃସମୟରେ ତୁମେ ତୁମର ସୌଭାଗ୍ୟ ଚିତ୍ର କରନା । ଏହି ପରିପ୍ରେକ୍ଷୀରେ ଡଃ. ବସନ୍ତ କିଶୋର ସାହୁଙ୍କର ଭୂମିକାକୁ ବିଚାର କରିବା ନିଶ୍ଚୟ ଦରକାର । ସେ କେବଳ ଜଣେ ସାରସ୍ୱତ ସାଧକ ନୁହଁନ୍ତି ବରଂ ନିଜର ପୃଷ୍ଠପୋଷକତା ତଥା ସୌଜନ୍ୟତାର ପରାକାଷ୍ଠାକୁ ସାକାର କରିବା ପାଇଁ ଅନେକ ଲେଖକ, ପାଠକ ଓ ଗବେଷକ ସୃଷ୍ଟି କରିଛନ୍ତି । ଏହା କ'ଣ ତାଙ୍କର ଶ୍ରେଷ୍ଠ ସାମାଜିକ



Digitized by srujanika@gmail.com

ସ୍ୱୀକୃତି ନୁହେଁ କି ? ତାଙ୍କର ଏତାଦୃଶ ମହନୀୟ ପଦକ୍ଷେପ ପାଇଁ ତାଙ୍କ ମନରେ ନାହିଁ ଆବିଳତା ଅଥବା ଅହଂ ଭାବନାର ସଂକୀର୍ଣ୍ଣତା । ଏହାର ଏକ ମାତ୍ର କାରଣ ସେ ଜାଣିଛନ୍ତି ଗୋଟିଏ ଦୀପ ଅନ୍ୟ ଗୋଟିଏ ଦୀପକୁ ଆଲୋକିତ କରିବାରେ ସାହାଯ୍ୟ କରୁ କିନ୍ତୁ ହୀନମନ୍ୟତାର କଳଙ୍କରେ ଲିଭି ନ ଯାଉ । ୧୯୯୫ ମସିହା ଅକ୍ଟୋବର ମାସରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ତ୍ରୟୋଦଶ ବା ପୂର୍ଣ୍ଣାହୁତି କର୍ମଶାଳା ବାଣୀବିହାର ପରିସରରେ ଅନୁଷ୍ଠିତ ହୋଇଥିଲା । ସେଠାରେ ଆସାମ, ପଶ୍ଚିମବଂଗ, ବିହାର ଓ ମଣିପୁରର ସାହିତ୍ୟିକ, କବି, ଗାଳ୍ପିକ ଓ ସମ୍ପାଦକମାନଙ୍କ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଥିଲା ଏକ ଅପୂର୍ବ ସୁଯୋଗ । ସେ ମଧୁମୟ ସୁଯୋଗର ଏକମାତ୍ର ସେତୁ ଥିଲେ ଡଃ. ବସନ୍ତ କିଶୋର ସାହୁ । ସଂସ୍କୃତରେ କୁହାଯାଏ -

ସୁଲଭଃ ପୁରୁଷା ରଜନ୍ ସତତଂ ପ୍ରିୟବାଦିନ ?
ଅପ୍ରିୟସ୍ୟ ଚ ପଥ୍ୟସ୍ୟ ବକ୍ତା ଶ୍ରୋତା ଚ ଦୁର୍ଲଭଃ ॥

ପ୍ରିୟବାଦୀ ଲୋକ ସର୍ବଦା ସହଜ ଲଭ୍ୟ । କିନ୍ତୁ ଅପ୍ରିୟ ହିତକାରି ବାକ୍ୟର ବକ୍ତା ଯେପରି ଦୁର୍ଲଭ, ଶ୍ରୋତା ମଧ୍ୟ ସହିପରି ଦୁର୍ଲଭ । ଏହା ଏପରି ହୋଇପାରେ ଅପ୍ରିୟ କଥା କହୁଥିବା ବ୍ୟକ୍ତି ନିଶ୍ଚିତ ଦୁର୍ଲଭ । ତାହା ହୋଇ ନଥିଲେ ସେଦିନ ରାହାମା କର୍ମଶାଳାରେ ଡଃ. ସାହୁ କହିନଥାନ୍ତେ - " ମୁଁ ସିନା ସମୟର ସଠିକ୍ ସୂଚନା ଦେଇନଥିଲି କିନ୍ତୁ ଅତୁଟ ବିଶ୍ୱାସ ରଖିଥିଲି ।" ଡଃ. ସାହୁଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ୧୯୯୩ ମସିହା ଏପ୍ରିଲ ମାସରେ । ସେ ଦିନ ସେମିଳିଗୁଡା ଠାରେ ଅନୁଷ୍ଠିତ ହେଉଥିଲା, ଓଡିଆ ଲେଖକ ଓ ପାଠକ ମାନଙ୍କର ସମ୍ମେଳନ ତଥା ଆଲୋଚନା ଚକ୍ର ଏବଂ କବିତା ପାଠ । ସେ ବାସ୍ତବରେ ଜଣେ ଭିନ୍ନ ସ୍ୱାଦର ମଣିଷ । ତାଙ୍କର ପ୍ରତ୍ୟୟ, ଶ୍ରେୟଃ, ଅନୁମେୟ, ଅନୁନୟ ଓ ଅମେୟ ଅଭିବ୍ୟକ୍ତି କେବଳ ନିଜ ପାଇଁ ନୁହେଁ ଅନ୍ୟ ପାଇଁ ଉଦ୍ଦିଷ୍ଟ ଓ ଉତ୍ସର୍ଗୀକୃତ । ଏଣୁ ସନ୍ଥକବିଙ୍କ ଭାଷାରେ -

" ଏକଖଣ୍ଡ ହାଡ ବୁନ୍ଦାଏ ରୁଧିର
ଫୁଟେ ମାଉଁସ ଜାଣଇ,
ଏଣୁ କରି ସିନା ପ୍ରାଣୀଙ୍କ ବିକଳ
ସହି ନ ପାରିବି ମୁହିଁ ।"

ଏହି ପ୍ରଚଣ୍ଡ ମାନବବାଦୀ କବିଙ୍କର ସତ୍ୟକୁ ପ୍ରତିଷ୍ଠା କରିବା ଦିଗରେ ଯେଉଁ ଉତ୍ସର୍ଗ ରହିଛି ତାକୁ ସମୟ ହଜମ କରିପାରିବ ନାହିଁ । ଠିକ୍ ସେହିପରି ଓଡିଆ ଶିଶୁ ସାହିତ୍ୟର ଏହି ମହାନ୍ ବ୍ୟକ୍ତିଙ୍କର ସେହି ଗ୍ରାମ୍ୟ ଗୀତି ଓ ଶିଶୁ ସୁଲଭ ସଂପ୍ରୀତି ଗାଁ



Digitized by srujanika@gmail.com

ଦାଣ୍ଡର ହେଉ କି ସହରୀ ସଭ୍ୟତାର ହେଉ ପ୍ରତ୍ୟେକ ପିଲାଙ୍କୁ ଆମୋଦିତ କରୁଛି ଏବଂ କରୁଥିବ । ସେ ଝୁଲାମୁଣି କାନ୍ଧରେ ପକାଇ ଯାଇଛନ୍ତି ସହରର ଆସରକୁ ଏବଂ ଅପହଞ୍ଚ ଗାଡଗୁଣ୍ଡାଳ ଭଳି ଗ୍ରାମ୍ୟ ପରିବେଶକୁ । ନାହିଁ ମନରେ ଦ୍ୱିଧା ଅବା ପ୍ରତିକ୍ରିୟା କେବଳ ରହିଛି ତାଙ୍କ ବ୍ୟକ୍ତି ସତ୍ତାରେ ଗୋଟିଏ ଚିନ୍ତାର ସୁଶୀତଳ ଛାୟା ତାହା ହେଉଛି - " Do not search for joy in things, search within yourself."

ଶେଷରେ ଏତିକି ଉପସ୍ଥାପନା କରୁଛି ଯେ, ନିକଟରେ ସେ ଅବସର ନେବାକୁ ଯାଉଛନ୍ତି ନିଜର ମୌଳିକ ବୃତ୍ତିରୁ । କିନ୍ତୁ ସେ ଯେଉଁଠି ଥାଆନ୍ତୁ ପଛେ ଭୁଲନ୍ତୁ ନାହିଁ ସତ୍ତା ସାହିତ୍ୟ ପରିଷଦ, ବର୍ଷା ସାହିତ୍ୟ ସଂସଦ, ବନପ୍ରଭା ସାହିତ୍ୟ ସଂସଦ, ଉତ୍କଳ ସାଂସ୍କୃତିକ ପରିଷଦ ଓ ତାଙ୍କ ପ୍ରିୟ ସତୀର୍ଥ ଭାଇ ଓ ଭଉଣୀମାନଙ୍କୁ । ଆମେ ତାଙ୍କ ଠାରୁ ପୁନଶ୍ଚ ନାନାବାୟା ଗୀତ, କୋକିଳ ସଂଗୀତ, ମିତରେ ମିତ, ଗାଉଁଲୀ ଗୀତ, ମାଟିର ଜଣାଣ, ସମୟର ମହକ ସଂପର୍କୀୟ ଭାବନାର ଅନେକ କିଛି ଆଶା କରୁ ଏବଂ ଆହୁରି ସେ ଏ ଅଞ୍ଚଳର ସାରସ୍ୱତ କ୍ଷେତ୍ରରେ ଅଧାଗଢା ଦେଉଳର ସଂପୂର୍ଣ୍ଣ କଳେବର ପାଇଁ ପ୍ରୟାସ କରି କିଛି ପାଦ ଅଗ୍ରସର ପାଇଁ ସାରସ୍ୱତ ମନସ୍କ ଭାବନାରେ ଆମକୁ ଆପ୍ଲୁତ କରାନ୍ତୁ ଏହାହିଁ ଈଶ୍ୱରଙ୍କୁ ପ୍ରାର୍ଥନା ।



ଜାତୀୟ, ରାଜ୍ୟ ଓ ସମାଜ ପୁରସ୍କାର ପ୍ରାପ୍ତ
ପ୍ରାକ୍ତନ ଶିକ୍ଷକ ତଥା ଆଜୀବନ ସଦସ୍ୟ
ଉତ୍କଳ ସାହିତ୍ୟ ସମାଜ,
କେନ୍ଦୁଗୁଡା, କୋରାପୁଟ



Digitized by srujanika@gmail.com

# ବସନ୍ତ ଗଳ୍ପମାନସ ଏକ ସମ୍ଭାବ୍ୟ ବିମର୍ଷ

ଡକ୍ଟର ରବୀନ୍ଦ୍ର ବିହାରୀ

ସାହିତ୍ୟର ସମସ୍ତ ବିଭାଗ ଓ ବିଭବକୁ ଅତି ବିଲକ୍ଷଣ ଭାବେ ସ୍ପର୍ଶ କରିଥିବା ବସନ୍ତ ସାହୁଙ୍କ 'ବସନ୍ତ କିଶୋର ଗଳ୍ପମାନସ' ଓଡ଼ିଆ କଥା ସାହିତ୍ୟରେ ଏକ ସ୍ୱର୍ଦ୍ଧିତ ଉଚ୍ଚାରଣ । ଏହି ସଂକଳନରେ ସ୍ଥାନୀତ ସମସ୍ତ ଗଳ୍ପ ମାନସିକ ଜଟିଳ ସ୍ଥିତି ସଂସର୍ଗ ଗତିଶୀଳ ଆଧୁନିକ ମଣିଷର ଜୀବନଚର୍ଯ୍ୟାଭିତ୍ତିକ ଏକ ଆଲେଖ୍ୟ । ବାଲ୍ୟକାଳରୁ ସ୍ମୃତି, ସ୍ୱପ୍ନ, କଳ୍ପନାପ୍ରବଣତା ଦେଇ ତାଙ୍କ ସୃଜନଶୀଳତା ଶିଶୁ-କିଶୋର ଗଳ୍ପ ଲିଖନଧାରା ଦେଇ କ୍ରମଶଃ ଉତ୍ତରିତ ହୋଇଛି । ସଂପ୍ରତି ସାଧାରଣ ମଣିଷର କଥାକୁ ନେଇ ସେ ଗଳ୍ପ ଲେଖୁଥିଲେ ବି ଆଦ୍ୟ କାଳୀନ ମାନସିକତାର ସଂକ୍ରମଣ ତାଙ୍କ ଗଳ୍ପଗୁଡ଼ିକରେ ବେଶ୍ ବାରି ହୋଇପଡେ ।

'ଯୁଗଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ' ଗଳ୍ପ, ଚିନ୍ମୟ-ଲିପିଙ୍କ ପ୍ରେମକାହାଣୀକୁ ଅବଲମ୍ବନ କରି ରଚିତ । ରୋମାଣ୍ଟିକ୍ ଭାବବଳୟକୁ ନେଇ ଆମ କଥା ସାହିତ୍ୟରେ ଅଜସ୍ର ଗଳ୍ପ ରହିଛି । ତେବେ ପ୍ରେମକୁ କେନ୍ଦ୍ର କରି ଏହି ଗଳ୍ପରେ ଥିବା ଅନେକ ସତେଜ ଅଭିବ୍ୟକ୍ତି ବ୍ୟକ୍ତି ମନର ଅବଦମିତ ଇଚ୍ଛା, ଯୌବନ ସୁଲଭ ଆବେଗ ପ୍ରବଣତା, ହୃଦୟବତ୍ତା, ମୁହୂର୍ତ୍ତ ସର୍ବସ୍ୱ ଚିନ୍ତାଚେତନା, ମାନ ଅଭିମାନ, ବିଚ୍ଛେଦ-ମିଳନ, ଅନୁତାପ ପଶ୍ଚାତ୍ତାପ, ତ୍ୟାଗ ତିତିକ୍ଷା ଭିତରେ ସମବେଦନା କିମ୍ବା ସମର୍ପଣର ଯେଉଁ ଅଫୁରନ୍ତ ପରିପ୍ରକାଶ ତାହା ବାସ୍ତବିକ ହୃଦ୍ୟ । କଲେଜ ଜୀବନର ଅଧ୍ୟୟନ ସହିତ ଯୁବସୁଲଭ ସ୍ୱପ୍ନ, ଚାକଚକ୍ୟ, ହଠାତ୍ ଭଲପାଇ ବସିବା, ଚିଠିଲେଖା, ପରସ୍ପର ପ୍ରତି ଥିବା ବିଶ୍ୱାସବୋଧ ପୁଣି ଜୀବନର ବାସ୍ତବ କ୍ଷେତ୍ରରେ ଏ ସବୁଠୁ ଦୂରେଇ ଏକ ନୂଆ ଜୀବନ ଜୀଇବାର ଯେଉଁ ସର୍ବକାଳୀନ ଯନ୍ତ୍ରଣା ରହିଛି ଯାହାକୁ ଗାଳ୍ପିକ ଯୁଗଯନ୍ତ୍ରଣା ବୋଲି ଅଭିହିତ କରିଛନ୍ତି । ପିତାମାତାଙ୍କୁ ସମ୍ମାନ ଦେବାକୁ ଯାଇ ନିଜ ଭଲ ପାଇବାକୁ ହତ୍ୟା କରିବାର ଦାବଦହନ ମୂଳରେ କେବଳ ଅନୁଶୋଚନାର ଲୁହ ବହିଯାଉଥିବ ଆଉ ଜନ୍ମରେ ମିଳିତ ହେବାପାଇଁ, ଦୁହେଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିବେ" ବକ୍ତବ୍ୟରୁ ଗାଳ୍ପିକଙ୍କ ପ୍ରେମାଭିବ୍ୟକ୍ତି ବେଶ୍ ସ୍ପଷ୍ଟ ।



Digitized by srujanika@gmail.com

'ସ୍ୱୟମ୍ବର'ରେ ତପତୀର ଅପେକ୍ଷା, ନାରୀ ମନସ୍ତତ୍ତ୍ୱ କଥା ହିଁ କହେ । ଅତୀତ ରୋମନ୍ଥନ ଭଲପାଇବାର ମୁହୂର୍ତ୍ତ ସବୁକୁ ବେଶ୍ ଭାବପ୍ରବଣତା ମନେ ହେଲେ ହେଁ ଅଙ୍ଗୀକାରବଦ୍ଧତାକୁ ସମ୍ମାନ ଦେବାର ଦାୟରେ ସେ ବହୁଦିନ ଯାଏ ଅବିବାହିତା ରହିବାକୁ ବାଧ ହୋଇଛି । ପରିବାର, ବନ୍ଧୁ ଓ ଆତ୍ମୀୟସ୍ୱଜନ ସାଙ୍ଗସାଥୀମାନଙ୍କର ଅଜସ୍ର ପ୍ରଶ୍ନବାଣରେ ସେ ଅତିଷ୍ଠ ହୋଇ ତା ଅନ୍ତରର ପ୍ରିୟତମ ନିକଟକୁ ଆସିବାର ଯେଉଁ ମାନସିକତା ପ୍ରକାଶ କରିଛି ତାହା ଗୋଟେ ନାରୀ ଭିତରେ ଖୁବ୍ କମ୍ ଦେଖାଯାଏ । ବିବାହର କୌଣସି ସୂଚନା ନଥିଲେ ମଧ ନିଜ ଭଲପାଇବା ଉପରେ ଥିବା ଆସ୍ଥା ଓ ବିଶ୍ୱାସ ପାଠକୀୟ ଉତ୍କଣ୍ଠାକୁ ଯେପରି ପ୍ରଶମିତ କରେ । ନାରୀ ଭିତରର ଇଚ୍ଛା, ପୁରୁଷ ପ୍ରତି ଥିବା ତାର ଆନୁଗତ୍ୟ, ନିଜେ ସାମନା କରୁଥିବା ଅସହାୟତା, ବ୍ୟର୍ଥତା, ହତାଶା, ବିଡମ୍ବନା ଯେତେ ଅସହ୍ୟବୋଧ ହେଲେ ହେଁ ସମାଜ ଆଗରେ ଭଲପାଇବାର ବଳିଷ୍ଠତାକୁ ପ୍ରମାଣ କରିବା ମାନସିକତା ଜୀବନ ଯନ୍ତ୍ରଣାର ପ୍ରତିଟି ପଦପାତରେ ପୁରୁଷର ସହଭାଗୀ ସହଯାତ୍ରୀ ହୋଇ ଛିଡ଼ା ହେବାର ଦମ୍ଭ ଏକ ସୁସ୍ଥ ପାରମ୍ପରିକ ଚରିତ୍ର ଭାବେ ନିଜକୁ ଯେମିତି ପ୍ରତିଷ୍ଠିତ କରିଛି ଗଳ୍ପ ନାୟିକା ତପତୀ ।

'ସଂପର୍କ'ରେ ଯୌତୁକ ପାଇଁ ସଂପର୍କ ଯୋଡ଼ି ହୋଇ ନଥିଲେ ମଧ ଏକ ରୁଗ୍‌ଣ ମାନସିକ ସ୍ଥିତି ଜନିତ ଅପମାନ ଗ୍ଲାନି ଅନ୍ତର୍ବେଦନା ଗଳ୍ପନାୟକ ହୃଦୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିଛି । ସମୟଚକ୍ରରେ ଭଲପାଇ ପ୍ରତ୍ୟାଖ୍ୟାନ କରିଥିବା କୌଣସି ଗରିବ ଘରର ଝିଅ ପରବର୍ତ୍ତୀ କାଳରେ ଜଣେ ପ୍ରତିପତ୍ତିଶାଳୀ ଉପରିସ୍ଥ ଅଫିସର ହୋଇପାରେ ଏ କଥା ବିଶ୍ୱାସଯୋଗ୍ୟ ନହେଲେ ମଧ ସତ୍ୟରେ ପରିଣତ ହୋଇଛି । ଅର୍ଥର ଅହମିକା, ପିତାଙ୍କ ମିଥ୍ୟା ଅହଙ୍କାର ପ୍ରତିପତ୍ତି ପାଖରେ ସେଦିନ ନୀରବରେ ଦିଲ୍ଲୀପ ତାର ଭଲପାଇବାକୁ ଅସୀକାର କରିଥିଲେ ହେଁ ପରବର୍ତ୍ତୀ କାଳରେ ତାର ପ୍ରେମିକା (ଉଚ୍ଚପଦସ୍ଥ ଅଫିସର) ପାଖରେ ଯେପରି ଲଜ୍ଜିତ ହୋଇଛି ତାହା ଗାଳ୍ପିକଙ୍କ ସମାଜତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ଏକ ନିଚ୍ଛକ ପରିଚୟ । ଧନଲୋଭି ମଣିଷ ସମୟ ସ୍ରୋତରେ କିଭଳି ହାସ୍ୟାସ୍ପଦ ହୁଏ ଆଉ ସପ୍ନର ସିଡ଼ି ଚଢ଼ିଲାବେଳେ ଭାଗ୍ୟ ତାକୁ କିଭଳି ତଳକୁ ଖସାଇ ପକାଏ ତାର ଏକ ଜ୍ୱଳନ୍ତ ପ୍ରତିଛବି ଏହି ଗଳ୍ପ । ସାଭିମାନକୁ ନେଇ ବଞ୍ଚିଥିବା ମଣିଷର ସାଧନା ଏବେବି ଅସଫଳ ହୁଏ ନାହିଁ, ଏହି ମନ୍ତ୍ର ଗାଳ୍ପିକଙ୍କୁ ବହୁ ଭାବରେ ପ୍ରେରିତ କରିଛି ।

'ସୀମା ଏକ ପ୍ରଗଲ୍‌ଭା ନଦୀ' ଗଳ୍ପରେ ସାମୀ ସ୍ତ୍ରୀ ମଧରେ ଥିବା ପବିତ୍ର ପ୍ରେମ୍ ହିଁ ମୁଖ୍ୟ ପ୍ରତିପାଦିତ ଦିଗ । ବାହାରେ ଚାକିରି କରୁଥିବା ସାମୀକୁ ପାଖରୁ ଛାଡ଼ିବାକୁ କୌଣସି ନାରୀ କେବେ ବି ଚାହେଁ ନାହିଁ । ଏଥିପାଇଁ ନାନା ବାହାନା କରେ ଗଳ୍ପ ନାୟିକା



Digitized by srujanika@gmail.com

ସୀମା । ତାର ସ୍ୱାଭାବିକ ନିଷ୍କପଟ କାର୍ଯ୍ୟପ୍ରଣାଳୀ ତାକୁ ବାରମ୍ବାର ଧରାପକାଇ ଦିଏ । ସେ ଲାଜେଇ ଯାଏ - ଏହି ଲାଜ ଭିତରେ ଥିବା ସମ୍ମୋହନ-ସମର୍ପଣ-ଭଲ ପାଇବାକୁ ତାର ସ୍ୱାମୀ, ଶାଶୁ, ଶ୍ୱଶୁର ବୁଝିପାରନ୍ତି । ଭଲପାଇବା ଏକ ଅସରନ୍ତି ଗପ ପରି ଲାଗେ । ଗଳ୍ପ ନାୟକ ଅତନୁ ଅନୁଭବ କରେ ନାରୀ ଭିତରେ ଥିବା ଭଲପାଇବାର ଅମାର ଯେମିତି ଉନ୍ମୁକ୍ତ ହୁଏ ବିବାହ ପରେ । ଏହି ଗଳ୍ପରେ ଗାଳ୍ପିକ ସାମାଜିକ ଜୀବନଚର୍ଯ୍ୟା ସହିତ ନିବିଡ଼ ଭାବେ ସଂଶ୍ଳିଷ୍ଟ ଭଲ ପାଇବାର ଏକ ସଚ୍ଛ ଦସ୍ତାବିଜ୍‌କୁ ରୂପ ଦେଇଛନ୍ତି । ତଥାକଥିତ ଆଧୁନିକ ସମାଜ ବ୍ୟବସ୍ଥାକୁ ଅସ୍ୱୀକାର କରି ଜୀବନର ମୂଲ୍ୟବୋଧ ପ୍ରତି ଥିବା ଅଙ୍ଗୀକାରବଦ୍ଧତାକୁ ଗଳ୍ପ ମାଧମରେ ଉପସ୍ଥାପନ କରିବାର ସାହସ ଗାଳ୍ପିକ କରିଥିଲେ ମଧ ଗଳ୍ପର ପ୍ରାଣପ୍ରବାହ ଅନେକାଂଶରେ ଦୁର୍ବଳ ମନେ ହୁଏ । ତେବେ ଏହାର ଭାଷା ଓ ପ୍ରକାଶଭଙ୍ଗୀରେ ଥିବା ଲାଳିତ୍ୟ ତଥା ଭାବପୂର୍ଣ୍ଣ ଦିଗଟି ପାଠକକୁ ଏକ ସର୍ବକାଳୀନ ଭଲପାଇବାର ଅନୁଭବ ସହିତ ପରିଚିତ କରାଏ ।

'ପ୍ରତିଶୋଧ' ଗଳ୍ପର ନାୟକ ଧୀରାଜକୁ ଯେପରି ହେଉ ପାଇବାର ଇଚ୍ଛାକୁ ସାକାର କରିଛି ଡାକ୍ତର ଅସୀମା । ଧୀରାଜର ପ୍ରେମିକାକୁ ଲୁଚି ହତ୍ୟା କରିବା ପ୍ରସଙ୍ଗରେ ଭଲପାଇବା ଅପେକ୍ଷା ନାରୀ ମନର ପ୍ରତିହିଂସା, ଈର୍ଷା, ଜାଙ୍ଗଲିକତା, ବ୍ୟକ୍ତିଗତ ସ୍ୱାର୍ଥ, ଅସହାୟପଣିଆ ଅଧିକନ୍ତୁ ପ୍ରକାଶିତ ହୋଇଛି । ବ୍ୟକ୍ତିଗତ ସ୍ୱାର୍ଥ ସାଧନରେ ମଣିଷ କେତେ ଉଗ୍ର, କଠୋର, ପ୍ରତିଶୋଧ ପରାୟଣ, ହିଂସ୍ର, ଅମାନବୀୟ ହୋଇପାରେ ତାହାହିଁ ଏହି ଗଳ୍ପର ମର୍ମବାଣୀ ।

'ଶଙ୍କା' ଏକ ମନସ୍ତାତ୍ତ୍ୱିକ ଗଳ୍ପ । ପରସ୍ପରକୁ ଭଲ ପାଉଥିବା ଦୁଇଟି ଚରିତ୍ର ଅବଲୀଳାକ୍ରମେ ପରସ୍ପର ଠାରୁ ଦୂରେଇ ଯାଇଛନ୍ତି । ମାତ୍ର, ବହୁ ବର୍ଷ ପରେ ବନ୍ଧୁପତ୍ନୀ ଭାବରେ ପୂର୍ବ ପ୍ରେମିକାକୁ ଦେଖି ଗଳ୍ପ ନାୟକ ଭିତରେ ସୃଷ୍ଟି ହୋଇଥିବା ଅନେକ ଅସମାହିତ ପ୍ରଶ୍ନର ଉତ୍ତର ତାକୁ ଦ୍ୱିଧାଗ୍ରସ୍ତ କରିବା ସ୍ୱାଭାବିକ୍ । ଅତୀତର ସ୍ମୃତି ଗୋଟିଗୋଟି ହୋଇ ମନେ ପଡିବା ହିଁ ତାକୁ ଅଧିକ ଆତଙ୍କିତ କରିଛି । ଧରାପଡିଯିବାର ଯେଉଁ ସମ୍ଭାବ୍ୟ ବିଷମୟ ପରିସ୍ଥିତି, ତା'ର ବିମର୍ଷ ନାନା ଭାବେ ଗଳ୍ପ ନାୟକ-ନାୟିକାଙ୍କୁ ବିବ୍ରତ କରିବା ସ୍ୱାଭାବିକ୍ । ତେବେ ପ୍ରତାରଣାର ମୁଖା ଭିତରେ ସ୍ୱାଧୀନତା ପରବର୍ତ୍ତୀ କାଳର ଅନେକ ଗଳ୍ପ ଭଳି 'ଶଙ୍କା' ଗଳ୍ପର କାହାଣୀ ସେତେ ବଳିଷ୍ଠ ମନେ ନହେଲେ ହେଁ ଏହାର ମନସ୍ତାତ୍ତ୍ୱିକ ଦିଗ ଖୁବ୍ ସମ୍ବେଦନଶୀଳ ।

'କର୍ତ୍ତବ୍ୟ' ଗଳ୍ପର ଅନ୍ତଃସ୍ୱର ହିଁ ଜୀବନ ସୃଷ୍ଟି । ଯାହାକୁ ପୂର୍ଣ୍ଣତାର ଏକ ଅଂଶ ଭାବରେ ହୁଏତ ନିଆଯାଇପାରେ । ସ୍ୱାର୍ଥ, ଛଳନା, ହୀନମନ୍ୟତା, ସୁବିଧାବାଦୀ ଚିନ୍ତାଧାରା, ପଳାୟନପନ୍ଥୀ ମାନସିକତାରେ ବଞ୍ଚିବା ଅପେକ୍ଷା ବିବେକାନୁମୋଦିତ



Digitized by srujanika@gmail.com

ମାର୍ଗରେ ଅନୁପ୍ରାଣିତ ହୋଇ ଯେଉଁ ସ୍ନେହ, ଶ୍ରଦ୍ଧା, ଆନ୍ତରିକତାର ସ୍ୱାଦ ଅନୁଭବ କରିହୁଏ ତାହାହିଁ ଶାଶ୍ୱତ । ଏହି ଗଳ୍ପରେ ଅବୈଧ ଶିଶୁ କନ୍ୟାଟିକୁ ଜନ୍ମ ଦେଇ ଟ୍ରେନରେ ଭସାଇ ଦେବା ମୂଳରେ ଯେଉଁ ଦୁଃସ୍ଥ ଅମଣିଷପଣିଆର ଚିତ୍ର ରହିଛି ତାକୁ ଗାଳ୍ପିକ ନିଜ ଘରେ ପୂର୍ବ ରାତ୍ରିରେ ବିଲେଇ ଓ ତାର ଦୁଇଟି କୁନି ଛୁଆଙ୍କ ହଠାତ୍ ଆବିର୍ଭାବ ଓ ସେମାନଙ୍କ ବାତ୍ସଲ୍ୟ ପ୍ରେମ ସନ୍ଦର୍ଶନରେ ଅଭିଭୂତ ହୋଇଥିବା କଥା ସହ ତୁଳନା କରି ଅତ୍ୟନ୍ତ କଷ୍ଟ ପାଇଛନ୍ତି । ପଶୁଟିର ସ୍ନେହ ପାଖରେ ମଣିଷ କେତେ ତୁଚ୍ଛ ହୋଇପାରେ ତାହାକୁ କର୍ତ୍ତବ୍ୟ ଗଳ୍ପରେ ଅତି ସମ୍ବେଦନଶୀଳ ହୋଇ ଗାଳ୍ପିକ ପ୍ରକାଶ କରିଛନ୍ତି ।

'ସ୍ମୃତି ବିସ୍ମୃତି' ମୁଁ ସର୍ବସ୍ୱ ମଣିଷର କଥା ହିଁ କହିଛି । କ୍ଷୟିଷ୍ଣୁ ସମାଜର ମୂଳଦୁଆ ଉପରେ ଛିଡ଼ା ହୋଇ ଅତ୍ୟନ୍ତ ଅନ୍ତଃସାରଶୂନ୍ୟ ହୋଇ ପଡିଥିବା ମଣିଷ ଯାବତୀୟ ସମସ୍ୟାକୁ ସାମନା କରିବାର ମାନସିକତା କିଭଳି ହରାଉଛି ତାହାର ଭିନ୍ନ ଭିନ୍ନ ଦିଗ ଏହି ଗଳ୍ପରେ ରହିଛି । 'ରେଣୁ' ଚରିତ୍ର ଭିତରେ ଥିବା ପ୍ରତାରଣାଜନିତ ଆତ୍ମଦହନ, ବିଦ୍ୱେଷ-ଆକ୍ଷେପ ଭଲପାଇ ଅସୀକାର କରୁଥିବା ପୁରୁଷ ଚରିତ୍ର ପ୍ରତି ଏକ ନୀରବ ପ୍ରତିବାଦ ହୋଇପାରେ । ତେବେ ନାରୀ ମନର ସ୍ୱାଭିମାନ ଓ ଜ୍ୱଳନ କେତେ ବଳିଷ୍ଠ ତାହା ଗାଳ୍ପିକଙ୍କ ଏହି ଗଳ୍ପରୁ ବେଶ୍ ସ୍ପଷ୍ଟ ।

ଏହି ସଂକଳନର ଅଧିକାଂଶ ଗଳ୍ପ କଲେଜ ଜୀବନର ଯୁବ ସୁଲଭ ଘଟଣାବଳୀ ଉପରେ ପର୍ଯ୍ୟବେଶିତ । ଯୁବପିଢ଼ିର ପାଠକମାନଙ୍କୁ ଏହା ବେଶ୍ ରୋମାଞ୍ଚିତ କରିବା ସହିତ ସେମାନଙ୍କ ଜୀବନର ଦୋଷତୃଟିକୁ ସଚେତନ କରାଇବା ଦିଗରେ ଏହା ଗଭୀର ଭାବରେ ରେଖାପାତ କରେ । ଲେଖକ କୋରାପୁଟ ଅଞ୍ଚଳରେ ଅବସ୍ଥାପିତ ହୋଇଥିବାରୁ ସେ ଅଞ୍ଚଳର ଆଞ୍ଚଳିକତା ପ୍ରତି ଅଧିକ ଆନୁଗତ୍ୟ ପ୍ରକାଶ କରିଥିବା ପରି ମନେ ହୁଅନ୍ତି । ତେବେ ସମାଜ ସଂସ୍କାର, ଆଦର୍ଶବାଦ, ପାରିବାରିକ ଦୃଷ୍ଟି, ରକ୍ଷଣଶୀଳତା, କୁସଂସ୍କାର ଆଦି ଗାଳ୍ପିକଙ୍କ ଚିନ୍ତାଚେତନା ତାଙ୍କ ଗଳ୍ପଗୁଡ଼ିକରେ ପ୍ରତିଫଳିତ ହୋଇ ବେଶ୍ ପାଠକୀୟ ଆଦୃତି ଲାଭ କରିଛି । ଅଧୁନାନ୍ତ ଗଳ୍ପ ସାହିତ୍ୟରେ ବସନ୍ତଙ୍କ ସ୍ୱର ଓ ସ୍ୱାକ୍ଷର ବେଶ୍ ବଳିଷ୍ଠ ଓ ସମୟୋପଯୋଗୀ ହେବ ବୋଲି ଆମେ ଆସ୍ଥା ରଖିବା ସ୍ୱାଭାବିକ୍ ।



ଅଧ୍ୟାପକ, ଓଡ଼ିଆ ବିଭାଗ
ଅଭିମନ୍ୟୁ ସାମନ୍ତସିଂହାର କଲେଜ,
ବାଲିଆ, ଯାଜପୁର



Digitized by srujanika@gmail.com

# ପଲ୍ଲୀପ୍ରଦୀପିକା ବସନ୍ତ କିଶୋର

**ମହେନ୍ଦ୍ର କୁମାର ଘଡ଼େଇ**

ବୈଚିତ୍ର୍ୟମୟୀ ଏ ପ୍ରକୃତିରେ ଋତୁରାଜର ଆବିର୍ଭାବ ଯେମିତି ପଲ୍ଲୀଜୀବନକୁ ପୁଲକିତ କରି ନୂତନ ଆବେଗରେ ଜଡ଼ସଡ଼ କରେ, ଭାବ ସମୁଦ୍ରରେ ତନୁମନକୁ କରେ ଶିହରିତ, ମହମହ ବାସ୍ନାରେ ମାଟିକୁ କରେ ମହାର୍ଘ । ସେମିତି ଏ ମାଟିର ମଣିଷ ଡକ୍ଟର ବସନ୍ତ କିଶୋର ସାହୁଙ୍କ ଜନ୍ମ ସାହିତ୍ୟ ସଂସ୍କୃତି ବିଜଡିତ ମାହାଙ୍ଗା(କୁସୁପୁର) ମାଟିର ମହକକୁ କରିଛି ଅଧିକ ରସସିକ୍ତ । ସାହିତ୍ୟ ସାମ୍ରାଜ୍ୟରେ ଯୋଡ଼ି ଦେଇଛି ଆଉ ଏକ ଫର୍ଦ୍ଦ । ନୂତନ ଅଧ୍ୟାୟ ଗଢ଼ି ଉଠିଛି ତାଙ୍କ ପାଇଁ । କିମ୍ବଦନ୍ତୀର ଶିଳାଲିପିରେ ପାଦ ପ୍ରକ୍ଷାଳନ କରୁଥିବା ଶବ୍ଦ ସମୂହରେ ପ୍ରତିଫଳିତ ହେଉଥିବା ବିରାଟ ରୂପ ଯେ ପ୍ରତୀୟମାନ କରେ । ଯୁଗସ୍ରଷ୍ଟା ଭାବରେ ଆଖ୍ୟାୟିତ କରେ । ରାଶି ରାଶି ପାଣ୍ଡୁଲିପି ଓ ପୁସ୍ତକର ସର୍ଣ୍ଣିମ ପରିଭାଷା ଉପରେ ଦଣ୍ଡାୟମାନ ଡକ୍ଟର ସାହୁ । ଯାହାଙ୍କୁ ନେଇ ସମଗ୍ର ଓଡ଼ିଶା ଗର୍ବ କରେ ।

ମାହାଙ୍ଗାର ପାଣି, ପବନ, ପର୍ବତ ଯାହାଙ୍କ କଲମରେ କାଳି ହୋଇ ଝରି ପଡ଼େ ସଫେଦ କାନ୍‌ଭାସରେ । ନଦୀର କୁଳୁକୁଳୁ ଶବ୍ଦ, ନିକଟରେ ଥିବା ବୌଦ୍ଧ ବିହାର ଲଳିତଗିରିର ଭଗ୍ନାବଶେଷ ତାଙ୍କ ପ୍ରାଣକୁ କରେ ଆନମନା । ବାସ୍ ! ଏ ସବୁ ଭିତରେ ସୃଜନର ବାଦ୍‌ଶାହା ପାଲଟି ଯାଆନ୍ତି ସେ । ପଛକୁ ଫେରିବାର ଅବକାଶ ପାଇନାହାନ୍ତି କି ବିଶ୍ରାମ ନେବାର ଆଗ୍ରହ ଦେଖାଇ ନାହାନ୍ତି । ପେଶା ଓ ନିଶାରେ ଛନ୍ଦି ହୋଇ ମାନବବାଦର ବୀଜ ବପନ କରୁଥିବା ସେହି ସରଳ ଲୋକ ଜଣକ କେତେ ନିରୀହ, କେତେ ଦରଦୀ, କେତେ ବନ୍ଧୁବତ୍ସଳ, କେଡ଼େ ବିବେକୀ ନିକଟରୁ ଦେଖି ତାଙ୍କୁ ଅଧ୍ୟୟନ କରୁଥିବା ଲୋକ ହିଁ ତାହା କହିପାରିବ ।

ପେଶା ଓ ନିଶାରେ ଦୋ'ଛକିରେ ବନ୍ଧା ପଡ଼ିଥିବା ଯୁବ ପ୍ରାଣ ଯେତେବେଳେ ସୁଦୂର କୋରାପୁଟ ମାଟି ଛୁଇଁଲା ସେତେବେଳେ ପ୍ରଥମେ ପ୍ରଥମେ ଅଡୁଆ ସୂତାର ଖିଅରେ ଛନ୍ଦି ହେବା ଅନୁଭବ କରୁଥିବା ବେଳେ ପରବର୍ତ୍ତୀ ସମୟରେ ବେଦନାରେ ଜର୍ଜରିତ ଦୁଃଖିନୀ (କୋରାପୁଟ) ମା'ର କୋଳରେ ଅଭାବୀ ଧାଙ୍ଗିଡୀର ଆହାରଖୋଜା, ଅଧାଫୁଟୁଲା ଜନଜାତିର ନିର୍ମଳ ହୃଦୟ, ସବୁଜିମା ଘେରା ପର୍ବତ ଶିଖର, ଶାଗୁଆ



Digitized by srujanika@gmail.com

ପାଟ ପରିହିତା ବଣ ମୂଳକ, କଳକଳ ନାଦରେ ନିନାଦିତ ହୋଇ ନଦୀ ଅଭିମୁଖେ ଧାବମାନ କରୁଥିବା ଝରଣାର କାଚକେନ୍ଦୁ ପରି ଜଳରାଶି, ଆକାଶ ଦେହରୁ ଲମ୍ଫ ମାରୁଥିବା ମେଘଖଣ୍ଡର ରିମ୍‌ଝିମ୍ ଶବ୍ଦ ସେଠାରେ ଡକ୍ଟର ସାହୁଙ୍କୁ ସାହିତ୍ୟ ମନସ୍କ କରିଥିଲା । ଆଦିବାସୀ ସାହିତ୍ୟ, ସଂସ୍କୃତି, ଧର୍ମ, ଚଳଣି, ପରମ୍ପରା, ରୀତିନୀତି ଓ ଜୀବନଚର୍ଯ୍ୟା ଡକ୍ଟର ସାହୁଙ୍କୁ ଆବିଷ୍କାର କରିଥିଲା ଜଣେ ତରୁଣ ଶିଳ୍ପୀ ଭାବରେ ।

ବଣମୂଳକରୁ ଫୁଲର ମହକ ସାଉଁଟି ଚାଙ୍ଗୁଡ଼ିରେ ଭରିବାକୁ ଅଣ୍ଟା ଭିଡିଥିଲେ ତରୁଣତୁର୍କୀ ଡକ୍ଟର ସାହୁ । ସେଥିରେ ବି ହେଲେ ସଫଳ । ବିଫଳତାର ସ୍ୱାଦ ଚାଖି ନଥିବା ଡକ୍ଟର ସାହୁ 'ବନଫୁଲ'କୁ ଜୀବନ୍ୟାସ ଦେଇ ବଞ୍ଚେଇ, ବଢ଼େଇ ଠିଆ କରାଇଛନ୍ତି ଏ ସମାଜରେ । ସେତିକିରେ ଆଶା ପୁରି ନଥିଲା । ଦକ୍ଷିଣ ଓଡ଼ିଶାର ସଂସ୍କୃତି ଓ ଲୋକଜୀବନରେ ନିଜକୁ ଖୋଦ୍ ଦାୟାଦ ଭାବେ ପ୍ରମାଣିତ କରି ଅନେକ ବିରଳ ଦୃଷ୍ଟାନ୍ତର ଦ୍ରଷ୍ଟବ୍ୟ ସାଜିଛନ୍ତି ସେ । ସେଠାରେ କରିଛନ୍ତି କର୍ମଶାଳା, କରିଛନ୍ତି ଆଲୋଚନା ଚକ୍ର, କରିଛନ୍ତି କବିତା ପାଠୋତ୍ସବ, କରିଛନ୍ତି ବୁଦ୍ଧିଜୀବୀ ସମାବେଶ, ଗଢ଼ିଛନ୍ତି ଅନେକ ଅନୁଷ୍ଠାନ, ଆନ୍ଦୋଳନ ଓ ଆଧାତ୍ମିକ ବାତାବରଣରେ ଛାମୁଆ ସେନାପତି ଭାବେ ନିର୍ଣ୍ଣାୟକ ଭୂମିକାରେ କର୍ତ୍ତବ୍ୟର ଆହ୍ୱାନକୁ ସମ୍ମୁଖୀନ ହୋଇଛନ୍ତି । କେଉଁଠି ସ୍ୱାର୍ଥ ପଛରେ ପଡ଼ିନାହାନ୍ତି କି ପଦପଦବୀର ସମ୍ମୋହନରେ ହୋଇନାହାନ୍ତି ଧର୍ମଭୀରୁ । କର୍ମରେ ବିଶ୍ୱାସ କରୁଥିବା ମଣିଷଟି ଆଜି ଏଇଠି... ଏଇ ସ୍ଥାନରେ ପହଞ୍ଚି ପାରିଛନ୍ତି । ଯାହାକୁ ତୁଳନା କରିବାକୁ ସମତୁଲ ଶବ୍ଦ ଛାଞ୍ଚର ଅଭାବ ପଡ଼ିବ ।

ଦକ୍ଷିଣ ଓଡ଼ିଶାରେ ଏମିତି କେଉଁ ଅନୁଷ୍ଠାନ ନାହିଁ ଯେଉଁଥିରେ ଯୋଡ଼ି ହୋଇନାହାନ୍ତି ଡକ୍ଟର ସାହୁ । ସରକାରୀ ହେଉ କି ବେସରକାରୀ, ସବୁ କାର୍ଯ୍ୟକ୍ରମରେ ଆଗ ଖୋଜା ପଡନ୍ତି ଡକ୍ଟର ସାହୁ । କର୍ତ୍ତବ୍ୟ ବୋଝରେ ପାଦ ଅଟକି ଯାଏନି କି ଥକା ମେଣ୍ଟାଇବାକୁ ଥୁଣ୍ଟା ଗଛର ଛାଇକୁ ବି ପାଥେୟ କରନ୍ତିନି । ନିଦାଘ ଗ୍ରୀଷ୍ମ ହେଉ କି ହାଡ଼ଭଙ୍ଗା ଶୀତ, ଘୁ ଘୁ ଗର୍ଜନରେ ବର୍ଷୁଥିବା ବର୍ଷା ହେଉ କି ବସନ୍ତର ଆଗମନରେ ପ୍ରଫୁଲ୍ଲିତ ପ୍ରକୃତିର ଅପରୂପ ଶୋଭା ଦେଖି ନିରାଶାରେ ଭାଙ୍ଗି ପଡ଼ନ୍ତିନି କି ଆନନ୍ଦରେ ବିଭୋର ହୋଇ ପଡନ୍ତିନି । କେବଳ କର୍ମ ହିଁ କର୍ମ, ସାଥୀ, ସହଚରୀ ଭାବେ ତାଙ୍କ ଜୀବନ୍‌କୁ ଘେରିଥାଏ । ଏଥିରେ ଅତିଷ୍ଠ ହୋଇ ନାହାନ୍ତି କି ପ୍ରଶଂସା, ପୁରସ୍କାର ପାଇବାର ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇନାହାନ୍ତି ।

ଶିଶୁକୁ ଭଲ ପାଇବା, ଶିଶୁର ନାଲି ଟୁକୁ ଟୁକୁ ଓଠରେ ଅସ୍ପଷ୍ଟ କଥାକୁ ହୃଦ ଗହନରେ ଧରି ରଖି ତା'ର ଭାବ, ଭାଷା, କାର୍ଯ୍ୟକୁ ଅତି ନିକଟରୁ ନିରୀକ୍ଷଣ କରି ସେ ଲେଖିଛନ୍ତି ଅନେକ କବିତା ଓ ଗଳ୍ପ । ତା ଭିତରେ ଆସୁ ବାଘର ହେଣ୍ଟାଳ, ସିଂହର ଗର୍ଜନ, ଶ୍ରୀରାମଙ୍କ ଆଦର୍ଶ, ଗୋପବନ୍ଧୁଙ୍କର ତ୍ୟାଗ, ଗାନ୍ଧିଜୀଙ୍କ ଅହିଂସାବାଣୀ,



Digitized by srujanika@gmail.com

ତଟିନୀର ଦୁଃଖ, ଆଦି କଳ୍ପନା ବିଳାସ ଚଞ୍ଚଳ ମନରେ ବିଜ୍ଞାନସମ୍ମତ କଥାକୁ ନିଜ ଲେଖନୀମୂନରେ ତୋଳିଧରି ଭେଟି ଦେଇଛନ୍ତି ଅଗଣିତ ଶିଶୁଙ୍କୁ । ଅତି ନିକଟରୁ ସେ ପରୀକ୍ଷଣ କରି ନୂତନ ଦିଶା ଦେଖାଇଛନ୍ତି ତ ଆଉ କେଉଁଠି କର୍ମବୀର ହେବାକୁ ଆହ୍ୱାନ ଦେଇଛନ୍ତି । ସତ୍ୟବାଦୀ, ସତ୍‌ଚରିତ୍ର, ମିଷ୍ଟଭାଷୀ, ଆଦର୍ଶ ଦେଶଭକ୍ତ ହେବାକୁ ମର୍ମବେଦନାର କାରୁଣିକ ଆବେଦନରେ ଏମିତି ପରିପ୍ରକାଶ କରିଛନ୍ତି ଯେ ତାହା କେବଳ ଶିଶୁ କାହିଁକି ସବୁଶ୍ରେଣୀର ପାଠକଙ୍କୁ ଆନ୍ଦୋଳିତ କରେ ।

ସେତିକିରେ ତାଙ୍କ ସାରସ୍ୱତ ସାମ୍ରାଜ୍ୟର ପରିସୀମାରେ ପୂର୍ଣ୍ଣଚ୍ଛେଦ ହୋଇନାହିଁ । ବଙ୍ଗ ସାହିତ୍ୟର ଅନ୍ୟାନ୍ୟ ବିଭବ ଯଥା-ପ୍ରବନ୍ଧ, ସମାଲୋଚନା, ଗଳ୍ପ ତାଙ୍କୁ ମହାଦ୍ରୁମର ମାନ୍ୟତା ପ୍ରଦାନ କରିଛି । ଯାହା ଚଉଦିଗକୁ ସୁଶୀତଳ ଛାୟା ପ୍ରଦାନ ପୂର୍ବକ ପୁରା ସମାଜରେ ତା'ର କାୟା ବିସ୍ତାର କରିଛି । ସେଥିପାଇଁ କେତେ କରତାଳି, କେତେ ଫୁଲମାଳ, କେତେ ମାନପତ୍ର, କେତେ ଉତ୍ତରୀୟ ପାଇଛନ୍ତି । ହେଲେ ସେ ସବୁ ତାଙ୍କ ହୃଦୟକୁ ଚନ୍ଦନର ଲେପନ ଦେଇପାରି ନାହିଁ । ବଙ୍ଗ ଅଧିକରୁ ଅଧିକ ସୃଷ୍ଟି ସମ୍ଭାରକୁ ଭେଟି ଦେବାକୁ ହୃଦୟର ଶୀତଳତା ବୋଲି ଅନୁଭବ କରନ୍ତି ।

ହାତଗଣତି କେତେଜଣ ଗବେଷକଙ୍କ ମଧ୍ୟରେ ଡକ୍ଟର ସାହୁ ହେଉଛନ୍ତି ଅନ୍ୟତମ, ଯିଏ 'ମୌଖିକ ଶିଶୁ ସାହିତ୍ୟ' ଭଳି ବିଶାଳ ବିଷୟରେ ଗବେଷଣା କରି ପିଏଚ୍.ଡି. ଉପାଧି ପାଇଛନ୍ତି । ଶିଶୁ ସାହିତ୍ୟର ବଳିଷ୍ଠ ଦିଗ, ପ୍ରଭାବ ଓ ଆବଶ୍ୟକତାକୁ ଅତି ନିକଟରୁ ସେ ନିରୀକ୍ଷଣ କରିଛନ୍ତି । 'ଶିଶୁ ହସିଲେ ଦୁନିଆ ହସେ' ମୂଳ ତତ୍ତ୍ୱକୁ ପୁଞ୍ଜି କରି ଲାଗି ପଡିଛନ୍ତି ନିଜ ପରିସୀମା ଭିତରେ । ଏଇ ଭାବନାରେ ଶିଶୁ ସାହିତ୍ୟର ଉତ୍‌ଥାନରେ ସାମାନ୍ୟ ଫର୍ଦ୍ଦଟିଏ ଯୋଡ଼ିଛନ୍ତି ମାତ୍ର ବୋଲି ନିଜ ପ୍ରଶଂସାର ଉଣା କରି ଆହୁରି ଆଗକୁ ଅନେକ କାର୍ଯ୍ୟ କରିବାକୁ ଅଛି ବୋଲି ସର୍ବଦା କହନ୍ତି ।

ଏପରି ଦେବ ଦୁର୍ଲଭ ମଣିଷ କେଉଁଠି ଦେଖିନି । ସବୁକାର୍ଯ୍ୟରେ ଆଗୁଆ, ସବୁଠି ଚଳଚଞ୍ଚଳ । ହସହସ ବଦନରେ ଅବିଶ୍ରାନ୍ତ ଲାଗିଥାନ୍ତି ସାହିତ୍ୟ-ସଂସ୍କୃତି କାର୍ଯ୍ୟରେ । ସେବା ସଂଗଠନରେ, ଅଧ୍ୟୟନ-ଅଧ୍ୟାପନାରେ ସାମ୍ନାରେ ଚାହିଁ ରହିଥିବା ପ୍ରସ୍ତରଖଣ୍ଡ ଉପରେ ନିଜ ହାତର ନିହାଣ ଓ ମୁଗୁରର ଭାବପ୍ରବଣତାରେ ନିସ୍ତବ୍ଧ ପ୍ରହରମାନଙ୍କରେ ଜୀବନ୍ୟାସ କରି ଚାଲିଛନ୍ତି କାବ୍ୟ କୋଣାର୍କର ଦଧିନଉତି ।

ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ମାନସ ସନ୍ତାନ 'ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ୍' ଶ୍ରୀବୃଦ୍ଧିରେ ନିଜକୁ ସମର୍ପିତ କରିଥିବା ମୁଁ ଲକ୍ଷ୍ୟ କରିଛି । ପରିଷଦର ପ୍ରତିଟି କର୍ମଶାଳାରେ ଅଗ୍ରଭୂମିକାରେ ଡକ୍ଟର ସାହୁ ହିଁ ଡକ୍ଟର ମହାନ୍ତିଙ୍କ ପଛରେ ଥାଆନ୍ତି । ଶିଶୁମାନଙ୍କ ପ୍ରତିଭା ଉନ୍ମେଷ ପାଇଁ କରିଛନ୍ତି ଅନେକ କର୍ମଶାଳା, କେବେ ପୁରସ୍କାର ତ କେବେ ପ୍ରୋତ୍ସାହନ ଦେଇ ଅନେକ ଲେଖକ ସେ ସୃଷ୍ଟି କରିଛନ୍ତି ନିଜସ୍ୱ ଉଦ୍ୟମରେ ।



Digitized by srujanika@gmail.com

ଜନ୍ମଭୂମି ମାହାଙ୍ଗା(କୁସୁପୁର) ଓ କର୍ମଭୂମି କୋରାପୁଟ(ସୁନାବେଡ଼ା) ଭିତରେ ସେ ସମନ୍ୱୟର ସେତୁ ଟାଣିଛନ୍ତି । ଭାବର ବିନିମୟ କରି ଉଭୟ ଭୂମିକୁ ଯେଉଁ ମର୍ଯ୍ୟାଦା ପ୍ରଦାନ କରିଛନ୍ତି ତାହା ଇତିହାସ ସର୍ବଦା ସ୍ମରଣ କରୁଥିବ ଯୁଗଯୁଗ ପାଇଁ ।

ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଜନ୍ମମାଟିରେ ଉତ୍ତରାଧିକାରୀ ସୂତ୍ରରେ ସ୍ୱର୍ଗତ ନନ୍ଦକିଶୋର ସାମଲ ଓ ଅଧୁନା ଡକ୍ଟର ସାହୁଙ୍କ ପ୍ରତିନିଧିତ୍ୱ ସମଗ୍ର ଅଞ୍ଚଳ ପାଇଁ ଗର୍ବ ଓ ଗୌରବର ବିଷୟ ହୋଇ ଠିଆ ହୋଇଛି । ବିଭିନ୍ନ ଅବକାଶରେ ଗାଁକୁ ଆସିଲେ ଗ୍ରାମ୍ୟ ଶିକ୍ଷା, ସଂସ୍କୃତି, ସାହିତ୍ୟ, ଧର୍ମାନୁଷ୍ଠାନର ସ୍ଥିତି ସମ୍ପର୍କରେ ଅନୁଧ୍ୟାନ କରି ଏ ସବୁର ପୁନଃରୁଦ୍ଧାର ପାଇଁ ଅନ୍ୟମାନଙ୍କୁ ପ୍ରୋତ୍ସାହିତ କରିବା ସହିତ ନିଜ ଲକ୍ଷ୍ୟର ପରିପୂରଣ ପାଇଁ ଖୋଜିବସନ୍ତି ସମଧର୍ମୀ ବ୍ୟକ୍ତିବିଶେଷଙ୍କୁ । ଚିଠା ପ୍ରସ୍ତୁତ ହୁଏ । କାର୍ଯ୍ୟ ଶେଷ ନହେବା ଯାଏ ଆଖିକୁ ନିଦ ଆସେନି ।

କବି ନନ୍ଦକିଶୋର ସାମଲଙ୍କ ସ୍ମୃତି ସଭା, ସ୍ମରଣିକା ପ୍ରକାଶ, ଶ୍ରାଦ୍ଧ ବାର୍ଷିକ ଓ ଜୟନ୍ତୀ ପାଳନ ଅବସରରେ ଡକ୍ଟର ସାହୁଙ୍କର ବଳିଷ୍ଠ ନେତୃତ୍ୱ ଓ କାର୍ଯ୍ୟଦକ୍ଷତାକୁ ଯିଏ ଲକ୍ଷ୍ୟ କରିଛି ସିଏ ନିଶ୍ଚୟ ଅନୁଭବ କରିବ ଯେ ଶିଶୁ ସାହିତ୍ୟ ଓ ଶିଶୁ ସାହିତ୍ୟିକଙ୍କୁ ଭଲ ପାଉଥିବା ନିରୁତା ମଣିଷଟିଏ ବୋଧହୁଏ ଡକ୍ଟର ସାହୁଙ୍କ ବ୍ୟତିରେକେ ଆଉ କେହି ନାହିଁ ।

ସାହିତ୍ୟ ପାଇଁ ସମସ୍ତ ଶ୍ରମ, ଶକ୍ତି ଓ ସମୟକୁ ଉତ୍ସର୍ଗ କରିଥିବା ରତ୍ନ ପଥରଟି ସଦା ଚିରଜାଜ୍ୱଲ୍ୟମାନ ହୋଇ ସାହିତ୍ୟାକାଶକୁ ଚମକ ପ୍ରଦାନ କରୁ ଏହାହିଁ ଆଜିର ଏଇ ସ୍ୱ ନକ୍ଷତ୍ର ଦିବସ ଓ ଅବସର ବାସରେ ବିଭୁଙ୍କ ପଦରେ କାମନା କରୁଛି ।



କ୍ଷେତ୍ରମୋହନ ବିଦ୍ୟାପୀଠ,
କଟରପଡ଼ା, ପିଠାପଡ଼ା,
ନିଶ୍ଚିନ୍ତକୋଇଲି, କଟକ



Digitized by srujanika@gmail.com

# ସାଂପ୍ରତିକ ସୃଜନଶୀଳତା ଓ ଡକ୍ଟର ବସନ୍ତ ସାହୁ

**ଯତୀନ୍ଦ୍ର କୁମାର ରାଉତ**

ଡକ୍ଟର ବସନ୍ତ ସାହୁ ଯେଉଁ ମାଟିରେ ପାଦ ଦେଇ ଏହି ଗ୍ରହକୁ ଆସିଥିଲେ, ସେ ସ୍ଥାନଟି ବୌଦ୍ଧ ବିହାର ସମୂହ ତତ୍‌କାଳୀନ ବିଶ୍ୱବିଦ୍ୟାଳୟ -ଲଳିତଗିରି, ଉଦୟଗିରି ଓ ରତ୍ନଗିରିର କେନ୍ଦ୍ରବିନ୍ଦୁ, କୁସୁପୁର । ଓଡ଼ିଶା ସାହିତ୍ୟ ସଂସ୍କୃତିର ପ୍ରାଣକେନ୍ଦ୍ର ମାହାଙ୍ଗା ମାଟିର ଅନ୍ୟତମ ମହକ-ଅନନ୍ୟ, ଆଗଧାଡ଼ିର ସହରମନସ୍କ ଗାଁ କୁସୁପୁର । ସାହିତ୍ୟ କ୍ଷେତ୍ରରେ ହେଉ ଅବା ଶିକ୍ଷା, ସାଧୀନତା, ବେପାରବଣିଜ ହେଉ ଅବା ଚାଲାକ୍ ଚତୁରରେ ହେଉ, କଳା କାରୁକାର୍ଯ୍ୟରେ ଅଗ୍ରଣୀ ଗାଁ କୁସୁପୁର । ଯାହା ମାଟିତଳେ ମୃଦୁ କମ୍ପନ ହେଉଥାଏ ସୃଜନ ସୃଷ୍ଟିର ଶିହରଣ । ଯାହା ବାଟ ଦେଇ ନିନାଦିଦ ସୁରତୋଳି ବହି ଯାଉଥାଏ ବିରୁପା-ସରୂପା । ପବନର ହିଲ୍ଲୋଳରେ ଝଙ୍କୁରୀତ ହେଉଥାଏ ବୁଦ୍ଧଂ ଶରଣଂ ଗଚ୍ଛାମି, ସଙ୍ଘ ଶରଣଂ ଗଚ୍ଛାମି, ସୃଜନଂ ଶରଣଂ ଗଚ୍ଛାମି, ବାଗ୍ମୀ ବିଶ୍ୱନାଥ କରଂ ଗଚ୍ଛାମି, ପଲ୍ଲୀକବି ନନ୍ଦକିଶୋର ବଳଂ ଗଚ୍ଛାମି, ଶିଳ୍ପୀଗୁରୁ ବିଘାଧର ବର୍ମାଂ ଗଚ୍ଛାମି, ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଂ ଗଚ୍ଛାମି । ସେହି ମାଟିର ମଣିଷଙ୍କ ଶ୍ୱାସ ପ୍ରଶ୍ୱାସରେ ଜୀବନୀ ଶକ୍ତିରୂପେ କାର୍ଯ୍ୟ କରୁଥାଏ ମାହାଙ୍ଗାମାଟିର ବରପୁତ୍ରମାନଙ୍କ ସୃଷ୍ଟି ସମ୍ଭାର । ସେ ମିହିର୍ ସେନ(ଲଣ୍ଡନ କେନାଲ ସନ୍ତରଣକାରୀ) ହୁଅନ୍ତୁ କି ଜଗମୋହନ ଲାଲ୍, କିମ୍ବା ପ୍ୟାରୀମୋହନ ଆଚାର୍ଯ୍ୟ କି ଗଣକବି ବୈଷ୍ଣବ ପାଣି, ବୈରାଗୀ ମିଶ୍ର, ଚୌଧୁରୀ ହେମକାନ୍ତ ମିଶ୍ର କି କିଶୋରୀ ଚରଣ ଦାସ-ସମସ୍ତଙ୍କ ପ୍ରଭାବ ସର୍ବଦା ପଡିଥାଏ ଏହି ଅଞ୍ଚଳର ବ୍ୟକ୍ତିମାନଙ୍କ ଉପରେ । ବିଶେଷ ଭାବରେ ଏହି ପ୍ରତିଭାବାନ ବ୍ୟକ୍ତିବିଶେଷଙ୍କ ପ୍ରତିଭାରେ ପ୍ରତିଭାତ ହୋଇଛନ୍ତି ଆମ ସମୟର ଅର୍ଥାତ୍ ଉତ୍ତର ଆଧୁନିକ କାଳର ଲବ୍ଧ ପ୍ରତିଷ୍ଠ ସ୍ରଷ୍ଟା ଡକ୍ଟର ବସନ୍ତ କିଶୋର ସାହୁ । ମୂଳତଃ ଡକ୍ଟର ସାହୁ ନନ୍ଦକିଶୋର ସାମଲଙ୍କ ଟିକି ଗଡ଼ିଆ କୂଳରେ ନିଶ୍ଚୟ ବସି ପାଣିକୁ ଟେକା ଫିଙ୍ଗିଥିବେ, ଶାଗ ଖରଡା ଖାଇବା ସଙ୍ଗେ ସଙ୍ଗେ ମାଆଙ୍କ ପାଖରେ ବସି ପରିବା କଟା, ଜାଇ ରଗଡ଼ା ଦେଖି ଆତ୍ମ ବିଭୋର ହୋଇ ଉଠିଥିବ ତାଙ୍କ କବି ପ୍ରବଣତା । ଯାହାଙ୍କ ଅବଚେତନ ବା subconscious ସ୍ତରରେ ଅନେକ ସୃଜନ ଘଟଣା ଘଟି ସାରିଥିବ ଅଥଚ ସୟଂ ବ୍ୟକ୍ତିଟିଏ ଜାଣି ପାରୁ ନଥିବ ।



Digitized by srujanika@gmail.com

କଥାରେ ଅଛି, 'ଘର ଦେଖ-ବର ଦେଖ ନତୁବା କାନ୍ଥଖୋଳି କୁଜ ଦେଖ' । ଡକ୍ଟର ବସନ୍ତ ସାହୁଙ୍କ ସାହିତ୍ୟ ଖାନଦାନୀ-ତାଙ୍କ ସୃଜନ ସମ୍ଭାରର ମୂଳଦୁଆ ଏହିପରି ଆମ ପାରିପାର୍ଶ୍ୱରେ ଥିବା ଲୋକମାନଙ୍କ ଦୃଷ୍ଟିକୋଣରେ । ଅବଶ୍ୟ ଏହାର ପ୍ରାସଙ୍ଗିକତା କାହା ପାଇଁ ସ୍ୱୀକାର୍ଯ୍ୟ ବା ଅସ୍ୱୀକାର୍ଯ୍ୟ ହୋଇପାରେ ବ୍ୟକ୍ତି ସ୍ଥଳରେ । କିନ୍ତୁ ଏହା ହେଉଛି ବାସ୍ତବ କଥା । ସେହି ମାଟିର ସୌରଭ, ପବନର ଆନମନା ଭାବ ଓ ପାଣିର ତରଙ୍ଗ ତୀର୍ଥରେ ଡକ୍ଟର ସାହୁଙ୍କ ସୃଜନଶୀଳତା ସମୃଦ୍ଧ ଘଟିଛି ।

ସ୍ରଷ୍ଟାଙ୍କୁ ଆଲୋଚନା ପ୍ରସଙ୍ଗକୁ ଆଣିବା ସମୟରେ ମୋ ଆଖି ଆଗରେ ଯେଉଁ ଦୃଶ୍ୟବୋଧଟିଏ ବାରମ୍ବାର ଆସିଯାଏ ତାହା ପ୍ରକାଶ ନକରି କିଛି ବି କହିହେବ ନାହିଁ । ଡକ୍ଟର ସାହୁ କୁସୁପୁର ଗାଁରେ ତାଙ୍କ ବାଲ୍ୟାବସ୍ଥା କଟେଇଥିଲେ ମଧ ବାଲିଚନ୍ଦ୍ରପୁର ଉପରେ ତାଙ୍କୁ କିଛିଦିନ ନିର୍ଭର କରିବାକୁ ପଡିଥିଲା ନିଜର ଖର୍ଚ୍ଚକୁ ରୋଜଗାର କରିବା ପାଇଁ । ଡକ୍ଟର ସାହୁ ବୋଧେ ୧୯୭୯-୮୦ ମସିହା ଭିତରେ ଆରମ୍ଭ କରିଥିଲେ 'ଅଜନ୍ତା ଟାଇପ୍ ଇନ୍‌ଷ୍ଟିଚ୍ୟୁଟ୍' ନାମକ ଏକ ବୃତ୍ତିଭିତ୍ତିକ ଶିକ୍ଷାନୁଷ୍ଠାନ । ଏକ ଐତିହ୍ୟ ସଂପନ୍ନ ସୃଜନର ନାମକରଣ । ଏହିଠାରୁ ଅନେକ ଶିକ୍ଷା ପାଇ ସରକାରୀ ଓ ବେସରକାରୀ ସଂସ୍ଥାରେ ଆଜି ନିୟୋଜିତ । ତାଙ୍କ ଚେହେରା ଏବେ ଆଖି ଆଗରେ ଭାସି ଉଠେ । ମଧ୍ୟମ ଲମ୍ବ ପତଳା ଗୌରବର୍ଣ୍ଣ ଯୁବକ । ମୋଟା ନିଶ ଦାଢ଼ିରେ ସାମାନ୍ୟ ରୁକ୍ଷତା ପ୍ରକାଶ ପାଉଥାଏ । କାନ୍ଧରେ ଝୁଲୁଥାଏ ଶାନ୍ତିନିକେତନର ଏକ ଝୁଲା ବ୍ୟାଗ । ବୋଧହୁଏ ଏହା ଭିତରେ ଦୀର୍ଘ ସମୟ ଅତିକ୍ରାନ୍ତ କରିଗଲାଣି । ସାହିତ୍ୟ ଆଲୋଚନା ବ୍ୟତୀତ ତାଙ୍କର ମୋର ସାକ୍ଷାତ ହୋଇନାହିଁ । ସେଇଥିପାଇଁ ବୋଧହୁଏ ସେହି ସମୟରେ ଦେଖିଥିବା ଚେହେରା ଏ ଯାବତ୍ ମୋ ସ୍ମୃତିପଟରେ ସାଇତି ହୋଇ ରହିଛି ।

ଏବେ ଡକ୍ଟର ବସନ୍ତ କିଶୋର ହେଉଛନ୍ତି ଜଣେ ପ୍ରତିଷ୍ଠିତ ବ୍ୟକ୍ତିସମ୍ପନ୍ନ ସାହିତ୍ୟର ପ୍ରତ୍ୟେକଟି ବିଭାବରେ ସେ ଖୁବ୍ ମହିମାମୟ-ଶିଶୁ କବିତାରୁ ଆରମ୍ଭ କରି ପ୍ରବନ୍ଧ ଓ ସମାଲୋଚନା ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ବେଶ୍ ଗୋଟେ ଆଦୃତ ନାମଟିଏ । ମୂଲ୍ୟବୋଧ ଭିତ୍ତିକ ସାହିତ୍ୟ ସୃଷ୍ଟିରେ ତାଙ୍କ ପ୍ରବନ୍ଧ :(୧)ମୂଲ୍ୟବୋଧଭିତ୍ତିକ ଶିକ୍ଷାର ବିକାଶରେ ଭାଷାଶିକ୍ଷକଙ୍କ ଭୂମିକା, (୨) ବହିପଢ଼ା ଅଭ୍ୟାସ, (୩) ନବକୃଷ୍ଣ ଚୌଧୁରୀ ଜଣେ ନିଆରା ମଣିଷ, (୪) ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବା ଦିଗରେ ଅଣଓଡ଼ିଆଙ୍କ ଅବଦାନ, (୫) ନନ୍ଦକିଶୋର ତ୍ରୟୀଙ୍କ କବିତାରେ ପଲ୍ଲୀଚିତ୍ର, (୬) କୃଷ୍ଣ ସିଂହଙ୍କ ଚୌପଦୀରେ ରତି ଓ ପ୍ରୀତି (୯) ସାଂପ୍ରତିକ କବିତାରେ ସାମାଜିକ ରୂପରେଖ, (୧୦) ଓଡ଼ିଆ କବିତାରେ ବ୍ୟଙ୍ଗ, (୧୧) ଓଡ଼ିଆ ଲୋକଗୀତ ଏକ ଅଧ୍ୟୟନ, (୧୨) କାହାକୁ କହିବା, (୧୩) ଆମ ଜୀବନ ରାସ୍ତାର ହାଲଚାଲ୍ । ଏହି ବିଷୟବସ୍ତୁମାନଙ୍କରେ ଡକ୍ଟର ସାହୁ ନିଜ ଅନୁଶୀଳନ ଓ ଅନୁଭବୀ ମନ ବେଶ୍ ବାରି ହୋଇପଡେ । ଏହି ବିଷୟ



Digitized by srujanika@gmail.com

ମାନଙ୍କରେ ସ୍ରଷ୍ଟା ଅତୀତ ସହ ବର୍ତ୍ତମାନ ଏବଂ ଏହାକୁ ନେଇ ଉପୁଜୁଥିବା ସମସ୍ୟା ଓ ନିରାକରଣ ସହ ସମାଧାନର ସୂତ୍ରପାତ କରିଛନ୍ତି । ଜଣେ ଶିକ୍ଷକଙ୍କ ଭୂମିକା କ'ଣ ହେବା ଉଚିତ୍ ଓ ଏହା କିପରି ଅଭିବୃଦ୍ଧି ଘଟାଇବାରେ ସହାୟକ ହୋଇପାରିବ ସେ ସବୁକୁ ନେଇ ଗୋଟେ ତଥ୍ୟଭିତ୍ତିକ ଆଲୋଚନା କରିଛନ୍ତି ସେ । ସେହିପରି ନନ୍ଦକିଶୋର ତ୍ରୟୀଙ୍କ ତିନି ସ୍ରଷ୍ଟା ପଲ୍ଲୀଚିତ୍ରକୁ କିପରି ସେମାନଙ୍କ ଲେଖାମାନଙ୍କରେ ଜୀବନ୍ତ କରାଇଛନ୍ତି ତାହାର ପ୍ରତିଛବି ଆଲେଖ୍ୟଟି ବାଢ଼ିଛନ୍ତି ଡକ୍ଟର ସାହୁ । ଦୁଇ ନନ୍ଦକିଶୋର ଯଥା- ନନ୍ଦକିଶୋର ବଳ ଓ ନନ୍ଦକିଶୋର ସାମଲ ଉଭୟ ଗୋଟିଏ ଗ୍ରାମର-ଉଭୟ ପ୍ରକୃତିର ସୌନ୍ଦର୍ଯ୍ୟକୁ ଚିତ୍ରିତ କରିବା ସମୟରେ ଡକ୍ଟର ସାହୁ ପଢ଼ି ପାରିଛନ୍ତି ତାଙ୍କ ପିଲାଦିନ ସ୍ମୃତି । ଗୋଟେ ବିସ୍ଥାପିତ ହେଇଯାଉଥିବା ଗାଁ ଦୃଶ୍ୟପଟଟିଏ ପଢ଼ି ହୁଏ ଏହି ଦୁଇ କବିଙ୍କ କବିତାରେ । ସତେ ଯେମିତି ଆତ୍ମଜୀବନୀଟିଏ ଆପଣା ଛାଏଁ ପ୍ରସ୍ତୁତ ହୋଇଯାଇଛି ସେହି କବିତାମାନଙ୍କରେ । ସତନ୍ତତା ହରେଇ ବସିଥିବା ଗାଁକୁ ସ୍ପଷ୍ଟ ଦେଖିହୁଏ ଏହି କବିମାନଙ୍କ କବିତାରେ । ଠିକ୍ ଏହାପରେ ସାଂପ୍ରତିକ କବିତାରେ ସାମାଜିକ ରୂପରେଖ ବିଷୟବସ୍ତୁରେ ଗୋଟିଏ ନିରପେକ୍ଷ ବିଚାର ରଖିଛନ୍ତି କବିତାମାନଙ୍କ ଉପରେ । ଯଦିଓ ଡକ୍ଟର ସାହୁ ଜଣେ ସମାଲୋଚକୀୟ ଦୃଷ୍ଟିଭଙ୍ଗୀଟିଏ ରଖିଛନ୍ତି ତାଙ୍କ ଆଲୋଚ୍ୟ ବିଷୟବସ୍ତୁରେ କିନ୍ତୁ ଅନେକ କବି ଓ କବିତାମାନଙ୍କୁ ପର୍ଯ୍ୟାପ୍ତ ଭାବରେ ନିଆଯାଇ ପାରିଥାନ୍ତା ଏବଂ ଅନେକ କବିତାମାନଙ୍କ ସହ ମୌଳିକତାକୁ ମଧ୍ୟ ଆଣିପାରିଥାନ୍ତେ ଡକ୍ଟର ସାହୁ । କିନ୍ତୁ ସ୍ରଷ୍ଟାଙ୍କ ବଳିଷ୍ଠ ଆଲୋଚନାକୁ ତାରିଫ୍ କରିବାକୁ ପଡ଼େ ଏହି ଆଲୋଚନାକୁ ପଢ଼ିବା ପରେ । ସେ କେବଳ ସାମାଜିକ ଚିତ୍ରକଥାକୁ ଆଲୋଚନା କରିନାହାନ୍ତି ବରଂ ବ୍ୟଙ୍ଗାତ୍ମକ ଦିଗକୁ ମଧ୍ୟ ଚିହ୍ନିତ କରିଛନ୍ତି । ସାଂପ୍ରତିକ ସାହିତ୍ୟକୁ ନେଇ ସ୍ୱଚ୍ଛ ଆଲୋଚନା ରଖିଥିଲେ ମଧ୍ୟ ସେ ଭୁଲିନାହାନ୍ତି ନିଜେ ଦୀର୍ଘସମୟ ଅତିବାହିତ କରିଥିବା ବଣପାହାଡ଼ ଘେରା ସେହି କୋରାପୁଟର ଚିରହରିତ ସବୁଜ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ, ସେଥିରେ ବସବାସ କରୁଥିବା ଆଦିମ ବନବାସୀମାନଙ୍କୁ ତାଙ୍କ ସାହିତ୍ୟରେ ରୂପଦେବା ପାଇଁ । ଏହାକୁ ନେଇ ଡକ୍ଟର ସାହୁ ଏକ ସତନ୍ତ୍ର ଆଲେଖ୍ୟ ବାଢ଼ିଛନ୍ତି 'କୋରାପୁଟର ସଂସ୍କୃତି ସମ୍ପର୍କରେ । ତାଙ୍କ ଭାଷାରେ- "କୋରାପୁଟକୁ ଭଲ ପାଇବା, ତାର ପାଣି, ପବନ, ସଂସ୍କୃତିକୁ ଭଲପାଇବା ସମସ୍ତଙ୍କ ପାଇଁ ସମ୍ଭବ ନୁହେଁ । କିନ୍ତୁ, କବି, ଭାବୁକ, ଗାଳ୍ପିକ ତଥା ସାହିତ୍ୟିକମାନେ କୋରାପୁଟର ମାୟାରେ ବାୟା ହୁଅନ୍ତି । ତାଙ୍କ ଅବଚେତନରେ କୋରାପୁଟର ପାହାଡ଼-ପର୍ବତ, ଝରଣା ନଦନଦୀ ଡଙ୍ଗର ଠାରୁ ଆରମ୍ଭ କରି ତାର ସାଦାସିଧା ସରଳ ଆଦିବାସୀ ମଣିଷଙ୍କ ଚାଲିଚଳଣି, ଆଚାର ବିଚାର, ନୃତ୍ୟଗୀତ ସବୁ କିଛି ଛାପ ହୋଇ ରହିଯାଏ ତା ଭିତରେ-କୋରାପୁଟିଆ ନ ହୋଇବି ସେ ହୋଇଯାଏ କୋରାପୁଟିଆ ।"

ଉପକୂଳ ଅଞ୍ଚଳରୁ ଯାଇଥିବା ଲେଖକଟିଏ କୋରାପୁଟର ମାୟାରେ ଦୀର୍ଘ



Digitized by srujanika@gmail.com

ତିରିଶ ବର୍ଷ କାଳ ହଜିଯାଇହୁଏ, ତାହା ବସନ୍ତ ବାବୁଙ୍କୁ ପଢ଼ିଲେ ଜାଣିହୁଏ । କବିଙ୍କ ଆଖିରେ କୋରାପୁଟ ହେଉଛି ଭୂସ୍ୱର୍ଗ । ଏହାକୁ କୋରାପୁଟର ବନବାସୀ ବା ଅଧିବାସୀମାନେ ଗର୍ବ ଅନୁଭବ କରୁଥିଲେ । କିନ୍ତୁ, ସରକାରଙ୍କ ନୂଆ ଜିଲ୍ଲା ବିଭାଜନରେ ଏହା ନକ୍ସାଗାରରେ ଚାରିଖଣ୍ଡ ହୋଇଗଲା । ଯଥା-କୋରାପୁଟ, ରାୟଗଡ଼ା, ନବରଙ୍ଗପୁର ଓ ମାଲକାନଗିରି । ଗୋଟେ ଏକତ୍ୱର ଭାବକୁ ବିଖଣ୍ଡିତ କରିଦେଲା- ଆର୍.ଆଇ ଓ ତହସିଲ୍‌ଦାରଙ୍କ ନକ୍‌ସା ଗାର । ତଥାପି ସେମାନେ ପରସ୍ପର ଭିତରେ ନାଁକୁ ନେଇ ଅଲଗା ହୋଇଗଲେ ବି ଭାବଗତ ଭାବରେ ଏକାତ୍ମ ହୋଇ ରହିଛନ୍ତି ଯାହା ଡକ୍ଟର ସାହୁ ତାଙ୍କ ଲେଖାରେ ଉଲ୍ଲେଖ କରିଛନ୍ତି । କୋରାପୁଟର ପର୍ଯ୍ୟଟନ କ୍ଷେତ୍ର- ଡୁଡୁମା ଜଳପ୍ରପାତ, ଗୁପ୍ତେଶ୍ୱର, ନନ୍ଦପୁରର ବତ୍ରିଶ ସିଂହାସନ, ଶାବର ଶ୍ରୀକ୍ଷେତ୍ର ଆହୁରି ଅନେକ । ଡକ୍ଟର ସାହୁ ଏଠାରେ ବସବାସ କରୁଥିବା କନ୍ଧ, ବଣ୍ଡା, କୋୟା, ସଉରା, ଗାଦବା, ଗଣ୍ଡ, ଭତରା, ଭୂମିଆ, ଶବର, ଅମାନତ୍ୟ ଆଦି କେତେକ ମୁଖ୍ୟ ଆଦିବାସୀଙ୍କ ବ୍ୟତୀତ ହାଡି, ପାଣ, ଧୋବା, ନମଶୁଦ୍ର, ଗୌଡ଼, ଚାଣ୍ଡାଳ, ରେଲି, ବାଉରି, କଣ୍ଡରା, କୁମୁଟି ଓ ଶୁଣ୍ଢିମାନଙ୍କ ସଂପ୍ରଦାୟ ବିଷୟରେ ଗୋଟେ ବିଷଦ ବିବରଣୀ ପ୍ରଦାନ କରି କୋରାପୁଟ ସଂପର୍କିତ ଏକ ଜ୍ଞାନ ପାଠକମାନଙ୍କୁ ପ୍ରଦାନ କରିଛନ୍ତି । ଏତଦ୍ ଭିନ୍ନ ଏଠାରେ ପାଳିତ ହୋଇଆସୁଥିବା ସାଂସ୍କୃତିକ ପର୍ବପର୍ବାଣି, ଲୋକ କଥା ଓ ଲୋକଗୀତ ଇତ୍ୟାଦିକୁ ମଧ୍ୟ ସୁନ୍ଦର ଭାବରେ ବର୍ଣ୍ଣନା କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

ଡକ୍ଟର ସାହୁ ଗୋଟିଏ ସାହିତ୍ୟିକ ମୂଲ୍ୟବୋଧକୁ ଠିକ୍ ଭାବରେ ନ୍ୟାୟ ଦେଇଛନ୍ତି । କାରଣ କୋରାପୁଟର ଗୁନ୍‌ଚା ପର୍ବ, ଉଆଁସ ପର୍ବ, ଭୋଦନୂଆ ପର୍ବ, ଚାଉଳଧୁଆ ପର୍ବ, ଦଶହରା, ଜାଗର, ଦିଆଲି, ମାଘ ପରବ, ଅଗ୍ନି ଯାତ୍ରା, ପୁଷ୍ ପର୍ବ, ବେଣ୍ଟଯାତ୍ରା ପର୍ବ, ଅଗ୍ନି ଉତ୍ସବ, ହଳପୋଡ଼ି, ମଣ୍ଡେଇ, ବାଲିଯାତ୍ରା, ଚଇତି ପର୍ବ ଇତ୍ୟାଦି ବିଷୟରେ ସୂଚନା ପ୍ରଦାନ କରି ସାହିତ୍ୟର ଏକ ବଳିଷ୍ଠ ପରମ୍ପରାଟିଏ ସୃଷ୍ଟି କରିଛନ୍ତି ।

ଏତଦ୍ ଭିନ୍ନ ଡକ୍ଟର ସାହୁ ବନବାସୀମାନଙ୍କ ବେଶଭୂଷା, ଜୀବନ ଜୀବିକା, ପର୍ବପର୍ବାଣି, ରାଜନୀତି ଓ ଲୋକବିଶ୍ୱାସ, ବିବାହ, ଜନ୍ମମୃତ୍ୟୁକୁ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ତତ୍ ସହିତ ଆଦିବାସୀମାନଙ୍କ ନୃତ୍ୟଗୀତ କିପରି ସେ ସବୁ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ, ତତ୍ ସମ୍ପର୍କୀତ ଏକ ସମ୍ୟକ୍ ବିବରଣୀ ପ୍ରଦାନ କରିଛନ୍ତି ତାଙ୍କ ଲେଖାମାନଙ୍କରେ । ବିଶେଷ କଥା ହେଲା ବସନ୍ତ କିଶୋର ସାହୁ ନିଜର ବୃତ୍ତିଗତ ଜୀବନକୁ ଅଧ୍ୟାପନା କାର୍ଯ୍ୟରେ କେବଳ ସୀମିତ ନରଖି ସେଠାକାର ଜନଜୀବନକୁ ଏକ ଗଭୀର ଅଧ୍ୟୟନ କରିଛନ୍ତି । ସୁନାବେଡ଼ାରେ ଚାକିରି କରି ମଧ୍ୟ କୋରାପୁଟର ପ୍ରାକୃତିକ ରାଜରାଣୀ ବେଶକୁ ଅଞ୍ଜନ ପରି ଆଖିରେ ମାଖିଛନ୍ତି । ଗୋପୀନାଥ ମହାନ୍ତିଙ୍କ ପରି ଆଦିବାସୀମାନଙ୍କ ଜୀବନ ସହ ନିଜକୁ ମିଶାଇ ସେମାନଙ୍କ ମନସ୍ତତ୍ତ୍ୱକୁ ସୁନ୍ଦର ଭାବେ ସାହିତ୍ୟରେ ରୂପାୟିତ କରିଛନ୍ତି । କଥାକାର ତିଆରି କରିଥିବା କଥା ସାମ୍ରାଜ୍ୟରେ



Digitized by srujanika@gmail.com

ଏକ ନୂଆ ଦିଶା ଓ ଦର୍ଶନଟିଏ ତିଆରି କରିଛନ୍ତି । ବିଶେଷ କରି ପିଲାଦିନେ ଶୁଣିଥିବା 'ଟୁଆଁଟୁଇଁ'ର ପିଠାଖିଆ ଗପ ତାଙ୍କ ପ୍ରାଣରେ ଗଭୀର ଆଲୋଡ଼ନ ସୃଷ୍ଟି କରିଛି । ଯାହାର ମୂଳଦୁଆ ଉପରେ କୋରାପୁଟର ମାଟି ପାଣି ପବନର ବାସ୍ନା ଚେତନ ଏବଂ ଅବଚେତନ ଅବସ୍ଥାରେ ହେଉ ପ୍ରଭାବିତ କରିଛି ଡକ୍ଟର ସାହୁଙ୍କୁ । ବାଲ୍ୟକାଳରେ ମାନସପଟରେ ଛାପି ହୋଇଯାଇଥିବା ନନ୍ଦ କିଶୋର ବଳ ଓ ନନ୍ଦ କିଶୋର ସାମଲଙ୍କ ସୃଜନ ସମ୍ଭାର ପରବର୍ତ୍ତୀ ଅବସ୍ଥାରେ କୋରାପୁଟ ମାଟିରେ ତାଙ୍କୁ କାଳିସୀ ରୂପେ କାମ କରିଛି ଏବଂ ଅତୀତ ଓ ବର୍ତ୍ତମାନର ଏକ ସୁମିଷ୍ଟ ମିଶ୍ର ରାଗର ଉତ୍ତରଣ ଘଟିଛି ଡକ୍ଟର ସାହୁଙ୍କ ସୃଜନ ସମ୍ଭାରରେ ।

କୋରାପୁଟରୁ କଟକ ଆସିବା ବାଟରେ ତାଙ୍କ ସହ ଯାହା ସାଥି ହୋଇ ଆସିବ ତା ହୋଇପାରେ କିଛି ମୂଲ୍ୟବାନ କାଷ୍ଠ ଆସବାସପତ୍ର କିନ୍ତୁ ଚେତନ ସ୍ତରରେ ଯାହା ତାଙ୍କୁ ଉଦ୍‌ବୁଦ୍ଧ କରି ସାହଚର୍ଯ୍ୟ ଦେଇ ଆସିବ ତାହାହିଁ ହେବ ଆଗାମୀ ସାହିତ୍ୟର ଜଗତୀକରଣ ବା ବିଶ୍ୱାୟନ ସମୟ ପାଇଁ ନିଶ୍ଚୟ ଗୋଟେ ସମୃଦ୍ଧ ସୃଜନ ସାହିତ୍ୟ । ପ୍ରତିଷ୍ଠା ଉପରେ ଆଉ ଏକ ମହାନ ମହାର୍ଘ ପ୍ରତିଷ୍ଠା ସାହିତ୍ୟରେ । କବି, କଥାକାର, ଆଲୋଚକ, ପ୍ରାବନ୍ଧିକ ଡକ୍ଟର ସାହୁଙ୍କୁ କୋରାପୁଟର ଜନଜୀବନ ସଂପର୍କୀତ ସାହିତ୍ୟ ନିଶ୍ଚୟ ଆଣିଦେବ ସର୍ବଶ୍ରେଷ୍ଠ ସୃଜନ ସମୃଦ୍ଧି-ଏଥିରେ ଦ୍ୱିମତ ହେବାର ନାହିଁ ।



ଅଧ୍ୟାପକ, ଇଂରାଜୀ ବିଭାଗ
କେନ୍ଦ୍ରପଡା ସ୍ୱୟଂଶାସିତ ମହାବିଦ୍ୟାଳୟ
କେନ୍ଦ୍ରାପଡା-୭୫୪୨୧୧
ମୋ : ୯୪୩୮୫୪୫୧୭୯



Digitized by srujanika@gmail.com

# ସାହିତ୍ୟ ସାଧକ ବସନ୍ତ ବାବୁ

## ଡକ୍ଟର ସରୋଜକାନ୍ତ ଚୌଧୁରୀ

ସେଦିନ ସନ୍ଧ୍ୟାରେ ଯେଉଁ କେତେଜଣ ବିଶିଷ୍ଟ ସାହିତ୍ୟିକଙ୍କୁ ମାଣିକ-ବିଶ୍ୱନାଥ ସ୍ମୃତିନ୍ୟାସର ସଭା ଶେଷରେ ପ୍ରଫେସର ଜଗନ୍ନାଥ ମହାନ୍ତି ମୋତେ ପରିଚୟ କରାଇ ଦେଇଥିଲେ ସେମାନଙ୍କ ମଧ୍ୟରୁ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ । ଯୁବକ ଭଳି ପ୍ରତୀୟମାନ ହେଉଥିବା ବସନ୍ତବାବୁ ସାହିତ୍ୟ ସାଧନାରେ ଯେ ବରିଷ୍ଠ, ଗବେଷଣା ଓ ଅଧ୍ୟାପନାରେ ପରିପକ୍ୱ ପରବର୍ତ୍ତୀ ସମୟରେ ଆଲୋଚନାରୁ ଜାଣିଗଲି । ରାଶି ରାଶି ସାହିତ୍ୟ ସୃଷ୍ଟି କରିଥିବା ବସନ୍ତ ବାବୁ ଜଣେ ସୁସଂଗଠକ ଓ ସଫଳ ମଣିଷ ମଧ୍ୟ ।

ସାହିତ୍ୟ ସୃଷ୍ଟି କରୁଥିବା ଗୁଣୀଜନମାନେ ଅନନ୍ୟ ବ୍ୟକ୍ତିତ୍ୱର ଅଧିକାରୀ । ଏ କଥା ସ୍କୁଲରେ ପଢୁଥିବା ସମୟରେ ସାର୍‌ଙ୍କ ଠାରୁ ଶୁଣିଥିଲି । ସାହିତ୍ୟିକମାନଙ୍କର ଭାବନାର କୁହୁକ ବହି ପୃଷ୍ଠାରେ ଫୁଟି ଉଠୁଥିବା କବିତା ଓ ଗଳ୍ପଗୁଡ଼ିକର ଅନନ୍ୟ ଆଲେଖ୍ୟ । ପ୍ରକୃତିର ଅନୁପମ ସମ୍ଭାର-ଖରା ବର୍ଷା ଶୀତ ଓ ବସନ୍ତର ଦୃଶ୍ୟପଟକୁ କେତେ ସୁନ୍ଦର ଭାବରେ ସାବଲୀଳ ଭାଷାରେ ସେମାନେ ପ୍ରକାଶ କରିପାରନ୍ତି । ସେଥିପାଇଁ ସାହିତ୍ୟିକମାନେ କାଳଜୟୀ । ଏ ଜାତିର ନମସ୍ୟ ।

ସାହିତ୍ୟ କୌଣସି ଭୌଗୋଳିକ ସୀମାରେଖାରେ ଆବଦ୍ଧ ନୁହେଁ । ଚିରସ୍ରୋତା ନଦୀଟିଏ ପରି ଶିଳାବନ୍ଧୁର ପଥ ଦେଇ ସେ ଆଗକୁ ଡେଇଁ ଡେଇଁ ଚାଲିଥାଏ । ସେ ଆଗକୁ ଆଗକୁ ମାଡ଼ିଚାଲେ । ତାକୁ କୌଣସି ଭୌଗୋଳିକ ସୀମାରେଖା ଅଟକାଇ ପାରେ ନାହିଁ । ତା' ପାଇଁ କେହି ଶତ୍ରୁ ନୁହେଁ-ସମସ୍ତେ ତାର ବନ୍ଧୁ । ସେହିପରି ସାହିତ୍ୟ ସ୍ରୋତଟିଏ । ସେଥିପାଇଁ ବିଶ୍ୱସାହିତ୍ୟ ଆଜି ଗରୀୟାନ । କୁହାଯାଏ ସାହିତ୍ୟିକର ଜାତି ନାହିଁ, ଧର୍ମ ନାହିଁ, ଦେଶ ନାହିଁ । ସେ ସଂସାର ଭିତରେ ଥାଇ ମଧ୍ୟ ସଂସାର ଛଡ଼ା, ଘରେ ଥାଇ ମଧ୍ୟ ଅଘୋର । ସେହିଭଳି ବ୍ୟକ୍ତିତ୍ୱମାନଙ୍କୁ ଆମେ ପାଖରେ ପାଇ ମଧ୍ୟ ଚିହ୍ନି ପାରୁନା । କେହି ଜଣେ ଚିହ୍ନେଇବାକୁ ପଡ଼େ । ସେହିପରି ଜଣେ ସାହିତ୍ୟ ପ୍ରାଣ ବ୍ୟକ୍ତି ହେଉଛନ୍ତି ବସନ୍ତ ବାବୁ । ସେହି ପ୍ରିୟ ସାହିତ୍ୟିକ ବସନ୍ତ ବାବୁ କୋରାପୁଟ ଜିଲ୍ଲାର ସୁନାବେଡ଼ାରେ ଦୀର୍ଘ ଦିନ ହେବ ଅବସ୍ଥାନ କରୁଛନ୍ତି । ସେ ଭୌଗୋଳିକ ସୀମାରେଖା ଡେଇଁ ଯାଇଛନ୍ତି । ଦୈହିକ ଭାବେ ସୁନାବେଡ଼ାରେ ରହିଲେ ମଧ୍ୟ ଆଧିଦୈହିକ ବା



Digitized by srujanika@gmail.com

ମେଟାଫିଜିକାଲ ଭାବେ ତାଙ୍କ ସାହିତ୍ୟ ସତ୍ତାଟି ଓଡ଼ିଶାକୁ ବ୍ୟାପି ଯାଇଛି । ତାଙ୍କ ରଚିତ ପୁସ୍ତକ ଓଡ଼ିଶାର ସବୁ ଲାଇବ୍ରେରୀରେ ମିଳିବ ଏଥିରେ ସନ୍ଦେହ ନାହିଁ ।

ଥରେ ଜଣେ ବନ୍ଧୁ ପଚାରିଲେ, 'ସାହିତ୍ୟିକ କ'ଣ ସାଧାରଣ ମଣିଷ ଠାରୁ ଭିନ୍ନ ? ମୁଁ କହିଲି, ହଁ ନିଶ୍ଚୟ ଭିନ୍ନ । କାରଣ ସେ ଯାହା ଦେଖେ, ଯାହା ଶୁଣେ ସମସ୍ତଙ୍କ ଠାରୁ ଭିନ୍ନ । ସାହିତ୍ୟିକ ସତ୍ତାଟି ସବୁ ଦୃଶ୍ୟ ନିଆରା ଢଙ୍ଗରେ ଦେଖେ ଓ ଅନ୍ୟମାନଙ୍କର ଆନନ୍ଦ ପାଇଁ ସୂତ୍ର ଖୋଜେ, ପରିବେଷଣ କରେ । ପାଠକ ପଢ଼ି ସାରିଲା ପରେ କ'ଣ ଭାବିବ ବୋଲି ଚାହିଁବସେ । ଗୁଣମୁଗ୍ଧ ପାଠକ କେବେ କେବେ ଚିଠି ଖଣ୍ଡିଏ ଲେଖେ । ସେଇ ଲେଖାରୁ ସାହିତ୍ୟିକ ତା' ପରିଶ୍ରମର ଫଳ କଳନା କରିନିଏ । ସାଧାରଣ ଲୋକ କିନ୍ତୁ ନିଜର ଆନନ୍ଦ ପାଇଁ ଦୃଶ୍ୟ ସନ୍ଦର୍ଶନ କରେ । ତାକୁ ଭଲ ଲାଗୁଥିବା ସ୍ଥାନକୁ ଯାଏ । ଦେହ ଓ ମନରେ ଆନନ୍ଦ ଟିକକ ପାଇଁ ସେ ଖର୍ଚ୍ଚାନ୍ତ ହୁଏ । ଶ୍ରମ ସମୟ ଖର୍ଚ୍ଚ କରେ । ଲେଖକ କିନ୍ତୁ ସବୁ ଦୃଶ୍ୟକୁ, ପ୍ରକୃତିର ସମ୍ଭାରକୁ ଗାଁ ମୂଳକକୁ ପହଞ୍ଚାଏ । ସେଇଥିରେ ସେ ଖୁସି ହୋଇଯାଏ ।

ସତ କହିବାକୁ ଗଲେ ସାହିତ୍ୟ ସଭାବଟି ସାହିତ୍ୟିକ ଭିତରେ ସବୁବେଳେ ନଥାଏ । କାଳିସୀ ଲାଗିଲା ଭଳି ସେ ସଭାବ ଆସେ । ଯେମିତି ବିଲରେ ଚାଷୀ ଭାଇଟିଏ ଗୁଣୁଗୁଣୁ ହୋଇ ଗୀତ ବୋଲେ, ଚିତ୍ରକରଟିଏ ମାଟି ଉପରେ ଗାରେଇ ଗାରେଇ ମନକଥା ପ୍ରକାଶ କରେ ସେମିତି ସାହିତ୍ୟିକକୁ ସାହିତ୍ୟ ମାଡ଼େ । ସେ କାଗଜ କଲମ ଖୋଜେ । ତାକୁ ସାହିତ୍ୟ ନିଶା ଘାରେ । ଏ ନିଶା ଯାହାକୁ ଲାଗେ ତା' ପାଇଁ ଏ ଦୁନିଆ ପାଲଟିଯାଏ ସାହିତ୍ୟର ରଙ୍ଗଶାଳା । ସେ ଅକ୍ଷରରେ ଶବ୍ଦରେ ପ୍ରାଣ ଭରିଦିଏ । ତା'ର ଯାଦୁକରୀ ସ୍ପର୍ଶରେ ସାଧାରଣ ଘଟଣାଟି ଅସାଧାରଣ ହୋଇଯାଏ । ସେମାନେ ସାହିତ୍ୟ ପାଇଁ ସବୁ କିଛି ଭୁଲି ପାରନ୍ତି-ସାହିତ୍ୟ ତାଙ୍କ ପାଇଁ ସାଧନା-ସେମାନେ ସାହିତ୍ୟର ସାଧକ । ସେହିଭଳି ଜଣେ ସାହିତ୍ୟ ସାଧକ ହେଉଛନ୍ତି ବସନ୍ତ ବାବୁ ।

ବାଲ୍ୟ କାଳରୁ ସାହିତ୍ୟ ପ୍ରତି ଅସାମାନ୍ୟ ଦୁର୍ବଳତା ତାଙ୍କ ଭିତରେ ଭରି ଦେଇଛି ସାହିତ୍ୟପ୍ରାଣ । ସେ କେବଳ ଲେଖକ ନୁହଁନ୍ତି-ସେ ସମସ୍ତଙ୍କର ପ୍ରିୟ ସାହିତ୍ୟ ସଂଗଠକ, ସୁବକ୍ତା, ସଂକଳକ, ସମ୍ପାଦକ ଓ ବନ୍ଧୁ ବତ୍ସଳ ବସନ୍ତ ବାବୁ । 'ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି' ପୁସ୍ତକ ସମ୍ପାଦନା କାଳରେ ମୁଁ ତାଙ୍କ ଘନିଷ୍ଠ ସମ୍ପର୍କରେ ଆସି ତାଙ୍କ ବ୍ୟକ୍ତିତ୍ୱ, ସମ୍ପାଦନା କୌଶଳ ଓ ବଳିଷ୍ଠ ଦିଗ୍‌ଦର୍ଶନ ସହିତ ପରିଚିତ ହୋଇଛି । ସୁଦୂର ସୁନାବେଡ଼ାରେ ରହି ମଧ୍ୟ ସେ ସମସ୍ତ କାର୍ଯ୍ୟ ସୂଚାରୁ ରୂପେ ସମ୍ପାଦନା କରିପାରିଥିଲେ । ଏହାହିଁ ତାଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ।

ସାହିତ୍ୟିକ ସମୟ ସହିତ ତାଳ ଦେଇ ନିଜକୁ ବଦଳାଇଥାଏ-ଯେମିତିକି ତାଳପତ୍ର ଓ ଲେଖନୀ ବ୍ୟବହାରରୁ ଆରମ୍ଭ ହୋଇ କାଗଜ କଲମ ଓ କମ୍ପୁଟର ବ୍ୟବହାର ସାହିତ୍ୟ ଜଗତରେ ଏକ ଭିନ୍ନ ଉତ୍ସାହ ସୃଷ୍ଟି କରିଛି । ସେହି ସବୁ ବିଜ୍ଞାନ ଓ କାରିଗରୀ



Digitized by srujanika@gmail.com

ବିଦ୍ୟାର ବ୍ୟାପକ ବ୍ୟବହାର କରିବା ସାହିତ୍ୟିକର ରୁଚି ଉପରେ ନିର୍ଭର କରେ । ବସନ୍ତ ବାବୁ ସାହିତ୍ୟ ପାଇଁ କମ୍ପ୍ୟୁଟରର ବହୁଳ ବ୍ୟବହାର କରି ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଛନ୍ତି । ବିଶ୍ୱସାହିତ୍ୟରେ ଯେଉଁ ନୂତନ ଜ୍ଞାନ ଓ କୌଶଳର ପ୍ରୟୋଗ କରାଯାଉଛି ତାହା ଅନେକଙ୍କ ପାଇଁ ଦୁର୍ବୋଧ୍ୟ । ଯେଉଁ ସାହିତ୍ୟିକ ବନ୍ଧୁ ଶ୍ରମ ଓ ସମୟର ଉପଯୋଗ କରି ଏହି କୌଶଳ ହାସଲ କରିଛନ୍ତି ସେମାନେ ନୂତନ ପିଢ଼ି ପାଇଁ ଏକ ଯୁଗପୋଯୋଗୀ ଧାରା ସୃଷ୍ଟି କରିଛନ୍ତି ।

ମଣିଷ ଜୀବନ ସୀମିତ । କିନ୍ତୁ ସାହିତ୍ୟିକର ଜୀବନ ଅସୀମ । ଓଡ଼ିଶାର ବରପୁତ୍ର ସାହିତ୍ୟ ସାରଥୀମାନେ ମରି ମଧ୍ୟ ଅମର । ତାଙ୍କର କାଳଜୟୀ ସାହିତ୍ୟ ହିଁ ମା ଓ ମାଟି ପାଇଁ ତାଙ୍କ ଦରଦୀ ହୃଦୟର ଗାଥା ସୃଷ୍ଟି କରୁଛି । କିଏ ଜାଣେ କାଳର କରାଳ ସ୍ରୋତରେ କେତେ ଜାତି କେତେ ଭାଷା ଉତ୍‌ଥାନ ପତନର ସମ୍ମୁଖୀନ ହୋଇଛି । ଆଗକୁ ହୋଇ ଚାଲିଥିବ ମଧ୍ୟ । ଓଡ଼ିଆ ଛାଡ଼ି ପିଲାଏ ଇଂରାଜୀ ପଢ଼ିବେ, କାଗଜ କଲମ ଛାଡ଼ି ପିଲାଏ କମ୍ପ୍ୟୁଟରରେ ଲେଖିବେ । ପୁସ୍ତକ ବଦଳରେ ଇ-ବହି ପଢ଼ିବେ । ସେତେବେଳେ ଯାଏ ଭାଷା ଲଢ଼େଇ କରି ବଞ୍ଚି ରହିବ ? ଏହି ଆଶଙ୍କାରେ ବିବ୍ରତ ଆଜି ବୁଦ୍ଧିଜୀବୀ ସମାଜ । କିଏ ଏହାର ସମାଧାନର ପନ୍ଥା ବାହାର କରିବ । କ'ଣ ବା ହୋଇ ପାରିବ ଏହାର ସମାଧାନ । କେବଳ ସାହିତ୍ୟିକ ହିଁ ଏହାର ଉତ୍ତର ଦେଇ ପାରିବ ? ଯିଏ କଷ୍ଟ ସ୍ୱୀକାର କରି ଗୋଟିଏ ପରେ ଗୋଟିଏ ପୁସ୍ତକ ରଚନା କରୁଛି, ସେ କହି ପାରିବ । କାରଣ ତା'ର ଶିରା ଓ ଧମନୀରେ ପ୍ରବାହିତ ହେଉଛି ଜାତି ପ୍ରୀତିର ରକ୍ତ । ସାହିତ୍ୟିକ ସାହିତ୍ୟ ସେବା କରିବ, ସାହିତ୍ୟ ମାଧ୍ୟମରେ ଜାତିର ସେବା କରିବ, ମାଟିର ସେବା କରିବ । ବସନ୍ତ ବାବୁ ସେହି ପ୍ରକାର କାର୍ଯ୍ୟ କରୁଥିବାରୁ ଧନ୍ୟବାଦାର୍ହ ।

ବସନ୍ତ ବାବୁଙ୍କର ଅବସର ସମୟ ପାଖେଇ ଆସିଲାଣି ଶୁଣି ଖୁସି ହେଲି । ମୁଁ ଆଜି ପର୍ଯ୍ୟନ୍ତ ଦୁଇ ଜଣ ଲୋକଙ୍କୁ ଭେଟିଛି, ଯେଉଁମାନେ ଯୁବକ ପରି ଦେଖାଯାଉଥିଲେ ମଧ୍ୟ ଅବସର ଗ୍ରହଣ କରୁଛନ୍ତି । ସେମାନଙ୍କ ଭିତରେ ବସନ୍ତ ବାବୁ ଅନ୍ୟତମ । ସେମାନେ ଏବେ ତାଙ୍କର ସବୁ ସମୟ ସାହିତ୍ୟ ସେବା ଓ ସମାଜ ସେବା ପାଇଁ ଦେବେ । ଜଣେ ସୈନିକ ଭଳି ସାହିତ୍ୟିକ ମଧ୍ୟ ଲଢ଼େଇ କରିପାରେ-ସମାଜ ପାଇଁ ଦେଶ ପାଇଁ- ମାଟି ମା' ପାଇଁ । ବନ୍ଧୁକ ମୁନରେ ନୁହେଁ କଲମ ଗାରରେ । ବସନ୍ତ ବାବୁଙ୍କର ସେହି ଲଢ଼େଇ ଚାଲୁ ରହିବ କେବଳ ଏକ କ୍ଷୁଦ୍ର ପ୍ରଦୀପ ଶିଖା ପରି ତମସା ଜିଣିବା ପାଇଁ ନୁହେଁ ବରଂ ଏକ ବତୀଘରର ଆଲୋକବର୍ତ୍ତିକା ପରି ଯାହା ଭବିଷ୍ୟତ ପିଢ଼ିକୁ ବାଟ ଦେଖାଇବ । ଏ ଦେଶ ଓ ଜାତି ଏହାହିଁ ତାଙ୍କ ଠାରୁ ଆଶା କରେ ।



ଅଧ୍ୟାପକ, ଶିକ୍ଷା ବିଭାଗ
ରେଭେନ୍‌ସା ଜୁନିୟର କଲେଜ, କଟକ



Digitized by srujanika@gmail.com

# ପ୍ରତିଭା କାହାରି ଛପି ରହେନି

## ତ୍ରିଲୋଚନ ମଥାନ

ବ୍ୟକ୍ତି ଓ ବ୍ୟକ୍ତିତ୍ୱ, ଦୁହେଁ କେବେ ସମାନ ନୁହେଁ । ବ୍ୟକ୍ତି ବା ମଣିଷ ଧରାଧାମରେ କୋଟି କୋଟି ଅଛନ୍ତି ହେଲେ, ତହିଁରୁ ବ୍ୟକ୍ତିତ୍ୱ ସମ୍ପନ୍ନ ମାନବଙ୍କ ସଂଖ୍ୟା ବହୁତ କମ୍ । ଆହାର, ନିଦ୍ରା, ମୈଥୁନ, ଭୟ ଏହି ଚାରି ଗୁଣକୁ ନେଇ ଯେତେବେଳେ ମଣିଷ ବୌଦ୍ଧିକ ଜ୍ଞାନ ବିହୀନ ବିଚାରଧାରାକୁ ଆପଣେଇ ନେଇ କେବଳ ଖାଇବା ପାଇଁ ବଞ୍ଚିଛି ବୋଲି ଭାବି କର୍ମ କରେ, ସେ କର୍ମରେ କେବେ ସାଧୁତା, ନୀତି, ଆଦର୍ଶ ବୋଲି କିଛି ସୁବିଚାର ନ ଥାଏ । ଫଳରେ ସେ ବ୍ୟକ୍ତି କୈନ୍ଦ୍ରିକ ହୋଇ ଯେତେ ପାରେ ସେତେ ରାଗ, ହିଂସାକୁ ଆପଣାଇ ନେଇ ସମାଜରେ ଅମଙ୍ଗଳ ପରି କୁକର୍ମ କରିଚାଲେ । ତାଙ୍କୁ ମଣିଷ ରୂପକ ପଶୁ ଛଡା କ'ଣ କୁହାଯାଇ ପାରେ ? ଯେତେବେଳେ ସେହି ମଣିଷ ଭଗବାନଙ୍କ ଅଂଶ ବିଶେଷ ଭାବି ସଚେତନ ହୁଏ, ସେତେବେଳେ ମାନବର ଅଧିକାରୀ ହୁଏ । "ମାନବ" ଅର୍ଥ ମା+ନବ । ଅର୍ଥାତ୍ ଯେ ନୂଆ ନୁହେଁ ବୌଦ୍ଧିକ ବିଚାରକୁ ହୃଦୟଙ୍ଗମ କରି, ନିଜକୁ ଈଶ୍ୱରଙ୍କର ସନ୍ତାନ ବୋଲି ଭାବି ସତର୍କତାର ସହିତ ଭଲ ମନ୍ଦ ବିଚାର ସହିତ କର୍ମକୁ ଶୃଙ୍ଖଳିତ କରେ ସେହି ହିଁ "ମାନବ" ପଦବାଚ୍ୟ ।

ପ୍ରତ୍ୟେକ 'ମଣିଷ' ହେଉ ବା 'ମାନବ' ହେଉ, ଉଭୟଙ୍କର ପ୍ରାରବ୍ଧ କର୍ମ ଜନୀତ କୁଫଳ ବା ସୁଫଳ ଯାହା ସୁପ୍ତ ହୋଇଥାଏ ତାହା ଧୀରେ ଧୀରେ ଉପଯୁକ୍ତ ପରିବେଶ ପରିସ୍ଥିତିରେ ପରିପ୍ରକାଶ ହୁଏ । ଉଭୟଙ୍କୁ ଉଭୟ ରାସ୍ତାରେ ପ୍ରାରବ୍ଧ କର୍ମଫଳ ତାଙ୍କୁ ପରିଚାଳିତ କରେ । ଜଣେ ଉତ୍ତମ ବା ମଧ୍ୟମ ଶ୍ରେଣୀର ବ୍ୟକ୍ତି ଯେତେବେଳେ କିଛି ଭଲ ଚିନ୍ତା କରେ ଓ ତହିଁରେ ମନ ନିବେଶ କରେ ସେ ନିଶ୍ଚିତ ଭାବରେ ଭଲ ଫଳ ପ୍ରାପ୍ତ ହୋଇଥାଏ । ସୃଜନଶୀଳ ସେହି କର୍ମଫଳ ମାନଙ୍କ ମଧ୍ୟରୁ ସର୍ବୋତମ ବୋଲି ମୁଁ ଭାବେ । ପ୍ରତିଭା କାହାରି ଛପି ରହେନି । ଖତ ଗଦାରେ ପଦ୍ମ ଫୁଟିଲା ପରି, ପରିବେଶ ଓ ପରିସ୍ଥିତି ଅନୁଯାୟୀ ତାର ବିକାଶ ହୁଏ ଏବଂ ସେ ସର୍ବାଦୃତ ହୁଏ । ସେଥିରେ ଜାତି ଧର୍ମ, ଲିଙ୍ଗ, ବୟସର କିଛି ତାରତମ୍ୟ ନଥାଏ । ନଦୀ ସ୍ରୋତରେ ଏକ ଶୁଷ୍କ କାଠ ପରି ଶିରା କାଟି ଆଗକୁ ଆଗକୁ ମାଡିଚାଲେ । କେଉଁଠି ଓ କେଉଁ ପରିସ୍ଥିତିରେ ଅଟକି ଯିବ, କିଏ କହି ପାରିବ ।



Digitized by srujanika@gmail.com

ମୁଁ ଏ ପ୍ରକାର କଥା କହିବାର ଉଦ୍ଦେଶ୍ୟ ହେଉଛି ଡଃ ବସନ୍ତ କିଶୋର ସାହୁଙ୍କ ସଂପର୍କରେ କିଛି କହିବା । ମୁଁ ମହାଶୟଙ୍କୁ ସଶରୀରରେ ଦର୍ଶନ କରିବାର ସୁଯୋଗ ପାଇ ନାହିଁ ହେଲେ ତାଙ୍କ ତୈଳଚିତ୍ର ଓ ଅର୍ନ୍ତରୂପକୁ ବହୁବାର ବିଭିନ୍ନ ପତ୍ର ପତ୍ରିକା ଓ ପୁସ୍ତକରେ ଦେଖିବାକୁ ପାଇଛି । ଜଣେ ସୃଜନଶୀଳ ପ୍ରତିଭାର ରୂପ ଓ ସଭାବ, ତା'ର ଲେଖନୀ ଉପରେ ପ୍ରଭାବ ପଡିଥାଏ । ଏଣୁ ତାଙ୍କୁ ନ ଦେଖି ତାଙ୍କ ସହ ନ ମିଶି ମଧ୍ୟ ତାଙ୍କୁ ନିକଟରୁ ଦେଖିଲା ପରି ମୋର ହୃଦୟଙ୍ଗମ ହୁଏ ।

ଜଣେ ମୋର ସମଧର୍ମୀ ଶିଶୁ ସାହିତ୍ୟିକ ଭାବରେ ମୁଁ ତାଙ୍କୁ ଜାଣିଛି । ଓଡିଶାର ଯେଉଁ କେତେଜଣ ଶିଶୁ ସାହିତ୍ୟରେ ଗବେଷଣା କରି ପିଏଚ୍.ଡି ଲାଭ କରିଛନ୍ତି, ତାଙ୍କ ମଧ୍ୟରୁ ବସନ୍ତ ବାବୁ ଜଣେ । ମୁଁ ତାଙ୍କ ପାଇଁ ଗର୍ବ ଅନୁଭବ କରେ । ଶିଶୁ ସାହିତ୍ୟ ଏକ ସରଳ ସାହିତ୍ୟ ନୁହେଁ । ତା' ଭିତରୁ ନିର୍ଯାସ ବାହାର କରି ବା ମନ୍ଥନ କରି ଯେ, ଅମୃତ ବାହାର କରିଛନ୍ତି, ତାହା ଅତ୍ୟନ୍ତ ପ୍ରଶଂସନୀୟ । ତାଙ୍କର ବହୁ ଉପାଦେୟ ଓ ଶିକ୍ଷଣୀୟ ଶିଶୁ ଉପଯୋଗୀ କବିତା, ଗଳ୍ପ ମୁଁ ପାଠ କରିଛି । ଏଣୁ ଜଣେ ଆଗ ଧାଡିର ଶିଶୁ ସାହିତ୍ୟିକ ଭାବରେ ତାଙ୍କୁ ସମ୍ମାନ କରେ । ପେଷା ତାଙ୍କର ଅଧ୍ୟାପନା ହେଲେ ହେଁ ପ୍ରଗାଢ ନିଶା ହେଉଛି ସାହିତ୍ୟ ସାଧନା । ଯାହାକି ତାଙ୍କୁ ସମଗ୍ର ଓଡିଶାରେ ସୁପରିଚିତ କରି ପାରିଛି । ବୃତ୍ତିକୁ ଯେ ଈଶ୍ୱରଙ୍କ ଆଶୀର୍ବାଦ ଭାବରେ ଶ୍ରଦ୍ଧାର ସହିତ ଆପଣାଇ ନେଇ, ତାର କୃତିତ୍ୱ ପାଇଁ କେବେ ଚିନ୍ତା କରେ ନାହିଁ, ତା'ର ସୁଗନ୍ଧ ଯେ ସୁଦୂର ବିସ୍ତାରୀ ହୁଏ, ତାହା ସେ ଜାଣିପାରେ ନାହିଁ । ଡଃ ସାହୁ ତାହାକୁ ନିଜର ସୃଜନଶୀଳ ଲେଖନୀରେ ପ୍ରମାଣ କରି ଦେଖାଇଛନ୍ତି । ନିଶ୍ଚୟ ବନ୍ଧୁ ସାହୁ ଅନନ୍ୟ ପ୍ରତିଭାର ଅଧିକାରୀ, ଏଥିରେ ସଂଦେହ ନାହିଁ ।

ବନ୍ଧୁ ବାବଜୀ ଚରଣ ଜେନା, ଜଣେ ଆଗ ଧାଡିର ଗୀତିକାର, କବି, ତାଙ୍କର ରାଉରକେଲା ଆଗମନ ସମୟରେ ମୋତେ ବସନ୍ତ ବାବୁଙ୍କ ଲିଖିତ ପୁସ୍ତକ " କାହାକୁ କହିବା" ତାଙ୍କ ତରଫରୁ ଉପହାର ଦେଇଥିଲେ ।

ପୁସ୍ତକଟିକୁ ଆମୂଳ ଚୂଳ ପାଠ କରି ଯେଉଁ ତୃପ୍ତି ଅନୁଭବ କଲି, ତାହା ପ୍ରକାଶ କରିବା ସମ୍ଭବ ନୁହେଁ । ପ୍ରତ୍ୟେକ ପ୍ରବନ୍ଧରେ ଯେଉଁ ପ୍ରଚଳିତ ଢଗ ଢମାଳି ପ୍ରୟୋଗ କରି ପ୍ରବନ୍ଧର ମାନ ବୃଦ୍ଧି କରିଛନ୍ତି ତାହା, ଜଣେ ପାଠକ ମନ ନିବେଶ କରି ପାଠ କଲେ ଜାଣିପାରିବ । ସେହି " କାହାକୁ କହିବା" ପୁସ୍ତକଟି ତାଙ୍କର ଏକ ସଫଳ ପୁସ୍ତକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ବହୁ ପୁସ୍ତକ ପଢିବାର ସୁଯୋଗ ପାଇ ନାହିଁ, ହେଲେ ତାଙ୍କର ସଂକ୍ଷିପ୍ତ ପରିଚୟ ପତ୍ରରୁ ଜାଣେ ସେ ବହୁ ଶିଶୁ ପୁସ୍ତକ ସହ ଅନ୍ୟାନ୍ୟ ପୁସ୍ତକର ସ୍ରଷ୍ଟା ।



Digitized by srujanika@gmail.com

ବସନ୍ତ ବାବୁ ଅଧୁନା ଜଣେ ଅଧ୍ୟାପକ । ସେ ବହୁ ଛାତ୍ରଛାତ୍ରୀଙ୍କ ସଂପର୍କରେ ଆସୁଥିବେ, ତାଙ୍କର ସକାରାତ୍ମକ ଚିନ୍ତାଧାରା ନିଶ୍ଚିତ ପିଲାଙ୍କ ଉପରେ ପ୍ରଭାବ ପକାଉ ଥିବ । କାରଣ ଜଣେ ସୁସାହିତ୍ୟିକର ସଭାବର ସଂକେତ ହେଉଛି ସେ କେବେ ହିଂସା, ରାଗ ପରଶ୍ରୀକାତରକୁ ଆପଣାଇ ପାରେ ନାହିଁ । ଯା ଫଳରେ ସେ ନିଶ୍ଚୟ ଛାତ୍ର ବତ୍ସଳ ହେବା ସ୍ୱାଭାବିକ ।

ବସନ୍ତ ବାବୁ ନିଶ୍ଚିତ ଭାବରେ ଓଡିଶାର ଗର୍ବ ଓ ଗୌରବ । ସେ ନିଜର ସାଧନା ବଳରେ ଆଜି ଉତ୍କଳ ବାଣୀ ଭଣ୍ଡାରକୁ ନିଜର ସାରସ୍ୱତ ସୃଷ୍ଟିରେ ସମୃଦ୍ଧ କରିଛନ୍ତି ଓ କରୁଛନ୍ତି ମଧ୍ୟ । ଆଶା ଓ ବିଶ୍ୱାସ, ତାଙ୍କର କଲମ ଚାଳନା ଥକି ନ ଯାଉ । ଆହୁରି ଅଧିକରୁ ଅଧିକ ଲେଖି ନିଜର ସୃଜନଶୀଳ ପ୍ରତିଭାକୁ ପରିପ୍ରକାଶ କରନ୍ତୁ । ତାଙ୍କର ଉତ୍ତୋରତ୍ତର ଉନ୍ନତି କାମନା କରି ଜଗନ୍ନାଥ ପ୍ରଭୁଙ୍କ ପାଖରେ ପ୍ରାର୍ଥନା କରୁଛି, ତାଙ୍କ ଶରୀର ଓ ମନ ସୁସ୍ଥ ରଖି ଆହୁରି ଅଧିକରୁ ଅଧିକ ଲେଖିବାର ଶକ୍ତି ଦିଅନ୍ତୁ । ତାଙ୍କର ଚଲାପଥ କୁସୁମିତ କରନ୍ତୁ ।



ଏ/୨୧୧, କୋଏଲନଗର,
ରାଉରକେଲା



Digitized by srujanika@gmail.com

# ଶିଶୁସାହିତ୍ୟର ସାହୁକାର ବସନ୍ତ ସାହୁ

ଡକ୍ଟର ପ୍ରିୟନାଥ ମହାପାତ୍ର

ଓଡ଼ିଆ ସାହିତ୍ୟରେ ବିଶେଷ କରି ଶିଶୁ ସାହିତ୍ୟ ଜଗତରେ ଡକ୍ଟର ବସନ୍ତ କିଶୋର ସାହୁ ଏକ ପରିଚିତ ନାମ । ବସନ୍ତର ଆଗମନରେ ଯେପରି ଫଳ, ପୁଷ୍ପରେ ପରିପୂର୍ଣ୍ଣ ହୁଏ ଧରା, ମାନବ ଜଗତ ଆନନ୍ଦିତ ହୋଇଥାଆନ୍ତି, ସେହିପରି ବସନ୍ତ ସାହୁଙ୍କର ଶିଶୁ ଗଳ୍ପ, କବିତା, ପ୍ରବନ୍ଧରେ ସାଧାରଣ ପାଠକ ବିଶେଷ ଭାବରେ ଆନନ୍ଦିତ ହୋଇଥାନ୍ତି । ଶିଶୁ ସାହିତ୍ୟର ସେ ସାହୁକାର । ଆଗ କାଳରେ ସାହୁକାରମାନେ ଖାତକମାନଙ୍କୁ ସବୁ କାମରେ ସହାୟତା କରୁଥିଲେ । ସେହିପରି ଶିଶୁ ସାହିତ୍ୟିକମାନେ ନିଜ ଲେଖନୀକୁ ସମୃଦ୍ଧ କରିବାକୁ ସାହୁକାର ବସନ୍ତ ସାହୁଙ୍କ ଠାରୁ ଆଣିଥାନ୍ତି ଉପାଦାନ ଓ ତଥ୍ୟ । ବାସ୍ତବରେ ସେ ହେଉଛନ୍ତି ଶିଶୁ ସାହିତ୍ୟର ସାହୁକାର ବସନ୍ତ ସାହୁ ।

ପୁଣ୍ୟ ସାହିତ୍ୟିକ ତୀର୍ଥଭୂମି କଟକ ଜିଲ୍ଲାର କୁସୁପୁର ଗାଁରେ ତାଙ୍କର ଜନ୍ମ । ଯେଉଁଠି ଜନ୍ମ ନେଇଥିଲେ ପଲ୍ଲୀକବି ନନ୍ଦକିଶୋର ବଳ, ସାମ୍ବାଦିକ ପ୍ରଦ୍ୟୁମ୍ନ ବଳ, ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ । ସେଇ ମାଟିରେ ତାଙ୍କର ଜନ୍ମ । ଗାଁ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀ ପଢୁଥିବା ବେଳେ ଗାଁର 'ପଲ୍ଲୀଜ୍ୟୋତି ପାଠାଗାର'ରେ ଥିବା ପୁସ୍ତକଗୁଡ଼ିକ ପଢ଼ି ପ୍ରଥମେ ଶିଶୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ତାଙ୍କ ହୃଦୟରେ ଜନ୍ମିଥିଲା କବିତା ଲେଖିବାର ସପ୍ନ । ସେଇ ସପ୍ନକୁ ସଫଳ କରିଥିଲା ସେତେବେଳର ବାଳକୃଷ୍ଣ କରଙ୍କ ପ୍ରତିଷ୍ଠିତ ଦୈନିକ 'ମାତୃଭୂମି' । ସ୍ୱର୍ଗତ କରଙ୍କ ପୁତ୍ର ସ୍ୱର୍ଗତ ବିଚିତ୍ରା ନନ୍ଦ କର ସେତେବେଳେ ମାତୃଭୂମିର ସମ୍ପାଦକ । ତାଙ୍କରି ସମ୍ପାଦନା ଓ ବିଶିଷ୍ଟ ଶିଶୁ ସାହିତ୍ୟିକ କ୍ଷୀରୋଦ ପୋଥାଳଙ୍କ ସଂଯୋଜନାରେ ବସନ୍ତ ସାହୁଙ୍କ ପ୍ରଥମ ଲେଖା 'କିଶୋର ସଉଜ'ରେ ପ୍ରକାଶ ପାଇଥିଲା ୧୯୭୨ମସିହାରେ ।

ସେଇଦିନୁ ଏ ଯାବତ୍ ତାଙ୍କର ଲେଖା ପ୍ରକାଶ ପାଇଆସୁଛି ବିଭିନ୍ନ ପତ୍ରପତ୍ରିକାରେ । ଶିଶୁ କବିତା ଠାରୁ ଆରମ୍ଭ କରି ଗପ, କବିତା, ସମୀକ୍ଷା, ପ୍ରବନ୍ଧ, ଆଲୋଚନା, ସନ୍ଦର୍ଭ, ଓଡ଼ିଆ, ଇଂରାଜୀ, ହିନ୍ଦୀ ଭାଷାରେ ଲେଖା ଏ ଯାବତ୍ ଅବ୍ୟାହତ ରହିଛି । ଶହ ଶହ ପ୍ରବନ୍ଧ ସହିତ ଏ ପର୍ଯ୍ୟନ୍ତ ୩୨ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇଛି ।



Digitized by srujanika@gmail.com

ଦୁଇ ଖଣ୍ଡ ପୁସ୍ତକ ହିନ୍ଦୀ ଓ ବଙ୍ଗଳାରେ ଅନୁବାଦିତ ହୋଇଛି । ଏପରିକି ନିଜର ରଚନା ସମଗ୍ରକୁ ଏକାଠି କରି ଦୁଇ ଖଣ୍ଡ ରଚନାବଳୀ ପ୍ରକାଶ କରିଛନ୍ତି । ବିଭିନ୍ନ ଅନୁଷ୍ଠାନରୁ ସେ ବହୁବାର ସମ୍ମାନିତ ଓ ସମ୍ବର୍ଦ୍ଧିତ । ସେ ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟ ଆଲୋଚନାରେ ନିଜର ସନ୍ଦର୍ଭ ପାଠ କରିଛନ୍ତି । ଗବେଷଣା କରି ଡକ୍ଟରେଟ୍ ହାସଲ କରିଛନ୍ତି । ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ ସହିତ ତାଙ୍କ ସମ୍ପାଦନାରେ କୋରାପୁଟ ପରିକ୍ରମା, ଓଡ଼ିଶାର ଲୋକନାଟ୍ୟ, କୋରାପୁଟର ଲୋକକଥା, ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ,ସାରସ୍ୱତ ସାଧକ ଡ. ଜଗନ୍ନାଥ ମହାନ୍ତି (ସମ୍ପାଦିତ), ନନ୍ଦକିଶୋର ସାମଲ ରଚନାବଳୀ (ସଂପାଦିତ) ପୁସ୍ତକ ଆଦି ମଧ୍ୟ ପ୍ରକାଶ ପାଇଛି ।

ଶିଶୁ ସାହିତ୍ୟ ରଚନା ଦିଗରେ ବସନ୍ତ କିଶୋରଙ୍କ ପୁସ୍ତକର ଅଭାବ ନାହିଁ । ଅଗଡ଼ବଗଡ଼ ଝାଇଁକି ଝୁମ୍ପା, କାଳିଆ ବଳଦ ଗଳାରେ ଗଲା, ଉଦୁଉଦୁମା, ଗାଇ ଦିଅ ପଦେ ଗୀତ, ବିଲୁଆ ନନାର ବଣଭୋଜି, ଖରା ବରଷା ଗୀତ, ଆଇଁଶିମନ୍ତର କାଇଁଶିମନ୍ତର, ଶୀତ ପାଇଁ ଗାଅ ଗୀତ, ମାରିନେଲେ ମହାପାତ୍ରେ, ଫୁଲ ଆମେ ଫୁଲ ଆଦି ଶିଶୁ ପୁସ୍ତକ ବେଶ୍ ଶିଶୁମାନଙ୍କ ମଧ୍ୟରେ ପାଠକୀୟ ଆଦର ଲାଭ କରିଛି ।

ବସନ୍ତ କିଶୋର ସାହୁଙ୍କର ବହୁ ପ୍ରବନ୍ଧ ଝଂକାର, ଆସନ୍ତାକାଲି, ପୌରୁଷ, ବନଜ୍ୟୋସ୍ନା, ନନ୍ଦିଘୋଷ, କୋଣାର୍କରେ ପ୍ରକାଶିତ ହେବା ସଂଗେ ସଂଗେ ଦୈନିକ ସମାଜ, ପ୍ରଜାତନ୍ତ୍ର, ଧରିତ୍ରୀ, ସମ୍ବାଦରେ ପ୍ରକାଶ ପାଇଛି । ବିଭିନ୍ନ ସମୟରେ ନନ୍ଦକିଶୋର ବଳ, ନନ୍ଦକିଶୋର ସିଂହ, ନନ୍ଦକିଶୋର ସାମଲ, ଭଗବାନ ପାଢ଼ୀ, ନଦୀୟା ବିହାରୀ ମହାନ୍ତି, ମନୀନ୍ଦ୍ର ମହାନ୍ତି, ରାମ ପ୍ରସାଦ ମହାନ୍ତି, ଡ. ଜଗନ୍ନାଥ ମହାନ୍ତିଙ୍କ ବହୁ ଶିଶୁ ସାହିତ୍ୟିକଙ୍କ ଜୀବନୀ ଶିଶୁ ସାହିତ୍ୟ ଉପରେ ପ୍ରବନ୍ଧମାନ ରଚନା କରିଛନ୍ତି । ଶିଶୁ ସାହିତ୍ୟର ଅତୀତ ବର୍ତ୍ତମାନ ଓ ଭବିଷ୍ୟତର ସମୀକ୍ଷା କରିଛନ୍ତି । ମୋଟ ଉପରେ ୧୯୭୨ରୁ ଏଯାବତ୍ ସେ ନିଜକୁ ଜଣେ ଶିଶୁ ସାହିତ୍ୟିକ ଭାବରେ ପ୍ରତିପାଦନ କରିଛନ୍ତି ।

ବାଲ୍ୟ ଜୀବନରେ ବଂଚିବା ଓ ପଢ଼ିବା ପାଇଁ ସଂଘର୍ଷ କରିଛନ୍ତି । ଯୁବକ ଅବସ୍ଥାରେ 'ବଗଲାବଗୁଲୀ' ଶିଶୁ ପତ୍ରିକା ଦୀର୍ଘ ବର୍ଷ ସଂପାଦନା କରି ବଞ୍ଚାଇ ପାରିନାହାନ୍ତି । ଆର୍ଥିକ ଅବସ୍ଥା, ପାରିବାରିକ ଦୁରବସ୍ଥାକୁ ଭ୍ରୂକ୍ଷେପ ନକରି ପରବର୍ତ୍ତୀ ସମୟରେ ଅଧ୍ୟାପନାରେ ମନୋନିବେଶ କରି ଶିଶୁ ସାହିତ୍ୟକୁ ସାଥିରେ ଧରି ଚାଲିଛନ୍ତି । ବହୁ ଅନୁଷ୍ଠାନର ସେ ପ୍ରତିଷ୍ଠାତା ଓ ସଭ୍ୟ । ୨୦୧୧ରେ ଆମ ଅନୁଷ୍ଠାନ 'ନିଖିଳ



Digitized by srujanika@gmail.com

ଉତ୍କଳ ଶିଶୁ ମେଳା ସମିତି' ଚଣ୍ଡିଖୋଲ ପକ୍ଷରୁ 'ପ୍ରାବନ୍ଧିକ ବୈକୁଣ୍ଠ ନାଥ ସ୍ମୃତି ସମ୍ମାନ'ରେ ଆମେ ତାଙ୍କୁ ସମ୍ମାନୀତ କରିଛୁ । ସୁଦୂର ସୁନାବେଡ଼ାରୁ ଆସି ସେ ଏହି ସମ୍ମାନ ଗ୍ରହଣ କରିଥିଲେ ଚଣ୍ଡିଖୋଲରୁ ।

ସରଳ, ନିଷ୍କପଟ, ଅମାୟିକ ବ୍ୟକ୍ତି ଡକ୍ଟର ବସନ୍ତ କିଶୋର । କେବେବି ବାର୍ଦ୍ଧକ୍ୟ ତାଙ୍କୁ ଗ୍ରାସ କରିନାହିଁ । ବୟସ ବାର୍ଦ୍ଧକ୍ୟ ହେଲେ ବି ମନ ହେଉଛି ତାଙ୍କର ଶିଶୁ ସୁଲଭ । ସେ ଅଧ୍ୟାପନା ଚାକିରିରୁ ଅବସର ନେଉଛନ୍ତି । କିନ୍ତୁ ଶିଶୁ ସାହିତ୍ୟରୁ ଅବସର ନେବେ ଯେଉଁ ଦିନ ତାଙ୍କର କୋକେଇ ଉଠିବ ଗାଁ ଶ୍ମଶାନକୁ । ଆଉ ସେ ଅବସର ନେବେ ଯେଉଁ ଦିନ ଓଡ଼ିଆ ସାହିତ୍ୟର ବିଲୀନ ହେବ ।

ଅବସର ପରିସମାପ୍ତି ନୁହେଁ । ଅବସର ହେଉଛି ଏକ ଷ୍ଟପେଜ୍ । ଟିକିଏ ଅଟକିଯିବା ପାଇଁ କିଏ ଅବସର କହିପାରେ କିନ୍ତୁ ଏହି ଅବସର ତାଙ୍କୁ ଅଧିକ ସମୟ ଦେବ ଶିଶୁ ସାହିତ୍ୟ ରଚନା ପାଇଁ । ତାଙ୍କର ଲେଖନୀ ଚ୍ଛଳନା ଏହିପରି ଲାଗି ରହୁ । ଅବସର ପରେ ଅବଶିଷ୍ଟ ସମୟକୁ ଶିଶୁ ସାହିତ୍ୟରେ ବିନିଯୋଗ କରନ୍ତୁ, ଏହା ହିଁ ଶିଶୁ ସାହିତ୍ୟ ଜଗତର ସାହୁକାର ବସନ୍ତ ସାହୁଙ୍କ ନିକଟରେ ପ୍ରାର୍ଥନା ।



ସଭାପତି
ନିଖିଳ ଉତ୍କଳ ଶିଶୁ ମେଳା ସମିତି, ବତୀଘର
ଚଣ୍ଡିଖୋଲ, ଯାଜପୁର



Digitized by srujanika@gmail.com

# ବସନ୍ତ ବାବୁଙ୍କ ଗଳ୍ପ : ଏକ ଆଲୋଚନା

ଡକ୍ଟର କୃତ୍ତିବାସ ନାୟକ

ଜଣେ ଶିଶୁ ସାହିତ୍ୟିକ, ଶିଶୁ ସାହିତ୍ୟର ଗବେଷକ ଏବଂ ପ୍ରାବନ୍ଧିକ ଭାବରେ ଡକ୍ଟର ବସନ୍ତ କିଶୋର ସାହୁ ସମଗ୍ର ଓଡିଶାରେ ସୁପରିଚିତ । କଠୋର ସାଧନା, ନିଷ୍ପାପର କର୍ତ୍ତବ୍ୟ ପାଳନ ଏବଂ ସମୟାନୁବର୍ତ୍ତିତା ଫଳରେ ସେ ଅନେକଗୁଡିଏ ପୁସ୍ତକ ରଚନା କରି ଓଡିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ଶିଶୁ ସାହିତ୍ୟିକ ଭାବରେ ପିଲାଙ୍କ ପାଇଁ ଗପ କବିତା ତ ଲେଖିଛନ୍ତି । ଗବେଷକ ମାନଙ୍କ ପାଇଁ ସାଇତି ଦେଇଛନ୍ତି, ଅନେକ ଗୁଡିଏ ତଥ୍ୟ ସମ୍ବଳିତ ପ୍ରବନ୍ଧ । କୋରାପୁଟ ଜିଲ୍ଲାର ସାହିତ୍ୟ, ସଂସ୍କୃତି ଏବଂ ଆଦିବାସୀଙ୍କ ଜୀବନ-ଜୀବିକା ସଂପର୍କରେ ଅସଂଖ୍ୟ ତଥ୍ୟକୁ ପୁସ୍ତକରେ ବାନ୍ଧି ରଖି ଦେଇଛନ୍ତି । ତା ସହିତ ସେ ବୟସ୍କମାନଙ୍କ ଉଦ୍ଦେଶ୍ୟରେ ବିଦଗ୍ଧ ଗଳ୍ପ ଲେଖିବାକୁ ଭୁଲି ନାହାନ୍ତି । ଓଡିଶାରେ ଅବହେଳିତ ଶିଶୁ ସାହିତ୍ୟକୁ ଏକ ମର୍ଯ୍ୟାଦାଜନକ ବିଭାଗରେ ପରିଣତ କରିବା ଉଦ୍ଦେଶ୍ୟରେ ଡକ୍ଟର ବସନ୍ତ କିଶୋର ସର୍ବାଧିକ ସମୟ ଦେଇଛନ୍ତି । ତେଣୁ ବିଦଗ୍ଧ ଗଳ୍ପ ପ୍ରତି ସେ ଯଦିଓ ମନ ଧ୍ୟାନ ଦେଇ ପାରି ନାହାନ୍ତି । ତଥାପି ବିଭିନ୍ନ ଅବସରରେ ସୁଯୋଗକୁ ସଦୁପଯୋଗ କରିଛନ୍ତି । ତେଣୁ ସଂଖ୍ୟାରେ ଅଧିକ ନ ହେଲେ ବି କ୍ଷୁଦ୍ରଗଳ୍ପ ରଚନାରେ ମନୋନିବେଶ କରି ସେ ସଫଳ ହୋଇଛନ୍ତି ।

ସଂପ୍ରତି ତାଙ୍କ ଦ୍ୱାରା ପ୍ରକାଶିତ ବସନ୍ତ କିଶୋର ରଚନାବଳୀର ଦ୍ୱିତୀୟ ଭାଗରେ ସ୍ଥାନିତ ତୃତୀୟ ଅର୍ଘ୍ୟ - ବସନ୍ତ କିଶୋର ଗଳ୍ପ ମାନସରେ ଆଠଟି କ୍ଷୁଦ୍ରଗଳ୍ପ ସ୍ଥାନ ପାଇଛି । ପୁସ୍ତକର ମୁଖବନ୍ଧରେ ଲେଖକ ସ୍ୱୟଂ ସ୍ୱୀକାର କରିଛନ୍ତି ଯେ, 'ବୟସ ବଢିଲା, ତା ସହିତ କଳ୍ପନା, ସ୍ୱପ୍ନ, ଆଶା, ଆକାଂକ୍ଷା ମଧ୍ୟ । ଶିଶୁ ସାହିତ୍ୟ ସୃଷ୍ଟି ଭିତରେ ପିଲାବେଳର ସେହି ସ୍ୱପ୍ନ ପ୍ରବଣ ଗଳ୍ପ ସତାଟି କେଉଁ ଆଡେ ଲିଭିଗଲା । ବୟସ ବଢିବା ପରେ ବୟସ୍କମାନଙ୍କ ପାଇଁ ଗଳ୍ପ ଲେଖିବାକୁ ଇଚ୍ଛା ହେଲା । କିଛି ଲେଖା ପତ୍ର ପତ୍ରିକାରେ ସ୍ଥାନ ପାଇଲା ଏବଂ ସେଥିରୁ କେତୋଟି ଆକାଶବାଣୀ କେନ୍ଦ୍ରରୁ ପ୍ରସାରିତ ହେଲା । କେତୋଟି ଗଳ୍ପ ହଜିଗଲା । ସେଗୁଡିକ ପୁସ୍ତକରେ ସ୍ଥାନ ପାଇ ପାରିଲା ନାହିଁ ।'

ପୁସ୍ତକରେ ପ୍ରଥମ ଗଳ୍ପ 'ଯୁଗଯନ୍ତ୍ରଣାରେ ଛଟପଟ ହେଉଥିବା ପକ୍ଷୀଟିଏ'



Digitized by srujanika@gmail.com

୧୯୮୫ ମସିହା ପୂର୍ବରୁ ଲିଖିତ ଏବଂ ଶାବର ପତ୍ରିକାର ମେ ମାସ ସଂଖ୍ୟାରେ ପ୍ରକାଶିତ । ଶିଳ୍ପପତି ରାୟସିଂଙ୍କର ଅଲିଅଳି ଝିଅ ଲିପି ଥିଲା ଅନିନ୍ଦ୍ୟ ସୁନ୍ଦରୀ । ଗରିବ ଘରୁ ଆସିଥିବା ଚିନ୍ମୟ ସହିତ ପ୍ରେମ ସଂପର୍କ ବଢି ବଢି ବିବାହ ପର୍ଯ୍ୟନ୍ତ କଥା ଆଗେଇ ଯାଇଛି । ଲିପି ତାକୁ ବିବାହ କରିବାକୁ ଅପେକ୍ଷା କରି ରହିଲା । ଏଣେ ଗାଆଁର ଧନାଢ୍ୟ ବ୍ୟକ୍ତି ରାଧୁ ମିଶ୍ରଙ୍କ ସହିତ ଚିନ୍ମୟର ବାପା ମାଆ ଚୁକ୍ତି ଶପଥ କରିଛନ୍ତି, ତାଙ୍କ ଝିଅ ସହିତ ତାର ବାହାଘର ହେବ, ରାଧୁ ମିଶ୍ର ସେଥିପାଇଁ ଅକାତର ଭାବରେ ଅର୍ଥ ଖର୍ଚ୍ଚ କରି ଚିନ୍ମୟକୁ ପାଠ ପଢେଇ ଅଧ୍ୟାପକ କରାଇଛନ୍ତି । ଆମ ସମାଜରେ ପ୍ରଚଳିତ ମହାପ୍ରସାଦ ଛୁଇଁ ଶପଥ ପ୍ରଥାକୁ କ'ଣ ସହଜରେ ତୁଟେଇ ଦେଇ ହେବ ? ଲିପି ଯେତେ ପ୍ରକାର ବ୍ୟାକୁଳତା ସହ ଚିଠି ଦେଲେ ବି ଚିନ୍ମୟ ତା ପାଖରେ ସତ୍ୟଟିକୁ ପ୍ରକାଶ କରି ପାରୁନାହିଁ । ଲିପି ଭଳି ସୁନ୍ଦରୀ, ଶିକ୍ଷିତା ଏବଂ ତା'ର ପ୍ରେମ ସ୍ମୃତିକୁ ସେ କିଭଳି ପ୍ରତ୍ୟାଖାନ କରିବ, ସେଥିପାଇଁ ସେ ନିଜକୁ ପ୍ରସ୍ତୁତ କରିପାରିନାହିଁ । ପିତୃସତ୍ୟ ପାଳନ ବ୍ରତକୁ ସେ ବାଧ୍ୟ ହୋଇ ଗ୍ରହଣ କରିନେଇଛି । ଅନେକ ଦ୍ୱନ୍ଦ ଏବଂ ଦୁଃଶ୍ଚିନ୍ତାରୁ ମୁକ୍ତି ପାଇବା ପାଇଁ ସେ ସତ୍ୟଟିକୁ ପ୍ରକାଶ କରି ଚିଠିଟିଏ ଲେଖି ଦେଇଛି । ତାପରେ ଚିନ୍ମୟର ଭାବନା ରାଜ୍ୟରେ ଅସଂଖ୍ୟ ଭାବନା ପୂର୍ବ ସ୍ମୃତିକୁ ଦୋହରାଇଛି । କଳ୍ପନାରେ ସେ ଚାଲିଯାଇଛି, ଅନେକ ବର୍ଷ ଆଗକୁ । ଲିପି ଯଦି କେବେ ଦେଖା ହୋଇଯାଏ, ସେ କହି ଦେଇପାରେ, ତୁମକୁ ଅପେକ୍ଷା କରି କରି ମୁଁ ଏବେ ବୃଦ୍ଧାବସ୍ଥାରେ ପହଞ୍ଚିଛି । ମୁଁ କେବଳ କହୁଥିବି ଲିପି ମୋର ଜୀବନଟା ସତରେ ଏମିତି କାହିଁକି ହୋଇଗଲା ?

ଲିପି ତାକୁ ସାନ୍ତ୍ୱନା ଦେଇ କହୁଥିବ - ଥାଉ ଚିନ୍ମୟ ଅତୀତ ପୃଷ୍ଠାକୁ ଆଉ ଖୋଲି କିଛି ଲାଭ ନାହିଁ । ଆସନ୍ତା ଜନ୍ମକୁ ଆମେ ନିଶ୍ଚିତ ଭାବରେ ମିଳିତ ହେବା ।

ପ୍ରେମ ତ ସତ୍ୟ, ସୁନ୍ଦର । ତାକୁ ବଞ୍ଚେଇ ରଖିବାର ଲକ୍ଷ୍ୟ ନେଇ ଗଳ୍ପଟିକୁ ସରସ ସୁନ୍ଦର କରିଛନ୍ତି, ଲେଖକ ବସନ୍ତ କିଶୋର ସାହୁ ।

ପୁସ୍ତକର ଦ୍ୱିତୀୟ ଗଳ୍ପଟିର ଶୀର୍ଷକ - 'ସ୍ୱୟଂମ୍ବର' । ତପତୀ ଏବଂ ପଲ୍ଲବଙ୍କ ପ୍ରେମ କାହାଣୀ ଏବଂ ପ୍ରତୀକ୍ଷାକୁ ଲେଖକ ଜୀବନ୍ତ କରି ରଖିଛନ୍ତି । ପ୍ରତ୍ୟେକ ନାରୀ ଚାହେଁ, ବନ୍ଧନ । ଯାହା ସ୍ଥାୟୀ ହୋଇ ରହିବ । ଥରେ ସେ ଯାହାକୁ ହୃଦୟରେ ସ୍ଥାନ ଦେଇ ସାରିଛି, ସେ ସବୁଦିନ ପାଇଁ ତା'ର ହୋଇ ରହିଯାଉ । ଯାହାକୁ ସେ କଥା ଦେଇ ସାରିଛି, ପ୍ରତିଶ୍ରୁତି ରକ୍ଷା କରିବାକୁ ତପତୀ ବ୍ୟାକୁଳ ମନରେ ଧାଇଁ ଯାଇଛି, ତା'ର ମନର ମଣିଷ ପାଖକୁ । ବାପା ମାଆ ତା'ର ବାହାଘର ଠିକ୍ କରିଛନ୍ତି, ଅନ୍ୟତ୍ର । କିନ୍ତୁ ତପତୀ ଚାହେଁ, ତା'ର ପ୍ରିୟତମକୁ ହିଁ ବିବାହ କରି ସୁଖୀ ଜୀବନ ବିତାଇବ । ଶେଷ ଥର ପାଇଁ ପଲ୍ଲବର ମତାମତ ନେବାକୁ ସେ ଧାଇଁ ଯାଇଛି, ସୁଦୂର କୋରାପୁଟ । ହତାଶ



Digitized by srujanika@gmail.com

ମନରେ ପ୍ରତୀକ୍ଷା କରି କରି ତା'ର ତିନିଦିନ ବିତିଗଲାଣି । କିନ୍ତୁ ପଲ୍ଲବ ଚାଲିଯାଇଛି ବାଲେଶ୍ୱରକୁ ଏକ ଜରୁରୀ କାମରେ । ତପତୀର ମନ ପ୍ରାଣ ଛଟପଟ ହେଉଛି, ସେ କାହାକୁ କିଛି ନ ଜଣାଇ ଘରୁ ଚାଲି ଆସିଥିଲା ପଲ୍ଲବକୁ ଭେଟିବାକୁ । କେତେ ଆଶା ଏବଂ ନିଶ୍ଚିତ ଏକ ସର୍ଣ୍ଣାଭ ସକାଳର ଅପେକ୍ଷାରେ ସେ ତାକୁ ଯନ୍ତ୍ରଣାରେ ଜର୍ଜରିତ କରିଛନ୍ତି ସେ କଥାକୁ ଲେଖକ ସଫଳତାର ସହ ଭେଟି ଦେଇଛନ୍ତି । ଏହି ଦୀର୍ଘ ତିନି ଦିନରେ କେବଳ ସ୍ମୃତିକୁ ସାଉଁଟିବା ବ୍ୟତୀତ ତା' ପାଖରେ ଆଉ କିଛି ନାହିଁ ।

ପୁସ୍ତକର ତୃତୀୟ ଗଳ୍ପ 'ସଂପର୍କ'ରେ ଲେଖକ ପଦ୍ମଜା ଓ ଦିଲ୍ଲୀପ ର ପ୍ରେମ ଓ ପ୍ରତାରଣାର କାହାଣୀ ପରିବେଷଣ କରିଛନ୍ତି । ଯୌତୁକ ଲୋଭୀ ଦିଲ୍ଲୀପର ବାପା ଧନ ଲୋଭରେ ପୁଅକୁ ଅନ୍ୟତ୍ର ବିବାହ କରିଦେଇଛନ୍ତି । ପଦ୍ମଜା ଭଳି ସୁନ୍ଦରୀ ଶିକ୍ଷିତା ଏବଂ ଗୁଣବତୀ ଯୁବତୀକୁ ସେ ହାତଛଡା କରି  ହତାଶ ଓ ଦୁଃଖରେ ଜୀବନ ବିତାଉଛି । ଅଚାନକ ଦୁହିଁଙ୍କର ସାକ୍ଷାତ ହୋଇଛି, ଅନେକ ଦିନ ପରେ । ଯେଉଁଠି ଦିଲ୍ଲୀପ ଚାକିରିରେ ଯୋଗଦାନ କରିବାକୁ ଯାଇଛି, ସେଇଠି ପଦ୍ମଜା  ଉଚ୍ଚ ପଦବୀରେ ରହିଛି । ଧନ ଲୋଭରେ ସେ ତାକୁ ପ୍ରତାରଣା କରିଛି, କେମିତି ସେ ପୁଣି ଥରେ ତାଙ୍କରି ଅଧୀନରେ ଚାକିରି କରି ରହିପାରିବ, ତାକୁ ଏହି ଚିନ୍ତା ଘାରିଛି । ଏକ ଅପ୍ରତ୍ୟାଶିତ ପରିସ୍ଥିତିରେ ଦିଲ୍ଲୀପ ନିଜକୁ ଲଜ୍ଜିତ ମନେ କରି ଦ୍ୱନ୍ଦରେ ପଡିଯାଇଛି । ତା'ର ପୂର୍ବ ସ୍ମୃତି, ପଦ୍ମଜାର ପ୍ରେମ ଅନୁଭୂତି ତାକୁ ଅଧିକରୁ ଅଧିକ ଯନ୍ତ୍ରଣା ଦେଇ ଚାଲିଛି ।

ଏହି ଗଳ୍ପଟି ଆକାଶବାଣୀ ଜୟପୁର କେନ୍ଦ୍ର ଦ୍ୱାରା ୧୯୮୮ ମସିହାରେ ପ୍ରସାରିତ ହେବା ସଂଗେ ସଂଗେ ସତ୍ୟାର୍ଥ ଗଳ୍ପ ସଂକଳନରେ ୧୯୯୧ ମସିହାରେ ପ୍ରକାଶିତ ହୋଇଛି ।

'ସୀମା ଏକ ପ୍ରଗଲ୍‌ଭା ନଦୀ' ଶୀର୍ଷକ ଗଳ୍ପଟି ବସନ୍ତ କିଶୋର ଗଳ୍ପ ମାନସର ଚତୁର୍ଥ ପାଖୁଡା । ଏଥିରେ ସୀମା ଆଉ ଅତନୁଙ୍କର ବୈବାହିକ ସୁଖମୟ ଜୀବନରେ ଗାଥା ହିଁ ଅବତାରଣା କରାଯାଇଛି । ପତ୍ନୀ ପ୍ରତି ସ୍ଥାୟୀ ଅକର୍ଷଣ ନଥିଲେ, ଜୀବନଟା ଜୀବନ ପରି ଲାଗେନାହିଁ ବୋଲି ଲେଖକ ସଚେତନ କରାଇ ଦେଇଛନ୍ତି । ଗଳ୍ପଟି ଆକାଶବାଣୀ ଜୟପୁର କେନ୍ଦ୍ରରୁ ୧୯୮୭ ମସିହାରେ ପ୍ରଚାରିତ ଏବଂ ସତୀର୍ଥଗଳ୍ପ-୨୦୦୪ରେ ମଧ୍ୟ ପ୍ରକାଶିତ ।

ବସନ୍ତ କିଶୋର ଗଳ୍ପ ମାନସର ପଞ୍ଚମ ଓ ଷଷ୍ଠ ପାଖୁଡାରେ ଯଥାକ୍ରମେ 'ଶଙ୍କା' ଓ 'କର୍ତ୍ତବ୍ୟ' ସ୍ଥାନୀତ ହୋଇଛି । ଚାକିରି କଲେ ନମିତାର ପ୍ରେମିକ ତାକୁ ବିବାହ କରିବ, ଅପେକ୍ଷାରେ ଥିବା ସମୟରେ ପ୍ରେମିକର ବଂଧୁ ବିମଳ ତାକୁ ଘରଣୀ କରି ନେଇଯାଇଛି । ଏକଥା ପ୍ରେମିକକୁ ଅଜଣା । ଦିନେ ହଠାତ୍ ପ୍ରେମିକ - ପ୍ରେମିକାର



Digitized by srujanika@gmail.com

ଭେଟ ହୋଇଯିବାରୁ ଦୁହିଁଙ୍କ ମନରେ ଯେଉଁ ଶଙ୍କା ଭାବ ସୃଷ୍ଟି ହୋଇଛି ତାହା ପ୍ରଥମ ଗଳ୍ପରେ ଅବତାରଣା କରାଯାଇଛି ।

ଦ୍ୱିତୀୟ ଗଳ୍ପ କର୍ତ୍ତବ୍ୟ ମାଧ୍ୟମରେ ଲେଖକ ସାମାଜିକ ବିକୃତି ଏବଂ ଆଧୁନିକ ନାରୀର ସନ୍ତାନ ପ୍ରତି କିଭଳି ଅମାନବୀୟ କାର୍ଯ୍ୟଚାଲିଛି, ତାହା ଦର୍ଶାଇଛନ୍ତି । କନ୍ୟାଭ୍ରୂଣ ପ୍ରତି ହତାଦର ଭାବ ଲେଖକଙ୍କୁ ମାନସିକ ଯନ୍ତ୍ରଣା ଦେଇଛି ।

ପୁସ୍ତକର ସପ୍ତମ ପାଖୁଡାର ଗଳ୍ପ 'ସ୍ମୃତି ବିସ୍ମୃତି' । ଏଥିରେ ଜଣେ ପ୍ରତିଷ୍ଠିତ ଗାଳ୍ପିକାଙ୍କ ଗଳ୍ପ ପ୍ରେମିକ ଲେଖକଙ୍କ ଉପରେ ଗଭୀର ପ୍ରଭାବ ପକାଇଛି । ଶେଷରେ ଜଣା ପଡିଛି, ବିଫଳ ପ୍ରେମିକା ହତାଶ ହୋଇ ତାର ପ୍ରତାରଣାର କାହାଣୀକୁ ସଫଳତାର ସହ ଲେଖିଛନ୍ତି । ପ୍ରେମ, ପ୍ରତାରଣା ଏବଂ ସ୍ମୃତି ଚାରଣ ଉପରେ ଏହି ଗଳ୍ପଟି ଆଧାରିତ ।

ଶେଷ ପୃଷ୍ଠାରେ ଗାଳ୍ପିକ ବସନ୍ତ କିଶୋର ସାହୁ 'ପ୍ରତିଶୋଧ' ଶୀର୍ଷକ ଗଳ୍ପକୁ ସ୍ଥାନ ଦେଇଛନ୍ତି । ଏଥିରେ ମଧ୍ୟ ପ୍ରେମ ଓ ପ୍ରତାରଣା ତଥା ନିଜ ପ୍ରେମିକକୁ ପାଇବା ପାଇଁ କିଭଳି ପ୍ରେମିକା ହିଂସାର ଆଶ୍ରୟ ନେଇ ହତାଶ ହୋଇଛି, ତାହା ଅବତାରଣା କରାଯାଇଛି । ହିଂସା ଓ କ୍ରୋଧ ଦ୍ୱାରା କୌଣସି ସଫଳତା ମିଳେନାହିଁ , ବରଂ ହତାଶା, ଦୁଃଖ ଓ ଯନ୍ତ୍ରଣା ବଢେ । ଏ କଥାକୁ ମର୍ମେ ମର୍ମେ ହୃଦୟଙ୍ଗମ କରି ସମାଜକୁ ସଚେତନ କରିବାକୁ ଚେଷ୍ଟା କରିଛନ୍ତି ଗାଳ୍ପିକ ।

ଗଳ୍ପଗୁଡିକ ସୁଖପାଠ୍ୟ ଓ ସଂକ୍ଷିପ୍ତ ହୋଇଥିବାରୁ ପାଠକମାନଙ୍କୁ ଏହା ଆକର୍ଷିତ କରି ରଖିବାର କ୍ଷମତା ରହିଛି ।

ବସନ୍ତ ବାବୁ ମୋର ଜଣେ ସମଧର୍ମୀ । ସମାନ ବୟସ, ସମାନ କାମ ଆମେ କରୁ । ତାଙ୍କରି ଲେଖନୀ ପୁନ ସୁଦୃଢ ହେଉ । ସେ ଆହୁରି କେତୋଟି ନୂତନ ଶୈଳୀର ଗଳ୍ପ ଆମମାନଙ୍କ ଆଗରେ ବାଢିଚାଲନ୍ତୁ । ଏତିକି କାମନା ।



ସହାୟକ କେନ୍ଦ୍ର ନିର୍ଦ୍ଦେଶକ
ଆକାଶବାଣୀ-କଟକ



Digitized by srujanika@gmail.com

# ଚିର ବସନ୍ତ-ବସନ୍ତ କିଶୋର

ଡକ୍ଟର କିଶୋର ଚନ୍ଦ୍ର ଦାସ

ପ୍ରତ୍ୟେକ ମନୁଷ୍ୟ ପାଇଁ ତା ଗାଁ ଅମୂଲ୍ୟ । ଦିନେ ସଚ୍ଚି ରାଉତରାୟ 'ଛୋଟ ମୋର ଗାଆଁଟି' କବିତା ମାଧ୍ୟମରେ ଗ୍ରାମବହୁଳ ଉତ୍କଳର ଏକ ନିଛକ ଚିତ୍ର ଆଙ୍କି ଦେଇଥିଲେ । ସେହିପରି ଉତ୍କଳୀୟ ପଲ୍ଲୀର ଗୋଟିଏ ଗାଆଁ । ନାଁ ତାର କୁସୁପୁର । ଅନେକ, ପୁଣି ସାହିତ୍ୟ ରସିକଟିଏ, ଏ ଗାଁକୁ ଭଲ ଭାବରେ ଚିହ୍ନନ୍ତି । ଏହି ଗାଁରେ ଜନ୍ମ ନେଇଥିଲେ ପଲ୍ଲୀକବି ନନ୍ଦକିଶୋର ବଳ । ତାଙ୍କର ପଲ୍ଲୀଚିତ୍ର, ନିର୍ଝରିଣୀ ଆଦି ସଙ୍କଳନରେ ପଲ୍ଲୀର ଜୀବନ୍ତ ଚିତ୍ର ଅଙ୍କିତ । ପରବର୍ତ୍ତୀ ସମୟରେ ସେଇ ଗାଁରେ ଜନ୍ମ ନେଇଛନ୍ତି, ଆଉ ଜଣେ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ । ପଲ୍ଲୀର ବାସ୍ତବ ଚିତ୍ର ଅଙ୍କନ କରିବାରେ ସେ ଥିଲେ ବେଶ୍ ଧୂରନ୍ଧର । ମୁଁ ଏବେ ଏଠାରେ ଆଉ ଜଣେ ପଲ୍ଲୀପ୍ରାଣ ଓ ନନ୍ଦକିଶୋରଙ୍କ ସଫଳ ଅନୁଗାମୀ ଏକ ବ୍ୟକ୍ତିଙ୍କର କଥା କହିବି । ସେ ବି ସେଇ ପ୍ରସିଦ୍ଧ କୁସୁପୁର ଗ୍ରାମରେ ଜନ୍ମ ଗ୍ରହଣ କରିଛନ୍ତି । ସେ ହେଉଛନ୍ତି ଅଧାପକ ଡକ୍ଟର ବସନ୍ତ କିଶୋର ସାହୁ । ସେହି ମାଟିରେ ଜନ୍ମିଥିବା ହେତୁ କବି ନନ୍ଦକିଶୋରଙ୍କ କବିତା ଦ୍ୱାରା ଅନୁପ୍ରାଣିତ । ସେ ତ ଅନେକ ସାରସ୍ୱତ ସାଧନା କରିଛନ୍ତି । କିନ୍ତୁ ଶିଶୁ କବିତା ଓ ଶିଶୁ ସାହିତ୍ୟରେ ସର୍ବବିଧ ଉନ୍ନତି ତାଙ୍କର ପ୍ରଥମ ଓ ପ୍ରଧାନ ପସନ୍ଦ । ଶିଶୁ ସାହିତ୍ୟକୁ ସେ ଭଲ ପାଆନ୍ତି ଅମାପ । କେବଳ ସେ ଶିଶୁ କବିତା, ଗଳ୍ପ ଲେଖିନାହାନ୍ତି ଶିଶୁ ସାହିତ୍ୟ ଉପରେ ବହୁ ସମ୍ପାଦନା ଓ ଆଲୋଚନା କରିଛନ୍ତି । 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ଉପରେ ଗବେଷଣା କରି ପିଏଚ୍.ଡି. ମଧ୍ୟ ପାଇଛନ୍ତି ।

କୁସୁପୁରରେ ଜନ୍ମ ନେଇ ପିଲାଟି ଦିନରୁ ପଲ୍ଲୀକବି ଓ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ଆଦର୍ଶ ଗ୍ରହଣ କରିନେଇଛନ୍ତି ସେ । ପ୍ରଥମେ କବିତା ଲେଖାରୁ ହିଁ ତାଙ୍କର ସାରସ୍ୱତ ସାଧନା ଆରମ୍ଭ । ସଂପ୍ରତି ସେ ଅନେକ ଶିଶୁ ସଂପର୍କୀୟ ଲେଖା ସହିତ ସାରସ୍ୱତ ସାଧନା ଅବ୍ୟାହତ ରଖିଛନ୍ତି । ନିଜ କୃତି ସମ୍ପର୍କରେ ତାଙ୍କ ନିଜସ୍ୱ ମତ ହେଲା- " ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛି । ଶିଶୁ କବିତା ଠାରୁ ଆରମ୍ଭ କରି ଗଳ୍ପ, ପ୍ରବନ୍ଧ, ଲଘୁ ଆଲୋଚନା ଯାଏ । ପ୍ରାୟ ୩୨ ଖଣ୍ଡ ବହି ପ୍ରକାଶ ପାଇଲାଣି । ୨ ଖଣ୍ଡ ହିନ୍ଦୀ ଓ ବଙ୍ଗଳାରେ ଅନୁବାଦ ହୋଇ ଅଣ ଓଡ଼ିଆଙ୍କ ପାଖରେ ମୋତେ ପରିଚିତ କରାଇଛି । ତଥାପି ଅନେକ ଲେଖା ବିକ୍ଷିପ୍ତ ଭାବରେ ଏଠିସେଠି



Digitized by srujanika@gmail.com

ରହିଛି । କେତେକ ପତ୍ରପତ୍ରିକାରେ ତ କେତେକ ପାଣ୍ଡୁଲିପି ଆକାରରେ । କେତେକ ତାର ଅସ୍ତିତ୍ୱ ହରାଇଲାଣି । ଅର୍ଥାତ୍ ହଜିଗଲାଣି ବା କାର୍ବନ୍ କପି ଭାବରେ ରହିଥିବାରୁ ତାହା ଆଉ ପଢ଼ି ହେଉନାହିଁ । ପତ୍ରପତ୍ରିକାରେ ପ୍ରକାଶିତ ଲେଖା କେଉଁ ବନ୍ଧୁ ପଢ଼ିବାକୁ ନେଇ ଆଉ ଫେରାଇ ନାହାନ୍ତି । ଇଂରାଜୀରେ ଯାହାକୁ ଡକୁମେଣ୍ଟସନ କୁହାଯାଏ, ତାହା ନିର୍ଦ୍ଧାରିତ ସମୟରେ ହୋଇ ନ ଥିବାରୁ ଏପରି ଅସୁବିଧା ।(୧) (ସାହୁ ଡକ୍ଟର ବସନ୍ତ କିଶୋର, ବସନ୍ତ କିଶୋର ରଚନାବଳୀ, ଦ୍ୱିତୀୟ ଖଣ୍ଡ, ନିଜ କଥା, ଅଗ୍ରଣୀ ପବ୍ଲିକେଶନସ୍, କୁସୁପୁର, ପ୍ରଥମ ପ୍ରକାଶ-୨୦୧୨)

ପ୍ରାୟ ୨୮ ବର୍ଷ ତଳେ ୧୯୮୪ ମସିହାରେ ସେ କୋରାପୁଟ ଆସିଥିଲେ ଚାକିରି କରିବା ପାଇଁ । ଅବଶ୍ୟ ସେତେବେଳକୁ ସେ ମହାପୁରୁଷ ହାଡ଼ିଦାସ ମହାବିଦ୍ୟାଳୟ, ଛତିଆରେ ଅବସ୍ଥାପିତ ଥିଲେ । ସେଥିରେ ତୃପ୍ତ ନହୋଇ, ସୁଦୂର କୋରାପୁଟ ଚାଲିଆସିଲେ । ବନ୍ଧୁବାନ୍ଧବ ଓ ଘରେ ମଧ ଏତେ ଦୂରକୁ ଯିବାକୁ ବିରୋଧ ପ୍ରକଟ କରିଥିଲେ । ଏହା ମଧରେ ସେ ସୁନାବେଡ଼ାରେ ୨୯ ବର୍ଷ କଟାଇ ଦେଇଛନ୍ତି । କୋରାପୁଟ ସମ୍ପର୍କରେ ତାଙ୍କର ଅନୁଭୂତି ହେଲା- "କୋରାପୁଟ ମାଟିର ଏକ ମହକ ଅଛି, ଏକ ଆତ୍ମୀୟତା ଅଛି । ଏଠି କେବଳ ପ୍ରକୃତିର ଆକର୍ଷଣ ନାହିଁ, ଏଠି ମଧ ଅଛି ଜୀବନର ଆକର୍ଷଣ । xxx କୋରାପୁଟ ଆସିବାର ପ୍ରଥମ ଦିନରୁ ହିଁ ମୁଁ ତାକୁ ଭଲ ପାଇ ବସିଲି । ତାର ପାଣି, ପବନ ଓ ପ୍ରକୃତି ମୋ ମନରେ କି କିମିଆ ଲଗାଇ ଦେଲା କେଜାଣି, ଏ ଯାଏ ତାକୁ ଭୁଲି ପାରିନାହିଁ । କୋରାପୁଟ ସମ୍ପର୍କରେ ଅନେକ ଲେଖା ଲେଖିଛି । ସେ ସବୁ ଆକାଶବାଣୀରୁ ପ୍ରସାରିତ ହେବା ସହିତ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । (୨)(କୋରାପୁଟର ସଂସ୍କୃତି, ବସନ୍ତ କିଶୋର ରଚନାବଳୀ, ୨ୟଖଣ୍ଡ)

ପ୍ରାୟ ୧୯୯୦ରୁ ବସନ୍ତ ବାବୁଙ୍କ ସହିତ ମୋର ପରିଚୟ । ପ୍ରାୟ ଏପ୍ରିଲ ମାସର ପ୍ରଥମ ସପ୍ତାହ । +୨ର ମୂଲ୍ୟାଙ୍କନ ସମୟ । ଅଧାପକମାନଙ୍କ ପାଇଁ କୁମ୍ଭମେଳା । ଖାତାର ତ ମୂଲ୍ୟାଙ୍କନ ହୁଏ କିନ୍ତୁ ବନ୍ଧୁମିଳନ ପାଇଁ ସୁସମୟ । କେତେଆଡୁ ଅଧାପକ ବନ୍ଧୁମାନେ ଆସନ୍ତି ବିକ୍ରମଦେବ ମହାବିଦ୍ୟାଳୟର ମୂଲ୍ୟାଙ୍କନ କେନ୍ଦ୍ରକୁ । ବନ୍ଧୁମାନଙ୍କ ରଙ୍ଗବେରଙ୍ଗ ଅନୁଭୂତି ଓ ଦୃଷ୍ଟିକୋଣ ସହିତ ପରିଚିତ ହେବାର ସୁଯୋଗ ମିଳେ । ସେଇଠି ବସନ୍ତ ବାବୁଙ୍କ ସହିତ ସାକ୍ଷାତ । ପ୍ରଥମ ଦେଖାରୁ ହିଁ ବନ୍ଧୁତା ଜମିଯାଏ । ତାଙ୍କର ଅନ୍ତରଙ୍ଗ ଓ ଅମାୟିକ ବ୍ୟବହାର ମନ କିଣି ନିଏ । ବହୁ ଭାବରେ ଆକର୍ଷିତ ହୋଇପଡେ ତାଙ୍କ ପ୍ରତି । ତାଙ୍କର ଲେଖନୀ ଚାଳନା କଥା ଜାଣି ମନରେ ଆହୁରି ଆନନ୍ଦ ଭରିଯାଏ । ଦେଖାସାକ୍ଷାତ ମଧରେ ସମ୍ପର୍କ ନିବିଡ ହୁଏ । ମୁଁ ଯେଉଁ ଟେବୁଲ୍‌ରେ ଖାତା ଦେଖେ, ସେଠାରେ ପ୍ରତ୍ୟେକ ଦିନ ଜଳଖିଆ ଖାଇବାର ବ୍ୟବସ୍ଥା କରାଯାଏ । ପ୍ରାୟ ପ୍ରତ୍ୟେକ ଦିନର ଖର୍ଚ୍ଚ ଜଣେ ଜଣେ ବନ୍ଧୁଙ୍କ ଉପରେ ପଡେ । ବସନ୍ତ ବାବୁ ତାଙ୍କ ପ୍ରକାଶିତ ପୁସ୍ତକ ଓ ସମ୍ପାଦିତ ପତ୍ରପତ୍ରିକା ମୋତେ ଉପହାର ଦେଇଥିଲେ ସେଠାରେ । ଫଳରେ ସାରସ୍ୱତ



Digitized by srujanika@gmail.com

ସମ୍ପର୍କ ଆହୁରି ଦୃଢ଼ ହେଲା । ଏହି ପରି ବର୍ଷ ପରେ ବର୍ଷ ବିତି ଗଲା । ବସନ୍ତ ବାବୁଙ୍କ ସାରସତ କୃତି ମୁଁ ବାରମ୍ବାର ଉପହାର ଭାବେ ପାଇ ତାଙ୍କ ପ୍ରତିଭା ସହିତ ପରିଚିତ ହେଉଥିଲି । କୋରାପୁଟ, ସୁନାବେଡା, ଦାମନଯୋଡ଼ି ପ୍ରଭୃତି ସ୍ଥାନରେ ସାହିତ୍ୟ ସମ୍ମେଳନରେ ଯୋଗ ଦେଲାବେଳେ, ଦେଖା ସାକ୍ଷାତ ହେଉଥିଲା । ଏମିତି ଏମିତି ମୋର ଜୟପୁରରେ ତେର ବର୍ଷ କଟିଗଲା । ଚାକିରିର ଶେଷ ଛଅ ବର୍ଷ ରେଭେନ୍‌ସା କଲେଜରେ କଟିଲା । ଦୂରତାର ବ୍ୟବଧାନ ଆମ ସମ୍ପର୍କକୁ କିଛିଟା ଶିଥିଳ କରିଦେଲା ।

ରେଭେନ୍‌ସାରେ ଥାଏ । ଶିଶୁ ସାହିତ୍ୟ ଗବେଷଣା ସମ୍ପର୍କିତ ଏକ ନିବନ୍ଧର ପରୀକ୍ଷକ ହୁଏ । ଗବେଷିକା ସ୍ମିତା ମହାରଣା । ଗବେଷଣା କାମ ବେଶ୍ ଭଲ ହୋଇଥିବା ହେତୁ ସେ ଉପାଧି ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲେ । ସ୍ମିତାକୁ ମୁଁ ବଧାଇ ଜଣାଇଲି । ବନ୍ଧୁମିଳନ ଅବସରରେ ମୁଁ ଜାଣିବାକୁ ପାଇଲି ଯେ ସ୍ମିତା ସୁନାବେଡ଼ାରେ ଥିଲାବେଳେ ବନ୍ଧୁ ବସନ୍ତ ବାବୁଙ୍କ ଠାରୁ ବହୁ ଭାବରେ ସାହାଯ୍ୟ ଓ ସହାନୁଭୂତି ଲାଭ କରିଛି । ଯା ଫଳରେ ନିବନ୍ଧଟି ଏତେ ସରସ ସୁନ୍ଦର ହୋଇପାରିଛି । ସେତିକିବେଳେ, ସେହି ଠାରୁ ହିଁ ମୁଁ ବନ୍ଧୁ ବସନ୍ତ ବାବୁଙ୍କୁ ମଧ୍ୟ ଅନେକ ବଧେଇ ଜଣାଇଲି ଏବଂ ତାଙ୍କ ଦ୍ୱାରା ଉପକୃତା ସ୍ମିତା ଯେ ସେଇଦିନ ଠାରୁ ଡକ୍ଟର ସ୍ମିତା ମହାରଣା ହୋଇଗଲା ସେ ବିଷୟରେ ମଧ୍ୟ ସୂଚନା ଦେଲି । ଶିଶୁ ସାହିତ୍ୟ ପାଇଁ ଶ୍ରଦ୍ଧା ଥିବା ବସନ୍ତ ବାବୁ ସେଇ ଦିଗରେ ଯେ କାମ କରି ଚାଲିଥାନ୍ତୁ ଏପରି ମଧ୍ୟ ତାଙ୍କୁ ଆଶିଷ ପ୍ରଦାନ କଲି ।

ତା' ପରେ ମୋର ଅବସର ପରେ ଦୁଇ ଥର ସ୍ନାତକୋତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରରେ ତାଙ୍କ ସହ ସାକ୍ଷାତ ହୋଇଛି । ସେ ତାଙ୍କ ଅଧିନରେ ଗବେଷଣା କରୁଥିବା ଛାତ୍ରଛାତ୍ରୀଙ୍କ ପାଇଁ ସେଠାକୁ ଆସିଥାଆନ୍ତି । ଦୀର୍ଘଦିନ ପରେ ସାକ୍ଷାତ ମନରେ ଅନେକ ଆନନ୍ଦ ଭରି ଦେଲା । ତାଙ୍କର ସେଇ ପୁରୁଣା ଅଭ୍ୟାସ ଜାରି ରଖି ସେ ମୋ ହାତରେ ଧରାଇ ଦେଲେ-ବସନ୍ତ କିଶୋର ରଚନାବଳୀ, ୨ୟ ଖଣ୍ଡ । ଯାହା ହେଉ ଖୁବ୍ ଖୁସି ଲାଗିଲା । ସେ ତାଙ୍କ ରଚନାଗୁଡ଼ିକର ସାମଗ୍ରିକ ରୂପ ଲୋକଲୋଚନକୁ ଆଣିବାକୁ ପ୍ରୟାସ କରିଛନ୍ତି ବୋଲି । ସେଇ ପୁସ୍ତକ ମାଧ୍ୟମରେ ତାଙ୍କୁ ଆହୁରି ନିବିଡ଼ ଭାବରେ ଜାଣିବାକୁ ସୁଯୋଗ ମିଳିଲା । ଯଥାର୍ଥରେ ସେ ଅନେକ ଶିଶୁ ଉପଯୋଗୀ ପୁସ୍ତକ ରଚନା କରିବା ସହ ଶିଶୁ ସାହିତ୍ୟର ବିକାଶ ଦିଗରେ ମନପ୍ରାଣ ଢାଳି ଦେଇଛନ୍ତି । ମୋର ମନେ ହେଉଛି, ଆଜି ଓଡ଼ିଶାରେ ଯେଉଁମାନେ ଶିଶୁ ସାହିତ୍ୟ କ୍ଷେତ୍ରରେ ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି, ସେମାନଙ୍କ ମଧ୍ୟରେ ବସନ୍ତ ବାବୁ ଅଗ୍ରଗଣ୍ୟ । ସେ ଅନେକ ଶିଶୁ ସାହିତ୍ୟ ସମ୍ପର୍କିତ ପୁସ୍ତକର ସଫଳ ସମ୍ପାଦନା ମଧ୍ୟ କରିଛନ୍ତି । ତାଙ୍କ ସମ୍ପର୍କରେ ଜଣେ ସମାଲୋଚକ 'ଓଡ଼ିଆ ସାହିତ୍ୟର ଇତିହାସ' ପୁସ୍ତକରେ ଲେଖିଛନ୍ତି, "ବସନ୍ତ କିଶୋର ସାହୁ(୧୯୫୫) ଜଣେ ଜଣାଶୁଣା ଗବେଷକ । 'ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା', 'ସାଂପ୍ରତିକ ଶିଶୁ ସାହିତ୍ୟ ଓ



Digitized by srujanika@gmail.com

ସାହିତ୍ୟିକ', 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ଇତ୍ୟାଦି ତାଙ୍କ ପ୍ରକାଶିତ ଗ୍ରନ୍ଥ ମଧ୍ୟରୁ କେତୋଟି । ଶେଷୋକ୍ତ ଗ୍ରନ୍ଥଟି ତାଙ୍କ ଗବେଷଣା ସନ୍ଦର୍ଭର ନାମ ଏବଂ ଏହା ପ୍ରକାଶିତ । ଏ ସବୁ କୃତିରେ ରହିଛି ଶିଶୁ ସାହିତ୍ୟ ସଂପର୍କୀୟ ଅଧ୍ୟୟନ ଓ ଅନୁଶୀଳନର ପ୍ରତିଫଳନ । xxx ବସନ୍ତ କିଶୋର ସାହୁ ଓଡ଼ିଆ ଶିଶୁ ସାହିତ୍ୟର ଗବେଷକ କେବଳ ନୁହନ୍ତି, ଜଣେ ଶିଶୁ ସାହିତ୍ୟିକ ମଧ୍ୟ । ଫୁଲ ଆମେ ଫୁଲ, ଅଗଡ଼ ବଗଡ଼ ଝାଇଁକି ଝୁମ୍ପା, କାଳିଆ ବଳଦ ଗଳାରେ ଗଲା, ଉଦୁଉଦୁମା, ଗାଇଦିଅ ପଦେ ଗୀତ, ବିଲୁଆ ନନାର ବଣଭୋଜି ଇତ୍ୟାଦି କେତୋଟି ଶିଶୁ ଉପଯୋଗୀ ପୁସ୍ତକର ରଚୟିତା । ତାଙ୍କ ପୁସ୍ତକମାନଙ୍କରେ ଶିଶୁମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଆବେଦନ ରହିଛି । (୩) (ମହାରଣା ଡକ୍ଟର ସୁରେନ୍ଦ୍ର କୁମାର, ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଶା ବୁକ୍ ଷ୍ଟୋର, କଟକ, ଦ୍ୱିତୀୟ ସଂସ୍କରଣ, ୨୦୧୦, ପୃ. ୬୩୮ ଏବଂ ୮୦୯)

ଦୀର୍ଘ ଦିନ ସେ କୋରାପୁଟରେ ରହିଥିବା ହେତୁ କୋରାପୁଟ ସମ୍ପର୍କୀୟ ଅନେକ ଲେଖା ତାଙ୍କର ପ୍ରକାଶ ପାଇଛି । କୋରାପୁଟର ଲୋକକଥା, ତାର ପର୍ବପର୍ବାଣି, ତାର ସଂସ୍କୃତିକୁ ନେଇ ସେ ଅନେକ ପୁସ୍ତକ ମଧ୍ୟ ପ୍ରକାଶ କରିଛନ୍ତି । କୋରାପୁଟର ବଣ୍ଡା, ପରଜା ସମ୍ପ୍ରଦାୟ, ରାୟଗଡ଼ାର କନ୍ଧ ସଂସ୍କୃତି, ଆଦିବାସୀମାନଙ୍କ ନୃତ୍ୟ ଓ ସଙ୍ଗୀତ, ସେମାନଙ୍କ ଦେବଦେବୀ ସମ୍ପର୍କରେ ଅନେକ ଆଲୋଚନା ପ୍ରକାଶ କରିଛନ୍ତି । ତାଙ୍କର ଶତାଧିକ ଗବେଷଣାତ୍ମକ ପ୍ରବନ୍ଧ ଆସନ୍ତାକାଲି, ପୌରୁଷ, ଅଙ୍କୁର, ଶ୍ରୀନନ୍ଦିଘୋଷ, ତମସା, ଏଷଣା, ବୋଲେହୁଁଟି, ମୁଖଶାଳା, ଘାସଫୁଲ, ବିବର୍ତ୍ତନ ପ୍ରଭୃତି ପତ୍ରିକା ଓ ବହୁ ସ୍ମରଣିକାରେ ପ୍ରକାଶିତ ହୋଇଛି । ଏହାହିଁ ସୂଚାଇ ଦିଏ, ସେ ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କଲେ ମଧ୍ୟ, ଶିଶୁ ସାହିତ୍ୟ ପ୍ରତି ତାଙ୍କର ଅଧିକ ଦୁର୍ବଳତା ରହିଛି । ପ୍ରକୃତରେ ସେ ଜଣେ ଶ୍ରେଷ୍ଠ ଶିଶୁ ସାହିତ୍ୟିକ, ଏ କଥା ନିଶ୍ଚିତ ଭାବରେ କୁହାଯାଇ ପାରିବ ।

ନିକଟ ଭବିଷ୍ୟତରେ ତାଙ୍କର ଅବସର ଆସିଯିବ । ଚାକିରି ଜୀବନରୁ ଜଣେ ଅବସର ଗ୍ରହଣ କରିପାରେ ସିନା, ଲେଖକ ଜୀବନରେ ଅବସର କାହିଁ ? ଏବେ ମଧ୍ୟ ତାଙ୍କର ଲେଖନୀ ବେଶ୍ ଚଳଚଞ୍ଚଳ । ଏହି ଅବସରରେ ମୁଁ ଆଶିଷ ପ୍ରଦାନ କରୁଅଛି, "ଆହେ ବସନ୍ତ କିଶୋର ! ଆପଣ ରହିଥାନ୍ତୁ ଚିର କିଶୋର ।" ଆପଣଙ୍କ ଲେଖନୀ ଚାଳନା ଫଳରେ ଓଡ଼ିଆ ସାରସ୍ୱତ ଜଗତ ବିଶେଷ କରି ଓଡ଼ିଆ ଶିଶୁ ସାହିତ୍ୟ ଆହୁରି ସମୃଦ୍ଧ ହେଉ । ଆହୁରି ଶ୍ରୀଯୁକ୍ତ ହେଉ । ଏହାହିଁ ଭଗବାନଙ୍କ ନିକଟରେ ମୋର କାମନା ।



୫୮/୩୪, ଦିବ୍ୟ ବିହାର, ଲେନ୍-୪
ସାମନ୍ତରାପୁର, ଭୁବନେଶ୍ୱର-୨



Digitized by srujanika@gmail.com

# ଶଙ୍କା ଗଳ୍ପ-ଏକ ବିହଙ୍ଗାବଲୋକନ

ହରମୋହନ ମିଶ୍ର

ଅତି କ୍ଷୁଦ୍ରକାୟ ଦୁଇ ଅକ୍ଷରରେ ସୀମିତ ଓ ନାମିତ ଗଳ୍ପ 'ଶଙ୍କା' ଭିତରେ ଯେ ଅସୀମ ଆଶଙ୍କା, ଭୟ, ସଂଶୟ, ମାନସିକ ଅସ୍ଥିରତା, ଦ୍ୱିବିଧା, ଜଟିଳତା, ବୁଢ଼ିଆଣୀ ଜାଲ, ଇନ୍ଦ୍ରଜାଲ, କୁହୁକ ଏବଂ ଅଡୁଆ ତଡୁଆ ଭାବନାର ଖିଅ ସମ୍ମିଳିତ ହୋଇଛି, ତାହା ପ୍ରକୃତରେ ରହସ୍ୟମୟ ହୋଇ ଉଠିଛି ।

ଗଳ୍ପର ଘଟଣା ପ୍ରବାହ କାଳ୍ପନିକ, ମାନସ ପ୍ରସୂତ କିମ୍ବା ଏକ ସତ୍ୟ ଘଟଣା ଯା ହେଉନା କାହିଁକି, ଏ ଭଳି ଘଟଣା ଆଜିର ଦୁନିଆରେ ମଣିଷର ଜୀବନରେ ସ୍ୱାଭାବିକ । ଏ କ୍ଷୁଦ୍ର ଗଳ୍ପଟି ଗଳ୍ପର ନାମହୀନ ନାୟକ, ତାଙ୍କର ପ୍ରେମିକ ତଥା ବନ୍ଧୁପତ୍ନୀ ନମିତା ଏବଂ ବନ୍ଧୁ ବିମଳଙ୍କର ଜୀବନଚର୍ଯ୍ୟା ଭିତରେ ସୀମିତ । ତିନୋଟିଯାକ ଚରିତ୍ର ଗୋଟିଏ କଲେଜରେ ସହପାଠୀ ଓ ସହପାଠିନୀ । ନାୟକ ଓ ନମିତା ଉଭୟଙ୍କ ପ୍ରେମ ସଂପର୍କରୁ ବିବାହର ପ୍ରସ୍ତାବ, ଯାହା ନାୟକଙ୍କର ସାମୟିକ ବେକାରୀ ଯୋଗୁ ପ୍ରତ୍ୟାଖ୍ୟାତ ହୋଇଥିଲା, ତାହା ତାଙ୍କ ବନ୍ଧୁ ବିମଳଙ୍କୁ ଜଣା ଥିଲା କି ନା, ସେ ବିଷୟରେ ଗଳ୍ପରେ କୌଣସି ସୂଚନା ନ ଥିବାରୁ, ସେ ବାବଦରେ ବିମଳ ଅଜ୍ଞ ଥିଲେ ବୋଲି ଧରିନେବାକୁ ହେବ ।

ନାୟକଙ୍କ ଜୟପୁର କଲେଜରୁ ଇଂରାଜୀ ଅଧ୍ୟାପକ ଭାବରେ ବଦଳି ଓ ସେଠାକାର ଷ୍ଟେଟ ବ୍ୟାଙ୍କର ମ୍ୟାନେଜର ବନ୍ଧୁ ବିମଳଙ୍କ ସହିତ ଦୀର୍ଘଦିନ ପରେ ଅଚାନକ ଦେଖା ତଥା ତାଙ୍କର ନିବିଡ ଆତିଥ୍ୟକୁ ଏଡାଇ ଦେଇ ନପାରି, ନାୟକ ଯେତେବେଳେ ତାଙ୍କ ଘରେ ପହଞ୍ଚିଛନ୍ତି, ସେତେବେଳେ ନିଜର ପ୍ରେମିକା ନମିତାଙ୍କୁ ବନ୍ଧୁପତ୍ନୀ ରୂପରେ ଆବିଷ୍କାର କରି ନିର୍ବାକ୍ ଓ ନିସ୍ପନ୍ଦ ହୋଇ ପଡିଛନ୍ତି । ତାଙ୍କର ମାନସିକ ଅସ୍ଥିରତା, ଅସ୍ୱସ୍ତି, ଆଶଙ୍କା, ଭୟ, ନିଜକୁ ଅବିଶ୍ୱାସ, ବିଭିନ୍ନ ଦୁଶ୍ଚିନ୍ତାରେ ବିଚଳିତ ତାଙ୍କ ମନ ଓ ଅନ୍ତରାତ୍ମା ବିଶେଷ ଭାବରେ ସନ୍ତୁଳିତ, ଆନ୍ଦୋଳିତ ଓ ଉଦ୍‌ବେଳିତ ହୋଇ ଏକ ଗଭୀର ନୈରାଶ୍ୟ ଭିତରେ ହାହାକାର କରି ଉଠିଛି । ଏଭଳି ମାନସିକ ସ୍ଥିତିରୁ କିଭଳି ମୁକ୍ତି ପାଇବେ, ଭାବିପାରି ନାହାନ୍ତି । ନିଜ ମନ କଥାକୁ କାହାକୁ, କିପରି ପ୍ରକାଶ କରିବେ ଏବଂ ପ୍ରକାଶ କରିବେ କି ନାହିଁ, ସେଇ ଆଶଙ୍କାର ଶଙ୍କା ତାଙ୍କୁ ଗ୍ରାସ



Digitized by srujanika@gmail.com

କରିଛି । ଅଜାଗା ଘା ଦେଖି ନ ପାରିବା ବା ଦେଖାଇ ନ ପାରିବା ଭଳି ସେ ମଧ୍ୟ ଜୀବନର ପରାଜୟ, ପ୍ରବଞ୍ଚନା ଏବଂ ବିଡମ୍ବନାକୁ କାହା ଆଗରେ ପ୍ରକାଶ କରିପାରି ନାହାନ୍ତି । କାରଣ ଚାଣକ୍ୟଙ୍କ ନୀତିରେ "ଅର୍ଥନାଶଂ, ମନସ୍ତାପଂ, ଗୃହେ ଦୁଶ୍ଚରିତାନିଚ, ଲାଞ୍ଚନଂ, ଚାପମାନଂ ଚ ମତିମାନ୍ ନ ପ୍ରକାଶୟେତ୍" ଏବଂ ଇଂରାଜୀରେ କୁହାଯାଇଥିବା ଉକ୍ତି ଅନୁଯାୟୀ, "Which can not be cured, must be endured".

ବନ୍ଧୁ ବିମଳ ନାୟକଙ୍କ ଜୀବନରେ ନିଜ ସ୍ତ୍ରୀର ପ୍ରେମିକା ଭୂମିକାକୁ ଯଦି ଜାଣି ପାରନ୍ତି ତେବେ ତାକୁ ସେ କିଭଳି ଗ୍ରହଣ କରିବେ, ତାଙ୍କ ପ୍ରତି (ନାୟକଙ୍କ ପ୍ରତି) ମନୋବୃତ୍ତିରେ କି ପ୍ରକାର ପରିବର୍ତ୍ତନ ହେବ ଏବଂ ତାଙ୍କର ଦାମ୍ପତ୍ୟ ଜୀବନରେ ଝଡ ସୃଷ୍ଟି ହୋଇ ତାକୁ ନଷ୍ଟ ଭ୍ରଷ୍ଟ କରି ପକାଇବ କି କ'ଣ, ଏଭଳି ବିଭିନ୍ନ ଶଙ୍କାର ଅସୀମ ଶୂନ୍ୟତା ଭିତରେ ନାୟକ କୌଣସି ସମାଧାନର ପଥ ଆବିଷ୍କାର କରି ନପାରି ଯେଭଳି ଶ୍ୱାସରୁଦ୍ଧ ହୋଇ ପଡିଛନ୍ତି ।

ଯେଉଁମାନେ ଜୀବନରେ କେବେ ଏଭଳି ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି, ସେମାନଙ୍କର ଅନୁଭୂତି କିଭଳି ତିକ୍ତ ହୋଇଥିବ ତାହା କେବଳ ସେଇମାନେ ହିଁ କହି ପାରିବେ । କାରଣ, କୁହାଯାଇଛି "କେ କହି ପାରିବ କାହା ଜୀବନରେ ଆସି ନାହିଁ କେବେ ଝଡ, ଝଡକୁ ଜୀବନେ ଭେଟି ନାହିଁ ଯିଏ ସେ କାହୁଁ ହୋଇବ ବଡ" । ପରିସ୍ଥିତିର ସାମନା କରିବା ଯେତିକି କଷ୍ଟକର ସେଇ ପରିସ୍ଥିତିରେ ପହଞ୍ଚିବା ପାଇଁ ଯେଉଁ ଟଣାଓଟରା, ତାହା ଯଥେଷ୍ଟ ଅଧିକ କଷ୍ଟ ଦାୟକ, ଯେଭଳି ବାଘ ଖାଇବା ଅପେକ୍ଷା ବାଘ ଟାଣିବା ବା କାମୁଡିବା ଅଧିକ ଯନ୍ତ୍ରଣା ଦାୟକ । ଜୀବନରେ ଏଭଳି ଅନେକ ଘଟଣାର ନଜିର ଅଛି, ଯେଉଁଠାରେ ମଣିଷ କିଂ କର୍ତ୍ତବ୍ୟ ବିମୂଢ ହୋଇ ପଡିଥାଏ । ଆନନ୍ଦମୟ ପରିବେଶରେ ଆନନ୍ଦ ଅନୁଭବ କରି ନ ପାରିବା ଏବଂ ନିଜର ଦୁଃଖରେ ଅନ୍ୟ କାହାକୁ ସମଭାଗୀ କରାଇ ଦୁଃଖକୁ ଲାଘବ କରି ନ ପାରିବାର ଅବସ୍ଥା କିଭଳି ଦାରୁଣ, ତାହା କେବଳ ଅନୁଭବର କଥା ।

ତେଣୁ 'ଶଙ୍କା' ଗଳ୍ପ ଏକ ସାର୍ଥକ ଗଳ୍ପ ବୋଲି ମୋର ମନେ ହୁଏ ।



ଘର ନଂ- ସି/୩୬୦
କୋଏଲ ନଗର, ରାଉରକେଲା
ମୋ : ୯୪୩୭୨୪୬୭୪୮



Digitized by srujanika@gmail.com

# କିଛି ସ୍ମୃତି କିଛି ଅନୁଭୂତି



ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର ।

-ରାଧାନାଥ



Digitized by srujanika@gmail.com

# ଆଶୀର୍ବାଣୀ

## ସ୍ୱର୍ଗତ ରାମ ପ୍ରସାଦ ମହାନ୍ତି

ଡକ୍ଟର ବସନ୍ତ କିଶୋର ସାହୁଙ୍କୁ ମୁଁ ବହୁ ଦିନରୁ ଜାଣେ । ଅନେକ ଦିନ ତଳେ ତାଙ୍କ ଗ୍ରାମକୁ ମୀନମଣ୍ଡଳୀଟିଏ ଉଦ୍‌ଘାଟନ କରିବାକୁ ଯାଇଥିଲି । କୁସୁପୁରର ମୀନା ଭାଇଭଉଣୀମାନେ ଖୁବ୍ ଉତ୍ସାହରେ ମାତି ସଂଗଠନଟି ଚଳାଉଥିଲେ । ଖୁବ୍ ସୁନ୍ଦର ଗୀତ ଗପ ସବୁ ଲେଖୁଥିଲେ । ଏହି ପିଲାମାନଙ୍କ ଭିତରେ ଥିଲେ ବସନ୍ତ କିଶୋର ।

ଏବେ ସିଏ ବଡ଼ ମଣିଷ ହେଲେଣି । ଶିଶୁ ସାହିତ୍ୟ ବହୁତ ଲେଖିଛନ୍ତି । ଶିଶୁ ସାହିତ୍ୟରେ ଗବେଷଣା ଚଳାଇ ଡକ୍ଟରେଟ ପାଇଛନ୍ତି । ଜୀବନରେ ଏହି ସଫଳତା ପାଇଁ ତାଙ୍କୁ ମୁଁ ବଧେଇ ଜଣାଉଛି । ଆଶୀର୍ବାଦ କରୁଛି ତାଙ୍କ ଅବସର ସମୟ ସୁଖମୟ ହେଉ । ବୟସ ସିଡ଼ିରେ ସେ ବର୍ଷ ପରେ ବର୍ଷ ଅତିକ୍ରମ କରି ସେଞ୍ଚୁରୀ ପିଟନ୍ତୁ । ପିଲାଙ୍କ ପାଇଁ ଆହୁରି ଲେଖନ୍ତୁ । ଶେଷ ଜୀବନ ପର୍ଯ୍ୟନ୍ତ ସେ ଲେଖୁଥାନ୍ତୁ ।

ଶୁଭେଚ୍ଛା ସହ

ରାମପ୍ରସାଦ ମହାନ୍ତି

ତା ୨୧।୦୯।୨୦୧୨



ଜହୁରୀଭାଇ
ନୟାଚୌକ,
କଟକ-୭୫୩୦୧୦



Digitized by srujanika@gmail.com

# ବାହୁଡା ଯାତ୍ରା

ନନ୍ଦ ମହାନ୍ତି

ବସନ୍ତ ବାବୁ ଫେରୁଛନ୍ତି । ସୁନାବେଡାର ସାରସ୍ୱତ ସାଧକମାନେ, ସାହିତ୍ୟ ପ୍ରାଣମାନେ ବିମର୍ଷ ଚିତ୍ତରେ ତାଙ୍କୁ ବିଦାୟ କାଳୀନ ସମ୍ବର୍ଦ୍ଧନା ଦେବେ । ଭେଟିଦେବେ ଏକ ବସନ୍ତ ଅଭିନନ୍ଦନ ଗ୍ରନ୍ଥ । ବସନ୍ତ ସତରେ କଣ ସୁନାବେଡାର ସାରସ୍ୱତ ଆକାଶରୁ ବିଦାୟ ନେବେ, ଚିର କାଳ ପାଇଁ ? ତାହା ତ ସମ୍ଭବ ନୁହେଁ । ଦୀର୍ଘ କର୍ମମୟ ଜୀବନ ମଧ୍ୟରେ ସେ ସୁନାବେଡାରେ ଯେଉଁ ସାରସ୍ୱତ ବେପଥୁ ତୋଳିଛନ୍ତି, ବନଫୁଲ ମାଳାରେ ଯେଉଁ ସାରସ୍ୱତ ବନ୍ଦନା ଆରମ୍ଭ କରିଛନ୍ତି ତାହା ତ ବନ୍ଦ ହେବାର ନୁହେଁ । ସେ ସାରସ୍ୱତ ଗୁଞ୍ଜନ ଶୁଭୁଥିବ ଚିରକାଳ । ସେ ତ କର୍ମଭୂମିରେ ଆପଣାର କର୍ମ ନିଷ୍ଠାର ସହ ସମାପନ କରି ଫେରୁଛନ୍ତି ନିଜର ଜନ୍ମଭୂମିକୁ । ଜନ୍ମଭୂମିରେ ବି କର୍ମ କରିବାର ଅଛି । ଶୈଶବରୁ ତାରୁଣ୍ୟ ପର୍ଯ୍ୟନ୍ତ ଜନ୍ମଭୂମି କେବଳ ଦେଇଛି । ଦେଇଛି ଅନୁଭୂତି, ଅଭିଜ୍ଞତା, ନିଜ ଚାରିପାଖ ପରିବେଶକୁ, ମଣିଷମାନଙ୍କୁ, ନଈନାଳ, ଗୋହିରୀ ପାଟ ଏବଂ ପ୍ରକୃତିକୁ ଚିହ୍ନିବାକୁ ଓ ଜାଣିବାକୁ ଦେଇଛି ଜ୍ଞାନ-ପ୍ରଜ୍ଞାନ-ଅଭିଜ୍ଞାନ, ତାରୁଣ୍ୟର ଶେଷ ପାହାଚରେ ଜ୍ଞାନ ପାକଳ ହେଲା ବେଳକୁ ଜ୍ଞାନର ପରୀକ୍ଷା କରି ପେଟ ପାଟଣା ସମ୍ଭାଳିବା ପାଇଁ ଧାଇଁ ଯାଇଥିଲେ କର୍ମଭୂମିକୁ ସୁଦୂର ସୁନାବେଡାର ଘଞ୍ଚ ବନାନୀ ଭିତରକୁ । କର୍ମଭୂମିର କାମ ସରିଛି, ଘଞ୍ଚ ଜଙ୍ଗଲରେ କୋଇଲିର କୁହୁ ସାଙ୍ଗରେ ତାଙ୍କ କବିତା ଏକାକାର ହୋଇଯାଇଛି, ବନ୍ୟ ଝରଣା ପରି ତାଙ୍କ ଶିଶୁ ସାହିତ୍ୟ ତୁଙ୍ଗ ଶିଖରରୁ ଗଡି ଆସି ଆଦ୍ର କରିଛି କେତେ କୋମଳ ହୃଦୟକୁ । ବନଫୁଲ ପରି କେତେ ଅନୁଷ୍ଠାନ ଗଢି ଉଠିଛନ୍ତି, କେତେ ପଲ୍ଲୀ ବାଳକ ଶିଶୁ କବିତାର ଲହର ଛୁଟାଇଛନ୍ତି ।

ଏଣିକି ବାହୁଡା ଯାତ୍ରା । ଯେଉଁ ଜନ୍ମଭୂମିର ଅଭିଜ୍ଞତାକୁ ପୁଞ୍ଜିକରି ସେ କର୍ମଭୂମିରେ କର୍ମବୀର ପାଲଟି ଗଲେ, ପାହାଡ ପର୍ବତ ଘେରା ବନ୍ୟ ଅଞ୍ଚଳରେ ସାହିତ୍ୟର ମହାସ୍ରୋତ ସୃଷ୍ଟି କଲେ, ଏବେ ପୁଣି ସେହି ଜନ୍ମଭୂମିକୁ ଫେରିବାକୁ ହେବ, ତା ପାଇଁ କିଛି କରିବାକୁ ହେବ । ଏ ଯାବତ୍ ଜନ୍ମଭୂମିଠୁ ସେ କେବଳ ନେଇଛନ୍ତି, ଏବେ କିଛି ଦେବାର ବେଳ, ବାହୁଡା ଯାତ୍ରା ।

ତାଙ୍କ ସହିତ ମୋ ପ୍ରଥମ ଭେଟର ତାରିଖ ମନେ ନାହିଁ । ୧୯୯୫ କିମ୍ବା ୧୯୯୬ର କଥା । ମୋର ବାଲ୍ୟବନ୍ଧୁ ଡ.ମନୀନ୍ଦ୍ର ମହାନ୍ତିଙ୍କ ନେତୃତ୍ୱରେ ବାଣୀବିହାର



Digitized by srujanika@gmail.com

ମନୋବିଜ୍ଞାନ ବିଭାଗ ପରିସରରେ, ଓଡିଆ ଗବେଷଣା ପରିଷଦର ଏକ ତ୍ରିଦିବସୀୟ ତାଲିମ୍ ଶିବିର ଚାଲିଥାଏ । ସେତେବେଳେ ମୁଁ ଯାଜପୁର ରୋଡରୁ ତ୍ରୈମାସିକ ସାହିତ୍ୟ ପତ୍ରିକା 'ବିବର୍ତ୍ତନ'ସମ୍ପାଦନା କରୁଥାଏ । ମୁଁ ତାଲିମ୍ ଶିବିରର ଦ୍ୱିତୀୟ ଦିନ ସାନ୍ଧ୍ୟ ଅଧିବେଶନରେ ପହଞ୍ଚିଲି ଓ ମନୀନ୍ଦ୍ର ତୁରନ୍ତ ମୋତେ ସଭା ମଝିରେ ପରିଚିତ କରାଇ ଦେଲା ଓ କିଛି କହିବାକୁ ଅନୁରୋଧ କଲା । ଶିଶୁ ସାହିତ୍ୟରେ ମୋର ପ୍ରବେଶ ନାହିଁ କହିଲେ ଚଳେ । ତେଣୁ ସଂକ୍ଷେପରେ ବିବର୍ତ୍ତନର ଶିଶୁ ବିଭାଗ କଳିକା କଥା କହି, ଶିଶୁ ସାହିତ୍ୟ ସମ୍ପର୍କରେ ମୋ ନିଜସ୍ୱ ଅଭିମତ ରଖିବାକୁ ଯାଇ କହିଲି -'ଆମ ଶିଶୁ ସାହିତ୍ୟ ପୋଖତ ନ ହେଲେ, ସମଗ୍ର ଓଡିଆ ସାହିତ୍ୟର ଧାରା ଗତାନୁଗତିକ ହୋଇ ରହିଯିବ ।'

ମୁଁ ମଞ୍ଚରୁ ଓହ୍ଲାଇ ଯିବା ପରେ ମୋ ପାଖକୁ ଘୁଞ୍ଚି ଆସି ଯେଉଁ ବନ୍ଧୁ ଜଣକ ବସିଲେ ଓ ମୋତେ ସ୍ୱାଗତ ଜଣାଇଲେ ସେ ହେଉଛନ୍ତି ଡ.ବସନ୍ତ କିଶୋର ସାହୁ । ତାଙ୍କ ଲିଖିତ 'ଓଡିଆ ଶିଶୁ ସାହିତ୍ୟ ଆଲୋଚନା' ଓ ତାଙ୍କ ସମ୍ପାଦିତ 'ଓଡିଶାର ଲୋକନାଟ୍ୟ' ବହି ଦୁଇଟି ଉପହାର ଦେଲେ । ମୁଁ ଖଣ୍ଡିଏ ବିବର୍ତ୍ତନ ବଢାଇବାରୁ 'ହାତରୁ ଖର୍ଚ୍ଚ କରି ପତ୍ରିକା ବାହାର କରି ବାଣ୍ଟନ୍ତୁ ନାହିଁ' କହି ତାର ମୂଲ୍ୟ ତୁରନ୍ତ ଦେଇଦେଲେ । ପୁଣି ସେ ନିଜେ ଘୋଷଣା କରିବା ପରେ ତୁରନ୍ତ ମୋ ହାତରେ ଥିବା ଦଶଖଣ୍ଡ ପତ୍ରିକା ସେଇଠି ବିକ୍ରି ହୋଇଗଲା । ସେ ଦିନ ରାତି ଖାଇବା, ଶୋଇବା ଓ ପରଦିନ ସକାଳ ଅଧିବେଶନ ଶେଷ ହେବାଯାଏ, ସେ ମୋ ପାଖେ ପାଖେ ରହି ମୋ ଭଲ ମନ୍ଦ ବୁଝୁଥିଲେ ଓ ତାଙ୍କର ନିଷ୍କପଟ ସଖ୍ୟ ମୋତେ କୃତାର୍ଥ କରିଥିଲା । ସେ ମନୀନ୍ଦ୍ରର ଗବେଷଣା ଛାତ୍ର ଥିଲେ । ମନୀନ୍ଦ୍ରର ବନ୍ଧୁ ହୋଇଥିବା କାରଣରୁ ବୋଧହୁଏ ମୋ ପ୍ରତି ସେ ଟିକେ ଅଧିକ ଯତ୍ନବାନ ଥିଲେ । ତେବେ ତାଙ୍କର ଅମାୟିକ ବ୍ୟବହାର, ସାରସ୍ୱତ ପ୍ରଜ୍ଞା ମୋତେ ତାଙ୍କ ଆଡକୁ ଆକୃଷ୍ଟ କରିଥିଲା । ମୁଁ ସେଥିପାଇଁ ତାଙ୍କୁ ଦେଖେ ପ୍ରଥମେ ଜଣେ ଭଲ ମଣିଷ ଭାବରେ, ତା ପରେ ସାହିତ୍ୟିକ, ସଂଗଠକ ଏବଂ ଗବେଷକ ଭାବରେ ।

ତାଙ୍କ ସହିତ ପରବର୍ତ୍ତୀ ସାକ୍ଷାତ ଅନେକ ଦିନ ପରେ ୧୨.୦୬.୨୦୦୪ ରେ କଟକ ଶ୍ରୀରାମଚନ୍ଦ୍ର ଭବନରେ । ଦୁହିଁଙ୍କ ଅବସ୍ଥାନର ଦୂରତା ଦୃଷ୍ଟିରୁ ସାକ୍ଷାତର ସୁଯୋଗ ନଥିଲେ ବି ଚିଠି ପତ୍ର ଓ ଟେଲିଫୋନ୍ ମାଧମରେ ମଝିରେ ମଝିରେ ସମ୍ପର୍କ ବଞ୍ଚି ରହିଥିଲା । କିନ୍ତୁ ସେ ମୋତେ ହଠାତ୍ ଚିହ୍ନି ପାରିଲେ ନାହିଁ । ଶ୍ରୀରାମଚନ୍ଦ୍ର ଭବନରେ ଶିଶୁ ସାହିତ୍ୟିକ ସ୍ୱର୍ଗତ ନନ୍ଦ କିଶୋର ସାମଲଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ସ୍ମୃତି ଉତ୍ସବର ପ୍ରଥମ ଅଧିବେଶନର କବିତା ପାଠ ଚାଲିଥାଏ । ମୁଁ ପହଞ୍ଚିଲା ବେଳକୁ ମୋତେ ଆମନ୍ତ୍ରଣ ମିଳିଥାଏ ଦ୍ୱିତୀୟ ଅପରାହ୍ନ ଅଧିବେଶନ ପାଇଁ । କବିତା ପାଠୋତ୍ସବରେ ମଞ୍ଚ ପରେ ସଭାପତିତ୍ୱ କରୁଥିବା ବସନ୍ତ ବାବୁଙ୍କୁ ଦେଖି ଆଚମ୍ବିତ ହେଲି । କାରଣ ତାଙ୍କ ନାମ ନିମନ୍ତ୍ରଣ ପତ୍ରରେ ନଥିଲା, ପରେ କାର୍ଯ୍ୟକ୍ରମ ଆୟୋଜକ ଗଣେଶ୍ୱର ବାବୁ ଓ ବ୍ରହ୍ମାନନ୍ଦ ବାବୁ କହିଲେ ସ୍ୱର୍ଗତ ନନ୍ଦ କିଶୋର ଥିଲେ ବସନ୍ତ ବାବୁଙ୍କ ଗୁରୁ । ତେଣୁ ଯେଉଁଠି ତାଙ୍କ ସ୍ମୃତି ଚାରଣ ହେବ ସେଠି ବସନ୍ତ ବାବୁ ପହଞ୍ଚିଯିବେ। ବସନ୍ତ ବାବୁ ପ୍ରଥମେ ମୋତେ



Digitized by srujanika@gmail.com

ଚିହ୍ନି ପାରିଲେ ନାହିଁ, ପରିଚୟ ଦେବା ପରେ ମୋତେ କୁଣ୍ଢାଇ ପକାଇଲେ ।

କବିତା ପାଠୋତ୍ସବ ପରେ କିଛି ସମୟ ମିଳିଲା କଥାବାର୍ତ୍ତା ହେବାକୁ । ସେ ପ୍ରଥମେ ମନେ ପକାଇ ଦେଲେ ପ୍ରାୟ ବର୍ଷକ ତଳେ ମନୀନ୍ଦ୍ର ମହାନ୍ତି ସମ୍ପର୍କରେ ସେ ମୋ ଠାରୁ ଲେଖାଟିଏ ମଗାଇ ନେଇଥିଲେ-ଏବଂ ତା ପରେ ସୂଚନା ଦେଲେ ଯେ ମନୀନ୍ଦ୍ରର ସବୁ ଗବେଷଣା ଛାତ୍ର ମିଶି 'ମନୀନ୍ଦ୍ର ଅଭିନନ୍ଦନ' ଗ୍ରନ୍ଥଟିଏ କରିବା ପାଇଁ ଲେଖା ନେଇଥିଲେ ଓ ଗ୍ରନ୍ଥ ଛାପା ସରିଲାଣି । ତେବେ ସବୁ ବନ୍ଧୁଙ୍କୁ କେଉଁଠି କେମିତି ଏକାଠି କରି ଗ୍ରନ୍ଥଟି 'ଉନ୍ମୋଚନ' କରାଇବେ, ତାହା ଥିଲା ସେତେବେଳେ ତାଙ୍କ ପାଇଁ ମୁଣ୍ଡ ବ୍ୟଥାର କାରଣ । ସେହି ସଂକ୍ରାନ୍ତରେ ସେ ଭୁବନେଶ୍ୱରରେ ଶରତ ନାୟକ (ଶିଶୁ ସାହିତ୍ୟିକ)ଙ୍କ ସହିତ ଆଲୋଚନା କରିବାକୁ ଆସିଥିଲେ । ମୋଟାମୋଟି ତାଙ୍କ କଥାରୁ ମୁଁ ବୁଝିଲି ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ନିର୍ଦ୍ଦିଷ୍ଟ ସ୍ଥାନରେ ମନୀନ୍ଦ୍ରର ଗବେଷଣା ଛାତ୍ରମାନଙ୍କୁ ଏକଜୁଟ କରାଇ କୌଣସି ବିଶିଷ୍ଟ ସାହିତ୍ୟିକଙ୍କ ଦ୍ୱାରା ଅଭିନନ୍ଦନ ଗ୍ରନ୍ଥ ଉନ୍ମୋଚନ କରାଇବା ସମ୍ଭବ ହେଉନାହିଁ । ବନ୍ଧୁମାନେ ବାରମ୍ବାର ତାରିଖ ଓ ସ୍ଥାନ ବଦଳାଇବାର ପ୍ରସ୍ତାବ ଦେଉଛନ୍ତି ।

ମୁଁ ଏହି ପରିସ୍ଥିତିର ସୁଯୋଗ ନେଇ-ଏପରି ଏକ ଉତ୍ସବ ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ରକୁ ଆୟୋଜନ କରିବା ପାଇଁ ଦିଆଯାଉ ବୋଲି ମନ୍ତବ୍ୟ କଲି । ବସନ୍ତ ବାବୁ ପ୍ରସ୍ତାବରେ ରାଜି ହୁଅନ୍ତେ ବା କିପରି ? ବହି ସେମାନେ ପ୍ରକାଶ କରୁଛନ୍ତି । ଆମେ ଅନ୍ୟ ଏକ ସଂସ୍ଥା ଦ୍ୱାରା ଉନ୍ମୋଚନ କରାଇବୁ କିପରି ? ତାଙ୍କର ଅବଶ୍ୟ ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ର ସମ୍ପର୍କରେ ସମ୍ୟକ୍ ଧାରଣା ଥିଲା- ସେହି ଖିଅକୁ ଧରି, ମୁଁ ତାଙ୍କୁ ବୁଝାଇଲି ଗବେଷଣା ଛାତ୍ରମାନେ ମନୀନ୍ଦ୍ର ସହ ଯେମିତି ସମ୍ପୃକ୍ତ । ଆପଣମାନେ ମନୀନ୍ଦ୍ରର ବଶମ୍ବଦ ଛାତ୍ର, ଆମେ ତାର ସାରସ୍ୱତ ବନ୍ଧୁ ଏବଂ ସେ ନିଜେ ମଧ୍ୟ ଅନୁଷ୍ଠାନର ପ୍ରଥମ ସଦସ୍ୟ । ତେଣୁ ଅନୁଷ୍ଠାନ ତରଫରୁ ଅଭିନନ୍ଦନ ଗ୍ରନ୍ଥ ହେବା ସମୀଚୀନ ହୁଅନ୍ତା ନାହିଁ, ଛାତ୍ରମାନଙ୍କ ତରଫରୁ ଏହା ଏକ ଉଚିତ୍ ପଦକ୍ଷେପ । ଆମ ଅନୁଷ୍ଠାନର ସଦସ୍ୟ ମାନେ ଇତସ୍ତତଃ ହୋଇଯାଇଥିବା ଯୋଗୁ ବର୍ତ୍ତମାନ ସ୍ଥାଣୁ । ତେବେ ଏପରି ଏକ କାର୍ଯ୍ୟକ୍ରମରେ ଥରେ ଏକାଠି ହେବା ପାଇଁ ପ୍ରାୟ ସମସ୍ତେ ଆଗ୍ରହୀ ହେବେ । କାର୍ଯ୍ୟକ୍ରମ ଭଦ୍ରକ, କଟକ କିମ୍ୱା ଭୁବନେଶ୍ୱରରେ କରାଯାଇ ପାରେ । ଏତେ କଥା ବୁଝାଇବା ପରେ ବସନ୍ତ ବାବୁ ମୋ କଥାରେ ସମ୍ମତ ହେଲେ ଓ ସେ ନିଜେ ଗବେଷଣା ଛାତ୍ରମାନଙ୍କ ସହ କଥାବାର୍ତ୍ତା କରି ବହି ଉନ୍ମୋଚନ ପର୍ବ, ଗବେଷଣା ଛାତ୍ର ଓ ଭଦ୍ରକ ରହିବାସରୀୟ ସାହିତ୍ୟ ଚକ୍ରର ମିଳିତ ଆନୁକୁଲ୍ୟରେ ସେହି ବର୍ଷ ଅଗଷ୍ଟ ମାସରେ ଭୁବନେଶ୍ୱର ଠାରେ ହେବାକୁ ସ୍ଥିର ହେଲା । ଶରତ ନାୟକ ଯିଏ କି ଶିଶୁ ସାହିତ୍ୟିକ ଓ ଗବେଷଣା ପରିଷଦର ସଦସ୍ୟ ତଥା ସାହିତ୍ୟ ଚକ୍ରର ଏକଦା ସମ୍ପାଦକ-ସେ ନିର୍ଦ୍ଦିଷ୍ଟ ସ୍ଥାନ, ଦିନ ଓ ଅତିଥି ଇତ୍ୟାଦି ଠିକ୍ କରିବାକୁ ସ୍ଥିର ହେଲା ।

ପାଠକମାନଙ୍କ ଅବଗତି ନିମନ୍ତେ 'ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ର'



Digitized by srujanika@gmail.com

(ସଂକ୍ଷେପରେ-ଭ.ର.ସା)ର ସମ୍ୟକ ପରିଚୟ ବା ସୂଚନା ଏଠାରେ ଆବଶ୍ୟକ । ଏହି ସାହିତ୍ୟ ଅନୁଷ୍ଠାନଟି ଆମେ ୧୯୬୪ ମସିହା ଅଗଷ୍ଟ ୧୫ ତାରିଖ ଦିନ ଆରମ୍ଭ କରିଥିଲୁ । ସେତେବେଳେ ଆମେ ସବୁ ନୂଆ କରି କଲେଜ ଯାଉଥିବା କିଶୋର । ୧୯୬୪ ରୁ ୧୯୭୦ ପର୍ଯ୍ୟନ୍ତ ନିୟମିତ ଭାବେ ରବିବାସରୀୟ ଆସର, ପୂଜ୍ୟ ପୂଜା ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ହେଉଥିଲା । ୧୯୭୦ରେ ଆମେ ସବୁ ନିଜ ନିଜ ଚାକିରି ସ୍ଥାନକୁ ଚାଲିଯିବାରୁ ଅନୁଷ୍ଠାନ ବନ୍ଦ ହୋଇଗଲା । ୧୯୮୪ ବେଳକୁ ମନୀନ୍ଦ୍ର ଭଦ୍ରକ ଫେରି ଆସିବା ପରେ କିଛି ନୂଆ ସଦସ୍ୟଙ୍କୁ ନେଇ ଏହାକୁ ପୁନର୍ବାର କ୍ରିୟାଶୀଳ କରାଇଲା । ତେବେ ୧୯୯୦ ବେଳକୁ ପ୍ରାୟ ସବୁ ସଦସ୍ୟ ଇତସ୍ତତଃ ହୋଇଯିବାରୁ ଅନୁଷ୍ଠାନଟି ପୁନଶ୍ଚ ନିଷ୍କ୍ରିୟ ହୋଇଗଲା । ଏହି ୨ଟି ପର୍ଯ୍ୟାୟରେ ଅନୁଷ୍ଠାନକୁ ପର୍ଯ୍ୟାୟ କ୍ରମେ ନେତୃତ୍ୱ ଦେଇଥିଲେ ପରମାନନ୍ଦ ରାଉତ, ନିର୍ମଳ ବେହେରା, ରବିନାରାୟଣ ସେନାପତି, ଶରତ ନାୟକ, ରମେଶ ଦାସ, ଡକ୍ଟର ବ୍ରଜଗୋପାଳ ମହାନ୍ତି, ଅକ୍ଷୟ ଜେନା ଓ ଗାବିନ୍ଦ ଭଟ୍ଟାଚାର୍ଯ୍ୟ ପ୍ରମୁଖ ।

ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ ଉନ୍ମୋଚନ ଅବସରରେ ଆମେ ସମସ୍ତେ ଭୁବନେଶ୍ୱରରେ ଏକାଠି ହେଲୁ । ସେଠି ଯାହା ଆମ ଭିତରେ ଆଲୋଚନା ହେଲା, ତାହାର ନିର୍ଯ୍ୟାସ ହେଲା-ନିୟମିତ ଭାବରେ ଅନୁଷ୍ଠାନର କାର୍ଯ୍ୟକ୍ରମ ସମ୍ଭବ ନୁହେଁ, ନିୟମିତ ଆସର ଇତ୍ୟାଦି ଭଦ୍ରକରେ ରହୁଥିବା ବନ୍ଧୁମାନଙ୍କ ଦ୍ୱାରା ଗଠିତ ନୂଆ ନୂଆ ଅନୁଷ୍ଠାନ ମାନଙ୍କରେ ହେଉଛି । ଆମେ ବରଂ ସେମାନଙ୍କୁ ବ୍ୟକ୍ତିଗତ ଭାବେ ସହଯୋଗ କରିବା, ଅନୁଷ୍ଠାନ ପାଇଁ ମଝିରେ ମଝିରେ (ନିୟମିତ ବ୍ୟବଧାନରେ) ଏକାଠି ହୋଇ କିଛି କିଛି ଦୃଷ୍ଟାନ୍ତ ମୂଳକ କାର୍ଯ୍ୟ କରିବା । ଏହି ସିଦ୍ଧାନ୍ତର ଫଳ ସ୍ୱରୂପ ଆମେ ସବୁ ମଝିରେ ମଝିରେ ଏକାଠି ହୋଇ କେତେ ଖଣ୍ଡ ବହି ପ୍ରକାଶ ଓ ତାର ଉନ୍ମୋଚନ କରାଇ ପାରିଛୁ । ସେ ବହି ଗୁଡ଼ିକ ହେଲା - (୧) ବିଶିଷ୍ଟ ଅନୁବାଦକ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ସ୍ମରଣିକା-'ତପୋବନର ତପସ୍ୱୀ' । (୨) ଭଦ୍ରକ ଗଳ୍ପ ସମ୍ଭାର (ସତୁରୀ ଜଣ ଗାଳ୍ପିକଙ୍କ ଗଳ୍ପର ସମାହାର ଏକ ବିରାଟ ଗ୍ରନ୍ଥ) ।(୩) ସାହିତ୍ୟ ସାରଥୀ ଭାଗୀରଥି । (୪) ଲକ୍ଷ୍ମୀନାରାୟଣଙ୍କ ଗପ ।

ଏହା ଛଡା ଅନୁଷ୍ଠାନରେ କେତେ ଜଣ ତରୁଣ ସଦସ୍ୟ ଗତ ୭ ବର୍ଷ ହେଲା ଅନୁଷ୍ଠାନର ଏକ ସ୍ୱାଧୀନ ଶାଖା 'ଉତ୍କଳ ସଂସ୍କୃତି ଶିବିର' ନାମରେ ଓଡିଶା ବାହାର ବିଚ୍ଛିନ୍ନାଞ୍ଚଳକୁ ଯାଇ ସେଠାକାର ଓଡିଆମାନଙ୍କୁ ବହି, ନିର୍ମାଲ୍ୟ, କ୍ୟାଲେଣ୍ଡର, ପାଞ୍ଜି ଇତ୍ୟାଦି ସହିତ ଓଡିଆତ୍ୱ ବାଣ୍ଟୁଛନ୍ତି ।

ଭ.ର.ସାର ଏହି ସବୁ କାର୍ଯ୍ୟକ୍ରମ କଥା ଏଠାରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା-ଆମକୁ ସ୍ୱୀକାର କରିବାକୁ ହେବ ଯେ ଗବେଷଣା ଛାତ୍ରମାନଙ୍କ ଦ୍ୱାରା ପ୍ରସ୍ତୁତ ଓ ପ୍ରକାଶିତ ପୁସ୍ତକର ଉନ୍ମୋଚନ ଉତ୍ସବରେ ବସନ୍ତ ବାବୁ ଯଦି ଭ.ର.ସାକୁ ସାମିଲ୍ କରିବାକୁ ଅସମ୍ମତ ହୋଇଥାଆନ୍ତେ ତେବେ ଏତେ ସବୁ କଥା ହୋଇପାରି ନ ଥାଆନ୍ତା ।



Digitized by srujanika@gmail.com

ଭ.ର.ସା ପୁନର୍ଜୀବିତ ହୋଇ ନ ଥାଆନ୍ତା । ବସ୍ତୁତଃ ମୁଁ ଓ ଭ.ର.ସା ଅନୁଷ୍ଠାନ ଏଥି ପାଇଁ ବସନ୍ତ ବାବୁଙ୍କ ପାଖରେ ଋଣୀ ।

ବସନ୍ତ ବାବୁଙ୍କ ସହିତ ଉପରୋକ୍ତ ଦୁଇଟି ସାକ୍ଷାତ ପରେ ଆହୁରି କେତେବାର ସାକ୍ଷାତ ଆଲୋଚନା ହୋଇଛି । ସେ ସୁନାବେଡାରେ ମୁଁ ସୁକିନ୍ଦାରେ (ବର୍ତ୍ତମାନ ଯାଜପୁର ରୋଡରେ) । ତେଣୁ ବ୍ୟକ୍ତିଗତ ସାକ୍ଷାତର ସୁଯୋଗ ବିଶେଷ ନଥିଲା, ତେବେ ଚିଠି ପତ୍ର, ଟେଲିଫୋନ ମାଧ୍ୟମରେ ଆମ ସମ୍ପର୍କ ନିବିଡ ହୋଇଛି । ଏହି ସମ୍ପର୍କର ନିବିଡତା ଭିତରେ, ତାଙ୍କର ସାରସ୍ୱତ ନିଷ୍ଠା ମୋତେ ମୁଗ୍ଧ କରେ । ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ସମସ୍ତ କାର୍ଯ୍ୟକ୍ରମ ଓ କାହାର କଣ ଦାୟିତ୍ୱ ସେ ନିୟମିତ ଭାବେ ଯଥା ସମୟରେ SMS କରିଆରେ ଜଣାନ୍ତି । ସମସ୍ତ ପର୍ବ ପର୍ବାଣିରେ ଶୁଭେଚ୍ଛା ବାର୍ତ୍ତା ପଠାନ୍ତି । ସେହି ନିଷ୍ଠା ଯୋଗୁଁ ସେ ଉପକୂଳ ଅଞ୍ଚଳର ଏକ ପ୍ରସିଦ୍ଧ ଗ୍ରାମ କୁସୁପୁର (ଯେଉଁଠି ପଲ୍ଲିକବି ନନ୍ଦ କିଶୋର ବଳ, ଶିଶୁ ସାହିତ୍ୟିକ ନନ୍ଦ କିଶୋର ସାମଲ, ପ୍ରବୀଣ ସାହିତ୍ୟିକ ଜ୍ଞାନୀନ୍ଦ୍ର ବର୍ମା, ଶିଳ୍ପୀ ବିଯାଧର ବର୍ମା ପ୍ରମୁଖଙ୍କ ଜନ୍ମ)ରୁ ଯାଇ ପାହାଡ ଜଙ୍ଗଲ ଘେରା ସୁନାବେଡାରେ ନିଜର ପତିଆରା ଜମାଇ ପାରି ନ ଥାଆନ୍ତେ । ତାଙ୍କ ନେତୃତ୍ୱରେ ବନଫୁଲ ପରି ଅନୁଷ୍ଠାନ ଅଞ୍ଚଳ ଓ ରାଜ୍ୟର ସାହିତ୍ୟକୁ ସମୃଦ୍ଧ କରୁଛି ।

ଶିଶୁ ସାହିତ୍ୟରେ ମୋର ବିଶେଷ ପ୍ରବେଶ ନାହିଁ । ତେବେ ଓଡିଆ ଶିଶୁ ସାହିତ୍ୟର ପ୍ରଥମ ଗବେଷକ ଡ.ମନୀନ୍ଦ୍ରର ସେ ପ୍ରଥମ ଗବେଷଣା ଛାତ୍ର । ଶିଶୁ ସାହିତ୍ୟ ରଚନା, ଶିଶୁ ସାହିତ୍ୟ ଆଲୋଚନା ଏବଂ ଶିଶୁ ସାହିତ୍ୟ ପାଇଁ ଗବେଷଣା ସବୁଠି ତାଙ୍କର ନିଆରାପଣ ବାରିହୋଇ ପଡେ । ଆମେ ସବୁ ଅନାବଶ୍ୟକ ମଣୁଥିବା-ପିଲାମାନଙ୍କୁ କହି ଦେବା ପାଇଁ ବ୍ୟବହୃତ ଢଗଢମାଳି, ନାନାବାୟା ଗୀତ ଇତ୍ୟାଦିକୁ ନେଇ ଗବେଷଣା କରି ସାଢେ ତିନିଶହ ପୃଷ୍ଠାର ବହି ଲେଖାଯାଇ ପାରେ-ଏହା କେବଳ ବସନ୍ତ ବାବୁଙ୍କ ଦ୍ୱାରା ସମ୍ଭବ । (ଓଡିଆ ମୌଖିକ ଶିଶୁ ସାହିତ୍ୟ - ଡ.ବସନ୍ତ କିଶୋର ସାହୁ, ପ୍ର.ଚିତ୍ରୋତ୍ପଳା ପବ୍ଲିକେସନ-୧୯୯୬) । ସେହିପରି ଅନ୍ୟ ଏକ ପୁସ୍ତକ- 'ଓଡିଆ ଶିଶୁ ସାହିତ୍ୟ ଆଲୋଚନା' ତାଙ୍କ ଦ୍ୱାରା ରଚିତ ଓ ସରସ୍ୱତୀ ପ୍ରିଣ୍ଟିଂ ପ୍ରେସ୍ ଦ୍ୱାରା ପ୍ରକାଶିତ (୧୯୯୪) । ୨ଖଣ୍ଡ ଯାକ ବହି ମୁଁ ପଢିଛି । ଓଡିଆ ଶିଶୁ ସାହିତ୍ୟ ଜଗତରେ ଏହି ବହି ଦୁଇଖଣ୍ଡ ଯାକ ପଢିବା ପରେ ଏଥିରେ ସନ୍ନିବେଶିତ ବିଷୟ ଓ ତଥ୍ୟ ସଂଗ୍ରହ, ସଜ୍ଜିକରଣ ପଦ୍ଧତି ଓ ପର୍ଯ୍ୟାଲୋଚନା ମୋତେ ବିସ୍ମିତ କରିଛି । ତାଙ୍କ ସାହିତ୍ୟ ରଚନାକୁ ବିଷୟାନୁକ୍ରମିକ ଆଲୋଚନା ଏଠାରେ ଏହି ସ୍ମୃତି ଚାରଣ ଭିତରେ ସମ୍ଭବ ନୁହେଁ-ଏହା ଏକ ସମ୍ପୂର୍ଣ୍ଣ ଅଲଗା ବିଷୟ ।

ସେହିପରି ଶିଶୁ ସାହିତ୍ୟ କ୍ଷେତ୍ରରେ ତାଙ୍କର ଆନୁଷ୍ଠାନିକ ଦକ୍ଷତା ମଧ୍ୟ ଅତୁଳନୀୟ । ଟିକିନିଖି ଆଲୋଚନା ପାଇଁ ଏହା ମଧ୍ୟ ଏକ ସମ୍ପୂର୍ଣ୍ଣ ଅଲଗା ବିଷୟ ହୋଇପାରେ । ଶିଶୁ ସାହିତ୍ୟ ଗବେଷଣା ପରିଷଦର ସେ ବୋଧ ହୁଏ ସବୁଠାରୁ ନିଷ୍ଠାପର କର୍ମୀ । କେବଳ ତାଲିମ୍ ଶିବିର ବେଳେ ଅନ୍ୟମାନେ ତତ୍ପର ହୋଇ ଉଠୁଥିବା ବେଳେ,



Digitized by srujanika@gmail.com

ବର୍ଷ ତମାମ ସେ ମନୀନ୍ଦ୍ର ସହ ମିଶି ଏହାରେ ଯୋଜନା କରୁଥାଆନ୍ତି ଏବଂ ସଦସ୍ୟ ତଥା ସମ୍ପୃକ୍ତ ଅନ୍ୟ ସମସ୍ତଙ୍କୁ (ମୋତେ ମଧ୍ୟ) ବିଭିନ୍ନ କାର୍ଯ୍ୟକ୍ରମ ଓ ଅନ୍ୟାନ୍ୟ ଖବର SMS ଜରିଆରେ ପଠାଇବାକୁ ଭୁଲନ୍ତି ନାହିଁ। ତା ଛଡା ସବୁ ପର୍ବପର୍ବାଣିରେ ଶୁଭେଚ୍ଛା ବାର୍ତ୍ତା ବି ପଠାଇବାରେ ହେଳା କରନ୍ତି ନାହିଁ । ପୁନଶ୍ଚ ସୁନାବେଡାରେ ବନଫୁଲ ଓ ବନପ୍ରଭା ପରି ଅନୁଷ୍ଠାନମାନ ଗଢି ନାନାବିଧ ସାରସ୍ୱତ କର୍ମରେ ସାମିଲ୍ ହୋଇ, ନେତୃତ୍ୱ ନେଇ ସେ ନିଜର ଦକ୍ଷତା ପ୍ରତିପାଦିତ କରିଛନ୍ତି । ସୁନାବେଡାରେ ନାନବିଧ ସାଙ୍ଗଠନିକ ପରୀକ୍ଷା ନିରୀକ୍ଷାରେ ତାଙ୍କର ସଫଳତା ତାଙ୍କୁ କେବଳ ସୁନାବେଡାର ପ୍ରିୟ ମଣିଷ କରିନାହିଁ । ସେ ପ୍ରତିଷ୍ଠା ପ୍ରତିଫଳିତ ହୋଇଛି, ଗବେଷଣା ପରିଷଦର ଦାୟିତ୍ୱ ତୁଲାଇବାରେ ସମ୍ପୂର୍ଣ୍ଣ ଶୃଙ୍ଖଳିତ ଏବଂ ଯୋଜନାବଦ୍ଧ ଭାବରେ ତାଙ୍କର ସଂଗଠନିକ କାର୍ଯ୍ୟ କେବଳ କାର୍ଯ୍ୟକ୍ରମକୁ ସଫଳ କରେ ନାହିଁ, ସମ୍ପୃକ୍ତ ଅନୁଷ୍ଠାନକୁ ମଧ୍ୟ ସୁଦୃଢ କରେ । ସଂଗଠନ ଓ ସଦସ୍ୟମାନଙ୍କ ମନୋବଳ ବଢାଏ । ସେଥିପାଇଁ ତ ସୁନାବେଡାରେ ବସନ୍ତ ବାବୁ ଏତେ ସଫଳ ।

ସୁନାବେଡାରେ ତାଙ୍କ ପତିଆରାକୁ ଲକ୍ଷ୍ୟକରି ମୁଁ ଭାବିଥିଲି ସେ ବୋଧେ ସେଇଠି ରହିଯିବେ ସବୁଦିନ ପାଇଁ। କିନ୍ତୁ କର୍ତ୍ତବ୍ୟନିଷ୍ଠ ବସନ୍ତ ବାବୁ କର୍ମଭୂମିର କର୍ତ୍ତବ୍ୟ ସମ୍ପାଦନ ପରେ ଜନ୍ମଭୂମିକୁ ଫେରି ଆସୁଛନ୍ତି । ବସନ୍ତ ଲେଉଟି ଆସୁଛି କୁସୁପୁରକୁ, ସୁନାବେଡାରେ ଏକ ମୃଦୁ ମନ୍ଦ ସାରସ୍ୱତ ମଳୟ ସୃଷ୍ଟି କରି ସେ ଯଥାର୍ଥରେ ଟାଙ୍ଗରା ଭୂଇଁରେ ବାସ ଛୁଟାଇ ପାରିଛନ୍ତି ଏବଂ ତା ପରେ ଫେରୁଛନ୍ତି ଜନ୍ମଭୂମିକୁ । ଜନ୍ମଭୂମି ପାଇଁ ହାତରେ ବହୁତ କାମ ଥିବା, ଚିନ୍ତାରେ ବହୁତ ଯୋଜନାରେ ଥିବା ୫/୬ ବର୍ଷ ତଳେ ଶୁଣିଥିଲି ତାଙ୍କ ଗୁରୁ ସ୍ୱର୍ଗତ ନନ୍ଦକିଶୋର ସାମଲଙ୍କ ଗ୍ରନ୍ଥାବଳୀ କାମ ହାତକୁ ନେବେ । କିଛି ଦିନ ତଳେ ଶୁଣିଥିଲି ସେ କାମ ଆରମ୍ଭ ହୋଇଛି ଓ ପ୍ରଥମ ଖଣ୍ଡ ତାଙ୍କ ସମ୍ପାଦନାରେ ପ୍ରକାଶ ପାଇସାରିଲାଣି ।

ମୋ ଜାଣିବାରେ ତାଙ୍କ ପରିଚିତ ପୃଥିବୀର ପରିଧି ଭିତରେ ତିନିଜଣ ନନ୍ଦକିଶୋର (୰ବଳ, ୰ସାମଲ ଏବଂ ଶ୍ରୀଯୁକ୍ତ ସିଂହ) ତାଙ୍କୁ ପ୍ରଭାବିତ କରିଛନ୍ତି । ବିଶଷ୍ଟ-ଶିଶୁ ସାହିତ୍ୟିକ ଓ ଗୀତିକବି ନନ୍ଦକିଶୋର ସିଂହ ଆମରି ଅଞ୍ଚଳର (କୋରେଇ) ବସନ୍ତ ବାବୁଙ୍କ ଦ୍ୱାରା ଲିଖିତ ନନ୍ଦକିଶୋର ସିଂହଙ୍କ ଶିଶୁ ସାହିତ୍ୟର ଆଲୋଚନା ପଢି ତାଙ୍କ ସହିତ ଭେଟ ହେବା ଆଗରୁ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ପରେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ ସୌଜନ୍ୟରୁ ତାଙ୍କର ସଖ୍ୟ ମିଳିଲା । ମୁଁ ତାଙ୍କ ପରିଚିତ ପୃଥିବୀର ପରିଧି ଭିତରେ ଚତୁର୍ଥ ନନ୍ଦ କିଶୋର-ଆଶା କରୁଛି ଜନ୍ମଭୂମିକୁ ଫେରିଆସିଲେ-ଅଧିକରୁ ଅଧିକ ଘନିଷ୍ଠ ସାନ୍ନିଧ୍ୟର ସୁଯୋଗ ମିଳିବ ଏବଂ ଏହି ଆଶା ନେଇ ମୁଁ ତାଙ୍କ ବାହୁଡା ଯାତ୍ରାକୁ ସ୍ୱାଗତ କରୁଛି ।



ଶଙ୍ଖଚିଲା ରୋଡ୍, ଯାଜପୁର ରୋଡ



Digitized by srujanika@gmail.com

# ମୋ ଗବେଷଣାର ଗାଇଡ୍

## ଡକ୍ଟର ରାଜକିଶୋର ପାଢ଼ୀ

ପିଲାଦିନେ ଘରକୁ ପତ୍ରପତ୍ରିକା ଆସୁଥିଲା । ଅଗ୍ରଜ ବୀରକିଶୋର ପାଢ଼ୀ ଗାଁଭୂଇଁ ପତ୍ରିକାଟିଏ ବାହାର କରୁଥିଲେ, କବିତା ଲେଖୁଥିଲେ । ଲେଖାଲେଖି ପ୍ରତି ଆଗ୍ରହ ସେଇଠୁ ଆସିଲା । ପାଠପଢ଼ି କ'ଣ ହେବି ଜାଣି ନଥିଲି । ଅସୁବିଧା ଭିତରେ ବି.ଏ ପଢ଼ା ସରିଲା । କଲେଜରେ ବି ଲେଖାଲେଖି ଚାଲିଥିଲା । ଅଧ୍ୟାପକ ମାନଙ୍କୁ ଦେଖି ଶୁଣି ଅଧ୍ୟାପକ ହେବାକୁ ମନ ଥିଲା କି କ'ଣ । ମାତ୍ର ରେଭେନ୍‌ସାରେ ଏମ୍.ଏ ଓଡ଼ିଆ ପଢ଼ିବାକୁ ଚିଠି ଆସିଲେ ବି ନାମ ଲେଖା ହେଲା ନାହିଁ । ଶିକ୍ଷକତାକୁ ଆଦରିବାକୁ ପଡ଼ିଲା । ଭଲ ବି ଲାଗିଲା । ଲେଖାପଢ଼ା ଏଣେ ଚାଲିଲା ଓ ବହୁ ବିଳମ୍ବରେ ଏମ୍.ଏ ପରୀକ୍ଷା ଦିଆଗଲା । ମନ ହେଲା ପିଏଚ୍.ଡି କରନ୍ତି କିନ୍ତୁ କହିବି କାହାକୁ ? ଲାଜ ମାଡୁଥିଲା । ବଡ଼ବଡ଼ ଅଧ୍ୟାପକମାନେ କାଳେ ହସରେ ଉଡ଼େଇଦେବେ । ମନକଥା ମନରେ ଥାଏ ।

ଥରେ ଜଣେ ଅଧ୍ୟାପକଙ୍କୁ ଦେଖା କଲି । ମୋ କଥା କହିବାକୁ ଜଣେ ଚିହ୍ନାଜଣା ଅଧ୍ୟାପକଙ୍କୁ ସାଙ୍ଗରେ ନେଇଥିଲି । ସିଏ ପଦେଅଧେ ଶୁଣୁ ନ ଶୁଣୁ କହିଦେଲେ ଏଇ ସବୁ ବହି ପଢ଼ିସାରି ଆସିବାକୁ । ମତେ ଭଲ ଲାଗିଲା ନାହିଁ । ଖୁବ୍ ଉଚ୍ଚରେ ରହି କି ଦୂରରେ ଥାଇ ଯେମିତି ସିଏ କଥା ହେଉଥିଲେ । ଆଉ ଜଣେ ପ୍ରଫେସରଙ୍କୁ ଭେଟିଥିଲି । ସାଙ୍ଗରେ ଜଣେ ବଡ଼ କବି ଥିଲେ । ତାଙ୍କୁ କହିବାରୁ ସିଏ ଆଉ ଜଣକ ପାଖକୁ ଯିବାକୁ ପରାମର୍ଶ ଦେଲେ । ଏତେ ଦୌଡ଼ିବାକୁ ଇଚ୍ଛା ହେଲାନାହିଁ ।

ସମୟକ୍ରମେ ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହ ଚିହ୍ନାଜଣା ହେଲା । ଖାଲି ତଥାକଥିତ ଚିହ୍ନାଜଣାରେ ଆମ ପରିଚୟ ଆବଦ୍ଧ ହେଲାନାହିଁ । ସିଏ ମତେ ଆତ୍ମୀୟତାରେ ବାନ୍ଧିଦେଲେ । ଭାରି ଗୁଣଗ୍ରାହୀ ମନେ ହେଲେ । ଅନ୍ୟକୁ ବୁଝିବା, ପ୍ରଶଂସା କରିବା, ପ୍ରୋତ୍ସାହନ ଦବାର ଆଗ୍ରହ ତାଙ୍କର ଥିଲା । କେବେ କିମିତି ଗୋପନ ଇଚ୍ଛାଟି ତାଙ୍କ ଆଗରେ ଖୋଲି ହେଇଗଲା କି କ'ଣ । ଏଣେ ମୁଁ ଶିଶୁ ସାହିତ୍ୟ ଲେଖାଲେଖି କରୁଥାଏ ଓ ସିଏ ମଧ୍ୟ ଶିଶୁ ସାହିତ୍ୟକୁ ତାଙ୍କ ଗବେଷଣା ଓ



Digitized by srujanika@gmail.com

ସୃଷ୍ଟିର ଆଧାର କରିଥାନ୍ତି ।

ଏହା ଭିତରେ ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ସହ ଚିହ୍ନାଜଣାରୁ ଘନିଷ୍ଠତା ତିଆରି ହୋଇଯାଇଥିଲା । ବସନ୍ତବାବୁ ଆଗୁଆ ଡଃ. ଜଗନ୍ନାଥ ମହାନ୍ତିଙ୍କ ଶିଶୁ ସାହିତ୍ୟ କୃତି ଉପରେ ଗବେଷଣା କରିବାକୁ ପ୍ରସ୍ତାବ ଦେଲେ ଓ ମୁଁ ରାଜି ହୋଇଗଲି ।

ଡଃ. ସାହୁ ସିନୋପ୍‌ସିସ୍ ଲେଖିଦେଲେ । ମୁଁ ନାଁ ରେଜିଷ୍ଟ୍ରେସନ୍ କଲି । ଏତିକି ପରେ କାମ ଥୁକୁଲ୍ । ଆଉ କିଛି ହେଲାନାହିଁ । ଡଃ. ମହାନ୍ତିଙ୍କୁ ଭେଟି ଯାହା ତାଙ୍କଠାରୁ ବହି ଆଣିଥିଲି ଓ ପଢ଼ି ଦେଇଥିଲି । କେଇଟା ଶିଶୁ ସାହିତ୍ୟ ଗବେଷଣା ନିବନ୍ଧ ପଢ଼ିଥିଲି । ବସନ୍ତ ବାବୁ ଯାହା ବହିପତ୍ର ଦେଇଥିଲେ ତା' ଉପରେ ଆଖି ବୁଲେଇଥିଲି । ମାତ୍ର କାମ କିଛି କରୁ ନଥିଲି । ବସନ୍ତ ବାବୁ ଚିଠି ପରେ ଚିଠି ଲେଖି ପଠଉଥିଲେ । ଏଣେ ଜଗନ୍ନାଥ ବାବୁ ବି ଚିଠି ଲେଖୁଥିଲେ । ଫୋନ୍ କରୁଥିଲେ । ମୁଁ ହଁ ହେଉଛି, କାମ ଚାଲିଛି, ନୋଟ୍ କରୁଛି, ହେଇଯିବ... ଏମିତି ଯା' କହୁଥାଏ । ମାତ୍ର କାମ ହେଉ ନଥାଏ । ଏହା ଭିତରେ ୧୯୯୯ରେ ମହାବାତ୍ୟା ହେଲା । ପତ୍ନୀ ରୋଗାକ୍ରାନ୍ତ ହେଲେ । କାମ ଯା' ହୁଅନ୍ତା ଜମା ହେଲାନାହିଁ । ପ୍ରଫେସର ମହାନ୍ତି କି ଡଃ. ସାହୁଙ୍କୁ ଦେଖା କରିବାକୁ ସଙ୍କୋଚ ଲାଗିଲା । କଥା କେତେ ବାଆଁରେଇବି ! ସେମାନଙ୍କର ଚିଠି ପାଇଲେ ମୁଁ ଥଣ୍ଡା ପାଣି ଗିଲାସେ ଆଗେ ପିଏ, ତା' ପରେ ଚିଠି ପଢ଼େ । ଉତ୍ତର ଦିଏନା । ଇମିତି ସମୟ ଗଡ଼େ । ଥରେ ବସନ୍ତବାବୁ ତାଙ୍କ ଗାଁ କୁସୁପୁରକୁ ଡାକିଲେ । ଉପାୟ କ'ଣ ! ମନା କରିବି କେମିତି ? ଗଲି । କାମ କେତେ ଆଗେଇଲା ପଚାରିଲେ । ହଁ, ଚାଲିଛି, ନୋଟ୍ କରୁଛି ଏପରି କହିଲି । ସେ କହିଲେ, ଆସନ୍ତା ପୂଜା ଛୁଟିରେ ମୁଁ ଗାଁରେ ଥିଲାବେଳେ ମତେ ପ୍ରଥମ ଦି'ଚାପ୍‌ଟର ଲେଖି ଦେଖେଇବେ । ମୁଁ ହଁ କହିଲି । ଆଉ ବାଟ ନାହିଁ । ଥରେ କଥା ଦେଲେ କଥା ନ ରଖିଲେ ଅପରାଧୀ ପରି ଲାଗିବ । ଗାଇଡ୍ ବସନ୍ତ ବାବୁ ଓ ତେଣେ ଜଗନ୍ନାଥ ବାବୁଙ୍କ ପ୍ରେସର ମତେ ଅଥୟ କଲା ।

ତାଙ୍କ ବ୍ୟବହାର ତ ସ୍ନେହପୂର୍ଣ୍ଣ ପୁଣି ଘରକୁ ଗଲେ ଭୂରି ଭୋଜନ ଅଥଚ କାମ ଶୂନ୍ । ଏଣେ କଥା ତ ଦେଇଚି । କଥା ନ ରଖିଲେ ମୁଣ୍ଡ କଟିଯିବ । ଯା' ହେଉ ପ୍ରଥମ ଚାପ୍‌ଟର ଲେଖିଦେଲି । ଦ୍ୱିତୀୟ ଅଧ୍ୟାୟ ପ୍ରାୟ ସରିବା ସରିବା ଉପରେ। ପହଁଚିଲି ତାଙ୍କ ପାଖରେ । ଆଉ ମନ ଭିତରେ ଯେଉଁ ଦୁର୍ବଳତା ଥିଲା, ନଥାଏ । ଗୋଟାଏ ଆତ୍ମପ୍ରତ୍ୟୟ ଆସିଗଲା । ଡଃ. ସାହୁ ଲୁହା ଜାଣି ପାଣି ଦେଇପାରନ୍ତି କି କ'ଣ । କାମ ନ କରିବି ତ ଜମା ଛୁଇଁବି ନାହିଁ, କରିବି ତ ସୁପରଫାଷ୍ଟ ସ୍ପିଡ୍‌ରେ କରିବା ମୋ ଚରିତ୍ର । ସିଏ ବୋଧହୁଏ ଜାଣିପାରିଲେ । କହିଲେ, ଆଉ ତିନି



Digitized by srujanika@gmail.com

ଅଧ୍ୟାୟ କେବେ ସରିବ, ସମୟ ସ୍ଥିର ହୋଇଯାଉ । ମୁଁ ତ ଅଧିକ ଉତ୍ସାହିତ ହେଇ ପଡ଼ିଥିଲି କାରଣ ମୋ ନିଜ ଉପରେ ବିଶ୍ୱାସ ଆସି ସାରିଥିଲା । କହିଦେଲି ଡିସେମ୍ବର ଶେଷସୁଦ୍ଧା ସାରିଦେବା । ଅଣନିଃଶ୍ୱାସୀ ହୋଇ ସପ ପକେଇ ବହିପତ୍ର ଖେଳେଇ ଲେଖାପଢ଼ାରେ ଏକ ପ୍ରକାର ମାତିଗଲି । ବର୍ଷ ଶେଷ ସୁଦ୍ଧା ସାରିଦେଲି । ପୁନର୍ଲିଖନ ପ୍ରାୟ ହେଇନାହିଁ । ସବୁ ଦାୟିତ୍ୱ ମୋ ଗାଇଡ୍ ନେଇଛନ୍ତି । ବନ୍ଧୁ ହେଇ ପଥ ପ୍ରଦର୍ଶକ ଓ ଫିଲୋସଫର ହେଇ କାମ ମୁଣ୍ଡି ମାରିଛନ୍ତି ।

ମାଷ୍ଟ୍ର ପଣିଆ ତାଙ୍କ ଠାରେ ଦେଖିନାହିଁ । ଶ୍ରଦ୍ଧା ସହିତ ସମ୍ମାନ ମିଶାଇ ମୋତେ ଗ୍ରହଣ କରିଛନ୍ତି । ପାରିବାରିକ ଲାଗିଛନ୍ତି । ଦୂରତ୍ୱ ଥିଲେ ମୁଁ କିଛି କରିପାରି ନଥାନ୍ତି । ତାଙ୍କୁ ସନ୍ତୁଷ୍ଟ କରିବାକୁ ମୋତେ କିଛି କରିବାକୁ ହେଇନାହିଁ । ବରଂ ସିଏ ମତେ କାମରେ ସ୍ୱଭାବିକ ଭାବରେ ଲଗେଇ ପାରିଛନ୍ତି । ଏଥିପାଇଁ କୌଶଳ ପ୍ରୟୋଗ କରିନାହାନ୍ତି । ତାଙ୍କ କର୍ମ କରିବା ଓ କରେଇବା ଧାରାଟି ବୋଧହୁଏ ଏଇଆ, ଯା' ତାଙ୍କର ପ୍ରକୃତିଗତ । ଏପରି ଗାଇଡ୍ ସବୁ ଗବେଷକଙ୍କୁ ମିଳନ୍ତୁ, ଆଶା କରିବି । ତାଙ୍କ ମହାନତା ଉଦାରତା, ବନ୍ଧୁବତ୍ସଳତା ଓ ମଧୁର ବ୍ୟବହାର ମୋ ପାଇଁ ସ୍ମରଣୀୟ ।



କୋଟପୁର, ଯାଜପୁର
ମୋ : ୯୯୩୭୫୫୧୫୭୭





Digitized by srujanika@gmail.com

# ଅନନ୍ୟ ବ୍ୟକ୍ତିତ୍ୱ ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ସ୍ମିତା ମହାରଣା

ଆଧୁନିକ ଓଡିଆ ଶିଶୁ ସାହିତ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଏକ ପରିଚିତ ନାମ। ସେ ହେଉଛନ୍ତି ଏକାଧାରରେ ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଗବେଷକ, ସଂପାଦକ, ଶିଶୁ ସାହିତ୍ୟ ସମାଲୋଚକ, କବି, ପ୍ରାବନ୍ଧିକ ତଥା ଚିନ୍ତାନାୟକ। ସାହିତ୍ୟିକ ବସନ୍ତ ସାହୁ ଓ ଶିଶୁ ସାହିତ୍ୟ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି ଓତଃପ୍ରୋତ ଭାବେ ଜଡିତ । ଶିଶୁ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଏହାକୁ ଏକ ସ୍ୱତନ୍ତ୍ର ରୂପ ଦେଇଛନ୍ତି । ଶିଶୁ ମନସ୍ତତ୍ତ୍ୱକୁ ନେଇ ସରଳ ଶିଶୁ ଉପଯୋଗୀ କବିତା ଓ ଗଳ୍ପ ରଚନା କରିଛନ୍ତି । ତାଙ୍କର ଯାଦୁକରୀ ଲେଖନୀ ପିଲାଙ୍କ ମନକୁ ଛୁଇଁଯାଏ । ପ୍ରତ୍ୟେକଟି ଲେଖାରେ ରହିଛି କିଛି ନା କିଛି ବିଶେଷତ୍ୱ। ଯାହା ଫଳରେ ତାଙ୍କୁ ଓଡିଆ ଶିଶୁ ସାହିତ୍ୟର ଅରୁଣସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବନାହିଁ।

ସାର୍‌ଙ୍କ ସହ ମୋର ପରିଚିତ ହେଲା ୨୦୦୫ ମସିହାରେ ତାଙ୍କ ସୁନାବେଡାସ୍ଥିତ ବାସଭବନରେ । କିନ୍ତୁ ଏହା ପୂର୍ବରୁ ବ୍ୟକ୍ତିଗତ ଭାବେ ମୁଁ ତାଙ୍କୁ ଜାଣିନଥିଲି । କିନ୍ତୁ ପରବର୍ତ୍ତୀ ସମୟରେ ମୁଁ ତାଙ୍କ ପରିବାରର ଜଣେ ଅଭିନ୍ନ ଅଙ୍ଗ ହୋଇଗଲି। ସାର୍‌ଙ୍କ ବିଷୟରେ କ'ଣ ଲେଖିବି, କେମିତି ଲେଖିବି, କେଉଁଠୁ ଆରମ୍ଭ କରିବି, କେଉଁ ଅନୁଭୂତି ଲେଖିବି ଏ ସମସ୍ତ ପ୍ରଶ୍ନ ମୋତେ ଦ୍ୱନ୍ଦ୍ୱରେ ପକାଇ ଦେଇଛି । କିନ୍ତୁ ଏତିକି କହିବି, ଏ ଯେଉଁ ଦୀର୍ଘଦିନର ଗଭୀର ସଂପର୍କର ଅନୁଭୂତିକୁ ଭାଷାରେ କି ଶବ୍ଦରେ ପ୍ରକାଶ କରିହେବ ନାହିଁ। କେତୋଟି ପୃଷ୍ଠାରେ ତା ସୀମିତ କରାଯାଇପାରେନା । ସତରେ ଭାବକୁ ଭାଷାରେ ରୂପଦେବା ଭାରି କଷ୍ଟ ।

ସାର୍‌ଙ୍କ କଥା କହିଲା ବେଳକୁ ମୁଁ କାହିଁକି ଟିକେ ଭାବବିହ୍ୱଳ ହୋଇପଡେ। ସ୍ମୃତି ପଟରେ ଭାସିଯାଉଛି ସାର୍‌ଙ୍କ ସହ ଅନେକ ମୁହୂର୍ତ୍ତ, ଅନେକ ଅନୁଭୂତି ।

ସାର୍‌ଙ୍କ ସାକ୍ଷାତ ସମୟକୁ ମୋର ୨/୩ ବର୍ଷ ପୂର୍ବରୁ Ph.D ରେଜିଷ୍ଟ୍ରେସନ ସରିଯାଇଥିଲା। ତଥାପି କାମରେ ବିଶେଷ ଆଗେଇ ପାରିନଥିଲି। ଦିଗହରା ପଥିକଟେ ପରି ବାଟ ଖୋଜୁଥିଲି କିନ୍ନରା ପାଇବା ପାଇଁ। ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଠାରୁ ଚିଠିଟିଏ



Digitized by srujanika@gmail.com

ନେଇ ମୁଁ ଏକ ରବିବାରରେ ସାର୍‌ଙ୍କ ଘରେ ପହଞ୍ଚିଲି । ମନରେ ଥିଲା ସାର୍‌ଙ୍କୁ ନେଇ ଅନେକ ପ୍ରଶ୍ନ । ଦ୍ୱନ୍ଦ୍ୱ, ଆଶଙ୍କା, ଭୟ ସହ ମୁଁ ସାର୍‌ଙ୍କ ସହ କଥା ହେଲି । ସାର୍ ବେଶୀ କିଛି କଥା ହେଲେ ନାହିଁ । କିନ୍ତୁ ସେ ଅଳ୍ପ କଥା ମଧ୍ୟରେ ମୁଁ ମୋ ମନରେ ଉଠିଥିବା ସମସ୍ତ ଅସମାହିତ ପ୍ରଶ୍ନର ଉତ୍ତର ପାଇଯାଇଥିଲି । ସଳ୍ପ କଥାବାର୍ତ୍ତା ପରେ ସେ କେତେ ଖଣ୍ଡ ଶିଶୁ ସାହିତ୍ୟ ପୁସ୍ତକ ଓ ପତ୍ରିକା ମତେ ଦେଇ କହିଲେ-ପ୍ରଥମେ ପଢ, ଜାଣ ଶିଶୁ ସାହିତ୍ୟ କଣ ? ତାପରେ ତୁମକୁ ରାସ୍ତା ମିଳିଯିବ । ତାଙ୍କର ଏଇ କଥା ପଦକ ମୋ ମନରେ ଆଶାବାନ୍ଧି ପକାଇଥିଲା । ତାଙ୍କ ଠାରୁ ବିଦାୟ ନେଇ ଫେରିବା ବେଳେ କେବଳ ଏତିକି କହିଲେ-ବ୍ୟସ୍ତ ହୁଅନି ମୋ ଦ୍ୱାରା ଯାହା ସମ୍ଭବ ମୁଁ ଅବଶ୍ୟ ସାହାଯ୍ୟ କରିବି । ତାଙ୍କର ଏହି ବାଣୀ ମୋ ହୃଦୟକୁ ଆଶ୍ୱସ୍ତ କରିଦେଲା । ମନହେଲା ଏଣିକି ମୋ ଗବେଷଣା ଆଉ ଅଟକି ରହିବ ନାହିଁ। ନିଶ୍ଚୟ ଲକ୍ଷ୍ୟ ପଥରେ ପହଞ୍ଚିବ । ତାଙ୍କର ସେ ସରଳ ଆନ୍ତରିକତା, ନମ୍ରତା, ସୌଜନ୍ୟ ଗୁଣ ଯୋଗୁ ମୁଁ ମୁଗ୍ଧ ହୋଇଯାଇଥିଲି ।

ଏହାପ୍‌ରେ ମୁଁ ସାର୍‌ଙ୍କ ଠାରୁ ବିଦାୟ ନେଲି । ଏହା ପରେ ପ୍ରାୟ ମୁଁ ସାର୍‌ଙ୍କ ପାଖକୁ ଆସୁଥିଲି । ସାର୍‌ଙ୍କ ଠାରୁ ବହି ନେଇ ପଢାପଢି ତଥା ଲେଖିବା ମଧ୍ୟ ଆରମ୍ଭ କଲି । ଯେତେ ଥର ମୁଁ ସାର୍‌ଙ୍କ ପାଖକୁ ଯାଇଛି ସେତେ ଥର ମୁଁ କିଛି ନା କିଛି ଭଲ ଶିକ୍ଷା ସାର୍‌ଙ୍କ ଠାରୁ ପାଇଛି । ଯେବେ ବି ମୁଁ ଫୋନ କରେ ଯିବା ପାଇଁ ତାଙ୍କ ପାଖକୁ, ସେ କେବେ ବି ମନା କରନ୍ତି ନାହିଁ । ମୁଁ ଜାଣେ ସାର୍ ଭାରି ବ୍ୟସ୍ତ ରୁହନ୍ତି ତଥାପି ମତେ ସେ ସମୟ ଦେଇ ମୋ ସନ୍ଦେହ ଦୂର କରିବାରେ ସାହାଯ୍ୟ କରନ୍ତି ।

ସାର୍ କେବେବି ମୋ ଉପରେ ବିରକ୍ତ ହୁଅନ୍ତି ନାହିଁ କି ରାଗନ୍ତି ନାହିଁ । ସବୁବେଳେ ମତେ କିଛି ନା କିଛି ପରାମର୍ଶ ତଥା ଉପଦେଶ ଦିଅନ୍ତି, ଯାହା ମୋର ପରବର୍ତ୍ତୀ ସମୟରେ କାମରେ ଆସିଥିଲା । ନିୟମିତ ଲେଖାଲେଖି କରିବାକୁ ମତେ କୁହନ୍ତି । ଗବେଷଣା, ନିବନ୍ଧ ପ୍ରସ୍ତୁତି ଠାରୁ ଆରମ୍ଭ କରି ଡିଟିପି ପର୍ଯ୍ୟନ୍ତ ସେ ପ୍ରତ୍ୟେକଟି କାର୍ଯ୍ୟରେ ମୋତେ ସାହାଯ୍ୟ କରିଛନ୍ତି । ମୋ ଥେସିସ୍ ପ୍ରସ୍ତୁତରେ ସାରଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସେ ହେଉଛନ୍ତି ଜଣେ ଭଲ ମାର୍ଗଦର୍ଶକ, ତତ୍ତ୍ୱାବଧାରକ । ତା ସହ ସେ ହେଉଛନ୍ତି ଜଣେ ଛାତ୍ର ବତ୍ସଳ ଅଧ୍ୟାପକ ।

ସେ ସର୍ବଦା କର୍ମ ତତ୍ପର । କେଉଁଠି ଅଯଥାରେ ସମୟ ନଷ୍ଟ କରିବାକୁ ଭଲପାଆନ୍ତି ନାହିଁ । ବେଶ୍ ମପାଚୁପା କଥା, ସାଧାସିଧା ପୋଷାକ, ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚେହେରା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ । ନିଃସ୍ୱାର୍ଥପର ଭାବନା ଓ ପରୋପକାର ତାଙ୍କର ସହଜାତ ଗୁଣ । ଅନ୍ୟ ପାଇଁ ଜଣେ ଏତେ ମାତ୍ରାରେ ବ୍ୟସ୍ତ ଚିନ୍ତିତ ହୋଇପାରେ ଏକଥା ମୁଁ ସାର୍‌ଙ୍କ ଠାରୁ ଶିକ୍ଷା କଲି । ଏହି ସ୍ୱାର୍ଥାନ୍ୱେଷୀ ସମାଜରେ କେବଳ ସେ କାହିଁକି ତାଙ୍କର ପରିବାର ଏକ ଉଦାହରଣ । ସାର୍‌ଙ୍କର ପରିବାର କହିଲେ ମାତାମ୍, ପୁଅ



Digitized by srujanika@gmail.com

ବବୁଲ୍ ଓ ଝିଅ ବୁଲ୍‌ବୁଲ୍‌କୁ ନେଇ ଛୋଟ ପରିବାର । ସମସ୍ତେ ଯେପରି ସାର୍‌ଙ୍କ ଗୁଣରେ ମହୀୟାନ । ତାଙ୍କର ଅର୍ଦ୍ଧାଙ୍ଗିନୀ, ମାଡାମ୍ ଲକ୍ଷ୍ମୀ ଠାକୁରାଣୀ କହିଲେ ଅତ୍ୟୁକ୍ତି ହେବନାହିଁ । ମାଡାମ୍ କେତେବେଳେ ମତେ ତାଙ୍କ ଝିଅ ଭାବରେ ତ କେତେବେଳେ ସାନ ଭଉଣୀ ଭାବରେ କୋଳେଇ ନିଅନ୍ତି । ଅଜାଡି ଦିଅନ୍ତି ମୋ ଉପରେ ତାଙ୍କ ସ୍ନେହ ଶ୍ରଦ୍ଧା । ସେ ସ୍ନେହ ଶ୍ରଦ୍ଧାର ପଣତକାନିକୁ ମୁଁ କେବେ ଭୁଲି ପାରିବିନି । ତାଙ୍କ ଆତିଥେୟତାରେ ସେ ସମସ୍ତଙ୍କୁ ସନ୍ତୁଷ୍ଟ କରିଦିଅନ୍ତି । ଖୁବ୍ ଶିଘ୍ର ନିଜର ସ୍ନେହ ଶ୍ରଦ୍ଧା ବଳରେ ସମସ୍ତଙ୍କୁ ଆପଣାର କରିନିଅନ୍ତି । ପିଲାମାନେ ମଧ୍ୟ ଅନୁରୂପ ଭାବରେ ନମ୍ର, ସ୍ନେହୀ । ସତେ ଯେପରି ସମସ୍ତେ ଗୋଟିଏ ସୂତ୍ରରେ ବନ୍ଧା । ମତେ ବହୁତ ଶାନ୍ତି ଲାଗେ ସେମାନଙ୍କ ସହିତ ମିଶିବାକୁ ।

ସାର୍‌ଙ୍କ ବିଷୟରେ ଯେତେ କହିଲେ ବି କମ୍ ହେବ । ଅସୁସ୍ଥତା ଓ ସମସ୍ୟା ତାଙ୍କ ସଫଳତାରେ ବାଧକ ସାଜିନି । କର୍ତ୍ତବ୍ୟବୋଧକୁ ହିଁ କର୍ମ କୁହାଯାଏ । ଫଳାଫଳକୁ ଆଶା ନକରି କର୍ମ କରିବା ଉଚିତ୍ ବୋଲି ସେ ସର୍ବଦା ଭାବନ୍ତି । ଗୀତାର ବାଣୀ 'କର୍ମଣ୍ୟେ ବାଧିକାରସ୍ତେ, ମା ଫଳେଷୁ କଦାଚନ' କୁ ସାର୍ ନିଜର ଜୀବନରେ ପ୍ରୟୋଗ କରିଛନ୍ତି । ନିରଳସ ଭାବେ ନିରବ ସାଧକଟେ ସାଜି କର୍ମ କରିଯାଇଛନ୍ତି । ଶୟନ ସପନେ ଜାଗରଣେ ସେ କେବଳ ଶିଶୁ ସାହିତ୍ୟ କଥା ହିଁ ଚିନ୍ତା କରିଛନ୍ତି । ଏଥିରୁ ତାଙ୍କର ଗଭୀର ଶ୍ରଦ୍ଧା, ଆକୁଳତା, ଆନ୍ତରିକତା ସ୍ପଷ୍ଟ ରୂପେ ପ୍ରକାଶିତ ହୁଏ । ତାଙ୍କ ମନକୁ କେବେ ଗର୍ବ, ଅହଙ୍କାର ସ୍ପର୍ଶ କରି ନାହିଁ । ନମ୍ରତା ହିଁ ତାଙ୍କ ସ୍ୱଭାବର ଅନ୍ୟତମ ବୈଶିଷ୍ଟ୍ୟ ।

ଅନେକ ପ୍ରଂଶସା ସମ୍ବର୍ଦ୍ଧନାର ଅଧିକାରୀ ହେଲେ ହେଁ ସେ ସେଥିପ୍ରତି ଲାଳାୟିତ ନୁହଁନ୍ତି । ତାଙ୍କର ଚିନ୍ତାଧାରା ଖୁବ୍ ଉଚ୍ଚକୋଟୀର । ଅଧ୍ୟାପକ ବ୍ୟତୀତ ତାଙ୍କର ମାନବିକତା ହିଁ ତାଙ୍କୁ ସମାଜରେ ଜଣେ ଆଦର୍ଶ ବ୍ୟକ୍ତି ଭାବେ ପରିଚିତ କରିପାରିଛି । ଶିଶୁ ସାହିତ୍ୟର ଉତ୍ତୋରତ୍ତର ଉନ୍ନତି ପାଇଁ ସେ ଆପ୍ରାଣ ଉଦ୍ୟମ ଚଳାଇଛନ୍ତି ।

ସାରସ୍ୱତ ସାଧକ ଡକ୍ଟର ସାହୁ(ସାର୍) ବିଶ୍ୱ ଦରବାରରେ ଓଡ଼ିଆ ଶିଶୁ ସାହିତ୍ୟକୁ ପହଞ୍ଚାଇବା ପାଇଁ ଦୃଢ ସଂକଳ୍ପ ବଦ୍ଧ । ସେ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ (RIOCL)ର ଜଣେ ଅଭିନ୍ନ ଅଙ୍ଗ । ଶିଶୁ ସାହିତ୍ୟର ଗବେଷକ, ଶିଶୁ-ସାହିତ୍ୟିକ, ଶିକ୍ଷକ, ଅଭିଭାବକ, ଶିଶୁମନକୁ ଏକତ୍ର କରି ଶିଶୁ ସାହିତ୍ୟ ସଚେତନତା ବୃଦ୍ଧି କରିବା ତାଙ୍କର ଲକ୍ଷ୍ୟ । ଏ ଦିଗରେ ସେ ଅନେକ ଉଦ୍ୟମ କରିଛନ୍ତି । କାହାକୁ ଅପେକ୍ଷା କରିନାହାନ୍ତି । କର୍ମଶାଳା ଗୁଡିକ ଯେପରି ନିୟମିତ ଚାଲିବ ସେ ଦିଗରେ ସେ ଯତ୍ନବାନ ହୁଅନ୍ତି । ଯେତେ ବ୍ୟସ୍ତ ରହିଥିଲେ ହେଁ ହସିହସି ସମସ୍ତଙ୍କୁ ସ୍ୱାଗତ ଜଣାନ୍ତି ।

ଗବେଷଣା ଓ ଅଧ୍ୟାପନା ମଧ୍ୟରେ ନିଜ କର୍ମ କ୍ଷେତ୍ରକୁ ସେ ସୀମିତ



Digitized by srujanika@gmail.com

ରଖିନାହାନ୍ତି । ସମାଜର, ଜାତିର ତଥା ଏଇ କୋମଳ ମତି ଶିଶୁର ମଙ୍ଗଳ ସାଧନ ପାଇଁ ନିଜ ଲେଖା ମାଧ୍ୟମରେ ନବଦିଗନ୍ତର ସୁମନ ସୃଷ୍ଟି କରିଛନ୍ତି ।

ସାର୍‌ଙ୍କ ଠାରୁ ଯେଉଁ ସତ୍ ପରାମର୍ଶ ଓ ସତ୍ ଉପଦେଶ ପାଇଛି ତାକୁ ଜୀବନରେ କେବେ ଭୁଲି ପାରିବିନାହିଁ । ସେ ଜ୍ଞାନଦୀପ ସାଜି ଯେଉଁ ମାନବିକ ଗୁଣ ମତେ ଶିକ୍ଷା ଦେଇଛନ୍ତି ତାହା ଅମୂଲ୍ୟ । ଜଣେ ସଫଳ ତତ୍ତ୍ୱାବଧାରକ ଭାବେ ମୋ ଗବେଷଣାରେ ମୋତେ ମାର୍ଗଦର୍ଶନ କରାଇଛନ୍ତି । ଯେତେବେଳେ ମୁଁ Ph.D ପାଇଲି ସେ ଖବରଟି ମୋତେ ଯେତିକି ଆନନ୍ଦିତ କରିଥିଲା ତା' ଠାରୁ ଅଧିକ ସାର୍‌ଙ୍କୁ ଆନନ୍ଦିତ କରିଥିଲା । ଜୀବନରେ ଯାହା ମୁଁ ପାଇଛି କେବଳ ତାଙ୍କ ଦ୍ୱାରା ହିଁ ସମ୍ଭବ ହୋଇଛି ବୋଲି ଏକଥା ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରେ । ତାଙ୍କର ଋଣ ମୁଁ ତଥା ମୋ ସ୍ୱାମୀ କଦାପି ଶୁଝି ପାରିବୁନି ଏ ଜନ୍ମରେ । ସାର୍‌ଙ୍କ ବିଷୟରେ ଯେତେ କହିଲେ ବି କମ୍ ହେବ ।

ସାର୍‌ଙ୍କର ମୁଁ ସିଧାସଳଖ ଛାତ୍ରୀ ନଥିଲି । କିନ୍ତୁ ତାଙ୍କ ଠାରୁ ମୁଁ ଯେଉଁ ସାହାଯ୍ୟ ସହଯୋଗ ପାଇଛି, ସେତିକି ସାହାଯ୍ୟ ସହଯୋଗ ମୋ ଗାଇଡ୍‌ଙ୍କ ଠାରୁ ମଧ୍ୟ ପାଇନାହିଁ । ସେଥିପାଇଁ ମୁଁ ସାର୍‌ଙ୍କୁ ମୋ ପୂଜ୍ୟଗୁରୁ ଓ ନିଜକୁ ତାଙ୍କର ଛାତ୍ରୀ ବୋଲି ମାନି ନେଇଛି । ବାଣୀପୁତ୍ର ସାର୍‌ଙ୍କ ଅବସର ଗ୍ରହଣ ମୋ ପାଇଁ ଦୁଃଖଦାୟକ । ମାତ୍ର ମୁଁ ଭାବୁଛି ଏହା ତାଙ୍କ ଜୀବନରେ କିଛି ବି ପ୍ରଭାବ ପକାଇପାରିବନି । ସେ ତାଙ୍କର ବହୁଗୁଣରେ ଶିଶୁ ସାହିତ୍ୟର ଉନ୍ନତି ଓ ପ୍ରସାର ପାଇଁ ନିଜକୁ ନିୟୋଜିତ କରିପାରିବେ ।

ଆଜି ଏତେ ପଥ ଅତିକ୍ରାନ୍ତ କରିବା ପରେ ମୋ ସାର୍ ପୂଜ୍ୟ ଗୁରୁଙ୍କୁ ଶତ ଶତ ପ୍ରଣାମ । ଭଗବାନଙ୍କ ନିକଟରେ ତାଙ୍କର ସୁଦୀର୍ଘ, ନିରାମୟ ଜୀବନ କାମନା କରି ଶିଶୁ ସାହିତ୍ୟର ପ୍ରସାର ଓ ପ୍ରଗତିରେ ତାଙ୍କର ସ୍ୱପ୍ନ ପୂରଣ ହେଉ ବୋଲି ଭଗବାନଙ୍କ ନିକଟରେ ନିବେଦନ କରୁଛି । ପରିଶେଷରେ ଏତିକି କହିବି ଯେ ସେ ହେଉଛନ୍ତି ମୋ ପାଇଁ 'ଚଳନ୍ତି ଠାକୁର' । ମୋର ଏତିକି ପ୍ରାର୍ଥନା ଆପଣଙ୍କର ଆଶୀର୍ବାଦ, ଶୁଭକାମନା ମୋ ଉପରେ ସର୍ବଦା ଅତୁଟ ରହିଥାଉ ।



୧୧୬୫/୯, ରୋଡ ନଂ-୧୦, ଜଗନ୍ନାଥ ନଗର,
ଜିଜିପି କଲୋନୀ, ଭୁବନେଶ୍ୱର-୨୫



Digitized by srujanika@gmail.com

# ବାଣୀପୁତ୍ର ଡକ୍ଟର ବସନ୍ତ କିଶୋର ସାହୁ

**ମନୋଜ ସାହୁ**

ଜଣେ ପ୍ରତିଭାବାନ ଲେଖକ, ସ୍ନେହୀ, ସ୍ପଷ୍ଟବାଦୀ ତଥା ଜଣେ ସୁସଂଗଠକ ଭାବେ ସୁନାମ ଅର୍ଜନ କରିଥିବା ବସନ୍ତ ସାହୁଙ୍କୁ କିଏ ବା ନ ଜାଣେ । ମୋର ମନେ ପଡେ ୧୯୮୮ ମସିହାରୁ ପ୍ରକାଶିତ ମାଲ୍ୟବନ୍ତଶ୍ରୀ ପତ୍ରିକା ପାଇଁ ମୁଁ ଯେତେବେଳେ ଯୋଗାଯୋଗ କରିଥିଲି ସେ ମୋତେ ସଙ୍ଗେ ସଙ୍ଗେ ଲେଖାଟିଏ ପଠାଇ ଦେଇଥିଲେ । ମାଲ୍ୟବନ୍ତଶ୍ରୀର ଏପରି ଗୋଟିଏ ସଂଖ୍ୟା ନାହିଁ ଯେଉଁଥିରେ କି ତାଙ୍କ ଲେଖା ନଥିବ । ତାଙ୍କରି ପ୍ରେରଣା ଓ ପ୍ରଶଂସା ମୋତେ ଏହି କାମକୁ ଅଧିକ ସହଜ କରିପାରିଛି । ସେ ମୋର ଜଣେ ଶୁଭେଚ୍ଛୁ । ୧୯୯୬ ମସିହାରେ ଭୁବନେଶ୍ୱର ପାନ୍ଥନିବାସ ଠାରେ ଯେଉଁ ସପ୍ତାହ ବ୍ୟାପୀ ଏକ ଜାତୀୟ କର୍ମଶାଳା ଅନୁଷ୍ଠିତ ହୋଇଥିଲା ସେଠାରେ ତାଙ୍କ ସହ ଏକତ୍ର ରହିବା, ବୁଲିବା ଓ ସାହିତ୍ୟ-ଆଲୋଚନା କରିବାର ସୁଯୋଗ ମିଳିଥିଲା । ଖାଲି ସେତିକି ନୁହେଁ, ଭୁବନେଶ୍ୱରର ବହୁ ପ୍ରତିଷ୍ଠିତ ଲେଖକମାନଙ୍କୁ ସେ ମୋ ସହିତ ପରିଚୟ କରାଇ ଦେଇଥିଲେ । ଏହା ଆଜି ବି ମନେ ପକାଇଲେ ଆନନ୍ଦ ଲାଗେ ।

ଜୀବନରେ ତିନୋଟି କଥାକୁ ପ୍ରାଧାନ୍ୟ ଦିଆଯାଇଥାଏ । ସେଗୁଡିକ ହେଲା ଭଲ କଥା, ଭଲ ବହି ଓ ଭଲ ମିତ୍ର । ମୁଁ କିନ୍ତୁ ଉକ୍ତ ତିନୋଟି ଯାକ ସାର୍‌ଙ୍କ ଠାରୁ ପାଇପାରିଛି । ତାଙ୍କରି ପ୍ରେରଣାରୁ ୧୯୯୯ ମସିହାରେ 'ମାଲକାନଗିରି ଇତିହାସ' ନାମକ ଏକ ପୁସ୍ତକ ପ୍ରକାଶନ ସମ୍ଭବ ହୋଇପାରିଥିଲା । ଏହାର ଡି.ଟି.ପି କାମ ଠାରୁ ମୁଦ୍ରଣ ପର୍ଯ୍ୟନ୍ତ ତାଙ୍କର ସହଯୋଗରେ ହିଁ କରାଯାଇଥିଲା । ଏପରି କି ନିଜର ସବୁ କାମ ଛାଡ଼ି ମୋ ସହିତ କଟକ ଚାଲିଆସିଥିଲେ ଯେଉଁ ବହିଟି ସେଠାରେ ଥିବା ଅଫ୍‌ସେଟ୍ ପ୍ରେସ୍‌ରେ ମୁଦ୍ରିତ ହୋଇପାରିଥିଲା । ସେ ମୋ ସହିତ ନଥିଲେ ଏତେ କମ୍ ସମୟ ମଧ୍ୟରେ ଏହି କାମ ହୋଇପାରି ନ ଥାନ୍ତା । ଏହି ଅବସରରେ ଯେଉଁ ତିନି ଚାରି ଦିନ ସମୟ ମିଳିଲା ସେ ମୋତେ ତାଙ୍କ ଗାଁ କୁସୁପୁରକୁ ନେଇ ଯାଇଥିଲେ । ସେଠାରେ ରହଣି କାଳରେ ଆଖ ପାଖ ଯେତେ ସବୁ ବୌଦ୍ଧ କୀର୍ତ୍ତି ରହିଛି ଯଥା ରତ୍ନଗିରି, ଉଦୟଗିରି, ଲଳିତଗିରି ଇତ୍ୟାଦି ସେ ସବୁ ବୁଲି ଦେଖିଥିଲି । ଏହା କେବେ ଭୁଲିବାର



Digitized by srujanika@gmail.com

ନୁହେଁ ।

ତାଙ୍କ ଲେଖାରେ ଯେପରି ଯାଦୁ ଥାଏ ସେପରି ମଧ୍ୟ ଥାଏ କଥାରେ । ମୋର ଟିକିଏ ଅଳସୁଆ ବୁଦ୍ଧି ରହିଛି । ମୁଁ ଯେଉଁଠାରେ ଅଟକିଯାଏ ସେଠାରେ ସାର୍‌ଙ୍କ କଥା ମନେ ପକାଇ ପୁଣି ଆଗକୁ ବଢେ । ଆମକୁ ନେଇ ସେ ଯେଉଁ ସମ୍ପର୍କର ବଳୟ ସୃଷ୍ଟି କରିଛନ୍ତି ସେଇ ମମତାର ବନ୍ଧନରେ ଆମେ ସବୁ ଆବଦ୍ଧ ହୋଇ ରହିବାକୁ ଚେଷ୍ଟିତ ହେବୁ ।

ଚିଠି ପତ୍ରର ଉତ୍ତର ସେ ତୁରନ୍ତ ଦିଅନ୍ତି । ସବୁ କଥାରେ କର୍ମ ତତ୍ପର । ଓଡିଶାର ଜଣେ ବିଶିଷ୍ଟ ଶିଶୁ ସାହିତ୍ୟକ ଭାବେ ସୁନାମ ଅର୍ଜନ କରିଛନ୍ତି । ସେ ଅଞ୍ଚଳରେ ଅନୁଷ୍ଠିତ ହେଉଥିବା ସବୁ ସାଂସ୍କୃତିକ କାମ ସୁପରିଚାଳନା ପାଇଁ ସର୍ବଦା ସେ ଆଗେଇ ଆସନ୍ତି । ଶିକ୍ଷା ଓ ସାହିତ୍ୟକୁ ଏକାଠି ନେଇ ଚାଲିବା ତାଙ୍କ ଜୀବନର ବ୍ରତ । ଅଗଣିତ ଛାତ୍ରଛାତ୍ରୀଙ୍କ ଉପରେ ନିଜର ଉତ୍ତମ ବ୍ୟକ୍ତିତ୍ୱର ଛାପ ଛାଡି ଯାଇଛନ୍ତି । ଜଣେ ରାଜା ସେ କେବେ ହେଲେ ଚାହେଁ ନାହିଁ ଯେ ତା'ପରି ଆଉ କେହି ଜଣେ ରାଜା ହେଉ । ଜଣେ ଶିକ୍ଷକ ଭାବେ କିନ୍ତୁ ସାର୍ ଚାହୁଁଥିଲେ ତାଙ୍କ ଛାତ୍ରମାନେ ତାଙ୍କ ଠାରୁ ବି ଆଗକୁ ବଢି ଯାଆନ୍ତୁ । ଫଳସ୍ୱରୂପ ଅନେକ ଛାତ୍ର ସାର୍‌ଙ୍କ ଅଧିନରେ ଗବେଷଣା କରି ଡିଗ୍ରୀ ଲାଭ କରିଛନ୍ତି । ସେ ହେଉଛନ୍ତି ବାଣୀପୁତ୍ର । କାରଣ ତାଙ୍କର ଆଶୀର୍ବାଦ ବିନା ଏତେ ସବୁ କାମ କରି ହେବ ନାହିଁ ।

ଏଣିକି ଚାକିରିରୁ ଅବସର ପରେ ସେ ସାହିତ୍ୟ ପାଇଁ ଅନେକ ସମୟ ଦେଇପାରିବେ । ନିଜର ଅପ୍ରକାଶିତ ଲେଖାକୁ ପ୍ରକାଶନ କରିପାରିବେ । ଯାହା ଦ୍ୱାରା ଓଡିଆ ସାହିତ୍ୟ ଅଧିକ ରୁଚିମନ୍ତ ତଥା ପ୍ରଚାର ଓ ପ୍ରସାର ସମ୍ଭବପର ହୋଇପାରିବ । ମୁଁ ବ୍ୟକ୍ତିଗତ ଭାବେ ସାରଙ୍କ ପାଖରେ କୃତଜ୍ଞ । ମୁଁ ଖାଲି ନୁହେଁ, ଅଗଣିତ ସାହିତ୍ୟିକ ଓ ସାହିତ୍ୟ ପ୍ରେମୀ ସାର୍‌ଙ୍କ ପ୍ରତି ଶ୍ରଦ୍ଧା ବ୍ୟକ୍ତ କରନ୍ତି । ଅଗଣିତ ପାଠକ ପ୍ରତିଦିନ ଜଣାନ୍ତି ସାଧୁବାଦ ଓ ଶୁଭେଚ୍ଛା । ସାର୍‌ଙ୍କ ଅବଶିଷ୍ଟ ଜୀବନ ଏହିଭଳି ମହତ୍ କାମରେ ନିୟୋଜିତ ରହୁ ଏହି କାମନା କରି ରହୁଛି ।



ଗାୟତ୍ରୀ କୁଟୀର
ମାଲକାନଗିରି



Digitized by srujanika@gmail.com

# ମୋ ଗବେଷଣାର ମାର୍ଗଦର୍ଶକ : ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ଜ୍ୟୋତିର୍ମୟୀ ରାଜଗୁରୁ

" ଗୁରୁ ବ୍ରହ୍ମା ଗୁରୁ ର୍ବିଷ୍ଣୁ ଗୁରୁ ଦେବ ମହେଶ୍ୱର
ଗୁରୁ ସାକ୍ଷାତ୍ ପରମ୍‌ବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।"

ଏହି ପଦଟିର ପ୍ରକୃତ ଅର୍ଥ ମୁଁ ମର୍ମେ ମର୍ମେ ଅନୁଭବ କରିଥିଲି, ଯେଉଁ ଦିନ ବସନ୍ତ ସାର୍‌ଙ୍କୁ ଅତି ନିକଟରୁ ଚିହ୍ନିବାକୁ ପାଇଲି । ସାର୍‌ଙ୍କ ସହିତ କେବେ କେଉଁଠାରେ ଦେଖା ହୋଇଥିଲା ବା ପରିଚୟ ହୋଇଥିଲା ମୋର ଠିକ୍ ମନେ ନାହିଁ । ସୁନାବେଡା ଏରୋନଟିକସ୍ କଲେଜରେ +୨, +୩ ଶ୍ରେଣୀରେ ପଢିବା ସମୟରେ ସାର୍ ଆମକୁ ଓଡିଆ ପଢାଉ ଥିଲେ । ସେହି ସମୟରୁ ମୁଁ ସାର୍‌ଙ୍କ ସଂସ୍ପର୍ଶରେ ଆସିଥିଲି । ଭାରି ଶାନ୍ତ ଶିଷ୍ଟ ଏବଂ ନିଆରା ମଣିଷ ଜଣେ । କଥାବାର୍ତ୍ତା ଖୁବ୍ କମ୍ । କେବଳ ପାଠ ଉପରେ ହିଁ ଗୁରୁତ୍ୱ ଦିଅନ୍ତି । ଭାଲଲାଗେ ସାର୍‌ଙ୍କ ପଢେଇବା ଶୈଳୀ ।

ତା'ପରେ ମୁଁ କୋରାପୁଟ ଡି.ଏ.ଭି କଲେଜରେ ଏମ୍.ଏ (ଓଡିଆ) ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ମୋର ସ୍ପେସାଲ୍ ପେପର ଥିଲା ଲୋକ ସାହିତ୍ୟ । ଏହି ସମୟରେ ପଢାପଢି ପାଇଁ ମୋତେ ଲୋକ ସାହିତ୍ୟ ସଂପର୍କିତ ପୁସ୍ତକର ଆବଶ୍ୟକତା ପଡିଲା । ସେଥିପାଇଁ ପୂର୍ବରୁ ପରିଚିତ ଥିବା ଡ.ବସନ୍ତ ସାହୁ ସାର୍‌ଙ୍କ ଘରକୁ ଯାଇଥିଲି ସାହାଯ୍ୟ ମାଗିବା ପାଇଁ । ବିନା ଦ୍ୱିଧାରେ ସାର୍ ରାଜି ହୋଇଥିଲେ । ସାର୍‌ଙ୍କ ଘର ଗୋଟିଏ ସୁନ୍ଦର ପାଠାଗାର କହିଲେ ଚଳେ । ସେହିଠାରେ ସମସ୍ତ ପ୍ରକାର ଛୋଟ ବଡ଼ ପୁସ୍ତକ ରହିଛି । ଧୀରେ ଧୀରେ ମୋର ସମସ୍ତ ପୁସ୍ତକର ଆବଶ୍ୟକତା ପାଇଁ ସାର୍‌ଙ୍କ ଘରକୁ ଯିବା ଆରମ୍ଭ କରିଦେଇଥିଲି । ସତେ ସେମିତି ସାର୍‌ଙ୍କ ପାଠାଗାରରେ ଥିବା ସମସ୍ତ ପୁସ୍ତକ ମୋର । ସାର୍ ମଧ୍ୟ ବିନା ଦ୍ୱିଧାରେ ମୋତେ ପୁସ୍ତକ ଯୋଗାଇ ଦିଅନ୍ତି । ଠିକ୍ ସମୟରେ ମୁଁ ସେ ପୁସ୍ତକ ସାର୍‌ଙ୍କୁ ଫେରାଇ ଦିଏ । ଏହି ସମୟ ମଧ୍ୟରେ ସାର୍ ଏବଂ ତାଙ୍କ ପରିବାର ସହିତ ମୋର ପରିଚୟ ଖୁବ୍ ନିବିଡ ହୋଇ ସାରିଥିଲା ।

ଏମ୍.ଏ ପାସ୍ କରିସାରିବା ପରେ ଗବେଷଣା କରିବା ପାଇଁ ମୋ ମନରେ ସତଃ ଆଗ୍ରହ ସୃଷ୍ଟି ହେଲା । ତେଣୁ ଏ ସଂପର୍କରେ ମୁଁ ସାର୍‌ଙ୍କ ପାରମର୍ଶ ଲୋଡିଲି । ପୂର୍ବରୁ ମୁଁ ଜାଣିଥିଲି ସାର୍ ଶିଶୁ ସାହିତ୍ୟର ଗବେଷକ ଏବଂ ଜଣେ ବିଶିଷ୍ଟ ଶିଶୁ



Digitized by srujanika@gmail.com

ସାହିତ୍ୟିକ । ସାର୍ ମୋତେ ଶିଶୁ ସାହିତ୍ୟର ଯେ କୌଣସି ଦିଗ ଉପରେ ଗବେଷଣା କରିବା ପାଇଁ ପରାମର୍ଶ ଦେଲେ । ଶିଶୁ ସାହିତ୍ୟ ଉପରେ ମୋର ଧାରଣା ସ୍ପଷ୍ଟ ନଥିବାରୁ ମୁଁ ସାର୍‌ଙ୍କ ଠାରୁ କେତେଗୁଡିଏ ଆଲୋଚନା ପୁସ୍ତକ ଆଣି ପଢିଲି । ଏହି ସମୟରେ ସାର୍ ମୋତେ ବିଭିନ୍ନ ମେଗାଜିନ୍ ମାନଙ୍କରେ ଶିଶୁ ସାହିତ୍ୟ ସମ୍ବନ୍ଧୀୟ ଲେଖା ଲେଖିବା ପାଇଁ ପରାମର୍ଶ ଦେଲେ । ଯାହା ମୋ ମନରେ ଶିଶୁ ସାହିତ୍ୟ ସଂପର୍କରେ ଏକ ସ୍ପଷ୍ଟ ଧାରଣା ସୃଷ୍ଟି କରିବାରେ ସହାୟକ ହୋଇ ପାରିଲା । ପିଲାଦିନେ ଦ୍ୱିତୀୟ ଶ୍ରେଣୀ ପୁସ୍ତକରେ ପଢିଥିବା 'ଆମ ଘର' କବିତାଟିର କବି ନନ୍ଦକିଶୋର ସାମଲଙ୍କ କୃତି ଉପରେ ଗବେଷଣା କରିବା ପାଇଁ ସ୍ଥିର କଲି । ଡ.ବସନ୍ତ କିଶୋର ସାହୁ ଶିଶୁ ସାହିତ୍ୟର ଗବେଷକ ହୋଇଥିବାରୁ ଗବେଷଣା ସମୟରେ ସାର୍‌ଙ୍କୁ ମୋର ମାର୍ଗଦର୍ଶକ ହେବା ପାଇଁ ଅନୁରୋଧ କଲି । ସାର ମଧ୍ୟ ବିନା କୁଣ୍ଠାରେ ଏ ପ୍ରସ୍ତାବରେ ତତ୍ତ୍ୱାବଧାରକ ହେବା ପାଇଁ ସ୍ୱୀକୃତି ପ୍ରଦାନ କଲେ ।

ଗବେଷଣା କରିବା ପାଇଁ ସ୍ଥିର କରିଦେଲି ସତ କିନ୍ତୁ ଭାରି ଭୟ ଲାଗୁଥାଏ । ସବୁବେଳେ ମନରେ ପ୍ରଶ୍ନ ଆସୁଥାଏ ମୁଁ କଣ କରିପାରିବି ? ଏଥିପାଇଁ ଅଧ୍ୟବସାୟ, ନିଷ୍ଠା ସବୁ ଦରକାର । ସାର୍‌ଙ୍କ ନିକଟରେ ମନକଥା ପ୍ରକାଶ କଲି । ସାର୍ କହିଲେ, ଏହା କଣ ଯୁଦ୍ଧ ହୋଇଛି ଯେ ତୁ ପାରିବୁନି । ମନରେ ନିଷ୍ଠା, ଏକାଗ୍ରତା ଥିଲେ ସବୁ ସମ୍ଭବ ହୋଇପାରେ । ସାର୍‌ଙ୍କ ଏହି ପଦକ କଥା ମୋ ମନକୁ ପାଇଲା । ସେହି ଦିନ ଠାରୁ ମୁଁ ଆଗେଇ ଚାଲିଲି ଗବେଷଣା କାମରେ ।

ପ୍ରଥମେ ଗବେଷଣା ପାଇଁ ବିଷୟ ନିର୍ବାଚନ ହେଲା । ତା'ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଗବେଷଣା ପାଇଁ ନାମ ରେଜିଷ୍ଟ୍ରେସନ ହେଲା । ଏହି ସବୁ ବିଷୟରେ ମୋର ବା ମୋ ପରିବାର ବର୍ଗଙ୍କ ଅଭିଜ୍ଞତା ନଥିବାରୁ ମୁଁ ଟିକେ ଟିକେ କଥାରେ ସାର୍‌ଙ୍କ ସାହାଯ୍ୟ ଲୋଡୁଥିଲି । ସାର୍ ବିନା ଦ୍ୱିଧାରେ ମୋତେ ସାହାଯ୍ୟ କରିଥିଲେ ।

ସ୍କୁଲ, କଲେଜରେ ପଢିବା ସମୟରେ ଛୋଟ ଛୋଟ କବିତା, ପ୍ରବନ୍ଧ ଲେଖୁଥିବା ହାତ ପାଇଁ ଗବେଷଣା ପୁସ୍ତକ ଲେଖିବା ଏତେ ସହଜ ନଥିଲା । ଗବେଷଣା ନିବନ୍ଧ ଲେଖା ଆରମ୍ଭ ହେବା ପରେ ପ୍ରତିଦିନ କିଛି ଟିକିଏ ଲେଖି ଦେଇ ସନ୍ଧ୍ୟାରେ ଦଉଡି ଯାଏ ସାର୍‌ଙ୍କ ଘରକୁ । ଲେଖାଟିକୁ ପଢି ସାର୍ ଟିକିଏ ହସନ୍ତି, କହନ୍ତି ତୁ ଗବେଷଣା ନିବନ୍ଧ ଲେଖିବାକୁ ଯାଉଛୁ । ଲେଖାର ଶୈଳୀ ମାର୍ଜିତ, ସ୍ପଷ୍ଟ, ସୁନ୍ଦର ହେବା ଆବଶ୍ୟକ । ଲେଖିବାର ଶୈଳୀ ମୋତେ ବୁଝାଇ ଦିଅନ୍ତି । ମୁଁ ପୁଣି କିଛି ଲେଖି ସାର୍‌ଙ୍କ ପାଖକୁ ଯାଏ କରେକ୍‌ସନ ପାଇଁ । ଲେଖାରେ ଭୁଲ୍‌ଭାଲ ରହିଥିଲେ ସାର୍ ମୋତେ ସବୁ ବୁଝାଇ କହିବା ସହିତ ସଂଶୋଧନ କରି ଦିଅନ୍ତି । ସାର୍‌ଙ୍କ ନିକଟରେ ରାଗ, ବିରକ୍ତ ଭାବ ମୁଁ କେବେ ଦେଖିନାହିଁ ।

ଏମିତି ଆରମ୍ଭ ହେଲା ମୋର ନିବନ୍ଧ ଲେଖା । ମନେ ପଡିଲେ ସବୁ ସପ୍ନ



Digitized by srujanika@gmail.com

ପରି ଲାଗେ । କେତେ ଧାଁ ଦଉଡ, କେତେ ପରିଶ୍ରମ, କେତେ ଚେଷ୍ଟା । ଗବେଷଣା ନିବନ୍ଧ ପରିକଳ୍ପନାରେ, ଆରମ୍ଭ ଠାରୁ ଶେଷ ପର୍ଯ୍ୟନ୍ତ ପ୍ରତି ପଦକ୍ଷେପରେ ସାର୍ ମୋର ସହାୟକ ହୋଇଛନ୍ତି । ନିଜର ମୂଲ୍ୟବାନ୍ ପରାମର୍ଶ ଏବଂ ସମୟ ଦୀର୍ଘଦିନ ଧରି ପ୍ରଦାନ କରି ମୋତେ ସଫଳତା ଦିଗକୁ ଟାଣି ନେଇଛନ୍ତି । ସେଥିପାଇଁ ମୁଁ ତାଙ୍କ ନିକଟରେ ଚିର ଦିନ ଋଣୀ ହୋଇ ରହିବି । ଏହି ଅବସରରେ ଶ୍ରୀମତୀ ସାହୁ ଏବଂ ତାଙ୍କ ପିଲାମାନଙ୍କ ଆନ୍ତରିକତା ଓ ସହାନୁଭୂତି ମଧ୍ୟ ଭୁଲି ହେବ ନାହିଁ ।

ଗବେଷଣା ନିବନ୍ଧ ରଚନା ସମୟରେ ଗବେଷଣା ସମ୍ବନ୍ଧୀୟ ତଥ୍ୟ ବିଭିନ୍ନ ଶିଶୁ ସାହିତ୍ୟିକଙ୍କ ସହିତ ଯୋଗାଯୋଗ ରକ୍ଷା କରିବା ପାଇଁ ସେମାନଙ୍କ ଠିକଣା ଯୋଗାଇ ଦେଇ ମୋ ଗବେଷଣା ପଥକୁ ସରଳ ଓ ସହଜ କରିଦେଇଥିଲେ । ଏହା ବ୍ୟତୀତ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ସହିତ ଫୋନ ମାଧ୍ୟମରେ କଥାବାର୍ତ୍ତା ଏବଂ ନନ୍ଦକିଶୋରଙ୍କ ପ୍ରକାଶିତ ପୁସ୍ତକ, ପାଣ୍ଡୁଲିପି, ଫଟୋଚିତ୍ର ଆଦି ସଂଗ୍ରହ କରିବାରେ ମଧ୍ୟ ମୋତେ ଯଥେଷ୍ଟ ସାହାଯ୍ୟ କରିଥିଲେ । ବାସ୍ତବରେ ସାର୍ ଜଣେ ସଫଳ ମାର୍ଗଦର୍ଶକ । ତାଙ୍କ ସାହାଯ୍ୟ ବିନା ମୋ ଗବେଷଣା ସଂପୂର୍ଣ୍ଣ ହୋଇ ପାରି ନଥାନ୍ତା । ତେଣୁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ ।

ଏମିତି ଧାଁ ଦଉଡ ଭିତରେ କେତେବେଳେ ନିବନ୍ଧ କାର୍ଯ୍ୟ ଶେଷ ହୋଇଗଲା । ବ୍ରହ୍ମପୁର ୟୁନିଭରସିଟିରୁ ମୋତେ ଡକ୍ଟରେଟ୍ ଉପାଧି ମିଳିଲା । ଏଥିରେ ସାର ବହୁତ ଖୁସି ହୋଇଥିଲେ । ପ୍ରଥମେ ସାର୍ ମୋତେ ଡକ୍ଟର ଜ୍ୟୋତିର୍ମୟୀ କହି ସମ୍ବୋଧନ କରି ଖବରଟି ଶୁଣାଇଥିଲେ । ସେହିଦିନ ମୋର ଖୁସିର ସୀମା ନଥିଲା । ଏହି ସବୁ ସମ୍ଭବ ହୋଇଥିଲା କେବଳ ସାର୍‌ଙ୍କ ସହଯୋଗ ଓ ଆଶୀର୍ବାଦ ଯୋଗୁଁ । ଏଭଳି ଜଣେ ନିଷ୍କପଟ ବ୍ୟକ୍ତିତ୍ୱ ନିକଟରେ ମୁଁ ସଦା ଋଣୀ ହୋଇ ରହିବି ।

ମୋ ପରି ଜଣେ ସାଧାରଣ ମଣିଷକୁ ସମାଜରେ ଏକ ଭିନ୍ନ ପରିଚୟ ଦେବାରେ ବସନ୍ତ ସାର୍‌ଙ୍କ ଅବଦାନ ମୁଁ କେବେ ଭୁଲିପାରିବି ନାହିଁ । ସାର୍‌ଙ୍କ ଆଶୀର୍ବାଦରୁ ମୁଁ ଆଜି ଏତେ ବଡ ପଦବୀର ଅଧିକାରିଣୀ ହୋଇ ପାରିଲି । ତେଣୁ ତାଙ୍କ ନିକଟରେ ମୁଁ ସଦା ନତ ମସ୍ତକ । ଜୀବନର ୫୭ଟି ବସନ୍ତ ଅତିକ୍ରମ କରିଥିବା ଆମ ବସନ୍ତ ସାର ଆହୁରି ଅଧିକ ଶିଶୁ ସାହିତ୍ୟ ଗବେଷକ ସୃଷ୍ଟି କରନ୍ତୁ, ତାଙ୍କ ଲେଖନୀ ସଦା ଚଳ ଚଞ୍ଚଳ, ଗତିଶୀଳ ରହୁ ଏହା ହିଁ ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।



ବିଶାଖାପାଟଣା, ଆନ୍ଧ୍ରପ୍ରଦେଶ



Digitized by srujanika@gmail.com

# ଶୁଭାଶିଷ ଝରିପଡୁ ବସନ୍ତ ମଥାରେ

**କୃଷ୍ଣଚନ୍ଦ୍ର ସାହୁ**

ଏମନ୍ତ ଏକ ଉର୍ବର ମାଟିରେ ବସନ୍ତ କିଶୋରଙ୍କ ଜନ୍ମ, ଯେଉଁଠି ବିରୂପା ନଈ, ବୃକ୍ଷରାଜି ବିମଣ୍ଡିତ ସୁଉଚ୍ଚ ପାହାଡ଼, ସବୁଜ ଧାନକ୍ଷେତ, ପଦ୍ମପୋଖରୀ, ତୋଟାମାଳ, କିଆଗୋହିରୀ-ତା ସହିତ ଧାଡ଼ି ଧାଡ଼ି ଚାଳଘର, ଭାଗବତ ଟୁଙ୍ଗୀ, କାର୍ତ୍ତିକ ପୂର୍ଣ୍ଣମୀର ଡଙ୍ଗା ଭସା, ବାଲିଯାତ୍ରାର ବାଦିପାଲା, ଚୈତ୍ର ମାସର ଘୋଡ଼ା ନାଚ, ରଢ଼ଦୋଳି ଗୀତ, ଗଜଲକ୍ଷ୍ମୀ ପୂଜା, ଗଣକବି ବୈଷ୍ଣବ ପାଣିଙ୍କ ନାଟକର ଗୀତାଭିନୟ ଓ କୁମାର ଡ୍ରାମାଟିକ୍ କ୍ଲବର ଡ୍ରାମା ଓ ବାରମାସରେ ତେର ପର୍ବର ରସାଳ ଅନୁଭୂତିରେ ବିତିଥିଲା ତାର ପିଲାଦିନ । ଏହି ସାଂସ୍କୃତିକ ପରିବେଶରେ ପିଲାବେଳୁ ପ୍ରଭାବିତ ହୋଇଥିଲା ବସନ୍ତ ।

ମାଟି ମନସ୍କତାର ବିଭୋର ପଣରେ ଅଙ୍କୁରିତ ହୋଇ ଉଠିଥିବା କବିତାର ଛନ୍ଦ ବସନ୍ତଙ୍କ ମନରେ ବସା ବାନ୍ଧିଥିଲା ଶୈଶବରୁ । ତାର ସଠିକ୍ ରୂପାୟନ ଘଟିଲା କୋରାପୁଟର ଶ୍ୟାମଳ କ୍ଷେତ୍ରରେ । ଶ୍ରଦ୍ଧେୟ ବସନ୍ତ ଏକାଧାରରେ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ ତଥା ସାହିତ୍ୟର ସୁସଂଗଠକ ଏ କଥା ଜାଣିଲା ପରେ ଗର୍ବରେ ଛାତି ଫୁଲି ଉଠେ । ମୋ ଗାଁର ଲାଜୁକୁଳା ପୁଅ; ଓଡ଼ିଶାର ସାରସ୍ୱତ ଜଗତର ସୁପରିଚିତ ସାହିତ୍ୟିକ- ଏ କଥା ଉପଲବ୍ଧି କଲି ତାଙ୍କର କେତୋଟି ପୁସ୍ତକ ପଢ଼ିଲା ପରେ । ମୋ ଗାଁର ପଲ୍ଲୀକବି ନନ୍ଦକିଶୋର ବଳ ଓ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ ଶୂନ୍ୟ ସ୍ଥାନରେ ବସନ୍ତ ଦଣ୍ଡାୟମାନ ଏତିକି ଉପଲବ୍ଧି କରି ମୁଁ ବେଶ୍ ଆନନ୍ଦିତ । ସେମାନଙ୍କ ଉତ୍ତର ଦାୟଦ ବୋଲି ଭାବିବାରେ ମୋର କୌଣସି କୁଣ୍ଠା ନାହିଁ ।

ମାଆ ସରସ୍ୱତୀଙ୍କ ଶୁଭାଶିଷ ଝରୁଥାଉ ବସନ୍ତ ମଥାରେ, ଏହାହିଁ କାମନା ।



କୁସୁପୁର, କଟକ



Digitized by srujanika@gmail.com

# ସମ୍ପର୍କ ଡୋରିରେ ବସନ୍ତ କିଶୋର

**ବାବାଜୀ ଚରଣ ଜେନା**

କୁସୁପୁରରୁ ସୁନାବେଡ଼ା । ଦୀର୍ଘ ପଥ । ଉଠାଣି ଗଡାଣି-ଅଙ୍କା ବଙ୍କା ଘାଟି ରାସ୍ତାକୁ ଖାତିରି ନକରି ସେ ଜୀବିକା ନିର୍ବାହ ପାଇଁ ସୁନାବେଡା ଆସିଥିଲେ । ପଛରେ ଛାଡ଼ି ଆସିଥିଲେ ପ୍ରିୟ ଜନ୍ମମାଟି । ବନ୍ଧୁ ପରିଜନ ଓ ନିଜ ସାରସ୍ୱତ ସନ୍ତାନ 'ବଗଲାବଗୁଲୀ'କୁ । ସୁନାବେଡ଼ାର ପ୍ରକୃତି ତାଙ୍କୁ ଆତ୍ମବିଭୋର କଲା । ଯୋଗ ଦେଲେ ଏରୋନଟିକ୍ସ କଲେଜରେ । ନୂଆ ଜାଗା, ନୂଆ ମୁହଁ । ପରିବେଶ ଭିନ୍ନ । କ୍ୱାଟରରୁ କଲେଜ ଓ କଲେଜରୁ କ୍ୱାଟର । ରୁଟିନ୍ ବନ୍ଧା ଜୀବନ । ଏକଲାପଣ ଓ ଅଣନିଶ୍ୱାସୀ ଜୀବନ । କୌଣସି ସାରସ୍ୱତ ସ୍ରଷ୍ଟା ଏଥିରେ ବାନ୍ଧି ହୋଇ ରହିପାରେ ନାହିଁ । ମନ ଆନ୍ଦୋଳିତ ହେଲା । କିଛି କରିବା ପାଇଁ ଚିନ୍ତା କଲେ । ସେଇଆ ବୋଧେ ଥିଲା ଈଶ୍ୱରଙ୍କ ଇଚ୍ଛା । ସମଧର୍ମା ବନ୍ଧୁଙ୍କୁ ନେଇ ଗଢ଼ିଲେ 'ବନଫୁଲ ସାହିତ୍ୟ ପରିଷଦ' । ଖୋଜି ଲୋଡି ଏକତ୍ର କଲେ ଅବିଭକ୍ତ କୋରାପୁଟ ଜିଲ୍ଲାର ସାହିତ୍ୟିକଙ୍କୁ । ୧୯୮୬ରେ ଆରମ୍ଭ କଲେ ପ୍ରାକ୍ ବିଷୁବ ମିଳନ । ନୂତନ ଚିନ୍ତାଧାରା । ସୁଦୂର ପ୍ରସାରୀ ପରିକଳ୍ପନା । ସମସ୍ତଙ୍କୁ ଆକର୍ଷିତ ଓ ପ୍ରଭାବିତ କଲା । ମନେପଡ଼େ ସୁନାବେଡ଼ା-୧ସ୍ଥ ଆମ୍ବ ତୋଟାର ସାହିତ୍ୟ ଆସର । କାବ୍ୟିକ ପରିବେଶ । ମନ ଓ ହୃଦୟରେ ସୃଷ୍ଟି କଲା ଆଲୋଡ଼ନ । ଦୀର୍ଘ ୨୬ ବର୍ଷ ପରେ ବି ସେଇ ପରିବେଶ ଆଜି ମୋ ମନରେ ସ୍ମୃତି ହୋଇ ରହିଛି ।

ସେଇଠି ତାଙ୍କ ସହିତ ପ୍ରଥମ ପରିଚୟ । କବି ଗଣପତି ମଲ୍ଲିକଙ୍କ ସହିତ ଯାଇଥାଏ ସେଠାକୁ । ହସିହସି ଆମକୁ ସ୍ୱାଗତ କଲେ । ଗଣପତି ଭାଇ ପରିଚୟ କରାଇ ଦେଲେ । ସେଇଠି ଜାଣିଲି ସେ ହେଉଛନ୍ତି ବନଫୁଲର ସଂପାଦକ ବସନ୍ତ କିଶୋର ସାହୁ । ତାଙ୍କ କାର୍ଯ୍ୟଶୈଳୀ ମୋତେ ପ୍ରଭାବିତ କଲା । ସାହିତ୍ୟ ପ୍ରତି ଯେମିତି ଉତ୍ସର୍ଗୀକୃତ ଏକ ବ୍ୟକ୍ତିତ୍ୱ । ସମସ୍ତଙ୍କୁ ଆଦରରେ ସ୍ୱାଗତ କରୁଥିଲେ, ସଭା ପରିଚାଳନା କରୁଥିଲେ ପୁଣି ପଂକ୍ତି ଭୋଜନରେ ସମସ୍ତଙ୍କ କଥା ବୁଝୁ ଥିଲେ । କର୍ମଯୋଗୀ ପରି ସେ ସବୁଠି ଥିଲେ । ସବୁଠି ତାଙ୍କ ଉପସ୍ଥିତି ପରିବେଶକୁ କର୍ମଚଞ୍ଚଳ କରୁଥିଲା ।

ମୋର ସେହି ପରିଚୟ ପରବର୍ତ୍ତୀ କାଳରେ ଆତ୍ମୀୟତାରେ ବଦଳି ଗଲା । ଆଜି ବି ତାହା ଅତୁଟ ରହିଛି । ରହିବ ମଧ ଶେଷ ପର୍ଯ୍ୟନ୍ତ । କାରଣ ଏହି ସମ୍ପର୍କ



Digitized by srujanika@gmail.com

ନିଃସ୍ୱାର୍ଥପର ସାରସ୍ୱତ ସମ୍ପର୍କ । ବନଫୁଲ ସମଗ୍ର ରାଜ୍ୟରେ ଆଲୋଡନ ସୃଷ୍ଟି କଲା । ତାର ପ୍ରଶଂସାରେ କେତେକ ଅସହିଷ୍ଣୁ ହେଲେ । ତାଙ୍କ ବିରୁଦ୍ଧରେ ଷଡଯନ୍ତ୍ର ରଚନା କଲେ । ୧୯୯୬ ଯାଏ ଅନୁଷ୍ଠାନକୁ ଚଳାଇଲେ । ନିଜ ସ୍ୱାଭିମାନ ଓ ମାନସମ୍ମାନ ପାଇଁ ସଂଗଠନରୁ ଦୂରେଇ ଗଲେ । ବନଫୁଲ ନିଷ୍କ୍ରିୟ ହେଲେ ମଧ୍ୟ ତାଙ୍କ ପ୍ରତିଷ୍ଠା କମିଲା ନାହିଁ । ନିଜର ସୃଷ୍ଟି ଦ୍ୱାରା ସେ ଅଗଣିତ ପାଠକଙ୍କ ହୃଦୟ ଜୟ କଲେ । ପରବର୍ତ୍ତୀ କାଳରେ ଏଠି ଗଢ଼ି ଉଠିଲା 'ଓଡ଼ିଆ ଲେଖକ ପାଠକ ସମ୍ମେଳନ'। ସେ ତାର ସମ୍ପାଦକ ଓ କାର୍ଯ୍ୟକାରୀ ସଭାପତି ଦାୟିତ୍ୱ ତୁଲାଇଲେ । ଲେଖକ ଓ ପାଠକଙ୍କୁ ଏକତ୍ର କଲେ । ଅନୁଷ୍ଠାନକୁ ଲୋକପ୍ରିୟ କରାଇଲେ । ଓଡ଼ିଆ ଭାଷାର ପ୍ରତିଷ୍ଠିତ ସାରସ୍ୱତ ସାଧକଙ୍କୁ ଆଣି ଉପାନ୍ତ ଅଞ୍ଚଳର ସ୍ରଷ୍ଟାଙ୍କ ସହିତ ପରିଚିତ କରାଇଲେ । ଉଭୟଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନ କଲେ । ସମଗ୍ର ଓଡ଼ିଶାକୁ ଗୋଟିଏ ସାରସ୍ୱତ ସୂତା ଖିଅରେ ବାନ୍ଧିଲେ । ତାଙ୍କ ସମ୍ପାଦନା, ସହଯୋଗ ଓ ପ୍ରକାଶନରେ ବହୁ ଉପାଦେୟ ପୁସ୍ତକ ଏ ଅଞ୍ଚଳରେ ପ୍ରକାଶ ପାଇଲା ।

ଉତ୍କଳ ସାଂସ୍କୃତିକ ପରିଷଦର ସମ୍ପାଦନା ଦାୟିତ୍ୱ ନେଇ ସେ ପୁରୁଣା ଧାରା ଭାଙ୍ଗି ନୂଆ ଧାରା ସୃଷ୍ଟି କଲେ । ଓଡ଼ିଶାର ବରପୁତ୍ରମାନଙ୍କ ବିଶେଷାଙ୍କ ସମ୍ପାଦନା କଲେ । ପ୍ରଥମ ବର୍ଷ ମୁଁ ପରିଷଦର ସାହିତ୍ୟ ବିଭାଗର ସମ୍ପାଦକ ଥିଲାବେଳେ ଆମେ ତାଙ୍କ ପ୍ରସ୍ତାବକୁ ଗ୍ରହଣ କଲୁ । ପ୍ରଥମେ 'କୃଷ୍ଣଚନ୍ଦ୍ର ଗଜପତି ବିଶେଷାଙ୍କ' ପ୍ରକାଶ ପାଇଲା । ସେହିବର୍ଷ ଠାରୁ ତାଙ୍କ ସମ୍ପାଦନାରେ 'ଉତ୍କଳ ଗୌରବ ମଧୁସୂଦନ, 'ବ୍ୟାସକବି ଫକୀର ମୋହନ', 'ଉତ୍କଳମଣି ଗୋପବନ୍ଧୁ', 'ସ୍ୱଭାବକବି ଗଙ୍ଗାଧର' ବିଶେଷାଙ୍କ ପ୍ରକାଶ ପାଇ ସାହିତ୍ୟିକ, ପାଠକ ଓ ଗବେଷକଙ୍କ ଦ୍ୱାରା ଆଦୃତ ହୋଇଛି । ୨୦୧୨ ସ୍ମରଣିକାକୁ'ସୁନାବେଡ଼ା ବିଶେଷାଙ୍କ' ରୂପେ ସମ୍ପାଦନା କରି ସେ ସୁନାବେଡ଼ାକୁ ଓଡ଼ିଶା ତଥା ଭାରତ ବର୍ଷରେ ପରିଚିତ କରାଇ ଏକ ଇତିହାସ ସୃଷ୍ଟି କରିଛନ୍ତି ।

୨୦୦୬ରୁ ଏ ପର୍ଯ୍ୟନ୍ତ ଶ୍ରୀଶ୍ରୀ ଜଗନ୍ନାଥ ସେବାସଂସ୍ଥା, ସୁନାବେଡ଼ାର ମୁଖପତ୍ର 'ସ୍ୱର୍ଣ୍ଣକ୍ଷେତ୍ର' ତାଙ୍କ ସମ୍ପାଦନାରେ ପ୍ରକାଶ ପାଇ ଜଗନ୍ନାଥ ସଂସ୍କୃତିର ପ୍ରଚାର ପ୍ରସାର କରିଆସୁଛି । ପତ୍ରିକାଟି ଉଚ୍ଚକୋଟିର ଓ ଗବେଷଣାଧର୍ମୀ । ତାଙ୍କ ପାଇଁ ସୁନାବେଡ଼ା ଜଗନ୍ନାଥ ମନ୍ଦିରର ସୌରଭ ଆଜି ସମଗ୍ର ଓଡ଼ିଶା, ଭାରତ ତଥା ସୁଦୂର ଆମେରିକାରେ ପହଞ୍ଚି ପାରିଛି । ପୁରୀର ଶ୍ରୀମନ୍ଦିର ପରିଚାଳନା ସଂସ୍ଥା ମଧ୍ୟ ସ୍ୱର୍ଣ୍ଣକ୍ଷେତ୍ରର ପ୍ରଶଂସା କରି ଆସିଛି । ଉଭୟ ପତ୍ରିକାର ଜଣେ ସହ-ସମ୍ପାଦକ ଭାବେ କାର୍ଯ୍ୟକରି ନିଜକୁ ଗୌରବାନ୍ୱିତ ମନେ କରୁଛି ।

ବନପ୍ରଭା ସାହିତ୍ୟ ସଂସଦର ଉପଦେଷ୍ଟା ଭାବରେ ସେ ବନପ୍ରଭାକୁ ଲୋକାଭିମୁଖୀ ଓ କାଳଜୟୀ କରିବା ପାଇଁ ଯତ୍ନ କରିଛନ୍ତି । ତାଙ୍କ ପରାମର୍ଶରେ



Digitized by srujanika@gmail.com

ବନପ୍ରଭାର ବାର୍ଷିକ ସଂଖ୍ୟା ପ୍ରକାଶ ପାଇଛି । ତାଙ୍କ ସମ୍ପାଦନାରେ ବନପ୍ରଭାର 'ଦେଶାତ୍ମବୋଧକ କବିତା ସଂକଳନ' ଓ 'ଶିଶୁ କବିତା ସଂକଳନ' ପ୍ରକାଶ ପାଇଛି । ବନପ୍ରଭାର 'ଦେଶାତ୍ମବୋଧକ କବିତା ସଂକଳନ' ପଢ଼ି ବିଶିଷ୍ଟ ସାହିତ୍ୟିକ ସାତକଡି ହୋତା ମୋତେ କହିଲେ, 'ଏ ଉଦ୍ୟମ ଏକ ସଫଳ ପ୍ରୟାସ । ସାଂପ୍ରତିକ ପରିସ୍ଥିତିରେ ଏହା ଯୁବପିଢ଼ି ମନରେ ଦେଶାତ୍ମବୋଧ ଭାବ ସୃଷ୍ଟି କରିବ । ଏପରି ଅଭିନବ ପରିକଳ୍ପନା ଆଜିଯାଏ କେହି କରି ନାହାନ୍ତି ।' ଏଥିରୁ ସାର୍‌ଙ୍କର ପରିକଳ୍ପନା ଆଗାମୀ ପିଢ଼ି ଓ ଆଗାମୀ କାଲି ପାଇଁ ବୋଲି ଜଣାପଡେ । ସବୁବେଳେ ସାର୍ ଗୁଣାତ୍ମକ ଲେଖା ଉପରେ ଗୁରୁତ୍ୱ ଦିଅନ୍ତି । ତାଙ୍କ କଥା ଉପରେ କାହାର ଦ୍ୱିମତ ନଥାଏ ।

ତାଙ୍କର କଠୋର ଶ୍ରମ, ନିରବଚ୍ଛିନ୍ନ ସାଧନା, ଅସାଧାରଣ ମାନସିକ ଦୃଢ଼ତା ତାଙ୍କୁ ଲୋକପ୍ରିୟ କରାଇଛି । ଏହି ଗୁଣ ତାଙ୍କୁ ଆଣି ଦେଇଛି ଯଥେଷ୍ଟ ସମ୍ମାନ ଓ ଆତ୍ମମର୍ଯ୍ୟାଦା । ତାଙ୍କ ପ୍ରେରଣା ଓ ଉତ୍ସାହରେ ଅନେକ ସାହିତ୍ୟିକ ସୃଷ୍ଟି ହୋଇଛନ୍ତି ଏ ଅଞ୍ଚଳ ତଥା ସମଗ୍ର ଓଡ଼ିଶାରେ । ତାଙ୍କ ମାର୍ଗଦର୍ଶନରେ ଅନେକ ଆଗକୁ ବଢ଼ିଛନ୍ତି । କିଏ ସଫଳ ସ୍ରଷ୍ଟା ହୋଇଛି ତ କିଏ ଗବେଷକ । ପ୍ରତିଭା ବିକାଶ ପାଇଁ ସେ ଉଭୟ ପଥ ଓ ପାଥେୟ ସାଜିଛନ୍ତି । ତାଙ୍କ ଅନୁଗାମୀମାନେ ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ସୃଷ୍ଟିଶୀଳ ଓ ଗବେଷକ ହୋଇଛନ୍ତି । ତାଙ୍କ ଅଧୀନରେ ତିନି ଜଣ ଗବେଷକ ଗବେଷଣା କରି ସଫଳ ହୋଇଛନ୍ତି । ଆହୁରି ଚାରି ଜଣ ଗବେଷଣାରତ ଅଛନ୍ତି । ତାଙ୍କ ଠାରୁ ଉପାଦାନ ନେଇ ଆହୁରି କେତେ ଗବେଷକ ଗବେଷଣାରେ ସଫଳ ହୋଇଛନ୍ତି । ପ୍ରକୃତରେ ସେ ଜହୁରୀ । ଯାହା ପାଖରେ ଗୁଣ ଥାଏ ତାକୁ ଆଦର କରି ଉପରକୁ ଉଠାନ୍ତି ।

ପ୍ରେରଣା ଦେବାରେ ତାଙ୍କୁ କେହି ବଳି ଯାଇନାହାନ୍ତି । ସୃଜନୀ ଶକ୍ତି ଥିବା ବ୍ୟକ୍ତି ପଛରେ ଲାଗି ସେ ତାକୁ ସୃଷ୍ଟିଶୀଳ କରାନ୍ତି । ତାଙ୍କ ସମ୍ପାଦନାରେ କେତେ ସ୍ରଷ୍ଟାଙ୍କର ଲେଖା ସରସ-ସୁନ୍ଦର ଓ ମନଛୁଆଁ ହୋଇଛି । ଲେଖା ନିର୍ବାଚନ ଓ ସଂଶୋଧନ ବେଳେ ସେ ମୁହଁ ନଦେଖି ଲେଖାର ଗୁଣାତ୍ମକ ଦିଗ ଦେଖନ୍ତି । ଏଥିପାଇଁ କାହାର ସମାଲୋଚନା, କଟୂକ୍ତିକୁ ଶୁଣନ୍ତି ନାହିଁ । କାହା ବିରୁଦ୍ଧରେ କୁହନ୍ତି ନାହିଁ । କି ପରଚର୍ଚ୍ଚା କରନ୍ତି ନାହିଁ । ତାଙ୍କ ବିରୁଦ୍ଧରେ କହୁଥିବା ଲୋକମାନଙ୍କ ନାଆଁ ମଧ୍ୟ ଶୁଣନ୍ତି ନାହିଁ । ଓଲଟି କୁହନ୍ତି, 'ସେମାନଙ୍କ ବକ୍ତବ୍ୟ କୁହନ୍ତୁ, ନାଆଁ କୁହନ୍ତୁ ନାହିଁ । ମୋର ଯଦି ଦୋଷ ଦୁର୍ବଳତା ଅଛି ତେବେ ମୁଁ ନିଜକୁ ସଜାଡ଼ିବି ।' ଆହୁରି କୁହନ୍ତି, କାନ୍ଥକୁ ପକା ଯାଉଥିବା ଟେକା କାନ୍ଥ ଗ୍ରହଣ ନକରି ପକାଉଥିବା ଲୋକ ପାଖକୁ ଫେରି ଆସେ । ସେହିପରି ମୋ ବିରୁଦ୍ଧରେ କହୁଥିବା ଲୋକଙ୍କ କଥା ଯଦି ମୁଁ ଗ୍ରହଣ ନ କରେ ତାହା ବୁମେରାଂ ହୋଇ ତାଙ୍କ ପାଖକୁ ଫେରିଯିବ । ତାଙ୍କର ଏହି ଗୁଣ ପାଇଁ ତାଙ୍କର ପ୍ରଶଂସକ ଅଧିକ । ନିନ୍ଦୁକମାନଙ୍କର



Digitized by srujanika@gmail.com

ନିନ୍ଦା ତାଙ୍କ ପାଇଁ ଆଶୀର୍ବାଦ । ଏହା ଦେଖି ନିନ୍ଦୁକମାନେ ଔଷଧ ରାଗରେ ତାଟିଆ କାମୁଡନ୍ତି ସିନା କିଛି କରି ପାରନ୍ତି ନାହିଁ ।

ସେ ସବୁବେଳେ ଅନ୍ୟ ଦୁଃଖରେ ଦୁଃଖୀ, ଖୁସିରେ ଖୁସି ହେବା ଲୋକ । ଅନ୍ୟକୁ ପ୍ରତିଷ୍ଠିତ କରାଇ ପାରିଲେ ସେ ଅଧିକ ଆତ୍ମସନ୍ତୋଷ ଲାଭ କରନ୍ତି । ସୁନାବେଡ଼ାରେ ସେ ଥିଲେ ଆମ ସମସ୍ତଙ୍କର ପ୍ରେରଣାର ଉତ୍ସ । ଯେତେବେଳେ ଯାହା ପରାମର୍ଶ, ଦିଗ୍‌ଦର୍ଶନ, ସଂଶୋଧନ ବା ଲେଖାଲେଖି ବା ପ୍ରକାଶର ଆବଶ୍ୟକତା ପଡେ, ସମସ୍ତେ ଯାଇ ପହଞ୍ଚି ଯାଆନ୍ତି ତାଙ୍କ ପାଖରେ । ସେ ବିନା ଦ୍ୱିଧାରେ ସବୁ କାର୍ଯ୍ୟ କରି ଦିଅନ୍ତି । ଫଳରେ କାମଟି ସରସ ସୁନ୍ଦର ଓ ସଫଳ ହୁଏ ।

ତାଙ୍କର ୩୨ ଖଣ୍ଡ ବହି ଓ ସମ୍ପାଦନାରେ ୬୦ରୁ ଊର୍ଦ୍ଧ୍ୱ ପତ୍ରପତ୍ରିକା ପ୍ରକାଶିତ । ୫୦ରୁ ଊର୍ଦ୍ଧ୍ୱ ଅନୁଷ୍ଠାନ ତାଙ୍କୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ କରିଛନ୍ତି । ଏତେ ସମ୍ମାନ, ଏତେ ସାଧନା ଓ ଏତେ ପୁସ୍ତକ ପ୍ରକାଶ ସତ୍ତ୍ୱେ ସେ ନିରଭିମାନୀ । ଗର୍ବ ଅହଙ୍କାର ନାହିଁ । ନୀତି ଆଦର୍ଶକୁ ନେଇ ରାଗି ଯାଆନ୍ତି । କିନ୍ତୁ ସେ ରାଗ କ୍ଷଣିକ । ପରମୁହୂର୍ତ୍ତରେ ହସି ହସି କଥା କୁହନ୍ତି । କୌଣସି କଥାକୁ ହୃଦୟରେ ଧରି ରଖନ୍ତି ନାହିଁ । ବହୁ ମାନ ଅପମାନ ସଂଘର୍ଷ ସତ୍ତ୍ୱେ ସେ ଜୀବନର ତୃତୀୟ ଇନିଂସି ଶେଷ କରିବାକୁ ଯାଉଛନ୍ତି । ଚତୁର୍ଥ ଇନିଂସ୍ ପୁଣି ଆରମ୍ଭ ହେବ ତାଙ୍କର ଜନ୍ମମାଟି କୁସୁପୁରରେ । ସାହିତ୍ୟ ପାଇଁ ସେ ଅନେକ ହରାଇଛନ୍ତି । କିନ୍ତୁ ସେ ଓଡ଼ିଆ ବାଣୀଭଣ୍ଡାରକୁ ଦେଇଛନ୍ତି ବହୁତ କିଛି । ଏ ଅଞ୍ଚଳରେ ଉତ୍କୃଷ୍ଟ ପୁସ୍ତକ ପ୍ରକାଶ ପାଇଁ ସେ ପୂର୍ଣ୍ଣିମା ଅଫ୍‌ସେଟ ପ୍ରତିଷ୍ଠା କରିଥିଲେ । ଅନେକ ଉତ୍କୃଷ୍ଟ ପୁସ୍ତକ ଓ ପତ୍ରପତ୍ରିକା ତାଙ୍କ ମୁଦ୍ରଣାଳୟରେ ମୁଦ୍ରିତ ହୋଇଥିଲା । କିନ୍ତୁ ଜଣେ ସ୍ୱାଭିମାନୀ ମଣିଷ ଭାବରେ ବ୍ୟବସାୟିକ ଚାତୁରୀର ଶିକାର ହୋଇ ଚାରିପାଞ୍ଚ ଲକ୍ଷ ଟଙ୍କାର ସତ୍ତ୍ୱ ତାଙ୍କ ଅଂଶୀଦାରକୁ ଛାଡ଼ି ଦେଇ କ୍ଷତି ସହିଛନ୍ତି । ଏ ମାଟି, ଏ ଜାତି ତାଙ୍କ ପାଖରେ ଚିର ଋଣୀ ହୋଇ ରହିବ ତାଙ୍କ ସାରସ୍ୱତ ସୃଷ୍ଟି ଓ ସଂପ୍ରୀତି ପାଇଁ । ଚାକିରି କଲେ ସମସ୍ତେ ତ ବିଦାୟ ନେବେ, ଆପଣ ମୁଁ ସିଏ । ଯିଏ କିଛି କରିଛି, କାଳ ତା କଥା ମନେ ରଖିଥିବ କାଳକାଳକୁ । ନିଜ ଅବଦାନ ପାଇଁ ସତରେ ସିଏ ସ୍ମରଣୀୟ ହୋଇ ରହିବେ ଏ ଅଞ୍ଚଳରେ । ଓଡ଼ିଆ ସାହିତ୍ୟ ତାଙ୍କୁ ସବୁଦିନେ ମନେ ରଖିବ ।



ସମ୍ପାଦକ
ବନପ୍ରଭା ସାହିତ୍ୟ ସଂସଦ, ସୁନାବେଡା-୨



Digitized by srujanika@gmail.com

# ଓଡିଆ ସାହିତ୍ୟ ଜଗତର ଋତୁରାଜ ବସନ୍ତ

## ପଣ୍ଡିତ ବେଣୁଧର ପରିଡା

ବସନ୍ତ ସାର୍ ଆସୁଛନ୍ତି । ଏରୋନଟିକ୍ସ କଲେଜର ବସନ୍ତ ବାବୁ, ଶ୍ରୀଯୁକ୍ତ ବସନ୍ତ କିଶୋର ସାହୁ, ସାଥୀରେ ପ୍ରିୟତମ ବଂଧୁ ସାହିତ୍ୟିକ କବି ସୁଦାମ କର। ୧୯୮୭ କିମ୍ବା ୮୭ ମସିହା ଏପ୍ରିଲ ଏକ ଉତ୍କଳ ଦିବସ ପାଳନ ପରବର୍ତ୍ତୀ କୌଣସି ଏକ ତାରିଖ । ସମୟ ରବିବାସରୀୟ ସକାଳ । ସ୍ଥାନ-ମୋର ବାସଭବନ ନୀଳାଦ୍ରି ଚନ୍ଦ୍ରିକା, କ୍ୱାର୍ଟର ନମ୍ବର ଏ/୩୦ । ସେଇଠି ବସନ୍ତ ବାବୁଙ୍କ ସହିତ ବ୍ୟକ୍ତିଗତ ପରିଚୟ ।

ସେତେବେଳକୁ ବନଫୁଲର ପ୍ରଥମ ଓ ଦ୍ୱିତୀୟ ବିଷୁବ ମିଳନ ଆୟୋଜିତ ହୋଇ ସମସ୍ତଙ୍କ ଭିତରେ ଆଲୋଡନ ସୃଷ୍ଟି କରିସାରିଥାଏ । ତା'ର ପ୍ରଥମ ସଭାପତି ଅଧ୍ୟାପକ କ୍ଷୀରୋଦ କୁମାର ସାମଲ ସୁନାବେଡାରୁ ବିଦାୟ ନେଇସାରିଥାନ୍ତି। ବନଫୁଲର ସମସ୍ତ ଦାୟିତ୍ୱ ବସନ୍ତ ବାବୁଙ୍କ ଉପରେ । ସଭାପତି ବୋଧହୁଏ ଥାଆନ୍ତି ଅନ୍ତର୍ଯ୍ୟାମୀ ଆଚାର୍ଯ୍ୟ । ବେଣୁଧର ପରିଡା, ବୀର କିଶୋର ନାୟକ ଉପ-ସଭାପତି, ସଂପାଦକ ବସନ୍ତ କିଶୋର ସାହୁ, ସୁଦାମ କର, ସହ ସଂପାଦକ ଗଣପତି ମଲ୍ଲିକ, ବାବାଜୀ ଚରଣ ଜେନା, ବିକ୍ରମ ନନ୍ଦ ସଂପାଦନା ମଣ୍ଡଳୀର ସଭ୍ୟ । ଉପଦେଷ୍ଟା ମଣ୍ଡଳୀରେ କୃଷ୍ଣ ସିଂହ, କୃଷ୍ଣ ଚନ୍ଦ୍ର ନାୟକ , ରବୀନ୍ଦ୍ର ପଣ୍ଡା ଓ ଅନ୍ୟମାନେ । କ୍ଷୀରୋଦ ବାବୁଙ୍କ ପରେ ବସନ୍ତ ବାବୁଙ୍କ ପ୍ରଭାବରେ ବନଫୁଲ ସହିତ ଅଧିକ ସକ୍ରିୟ ଭାବରେ ଅଂଶ ଗ୍ରହଣ କଲି ।

ବନଫୁଲର ପ୍ରାକ୍ ବିଷୁବ ମିଳନ ପୁଣି ସେଇ ସୁନାବେଡା-୧ସ୍ଥିତ ଟି. ଆର୍. ଡବ୍ଲ୍ୟୁ ହାଇସ୍କୁଲର ଆମ୍ବ ପଣସ ତରୁଚ୍ଛନ୍ନ ବିଶାଳ ପ୍ରାନ୍ତରରେ ଆୟୋଜିତ ହେଲା । ଖାଦ୍ୟପେୟ ଠାରୁ ସମସ୍ତ ଦାୟିତ୍ୱ ବହନ କଲେ ବସନ୍ତ ବାବୁ ଓ ଶ୍ରୀ କୃଷ୍ଣ ସିଂହ । ଏଥିରେ ସଭାପତିତ୍ୱ କରିଥିଲେ ତତ୍‌କାଳୀନ କୋରାପୁଟ ଜିଲ୍ଲାପାଳ ସାହିତ୍ୟିକ ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ସେନାପତି । ଗଳ୍ପ, କବିତା, ପ୍ରବନ୍ଧ, ଶିଶୁ କବିତା, ସାଂସ୍କୃତିକ ପର୍ଯ୍ୟବେକ୍ଷଣକୁ ନେଇ ବିଭିନ୍ନ ସମୟରେ ସୃଜନଶୀଳ ଆଲେଖ୍ୟମାନ ପ୍ରକାଶ ପାଇଛି । ସଂକଳନ ଗୁଡିକର ସଂପାଦନା କରନ୍ତି ବସନ୍ତ ବାବୁ । ଲେଖା ସଂଗ୍ରହ କରିବା, ସେଗୁଡିକର ସଂକ୍ଷେପ, ବିସ୍ତାର, ଆବଶ୍ୟକ ପଡିଲେ ପୁନର୍ଲିଖନ ଏ ସବୁ ବସନ୍ତ ବାବୁଙ୍କର । ତିଳେ ହେଲେ ଅବସାଦ ନାହିଁ । ସାହିତ୍ୟର ବିଶ୍ୱସ୍ତ ଅନୁରାଗୀ । ପୁନର୍ଲିଖନ



Digitized by srujanika@gmail.com

ଓ ସଂଶୋଧନ ପାଇଁ ମୋ ପାଖକୁ ଆସନ୍ତି । ନିର୍ଦ୍ଦିଷ୍ଟ ସମୟରେ ସବୁ ସାରିବାକୁ ହେବ । ତାଙ୍କର ତାଗିଦ୍ ପତ୍ରିକା ପ୍ରକାଶରେ କାଳ ବିଳମ୍ବ ଘଟେନା ।

ଉତ୍ସବ ଆୟୋଜନର ଦାୟିତ୍ୱ ତାଙ୍କର । ସଭା କେଉଁଠି ହେବ । ବକ୍ତା କେଉଁଠୁ ଆସିବେ, କିଏ କିଏ ଆସିବେ, ରହିବେ କେଉଁଠି, ଖାଇବେ କ'ଣ, ମଞ୍ଚ ଉପକରଣ କେଉଠୁ ଆସିବ, ଲାଇଟ୍ ମାଇକ୍ କଥା ସବୁ ତାଙ୍କ ଉପରେ । ଖିଆନାହିଁ ପିଆନାହିଁ, ଏକୁଟିଆ ଗାଡିଟା ଉପରେ ଘୂରି ଆସୁଥିବେ କୋରାପୁଟର ଏ କୋଣରୁ ସେ କୋଣ । ମଝିରେ ମଝିରେ ଖବର ପଠାଉଥିବେ । ସବୁକାମ ଠିକ୍ ଠାକ୍ । ସଦାବେଳେ ହାସ ଛଳ ଛଳ । ତାଙ୍କର କାର୍ଯ୍ୟ ଦକ୍ଷତା ବାସ୍ତବିକ ଅସାଧାରଣ ।

ସାଙ୍ଗଠନିକ କାର୍ଯ୍ୟ ନୈପୁଣ୍ୟ ଯୋଗୁ ପ୍ରଶଂସା ପାଇବାର ଅଭିଳାଷ ତାଙ୍କୁ ସ୍ପର୍ଶ କରିନଥିଲା । କର୍ମଯୋଗୀ ସେ । ସମସ୍ତ ଶ୍ରେୟ ସେ ଅର୍ପଣ କରୁଥିଲେ ଅନୁଷ୍ଠାନର ସଦସ୍ୟମାନଙ୍କୁ । ଫୁଲମାଳା ମଧ୍ୟରେ ସଂଗୁପ୍ତ ସୂତ୍ର ପରି ସେ ଚିର ନୀରବିତ ଅପ୍ରତିମ ଅନତିକ୍ରମଣୀୟ ନିଶ୍ଚୟ ।

ସଂଯମ ତାଙ୍କ ମଥାର ମୁକୁଟ । ସୀମା ଭିତରେ ରହି ସେ ସବୁ କରିବେ ଆଉ କରାଇବେ । କଥା କହିବେ, ହସିବେ ହସାଇବେ । ବୃଥାରେ କୌଣସି ଜାଗାକୁ ଯାଇ ଅଯଥା ଆଳାପ କରିବେ ନାହିଁ । ସମୟକୁ ସମ୍ମାନ ଦେବେ । ବରିଷ୍ଠ ସାହିତ୍ୟିକ ଓ ସମ୍ମାନିତ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଯଥୋଚିତ ବ୍ୟବହାର ପ୍ରଦର୍ଶନ କରିବାରେ କାର୍ପଣ୍ୟ ପ୍ରକାଶ କରିବେ ନାହିଁ । ସମଧର୍ମା ସମବୟସ୍କ ବଂଧୁମାନଙ୍କ ପ୍ରତି ବ୍ୟବହାର ବି ସେମିତି ।

ସାହିତ୍ୟ ସମାଲୋଚନାରେ ଅଂଶ ଗ୍ରହଣ କରି ଆଗ ମନ ଦେଇ ଶୁଣିବେ, ଯଥାର୍ଥ ଉତ୍ତର ଦେବେ, ଆଦୌ ଉତ୍କ୍ଷିପ୍ତ ହେବେ ନାହିଁ । ପ୍ରଗଲ୍‌ଭତା ପ୍ରକାଶ କରିବେ ନାହିଁ । ଶିକ୍ଷା ଗ୍ରହଣ କରିବେ ମାତ୍ର କାହାକୁ ଉପଦେଶ ଦେବାକୁ ସାମାନ୍ୟତମ ପ୍ରୟାସ ମଧ କରିବେ ନାହିଁ । କାହାରି ବିରୁଦ୍ଧରେ କିଛି ବି ମନ୍ତବ୍ୟ ଦେବେ ନାହିଁ । ତାଙ୍କର ଜଣାଶୁଣା ବିରୋଧ ମତାବଲମ୍ବୀ ବ୍ୟକ୍ତିମାନଙ୍କ ସହିତ କ୍ଷୀର ନୀର ପରି ଏମିତି ମିଶି ଯିବେ ଯେ କେହି ବୈରତାର ଗନ୍ଧ ବି ପାଇ ପାରିବ ନାହିଁ ।

କବିତା ସଂଯୋଜନା କରୁଥିବା ବେଳେ ସାହିତ୍ୟିକ ବଂଧୁ ଡକ୍ଟର ମନମୋହନ ମିଶ୍ର ମୋତେ ମଜାରେ 'ବୃଦ୍ଧ' ବୋଲି ସମ୍ବୋଧନ କରିବା ବେଳେ, ମୋର ଦାଢିରଖା ସେଟର ପିନ୍ଧା ଫଟୋକୁ ଦେଖି ସଭାପତି ଅନ୍ତର୍ଯ୍ୟାମୀ ଆଚାର୍ଯ୍ୟ ମହମ୍ମଦ ବୋଲି ଟିପ୍ପଣୀ କରିବା ସମୟରେ କିମ୍ବା ସଭା ଶେଷରେ ମୁଁ ଧନ୍ୟବାଦ ଅର୍ପଣ କରିବାକୁ ଗଲାବେଳେ ବସନ୍ତ ବାବୁ ସମାରୋହର ଗୋଟିଏ ନିଭୃତ କୋଣରେ ଅଦୃଶ୍ୟ ଭାବରେ ଠିଆ ହୋଇ ହସି ହସି ବେଦମ୍ ହୋଇ ଯାଉଥିବେ । ଶବ୍ଦ ମୋଟେ ହେବ ନାହିଁ ।

ଏଇ ଆନନ୍ଦ ଆବେଗରୁ ସୃଷ୍ଟି ତାଙ୍କର ଶିଶୁ କବିତା ମାଳା ଫୁଲ ଆମେ ଫୁଲ, ଅଗଡ ବଗଡ ଝାଇଁକି ଝୁମ୍ପା, ଉଦୁଉଦୁମା, ଇଞ୍ଚିଡି ମିଞ୍ଚିଡି, ବନଫୁଲର ପ୍ରବନ୍ଧ



Digitized by srujanika@gmail.com

ଗଳ୍ପ କବିତା, ଶିଶୁ ସାହିତ୍ୟର ଅନେକ ସଂକଳନ । ପରବର୍ତ୍ତୀ ସମୟରେ ଏଇ ମାଟିର ମଣିଷ, ଗାଇ ଦିଅ ପଦେ ଗୀତ, ଆଇଁଷି ମନ୍ତର କାଇଁଶି ମନ୍ତର, ଶରତ ଋତୁର ଗୀତ, ବିଲୁଆ ନନାର ବଣଭୋଜି, ହାତ ଦେବା ଭଲ କାମେ, ଶୀତ ପାଇଁ ଗାଅ ଗୀତ ପ୍ରକାଶ ପାଇ ଆମ ଶିଶୁ ସାହିତ୍ୟ ଜଗତକୁ ସମୃଦ୍ଧି କରିଛି । ସେ ଇଂରାଜୀରେ ମଧ୍ୟ ପୁସ୍ତକ ପ୍ରଣୟନ କରିଛନ୍ତି । ଆନନ୍ଦର ବିଷୟ ତାଙ୍କର କେତୋଟି ଅନବଦ୍ୟ ପୁସ୍ତକର ହିନ୍ଦୀ ଓ ବଙ୍ଗଳା ଅନୁବାଦ ମଧ୍ୟ ପ୍ରକାଶ ପାଇଛି ।

ତାଙ୍କର ସଶ୍ରଦ୍ଧ ଆମନ୍ତ୍ରଣ କ୍ରମେ ଆମ ଅନୁଷ୍ଠାନରେ ଯୋଗ ଦେଇଛନ୍ତି କୋରାପୁଟରୁ କବି କୌଶିକ ନାୟକ, କବି ଜଳଧର ସାଇଁ, ନାଟ୍ୟକାର ରମେଶ ଦାସ, ପ୍ରାବନ୍ଧିକ ଉମେଶ ପତ୍ରୀ, କବି କୈଳାସ ଷଡ଼ଙ୍ଗୀ, ଜୟପୁରରୁ ନଳିନୀ ରଂଜନ ମିଶ୍ର, ଗଂଗାଧର ନନ୍ଦ, ଅଧ୍ୟାପକ ଶିବରାମ ପାତ୍ର, ନବରଙ୍ଗପୁରରୁ କବି ଲଳିତ ମୋହନ ପଟ୍ଟନାୟକ, ଭାଗୀରଥି ପାତ୍ର, କବି ସୁବାସ ଚନ୍ଦ୍ର ମିଶ୍ର, ସୁଦୂର ସିଂହଭୂମିରୁ ଚିନ୍ତାମଣି ମହାଳିକ, ଆକାଶବାଣୀର ଶାନ୍ତନୁ ରଥ, କାଳୀକିଙ୍କର ମିଶ୍ର, କୃତ୍ତିବାସ ନାୟକ, ଉତ୍କଳ ସାହିତ୍ୟ ସମାଜର ଅଧ୍ୟକ୍ଷ ଆରକ୍ଷୀ ମହାନିର୍ଦ୍ଦେଶକ ଅନାଦି ସାହୁ, ବରିଷ୍ଠ ବାଗ୍ମୀ ସମୀକ୍ଷକ ସମାଲୋଚକ ଡକ୍ଟର ହରିଶଙ୍କର ମିଶ୍ର, ସଂସ୍କୃତଜ୍ଞ ବରିଷ୍ଠ ସାହିତ୍ୟିକ ଆୟୁର୍ବେଦବିତ୍ ମୃତ୍ୟୁଞ୍ଜୟ ମିଶ୍ର, ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଶିକ୍ଷକ ମାଗୁଣି ବରାଡ, କେନ୍ଦ୍ରାପଡାର ବରେଣ୍ୟ ଶିକ୍ଷକ ନବଘନ ପରିଡା ଓ ତୃତୀୟ ଜଂଜ ଦ୍ୱିତୀୟ କବିସୂର୍ଯ୍ୟ ଢେଙ୍କାନାଳ ବଳରାମ ପୁରର ନମସ୍ୟ କବି କଳ୍ପଦ୍ରୁମ, କବି ପ୍ରଦୀପ ଉପାଧି ପ୍ରାପ୍ତ ବିପିନ ବିହାରୀ ଖୁଣ୍ଟିଆ ।

ବନଫୁଲ ସାହିତ୍ୟ ପରିଷଦ ଆନୁକୂଲ୍ୟରେ ଶାବର ଶ୍ରୀକ୍ଷେତ୍ର କୋରାପୁଟ ଜଗନ୍ନାଥ ମନ୍ଦିରରେ ଶିଶୁ ସାହିତ୍ୟ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ଓଡିଶାର ବରିଷ୍ଠ ସଂଗ୍ରାହକ ଗ୍ରନ୍ଥାଗାରିକ ଶ୍ରୀ ଦାଶରଥି ପଟ୍ଟନାୟକ (ଦାସିଆ ଅଜା), ପ୍ରବୀଣ ଶିଶୁ ସାହିତ୍ୟିକ ଡଃ. ମନୀନ୍ଦ୍ର ମହାନ୍ତି, ଡଃ. ଜଗନ୍ନାଥ ମହାନ୍ତି, ମୀନାବଜାର ପତ୍ରିକାର ସୁଦକ୍ଷ ସମ୍ପାଦକ ରାମପ୍ରସାଦ ମହାନ୍ତି(ଜହୁରିଭାଇ) କଲିକତାର ବରେଣ୍ୟ ଶିଶୁ ସାହିତ୍ୟିକ ରବୀ ରଞ୍ଜନ ଚାଟାର୍ଜୀ ସେଥିରେ ଯୋଗ ଦେଇଥିଲେ । ବସନ୍ତ ବାବୁଙ୍କ ପ୍ରେରଣାରେ ମୁଁ ଗୋଟିଏ କବିତା ସେଠାରେ ଆବୃତ୍ତି କରିଥିଲି । କବିତାର ଶୀର୍ଷକ 'ଦାସେ ଆପଣେ' । ସେଇ ମନଛୁଆଁ କବିତାଟିକୁ ମୋତେ ଥରକୁ ଥର ଆବୃତ୍ତି କରିବା ପାଇଁ ଦାସିଆ ଅଜା ଅନୁରୋଧ କରିଥିଲେ । ହାସ୍ୟରୋଳ ସୃଷ୍ଟି ହେଉଥିଲା, ମୁଁ ଗାଉଥିଲି । ଗୁଣାନୁରକ୍ତ ଶ୍ରୀଯୁକ୍ତ ରାମପ୍ରସାଦ ମହାନ୍ତି ସେଇ କବିତାଟିକୁ ଓଡିଶାର ପ୍ରତିଷ୍ଠିତ ଶିଶୁ ସାହିତ୍ୟ ପତ୍ରିକା 'ଶିଶୁ ଲେଖା'ରେ ସ୍ଥାନ ଦେଇ ମୋତେ ଅନୁଗୃହୀତ କରିଥିଲେ ।

ପ୍ରାଣପ୍ରିୟ ଅଭିନ୍ନ ହୃଦୟ ବସନ୍ତ ବାବୁଙ୍କର ପ୍ରେରଣା ଅପାଶୋରା । ତାଙ୍କ ପ୍ରେରଣାରେ ଥରେ ବନଫୁଲର ଗୋଟିଏ କବିତା ସଂକଳନ ସଂପାଦନା କରିବାର ସୁଯୋଗ ମୁଁ ପାଇଥିଲି ।



Digitized by srujanika@gmail.com

୧୯୯୮ ମସିହା ମୋର ସ୍ଥାନାନ୍ତର ସମୟ ଉପସ୍ଥିତ ହେବା ପୂର୍ବରୁ ଗୋଟିଏ ମ୍ଳାନ ଅପରାହ୍ନରେ ମୋତେ ଦିନେ ବସନ୍ତ ବାବୁ ସାଥୀରେ ନେଇ ଗଲେ ଅଗ୍ରଜ ସାହିତ୍ୟିକ କୃଷ୍ଣ ସିଂହଙ୍କ ଘରକୁ । ବନଫୁଲ ସାହିତ୍ୟ ପରିଷଦର ସମସ୍ତ ଦାୟିତ୍ୱ ଗ୍ରହଣ କରିବାକୁ ତାଙ୍କୁ ଅନୁରୋଧ କଲାବେଳେ ତାଙ୍କର ମୁଖମଣ୍ଡଳ ଶୋକାର୍ତ୍ତ ହୋଇ ଉଠୁଥିଲା । ବନରୁ ସୃଷ୍ଟି ବନଫୁଲ ପୁଣି ବନଗହନରେ ହଜିଗଲା । କିନ୍ତୁ ମନଗହନରୁ ହଜି ନାହିଁ କି ହଜିବ ନାହିଁ । ବନଫୁଲ ପାଇଁ ବସନ୍ତ ବାବୁ ଚିର ସ୍ମରଣୀୟ ହୋଇ ରହିବେ ଓଡିଆ ସାହିତ୍ୟ ଜଗତରେ । 'କୀର୍ତ୍ତି ରକ୍ଷାର ସମ୍ବନ୍ଧା ସ୍ଥିରା ଭବତି ଭୂତଳେ' ।

ବିଶ୍ୱଭାଷା ଜନନୀ ସଂସ୍କୃତ ଭାରତୀରେ ସାହିତ୍ୟିକ ପ୍ରବର ବସନ୍ତ ବାବୁଙ୍କୁ ସମ୍ବର୍ଦ୍ଧନା ଜଣାଇଛି ।

ଋତୁରାଜ ବସନ୍ତ ବଦ୍‌ବଶୀ  
ସୁବସନ୍ତଃ ଶ୍ରମ ସାଧନାରତଃ ।  
ରୁଚିରୋତ୍କଳ ଭାରତୀ ରତିଃ  
ମହସାଯେନ ମହୀମାହୀୟସୀ ॥  
ସହସା ସୁହସଃ କିଶୋରକଃ  
ସୁବସନ୍ତଃ ଲଳିକା ତରୁ ବ୍ରଜମ୍ ।  
ମଳୟେନ କରୋତୁ ମଣ୍ଡିତଂ  
ଫଳ ପୁଷ୍ପୌ ର୍ମକରନ୍ଦ ବିନ୍ଦୁଭିଃ ॥  
ଶ୍ରୀ ବସନ୍ତ କିଶୋରୋୟଂ ସାହିତ୍ୟନାବନାବିକଃ ।  
ଲେଖନୀ କ୍ଷେପଣୀ ଯସ୍ୟ ପ୍ରଗତି ତୀର ସୁମ୍ବିନୀ ॥

ବସନ୍ତ ବାବୁଙ୍କର ୨ଖଣ୍ଡ ରଚନାବଳୀ ପ୍ରକାଶ ପାଇଛି । ଏବେ ବି ତାଙ୍କ ଲେଖନୀ ଚଳଚଞ୍ଚଳ । ଓଡ଼ିଆ ଲେଖକ ପାଠକ ସମ୍ମେଳନର ସେ କର୍ଣ୍ଣଧାର । ଜଗନ୍ନାଥ ସଂସ୍କୃତି ଆଧାରିତ 'ସର୍ଣ୍ଣକ୍ଷେତ୍ର' ପତ୍ରିକାର ସୁଯୋଗ୍ୟ ସଂପାଦକ । ଉତ୍କଳ ସାଂସ୍କୃତିକ ପରିଷଦ ପତ୍ରିକାର ସଂପାଦକ । ତାଙ୍କର କୃତି ଓ କୃତିତ୍ୱ ଅନେକ । ସେ ମାଟି ପରି ସର୍ବଂସହା ଓ ଆକାଶ ପରି ବିଶାଳ । ସେ ଝଡର ଇଗଲ ଓ ଧରଣୀର କୃଷ୍ଣସାର । ସେ ଓଡିଆ ସାହିତ୍ୟ ଜଗତର ଭାବମୟ କୁସୁମାକର । ତାଙ୍କ ତୂଳିକା ସ୍ପର୍ଶରେ ପୁଷ୍ଟ ହେଉ ଓଡିଶାର ତଥା ଭାରତର କାବ୍ୟକାନନ । ନୁଖୁରା ଗଛ ପଲ୍ଲବିତ ହେଉ । ଦିଗନ୍ତ ମୁଖରିତ ହେଉ ପୁଂସ୍କୋକିଳର ମନୋମୁଗ୍ଧକର କୂଜନରେ ଓ ଧାରାସ୍ରାବୀ ମଧୁପର ମଧୁର ଗୁଂଜନରେ ।



ଚାରୁଶୀଳା ବାଣୀହଂସ ବସୁନ୍ଧରା  
ବିନୋଦିନୀ ବିହାର, ଡମ୍‌ପଡା,ବାଙ୍କୀ, କଟକ



Digitized by srujanika@gmail.com

# ଗର୍ବ ଓ ଗୌରବର ପ୍ରତୀକ
# ଡକ୍ଟର ବସନ୍ତ କିଶୋର ସାହୁ

**ଡକ୍ଟର ଦିଗରାଜ ବ୍ରହ୍ମା**

୧୯୫୬ ମସିହାରେ କଟକ ଜିଲ୍ଲାସ୍ଥ କୁସୁପୁର ଗ୍ରାମରେ ଜନ୍ମିତ ସାହିତ୍ୟ ଜଗତର ଏକ ଅମ୍ଳାନ ପ୍ରତିଭା ଡଃ.ବସନ୍ତ କିଶୋର ସାହୁଙ୍କ ସହିତ ଏହି ଲେଖକଙ୍କର ପରିଚୟ ଦୀର୍ଘ ତିନି ଦଶନ୍ଧିରୁ ଅଧିକ କାଳ । ଏହି ସମୟ ମଧ୍ୟରେ ଲେଖକ ତାଙ୍କ ଜୀବନର ଆଦର୍ଶ, କର୍ମକୁଶଳତା ଓ ସଂଗଠନିକ ଦକ୍ଷତା ସହିତ ପରିଚିତ ହୋଇ ତାଙ୍କ ଜୀବନର ମାନବିକତା ଓ ମୂଲ୍ୟବୋଧ ସଂପର୍କରେ ପରିଚିତ ହୋଇ ପାରିଛନ୍ତି ।

ଏହି ପ୍ରାବନ୍ଧିକ ଡଃ. ବସନ୍ତ କିଶୋର ସାହୁଙ୍କୁ ପ୍ରଥମେ 'ବଗଲାବଗୁଲୀ' ପତ୍ରିକାର ସଂପାଦକ ହିସାବରେ ଜାଣିଥିଲେ । ଓଡିଆ ଶିଶୁ ସାହିତ୍ୟ ଜଗତକୁ ସମୃଦ୍ଧ କରିବା ନିମନ୍ତେ ଏହି ପତ୍ରିକାଟି ଡକ୍ଟର ସାହୁ ୧୯୮୨ ମସିହାରେ ପ୍ରକାଶ କରିଥିଲେ । ଏହି ପତ୍ରିକାଟିର ଲେଖାଗୁଡିକର ଚୟନ ତାଙ୍କର ବଳିଷ୍ଠ ସଂପାଦନାର ପରିଚୟ ଦେବା ସହିତ ରାଜ୍ୟର ଅଗଣିତ ଶିଶୁମାନଙ୍କ ସହିତ ତାଙ୍କର ଏକ ସ୍ୱତନ୍ତ୍ର ପରିଚୟ ରଖି ପାରିଥିଲା । ତେଣୁ ସେ ଶିଶୁମାନଙ୍କ ଦ୍ୱାରା ଯେମିତି ସମ୍ମାନୀତ ହୋଇଥିଲେ, ତାହାଠାରୁ ଅଧିକ ବରିଷ୍ଠ ସାହିତ୍ୟିକଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇ ପାରିଥିଲେ । ସେହି ସମୟରେ ଲେଖକଙ୍କ କେତୋଟି ଲେଖା ଡକ୍ଟର ସାହୁ ତାଙ୍କର ଏହି ସମ୍ମାନ ଜନକ ପତ୍ରିକାରେ ପ୍ରକାଶ କରିବାକୁ ସୁଯୋଗ ଦେଇଥିଲେ । ଯଦିଓ ଓଡିଶାର ପାଣିପାଗରେ 'ବଗଲା ବଗୁଲୀ' ବେଶୀ ଦିନ ମୁକ୍ତ ବିହଙ୍ଗମ ପରି ବିଚରଣ କରିପାରି ନ ଥିଲା । ତଥାପି ଏହି ଶିଶୁ ପତ୍ରିକାଟି ବହୁ ତରୁଣ ଓ ପ୍ରବୀଣ ଶିଶୁ ସାହିତ୍ୟିକଙ୍କୁ ପରବର୍ତ୍ତୀ କାଳରେ ଏକ ଆଦର୍ଶ ଶିଶୁ ସାହିତ୍ୟିକ ଭାବେ ସୃଷ୍ଟି କରିବାରେ ପଥ ଓ ପାଥେୟ ହୋଇ ପାରିଅଛି ।

ଏହି ଲେଖକ ୧୯୭୭ ମସିହାରେ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟ (ବର୍ତ୍ତମାନର ଡକ୍ଟର ପର୍ଶୁରାମ ମିଶ୍ର ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ)ରେ ଅଧ୍ୟାପକ ରୂପେ ଯୋଗଦାନ କରିଥିଲେ । ଏହାର କିଛି ବର୍ଷ ପରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଓଡିଆ ଶିଶୁ ସାହିତ୍ୟର ଉନ୍ମେଷ ଓ ବିକାଶ ସଂପର୍କରେ ଗବେଷଣା



Digitized by srujanika@gmail.com

କରିଥିବା ବର୍ତ୍ତମାନ ଓଡିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ରେଜିଷ୍ଟ୍ରାର ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ସହିତ ପରିଚିତ ହୋଇଥିଲେ । ଡକ୍ଟର ମହାନ୍ତି ନିଜର ଅଦମ୍ୟ ଚେଷ୍ଟା ଓ ଉଦ୍ୟମ ଫଳରେ ପ୍ରାୟତଃ ପ୍ରତିବର୍ଷ ଓଡିଶାର ଶିଶୁ ସାହିତ୍ୟିକମାନଙ୍କ ପାଇଁ ଏକ କର୍ମଶାଳାର ଆୟୋଜନ କରୁଥିଲେ । ଏହି କର୍ମଶାଳାରେ ବିଶେଷତଃ ନୂଆକରି ଶିଶୁ-ସାହିତ୍ୟ ରଚନା କରୁଥିବା ଲେଖକମାନଙ୍କୁ ଶିଶୁ ସାହିତ୍ୟର ବିଭିନ୍ନ ବିଭାବ ଯଥା:- କବିତା, ଉପନ୍ୟାସ, ଜୀବନୀ ସାହିତ୍ୟ ଆଦି ରଚନା ସଂପର୍କରେ ତାଲିମ ଦିଆଯାଉଥିଲା । ଏହି କର୍ମଶାଳାରେ ଡକ୍ଟର ମହାନ୍ତି ପ୍ରାୟତଃ ପ୍ରତିବର୍ଷ ମୋତେ ଶିକ୍ଷାଦାନ କରିବା ନିମନ୍ତେ ନିମନ୍ତ୍ରଣ କରୁଥିଲେ । ଏହି ସବୁ କର୍ମଶାଳା ପରିଚାଳନାରେ ସେ ଯେଉଁ ସବୁ ଯୁବ ବନ୍ଧୁମାନଙ୍କ ସହଯୋଗ ନେଉଥିଲେ ସେମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଥିଲେ ଅନ୍ୟତମ । ଏକ କର୍ମଶାଳା ପରିଚାଳନାରେ ତାଙ୍କର ନିଷ୍ଠା, ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ପ୍ରତି ତାଙ୍କର ଆନୁଗତ୍ୟ, ଶିଶୁ ସାହିତ୍ୟ ଓ ଶିଶୁ ସାହିତ୍ୟ ଗବେଷଣା ପ୍ରତି ତାଙ୍କର ଆନ୍ତରିକତା ଏହି ପ୍ରାବନ୍ଧିକଙ୍କୁ ବିସ୍ମିତ କରିଥିଲା । ଏହି ନିଷ୍ଠା ଓ ଗବେଷଣାର ଫଳ ସ୍ୱରୂପ ରେଜିଷ୍ଟ୍ରେସନର ଅତି ଅଳ୍ପ ସମୟ ବ୍ୟବଧାନରେ ଡକ୍ଟର ସାହୁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୯୩ ମସିହାରେ ଓଡିଆ ମୌଖିକ ଶିଶୁ ସାହିତ୍ୟ ସନ୍ଦର୍ଭ ରଚନାକରି ପିଏଚ୍.ଡି. ଡିଗ୍ରୀ ହାସଲ କରିବାକୁ ସମର୍ଥ ହୋଇଥିଲେ ।

ସୁନାବେଡା ଏରୋନଟିକସ୍ ମହାବିଦ୍ୟାଳୟରେ ଡକ୍ଟର ସାହୁ ୧୯୮୪ ମସିହାରେ ଯୋଗଦାନ କରିଥିଲେ । ନିଜର ଶିକ୍ଷାଦାନ ଓ ଅଧ୍ୟବସାୟ ଫଳରେ ସେ ଅଳ୍ପଦିନ ମଧ୍ୟରେ ଅଧ୍ୟକ୍ଷ ଓ ଶିକ୍ଷାର୍ଥୀମାନଙ୍କ ହୃଦୟ ଜିଣି ନେଇଥିଲେ । କ୍ରମଶଃ ତାଙ୍କର ଖ୍ୟାତି ଅବିଭକ୍ତ କୋରାପୁଟ ଜିଲ୍ଲାର ସାଂସ୍କୃତିକ ମାନଚିତ୍ରରେ ସ୍ଥାନ ପାଇଥିଲା । ସୁନାବେଡାର ବହୁ ଅଗ୍ରଣୀ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ହୋଇ ସେ ସେଠିକାର କଳା, ସାହିତ୍ୟ, ସଂସ୍କୃତିର ବିକାଶ ପାଇଁ କାର୍ଯ୍ୟ କରିଛନ୍ତି । ମାତ୍ର ତାଙ୍କର ନିରଳସ ବ୍ୟକ୍ତିତ୍ୱ କେବେ କାହା ପାଖରେ କୌଣସି ସମୟରେ ବୌଦ୍ଧିକ ଦିଗରୁ ନିଜର ପ୍ରଭୁତ୍ୱ ଜାହିର କରିବାକୁ ଚେଷ୍ଟା କରି ନାହିଁ ।

ଲେଖକ ୨୦୦୩ ମସିହାରେ କୋରାପୁଟସ୍ଥିତ ଡି.ଏ.ଭି ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟର ଅଧ୍ୟକ୍ଷ ରୂପେ ଯୋଗଦାନ କରିଥିଲେ ଓ ୨୦୦୭ ଏପ୍ରିଲ ପର୍ଯ୍ୟନ୍ତ ସେଠାରେ ଅବସ୍ଥାପିତ ଥିଲେ । ସେହି ସମୟରେ ସେ ମହାବିଦ୍ୟାଳୟ ପରିସର ମଧ୍ୟରେ ଶିଶୁ ସାହିତ୍ୟ ସଂପର୍କୀୟ ଏକ ଦିବସୀୟ ଆଲୋଚନା ଚକ୍ରର ଆୟୋଜନ କରିଥିଲେ । ଏହି ଆଲୋଚନା ଚକ୍ରରେ ମହାବିଦ୍ୟାଳୟ ତରଫରୁ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥି ଭାବେ ଡକ୍ଟର ବସନ୍ତ କିଶୋର ସାହୁ ଯୋଗଦାନ କରିଥିଲେ । ଶିଶୁ ସାହିତ୍ୟ ସଂପର୍କୀୟ ତାଙ୍କର



Digitized by srujanika@gmail.com

ଅନୁଧ୍ୟାନ ଓ ସାରଗର୍ଭକ ଅଭିଭାଷଣ ମହାବିଦ୍ୟାଳୟ ଛାତ୍ରଛାତ୍ରୀ ଓ ଅଧ୍ୟାପକ ବନ୍ଧୁମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ଏତଦ୍ ବ୍ୟତୀତ ସେ ନିଜର ପ୍ରଚେଷ୍ଟାରେ ମହାବିଦ୍ୟାଳୟ ପରିସର ମଧ୍ୟରେ ଏକ ଶିଶୁ ସାହିତ୍ୟ ପୁସ୍ତକ ପ୍ରଦର୍ଶନୀ ମଧ୍ୟ ଆୟୋଜନ କରିଥିଲେ ।

ଜଣେ ଅଧ୍ୟାପକଙ୍କ କ୍ଷେତ୍ରରେ କେବଳ ଶିକ୍ଷାଦାନ ହେଉଛି କର୍ତ୍ତବ୍ୟ; ମାତ୍ର ନିଜ କର୍ତ୍ତବ୍ୟ ଠାରୁ ଯିଏ ଅଧିକ କିଛି ସମାଜ ପାଇଁ ଦାନ କରିଥାନ୍ତି ସେ ହେଉଛନ୍ତି ଜଣେ ପୁଣ୍ୟବନ୍ତ ପୁରୁଷ । ସେହିପରି ଜଣେ ପୁଣ୍ୟବନ୍ତ ପୁରୁଷ ହେଉଛନ୍ତି ବସନ୍ତ ବାବୁ । ଗର୍ବ ବିହୀନ ହେଲେ ମଧ୍ୟ ସେ ବହୁ ଗର୍ବ ଓ ଗୌରବର ପ୍ରତୀକ । ଓଡିଶାର ବହୁ ଅଗ୍ରଣୀ ଅନୁଷ୍ଠାନ ତରଫରୁ ତାଙ୍କର ଜ୍ଞାନଦୀପ୍ତ ପ୍ରତିଭା ସମ୍ବର୍ଦ୍ଧିତ । ତାଙ୍କର ସ୍ୱକୀୟ ରଚନା ଓ ଗବେଷଣା ଦ୍ୱାରା ଓଡିଆ ସାରସ୍ୱତ ଭଣ୍ଡାର ସମୃଦ୍ଧ ।

ସମୟ ତା'ର ନିଜସ୍ୱ ଗୁଳାରେ ଅତିବାହିତ ହେଉଛି । ସୁନାବେଡାର ଏରୋନଟିକସ୍ ମହାବିଦ୍ୟାଳୟରୁ ଓଡିଆ ବିଭାଗରୁ ଡକ୍ଟର ସାହୁ ଅବସର ନେଲେ ମଧ୍ୟ ତାଙ୍କ କର୍ମମୟ ଜୀବନର ଆହ୍ୱାନ ସୁଦୂର ପ୍ରସାରୀ । ଆଶା ଓ ବିଶ୍ୱାସ, ସେ ସେହି ଆହ୍ୱାନର ସଫଳ ରୂପାୟନ ନିମନ୍ତେ ନିଜର କର୍ମପନ୍ଥା ପୂର୍ବପରି ଅବ୍ୟାହତ ରଖି ଆଗାମୀ ପିଢି ପାଇଁ ନିଜର ସ୍ୱତନ୍ତ୍ର ପରିଚୟ ରଖିବେ ।



ମହାବୀର ବିହାର, କଳାରାହାଙ୍ଗ
ଭାୟା-କିଟ୍, ଭୁବନେଶ୍ୱର



Digitized by srujanika@gmail.com

# ଦରଦୀ ବଂଧୁଙ୍କ ସଂପର୍କରେ

**ଜୟନ୍ତ କୁମାର ମିଶ୍ର**

ତୁମେ କହିପାରିବନି
କେଉଁ ଦିନ ଆମେ ଦୁହେଁ
ପରସ୍ପର ଠାରୁ ଅଲଗା ହେବା
ଆଲଗା ହେବ ଯିବାର ଢଙ୍ଗ
ବାଟ-ତାରିଖ, ସ୍ୱପ୍ନ ଏବଂ
ଭବିଷ୍ୟତ ପାଇଁ ଗୋଟିଏ ନିଆରା ସଜବାଜ ।

ପୃଥିବୀରେ ଅପ୍ରାପ୍ତି ବୋଲି କିଛି ନାହିଁ, ଅସମ୍ଭବ ଶବ୍ଦ କେବେଠୁ ଏ ମଣିଷ ମନରୁ ପାଶୋରି ଦେଲାଣି । ପୃଥିବୀରେ କେବଳ ଅମୂଲ୍ୟ ସଂପଦ କହିଲେ ଗୋଟାଏ ନିରୋଳା ଖୋଲା ହୃଦୟର ଆବଶ୍ୟକତା ପଡେ । ଯାହା ବିନା ଜୀବନର ଗୁରୁତ୍ୱକୁ କସ୍ମିନ୍ କାଳେ ଉପଭୋଗ କରାଯାଇ ନପାରେ । ପରସ୍ପରକୁ ବୁଝିବା, ଦୁଃଖ ବାଣ୍ଟିବା, ସୁଖରେ ବିଭୋର ହେବା ପାଇଁ ଅନ୍ୟ ଗୋଟିଏ ସମଭାବାପନ୍ନ ହୃଦୟର ଏକାନ୍ତ ଆବଶ୍ୟତାକୁ ଏଡାଇ ଦେଇ ହେବନି । ଏମିତି ଗତାନୁଗତିକ ରୂପେ ଜୀବନ ବିତାଇ ଚାଲିଥିବା ବେଳେ ଆକସ୍ମିକ ରୂପେ ଭଂଜମଣ୍ଡପ ସୁନାବେଡାରେ ସାକ୍ଷାତ ହେଲେ ଜଣେ ବାଛି ନ ହେଉଥିବା ସୁଢୋଳ ଯୁବକ । କେଜାଣି କାହିଁକି ତାଙ୍କ ପରିଚୟ ପାଇଁ ମନ ଆଉଟୁ ପାଉଟୁ ହେଲା । ମୁଁ ବସନ୍ତ କିଶୋର ସାହୁ, ଏରୋନଟିକସ୍ ମହାବିଦ୍ୟାଳୟ ସୁନାବେଡାରେ ଅଧ୍ୟାପନା କରେ । ସଚ୍ଚ କଥା । ମୁହଁରେ ନିରୋଳା ହସ । ଶୁଭ୍ର ଦନ୍ତ ପଂକ୍ତି । ବେଶ୍ ଆକର୍ଷଣୀୟ ଅବୟବ । ତାଙ୍କ ପ୍ରତି ଆକର୍ଷିତ ହେବାର ସମସ୍ତ ଗୁଣ ତାଙ୍କର ଥିଲା । ସଂକ୍ଷେପରେ କହିଥିଲି ମୋ ପରିଚୟ-ଜୟନ୍ତ ମିଶ୍ର, ଓକିଲାତି କରେ ।

ଭଂଜମଣ୍ଡପରେ ସେଦିନ ସାହିତ୍ୟ ଆସର ଶେଷ ହେବା ପରେ ବିଦାୟ ନେଇଥିଲୁ ସମସ୍ତେ । କ୍ରମେ ପରିଚୟ ନିବିଡ ହେଲା । ନବେ ଦଶକର କଥା । ଉପାନ୍ତ ଜିଲ୍ଲା ରୂପେ ପରିଚିତ ଐତିହ୍ୟ ସମ୍ପନ୍ନ କୋରାପୁଟ ଜିଲ୍ଲାର ସମସ୍ତ କବି, ଲେଖକ, ପାଠକ ମାନଙ୍କୁ ନେଇ ଲେଖକ-ପାଠକ ସମ୍ମେଳନ ନାମରେ ଅନୁଷ୍ଠାନଟିଏ ଗଢିବା ପାଇଁ ସମାଜସେବୀ, ଭୂଦାନ କର୍ମୀ ସାହିତ୍ୟିକ କୃଷ୍ଣ ସିଂ ପ୍ରସ୍ତାବ ଦେଲେ । ଏପରି ଏକ ଅନୁଷ୍ଠାନ ଗଢିବା କମ୍ କଥା ନଥିଲା । ସାଂଗଠନିକ ଦକ୍ଷତା ଏବଂ କାର୍ଯ୍ୟ କରିବାର



Digitized by srujanika@gmail.com

ପ୍ରୟାସ ଥିଲେ ହିଁ ଏପରି କାର୍ଯ୍ୟରେ ଗୁରୁ ଦାୟିତ୍ୱ ବହନ କରାଯାଇପାରେ । ଏ ଗୁରୁ ଦାୟିତ୍ୱକୁ ଆଗ୍ରହର ସହ ମୁଣ୍ଡାଇଥିଲେ ବନ୍ଧୁ ବସନ୍ତ ବାବୁ । ଯଦିଓ ଏହାର ପୁରୋଧା ଥିଲେ ଶ୍ରୀଯୁକ୍ତ ସିଂହ, କିନ୍ତୁ ଲେଖକ-ପାଠକ ସମ୍ମେଳନର ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ ପାଇଁ ବସନ୍ତ ବାବୁଙ୍କୁ ଦାୟିତ୍ୱ ଦେଇ ଆମେ ଖସିଯାଇଥିଲୁ । ଦୀର୍ଘ ତିନିଦିନ ଧରି ଲେଖକ-ପାଠକ ସମ୍ମେଳନର ଉତ୍ସବ ସେମିଳିଗୁଡାସ୍ଥ ସେମିଳିଗୁଡା ମହାବିଦ୍ୟାଳୟରେ ଅନୁଷ୍ଠିତ ହେଲା । ସ୍ମରଣିକାଟିଏ ପ୍ରକାଶ ପାଇଥିଲା । ଉକ୍ତ ଉତ୍ସବର ସଫଳତା କାଗଜ କଲମରେ ଲେଖି ହେବନି । ତୁଙ୍ଗ ରାଜନୈତିକ ନେତୃବୃନ୍ଦ ଏବଂ ପ୍ରତିଷ୍ଠିତ ସାହିତ୍ୟିକଙ୍କ ଉପସ୍ଥିତିରେ ତିନୋଟି ସଂଧ୍ୟା ସେମିଳିଗୁଡାକୁ ଭିନ୍ନ ଏକ ରଙ୍ଗରେ ରଙ୍ଗାୟିତ କରିଥିଲା । ପାଠକଙ୍କୁ ସାହିତ୍ୟିକ ସହ ସାମିଲ କରିବା ପ୍ରୟାସ ବୋଧହୁଏ ଅନ୍ୟ କୌଣସି ଠାରେ ଏହା ପୂର୍ବରୁ ଆମେ ଦେଖି ନଥିଲୁ । ଏସବୁ କାର୍ଯ୍ୟ ସଫଳତାର ସହ ସଂପାଦନ କରିବାରେ ବନ୍ଧୁ ବସନ୍ତ ବାବୁ ତିଳେ ମାତ୍ର ତ୍ରୁଟି କରିନଥିଲେ । ତାଙ୍କ ସଂପାଦନାରେ ପ୍ରକାଶିତ ସ୍ମରଣିକାରେ ଆମେ କେତେ ଜଣ ବନ୍ଧୁ ସଂପାଦନା ମଣ୍ଡଳୀରେ ଥିଲୁ କିନ୍ତୁ ଆମର ଭୂମିକା ଠାରୁ ବସନ୍ତ ବାବୁଙ୍କ ଭୂମିକା ପ୍ରଶଂସନୀୟ ଥିଲା । ଏଇଠୁ ମୁଁ ତାଙ୍କର ବଳିଷ୍ଠ ସାଂଗଠନିକ ଦକ୍ଷତାର ବାସ୍ନା ପାଇଥିଲି । ଏ ଯାବତ୍ ଲେଖକ-ପାଠକ ସମ୍ମିଳନ ସାହିତ୍ୟିକ ପାଣିପାଗକୁ ଏ ଜିଲ୍ଲାରେ ଉଦ୍‌ଜୀବିତ କରି ରଖିଛି । ଏଇଠୁ ନୂଆକରି କଲମ ଧରିଥିବା ଯୁବ କବିମାନେ ଆଜି ସାହିତ୍ୟ କ୍ଷେତ୍ରରେ ବେଶ୍ ପ୍ରତିଷ୍ଠିତ । ତେଣୁ ସଂଗଠକ ବସନ୍ତ ବାବୁଙ୍କ ଅକ୍ଳାନ୍ତ ପରିଶ୍ରମ ବ୍ୟର୍ଥ ହୋଇନି ।

ଏତଦ୍ ବ୍ୟତୀତ ସୁନାବେଡାର ବନଫୁଲ ସାହିତ୍ୟ ପରିଷଦର ସେ ଜନ୍ମଦାତା । ତାଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ଏବଂ ଅଙ୍ଗୀକାର ଦକ୍ଷତାର ଫଳ ସ୍ୱରୂପ ବନଫୁଲ ସାହିତ୍ୟ ପତ୍ରିକା ଆତ୍ମପ୍ରକାଶ କରିବା ସହିତ ଏ ଯାବତ୍ କବି/ଲେଖକ/ପାଠକ ମାନଙ୍କ ନିକଟରେ ବେଶ୍ ଆଦୃତି ଲାଭ କରିପାରିଛି । ଶିଳ୍ପ ନଗରୀ ସୁନାବେଡାରେ ସାହିତ୍ୟ/ସଂସ୍କୃତି ଏବଂ ସାଂସ୍କୃତିକ ପରିବେଶକୁ ସମ୍ପାଛନ୍ନ କରି ରଖିବାରେ ବସନ୍ତ ବାବୁଙ୍କ ଦାନ ଅବିସ୍ମରଣୀୟ । କୋରାପୁଟରୁ ପ୍ରକାଶିତ 'ସଉା' ସାହିତ୍ୟ ସଂସଦର ପତ୍ରିକା 'ସଉା'ର ସେ ଅନ୍ୟତମ ସକ୍ରିୟ ସଦସ୍ୟ । ବହୁ ସମୟରେ ସହଯୋଗର ଲମ୍ବା ହାତଟିଏ ତାଙ୍କ ତରଫରୁ ଲମ୍ବି ଆସିଛି । ବାଧ୍ୟ ବାଧ୍ୟକତାରେ ନୁହେଁ ବରଂ ଆନ୍ତରିକତାରେ ।

କଥା ଦେଇ କଥା ରଖିବା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟଏକ ସୁଗୁଣ । ଥରେ ଜବାବ ଦେବା ପରେ ସେ ସେଥିରୁ ଓହରି ଯାଆନ୍ତିନାହିଁ । ଉଦାହରଣ ସ୍ୱରୂପ କୋରାପୁଟ ଜିଲ୍ଲାର ମହୋତ୍ସବ 'ପରବ'ର ସ୍ମରଣିକା ଛପା ଦାୟିତ୍ୱ ତାଙ୍କୁ ନ୍ୟସ୍ତ କରାଗଲା । ପୂର୍ଣ୍ଣିମା ଅପ୍‌ସେଟ ବୋଲି ସେମିଳିଗୁଡାରେ ତାଙ୍କର ପ୍ରେସ୍ ଥିଲା । ମୁଁ କହିଲି ବସନ୍ତ ବାବୁ ନିର୍ଦ୍ଦିଷ୍ଟ ତାରିଖରେ ସ୍ମରଣିକା ଆପଣ ନିଶ୍ଚୟ ଦେବେ । ସେ ସ୍ମିତ ହସଟିଏ ମୁହଁରେ ଦେଖାଇଥିଲେ । ମୁଁ ସେଥିରୁ ବୁଝିଥିଲି ସେ ହଁ-ହିଁ ଭରିଲେ । ପରବ ଅବସରରେ ପ୍ରକାଶିତ ସ୍ମରଣିକା ପ୍ରାୟତଃ ବିଳମ୍ବରେ ଆମେ ପ୍ରେସ୍‌ରୁ ପାଇଥାଉ । କିନ୍ତୁ ସେ ବର୍ଷ



Digitized by srujanika@gmail.com

ବସନ୍ତ ବାବୁ ପରବ ଉଦ୍‌ଘାଟନ ଉତ୍ସବର ଗୋଟିଏ ଦିନ ପୂର୍ବରୁ ସଂସ୍କୃତି ଭବନରେ ସ୍ମରଣିକା ପହଞ୍ଚାଇଥିଲେ । ମୋ କଥାର ଗୁରୁତ୍ୱ ରହିଥିଲା ଆଉ ବସନ୍ତ ବାବୁ ଜବାବ୍ ରକ୍ଷା କରିଥିଲେ । ଏଇ କଥାରୁ ତାଙ୍କର ମହତ ପଣିଆର ପରିଚୟ ମିଳେ । ଏତ ଗଲା ଗୋଟିଏ ଦୃଶ୍ୟର ଗୋଟିଏ ଅଙ୍କ ମାତ୍ର । ମୋ ସାମ୍ନାରେ ସଂପୂର୍ଣ୍ଣ ଦୃଶ୍ୟ ବାକି ଅଛି ।

ବସନ୍ତ ବାବୁ ଜଣେ ଉଚ୍ଚକୋଟୀର ସ୍ରଷ୍ଟା । ତାଙ୍କ କଲମ ଏବେ ବି ଚଳଚଞ୍ଚଳ । ଜଣେ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ରୂପେ ଓଡିଶାର ଶିଶୁ ସାହିତ୍ୟକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ଓଡିଶାରେ ଯେଉଁ କେତେଜଣ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ରାଜ୍ୟସ୍ତରୀୟ ଠାରୁ ଆନ୍ତର୍ଜାତୀୟ ସ୍ତର ପର୍ଯ୍ୟନ୍ତ ପ୍ରତିଷ୍ଠା ଲାଭ କରିଛନ୍ତି ତନ୍ମଧ୍ୟରେ ବସନ୍ତ ବାବୁ ଅନ୍ୟତମ । ତାଙ୍କର ବ୍ୟତୀତ ୩୨ରୁ ଉର୍ଦ୍ଧ୍ୱ ପୁସ୍ତକ ପ୍ରକାଶିତ ହେବା କମ୍ କଥା ନୁହେଁ । ସାହିତ୍ୟ ପ୍ରତି ତାଙ୍କର ଅବଦାନକୁ ଯେତେ ପ୍ରଶଂସା କଲେ କମ୍ ହେବ । ଅଧ୍ୟାପନା ପରେ ସାହିତ୍ୟ ପାଇଁ ଏକ ପ୍ରକାର ସମର୍ପିତ ବସନ୍ତ ବାବୁ ପ୍ରକୃତରେ ଅନ୍ୟ ଯୁବ କବି/ ସାହିତ୍ୟିକଙ୍କ ପାଇଁ ଅନନ୍ୟ ଆଦର୍ଶ । ଗଳ୍ପ ଲେଖିବାରେ ବି ଓସ୍ତାଦ ସିଏ । ତାଙ୍କର ବେଶ୍ କିଛି ଗଳ୍ପ ପଢିବାର ସୁଯୋଗ ପାଇଛି । ଚରିତ୍ର ଚିତ୍ରଣ, ଅଙ୍ଗସଜ୍ଜା ଏବଂ ବାସ୍ତବତାକୁ ଆଧାର କରି ନିଛକ ବିଷୟବସ୍ତୁ ମୋତେ ମୁଗ୍‌ଧ କରିଛି । ବସନ୍ତ ବାବୁ ଏକାଧାରରେ ଜଣେ ସଂଗଠକ ଶିଶୁ ସାହିତ୍ୟିକ, ପ୍ରାବନ୍ଧିକ, କବି, ସଂପାଦକ ଏବଂ ନିରୋଳା ପାଠକ । ବିବିଧ ବ୍ୟକ୍ତିତ୍ୱରେ ପରିପୂର୍ଣ୍ଣ ମଣିଷଟା କେବେ ଯେ ଏଥିପାଇଁ ତିଳେ ମାତ୍ର ଗର୍ବ କରନ୍ତିନି ସେଇଟା ତାଙ୍କର ବଡପଣିଆ । ଯାହାକୁ ମୁଁ ସମ୍ମାନ କରେ । ବଂଧୁ ହିସାବରେ ବଂଧୁଟିଏ । ଯାହାଙ୍କୁ ଦୂରେଇ ଦେଲେ ଦୁଃଖ ପ୍ରଚୁର ହେବ । ଏଇଥିପାଇଁ କହୁଚି ନିକଟ ଭବିଷ୍ୟତରେ ସେ ଅବସର ନେବେ । ପଚାରିଥିଲି-ଅବସର ପରେ ଯୋଜନା କ'ଣ ? ଗାଁ କୁ ଫେରିଯିବି । ସାଧାସିଧା ଉତ୍ତର । ଖୁବ୍ ସହଜରେ ସିନା ବସନ୍ତ ବାବୁ କହିଦେଲେ ମୋତେ କିନ୍ତୁ କେମିତି କେମିତି ଖାପ୍‌ଛଡା ଲାଗିଲା । ଯେଉଁ ସୁନାବେଡାରେ ଜୀବନର ମୂଲ୍ୟବାନ ସମୟ କାଟିବା ସହିତ ସୁନାବେଡା ସମେତ କୋରାପୁଟ ଜିଲ୍ଲାର ସାହିତ୍ୟିକ ପରିବେଶକୁ ସପ୍ରାଚ୍ଛନ୍ନ ରଖି ପାରିଥିଲେ ସେ ସହରକୁ କ'ଣ ସହଜରେ ତ୍ୟାଗ କରାଯାଇପାରେ ? ଏ ପ୍ରଶ୍ନରେ ମୁଁ ନିଜେ ଆନ୍ଦୋଳିତ ।

ଯେଉଁଠି ରହିଲେବି ସଂପର୍କ ଅତୁଟ ରହିବ । ବସନ୍ତ ବାବୁ ସହଜେ ଭୁଲିଯିବାର ଲୋକ ନୁହଁନ୍ତି । କାରଣ ବର୍ଷ ତମାମ ମୁଁ ତାଙ୍କଠାରୁ ଯେତିକି ଏସ୍.ଏମ୍.ଏସ୍ ପାଏ ସେତିକି ଫୋନ୍ କଲ୍ ମୁଁ ମୋ ମୋବାଇଲରେ ପାଇ ନଥାଏ । ପରିଶେଷରେ ଏତିକି କହିବି-ସୁନାବେଡା ହେଉ କି ବସନ୍ତ ବାବୁଙ୍କ ପ୍ରିୟ ଜନ୍ମମାଟି କୁସୁପୁର ହେଉ ଯେଉଁଠି ରହିଲେ ବି ଆମର ସଂପର୍କରେ ଭଟ୍ଟା ପଡିବନି । କାରଣ ସେ ଜଣେ ଦରଦୀ ବଂଧୁ ।



ଅଧିବକ୍ତା, କୋରାପୁଟ



Digitized by srujanika@gmail.com

# ତସ୍ମୈଶ୍ରୀ ଗୁରବେ ନମଃ

ପ୍ରହଲ୍ଲାଦ ଖିଲ

ପ୍ରାଚୀନ ଶିକ୍ଷା ଓ ଗୁରୁ ପରଂପରାର ମାନଦଣ୍ଡରେ ଆଜିର ଶିକ୍ଷା ବ୍ୟବସ୍ଥାକୁ ମାପିଲେ ଆଧୁନିକ ଶିକ୍ଷା ଅତି ନଗଣ୍ୟ ମନେ ହୁଏ । ଏ ଶିକ୍ଷା ବ୍ୟବସ୍ଥା ଏଭଳି ଯେ ଯେଉଁଠି ସଦ୍‌ଗୁରୁ ଅଛନ୍ତି ସେଇଠି ଉପଯୁକ୍ତ ଛାତ୍ର ନାହାନ୍ତି । ଯେଉଁଠି ମେଧାବୀ ଛାତ୍ରଛାତ୍ରୀ ଅଛନ୍ତି ସେଇଠି ଆଦର୍ଶ ଆଚାର୍ଯ୍ୟ ନାହାନ୍ତି । ଯେଉଁଠି ଆଦର୍ଶ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସାନିଧରେ କିଛି ଛାତ୍ର-ଛାତ୍ରୀ ଶିକ୍ଷାର ଦିବ୍ୟ ସ୍ପର୍ଶ ଲାଭ କରିବା ପାଇଁ ଆଶାୟୀ, ସେଇଠି ଅଧ୍ୟାପକ, ଅଧ୍ୟାପିକାଙ୍କ ପ୍ରତି ଶିକ୍ଷା ବିଭାଗର ଅତ୍ୟାଚାର ଓ ଦୁର୍ନୀତି କଥା କହିଲେ କୁଳ କୁଟୁମ୍ବକୁ ହିଁ ଲାଜ । ତଥାପି ଗୁରୁ ବ୍ୟକ୍ତିଗତ ଓ ବୃତ୍ତିଗତ ଜୀବନର ସମସ୍ତ ଯନ୍ତ୍ରଣାକୁ ପାନ କରି ଗୁରୁଙ୍କ କର୍ତ୍ତବ୍ୟ ପାଳନରେ ବ୍ରତି ରହନ୍ତି । ଏଇଥି ପାଇଁ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ପ୍ରତିଭୂ କୁହାଯାଏ । ତେଣୁ ଗୁରୁ ସଦାକାଳରେ ଜଣେ କର୍ମଯୋଗୀ । ଛାତ୍ର ଜୀବନରେ କଠୋର ସାଧନାର ସ୍ୱର୍ଣ୍ଣମୟ ଫଳ ସ୍ୱରୂପ ସେ ଗୁରୁ ଆସନରେ ଆସୀନ ହେବାର ଯୋଗ୍ୟ ହୋଇପାରିଛନ୍ତି । ତେଣୁ ଗୁରୁ ସେଭଳି ସାଧନାରେ ବ୍ରତି ରହି ଜୀବନ ନିର୍ମାଣ କରିବା ପାଇଁ ସର୍ବଦା ଛାତ୍ରମାନଙ୍କୁ ପ୍ରେରଣା ଓ ଉତ୍ସାହ ପ୍ରଦାନ କରିଥାନ୍ତି । ମୁଁ ମୋ ଛାତ୍ର ଜୀବନରେ ଯେଉଁ କର୍ମବୀର ଗୁରୁମାନଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଛି, ସେହି ନମସ୍ୟ ଗୁରୁମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଜଣେ ।

ଜୀବିକା ଜୀବନ ନିର୍ବାହର ଅବସରରେ ଅଧ୍ୟାପକ ଡ. ବସନ୍ତ କିଶୋର ସାହୁ ଛାତ୍ରଛାତ୍ରୀ ମାନଙ୍କୁ ସଜାଡିବାର ଯଥେଷ୍ଟ ପ୍ରୟାସ କରିଛନ୍ତି । ସେ ପ୍ରୟାସରେ ମୁଁ 'କୁ' ବାଟରୁ ନିବୃତ୍ତ ହୋଇ 'ସୁ' ବାଟରେ ପାଦ ଦେବାରେ ସଫଳ ହୋଇଛି । ସମ୍ଭବତଃ ସେଇଥି ପାଇଁ ପୂଜ୍ୟ ଗୁରୁଜୀ ଡକ୍ଟର ରଘୁନାଥ ମେହେରଙ୍କ ସ୍ଥାୟୀ ବାସଭବନ, ସମ୍ବଲପୁରରେ ରହି ଅଧ୍ୟୟନ କରିବାର ସୁଯୋଗ ପାଇଛି । ଜାଣେନା ସିଦ୍ଧି ମୋତେ ସ୍ପର୍ଶ କରିବ କି ନାହିଁ ।

ସିଦ୍ଧିର ଅର୍ଥ କୌଣସି ନିର୍ଦ୍ଦିଷ୍ଟ ବିଷୟରେ ଦକ୍ଷ ବା ପ୍ରବୀଣ ହୋଇଯିବାକୁ ବୁଝାଏ ନାହିଁ । ସିଦ୍ଧି ସେହି ସାଧନାର ଅମୃତମୟ ଫଳ ଯାହା ଦ୍ୱାରା ନୀତିମାର୍ଗକୁ ଆୟତ କରି ବିଷୟ ଜଗତକୁ ଜୟ କରାଯାଇଥାଏ । ଆତ୍ମତତ୍ତ୍ୱ ବୁଝିପାରି 'ଶରୀରତତ୍ତ୍ୱକୁ ଖ୍ୟାତ କରାଯାଇଥାଏ । କଳା, ବାଣିଜ୍ୟ, ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ପ୍ରଭୃତି ଶିକ୍ଷାର ଏକ ଏକ ଅଙ୍ଗ ନିଶ୍ଚୟ । କିନ୍ତୁ ସେଥିରେ ସଂଶ୍ଳିଷ୍ଟ ରହି ସେହି ସେହି ବିଷୟରେ ଦକ୍ଷତା ହାସଲ



Digitized by srujanika@gmail.com

କରିଦେଲେ ଶିକ୍ଷାର କର୍ମ ଶେଷ ହୋଇଯାଏ ନାହିଁ । ସେଥିରେ ଜଡିତ ରହି ମାନସିକ ଏକାଗ୍ରତା, ଚିତ୍ତର ପବିତ୍ରତା ତଥା ଚରିତ୍ରର ମହନୀୟତା ସାଧି ପାରିଲେ ଶିକ୍ଷାର ଅର୍ଥ ଅକ୍ଷୁର୍ଣ୍ଣ ରହି ସିଦ୍ଧି ଉଦ୍ଦେଶ୍ୟରେ ପଥ ପରିଷ୍କାର ହୋଇଥାଏ । ଏଥିପାଇଁ ଆବଶ୍ୟକ ଅନୁଶାସନ ଡ.ବସନ୍ତ କିଶୋର ସାହୁ ଶିକ୍ଷାଦାନ ଭିତରେ ସ୍ଥାନିତ କରିଥାନ୍ତି । ଫଳତଃ ବହୁ ଛାତ୍ରଛାତ୍ରୀ ବିନଷ୍ଟ ପଥରୁ ନିବୃତ୍ତ ହୋଇ ଜୀବନ ଯୁଦ୍ଧରେ ତିଷ୍ଠି ରହିବାରେ ସକ୍ଷମ ହୋଇପାରିଛନ୍ତି । ଅଧ୍ୟୟନ ଅବସରରେ ଏରୋନୋଟିକସ୍ ସହିତ ଜଡିତ ମୋର କିଛି ପ୍ରତ୍ୟକ୍ଷ ଅନୁଭୂତିର ସ୍ପନ୍ଦନରୁ ବସନ୍ତ କିଶୋରଙ୍କର ବ୍ୟକ୍ତିତ୍ୱ ଚରିତ୍ର, ଆଚରଣ ତଥା ଶିକ୍ଷାଦାନ ଶୈଳୀକୁ ନିର୍ଦ୍ଦେଶିତ କରିବାର ପ୍ରୟାସ କରୁଛି ।

୨୦୦୪ ମସିହା ଏରୋନୋଟିକସ୍ ମହାବିଦ୍ୟାଳୟର +୨ କଳା ଶ୍ରେଣୀର ମୁଁ ଛାତ୍ର ଥାଏ । ଆଖିରେ ଅନିଶ୍ଚିତ ଭବିଷ୍ୟତର ଏକ ପ୍ରସାରିତ ଚାହାଣୀ ନେଇ ବସିଥାଏ ପ୍ରଥମ ଧାଡିରେ । ସମ୍ମୁଖରେ ଡ.ବସନ୍ତ କିଶୋର ସାହୁ । ଗାମ୍ଭୀର୍ଯ୍ୟ ସ୍ୱରରେ ପ୍ରଶ୍ନ କଲେ-କେଉଁମାନେ ପଦ୍ୟ ମଞ୍ଜରୀ ବହି ଆଣି ନାହଁ ଠିଆ ହୁଅ । ମୋତେ ମିଶାଇ ପ୍ରାୟ ୨୦ ପ୍ରତିଶତ ଛାତ୍ରଛାତ୍ରୀ ନିର୍ଲଜ ଭଳି ଠିଆ ହେଲେ । ଛାତ୍ରଛାତ୍ରୀ ମାନଙ୍କର ଦାୟିତ୍ୱ ହୀନତା ଏବଂ ଶୃଙ୍ଖଳା ଜ୍ଞାନର ଅଭାବ ବୋଧକୁ ପରିହାସ କରି ହସିବା ପରେ ପରବର୍ତ୍ତୀ ଶ୍ରେଣୀରେ ସମସ୍ତଙ୍କ ପାଖରେ ବହିଥିବା କିମ୍ବା ବିଷୟ ସୂଚୀ ଅନ୍ତର୍ଗତ ସମସ୍ତ କବିତା ଟିପା ଖାତାରେ ଟିପା ହୋଇଥିବ ବୋଲି ନିର୍ଦ୍ଦେଶ ଦେଲେ । କିଛି ଛାତ୍ରଛାତ୍ରୀ ନିର୍ଦ୍ଦେଶକୁ ପାଳନ କଲେ, ଅନ୍ୟମାନେ ପୂର୍ବବତ୍ ପ୍ୟାଣ୍ଟର ପଛ ଆଡେ ଟିପାଖାତା ରଖି ଶ୍ରେଣୀକୁ ଆସିଲେ । ପୁଣି ସେହି ପ୍ରଶ୍ନ କେଉଁମାନଙ୍କ ପାଖରେ ବହି ନାହିଁ ଛିଡାହୁଅ । କେହି ଉଠିଲେ ନାହିଁ । କହିଲେ ଅତି ଉତ୍ତମ, ଏଥର ସାର୍ ଜଣ ଜଣ କରି ସମସ୍ତଙ୍କ ବହି ଦେଖିବାକୁ ବାହାରିଲେ । ମୋ ସହିତ ବସିଥିବା ରାଜେଶ ଚକ୍ରବର୍ତ୍ତୀ ନାମକ ଛାତ୍ର ତତ୍କ୍ଷଣାତ୍ ପଛ ବେଞ୍ଚ ପିଲାଙ୍କ ଠାରୁ ଗୋଟିଏ ବହି କୌଶଳରେ ମାଗି ଆଣିଲା । ସେହି ଗୋଟିଏ ବହିକୁ ଦୁଇଜଣ ଜଣେ ପରେ ଜଣେ ଦେଖାଇ ସେହି କ୍ଷଣ ପାଇଁ ବର୍ତ୍ତିଗଲୁ । ହେଲେ ଛାତ୍ରୀଙ୍କ ପାଳି ଯେତେବେଳେ ପଡିଲା, ସେତେବେଳେ ଜଣେ ଛାତ୍ରୀ ଆମ ଦୁହିଁଙ୍କ କ୍ରିୟା କାଣ୍ଡର ରହସ୍ୟ ଉନ୍ମୋଚନ କଲା । ଆମ ଦୁହିଁଙ୍କ ଗାଲରେ ବସିଲା ଗୋଟାଏ ଗୋଟାଏ ଶକ୍ତ ଚାପୁଡା ।

ବହୁ ଛାତ୍ରଛାତ୍ରୀଙ୍କ ଧାରଣା ଥାଏ, ଓଡ଼ିଆ ପାଠ ଗୋଟିଏ ସହଜ ବିଷୟ । ଶ୍ରେଣୀରେ ପାଠ ଶୁଣିବା, ଭିନ୍ନ ଭିନ୍ନ ବହି ପଢି ନୋଟ୍ ପ୍ରସ୍ତୁତ କରିବାର କ'ଣ ଆବଶ୍ୟକ ଅଛି । ସାଥୀ ବହି ଜିନ୍ଦାବାଦ୍, ଟିଉସନ୍ ତ ପୁଣି ଅଛି । ଶ୍ରେଣୀରେ କେବଳ ଆଟେଣ୍ଡାନସ ପଡିଲେ ହେଲା । କୌଣସି ଝିଅ କିମ୍ବା ପୁଅକୁ ଫସେଇ ଜୀବନକୁ ରଙ୍ଗୀନ୍ କରିବା ନିମିତ୍ତ କଲେଜ ଏକ ରଙ୍ଗଭୂମି । ସେହି ଚେତନାରେ ଛାତ୍ରଛାତ୍ରୀ ଉଶୃଙ୍ଖଳିତ ହୁଅନ୍ତି । ଆଦର୍ଶ ଓ ନୈତିକତାର ମୂଲ୍ୟବୋଧ ହରାଇ ସୁଧାମୟ ଜୀବନରେ କଳଙ୍କିତ ଅଧ୍ୟାୟ ସବୁ ସୃଷ୍ଟି କରନ୍ତି । ତେଣୁ ଯୌବନ ବିଷମ କାଳ । ଏହି କାଳରେ ଗୋଡ ଖସିବାର



Digitized by srujanika@gmail.com

ଯେତିକି ସମ୍ଭାବନା ଅଛି, ବିଦ୍ୟାର୍ଜନ ଓ ଈଶ୍ୱର ଆରାଧନାର ସେତିକି ପ୍ରଶସ୍ତ କ୍ଷେତ୍ର ରହିଛି । ଏହି ବିଷମ କାଳ ଓ ବିଦ୍ୟା ସାଧନାକୁ ଏକୀଭୂତ କରିବାକୁ ହେଲେ ଅନୁଶାସନ ଦରକାର । ଅନୁଶାସନ ସହିତ ଶ୍ରଦ୍ଧା ଓ ସମ୍ବେଦନା ଦରକାର । ଡ.ବସନ୍ତ କିଶୋର ସାହୁଙ୍କ ଶିକ୍ଷାଦାନର ଶୈଳୀ ଭିତରେ ଏ ଉଭୟକୁ ଯୋଡିଛନ୍ତି ।

ଶିକ୍ଷାଦାନ ବେଳେ ଶିକ୍ଷକଙ୍କର ଦୃଷ୍ଟିଥାଏ ଛାତ୍ର ଉପରେ । ଛାତ୍ର ଯେତେବେଳେ ସତ୍‌ଶିକ୍ଷା ଆହରଣ ପୂର୍ବକ ପ୍ରଗତି ପଥରେ ଅଗ୍ରସର ହେଉଥାଏ, ଗୁରୁଙ୍କ ମନ ଆନନ୍ଦ ବିଭୋର ହୋଇଉଠେ । ଅପର ପକ୍ଷରେ ସାଧନାର ଭଗ୍ନ ହୋଇ ଛାତ୍ରର ଚାରିତ୍ରିକ ସ୍ଖଳନ ଘଟିଲେ ଗୁରୁଙ୍କ ମନରେ ଦୁଃଖ ଜାତ ହୁଏ । ଏଥି ସହ ଛାତ୍ର ଜୀବନରେ ପୁଣି ଥରେ ସଂସ୍କାର ଆଣିବାର ପ୍ରଚେଷ୍ଟାରେ ଗୁରୁଙ୍କୁ କଠୋର ହେବାକୁ ପଡିଥାଏ । ଏଥି ପାଇଁ ଡ.ବସନ୍ତ କିଶୋର ବହୁ ବାର ଭିନ୍ନ ରୂପ ଧାରଣ କରିଛନ୍ତି । ଶ୍ରେଣୀରେ ଥରେ ମାତୃଭାଷା ପଢାଉଥିବା ବେଳେ ଦେବୀ ପ୍ରତିମା ନାମ୍ନୀ ଛାତ୍ରୀ ବହି ଭିତରେ ରଖିଥାଏ ନାଲି ରଙ୍ଗର ସତେଜ ଗୋଲାପ ଫୁଲ । ପାଠ ପ୍ରତି ଧ୍ୟାନ ହଟାଇ ବାରମ୍ବାର ଦେଖୁଥାଏ ବହି ଭିତରେ ରଖିଥିବା ଫୁଲକୁ । ତା'ର ସୌରଭରେ ସତେ ଯେମିତି ଆତ୍ମବିଭୋର ହୋଇ ଉଠୁଥାଏ । ହଠାତ୍ ସାର୍‌ଙ୍କର ଦୃଷ୍ଟି ତା ଉପରେ ପଡିଲା । ସଙ୍ଗେ ସଙ୍ଗେ ତା ପାଖକୁ ଯାଇ ବହିଟିକୁ କଳାପଟା ଦିଗରେ ଫୋପାଡି ଦିଅନ୍ତେ ଗୋଲାପ ଫୁଲର ପ୍ରତିଟି ପାଖୁଡା ଉପରୁ ଖସିବାରେ ଲାଗିଲା । ଆଲୋଚିତ ବିଷୟ ସଂପର୍କରେ ପ୍ରଶ୍ନ କଲେ ଛାତ୍ରୀ ନିରୁତ୍ତର । ଫୁଲ ଆଣିବାର ଉଦ୍ଦେଶ୍ୟ ପଚାରିଲେ, ଉତ୍ତର ନାହିଁ । ଫୁଲ କାହିଁକି ଆଣିଥିଲା, ଆଣିଲା ତ ଆଣିଲା ପୁଣି କାହିଁକି ବାରମ୍ବାର ଦେଖୁଥିଲା, ଝିଅଟି ନିଜେ ହିଁ ସେ କଥା ଜାଣିଥିଲା । ଛାତ୍ରଛାତ୍ରୀ ଭିନ୍ନ ଭିନ୍ନ ଅର୍ଥ ବୁଝିଲେ । ସାର୍ କହିଲେ ମୋର ପ୍ରତିକ୍ରିୟା କିମ୍ବା ଛାତ୍ରଛାତ୍ରୀ ମାନଙ୍କର ଭିନ୍ନ ମତକୁ ମନାନ୍ତରର ସ୍ତରକୁ ଉନ୍ନିତ ହେବାକୁ ଦେବୁ ନାହିଁ । ସେଇଠି ତୋର ପତନ ହେବ । ପାଠ ପ୍ରତି ଧ୍ୟାନ ଦେ, ସେଥିରେ ହିଁ ତୋର କଲ୍ୟାଣ ଅଛି । ସେହି ଝିଅ ଆଜି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ କୋରାପୁଟରେ ଇଂରାଜୀ ଭାଷା ସାହିତ୍ୟ ବିଭାଗର ସ୍ନାତକୋତ୍ତର ଶ୍ରେଣୀର ଛାତ୍ରୀ । ସେ ଦିନ ଗୋଲାପ ଫୁଲରେ ଆସନ ବିଛାଇ ବଡ ହେବାର ସ୍ୱପ୍ନ ଭିତରୁ ନିବୃତ୍ତ ହୋଇ ନଥିଲେ ହୁଏତ ସେ ଏହି ସ୍ତରକୁ ଉନ୍ନିତ ହୋଇ ପାରି ନଥାନ୍ତା ।

ଆଧ୍ୟାତ୍ମିକ ସମ୍ଭାର ତଥା ମାନବ ଠାରେ ମାନବିକତାର ଜାଗରଣ ହିଁ ଶିକ୍ଷାର ଧର୍ମ । ଅଧ୍ୟୟନ ତଥା ସାଧନା ବ୍ୟାହତ ହେଲେ ଶିକ୍ଷାର ଧର୍ମ ସାଧିତ ହୋଇପାରେ ନାହିଁ । କାରଣ ସାଧନାରେ ବିରାମ ପଡିଲେ ମନ ନାନା ରକମର କୁଚିନ୍ତାରେ ସଂଶ୍ଳିଷ୍ଟ ହେବାର ସୁଯୋଗ ପାଏ । ତେଣୁ ପାଠ ପ୍ରତି ଛାତ୍ରର ଏକାଗ୍ରତାକୁ ଅବ୍ୟାହତ ରଖିବା ପାଇଁ ପଠିତ ବିଷୟ ବସ୍ତୁ ସଂପର୍କରେ ଶିକ୍ଷକ ଛାତ୍ରକୁ ବାରଂବାର ପ୍ରଶ୍ନ କରିଥାନ୍ତି କିମ୍ବା ପରୀକ୍ଷା କରିଥାନ୍ତି । ସେହି ନ୍ୟାୟରେ ବସନ୍ତ ସାର୍ ଶ୍ରେଣୀରେ ଯାହା ଆଲୋଚନା କରିଥାନ୍ତି ପରବର୍ତ୍ତୀ ଶ୍ରେଣୀରେ ପ୍ରଥମେ ସେ ବିଷୟରେ ପ୍ରଶ୍ନ କରନ୍ତି କିମ୍ବା ପରୀକ୍ଷା



Digitized by srujanika@gmail.com

କରନ୍ତି । ପୂର୍ବ ଶ୍ରେଣୀରେ ଆଲୋଚିତ ହୋଇଥିବା 'ଭୀଷ୍ମଙ୍କ ଉପଦେଶ' ଶୀର୍ଷକ କବିତାରୁ ସାର୍ ପ୍ରଶ୍ନ ପଚାରିଲେ । ପ୍ରଶ୍ନଟି ଥିଲା-" କ୍ରମାନ୍ୱୟରେ ପଞ୍ଚୁପାଣ୍ଡବଙ୍କ ନାମ କୁହ ।" ବହୁ ଜଣ କହି ପାରିଲେ ନାହିଁ । ସେମାନଙ୍କ ଭିତରେ ଥିଲି ମୁଁ ବି ଜଣେ । ଏଥିପାଇଁ ଆମ୍ଭମାନଙ୍କୁ ଶ୍ରେଣୀ ଭିତରେ କାନଧରି ଆଣ୍ଠେଇବାକୁ ପଡିଲା । ସର୍ତ୍ତ ଥିଲା ପ୍ରଶ୍ନର ଉତ୍ତର ଆଜି ପୁଣି ଥରେ କୁହାହେବ । ତାକୁ ମୁଖସ୍ତ କରି ଯେଉଁମାନେ କହିବେ, ସେମାନ ବସିବେ, ଅନ୍ୟଥା ସେହି କ୍ଲାସ୍ ସରିବା ପର୍ଯ୍ୟନ୍ତ ସେମିତି ଆଣ୍ଠେଇ ଥିବେ । ପାଠପଢାରେ କୌଣସି ଦୟାମାୟା ନାହିଁ । ଠିକ୍ ସେହିପରି ଗୋଟିଏ ବିଷୟର ପରିସମାପ୍ତି ପରେ, ଆସନ୍ତା ଶ୍ରେଣୀରେ ସାର୍ ସେହି ବିଷୟରେ ଲିଖିତ ପରୀକ୍ଷା ନିଅନ୍ତି । ପରୀକ୍ଷା ଶୈଳୀ ଥିଲା ନିଆରା । ଯୁଗ୍ମ ସଂଖ୍ୟା ବିଶିଷ୍ଟ ରୋଲ ନଂ ଧାରୀ ଛାତ୍ରଙ୍କ ପାଇଁ ଗୋଟିଏ ପ୍ରଶ୍ନ ଏବଂ ଅଯୁଗ୍ମ ସଂଖ୍ୟା ବିଶିଷ୍ଟ ରୋଲ ନଂ ଧାରୀ ଛାତ୍ରଛାତ୍ରୀ ମାନଙ୍କ ପାଇଁ ଆଉ ଗୋଟିଏ ପ୍ରଶ୍ନ । ଅତି ସଂକ୍ଷିପ୍ତ ଉତ୍ତର ମୂଳକ ପ୍ରଶ୍ନ କ୍ଷେତ୍ରରେ ଉଭୟ ଦଳକୁ ଦଶ ଦଶଟି ପ୍ରଶ୍ନର ଉତ୍ତର ଲେଖିବାକୁ ହେଉଥିଲା । ପ୍ରଥମେ ଯୁଗ୍ମସଂଖ୍ୟା ବାଲାଙ୍କୁ ଗୋଟିଏ ପ୍ରଶ୍ନ କହି ଅଯୁଗ୍ମ ସଂଖ୍ୟା ବାଲାଙ୍କୁ ଅନ୍ୟ ଏକ ପ୍ରଶ୍ନ କହିଲା ଭିତରେ ଯୁଗ୍ମସଂଖ୍ୟା ବାଲା ସେମାନଙ୍କ ପ୍ରଶ୍ନର ଉତ୍ତର କରିବାକୁ ପଡୁଥିଲା । ଅର୍ଥାତ ଦଳେ ପ୍ରଶ୍ନ ଲେଖିଲା ବେଳକୁ ଆଉ ଦଳେ ଉତ୍ତର ଲେଖୁଥିଲେ । ଦଳେ ଉତ୍ତର ଲେଖିଲା ବେଳକୁ ଆଉ ଦଳେ ପ୍ରଶ୍ନ ଲେଖୁଥିଲେ । ଏଭଳି ପରିସ୍ଥିତିରେ ମୋର ରୋଲନଂ ଥିଲା ୭୬ (୦୬୪୨୧୦୭୬) ମୋ ସହିତ କୋରାପୁଟରୁ ଯିବା ଆସିବା କରୁଥିବା ବନ୍ଧୁ ନରେନ୍ଦ୍ରର ରୋଲନଂ ଥିଲା ୭୯ (୦୬୪୨୧୦୭୯) ସେଦିନ ଏଭଳି ଏକ ପରୀକ୍ଷାର ଦିନ । ଦୁର୍ଯୋଗକୁ ଦୁହିଁଙ୍କ ପାଖରେ ଥିଲା ଗୋଟିଏ କଲମ । ସେ ତାର ପ୍ରଶ୍ନ ଲେଖିଲା ବେଳକୁ ମୁଁ ମୁଣ୍ଡ ତଳକୁ କରି ବସି ରହୁଛି । ମୁଁ ମୋ ପ୍ରଶ୍ନ ଲେଖିଲା ବେଳକୁ ତାର ଉତ୍ତର ଲେଖିବାର ପାଳି । କଲମ ନାହିଁ ଉତ୍ତର ଲେଖିବ କ'ଣ ? ମର୍କଟ ତୁଲ୍ୟ ଶ୍ରେଣୀ ଗୃହର ଚାରିଆଡେ ଅନାଉଛି । ବସନ୍ତ ସାର୍‌ଙ୍କର ଅନୁସନ୍ଧାନୀ ଦୃଷ୍ଟି ଆମ ଉପରେ କେନ୍ଦ୍ରୀଭୂତ ହେଲା । ପିଠିରେ ବସିଲା ମାଡ ଉପରେ ମାଡ । ଗୋଟିଏ କଲମରେ ଦୁଇଜଣ ପରୀକ୍ଷା ଦେଉଥିବାର ବିରଳ ଦୃଶ୍ୟ ଦେଖିବାକୁ ଶ୍ରେଣୀର ସମସ୍ତେ ଆମ ଆଡେ ଥରେ ଅନାଇଲେ । ଦାୟିତ୍ୱହୀନ ଓ ସଚେତନତାର ଅଭାବରେ ଏଭଳି ମାଡ ବସେ । ସେଇଥି ପାଇଁ ବୋଧେ ବସନ୍ତ ସାର୍ ନିଜ କବିତାରେ ଲେଖିଛନ୍ତି -

" ଆଡୁଆରେ ଭାଇ ଅଡୁଆ
ତେଢିଆ ଲୋକର
ପିଠିରେ ବସଇ
ବାଡିଆରେ ଖାଲି ବାଡିଆ ॥
ଅଡୁଆରେ ଭାଇ ଅଡୁଆ
ପାଠ ନ ପଢିଲେ



Digitized by srujanika@gmail.com

ଶୁଣିବାକୁ ମିଳେ
ଗୁରୁଙ୍କଠୁ କଥା କଡୁଆ ।।”
(ଅଡୁଆରେ ଭାଇ ଅଡୁଆ)

ଡକ୍ଟର ବସନ୍ତ କିଶୋର ସାହୁ ଅନୁଭୂତି ଓ ଅଭିଜ୍ଞତା ସଂପନ୍ନ ସାଧୁ ଶିକ୍ଷକ । ଘରେ ବସି ରହି ବିଭିନ୍ନ ପୁସ୍ତକ ଅଧ୍ୟୟନ କରି ଜ୍ଞାନ ଅର୍ଜନ କରାଯାଇ ପାରେ, କିନ୍ତୁ ଅନୁଭୂତି ଲାଭ କରିହୁଏ ନାହିଁ । ଫଳତଃ ଜଣେ ଅନୁଭବି ଶିକ୍ଷକ ଛାତ୍ରର ଚେହେରା ପଢି ମୋ ମନର ଭାବ ସଂପର୍କରେ ସହଜରେ ଅବଗତ ହୋଇ ପାରନ୍ତି । ବସନ୍ତ ସାର୍ ଅନୁଭୂତିର ଗଭୀରତାରେ ଯେଉଁଠି ଛାତ୍ରଛାତ୍ରୀଙ୍କ ଭିତରେ ଦୋଷ ତ୍ରୁଟି ଦେଖିଛନ୍ତି ଅନୁଶାସନରେ ଦଣ୍ଡଧରି ସଂଶୋଧନ କରିବାର ପ୍ରୟାସ କରିଛନ୍ତି । ଶିକ୍ଷାଦାନ ଅବସରରେ ଛାତ୍ରଛାତ୍ରୀଙ୍କ ଭିତରେ ନୈତିକତାର ମୂଲ୍ୟବୋଧ, ମାନବୀୟ ସଂ ଦନଶୀଳତା, ମହାଭାରତୀୟ ଆଦର୍ଶର ପ୍ରତିଷ୍ଠା ନିମିତ୍ତ ଯଥା ସମ୍ଭବ ଚେଷ୍ଟା କରିଛନ୍ତି । ବିଷୟବସ୍ତୁର ଚମତ୍କାର ଉପସ୍ଥାପନା ଶୈଳୀ ଭିତରେ ଲବ୍ଧ ଶିକ୍ଷା ଓ ତତ୍ତ୍ୱକୁ ବାସ୍ତବ ଜୀବନରେ ପ୍ରୟୋଗ କରିବାର ସୁଫଳ ସଂପର୍କରେ ସେ ବହୁ କଥା ଶିଖାଇଛନ୍ତି । କାରଣ କୌଣସି ବିଷୟକୁ ଅଧ୍ୟୟନ କରିବାର ଉଦ୍ଦେଶ୍ୟ କେବଳ ପରୀକ୍ଷା ନୁହେଁ । ସେହି ବିଷୟବସ୍ତୁ ଅନ୍ତର୍ଗତ ଚରିତ୍ରର ଚାରିତ୍ରିକ ଆଦର୍ଶରେ ନିଜକୁ ପରଖିବା ବିଦ୍ୟାର୍ଥୀର ଧର୍ମ । ଭୀଷ୍ମଙ୍କ ଉପଦେଶ କବିତା ଆଲୋଚନା ପ୍ରସଙ୍ଗରେ ସେ ଦିନର ଉଦାହରଣ ଆଜି ସ୍ମରଣକୁ ଆସେ । ଆମେ ଭୀଷ୍ମ ହୋଇ ପାରିବା ନାହିଁ, ଭୀଷ୍ମଙ୍କ ଭଳି ଅସାଧାରଣ ଅଖଣ୍ଡ ପ୍ରତିଜ୍ଞା ମଧ୍ୟ ନେଇ ପାରିବା ନାହିଁ । କିନ୍ତୁ ପ୍ରତିଜ୍ଞା ନେଇ ପାରିବା, କାରଣ ପ୍ରତିଜ୍ଞା ସଂଯମର ହିଁ ଏକ ଶ୍ରେଷ୍ଠ ରୂପ । ପ୍ରତିଜ୍ଞା ମୋହ ଓ ଆକର୍ଷଣ ଠାରୁ ମୁକ୍ତ ରହିବା ନିମିତ୍ତ ଏକ ଶ୍ରେଷ୍ଠ ବିଚାର । ପ୍ରତିଜ୍ଞା ଆପଣାକୁ ବନ୍ଧନରେ ବାନ୍ଧି ରଖିବାକୁ କରାଯାଇଥାଏ । ବିଦ୍ୟାର୍ଥୀ ଏଭଳି କିଛି ପ୍ରତିଜ୍ଞା କରି ଜୀବନକୁ ଶୃଙ୍ଖଳିତ କଲେ କିମ୍ବା ବିଷୟବସ୍ତୁକୁ ବୁଝି ତଦନୁ ରେ ଜୀବନରେ କିଛି ପରିବର୍ତ୍ତନ ଆଣି ପାରିଲେ ବିଦ୍ୟାର୍ଥୀ ଯଥାର୍ଥରେ ଶିକ୍ଷାଲାଭ କଲା ବୋଲି ବୁଝିବାକୁ ହେବ । ବସନ୍ତ ସାର୍‌ଙ୍କର ଏଭଳି ଶିକ୍ଷାଦାନ ପଦ୍ଧତି ବହୁ ଛାତ୍ରଛାତ୍ରୀଙ୍କୁ ପ୍ରଭାବିତ କରିଛି ।

ଡ.ବସନ୍ତ କିଶୋର ସାହୁ ବାହାରେ ଯେତେ କଠୋର ଭିତରେ ମଧ୍ୟ ସେତିକି ନରମ । ସେ ସାହିତ୍ୟର ଛାତ୍ର । ସାହିତ୍ୟ ଭିତରେ ସମ୍ବେଦନା ଅଛି । ସମ୍ବେଦନା ଭିତରେ ଅନେକ ସୁଖ ଦୁଃଖର ଇତିହାସ ଅଛି । ଯିଏ ଏହି ସମ୍ବେଦନାକୁ ବୁଝିଛି ସେ ଯେ କୌଣସି ପଦପଦବୀରେ ଥାଉ ନା କାହିଁକି ତାର ଦୃଷ୍ଟିକୋଣ ସମ୍ମୁଖସ୍ଥ ବ୍ୟକ୍ତି ବା ବିଷୟ ଛାଡି ଦୂରକୁ ବହୁ ଦୂରକୁ ଚାଲିଯାଏ । ଯେଉଁଠି ବ୍ୟକ୍ତି ଦେଖିଥାଏ ଭିନ୍ନ ଭିନ୍ନ ଜଗତକୁ, ବ୍ୟକ୍ତି ନିକଟରେ ଥିବା ବିଷ ଓ ଅମୃତକୁ । ଫଳତଃ ବସନ୍ତ ସାର୍ ଛାତ୍ର ଚିହ୍ନିବାରେ କେଉଁଠି ହେଲେ ଭୁଲ୍ କରିନାହାନ୍ତି । ପରୀକ୍ଷାରେ ରଖିଥିବା ପଞ୍ଚାନବେ, ଶତାନବେ ପ୍ରତିଶତ ନମ୍ବର ଆଧାରରେ ସେ ଛାତ୍ରର ସ୍ୱାଭିମାନ, ଚରିତ୍ର, ବ୍ୟକ୍ତିତ୍ୱ ତଥା ତା'ର ଭବିଷ୍ୟତ



Digitized by srujanika@gmail.com

ସମ୍ଭାବନାକୁ ମୂଲ୍ୟାୟନ କରି ନାହାନ୍ତି । ବର୍ତ୍ତମାନ ସମୟରେ First Class ଦିଆଯାଉଛି, ସେତେବେଳେ First Class ଆଣିବାକୁ ପଡୁଥିଲା । ତେଣୁ ଏ ସବୁର ଊର୍ଦ୍ଧ୍ୱରେ ସେ ଛାତ୍ର ବା ବ୍ୟକ୍ତିର କର୍ମ ଓ ଚରିତ୍ରକୁ ହିଁ ପ୍ରାଧାନ୍ୟ ଦେଇଛନ୍ତି । ତାଙ୍କର ସ୍ୱରଚିତ କବିତାର ନିମ୍ନୋକ୍ତ ପଂକ୍ତିରୁ ଏହା ସ୍ପଷ୍ଟ ହୁଏ ।

"ଭୋକ ଉପାସରେ ରହେ ନାହିଁ କେହି
ଯଦି ହୋଇଥାଏ କାମିକା,
ଚରିତ୍ର ନଥିଲେ ପଚାରେନି କେହି
ପିନ୍ଧିଥିଲେ ବି ବାସ ଦାମିକା ।" (ଭଲମନ୍ଦ)

ନାନା ଉପଦେଶ, ଶାସନ, ଅନୁଶାସନର ସୁଫଳରେ ଚରିତ୍ରର ଗଠନ ହୋଇଥାଏ । ତେବେ ଯାଇ ଆଧ୍ୟାତ୍ମିକତାର ଅଗ୍ନିରେ କାମ, କ୍ରୋଧ, ଲାଳସା, ଗର୍ବ, ଅହଂକାରର ବିନାଶ ହୋଇଥାଏ ।

ବସନ୍ତ ସାର୍ ଜଣେ ଚରିତ୍ରବାନ୍ ଆଦର୍ଶ ଶିକ୍ଷକ । ସେ ବଳିଷ୍ଠ ବ୍ୟକ୍ତିତ୍ୱ ସଂପନ୍ନ ପ୍ରଜ୍ଞା-ପୁରୁଷ । ତାଙ୍କ ନିକଟରେ କୌଣସି ଛଳନା ନାହିଁ, ପ୍ରତାରଣା ନାହିଁ । ଉଦାରତା ତାଙ୍କ ଭିତରେ ପ୍ରଚୁର । ଶିକ୍ଷା କ୍ଷେତ୍ରରେ ଯେଉଁଠି ଯାହା ପାଇଁ ଯେମିତି ଆବଶ୍ୟକ ସେତିକି ପ୍ରଦାନ କରିଛନ୍ତି । ଶିକ୍ଷା ଓ ସଂସ୍କାରର ରକ୍ତରାଗ ଦେଇ ସେ ଶହ ଶହ ମଣିଷ ଗଢିଛନ୍ତି । ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ ସାହାଯ୍ୟ ଓ ସହଯୋଗର ହାତ ବଢାଇ ଜଣେ ଛାତ୍ର ବତ୍ସଳ ଅଧ୍ୟାପକ ହୋଇ ପାରିଛନ୍ତି । ଚାକିରି ବ୍ୟବସ୍ଥାରେ ବୃତ୍ତିଗତ ଜୀବନରେ ଅବସର ଆସେ । ଏହି ପ୍ରକ୍ରିୟାରେ ସାର୍ ଅବସର ଗ୍ରହଣ କରିବେ । ତାଙ୍କର ଅଭାବ ଏରୋନଟିକସ୍ ମହାବିଦ୍ୟାଳୟ ସବୁଦିନ ଅନୁଭବ କରୁଥିବ । କିନ୍ତୁ ଛାତ୍ରଛାତ୍ରୀମାନଙ୍କ ନିକଟରେ ସେ ଚିରସ୍ମରଣୀୟ ହୋଇ ରହିଥିବେ । କାରଣ ଗୁରୁ ଶିଷ୍ୟଙ୍କର ସମ୍ପର୍କ ବହିର୍ଜଗତର ନୁହେଁ, ଏ ସମ୍ବନ୍ଧ ଅନ୍ତର୍ଜଗତର । ଏ ସମ୍ବନ୍ଧ ଦାନ ପ୍ରତିଦାନ ନୁହେଁ, ଦାନ ଓ ଗ୍ରହଣର । ଯେହେତୁ ଗୁରୁ ଯେଉଁ ଶିକ୍ଷା ପ୍ରଦାନ କରନ୍ତି ଜଣେ ଛାତ୍ର ଜୀବନ କାଳ ମଧ୍ୟରେ କଦାପି ତା'ର ପ୍ରତିଦାନ ଦେଇପାରିବ ନାହିଁ । ଏହା ହିଁ ସତ୍ୟ । ଶକ୍ତି ନ ଥିଲେ ଶିକ୍ଷାଦାନ କରିବା ଯେଭଳି ସମ୍ଭବ ନୁହେଁ, ସେହିଭଳି ଭକ୍ତି ନଥିଲେ ଶିକ୍ଷାଦାନକୁ ଗ୍ରହଣ କରିବା ମଧ୍ୟ ସମ୍ଭବ ନୁହେଁ । ତେଣୁ ସମସ୍ତେ ଦ୍ରୋଣାଚାର୍ଯ୍ୟ ହୋଇପାରନ୍ତି ନାହିଁ । ସବୁ ଶିଷ୍ୟ ଅର୍ଜୁନ ହୋଇପାରନ୍ତି ନାହିଁ ।

ଆଲୋକ ବିନା ମନୁଷ୍ୟର ଚକ୍ଷୁ ଯେ ଭଳି ମୂଲ୍ୟହୀନ, ସେହିଭଳି ଗୁରୁ ବିନା ବ୍ୟକ୍ତିର ଜୀବନ ହିଁ ଅନ୍ଧକାର ମୟ । ତେଣୁ ସଭ୍ୟତାରେ ଯେତେ ବିବର୍ତ୍ତନ ଘଟୁ ଯେତେ ପରିବର୍ତ୍ତନ ଆସୁ, ଗୁରୁଙ୍କୁ ସବୁ କାଳରେ ସମ୍ମାନ ଦିଆଯାଉ । ଏହାହିଁ କାମନା ।



ଗଂଗୋତ୍ରୀ, ଭୀମଭୋଇ ନଗର, ବୁଢାରଜା, ସମ୍ବଲପୁର



Digitized by srujanika@gmail.com

# ପୁରୁଣା ବଂଧୁଙ୍କ ସମ୍ପର୍କରେ ...

## ପ୍ରାଧ୍ୟାପକ ପ୍ରମୋଦ ଚନ୍ଦ୍ର ଦାଶ

ବସନ୍ତବାବୁଙ୍କ ସହ ମୋ ପରିଚୟ ମହାପୁରୁଷ ହାଡ଼ିଦାସ ମହାବିଦ୍ୟାଳୟ, ଛତିଆରୁ । ସେତେବେଳେ ସେ 'ବଗଲାବଗୁଲୀ' ଶିଶୁ ପତ୍ରିକା ପ୍ରକାଶ କରୁଥିଲେ । ମଝିରେ ମଝିରେ 'ବଗଲାବଗୁଲୀ' ହାତରେ ଧରି ଆସନ୍ତି । ଆମେ ପଢୁ ଏବଂ କିଣୁ । ଭାରି ଆତ୍ମୀୟତା ଭିତରେ ଦିନ ଗୁଡ଼ିକ କଟି ଯାଉଥିଲା । ବ୍ୟକ୍ତିଗତ ଭାବରେ ସେଠାରେ କାମ କରୁଥିବା ନବୀନ ପାଠୀ, ରବୀନ୍ଦ୍ର ସାମଲ, ଦେବେନ୍ଦ୍ର ନାୟକ, ଜଗଦୀଶ ମିଶ୍ର, ସୌଦାମିନୀ ମହାରଣା ଏବଂ ଅନ୍ୟମାନେ ଏକ ପରିବାର ଭଳି ଚଳୁଥିଲୁ । ବରା ଖିଆ, ସାଙ୍ଗ ମେଳରେ ଥଟ୍ଟା ପରିହାସ ଇତ୍ୟାଦି ବହୁତ ମଜାଦାର ଥିଲା ।

ମନେପଡ଼େ ସେ ଦିନର କଥା । ଦରମା ମାତ୍ର ଟ ୩୦୦ ରୁ ଟ୫୦୦ ଭିତରେ । କିନ୍ତୁ ଜୀବନ ବଞ୍ଚିବାର ସ୍ୱାଦ ଥିଲା ନିଆରା । ସେଇ ସ୍ୱଳ୍ପ ଦରମାରେ ଆଗ ଡାବାରେ ମଟନ, ଭାତ କିମ୍ବା ଜଳଖିଆ ଦୋକାନରେ ବରା ପିଆଜି ଖିଆଯାଉଥିଲା । ସେଇ ମୁହୂର୍ତ୍ତଗୁଡ଼ିକ ବହୁତ ମଜାଳିଆ ଥିଲା । କଲେଜର ବିକାଶ ଏବଂ ଗଠନ ପାଇଁ ଆମମାନଙ୍କ ସହିତ ବସନ୍ତବାବୁ ମଧ୍ୟ ଅଣ୍ଟା ଭିଡ଼ିଥିଲେ । କଲେଜରେ ସ୍ନାତକ ଶ୍ରେଣୀ ଖୋଲିବା ପାଇଁ ଟଙ୍କାର ଆବଶ୍ୟକତା ପଡିଲା । ସେଥିପାଇଁ ଅଧ୍ୟାପକ ନବୀନ ପାଠୀଙ୍କ ନେତୃତ୍ୱରେ ଆମେ ଅନେକ ଲୋକଙ୍କୁ ଭେଟି ଟଙ୍କା ଆଦାୟ କରିଥିଲୁ । ସେଥିରେ ଆମ ସହିତ ବସନ୍ତବାବୁ ମଧ୍ୟ ଥିଲେ । କଲେଜ ପାଇଁ କିଛି କରିବାର ଇଚ୍ଛାଶକ୍ତି ଓ ପ୍ରୟାସ ସେ ସମୟରେ ନୂଆ ଚାକିରି କରୁଥିବା ବଂଧୁମାନଙ୍କର ଥିଲା । ଏ ତ ଗଲା କଲେଜର ଉନ୍ନତିରେ ତାଙ୍କର ସହଯୋଗର କଥା ।

ବ୍ୟକ୍ତିଗତ ଭାବରେ ବସନ୍ତ ବାବୁଙ୍କୁ ସହିତ ଆମ ସମସ୍ତଙ୍କର ସୁସମ୍ପର୍କ ଥିଲା । ଆଖି ଆଗରେ ତାଙ୍କର ସେ ଦିନର ଚେହେରା ମନେ ପଡିଯାଉଛି । ହସ ହସ ମୁହଁ- ବନ୍ଧୁତ୍ୱର ପରିଭାଷାର ଆବେଗ, ତା ଭିତରେ ନିଜର ଲେଖା ସମ୍ପର୍କର ଆଲୋଚନା । ତାଙ୍କର ଅନେକ ଲେଖା କମନ ରୁମରେ ଆମେ ସବୁ ଶୁଣୁ । ସେ ଭାବପ୍ରବଣ ହୋଇ ପଢ଼ନ୍ତି । ଶୁଣିବାକୁ ଖୁସି ଲାଗେ । ସେ ସମୟର ବଂଧୁତା ଥିଲା ନିଆରା । ଆଜି ତାହା



Digitized by srujanika@gmail.com

ସପ୍ନ । ଏବେ ବନ୍ଧୁତାର ପରିଭାଷା ବଦଳି ଗଲାଣି । ସ୍ୱାର୍ଥ ଅଛି ତ ବଂଧୁତା ଅଛି । ସ୍ୱାର୍ଥ ପୂରଣ ପରେ ହାଏ ବାଏରେ ବନ୍ଧୁତାରେ ଡୋରି ବନ୍ଧା ହେଉଛି । ସେ ଦିନର ବଂଧୁତା କଥା ଏବେ ଭାବିଲେ ତାଙ୍କୁ ନିଜର ନିଜର ଲାଗେ ।

କିଛି ଦିନ ଆମ ସହିତ କାମ କଲା ପରେ ହଠାତ୍ ସୁନାବେଡ଼ାରେ ତାଙ୍କ ନିଯୁକ୍ତି ଆମକୁ ଆନନ୍ଦ ଦେଇଥିଲା । ସେ ୮୪ରେ କଲେଜ ଛାଡ଼ିଲେ । ଆମେ ସନ୍ସେତେବେଳେ ତାଙ୍କୁ ଏତେ ବାଟ ଯିବାକୁ ନାହିଁ କରୁଥିଲୁ । କିନ୍ତୁ ସେ କାହା କଥା ନମାନି ସୁନାବେଡ଼ା ଗଲେ ଓ ସେଠାରେ ନିଜର ପାରିବା ପଣିଆକୁ ପ୍ରତିଷ୍ଠା କଲେ । କିଛି ଦିନ ପରେ ଜାଣିବାକୁ ପାଇଲି ସେଠାରେ ତାଙ୍କର ବହୁତ ଖ୍ୟାତି । ଅବିଭକ୍ତ କୋରାପୁଟ ଜିଲ୍ଲାରେ ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ଜାଣି ଖୁସିରେ ଛାତି କୁଣ୍ଢେମୋଟ ହୋଇଗଲା । ତାଙ୍କର ଅନେକ ଶିଶୁ ସାହିତ୍ୟ ପୁସ୍ତକ ସମେତ ପ୍ରବନ୍ଧ, ଗଳ୍ପ, ଓ ଲଘୁ ଆଲୋଚନା ଆଦି ୩୨ ଖଣ୍ଡ ବହି ପ୍ରକାଶ ପାଇଲାଣି । ସେ କୋରାପୁଟର ସାହିତ୍ୟ ଜଗତରେ ଏକ ଆଲୋକ ବର୍ତ୍ତିକା ସାଜିଛନ୍ତି । ଅନେକ ପୁରସ୍କାର ସମ୍ମାନର ଅଧିକାରୀ ହୋଇଛନ୍ତି । ତାଙ୍କ ସହିତ ଅନେକ ସମୟରେ ପୁରୁଣା ଦିନର କଥାକୁ ସ୍ମରଣ କରିଛି । ସେ ଆନନ୍ଦିତ ହୋଇଛନ୍ତି ଓ ସ୍ମୃତିଚାରଣ କରି ମୋତେ ମଧ ନିର୍ମଳ ଆନନ୍ଦ ଦେଇଛନ୍ତି । ତାଙ୍କ ପ୍ରତିଭା ସମ୍ପର୍କରେ ଜାଣିବା ପରେ ପେଟ ପୁରିଗଲା ପରି ଲାଗେ ।

ଏବେ ସେ ଚାକିରିରୁ ଅବସର ନେବେ ବୋଲି ଜାଣିଲି । ଦୁଃଖ ଲାଗିଲା ଓ ଖୁସି ବି ଲାଗିଲା । ଦୂରତାର ବ୍ୟବଧାନ ପାଇଁ ୧୯୮୪ ପରେ ଆଉ ଦେଖା ହୋଇନାହିଁ, ଯାହା ହେଉ ଏବେ ସାକ୍ଷାତ ହେବ । ବସନ୍ତ ବାବୁଙ୍କର ଅବସର ଜୀବନ ସୁଖରେ କଟୁ ଏବଂ ସେ ଦୀର୍ଘାୟୁ ହୁଅନ୍ତୁ ।

ବାବାଜୀ ବାବୁ ବସନ୍ତ ବାବୁଙ୍କର ବନ୍ଧୁ । ସେ ଖୋଜିଲୋଡି ତାଙ୍କ ପୁରୁଣା ବନ୍ଧୁଙ୍କୁ ମନେ ପକାଇ ଥିବାରୁ ଆନ୍ତରିକ କୃତଜ୍ଞତା ।



ପ୍ରତିଷ୍ଠାତା, 'ଆମରିସତ୍ୟ'
ଏମ୍.ପି ହାଉସିଂ ବୋର୍ଡ଼ କଲୋନୀ
ପି.ଏନ୍.କଲେଜ,ଖୋର୍ଦ୍ଧା-୭୫୨୦୫୭



Digitized by srujanika@gmail.com

# ଡକ୍ଟର ବସନ୍ତ ସାହୁଙ୍କୁ
# ଯେମିତି ଦେଖିଛି-ଯେମିତି ଜାଣିଛି

**ଡକ୍ଟର ଏକାଦଶୀ ପ୍ରଧାନ**

ଏ ଜନ୍ମ ସାର୍ଥକ ହୁଏ ସାର୍ଥକ ମଣିଷ ହୋଇ ଜୀବନ ବଞ୍ଚିବାରେ । ବ୍ୟକ୍ତିର ଜୀବନ ସୀମିତ । ବ୍ୟକ୍ତିତ୍ୱ କିନ୍ତୁ ସୀମାହୀନ । ସାଧାରଣ ଭିତରେ ଅସାଧାରଣ ଦିବ୍ୟ ବ୍ୟକ୍ତିତ୍ୱ ହିଁ ବ୍ୟକ୍ତିଙ୍କୁ ସମସ୍ତଙ୍କ ନିକଟରେ ଆପଣାର କରେ । ଆପଣାର ହୃଦୟକୁ ସେ ବାଣ୍ଟି ଦିଅନ୍ତି ସମସ୍ତଙ୍କ ଭିତରେ । ମାଟିର ବାସ୍ନାରେ ସେ ହୁଏ ବିଭୋରିତ । ମାଟିର ସଂସ୍କୃତିରେ ସେ ହୁଏ ଦୀପ୍ତିମାନ । ଅବଶ୍ୟ ଏକବିଂଶ ଶତାବ୍ଦୀରେ ବିଶ୍ୱ ଭ୍ରାତୃତ୍ୱ ଓ ସାମାଜିକ ମୂଲ୍ୟବୋଧ କଥାଟି ପ୍ରଚାରଧର୍ମୀ ହୋଇଗଲାଣି । ଏଠି ସବୁ ମହାର୍ଘା-ସ୍ନେହ, ପ୍ରେମ, ଭଲ ପାଇବା ପରି ଜୀବନବାଦୀ କଥାଗୁଡ଼ାକ-ବ୍ୟକ୍ତି ସୁବିଧାବାଦୀ ପାଲଟିଛି-ସ୍ୱାର୍ଥ ନ ଥିଲେ ରାସ୍ତାକୁ ଓହ୍ଲାଉ ନାହିଁ । କାମ ଥିଲେ ନାମ ଘୋଷୁଛି । କାମ ସରିଗଲେ ବାଟ ଭାଙ୍ଗି ଚାଲିଯାଉଛି । କାମ ବେଳେ ସଲାମ, କାମ ସରିଗଲେ ବଦନାମ୍ । ପ୍ରଶୟ ଦେଲେ ମଣିଷ ମୁଣ୍ଡରେ ବସୁଛି । ସ୍ୱାର୍ଥ ପାଇଁ ବଳି ବୋଦା ଦେଉଛି । ଅଜବ ସମୟରେ ପହଞ୍ଚିଛି ମଣିଷ । ବିଂଶ ଶତାବ୍ଦୀର ସବୁ ସ୍ୱପ୍ନ ଓ ସମ୍ଭାବନା ମରିଯାଇଛି ।

ଏକବିଂଶ ଶତାବ୍ଦୀର ଦ୍ରୁତ ଅର୍ଥନୈତିକ ବିକାଶ ପାଇଁ ଧାଇଁଥିବା ମଣିଷ ମଣିଷପଣିଆକୁ ହତ୍ୟା କରୁଛି । ତଥାପି ଆଦର୍ଶ ଅନାଦର୍ଶର ଯୁଦ୍ଧରେ ବିବେକର ହେଉଥିଲା ଜୟ । ମଣିଷ କରୁଥିଲା ଜୀବନର ଜୟଗାନ । ବିଗତ ଦୁଇଟି ଶତାବ୍ଦୀରେ ଓଡ଼ିଶାର ଜାତୀୟ ଜୀବନ କ୍ଷେତ୍ରରେ ନବଜାଗରଣର ସନ୍ଦେଶ ବାଣ୍ଟିବାରେ ମାହାଙ୍ଗାର ଭୂମିକା ଥିଲା ପ୍ରଶଂସନୀୟ । ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ବାଗ୍ମୀ ବିଶ୍ୱନାଥ କର ନେତୃତ୍ୱ ନେଇଥିଲେ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟିର ଗୁରୁତ୍ୱପୂର୍ଣ୍ଣ ଭୂମିକା । ଓଡ଼ିଆ ଭାଷା ଆନ୍ଦୋଳନର ଅନ୍ୟତମ ଅଗ୍ରଦୂତ ପ୍ରଥମ ସମ୍ବାଦ ପତ୍ର 'ଉତ୍କଳ ଦୀପିକା'ର ପ୍ରତିଷ୍ଠାତା ସମ୍ପାଦକ ଗୌରୀଶଙ୍କର ରାୟ, ପ୍ରଥମ ଉତ୍କଳ ଇତିହାସ ଲେଖିଲେ ଦେବାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟ, ପ୍ରଥମ ଓଡ଼ିଆ ନାଟକ ଲେଖିଲେ ଜଗମୋହନ ଲାଲ, ଜାଗୃତି ଓ ସଂସ୍କୃତିର ସଙ୍ଗୀତ ଗାନକଲେ ଗଣକବି ବୈଷ୍ଣବ ପାଣି, ପଲ୍ଲୀକବି ନନ୍ଦକିଶୋର ବଳ, ଶିଳ୍ପୀଗୁରୁ ବିପ୍ରାଧର ବର୍ମା, କବି ଓ ଔପନ୍ୟାସିକ ଜ୍ଞାନୀନ୍ଦ୍ର ବର୍ମା, ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ, ବିଦୁଷୀ ଲବଙ୍ଗଲତା ଦେବୀ, ସମ୍ପାଦକ ପ୍ରଦ୍ୟୁମ୍ନ ବଳଙ୍କ ସହିତ ଏହି ପବିତ୍ର ମାଟିରେ ଜନ୍ମ ଗ୍ରହଣ କରିଛନ୍ତି ଆଉ ଜଣେ ନିଆରା ନିରଳସ ମଣିଷ



Digitized by srujanika@gmail.com

ତ୍ୟାଗପୂତ ବ୍ୟକ୍ତିତ୍ୱ ତଥା ସାଂସ୍କୃତିକ ସୂତ୍ରଧର ଡକ୍ଟର ବସନ୍ତ କିଶୋର ସାହୁ ।

ତାଙ୍କର ଜନ୍ମ କଟକ ଜିଲ୍ଲାର ଗୌରବ ମଣ୍ଡିତ ଗ୍ରାମ କୁସୁପୁରରେ । ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧିପ୍ରାପ୍ତ । ସଂପ୍ରତି ସୁନାବେଡ଼ାସ୍ଥ ଏରୋନଟିକ୍ସ ମହାବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟ ବିଭାଗର ଅଧ୍ୟାପକ । ଜଣେ ସୃଜନଶୀଳ ଶିଶୁ ସାହିତ୍ୟିକ ଭାବେ ପରିଚିତ । ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷାରେ ପ୍ରାୟ ୩୨ ଖଣ୍ଡ ପୁସ୍ତକର ସ୍ରଷ୍ଟା । ବିଶେଷ ଭାବରେ କୋରାପୁଟର ପର୍ବପର୍ବାଣି, ଲୋକ ସାହିତ୍ୟ ଓ ଲୋକକଥାକୁ ନେଇ ଅନେକ ପୁସ୍ତକ ଓ ସନ୍ଦର୍ଭ ରଚନା କରିଛନ୍ତି । ଡକ୍ଟର ସାହୁ ୮୦ରୁ ଉର୍ଦ୍ଧ୍ୱ ପତ୍ରପତ୍ରିକା ସମ୍ପାଦନା କରିଛନ୍ତି । ତାଙ୍କ କୃତି ଓ କୃତିତ୍ୱ ପାଇଁ ୨୦ରୁ ଅଧିକ ସଂସ୍ଥା ଦ୍ୱାରା ପୁରସ୍କୃତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି । ଜଣେ ସୁସଂଗଠକ ଓ ଅହଙ୍କାରଶୂନ୍ୟ ବ୍ୟକ୍ତିତ୍ୱ ଭାବେ ସମସ୍ତଙ୍କ ନିକଟରେ ଆଦରଣୀୟ ହୋଇଛନ୍ତି ।

ତାଙ୍କ ସହିତ ମୁଁ ବେଶି ମିଶି ନଥିଲେ ମଧ୍ୟ ତାଙ୍କ ସାହିତ୍ୟ କୃତି ସହିତ ପରିଚିତ ହୋଇଛି । ସେ ମୋତେ ବହୁଥର ଶିଶୁ ସାହିତ୍ୟ କର୍ମଶାଳା ଓ ସମ୍ମିଳନୀକୁ ନିମନ୍ତ୍ରଣ କରିଛନ୍ତି । ସମ୍ମିଳନୀର ଅମାୟିକ ସ୍ନେହ ଶ୍ରଦ୍ଧା ଭୁଲିବାର ନୁହେଁ । ଗତ ବର୍ଷ ନିଦାଘ ଗ୍ରୀଷ୍ମରେ କୋରାପୁଟ ଯାଇଥିଲି । ଖବର ପାଇ ଶାବର ଶ୍ରୀକ୍ଷେତ୍ର ଓ ସର୍ଣ୍ଣକ୍ଷେତ୍ର ଜଗନ୍ନାଥ ମନ୍ଦିର ବୁଲାଇ ଦେଖାଇବା ସହିତ କୋରାପୁଟର ସାହିତ୍ୟ ସଂଗଠନ ସମ୍ପର୍କରେ ସମ୍ୟକ ଧାରଣା ପ୍ରଦାନ କରିଥିଲେ । ଶେଷରେ ସୁନାବେଡ଼ାସ୍ଥିତ ନିଜ କ୍ୱାଟରର ଆତିଥ୍ୟ ଭୁଲି ପାରିବି ନାହିଁ । ବଡ଼ ବନ୍ଧୁ ବତ୍ସଳ ଓ ଅତିଥି ପ୍ରିୟ ବ୍ୟକ୍ତିତ୍ୱ । ତାଙ୍କର ବ୍ୟକ୍ତିତ୍ୱ ଅମଳିନ । ଆକାଙ୍କ୍ଷା ନାହିଁ, ଅଭୀପ୍ସା ନାହିଁ, ଅଥଚ ସେ ନୀରବ ସାହିତ୍ୟସ୍ରଷ୍ଟା ଭାବରେ କାର୍ଯ୍ୟ କରିଚାଲିଛନ୍ତି । ସେହି ବ୍ୟକ୍ତିତ୍ୱ ମୋର ଘନିଷ୍ଠ । ତାଙ୍କର ଲଳିତ କୋମଳ ହୃଦୟଟି ପାଇଁ ମୋର ଶ୍ରଦ୍ଧା । ତାଙ୍କର ଦୀର୍ଘ ନୀରାମୟ ଜୀବନ ପାଇଁ ଆଶା କରୁଛି ଓ ଜୀବନର ଶେଷ ପର୍ଯ୍ୟନ୍ତ ସାହିତ୍ୟ ସଂସ୍କୃତି ସହିତ ଜଡ଼ିତ ହୋଇ ରୁହନ୍ତୁ, ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା । ଶେଷରେ ଗଣକବିଙ୍କ ଗୋଟିଏ ପଂକ୍ତି ଉଦ୍ଧାର କରି ରହୁଛି-

ଯାହା କରିଗଲେ ଭାବିବ ଦୁନିଆ
ତାହା ଯାଉଥା ରେ କରି
ମରିଗଲା ବେଳେ କାନ୍ଦିବେ ସକଳେ
ବୁହାଇ ନୟନୁ ବାରି ।।

ସମସ୍ତଙ୍କର ଧ୍ୟେୟ ହେଉ, ଏତିକି କାମନା ।



ମାହାଙ୍ଗା ପୁଷ୍ପଗିରି କଲେଜ, ଏରକଣା, ମାହାଙ୍ଗା, କଟକ



Digitized by srujanika@gmail.com

# ଡକ୍ଟର ବସନ୍ତ ସାହୁଙ୍କୁ ଯେମିତି ଜାଣିଛି

ଗଣପତି ମଲ୍ଲିକ

ଡକ୍ଟର ବସନ୍ତ କିଶୋର ସାହୁ ମୋର ଅତି ପରିଚିତ ଓ ଘନିଷ୍ଠ । ମୋ ଜାଣିବାରେ ସେ ଜଣେ ଅମାୟିକ ଭଦ୍ର ମଣିଷ । ବାସ୍ତବରେ ସେ କେବଳ ଅଧ୍ୟାପକ ନୁହନ୍ତି, ଏକା ଧାରରେ ବହୁ ଗୁଣର ଅଧିକାରୀ । ଜଣେ ଉତ୍ତମ ଛାତ୍ରବତ୍ସଳ ଅଧ୍ୟାପକ ଓ ସୁସାହିତ୍ୟିକ । ବିଶେଷତଃ ଶିଶୁ ସାହିତ୍ୟର ଆଗ ଧାଡ଼ିର ଲେଖକ ଓ ଗବେଷକ । ବିଭିନ୍ନ ସାହିତ୍ୟ ଅନୁଷ୍ଠାନ ସହିତ ଜଡ଼ିତ ଜଣେ ଉତ୍ତମ ସଂଗଠକ । ସର୍ବୋପରି କହିଲେ ଭୁଲ୍ ହେବନି, ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଉତ୍ସର୍ଗୀକୃତ ଜଣେ ବିରଳ ପ୍ରତିଭା ।

ଯେତେବେଳେ ମୁଁ ସୁନାବେଡ଼ାର ଏଚ୍.ଏ.ଏଲ୍. ରେ କାର୍ଯ୍ୟରତ ଥିଲି ସେତେବେଳର କଥା ଇଏ । ସେତେବେଳେ ବସନ୍ତ ବାବୁ ଓ କ୍ଷୀରୋଦ ସାମଲଙ୍କ ଉଦ୍ୟମରେ ପ୍ରଥମେ ଗଢ଼ି ଉଠିଥିଲା 'ବନଫୁଲ ସାହିତ୍ୟ ପରିଷଦ' । ପରେ ସେମିଳିଗୁଡ଼ା ମହାବିଦ୍ୟାଳୟର ପ୍ରତିଷ୍ଠାତା ଶ୍ରୀଯୁକ୍ତ କୃଷ୍ଣ ସିଂହ ଓ ସେହି ମହାବିଦ୍ୟାଳୟର କେତେଜଣ ଅଧ୍ୟାପକ ସହଯୋଗ କରିଥିଲେ । ବସନ୍ତ ବାବୁ ଥିଲେ ପରିଷଦର ସଂପାଦକ । ଜଣେ ସାହିତ୍ୟ ଅନୁରାଗୀ ହୋଇଥିବାରୁ ମୁଁ ବି ସଭ୍ୟ ଭାବରେ ସେଥିରେ ଯୋଗ ଦେଇଥିଲି । ସେଇ ପରିଷଦରେ ଡକ୍ଟର ସାହୁଙ୍କର ମାର୍ଜିତ ବ୍ୟବହାର, ସାହିତ୍ୟ ପ୍ରତି ଆଗ୍ରହ, ଦକ୍ଷ ପରିଚାଳନା ଓ ଉଦ୍ୟମରେ ଅବିଭକ୍ତ କୋରାପୁଟ ଜିଲ୍ଲା କାହିଁକି ସମଗ୍ର ଓଡ଼ିଶାରେ ବନଫୁଲ ସାହିତ୍ୟ ପରିଷଦର ନାମ ଓ ଯଶ ବଢ଼ି ଯାଇଥିଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ କବି ଓ ଲେଖକମାନେ ଆସି ବନଫୁଲର ସୌରଭରେ ବିମୋହିତ ହେଉଥିଲେ । କିନ୍ତୁ ଦିନ ଆସିଲା ଦୁର୍ଭାଗ୍ୟବଶତଃ ସେଇ ବନଫୁଲ ଅକାଳରେ ହଠାତ୍ ମଉଳିଗଲା । କ'ଣ ପାଇଁ ମୁଁ ଜାଣେନା । ଜାଣିଥିବେ ଡକ୍ଟର ସାହୁ । ସେ ହିଁ ଦେଇପାରିବେ ତା'ର ସଠିକ୍ ଉତ୍ତର ।

କିନ୍ତୁ, ସେଇ ବନଫୁଲ ସାହିତ୍ୟ ପରିଷଦ ଯେଉଁ କାର୍ଯ୍ୟଧାରା କୋରାପୁଟ ଜିଲ୍ଲାରେ ସୃଷ୍ଟି କରିଥିଲା ତାହା ଅନନ୍ୟ । ସଂକ୍ଷେପରେ କହିଲେ, ତାର କାର୍ଯ୍ୟକ୍ରମ ଭିତରେ-ପ୍ରତିଭା ସମ୍ମାନ, ପୁସ୍ତକ ପ୍ରକାଶନ, ପୁସ୍ତକ ପ୍ରଦର୍ଶନୀ ଆୟୋଜନ, ଓଡ଼ିଆ



Digitized by srujanika@gmail.com

ସାହିତ୍ୟର ପ୍ରଚାର ପ୍ରସାର ପାଇଁ ସାରସ୍ୱତ କର୍ମଶାଳା, କବିତା ଓ ଗଳ୍ପ ପାଠୋତ୍ସବ, ପ୍ରବନ୍ଧ ଓ ଗଳ୍ପ କବିତା ପ୍ରତିଯୋଗିତା, ପ୍ରଶ୍ନ ଉତ୍ତର କାର୍ଯ୍ୟକ୍ରମ ଆଦିର ତ୍ରୁଟିଶୂନ୍ୟ ଆୟୋଜନ ଓ ପରିଚାଳନା ବେଶ୍ ମନୋମୁଗ୍ଧକର ହୋଇପାରିଥିଲା । ଯାହାକୁ ସବୁ ପିଢ଼ିର କବି ଲେଖକମାନଙ୍କୁ ନିରୋଳା ଆନନ୍ଦ ଦେବା ସହିତ ସେମାନଙ୍କ ସୃଷ୍ଟିକୁ ଉପସ୍ଥାପନା ଓ ବିକାଶ କରିବା ଦିଗରେ ସହାୟକ ହୋଇଥିଲା ବନଫୁଲ ସାହିତ୍ୟ ପରିଷଦ । ସେମାନେ ବିନା ବାଧାରେ ନିଜକୁ ଏହି ମଞ୍ଚରେ ବ୍ୟକ୍ତ କରିପାରୁଥିଲେ । ଯାହା ଆଗରୁ ଏହି ଅଞ୍ଚଳରେ ଏପରି ଭାବରେ କେବେ ହୋଇନଥିଲା । ଯାହାବି ଥିଲା ତା'ର ଏତେଟା ଚମକ୍ ନଥିଲା ମନକୁ ଛୁଇଁଲା ଭଳି ।

ବିଶେଷତଃ ସମସ୍ତ ଜିଲ୍ଲାର କବି-ଲେଖକମାନଙ୍କୁ ଏକାଠି କରି ଗୋଟାଏ ମଞ୍ଚରେ ବସାଇ ନିଜ ନିଜ ଭିତରେ ଭାବ ବିନିମୟ କରି ସାହିତ୍ୟ କରିବାର ଯେଉଁ ନିଆରା ଢଙ୍ଗ ଓ ମଜା ଏଠାରେ ମିଳୁଥିଲା ତାହାର ପଟାନ୍ତର ନାହିଁ । ଏଥିପାଇଁ ବନଫୁଲ ସାହିତ୍ୟ ପରିଷଦର କର୍ମକର୍ତ୍ତା ଏବଂ ସଂପାଦକ ବସନ୍ତ କିଶୋର ସାହୁ ନିଶ୍ଚୟ ପ୍ରଶଂସାର ପାତ୍ର ହେବେ ବୋଲି ମୁଁ ମାନି ନେଇ ଆସିଛି ଆଜି ପର୍ଯ୍ୟନ୍ତ । ଅନ୍ୟମାନେ ସ୍ୱୀକାର କରନ୍ତୁ ବା ନକରନ୍ତୁ । ବସନ୍ତ ବାବୁଙ୍କର ଏହି ଚିନ୍ତାଧାରା ପାଇଁ ସେ ସର୍ବଦା ସ୍ମରଣୀୟ ହୋଇ ରହିବେ ଅବିଭକ୍ତ କୋରାପୁଟ ଜିଲ୍ଲାର ସାହିତ୍ୟିକମାନଙ୍କ ନିକଟରେ ।

ତାଙ୍କର ଅବସର ଜୀବନ ସୁଖ ଓ ଶାନ୍ତିରେ କଟୁ । ସେ ସାରସ୍ୱତ ସାଧନା ବଳରେ ଆହୁରି ପ୍ରତିଷ୍ଠିତ ହୁଅନ୍ତୁ, ଏହାହିଁ କାମନା ।



ଗ୍ରା-ଜାକ୍ରି ପଡ଼ା
ପୋ-ମିଣିଆ
ଜି-କନ୍ଧମାଳ



Digitized by srujanika@gmail.com

# ଅଭୁଲା ସ୍ମୃତି

**ସୁଶାନ୍ତ କୁମାର ଦାଶ**

ସୁଜଳା ସୁଫଳା ସଶ୍ୟ ଶ୍ୟାମଳା ଆମର ଏହି ପବିତ୍ର ପୂଣ୍ୟଭୂମି ଭାରତ ବର୍ଷରେ ଅନେକ ମୁନିଋଷି, ସାଧୁସନ୍ଥ, କବି ଦାର୍ଶନିକ ଓ ମହାପୁରୁଷମାନେ ଜନ୍ମନେଇ ନିଜର ଅଲୌକିକ ପ୍ରତିଭା ବଳରେ ଏ ଦେଶ ଓ ଜାତିର ଗୌରବ ମହିମା ମଣ୍ଡିତ କରିବା ସହ ଚିରଦିନ ପାଇଁ ଅବିସ୍ମରଣୀୟ ହୋଇ ରହିଯାଇଛନ୍ତି । କାଳର କରାଳ ଚକ୍ରରେ ସେମାନେ ବିଲୀନ ହୋଇଯାଇଥିଲେ ମଧ୍ୟ ଯୁଗଯୁଗ ପାଇଁ ତାଙ୍କର ମହାନ କୀର୍ତ୍ତି ଏବଂ ସେହି ମହାତ୍ମାମାନଙ୍କୁ ଦେଶ ଜାତି ସଦା ସର୍ବଦା ସ୍ମରଣ କରି ଆସୁଅଛି ।

ବିଦାୟର ବେଳ ଆସେ ସଭିଙ୍କ ପାଇଁ
ବିଧିର ନିୟମ କେବା ପାରେ ଏଡାଇ
କର୍ମ ବଳେ ଏହି ଜଣ ଜଗତେ ହୁଏ ମହାନ
ପୂଜା ପାଉଥାଏ ତାର କରମ ପାଇଁ
ଏ ଦୁନିଆଁ ଅଟେ ପରା କରମ ଭୂଇଁ ।

ବାସ୍ତବରେ ନିଜର ମହତ୍ କର୍ମ ଏ ଦେଶ ଜାତି ପାଇଁ ତ୍ୟାଗ, ନିଷ୍ଠା, ବଳିଦାନ ହିଁ ମାନବକୁ ମହାନ କରିଥାଏ । ଶିଶୁ ସାହିତ୍ୟ କ୍ଷେତ୍ରରେ ଯେଉଁ କେତେ ଜଣ କବି ନିଜର ସ୍ୱର ଓ ସ୍ୱାକ୍ଷର ପ୍ରଦାନ କରି ଯଶସ୍ୱୀ ହୋଇଛନ୍ତି, ତନ୍ମଧ୍ୟରୁ ଶିଶୁ ସାହିତ୍ୟିକ ଓ କବି ଡଃ. ବସନ୍ତ କିଶୋର ସାହୁ ଅନ୍ୟତମ । କବିଙ୍କର ଜନ୍ମ କଟକ ଜିଲ୍ଲାର କୁସୁପୁର ଗ୍ରାମରେ । ପିଲାଟି ଦିନରୁ ବହି ପଢିବାର ନିଶା ହିଁ ତାଙ୍କୁ ଆଜି ଏକ ସଫଳ ଶିଶୁ ସାହିତ୍ୟିକ ରୂପେ ପ୍ରତିଷ୍ଠିତ କରାଇପାରିଛି । ସେ ଅନୁଭବ କରିଥିଲେ ଶିଶୁ ହିଁ ଆଗାମୀ ଭବିଷ୍ୟତର କର୍ଣ୍ଣଧାର ଆଉ ଜୀବନ ରୂପକ ଉଦ୍ୟାନର ସୁରଭିତ କୁସୁମ । ଶିଶୁ ହସିଲେ ଦୁନିଆଁ ହସେ କୁନି କୁନି ଶିଶୁଙ୍କ ଓଠରେ ଖିଲିଖିଲି ହସ ଫୁଟାଇବା ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ଉତ୍ତମ ଶିକ୍ଷା, ଉତ୍ତମ ଆଚରଣ, ଉତ୍ତମ ନୀତି ଦ୍ୱାରା ହିଁ ଶୈଶବ ଜୀବନର ବିକାଶ ଘଟେ । ସେହିମାନଙ୍କ ବିକାଶ ଭିତରେ ଲୁଚି ରହିଛି ଦେଶ, ଜାତି, ଧର୍ମ, ବର୍ଣ୍ଣ ଓ ସଂପ୍ରଦାୟର ସାମୂହିକ ବିକାଶ । ଓଡିଆ ସାହିତ୍ୟ କ୍ଷେତ୍ରରେ ଶିଶୁ ସାହିତ୍ୟର ଏକାନ୍ତ



Digitized by srujanika@gmail.com

ଅଭାବକୁ ଲକ୍ଷ୍ୟ କରି ସେ ଗବେଷଣାତ୍ମକ ଶିଶୁ ସାହିତ୍ୟ ରଚନା ଦିଗରେ ମନ ନିବେଶ କରିଥିଲେ । କଥାରେ ଅଛି ଦୃଢ ପ୍ରତିଜ୍ଞା ସାଧକର ସାଧନା କେବେ ବ୍ୟର୍ଥ ଯାଏନି । ଏହି ଭାବଧାରାକୁ ଆଖି ଆଗରେ ରଖି ସେ ଆଗେଇ ଚାଲିଥିଲେ ଆଗକୁ ଆଗକୁ । କ୍ରମେ ଓଡିଆ ମୌଖିକ ଶିଶୁ ସାହିତ୍ୟ ଶୀର୍ଷକରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ କୃତିତ୍ୱ ସହ ପିଏଚ୍.ଡି ଉପାଧି ଲାଭ କରିଥିଲେ ।

କିଏ କହିପାରେ ମଣିଷର ଭାଗ୍ୟ ଯେ କେଉଁଠାରୁ ନେଇ କେଉଁଠି ପହଞ୍ଚାଇଦିଏ । ବଣ ପାହାଡ ଘେରା ସବୁଜ ବନାନୀ ମଧ୍ୟରେ ଝରଣାର କୁଳୁ କୁଳୁ ସ୍ୱର, ନଭଶ୍ଚୁମ୍ବୀ ପାହାଡର ଶିଖର ଦେଶରେ ବରଷାର ଝିପି ଝିପି ନୀର, ଶାନ୍ତ, ସରଳ, କମନୀୟ ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର କୋରାପୁଟର ସ୍ୱର୍ଣ୍ଣକ୍ଷେତ୍ର ସୁନାବେଡା ଏରୋନେଟିକ କଲେଜର ଓଡିଆ ଭାଷା ସାହିତ୍ୟ ବିଭାଗର ଅଧ୍ୟାପକ ଭାବେ କବିଙ୍କୁ ପାଛୋଟି ଆଣିଥିଲା ସୁଦୂର କଟକ ଜିଲ୍ଲାର କୁସୁପୁର ଗ୍ରାମରୁ । ପେଶାରେ ସେ ଜଣେ ଅଧ୍ୟାପକ ହେଲେ ମଧ୍ୟ ନିଶାରେ ସେ ଥିଲେ ଜଣେ ଶିଶୁ ସାହିତ୍ୟିକ । କୋରାପୁଟ ଭଳି ଉପାନ୍ତ ତଥା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଓଡିଆ ଭାଷା ସାହିତ୍ୟ, ସଂସ୍କୃତିର ପ୍ରଚାର ଓ ପ୍ରସାର ଥିଲା ତାଙ୍କ ଜୀବନର ପରମ ଲକ୍ଷ୍ୟ । ପ୍ରାକୃତିକ ସୌନ୍ଦର୍ଯ୍ୟର ଅପରୂପ ଶୋଭା ଭରି ଦେଲା କବିଙ୍କ ଲେଖନୀ ମୂନରେ ଅଜସ୍ର ଶବ୍ଦର ସମ୍ଭାର । ତାପରେ ସେ ଲେଖି ଚାଲିଲେ କୋରାପୁଟର ଲୋକକଥା, କୋରାପୁଟର ପର୍ବପର୍ବାଣି, କୋରାପୁଟ ପରିକ୍ରମା, ଓଡ଼ିଶାର ଲୋକନାଟ୍ୟ ଏହିପରି ଅନେକ କିଛି ।

ଏତଦ୍ ବ୍ୟତୀତ ଶିଶୁଙ୍କ ମନଲାଖି ପୁସ୍ତକ ମଧ୍ୟରେ ଫୁଲ ଆମେ ଫୁଲ, ଅଗଡ ବଗଡ ଝାଇଁକି ଝୁମ୍ପା, କାଳିଆ ବଳଦ ଗଲାରେ ଗଳା, ଉଦୁଉଦୁମା, ମାରିନେଲେ ମହାପାତ୍ରେ, ହାତ ଦେବା ଭଲ କାମେ, ଗଛ ଆମ ଜୀବନ ଆଦି ଆହୁରି ଅନେକ । ଅଲୋଚନା ପୁସ୍ତକ ମଧ୍ୟରେ ଓଡିଆ ଶିଶୁ ସାହିତ୍ୟ ଆଲୋଚନା, ଓଡିଆ ମୌଖିକ ଶିଶୁ ସାହିତ୍ୟ, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ଓଡିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୁଚୀ ଏହିଭଳି ୩୨ ଖଣ୍ଡ ପୁସ୍ତକ ଓ ଗବେଷଣାତ୍ମକ ପୁସ୍ତକ ରଚନା କରି ଉତ୍କଳର ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସେ ଏକାଧାରରେ ଜଣେ ଗାଳ୍ପିକ, ପ୍ରାବନ୍ଧିକ, କବି, ଶିଶୁ ସାହିତ୍ୟିକ, ଆଲୋଚକ, ସଂଗଠକ ଏହି ଭଳି ଯେତେ ବର୍ଣ୍ଣନା କଲେ ବି ମହାଶୟଙ୍କ ପାଇଁ କମ୍ ହେବ । ସେଭଳି ମହାନ ଜ୍ଞାନୀ ଗୁଣୀ ବ୍ୟକ୍ତିତ୍ୱର ପଟାନ୍ତର ନାହିଁ । କେବଳ ସେତିକି ନୁହେଁ ଏହି ଉପାନ୍ତ ଅଞ୍ଚଳରେ ଥାଇ ଅନେକ ସାହିତ୍ୟ ଅନୁଷ୍ଠାନ ସହ ସେ ଜଡିତ ଏବଂ ପ୍ରତିଭାର ସୋପାନ ପରେ ସୋପାନ ଅତିକ୍ରମି ଯିବାକୁ ପ୍ରୟାସରତ । ତାଙ୍କ ସଂପାଦକତ୍ୱରେ ଏ ଅଞ୍ଚଳରେ ଗଢି ଉଠିଛି ବନଫୁଲ ସାହିତ୍ୟ



Digitized by srujanika@gmail.com

ପରିଷଦ, ବନପ୍ରଭା ସାହିତ୍ୟ ସଂସଦ, ଓଡ଼ିଆ ଲେଖକ ପାଠକ ସମ୍ମେଳନ ଆଦି ଅନେକ ଅନୁଷ୍ଠାନ । ଉତ୍କଳର ଅନେକ ସାହିତ୍ୟ ଅନୁଷ୍ଠାନ ସହିତ ତାଙ୍କର ନିବିଡ ସଂପର୍କ । ଏଥିପାଇଁ ଓଡିଶାର ଅନେକ ସୁନାମ ଧନ୍ୟ ସାହିତ୍ୟ ଅନୁଷ୍ଠାନ ତରଫରୁ ମହାଶୟ ବହୁବାର ସମ୍ମାନିତ ଓ ସମ୍ବର୍ଦ୍ଧିତ । ଏବେ ମୋ ଅନୁଭୁତିର କିଛି କଥା ଓ କବିଙ୍କ ପ୍ରଭାବ କିପରି ମୋ ସାହିତ୍ୟ ଜୀବନକୁ ମଧୁମୟ କରିଛି ସେ ସଂପର୍କରେ ସଂକ୍ଷେପରେ କିଛି ବର୍ଣ୍ଣନା କରୁଛି ।

ଯାହାଙ୍କର ସ୍ନେହ ଶ୍ରଦ୍ଧା ସଦିଚ୍ଛା ଏବଂ ଆଶୀର୍ବାଦ ବଳରେ ମୁଁ ଆଜି ଜଣେ ଶିଶୁ ସାହିତ୍ୟିକ ରୂପେ ପରିଗଣିତ ହୋଇପାରିଛି ସେ ଆଉ କେହି ନୁହଁନ୍ତି ସେହି ମହାନୁଭବ ହେଉଛନ୍ତି ଡଃ. ବସନ୍ତ କିଶୋର ସାହୁ । ପୂର୍ବରୁ କବିତାଟିଏ ଲେଖି ସାହିତ୍ୟ ଆସରରେ ପାଠ କରୁଥିଲି । ପୁସ୍ତକ ପ୍ରକାଶନ ଦିଗରେ ମୋର ତିଳେ ମାତ୍ର ଧାରଣା ନଥିଲା । ଅନେକ କବିଙ୍କର ପୁସ୍ତକ ଦେଖି ମୋ ମନରେ ପୁସ୍ତକ ପ୍ରକାଶ ପ୍ରତି ବହୁ ଆଗ୍ରହ ଥିଲା । ଠିକ୍ ସେହିଭଳି ଶୁଭ ମୁହୂର୍ତ୍ତରେ ଦାମନଯୋଡିର ବିଜ୍ଞାନ ଶିକ୍ଷକ ବସନ୍ତ କୁମାର ଦାସ ମୋତେ ଡଃ. ବସନ୍ତ କିଶୋର ସାହୁଙ୍କ ସହ ପରିଚୟ କରାଇ ଦେଇଥିଲେ । ସେ ସମୟରେ ଓଡିଆ ଡି.ଟି.ପି ପ୍ରାୟ ଏ ଅଞ୍ଚଳରେ ନଥିଲା । ସୁନାବେଡା ଅଗ୍ରଣୀ ଡି.ଟି.ପି, ଏ/୧୧ ଯାହାକି ବସନ୍ତ ସାର୍‌ଙ୍କ ଘରେ ଥିଲା । ପରିଚୟ ପରେ ସେହି ମହାନୁଭବଙ୍କ ଦୟାରୁ ପରୋକ୍ଷ ଅବା ପ୍ରତ୍ୟକ୍ଷ ଭାବେ ମୋର ୮ଖଣ୍ଡ ପୁସ୍ତକର ଡି.ଟି.ପି ସହ ସଂଶୋଧନ କରିବା ସହିତ ମୋର ପ୍ରଥମ ପୁସ୍ତକ ପ୍ରକାଶରେ ମୋତେ ଅକୁଣ୍ଠିତ ସାହାଯ୍ୟ କରିଛନ୍ତି । ତତ୍ ସହିତ ତାଙ୍କ ପରିଚିତ କେତେକ ପ୍ରକାଶକଙ୍କ ସହ ମୋର ପରିଚୟ କରାଇ ମୋ ସାହିତ୍ୟ ଜୀବନର ଜୟଯାତ୍ରାରେ ବିଶେଷ ସହାୟକ ହୋଇଛନ୍ତି ।

ତା ଛଡା 'ଆସ ତାଙ୍କ ପରି ହେବା'ମୋର ପ୍ରଥମ ପୁସ୍ତକଟି କାହାଣୀ ପ୍ରକାଶନ, କଲ୍ୟାଣୀ ନଗର, କଟକଙ୍କ ଦ୍ୱାରା ପ୍ରକାଶ କରାଇ ମୋର ପ୍ରଥମ ପ୍ରେରଣା ଦାତା ରୂପେ ଜୀବନରେ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ଏତଦ୍ ବ୍ୟତୀତ ପୁସ୍ତକଟିର ପ୍ରଚ୍ଛଦ ବା ଅଳଙ୍କରଣ ପାଇଁ ଜୟପୁର ଉମାକାନ୍ତ ମହାରଣାଙ୍କ ସହ ପରିଚିତ କରାଇ ଶିଶୁ ପୁସ୍ତକ ଗୁଡିକର ପ୍ରଚ୍ଛଦ କରାଇବା ଦିଗରେ ଚିତ୍ର ଶିଳ୍ପୀଙ୍କୁ ମୋ ପାଇଁ ଅନୁରୋଧ କରିଥିଲେ । କେବଳ ସେତିକି ନୁହେଁ ପରବର୍ତ୍ତୀ କାଳରେ, ମହତ ସିନା ସିଏ, ଏପରି ହେଲା କାହିଁକି ? ଗରବ କରନି ତିଳେ, ଗାଁ ମାଟି ମୋର ସରଗପରି, ଆମ ଓଡିଶାର ଗଉରବ, ଗୀତରେ ଗୀତରେ ଗପ, ଉତ୍କଳ ସହୀଦ୍ ବୀର ପ୍ରଭୃତି ୮ଖଣ୍ଡ ପୁସ୍ତକର ଡି.ଟି.ପି କରାଇ ସେଗୁଡିକୁ ତନ୍ନତନ୍ନ ପାଠକରି ସେଥିରେ ଥିବା ତ୍ରୁଟି ମାର୍ଜିତ କରିବା



Digitized by srujanika@gmail.com

ସହ ଆବଶ୍ୟକ ସ୍ଥଳେ ଶବ୍ଦ ବଦଳାଇ ଉପଯୁକ୍ତ ଶବ୍ଦ ପ୍ରୟୋଗ କରି ମୋ ଅଜ୍ଞାନ ଅନ୍ଧକାରକୁ ଦୂରକରି ମୋ ଅନ୍ତରରେ ସାହିତ୍ୟର ଜ୍ଞାନାଲୋକ ଭରିଦେଇ ଥିଲେ । ମୋର ଆଧ୍ୟାତ୍ମିକ ପୁସ୍ତକ ଶିବରାତ୍ରି ବ୍ରତକଥା, କଳି ଯୁଗେ ମଙ୍ଗଳାଙ୍କ ଆବିର୍ଭାବ ଓ ତାଙ୍କ ମହିମା, ଶ୍ୟାମେଶ୍ୱରଙ୍କ ମହିମା ପ୍ରଭୃତି ପୁସ୍ତକ ପ୍ରକାଶ ଦିଗରେ ତାଙ୍କର ଅକୁଣ୍ଠିତ ସାହାଯ୍ୟ କେବେ ଭୁଲିବାର ନୁହେଁ । ଏଭଳି ମହାନୁଭବ ହିଁ ମୋ ସାହିତ୍ୟ ଜୀବନର ପ୍ରଥମ ଗୁରୁ ଯାହାଙ୍କ ତତ୍ତ୍ୱାବଧାନରେ ମୋର ୪ ଖଣ୍ଡ ପୁସ୍ତକ ଆଜି ରାଜା ରାମମୋହନ ରାୟ ଲାଇବ୍ରେରୀ ଦ୍ୱାରା ନିର୍ବାଚିତ ହୋଇପାରିଛି । ତା ଛଡା ଆଉ ୨ଖଣ୍ଡ ପୁସ୍ତକ ଜଗନ୍ନାଥ ରଥ ପୁସ୍ତକ ପ୍ରକାଶନ ଦ୍ୱାରା ପ୍ରକାଶିତ ହୋଇ ଡି.ପି.ଇ.ପି ଦ୍ୱାରା ଖଣ୍ଡିଏ ନିର୍ବାଚିତ ହୋଇପାରିଛି । ମୋ ଜୀବନ କାଳ ମଧ୍ୟରେ ଯେଉଁ କେତୋଟି ପୁସ୍ତକ ପ୍ରକାଶିତ ହୋଇପାରିଛି ତାର ସଂଶୋଧନ ଡକ୍ଟର ବସନ୍ତ କିଶୋର ସାହୁଙ୍କ ଦ୍ୱାରା ସମ୍ପାଦିତ ହୋଇଥିବାରୁ ମୁଁ ମହାଶୟଙ୍କ ନିକଟରେ ଚିର ଋଣି । ତା ପର ଠାରୁ ଆଜି ପର୍ଯ୍ୟନ୍ତ ମୁଁ ଖଣ୍ଡିଏ ହେଲେ ପୁସ୍ତକ ପ୍ରକାଶ କରି ପାରିନାହିଁ । ତାହାହିଁ ମୋ ଜୀବନର ଚରମ ଦୁଃଖର କାହାଣୀ ।

ସେଇ ଶାନ୍ତ ସରଳ, ନିଷ୍କପଟ, ବନ୍ଧୁବତ୍ସଳ ମହାନୁଭବ ଗୁରୁପ୍ରତିମ ଡଃ. ବସନ୍ତ କିଶୋର ସାହୁ ମହୋଦୟଙ୍କୁ ମୋର ବିନମ୍ର ପ୍ରଣାମ । ତାଙ୍କର ଅକୁଣ୍ଠିତ ସାହାଯ୍ୟ ଦୟା, ଅନୁକମ୍ପା ନିକଟରେ ମୁଁ ଚିର ଋଣି । ପ୍ରଭୁ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା କରୁଛି ସେ ଯେଉଁଠି ଥାଆନ୍ତୁ ନା କାହିଁକି ତାଙ୍କର ଆଗାମୀ ଭବିଷ୍ୟତ ଚଲାପଥ କୁସୁମିତ ହେଉ । ମା ବୀଣାପାଣୀଙ୍କ କୃପାରୁ ତାଙ୍କର ଲେଖନୀ ଚିରସ୍ରାବି ହେଉ । ଭବିଷ୍ୟତରେ ଅନେକ ଶିଶୁ ସାହିତ୍ୟ ରଚନା କରି ଉତ୍କଳ ବାଣୀଭଣ୍ଡାରକୁ ଉପହାର ଦେଉଥାନ୍ତୁ । ଅବସର ପରେ ତାଙ୍କର ସାହିତ୍ୟ ଜୀବନରେ ଉତ୍ତୋରତ୍ତର ଉନ୍ନତି ହେଉ । ଲକ୍ଷ୍ମୀନାରାୟଣଙ୍କର କୃପା ସଦା ସର୍ବଦା ତାଙ୍କ ଉପରେ ଥାଉ । ତାଙ୍କର ଅବଶିଷ୍ଟ ଜୀବନ ଶାନ୍ତିରେ କାଳାତିପାତ ହେଉ । ଏତିକି ଈଶ୍ୱରଙ୍କ ନିକଟରେ ମୋର ମାଗୁଣି ।



ଘର.ନଂ- ବି/୧୨୭, ସେକ୍ଟର-୨,
ନାଲ୍‌କୋ ଟାଉନ୍‌ସିପ୍, ଦାମନଯୋଡି.



Digitized by srujanika@gmail.com

# ବସନ୍ତର ବର୍ଣ୍ଣବିଭା

## ପ୍ରାଧ୍ୟାପକ ଡକ୍ଟର କ୍ଷୀରୋଦ କୁମାର ସାମଲ

ସୁନାବେଢ଼ା ଏକ ଭାବ ବିଭୋର ପ୍ରାକୃତିକ ସୁଷମାର ଗନ୍ତାଘର । ଜଳବାୟୁ ଶାନ୍ତ, ମୁଗ୍ଧ, ସ୍ନିଗ୍ଧ, ଚିତ୍ତଉଲ୍ଲାସକ ଓ କବି, ଭାବୁକ, ଦାର୍ଶନିକଙ୍କର ଭାବୋଦ୍ଦୀପକ ରମ୍ୟଲୀଳାର ପ୍ରୀତିପ୍ରଦାୟିନୀ । ମାୟାଚ୍ଛନ୍ନ ମୁହୂର୍ତ୍ତର ମନୋଜ୍ଞ ପରିପ୍ରକାଶ । ଅବିସ୍ମରଣୀୟ ମେଘମୁକୁଳା ଆକାଶର ସମ୍ମୋହନ ସନ୍ନ୍ୟାସ । ଅବିଶ୍ୱାସ୍ୟ ବର୍ଷାର ମଧୁର ସମ୍ଭାଷଣ ଅଥବା ମନଖୋଲା ବାରି ବର୍ଷଣ । ୧୯୮୪ରୁ ୧୯୮୭ ମାତ୍ର ତିନି ବର୍ଷର ରହଣିରେ ସୁନାବେଢ଼ାକୁ ପ୍ରେୟସୀ ପଣରେ ଆପଣାର କରିବାର ସାଧିକାର ମୋତେ ଅନିନ୍ଦ୍ୟ ଆନନ୍ଦ ଓ ସପ୍ନାତୁର କରିଥିଲା । ସୁନାବେଢ଼ା ମାଟିରେ ସାହିତ୍ୟର ବାସ୍ନା ଥିଲା, ପାଣିରେ ଥିଲା କଳ୍ପନାର ତରଙ୍ଗ, ପବନରେ ଥିଲା ସୃଜନର ସାହାନାଇ । ଆତ୍ମମଗ୍ନ ସାଧକର ନିଷ୍ଠା ନେଇ ସାରସ୍ୱତ ସୃଷ୍ଟିରେ ନିଜକୁ ଉତ୍ସର୍ଗ କରିଥିବାବେଳେ ଉର୍ଦ୍ଧ୍ୱାୟିତ ଦୃଷ୍ଟି ଥିଲା ସାମୂହିକ ସାରସ୍ୱତ ସର୍ଜନାର ଦିବ୍ୟ ଆସ୍ୱାଦନ ।

୧୯୮୫ ବେଳକୁ ଆଶା, ଆକାଂକ୍ଷାର ପରିପୂର୍ଣ୍ଣ ପ୍ରତିଶ୍ରୁତି ପ୍ରାପ୍ତିର ସୂଚନା ମିଳିଲା । ମୁଁ ଥିଲି ଏରୋନଟିକ୍ସ କଳା ଓ ବାଣିଜ୍ୟ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ । ବସନ୍ତ ବାବୁ ସେଠାରେ ମୋ ପରେ ନିଯୁକ୍ତି ପାଇଲେ ବୈଷୟିକ ଶିକ୍ଷାର ପ୍ରଶିକ୍ଷକ ଭାବେ । ଆଗରୁ ଆମର ଅଦୃଶ୍ୟ ସମ୍ପର୍କ ଥିଲା ସାରସ୍ୱତ ପ୍ରାଙ୍ଗଣରେ । ସେ ତାଙ୍କ ଗ୍ରାମ କୁସୁପୁରରୁ 'ବଗଲାବଗୁଲୀ' ଶିଶୁ କିଶୋର ପତ୍ରିକା ସଂପାଦନା କରୁଥିଲେ । ସୁନାବେଢ଼ାରେ ମଣିକାଞ୍ଚନର ସଂଯୋଗ ଘଟିଲା । ମୋର ସୁପ୍ତ ବାସନାକୁ ସେ ଦୃପ୍ତ କଲେ । ସୁନାବେଢ଼ାର ପେଟ ଚିରି ଲମ୍ବିଥିବା ଜାତୀୟ ରାଜପଥ ପାର୍ଶ୍ୱରେ ଟି-ଜୋନ ସଂଲଗ୍ନ ମହାବିଦ୍ୟାଳୟର ପ୍ରାଥମିକ ପରିସରସ୍ଥ ପାହାଡ଼ ପିଠିରେ ଦୁହେଁ ବସି ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କ ଘନିଷ୍ଠ ସଂପର୍କର ସେତୁ ରଚନା କଲୁ । ଦୁହିଁଙ୍କର ମାନସ ମନ୍ଥନରୁ ସୃଷ୍ଟି ହେଲା 'ବନଫୁଲ ସାହିତ୍ୟ ପରିଷଦ' । ଲେଟର ପ୍ୟାଡ ଛପା ହେଲା । ସାହିତ୍ୟ ସଂସଦର କାର୍ଯ୍ୟ ପାଇଁ ଦିନରାତି ଲାଗିପଡି ଆମେ ଏହାର ବାସ୍ତବ ରୂପାୟନର ଯୋଜନା କଲୁ । ମୁଁ ହେଲି ପ୍ରତିଷ୍ଠାତା ସଭାପତି ଓ ସେ ହେଲେ ପ୍ରତିଷ୍ଠାତା ସମ୍ପାଦକ । ଦିନରେ କଲେଜ କାମ, ଦ୍ୱିପ୍ରହର ଓ ସନ୍ଧ୍ୟାରେ ସଭ୍ୟ ସଂଗ୍ରହ ଚାଲିଲା । ସମ୍ବିଧାନ ତିଆରି ହେଲା । ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସ୍ଥିର ହେଲା । ଏକ ସତନ୍ତ୍ର ରୂପରେଖରେ



Digitized by srujanika@gmail.com

ବନଫୁଲ ସାହିତ୍ୟ ପରିଷଦ ଉଦ୍‌ଭାସିତ ହେଲା । ଶତାଧିକ ସଭ୍ୟଙ୍କ ସହଯୋଗରେ ଉପାନ୍ତ ଓ ବହୁଭାଷାଭାଷି ସୁନାବେଡ଼ାରେ ସଶକ୍ତ ହେଲା ସାହିତ୍ୟ ପରିଷଦ ।

ଭ୍ରାମ୍ୟମାଣ ସାହିତ୍ୟ ସଭା ହେଲା ପ୍ରତି ରବିବାରରେ । ଯେଉଁ ସଭ୍ୟଙ୍କ ବାସଗୃହରେ ସଭା ହେଉଥିଲା, ସେଦିନ ସେ ହେଉଥିଲେ ସଭାପତି ଓ ଉପସ୍ଥିତ ସାହିତ୍ୟପ୍ରେମୀଙ୍କୁ ସମ୍ୟକ ଆପ୍ୟାୟିତ କରୁଥିଲେ । ଏମିତି ଦାବି ହେଲା ଯେ ବର୍ଷକର ୫୨ ରବିବାର ନିଅଣ୍ଟ ପଡିଲା । ବିଭିନ୍ନ ଜୋନ୍‌ରେ 'ଏ' ଠାରୁ 'ଏନ୍' ଜୋନ୍ ପର୍ଯ୍ୟନ୍ତ ସାହିତ୍ୟ ସଭା ପ୍ରସରି ଗଲା ଓ ପ୍ରଶଂସିତ ହେଲା ।

୧୯୮୬ରେ ପ୍ରଥମ ବିଷୁବ ମିଳନର ଆୟୋଜନ କରାଗଲା । ରସିଦ୍ ବହି ଧରି ବସନ୍ତ ବାବୁ ଓ ମୁଁ ବୁଲିଲୁ । ଓଡ଼ିଆ ଭାଇ ଭଉଣୀମାନେ ଯେଉଁ ଆର୍ଥିକ ସହଯୋଗ କଲେ ତାହା ସମୁଦ୍ରକୁ ଶଙ୍ଖେ ଥିଲା । ତଥାପି ଆମେ ଦୁହେଁ ସାହସ ବାନ୍ଧିଲୁ । ସେତେବେଳେ ସେମିଳିଗୁଡ଼ା କଲେଜ ନୂଆ କରି ଖୋଲା ଯାଇଥାଏ ଓ ତାହା ସୁନାବେଡ଼ା-୧ରେ ଚାଲୁଥାଏ । ଅଧ୍ୟକ୍ଷ ଥାନ୍ତି, ଚାନ୍ଦବାଲି ଘଣ୍ଟେଶ୍ୱରର ରବିନାରାୟଣ ସୂତାର । ମୋର ଭାଇ ତାଙ୍କ ଗାଁର ଜ୍ୱାଇଁ । ପରିଚିତି ଥିଲା ତାଙ୍କ ସହିତ । ତାଙ୍କ ମାଧ୍ୟମରେ ସେକ୍ରେଟେରୀ ସମାଜସେବୀ ଶ୍ରୀଯୁକ୍ତ କୃଷ୍ଣ ସିଂହଙ୍କୁ ଭେଟିଲୁ ସାହାଯ୍ୟ ପାଇଁ । ସେ ତାଙ୍କ କଲେଜ ହେଉଥିବା ପରିସରର ଆମ୍ରକାନନ ଶୀତଳ ଛାୟା ତଳେ ବିଷୁବ ମିଳନ ଅନୁଷ୍ଠାନର ଆୟୋଜନ କରାଇଦେଲେ । ସୁନାବେଡ଼ା-୧ ମାର୍କେଟର ବ୍ୟବସାୟୀ ବନ୍ଧୁମାନଙ୍କ ଠାରୁ ଆଳୁ, ଚାଉଳ, ଡାଲି, ପନିପରିବା କିଛି କିଛି ମିଳିଲା । ଆମ୍ବ ଗଛରୁ ଆମ୍ବ ପାରି ଖଟା କରିବା, ଭାତ ଓ ଡାଲ୍‌ମା କରିବା ଅନ୍ତତଃ ଶହେ ଲୋକଙ୍କ ପାଇଁ ସ୍ଥିର ହେଲା ।

ନିମନ୍ତ୍ରଣ ପତ୍ର ଛପା ଯାଇ ବଣ୍ଟା ହେଲା । ଅକ୍ଳାନ୍ତ ପରିଶ୍ରମ କରି ଆମେ ଦୁହେଁ ମଞ୍ଚ ପ୍ରସ୍ତୁତ କଲୁ । ଦର୍ଶନୀୟ ମଞ୍ଚ ଓ ସାଜସଜ୍ଜା ଚିତ୍ତାକର୍ଷକ ହେଲା । ପ୍ରଥମ ବିଷୁବ ମିଳନ ଓ ସାରସ୍ୱତ ସଭାରେ ଜୟପୁର ଆକାଶବାଣୀର କାର୍ଯ୍ୟନିର୍ବାହୀ କାଳିକିଙ୍କର ମିଶ୍ର ଓ ଗାନ୍ଧିକ ଅଧ୍ୟାପକ ନାରାୟଣ ପଣ୍ଡା ମୁଖ୍ୟ ବକ୍ତା ଓ ସମ୍ମାନିତ ଅତିଥି ହୋଇ ଆସିଲେ । କୃଷ୍ଣ ସିଂହ ହେଲେ ମୁଖ୍ୟ ଅତିଥି । ସକାଳ ୯ଟାରୁ ଦିନ ୨ଟା ଯାଏଁ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ପରେ ପ୍ରସାଦ ସେବନର ବ୍ୟବସ୍ଥା କରିଥିଲୁ । ସଭା ଆରମ୍ଭରୁ ପ୍ରାୟ ଦୁଇଶହ ସାହିତ୍ୟିକ ଓ ସାହିତ୍ୟପ୍ରେମୀଙ୍କ ସମାଗମ । କବିତା ପାଠ ଓ ସାରସ୍ୱତ କାର୍ଯ୍ୟକ୍ରମ ବେଶ୍ ଉତ୍ସାହଜନକ ମନେ ହେଉଥିଲେ ହେଁ ମୁଁ ଓ ବସନ୍ତବାବୁ ପ୍ରସ୍ତୁତି ତୁଳନାରେ ସମବେତ ଶ୍ରୋତା ଓ ଦର୍ଶକଙ୍କୁ ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇଗଲୁ । ସଭାପତିତ୍ୱ କରୁଥିବାରୁ ମୁଁ ମଞ୍ଚ ଛାଡି ଯାଇ ପାରିଲି ନାହିଁ । ବସନ୍ତ ବାବୁ ବିବରଣୀ ପାଠ କରି ରନ୍ଧନ ସ୍ଥାନକୁ ଯାଇ ବୁଝାବୁଝି କଲେ ଯେ ଅନ୍ତତଃ ୨୦ କି ୩୦ ଜଣଙ୍କୁ ଅତି ବେଶିରେ ଆଡଜଷ୍ଟ କରିହେବ । ମୋତେ ଚୁପ୍ କରି କହି ଦେବାରୁ ମୁଁ ଅସ୍ଥିର



Digitized by srujanika@gmail.com

ହୋଇ ଉଠିଲି । କେବଳ ଜଗନ୍ନାଥଙ୍କୁ ହିଁ ସ୍ମରଣ କରିବା ବ୍ୟତୀତ କିଛି ବିକଳ୍ପ ନଥିଲା । ସଭାପରେ ସମସ୍ତେ ପଙ୍କ୍ତି ଭୋଜନ ପାଇଁ ବସିଯିବାରୁ ମୁଁ ଓ ବସନ୍ତ ବାବୁ ଆତ୍ମଲଜ୍ଜ୍ୟାରେ ଘାରି ହେଉଥାଉଁ । ବସନ୍ତ ବାବୁ ଖୁବ୍ ଭାଙ୍ଗି ପଡୁଥିଲେ । ତାଙ୍କୁ ଆଶ୍ୱାସନା ଦେଇ ଜଗନ୍ନାଥଙ୍କୁ ଡାକିବାକୁ କହିଲି । ପ୍ରଭୁଙ୍କର ଅପାର କରୁଣାରୁ ସମସ୍ତେ ଆନନ୍ଦରେ ଖାଇସାରି ପ୍ରାୟ ୨୦ କି ୨୫ ଜଣ ସ୍ଥାନୀୟ ଆଦିବାସୀଙ୍କୁ ବଳକା ଖାଦ୍ୟ ବାଣ୍ଟି ଦିଆଗଲା । କୋରାପୁଟରେ ଏହି ବିଷୁବ ମିଳନର ପ୍ରଥମ ସ୍ୱାଦ, ହୃଦ୍ୟ ଅନୁଭବ ଅନେକଙ୍କୁ ପ୍ରଶଂସାମୁଖର କଲା ।

ସେହିଦିନ ସାଂଗଠନିକ ଆଲୋଚନା ସମୟରେ ବନଫୁଲ ମାଧ୍ୟମରେ 'ଶତାବ୍ଦୀ' ନାମରେ ଏକ ମାସିକ ପତ୍ରିକା ପ୍ରକାଶ ପାଇଁ ସମସ୍ତଙ୍କ ଦ୍ୱାରା ସ୍ଥିର ହେଲା । ସାହିତ୍ୟ କଥା ପଡିଲେ ବସନ୍ତ ବାବୁ ଭାରି ଅସ୍ଥିର ଓ ତତ୍ପର ହୋଇ ପଡନ୍ତି । ଶୁଭସ୍ୟ ଶୀଘ୍ରମ୍ ନୀତିରେ ସେ ଲେଟର ପ୍ୟାଡ ଛାପି ଦେଲେ । ମୁଁ ଭାବି ବସେ- ଭଲ ମନ୍ଦ, ଆଗ ପଛ, ପରିସ୍ଥିତି ଓ ପରିଣାମ । ଶତାବ୍ଦୀ ବାହାରି ପାରିଲା ନାହିଁ । ପରବର୍ତ୍ତୀ କାଳରେ ୧୯୮୭ରେ ପରିଷଦର ପ୍ରଥମ ଲକ୍ଷ୍ୟ ସାହିତ୍ୟିକଙ୍କ ଭାବ ବିନିମୟ ଓ ସାରସ୍ୱତ ସମ୍ପର୍କ ସୃଷ୍ଟି ସ୍ୱରୂପ ବନଫୁଲ-୧ କବିତା ସଂକଳନ ପ୍ରକାଶ ପାଇଲା । ସମସ୍ତଙ୍କ ସହଯୋଗ ଓ ସ୍ଥାନୀୟ ବାଣିଜ୍ୟ ପ୍ରତିଷ୍ଠାନର ବିଜ୍ଞାପନ ଲବ୍ଧ ଧନରେ ଆମ ଦୁହିଁଙ୍କ ସମ୍ପାଦନାରେ ଏହା ପ୍ରକାଶ ପାଇଥିଲା ।

୧୯୮୭ର ବିଷୁବ ମିଳନକୁ ଏଚ୍.ଏ.ଏଲ୍.ର ଜେନେରାଲ୍ ମ୍ୟାନେଜର ସହୃଦୟ ଦରଦୀ ସାହିତ୍ୟପ୍ରାଣ ଶ୍ରୀଯୁକ୍ତ ନଳିନୀ ରଞ୍ଜନ ମହାନ୍ତି ଓ କୋରାପୁଟର ତତ୍କାଳୀନ ହିତୈଷୀ ଜିଲ୍ଲାପାଳ ଶ୍ରୀଯୁକ୍ତ ରବି ନାରାୟଣ ସେନାପତି (ସଂପ୍ରତି ଓଡ଼ିଶାର ଆଡିସିନାଲ୍ ଚିଫ୍ ସେକ୍ରେଟାରୀ) ଅତିଥି ରୂପେ ଯୋଗ ଦେଇ ବନଫୁଲର ଏତାଦୃଶ୍ୟ କାର୍ଯ୍ୟକଳାପର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ଏଥରର ବିଷୁବ ଆୟୋଜନ ଆମକୁ ଅଧିକ ସନ୍ତୋଷ ପ୍ରଦାନ କରିଥିଲା । ଆର୍ଥିକ ଦିଗରୁ ଓ ଶ୍ରମଦାନ ଦିଗରୁ ସଭ୍ୟମାନଙ୍କର ବିଶ୍ୱସ୍ତ ସହଯୋଗ ଆମକୁ ଦ୍ୱିଗୁଣିତ ଉତ୍ସାହିତ କରିଥିଲା ।

ବନଫୁଲ-୨ (ଗଳ୍ପ ସଂକଳନ) ପାଇଁ ଆମେ ପ୍ରସ୍ତୁତି ଚଳାଇଲୁ । ଅନେକ କାମ ଆଗେଇ ଗଲାବେଳକୁ ମୁଁ ଓଡ଼ିଶା ଲୋକସେବା ଆୟୋଗ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା ମହାବିଦ୍ୟାଳୟରେ ନିଯୁକ୍ତି ପତ୍ର ପାଇ ସୁନାବେଡ଼ା ଛାଡ଼ିଲି । ବସନ୍ତ ବାବୁ ଆମ ଉଦ୍ୟମକୁ ସାକାର କରି ବନଫୁଲ-୨ (୧୯୮୮ରେ) ପ୍ରକାଶ କଲେ । ପରବର୍ତ୍ତୀ କାଳରେ ଏହି ଅନୁଷ୍ଠାନ ବନଫୁଲ-୩ରୁ ୮(ଗଳ୍ପ କବିତା ସଂକଳନ) ସହିତ, ଦେଶାତ୍ମବୋଧକ କବିତା ସଂକଳନ, କୋରାପୁଟ ପରିକ୍ରମା (ପ୍ରବନ୍ଧ ଓ କବିତା ସଂକଳନ), ଓଡ଼ିଶାର ଲୋକନାଟ୍ୟ ଆଦି ଅନେକ ଉତ୍କୃଷ୍ଟ ପୁସ୍ତକ ତାଙ୍କ ସମ୍ପାଦନାରେ ପ୍ରକାଶ ପାଇଛି । ଅନୁଷ୍ଠାନଟି ୧୯୯୬ ପର୍ଯ୍ୟନ୍ତ ସୁଚାରୁ ରୂପେ ପରିଚାଳିତ ହୋଇ



Digitized by srujanika@gmail.com

ରାଜ୍ୟ ସ୍ତରରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ମାତ୍ର ପରବର୍ତ୍ତୀ କାଳରେ ଉପଯୁକ୍ତ ସହଯୋଗ, ପରାମର୍ଶ ଓ ଦିଗ୍‌ଦର୍ଶନ ଅଭାବରୁ ଏହା ନୀରବ ହୋଇଗଲା । ତଥାପି ବନଫୁଲର ସୁରଭି ଏବେ ମଧ୍ୟ ଲୋକଙ୍କ ମନରେ ସଜୀବ ଓ ସତେଜ ରହିଛି ।

ବସନ୍ତ ବାବୁଙ୍କ ସହିତ ମୋର କେବଳ ସାରସ୍ୱତ ସମ୍ପର୍କ ନଥିଲା, ଥିଲା ଆତ୍ମିକ ଆବେଗର ସାନ୍ଦ୍ର ସମ୍ପର୍କ । ଆମ ବନ୍ଧୁତାର ନିଃସ୍ୱାର୍ଥପର ଉଦ୍ଦେଶ୍ୟ ଅନେକଙ୍କୁ ମୁଗ୍ଧ କରିଥିଲା । ସେ ଓଡ଼ିଆରେ ଏମ୍.ଏ. ପାଶ୍ କରିଥିଲେ ମୋ ପ୍ରେରଣାରେ ପିଏଚ୍.ଡି. ପାଇଁ ପ୍ରସ୍ତୁତ ହେଲେ । ବୈଷୟିକ ବା ଧନ୍ଦାମୂଳକ ଶିକ୍ଷାରୁ ଯାଇ ନିଜ ଯୋଗ୍ୟତା ବଳରେ ଓଡ଼ିଆ ଅଧ୍ୟାପକ ହେଲେ । ଶରତ ପଣ୍ଡା ତାଙ୍କ ମୂଳ ବିଭାଗରେ ତାଙ୍କର ସହକର୍ମୀ ଥିଲେ । ବେଶ୍ ସରଳ, ଭଦ୍ର, ଅମାୟିକ ବ୍ୟକ୍ତିତ୍ୱ । ଜଣେ ଉତ୍ତମ ମଣିଷ ବୋଲି ମୁଁ ତାଙ୍କୁ ଭଲ ପାଏ । ବସନ୍ତ ବାବୁ ଓ ଶରତ ବାବୁଙ୍କ ଯୋଡ଼ି ବେଶ୍ ସୁଖକର ଥିଲା । ଈଶ୍ୱର ଖଞ୍ଜିଲା ପରି ସେ ବିଭାଗର ଦୁଇଜଣ ଦୁଇଟି ଋତୁର ପ୍ରତିନିଧିତ୍ୱ କରୁଥିଲେ ନାମ ଅନୁସାରେ ।

ବସନ୍ତ ବାବୁ ଖୁବ୍ ଧୀର ସ୍ଥିର, ଗମ୍ଭୀର ସ୍ୱଭାବର । ମପାଚୁପା କଥା । ମିତବାକ୍ ଅପ୍ରଗଲ୍‌ଭ ମଣିଷ । ବନ୍ଧୁ ଚୟନରେ ସୂକ୍ଷ୍ମ ବିଚାର, କଥାବାର୍ତ୍ତା ଓ ନମ୍ର ବ୍ୟବହାରରେ ଭଦ୍ର-ସଂଯତ ଢ଼ଙ୍ଗ ଓ ପରିଶ୍ରମରେ କୁଣ୍ଠାହୀନତା ତାଙ୍କର ବିଶେଷ ଗୁଣ । ମୁଁ ପ୍ରଗଳଭ୍, ସ୍ପଷ୍ଟବାଦୀ, ଦୂରଦ୍ରଷ୍ଟା ଓ ଭାବପ୍ରବଣ ଥିଲି । କଥାକଥାକେ କୌତୁକ ଓ ରସାଳତା ଫୁଟି ଉଠୁଥିଲା । ଛାଇ-ଆଲୁଅ କି ଦିନ ରାତି ପରି ଆମର ସମନ୍ୱିତ ଶ୍ରମ, ବୁଦ୍ଧି, ଚିନ୍ତା, କର୍ମକୌଶଳ, ସଂଗଠନ ଦକ୍ଷତା, ସାଧୁତା ଓ ଅନୁଷ୍ଠାନପ୍ରିୟତା ଆମକୁ ଏକ କରି ରଖିଥିଲା ।

ମୁଁ ସୁନାବେଡ଼ା ଛାଡ଼ିବା ପରେ ପତ୍ରାଳାପ ହୋଇଛି, ବିଶେଷ ବିଶେଷ ସାହିତ୍ୟ ସୃଷ୍ଟି କାର୍ଯ୍ୟକ୍ରମରେ ତାଙ୍କ ଅନୁରୋଧ ଏଡି ନପାରି ସାରସ୍ୱତ ସହଯୋଗ ପାଇଁ ପ୍ରବନ୍ଧ କି କବିତା ପଠାଇଛି । ସେ ପ୍ରକାଶ କରିଛନ୍ତି । ଆମର ଗଭୀର ଓ ପ୍ରଶସ୍ତ ସଂପର୍କରୁ ସେ ଅତୀତ ସ୍ମୃତି ସମ୍ବଳିତ ଲେଖା ପଠାଇବାକୁ କହିଥାନ୍ତି । ତାଙ୍କର ସାହିତ୍ୟାନୁରାଗ ବେଶ୍ ଉତ୍ସାହଜନକ, ସର୍ଜନଶୀଳ, ମୂଲ୍ୟବାନ୍ ଓ ପ୍ରତିଶ୍ରୁତିମୟ । କୋରାପୁଟରୁ କେଉଁଝର-ଦୂରତାର ବହୁ ବ୍ୟବଧାନ । ଆମେ କେବଳ ପରସ୍ପରକୁ ମନଶ୍ଚକ୍ଷୁରେ ଦେଖି ଆତ୍ମତୃପ୍ତି ଲାଭ କରିଛୁ । ବନ୍ଧୁତ୍ୱର ନିର୍ମଳ ରସପାନରେ ବିଭୋର ହୋଇଛୁ । ବାସ୍ତବତାର ବିସ୍ତୀର୍ଣ୍ଣ ବେଦୀରେ ଚିର ବନ୍ଧୁତ୍ୱର ଅମ୍ଳାନ ସାକ୍ଷର ଆଙ୍କି ଦେଇଛୁ ।



ଓଡ଼ିଆ ବିଭାଗ,
ଧରଣୀଧର ସ୍ୱୟଂଶାସିତ ମହାବିଦ୍ୟାଳୟ, କେଉଁଝର



Digitized by srujanika@gmail.com

# ବସନ୍ତ ଗାଥା

## ଡକ୍ଟର ମହେନ୍ଦ୍ର କୁମାର ମିଶ୍ର

୧୯୮୯ ମସିହା ଏପ୍ରିଲ୍ ମାସ । ବନଫୁଲ ସାହିତ ପରିଷଦ, ସୁନାବେଡ଼ାର ସମ୍ପାଦକ ଡକ୍ଟର ବସନ୍ତ କିଶୋର ସାହୁ ମୋତେ ଆମନ୍ତ୍ରଣ କରିଥିଲେ ଏକ ସାହିତ୍ୟ ସମ୍ମାନକୁ । ପ୍ରସଙ୍ଗ ଥିଲା ଓଡ଼ିଶାର ଲୋକନାଟ୍ୟ । ମୁଁ 'କଳାହାଣ୍ଡିର ଗଉଡ଼ବାଡ଼ି ନୃତ୍ୟ' ସମ୍ପର୍କରେ ପ୍ରବନ୍ଧ ପାଠ ପାଇଁ ସୁନାବେଡ଼ା ଆସିଲି । ଜୟପୁରରେ ପହଞ୍ଚି ପ୍ରଥମେ ଗଲି ଆକାଶବାଣୀ । ସେଠି ଆଦିବାସୀ ସଂସ୍କୃତି ଉପରେ ରେକର୍ଡ଼ିଂ ପାଇଁ ନିମନ୍ତ୍ରଣ ଦେଇଥିଲେ ଶ୍ରୀ କାଳିକିଙ୍କର ମିଶ୍ର ଓ ଡକ୍ଟର ହୃଷିକେଶ ପାଣିଗ୍ରାହୀ । ସେଠୁ ରେକର୍ଡିଂ ସାରି ଗଲି ସୁନାବେଡ଼ା । ସେଇଠି ଭେଟ ହେଲା ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହ । ଆଦରର ସହ ମୋତେ ପାଛୋଟି ନେଇ ଚା'ପାନ କରାଇଲେ ଓ ତାଙ୍କ କ୍ୱାଟରକୁ ନେଇଗଲେ । ସେଇଠି ପାଖ କ୍ୱାଟରରେ ଆମ୍ଭମାନଙ୍କ ରହିବା ବ୍ୟବସ୍ଥା କରିଥାନ୍ତି । ସେଇଠି ଭେଟ ହେଲା ଅଧ୍ୟାପକ ସ୍ୱର୍ଗତ ଶିବରାମ ପାତ୍ର, ଡକ୍ଟର ମନୀନ୍ଦ୍ର ମହାନ୍ତି, ଡକ୍ଟର ଆଦିକନ୍ଦ ମହାନ୍ତ ଓ ଡକ୍ଟର ରାଜେନ୍ଦ୍ର ପାଢ଼ୀଙ୍କ ସହ । ସମସ୍ତେ ଲୋକନାଟ୍ୟ ଉପରେ ପ୍ରବନ୍ଧ ପାଠ ପାଇଁ ଆସିଥାନ୍ତି ।

ମୁଁ ସେତେବେଳେ ସିନାପାଲି, ମୋ ଗାଁରେ ଥାଏ । ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥାଏ । ଡକ୍ଟରେଟ ସରିଥାଏ ୧୯୮୭ରେ । ସିନାପାଲି ପରି ଏକ ଉପାନ୍ତ ଅଞ୍ଚଳରେ ରହି ସାହିତ୍ୟ ସଭାରେ ପ୍ରବନ୍ଧ ପାଠ କରିବା ପରି ଏକ ସୁଯୋଗ ପାଇବାର ଅନୁଭବ, କୌଣସି ପୁରସ୍କାର ଠାରୁ କମ୍ ନୁହେଁ । ଏକେତ ଗ୍ରାମାଞ୍ଚଳରେ ରହି ସାହିତ୍ୟସାଧନା, ପୁଣି ନିଜକୁ ସଂପ୍ରସାରିତ କରିବାର ଏକ ଆକୁଳତା ଓ ପରିଚୟ ବିସ୍ତାର କରିବାର ମୋହ, ଏ ସବୁ ମୋତେ ଏ ନିମନ୍ତ୍ରଣ ପତ୍ର ପାଇଲା ପରେ ଅନୁଭୂତ ହେଲା ।

ମୁଁ ପ୍ରବନ୍ଧ ପାଠ ପାଇଁ ସୁନାବେଡ଼ା ଆସିଥିଲି । ଦୁଇ ଦିନର ସାହିତ୍ୟସଭା । ସୁନାବେଡ଼ା ଯଦିଓ ଶିଳ୍ପନଗରୀ, ସେଠି ଓଡ଼ିଆ ସାହିତ୍ୟ ଚର୍ଚ୍ଚାର ପାଣିପାଗ ସେତେ ଅନୁକୂଳ ନଥିଲା । ହେଲେ ଯେଉଁ ଉଦ୍ୟୋଗୀମାନେ ସେଠି ଓଡ଼ିଆ ସାରସ୍ୱତ ସାଧନା କରିବା ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ ସେମାନେ ଥିଲେ ବନଫୁଲ ସାହିତ୍ୟ ପରିଷଦର ସଭାପତି ସର୍ବୋଦୟ ନେତା କୃଷ୍ଣ ସିଂହ ଓ ସଂପାଦକ ବସନ୍ତ ବାବୁ ।



Digitized by srujanika@gmail.com

ମୋତେ ଏଠାରେ ନୂତନ ବନ୍ଧୁମାନଙ୍କୁ ଦେଖି ଉସାହିତ ଲାଗିଲା । କାଳିବାବୁ କହିଲେ ଆପଣ ଏଠି ବି ସଂସ୍କୃତି ଚର୍ଚ୍ଚା କରିବା ଦରକାର । କଳାହାଣ୍ଡି-କୋରାପୁଟ ଅଲଗା ନୁହେଁ ।

ସଭା କାର୍ଯ୍ୟ ଯଥାରୀତି ଆରମ୍ଭ ହେଲା । ଶାନ୍ତିନିକେତନର ଗଛ ଛାଇତଳେ ଯେମିତି ଭାରତୀୟ ଜ୍ଞାନ ସାଧନାର ଦୃଶ୍ୟ ଏହି ବନଫୁଲ ସାହିତ୍ୟ ପରିଷଦର ସଭାସ୍ଥଳରେ ପୁନରାବୃତ୍ତି ହେଲା । ପୁରୁଣା ସେମିଳିଗୁଡ଼ା କଲେଜର ଆମ୍ବଗଛ ତଳେ ମୁକ୍ତ ମଞ୍ଚ । ଫଗୁଣର ଗନ୍ଧବହ ଋତୁ ଓ ଆମ୍ବ ବଉଳର ବାସ୍ନା । ଆଗରେ ଓଡ଼ିଆ ସାହିତ୍ୟ ପିପାସୁ ପ୍ରାୟ ୨୦୦ ଜଣ ଶ୍ରୋତା । ଏକ ପ୍ରାକୃତିକ ସୁଷମା ବିମଣ୍ଡିତ ସକାଳ ପ୍ରହରର ଏହି ସଭାରେ ମୋତେ ଆଲୋଚନା କରିବାକୁ ଯାହା ଦିଆଯାଇଥିଲା, ତାହାତ ପଢ଼ିଲି, ହେଲେ ମୋତେ ଆଦିବାସୀ ଲୋକସଂସ୍କୃତି ଓ ଭାରତୀୟ ସଂସ୍କୃତି ସମ୍ପର୍କରେ କହିବାକୁ କିଛି ଇଙ୍ଗିତ ଓ ଅନୁରୋଧ ମିଳିଥିଲା ।

ଭାରତୀୟ ବାଙ୍ମୟରେ ରାମାୟଣ ପରମ୍ପରା କେମିତି ସାରା ଭୂଗୋଳକୁ ମହିମାମୟ କରିଛି ଓ ତହିଁରେ କଳାହାଣ୍ଡି, କୋରାପୁଟ ସମେତ ଛତିଶଗଡ଼ ଦଣ୍ଡକାରଣ୍ୟ ସଂପୃକ୍ତ ସେହି କିମ୍ବଦନ୍ତୀର ଆଲୋଚନା କଲି । ଏକ ତରୁଣ ସୁଲଭ ବକ୍ତବ୍ୟରେ ପ୍ରବୀଣତାର ଚିନ୍ତନ, ବିଶେଷତଃ ଡକ୍ଟର ଲୋହିଆ ଓ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ରାମାୟଣ ଅନୁଶୀଳନର ଅବଲମ୍ବନରେ ସାଂପ୍ରତିକ ରାମକଥାର ବୈଶିଷ୍ଟ୍ୟ ମୋ ବକ୍ତବ୍ୟ ଥିଲା । ଏଥି ସହିତ ଥିଲା ଏକ ଦୂରଦୃଷ୍ଟି ସଂପନ୍ନ କଳ୍ପନା ଯାହା, କୋରାପୁଟର ସାହିତ୍ୟ ଗବେଷକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଲକ୍ଷ୍ୟ ଥିଲା, ମୁଁ ଯେମିତି କଳାହାଣ୍ଡିର ଲୋକସଂସ୍କୃତି ଉପରେ ଗବେଷଣା କଲି, ସେମିତି, କୋରାପୁଟର ଲୋକ ସଂସ୍କୃତି ଉପରେ କେହି ଗବେଷଣା କରନ୍ତୁ । ଠିକ୍ ସେଇଆ ହିଁ ହେଲା । କୋରାପୁଟର ଲୋକସଂସ୍କୃତି ଗବେଷଣା କ୍ଷେତ୍ରରେ ଡକ୍ଟର ରାଜେନ୍ଦ୍ର ପାଢ଼ୀ ସେହି ସମୟରୁ ହିଁ ଆଗ୍ରହୀ ହେଲେ । ତଥାପି ଶିବବ୍ରହ୍ମ ପାତ୍ର, ଗୋବିନ୍ଦ ଖୁଣ୍ଟିଆ, ବିଜୟ ପ୍ରଧାନ ପ୍ରମୁଖ ଏ ଦିଗରେ ଉଦ୍ୟମ ଜାରି ରଖିଲେ ।

ଶିଶୁ ସାହିତ୍ୟ କ୍ଷେତ୍ରରେ ଡକ୍ଟର ସାହୁଙ୍କ ଅବଦାନ ଅତୁଳନୀୟ । କିନ୍ତୁ, ମୁଁ ତାଙ୍କୁ ଜଣେ ସାହିତ୍ୟର ଗବେଷକ ଓ ଅଧ୍ୟାପକ ରୂପେ ଜାଣିଥିଲି । ପରେ ଯେତେବେଳେ ତାଙ୍କ ସଙ୍ଗରେ ଘନିଷ୍ଠତା ବଢ଼ିଲା, ମୁଁ ତାଙ୍କୁ ଅଧିକ ରୂପେ ଶିଶୁ ସାହିତ୍ୟ ଉପରେ ହିଁ କାମ କରିବାର ଦେଖିଲି । ସେ ତାଙ୍କ ପିଏଚ୍.ଡି. ମଧ୍ୟ ଶିଶୁ ସାହିତ୍ୟ ଉପରେ କରିଛନ୍ତି । ତାହା ମଧ୍ୟ 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ଉପରେ ଆଧାରିତ । ମୁଖ୍ୟତଃ ଏହା ହିଁ ତାଙ୍କ ଓ ମୋ ମଧ୍ୟରେ ଥିବା ଲୋକସାହିତ୍ୟର ସେତୁ । ତାଙ୍କ ଗବେଷଣା କାଳରେ ତାଙ୍କ ସହିତ ମୁଁ ଅନେକ ପ୍ରସଙ୍ଗ ଉପରେ ଆଲୋଚନା ଜାରି ରଖିଥିଲି ।

ଡକ୍ଟର ସାହୁ ଜଣେ ସାହିତ୍ୟିକ ଯେମିତି ସଂଗଠକ ବି ସେମିତି । ସୁନାବେଡ଼ା



Digitized by srujanika@gmail.com

ଠାରେ ସେ ଯେଉଁ ସାହିତ୍ୟ ମାଧ୍ୟମରେ କ୍ଷେତ୍ର ପ୍ରସ୍ତୁତ କରିଥିଲେ, ୧୯୮୯ରେ ମୋ ପରି ଅଜ୍ଞାତ ବଣମଲ୍ଲୀ ପାଇଁ ତାହା ଥିଲା ଏକ ଅପ୍ରତ୍ୟାଶିତ ସମ୍ମାନ । ଚିହ୍ନା ଜଣା ନାଇଁ, ଅଥଚ ଆପଣାର ଭାବି ମୋତେ ଡାକିବାର ଯେଉଁ କଳ୍ପନା ସେ କରିଥିବେ, ତାହା ହିଁ ଅଦୃଶ୍ୟ ସହିତ ଅଦୃଶ୍ୟର ଗଭୀର ବନ୍ଧନ । କହିବା ବାହୁଲ୍ୟ, ସେହି ନିମନ୍ତ୍ରଣ ହିଁ ତାଙ୍କୁ ଓ ମୋତେ ଅତି ନିକଟତର କରିଥିଲା ।

ଆଜି ୧୯୮୯ରୁ ୨୦୧୨ ଭିତରେ ମୋର ଯେଉଁ ସାଧନା କ୍ଷେତ୍ର ପ୍ରସ୍ତୁତ ହୋଇଛି, ମୋତେ ବିଶ୍ୱର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଭାରତୀୟ ସଂସ୍କୃତି ଉପରେ ଆଲୋଚନା କରିବାକୁ ନିମନ୍ତ୍ରଣ କରାଯାଇଛି, ମୁଁ ଭାରତ ଓ ଭାରତ ବାହାରେ ସମ୍ମାନିତ ହୋଇଛି, ହେଲେ ଡକ୍ଟର ସାହୁଙ୍କ ଆୟୋଜିତ ସାହିତ୍ୟ ସମ୍ମାନର ସେହି ଚୈତ୍ରିକ ଓ ସୌଷମିକ ଆବେଦନ-ଯେମିତିକି ଆଦ୍ୟ ଯୌବନର ପ୍ରେମ ପୁଲକ-ମୁଁ ଆଦୌ ଭୁଲି ପାରିବି ନାହିଁ । ମୋତେ ସୁନାବେଡ଼ାର ସେହି ଆମ୍ରକୁଞ୍ଜର ଆତପ ଶୋଭିତ ତିଳ ତଣ୍ଡୁଳିତ ଛାୟାବିଥି ତଳର କମ୍ର ଓ ସୁରଭିତ ବକୁଳବାସ୍ନାର ବାଙ୍‌ମୟ ତଥାପି ଜୀବନ୍ତ କରି ରଖିଛି ।

ବସନ୍ତ ବାବୁଙ୍କ ନାମ କେବଳ ବସନ୍ତ ନୁହେଁ, ସେ ବସନ୍ତ ୧୯୮୯ର ଯେଉଁ ପ୍ରଥମ ଫଗୁଣରେ ମୋତେ ସାହିତ୍ୟର ପ୍ରଥମ ପରିଚୟ ଦେଇ କୃତାର୍ଥ କରିଥିଲେ, ତାହା ମୋ ଜୀବନ ପୁଷ୍ପର ସୁରଭି ପରି ମୋତେ ଏବେ ବି ଆମୋଦିତ କରି ରଖିଛି ।

ଚାକିରିଆଙ୍କ ଅବସର ଥାଏ, ହେଲେ ଲେଖକଙ୍କର ଜୀବନରେ ଅବସର ନଥାଏ । ଚାକିରିଆ ଚାକିରି ସର୍ବସ୍ୱ ହୋଇ ଶେଷରେ ପରିଚୟର ସମସ୍ୟାରେ ଶରୀର କ୍ଷୀଣ କଲାବେଳକୁ, ଲେଖକ ଏକ ମୁକ୍ତିର ପ୍ରତୀକ୍ଷାରେ ଥାଏ । ଲେଖକଙ୍କ ପାଇଁ ରିଟାୟାର୍ଡ ହେବା ଅର୍ଥ ସାଧୀନତାର ଉତ୍ସବ ପାଳନ କରିବା ।

ବସନ୍ତ ବାବୁଙ୍କ ଜୀବନରେ ବସନ୍ତ ହିଁ ବିରାଜମାନ ଥାଉ, ଏତିକି କାମନା ।



ରାୟପୁର

୦୮୧୦୯୦୦୬୪୩୬



Digitized by srujanika@gmail.com

# ସ୍ମୃତି ଚାରଣ

## ଡକ୍ଟର ସତ୍ୟ ପ୍ରସାଦ ଦାସ

ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ ମୋର ଘନିଷ୍ଠ ବନ୍ଧୁ । ଯଥାର୍ଥରେ, ଓଡ଼ିଆ ସାହିତ୍ୟର ସେ ଜଣେ ସ୍ରଷ୍ଟା, ଦ୍ରଷ୍ଟା, ଶିଶୁ ସାହିତ୍ୟିକ, ସମାଲୋଚକ, ପ୍ରକାଶକ, ସଂପାଦକ ଓ ସଂଗଠକ ମଧ୍ୟ । 'ବନଫୁଲ'ର ସାର୍ଥକ ମାଳୀଟିଏ ସେ । ଏକାଧିକ ସାହିତ୍ୟିକ ଅନୁଷ୍ଠାନର ସେ କର୍ମକର୍ତ୍ତାଭାବେ ପରିଚିତ । ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ସାହିତ୍ୟିକ ଓ କଳାକାରବନ୍ଧୁମାନଙ୍କୁ ସୁନାବେଡ଼ାର ପ୍ରାକୃତିକ ପରିବେଶ ମଧ୍ୟରେ ଏକତ୍ରିତ କରି ଉତ୍ସବ ମୁଖରିତ କରିବାରେ ସେ ସମର୍ଥ । କେବଳ ସେତିକି ନୁହେଁ, ସମସ୍ତ ନିମନ୍ତ୍ରିତ ଅତିଥିମାନଙ୍କ ରହିବା, ଖାଇବା ତଥା ଅନ୍ୟାନ୍ୟ କାର୍ଯ୍ୟ ଟିକିନିଖି ତଦାରଖ କରିବା ସହ ତାଙ୍କରି ଅମାୟିକ ଓ ଅନ୍ତରଙ୍ଗ ବ୍ୟବହାରର ମଣିକାଞ୍ଚନ ସଂଯୋଗ, ବାସ୍ତବରେ ଅବିସ୍ମରଣୀୟ । ଅତୀତର ସେହି ସଂପର୍କବୋଧ ଆଜି ବି ଅମ୍ଳାନ ରହିଛି । କାର୍ଯ୍ୟରୁ ଅବସର ନେଲେ ବି, ଓଡ଼ିଆ ସାହିତ୍ୟର ସାମଗ୍ରିକ ବିକାଶ କ୍ଷେତ୍ରରେ ସେ ନିଜକୁ ଉଦାର ହୃଦୟରେ ଉତ୍ସର୍ଗ କରିବେ ବୋଲି ମୋର ଅତୁଟ ଆଶା ଓ ବିଶ୍ୱାସ । ସେହି ସ୍ୱାଭିମାନୀ ବ୍ୟକ୍ତିତ୍ୱଙ୍କ ଚଲାପଥ ଦୀର୍ଘ ଓ ସଦାସର୍ବଦା ମଙ୍ଗଳମୟ ହେଉ, ଏହା ହିଁ ଭଗବାନଙ୍କ ନିକଟରେ ମୋର ବିନୀତ ପ୍ରାର୍ଥନା ।



ପ୍ରାଧ୍ୟାପକ, ଓଡ଼ିଆ ଭାଷା ସାହିତ୍ୟ ବିଭାଗ,
କୋଟପାଡ଼ ମହାବିଦ୍ୟାଳୟ, କୋଟପାଡ



Digitized by srujanika@gmail.com

# ପରଶମଣି : ଡକ୍ଟର ବସନ୍ତ କିଶୋର ସାହୁ

**ବସନ୍ତ କୁମାର ଦାସ**

ତାଙ୍କ ନାମ ବସନ୍ତ କିଶୋର । ନାମର ଯଥାର୍ଥତା ପ୍ରତିପାଦିତ ହୁଏ ତାଙ୍କ କାମରେ । ସେ ସର୍ବଦା କିଶୋର ଭଳି ନାମ ଓ କାମରେ । ବସନ୍ତ ଋତୁ ପରି ତାଙ୍କର ଥଣ୍ଡା ମିଜାଜ ଓ କବି ପ୍ରାଣର ସ୍ପନ୍ଦନ । ସାହିତ୍ୟ ଜଗତର ଚିର କୁମାର, କିଶୋର କବି, ଲେଖକ, ପ୍ରାବନ୍ଧିକ, ସମାଲୋଚକ ଏମିତି କେତେ କ'ଣ ହେଉଛନ୍ତି ଡକ୍ଟର ବସନ୍ତ କିଶୋର ସାହୁ । କୋରାପୁଟ, ଓଡ଼ିଆ ଭାଷା ସାହିତ୍ୟ ଓ ଶିଶୁ ସାହିତ୍ୟ ସମ୍ପର୍କିତ ଲେଖା ମାଧ୍ୟମରେ ସେ ଓଡ଼ିଶାରେ ବେଶ୍ ଜଣାଶୁଣା ।

ଅବିଭକ୍ତ କୋରାପୁଟ ଜିଲ୍ଲାର ଦାମନଯୋଡ଼ିରେ ରହିବାର ଠିକ୍ ଦେଢ଼ବର୍ଷ ପରେ ୧୯୯୦ ମସିହାରେ ଓଡ଼ିଆ ଲେଖକ ପାଠକ ସମ୍ମେଳନରେ ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହ ଘନିଷ୍ଠତା ବଢ଼ିଲା । ତା ପୂର୍ବରୁ ଦାମନଯୋଡ଼ିରେ ରହିବାର ଅଳ୍ପ କେତେ ଦିନପରେ ତାଙ୍କ ସହ ଏରୋନଟିକ୍ସ କଲେଜ, ସୁନାବେଡ଼ାର ପୁରୁଣା ବିଲଡିଂ(ବର୍ତ୍ତମାନର ଏଚ୍.ଏ.ଏଲ୍.ର ଟ୍ରେନିଂ ଆଣ୍ଡ ଡେଭଲପ୍‌ମେଣ୍ଟ ସେଣ୍ଟର)ରେ ସାକ୍ଷାତ ହୁଏ । ତାଙ୍କୁ ଦେଖିବା ପରେ ତାଙ୍କ କଥା ଓ ବ୍ୟକ୍ତିତ୍ୱ ମୋତେ ଖୁବ୍ ପସନ୍ଦ ଲାଗିଲା । ପରବର୍ତ୍ତୀ ସମୟରେ ବିଭିନ୍ନ ସାହିତ୍ୟ ସଭା ସଂକ୍ରାନ୍ତରେ ଯୋଗଦେବାକୁ ଓ ଲେଖାଲେଖି ଜାରି ରଖିବାକୁ ସେ ମୋତେ ପ୍ରବର୍ତ୍ତାଇଲେ । ଯେତିକି ମୋର ସାହିତ୍ୟ ପ୍ରତି ରୁଚି ଓ ପସନ୍ଦ ଥିଲା ତାଙ୍କ ଯୋଗୁ ତାହା ଦ୍ୱିଗୁଣିତ ହେଲା ।

ସୁନାବେଡ଼ାସ୍ଥ ବନଫୁଲ ସାହିତ୍ୟ ପରିଷଦର ବିଭିନ୍ନ କାର୍ଯ୍ୟକ୍ରମ ସହିତ ସେମିଳିଗୁଡ଼ା ଓ କୋରାପୁଟରେ ଅନୁଷ୍ଠିତ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ମାନଙ୍କରେ ଯୋଗ ଦେବାକୁ ବ୍ୟକ୍ତିଗତ ଭାବେ ସେ ନିଜେ ମୋତେ ଖବର ଦେଇଥାନ୍ତି । ରାଜ୍ୟସ୍ତରୀୟ ଅନୁଷ୍ଠାନ 'ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ'(RIOCL)ର ବାର୍ଷିକ କର୍ମଶାଳା ମାନଙ୍କରେ ଯୋଗ ଦେବା ପାଇଁ ସେ ମୋତେ ବହୁ ପୂର୍ବରୁ ଜଣାଇଥାନ୍ତି । ତାଙ୍କ ପ୍ରେରଣାରେ ୨୦୧୧ ମସିହା ଦୁର୍ଗାପୂଜା ଛୁଟିରେ (ନନ୍ଦନକାନନ ଉଚ୍ଚଇଂରାଜୀ ବିଦ୍ୟାଳୟ)ଅନୁଷ୍ଠିତ କର୍ମଶାଳାରେ ମୁଁ ଜଣେ ସାଧନକର୍ମୀ



Digitized by srujanika@gmail.com

(Resource person) ଭାବରେ ଯୋଗଦାନ କରିଥିଲି । ସେଠାରେ ଶିଶୁ ସାହିତ୍ୟିକମାନେ କିପରି ପିଲାମାନଙ୍କ ପାଇଁ ବିଜ୍ଞାନ ଲେଖା ଲେଖିବେ ସେ ସମ୍ପର୍କରେ ରାଜ୍ୟର ବିଭିନ୍ନ ସ୍ଥାନରୁ ଆସିଥିବା ଶିଶୁ ସାହିତ୍ୟିକ ଓ ଛାତ୍ରଛାତ୍ରୀମାନଙ୍କୁ ମୁଁ ଶିକ୍ଷା ପ୍ରଦାନ କରିଥିଲି । ଏହି କର୍ମଶାଳାରେ ଜାତୀୟ ତଥା ରାଜ୍ୟସ୍ତରୀୟ ଅନେକ ଶିଶୁ ସାହିତ୍ୟିକ, ଲେଖକ, ସମାଲୋଚକମାନଙ୍କ ସହ ପରିଚିତ ହେବା ସଙ୍ଗେ ସଙ୍ଗେ ଶିଶୁ ସାହିତ୍ୟର ବିଭିନ୍ନ ଦିଗ ସମ୍ବନ୍ଧରେ ଆଲୋଚନା ହୋଇଥିଲା ।

ସେଠାରେ ମୁଁ ଦେଖିଲି ବସନ୍ତ ବାବୁଙ୍କ ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେ କର୍ମଶାଳାର ଆୟୋଜକ, ସଂଗଠକ ଓ ସଂଚାଳକ ମଧ୍ୟ ଥିଲେ । ରାଜଧାନୀ ତଥା ରାଜ୍ୟର ବିଭିନ୍ନ ସ୍ଥାନରୁ ଆସିଥିବା ଛାତ୍ରଛାତ୍ରୀ/ଲେଖକ, ପାଠକ, ଶିକ୍ଷକ ସମସ୍ତଙ୍କ ପାଇଁ ସେ ଥିଲେ କେନ୍ଦ୍ରବିନ୍ଦୁ । ସେଇଠୁ ମୁଁ ଜାଣିଲି ସେ କେବଳ କୋରାପୁଟରେ ସାହିତ୍ୟ କରନ୍ତି ନାହିଁ, ସମଗ୍ର ରାଜ୍ୟ ତଥା ଦେଶର ସାହିତ୍ୟର ମଶାଲ ଧରିବା କଥା ମୁଁ ସେଇଦିନ ଅଙ୍ଗେ ନିଭେଇଲି ଓ ଦେଖିଲି । ଏହାର ପ୍ରମାଣ ତାଙ୍କ ଦ୍ୱାରା ସଂକଳିତ ଇଂରାଜୀରେ Who's who in Oriya Children's Literature ପୁସ୍ତକ ତଥା ଆଧୁନିକ ଜ୍ଞାନ କୌଶଳରେ ନିର୍ମିତ ତାଙ୍କ www.riocl.org ୱେବସାଇଟ୍‌ରୁ ମିଳିଥାଏ ।

ମୋର ଦୁଇଟି ବହି 'ବିଜ୍ଞାନର କଥା' ଓ 'ପିଲାଙ୍କ ବିଜ୍ଞାନ କୁଇଜ୍' ବହି ତାଙ୍କ ଅଗ୍ରଣୀ ଅକ୍ଷରସଜ୍ଜା ମାଧ୍ୟମରେ ପ୍ରକାଶ ସମ୍ଭବ ହୋଇଥିଲା । ସେ ମୋତେ ଶିଶୁମାନଙ୍କ ପାଇଁ ନୂଆନୂଆ ବିଜ୍ଞାନ ପୁସ୍ତକ ଲେଖିବାକୁ ସର୍ବଦା ପ୍ରେରଣା ଯୋଗାଇଥାନ୍ତି । ଅନେକ ମୂଲ୍ୟବାନ ସୃଜନଶୀଳ ଉପଦେଶ ତାଙ୍କର ମୁଁ ପାଳନ କରିପାରି ନଥିବାରୁ ବହୁ ଦୁଃଖିତ ଓ ମର୍ମାହତ । ଯେ କୌଣସି ସାରସ୍ୱତ କାମ ନିମନ୍ତେ ତାଙ୍କ ପାଖରୁ ଯାଇ ପରାମର୍ଶ ନେଇଥାଏ । ତାଙ୍କ ଜରିଆରେ (୧)Perspective on Value Education (ଇଂରାଜୀ/ଓଡ଼ିଆ) (୨)BATAYANA (୩) ପିଲାଙ୍କ ବିଜ୍ଞାନ କୁଇଜ୍ (୪) ବିଜ୍ଞାନ କଥା (୪) ଅନେକ କବିତା ପୁସ୍ତକ (ଶିଶୁଙ୍କ ପାଇଁ ତାଙ୍କ ହାତ ସ୍ପର୍ଶରେ ପ୍ରକାଶ, ମୁଦ୍ରଣ ଓ ମାର୍ଜନା ହୋଇଛି । ବନ୍ଧୁ ସୁଶାନ୍ତ କୁମାର ଦାଶ ତାଙ୍କର ଅନେକ ଶିଶୁ କବିତା ସଂକଳନ ଡକ୍ଟର ସାହୁଙ୍କ ମାଧ୍ୟମରେ ପ୍ରକାଶ କରି ସଫଳ ହୋଇଛନ୍ତି ।

ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ମୋର ଏକ ବିଜ୍ଞାନ ପୁସ୍ତକ ଡକ୍ଟର ସାହୁ ଅକ୍ଷରସଜ୍ଜା କାମ କରୁଥିବାବେଳେ ମୋର ଜଣେ ବନ୍ଧୁ ଶ୍ରୀ କୃପାସିନ୍ଧୁ ନାୟକ ମୋ ସାଙ୍ଗରେ ତାଙ୍କ ସୁନାବେଡ଼ାସ୍ଥିତ ବାସଭବନକୁ ଯାଉଥିଲେ । ସେଠି ସେ ଦେଖିଲେ ଡକ୍ଟର ସାହୁ ସର୍ବଦା ତାଙ୍କ ସାରସ୍ୱତ ସାଧନାରେ ମଗ୍ନ । ବହିପତ୍ର ଭଲ ତ ସିଏ ଭଲ ।



Digitized by srujanika@gmail.com

ବହିଗୁଡ଼ିକୁ ଅତି ଯତ୍ନ ସହକାରେ ସଜେଇ ଡ୍ରଇଁ ରୁମ୍‌ରେ ରଖିଥାନ୍ତି । ମୋ ସାଙ୍ଗରେ ବାରମ୍ବାର ତାଙ୍କ ପାଖକୁ ଯିବାଆସିବା କରିବା ଦ୍ୱାରା ସେ ଜିଦ୍ ଧରିଲେ ସେ ମଧ୍ୟ ପିଲାମାନଙ୍କ ପାଇଁ ଏକ କବିତା ବହି ଲେଖିବେ ଓ ଡକ୍ଟର ସାହୁ ତାକୁ ଠିକ୍ ରୂପେ ସଜାଡ଼ି ଯେଉଁଠି ଯେଉଁ ଶବ୍ଦ ବସାଇବା କଥା ବସାଇବେ । ସେଇଆ ହେଲା । ଶ୍ରୀଯୁକ୍ତ ନାୟକ ଡକ୍ଟର ସାହୁଙ୍କ ପରାମର୍ଶ କ୍ରମେ ଓଡ଼ିଶାର ୩୦ଟି ଜିଲ୍ଲା ସମ୍ପର୍କରେ ଏକ କବିତା ବହି ଲେଖିଲେ । ତାହା ଡକ୍ଟର ସାହୁଙ୍କ ଦ୍ୱାରା ସଂଶୋଧିତ ହେବା ସହିତ ତାଙ୍କ ମାଧ୍ୟମରେ ପୂର୍ଣ୍ଣ କଳେବର ଓ ସୁଦୃଶ୍ୟ ଛବି ମାଧ୍ୟମରେ ପ୍ରକାଶିତ ହେଲା । ବହିଟି ଓଡ଼ିଆ ଭାଷାରେ କବିତା ମାଧ୍ୟମରେ ୩୦ଟି ଜିଲ୍ଲାର ଭୌଗୋଳିକ ଅବସ୍ଥିତି ସୂଚାଇବା ସହିତ ସଂକ୍ଷେପରେ ପ୍ରତ୍ୟେକ ଜିଲ୍ଲା ସମ୍ପର୍କରେ ସୂଚନା ପ୍ରଦାନ କଲା । ବହିଟି ସମସ୍ତଙ୍କ ଦ୍ୱାରା ଖୁବ୍ ଆଦୃତ ହେବା ସଙ୍ଗେ ସଙ୍ଗେ ଏପରି ପାଠକୀୟ ଆଦୃତି ଲାଭ କଲା ଯାହା ବର୍ଣ୍ଣନା କରାଯାଇପାରିବ ନାହିଁ । ଚାହୁଁ ଚାହୁଁ ମାତ୍ର କେଇ ଦିନ ମଧ୍ୟରେ ପ୍ରଥମ ସଂସ୍କରଣ ୧୦୦୦ କପି ଶେଷ ହୋଇଗଲା । ଏହାର ମୂଳ ବିନ୍ଧାଣୀ ଥିଲେ ଡକ୍ଟର ସାହୁ ।

ସବୁ ସମୟରେ ଡକ୍ଟର ବସନ୍ତ କିଶୋର ସାହୁ ମୋର ଓ ଆମ ମାନଙ୍କର ପ୍ରିୟଭାଜନ ହୋଇ ରହିଛନ୍ତି । ହଠାତ୍ କିଛି ଦିନ ତଳେ ଜାଣିଲି ଯେ ସେ ଅଳ୍ପ ଦିନ ମଧ୍ୟରେ ନିଜ ବୃତ୍ତିଗତ ଜୀବନରୁ ଅବସର ନେଉଛନ୍ତି । ଏହା ମୁଁ ବିଶ୍ୱାସ କରିପାରିଲିନି । ଆହୁରି ଅନେକ କାମ ମୋର ତାଙ୍କ ମାଧ୍ୟମରେ କରିବାର ଥିଲା । ତାହା ସତରେ ଅଧୁରା ହୋଇ ରହିଗଲା । ସେ ସର୍ବଦା ମୋ ପାଇଁ ଶୁଭେଚ୍ଛୁ ଓ ଦିଗ୍‌ଦର୍ଶକ ହୋଇ ବତୀଘର ସଦୃଶ ରହିଥିବେ । ଯେ କୌଣସି ସାହିତ୍ୟ ଆସରରେ ସେ ନିଶ୍ଚୟ ଥିବେ । ଖୁବ୍ ଗୁଡ଼ାଏ କଥା କହି ବକ୍‌ବକ୍ ହେବା, ଆତ୍ମପ୍ରଚାର ଓ ଆତ୍ମପ୍ରସାର ଠାରୁ ଢ଼େର୍ ଦୂରରେ ରହୁଥିବା ଯୋଗୁଁ, ତାଙ୍କ ବ୍ୟକ୍ତିତ୍ୱ ମୋତେ ଖୁବ୍ ଭଲ ଲାଗେ । ପ୍ରକୃତରେ ଜଣେ ସାହିତ୍ୟିକର ଯାହା ସବୁ ବିଶେଷତ୍ୱ ରହିବା କଥା ତାହା ତାଙ୍କ ଠାରେ ନିହିତ ଅଛି ।

ଯେ କୌଣସି ସମୟରେ ତାଙ୍କ ଠାରୁ ଆସ୍ତିବାଚକ କଥା ଶୁଣିବାକୁ ମିଳେ । ଏଣୁ ମୋତେ ସେ ବେଶ୍ ଭଲ ଲାଗନ୍ତି । ତାଙ୍କର ବିଭିନ୍ନ ଲେଖାଗୁଡ଼ିକ ମୋତେ ବେଶ୍ ଭଲ ଲାଗେ । ଏଣୁ ତାଙ୍କ ବ୍ୟକ୍ତିତ୍ୱକୁ ମୁଁ ସମ୍ମାନ ଜଣାଏ । ସମୟ ଓ ସାଧନାକୁ ସମ୍ମାନ ଜଣାଉଥିବାରୁ ତାଙ୍କୁ ସିଦ୍ଧି ମିଳିଛି । ବହୁ କଷ୍ଟ ସ୍ୱୀକାର କରି ସେ ଘଣ୍ଟା ଘଣ୍ଟା ବସି ରହି ତାଙ୍କ ସାରସ୍ୱତ କାମରେ ମଗ୍ନ ଥାନ୍ତି, ଯାହାକି କ୍ୱଚିତ୍ ଦେଖିବାକୁ ମିଳେ । ଏକାଧାରରେ ସେ ଜଣେ ସୁସଂଗଠକ ଓ ସମାଲୋଚକ ମଧ୍ୟ । ସେ କୋରାପୁଟ ଜିଲ୍ଲା ପାଇଁ ଏକ ଭିନ୍ନ ମଣିଷ । ଏଥିରେ ଦ୍ୱିମତ ହେବାର ନାହିଁ । ତାଙ୍କ ଅନୁପସ୍ଥିତି କୋରାପୁଟର ସାହିତ୍ୟିକମାନଙ୍କ ପାଇଁ ନିଶ୍ଚୟ ଅପୂରଣୀୟ ହୋଇ ରହିବ । ସେ ଖୁବ୍ ଭଲ ମଙ୍ଗୁଆଳ ଥିଲେ ।



Digitized by srujanika@gmail.com

ସେ ସିନା ଚାକିରିରୁ ଅବସର ନେଉଛନ୍ତି, ହେଲେ ତାଙ୍କର ସାହିତ୍ୟ ପ୍ରତି ଥିବା ନିଷ୍ଠା ଓ ନିଶା ଏବେ ନିଶ୍ଚିତ ରୂପେ ବହୁଗୁଣିତ ହେବ ବୋଲି ମୋର ଆଶା ଓ ବିଶ୍ୱାସ । ସେ ଯେଉଁଠି ଥାଆନ୍ତୁ ନା କାହିଁକି ସର୍ବଦା ସାହିତ୍ୟ ଜଗତର ନୂତନ କଥା-ଗାଥାର ଗରିମା ଓ ଗୁଞ୍ଜରଣ ଆମମାନଙ୍କ ପାଇଁ କରିବେ ବୋଲି ମୋର ଆଶା ଓ ବିଶ୍ୱାସ । ତାଙ୍କର ଅବସର ସମୟତକ କୁସୁପୁରରେ କୁସୁମିତ ହେବା ସଙ୍ଗେ ସଙ୍ଗେ କୋଇଲିର କୁହୁ ତାନର ତାଳେ ତାଳେ କର୍ମଚଞ୍ଚଳ କର୍ମଠ ହେବା ନିମନ୍ତେ ମୁଁ ଜଗତର ନାଥ ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା କରୁଛି ।

ବସନ୍ତ କିଶୋର ହେ ବସନ୍ତ କିଶୋର
ତୁମକୁ ମୁଁ କରୁଅଛି ପ୍ରଣତି ଜୁହାର ।
ଯେ ହେତୁ ଅଟ ତୁମେ କୁସୁପୁର ବୀର
ତୁମକୁ ପାରିବ କିଏ କଳି ଏ ସଂସାରର ।
ଥିଲ ମହାରଥୀ ତୁମେ ସାହିତ୍ୟ ଜଗତର
ତୁମ ଭବିଷ୍ୟତ ହୋଇ ଉଠୁ ଅମ୍ଳାନ ଭାସ୍ୱର ।
ଆଗାମୀ ଦିନ ହେଉ ତୁମ ପାଇଁ (ଖାଲି ପୁରସ୍କାର) ସରସ, ସୁନ୍ଦର
ଏତିକି ମିନତି ମୋର ଈଶ୍ୱର ପୟର ॥



ବିଜ୍ଞାନ ସଂଚାରକ
ବି/୧୧୩, ସେକ୍ଟର-୧
ସରସ୍ୱତୀ ବିଦ୍ୟାମନ୍ଦିର, ଦାମନଯୋଡ଼ି



Digitized by srujanika@gmail.com

# ବସନ୍ତର ପ୍ରତୀକ ବସନ୍ତ କିଶୋର

ଡକ୍ଟର ସୀମାଞ୍ଚଳ ପ୍ରଧାନ

ଓଡ଼ିଆ ଶିଶୁ ସାହିତ୍ୟ ଜଗତର ସାହିତ୍ୟିକଗଣଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ହେଉଛନ୍ତି ଏକ ସାରସତ ପ୍ରତିଭା । ସେ ଏକାଧାରରେ ଜଣେ ଛାତ୍ର ବତ୍ସଳ ଅଧ୍ୟାପକ, ସାହିତ୍ୟ ପତ୍ରିକାର ସଂପାଦକ, ସୁଲେଖକ, ସଂଗଠକ ଓ ସୁବକ୍ତା । ଏହି ମହାନ୍ ପ୍ରତିଭାଧାରୀ ସ୍ରଷ୍ଟାଙ୍କର ଆବିର୍ଭାବ ହୁଏ କଟକ ଜିଲ୍ଲାର କୁସୁପୁର ଗ୍ରାମରେ; ଯେଉଁ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ପଲ୍ଲୀକବି ନନ୍ଦକିଶୋର ବଳ । ପ୍ରାକୃତିକ ପରିବେଶ ପରିପୂର୍ଣ୍ଣ କୁସୁପୁର ଯେଭଳି ନନ୍ଦକିଶୋରଙ୍କୁ ପଲ୍ଲୀକବିର ଆସନରେ ଆସୀନ କରାଇଥିଲା, ସେହିଭଳି ପ୍ରକୃତିର ଗନ୍ତାଘରେ ଆବିର୍ଭାବ ହେବାର କିଛି ବର୍ଷ ପରେ ବସନ୍ତ ବାବୁ ସୁଦୂର କୋରାପୁଟର ପ୍ରାକୃତିକ ପରିବେଶ ଘେରା ସୁନାବେଡ଼ାରେ ପାଦଦେଲେ । ବାସ୍ତବରେ ସୁନାବେଡ଼ା ଚିରବସନ୍ତର ଏକ ପୀଠସ୍ଥଳୀ । ବସନ୍ତ ବାବୁଙ୍କ ପାଇଁ ଏହି ସହର ଥିଲା ବେଶ୍ ମନୋମୁଗ୍ଧକର । ପ୍ରକୃତିର କୋଳରେ ସେ ଏପରି ଭାବେ ନିମଜ୍ଜିତ ହୋଇଯାଇଥିଲେ ଯେ, ତାଙ୍କରି ଅଗୋଚରରେ ଆସିଯାଇଥିଲା ଅବସର ।

ଓଡ଼ିଆ ବାଣୀଭଣ୍ଡାରର ସେ ଜଣେ ଚିହ୍ନରା ଗ୍ରାହକ । ତାଙ୍କ ଅମରଲେଖନୀ କେବେ ନୀରବ ରହିଥିବା ମୁଁ ଲକ୍ଷ୍ୟ କରିନାହିଁ । ଅନବରତ ସେ ସାହିତ୍ୟ ସେବାରେ ନିଜକୁ ନିୟୋଜିତ କରିଛନ୍ତି । ବିଭିନ୍ନ ସଭାସମିତିରେ ସେ ନିମନ୍ତ୍ରଣ ରକ୍ଷାକରି ଉପସ୍ଥିତ ହୋଇଛନ୍ତି । ଅହଙ୍କାର ଶୂନ୍ୟ ମଣିଷଟି ବସନ୍ତ ପରି ନିତ୍ୟ ନୂତନ, ଚିର ସବୁଜ । ତାଙ୍କୁ ଦେଖିଲେ ଯେ କେହି କହିବ ଅବସର ନେବାକୁ ଆହୁରି ଅନେକ ବର୍ଷ ସତେ ଯେପରି ବାକି ଅଛି । ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷାର ସେ ହେଉଛନ୍ତି ଜଣେ ଅବଗାହୀ ପାଠକ ଓ ଲେଖକ । ବିଭିନ୍ନ ଭାଷାରେ ତାଙ୍କ ପାଠକୀୟ ସ୍ପୃହାର ଅମଳିନ ସାକ୍ଷର ବହନ କରିଛି ତାଙ୍କ ପ୍ରଣୀତ ଗ୍ରନ୍ଥ- ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ, ଓଡ଼ିଆ ଶିଶୁ ସାହିତ୍ୟ ଆଲୋଚନା, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ, ଗଛ ଆମ ଜୀବନ, ଉଦୁଉଦୁମା, ଇଞ୍ଚିତି ମିଞ୍ଚିତି ଆଦି ୩୨



Digitized by srujanika@gmail.com

ଖଣ୍ଡ ପୁସ୍ତକ । 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ହେଉଛି ତାଙ୍କ ଗବେଷଣା ସନ୍ଦର୍ଭ ।

ଏତଦ୍ ବ୍ୟତୀତ ତାଙ୍କ କୋରାପୁଟ ପରିକ୍ରମା, କୋରାପୁଟ ଜିଲ୍ଲାର ଐତିହ୍ୟ ପରମ୍ପରାର ଦିଗଦିଗନ୍ତକୁ ଉନ୍ମୋଚନ କରିବାରେ ଏକମାତ୍ର ସହାୟକ ଗ୍ରନ୍ଥ । ଓଡ଼ିଆ ସାହିତ୍ୟର ଜଣେ ନିରୁତା ସ୍ରଷ୍ଟା ହିସାବରେ ସେ ବିଭିନ୍ନ ସାହିତ୍ୟାନୁଷ୍ଠାନ ତରଫରୁ ସମ୍ମାନୀତ । ଭୁବନେଶ୍ୱର ପୁସ୍ତକ ମେଳା, ରାଜଧାନୀ ପୁସ୍ତକମେଳା, ମୀନାବଜାର ପୁରସ୍କାର ପାଇବା ସହ ସେ ପ୍ରାୟ ୩୦ରୁ ଉର୍ଦ୍ଧ୍ୱ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ଓ ପୁରସ୍କୃତ ।

ସୁନାବେଡ଼ାରେ ଦୀର୍ଘଦିନ ଧରି ଅବସ୍ଥାପିତ ବସନ୍ତ ବାବୁଙ୍କ ପ୍ରାଣ ଥିଲା ଜଗନ୍ନାଥ ମୟ । ତାଙ୍କ ସମ୍ପାଦନାରେ 'ସର୍ଣ୍ଣକ୍ଷେତ୍ର' ଭଳି ଏକ ଗବେଷଣାଧର୍ମୀ ପତ୍ରିକାର ସାତଟି ସଂଖ୍ୟା ପ୍ରକାଶିତ କରି ପାଠକୀୟ ସ୍ୱୀକୃତି ଲାଭ କରିବା କମ୍ କଥା ନୁହେଁ। ଏହା ତାଙ୍କ ଦାୟିତ୍ୱବୋଧ ଓ ଜଗନ୍ନାଥ ପ୍ରାଣତାର ପରିଚୟ ମାତ୍ର ।

ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାରେ ରହି ନିରବଚ୍ଛିନ୍ନ ଭାବେ ସାହିତ୍ୟ ସାଧନା କରିବାରେ ସେ ହେଉଛନ୍ତି ପ୍ରଥମ ସଫଳ ସ୍ରଷ୍ଟା । ସଂପ୍ରତି ଡକ୍ଟର ବସନ୍ତ କିଶୋର ସାହୁ ସୁନାବେଡ଼ାସ୍ଥିତ ଏରୋନଟିକ୍ସ ମହାବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟର ଜଣେ ଛାତ୍ରବତ୍ସଳ ଅଧ୍ୟାପକ ରୂପେ ଅବସ୍ଥାପିତ । ଆଉ କିଛି ମାସ ପରେ ସେ ନିଜ ଚାକିରି ଜୀବନରୁ ଅବସର ନେବେ, କିନ୍ତୁ ସାହିତ୍ୟ ଜଗତରୁ ନୁହେଁ, ଏହି ଆତ୍ମପ୍ରତ୍ୟୟ ମୋର ଅଛି । ଓଡ଼ିଆ ସାହିତ୍ୟ ଜଗତ ତାଙ୍କ ଠାରୁ ଆହୁରି ଅନେକ ଗବେଷଣାଧର୍ମି ଗ୍ରନ୍ଥ ପ୍ରାପ୍ତିର ଆଶା ରଖିଛି; ଏହା କହିବା ଧୃଷ୍ଟତା ହେବ, ତଥାପି ମୋର ଆଶା ଓ ବିଶ୍ୱାସ ସେ ଅବିରତ ଲେଖନୀ ଚାଳନା କରି ଓଡ଼ିଆ ବାଣୀ ଭଣ୍ଡାରର ମୁଖ ଉଜ୍ଜ୍ୱଳ କରିବେ । ସେ ଜଗନ୍ନାଥଙ୍କ ଅପାର କରୁଣାରୁ ଦୀର୍ଘାୟୁ ଓ ନିରାମୟ ଜୀବନ ଯାପନ କରନ୍ତୁ ଓ ପ୍ରଭୁ ଜଗନ୍ନାଥ ତାଙ୍କ ଲେଖନୀକୁ ଚଳଚଞ୍ଚଳ କରନ୍ତୁ ଏହାହିଁ ମୋର ସେହି ପରମ କାରୁଣିକଙ୍କ ପାଦପଦ୍ମରେ ଭିକ୍ଷା ।



ଅଧ୍ୟାପକ, ଓଡ଼ିଆ ବିଭାଗ
ମା ମାର୍କମା ମହାବିଦ୍ୟାଳୟ
ବିଷମ କଟକ (ରାୟଗଡ଼ା)
ମୋ : ୯୪୩୭୮୬୯୭୭୦



Digitized by srujanika@gmail.com

# ସମ୍ପର୍କ ଡୋରିରେ
# ଅଧ୍ୟାପକ ବସନ୍ତ କିଶୋର ସାହୁ

**ଡକ୍ଟର ନିମାଇଁ ଚରଣ ମିଶ୍ର**

ବହୁମୁଖୀ ପ୍ରତିଭା ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହ ମୋର ସମ୍ବନ୍ଧ ଅର୍ଦ୍ଧଶତାବ୍ଦୀରୁ ଅଧିକ । ଏଇଥି ପାଇଁ ଯେ, ସେ ଆମ ପଡୋଶୀ ଗାଁ କୁସୁପୁରରେ ଜନ୍ମ, ସୁପରିଚିତ ଲବ୍ଧପ୍ରତିଷ୍ଠିତ ପଲ୍ଲିକବି ନନ୍ଦକିଶୋର ବଳଙ୍କ ଦ୍ୱାରା ପ୍ରତିଷ୍ଠିତ ଉଚ୍ଚବିଦ୍ୟାଳୟ ନନ୍ଦକିଶୋର ବିଦ୍ୟାମନ୍ଦିରର ମୋର କନିଷ୍ଠ ସହପାଠୀ, ଆମ ପରିବାର ସହ ସୁସମ୍ପର୍କିତ ଏବଂ ଆମ ଉଭୟଙ୍କର କର୍ମଭୂମି ସୁନାବେଡାରେ ରହଣିକାଳରେ ବିଭିନ୍ନ କ୍ଷେତ୍ରରେ ତାଙ୍କର ଅନନ୍ୟ ଓ ଅକୁଣ୍ଠିତ ସହଯୋଗର ସ୍ମୃତି । ପାଠକ ସୁଧୀବୃନ୍ଦଙ୍କୁ ଏଠାରେ ସୂଚାଇ ଦେବା ଉଚିତ୍ ହେବ ଯେ, ଏହିଠାରୁ ମୁଁ ତାଙ୍କୁ ସାନଭାଇ ଭାବେ 'ବସନ୍ତ' ବୋଲି ଉଲ୍ଲେଖ କରିବି ।

ଶିଶୁ ସାହିତ୍ୟିକ ଅଧ୍ୟାପକ ବସନ୍ତ ସନ ୧୯୫୬ ମସିହାରେ କଟକ ଜିଲ୍ଲାର ସୁନାମଧନ୍ୟ କୁସୁପୁର ଗ୍ରାମରେ ଜନ୍ମ, ଯେଉଁଠାରେ ରାଜ୍ୟର ଅପ୍ରତିଦ୍ୱନ୍ଦୀ ବିଶିଷ୍ଟ କଳାର ପୁଜାରୀ ବୃନ୍ଦ ଯଥା ପଲ୍ଲୀକବି ନନ୍ଦକିଶୋର ବଳ, ଶିଳ୍ପୀ ବିମ୍ବାଧର ବର୍ମା, ଔପନ୍ୟାସିକ ରାଜେନ୍ଦ୍ର ବର୍ମା, କବି ଜ୍ଞାନେନ୍ଦ୍ର ବର୍ମା, ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ ଆଦି ଜନ୍ମ ଗ୍ରହଣ କରି ଓଡିଶାର କଳା ଓ ସାହିତ୍ୟକୁ ଦିଗ୍‌ଦର୍ଶନ ଦେଇଛନ୍ତି ।

ପିଲାଦିନରୁ କବି ହେବାର ଅଦମ୍ୟ ବାସନା ଫଳରେ ବସନ୍ତର ପ୍ରଥମ ଲେଖା ୧୯୭୨ ମସିହାରେ 'ମାତୃଭୂମି' ପତ୍ରିକାର 'କିଶୋର ଫଉଜ' ସ୍ତମ୍ଭରେ ପ୍ରକାଶ ପାଏ । ପରେ ପରେ ସରାଜ୍ୟ, କଳିଙ୍ଗ, ସୌରଭ ଆଦି ପତ୍ରପତ୍ରିକାରେ ନିୟମିତ ଲେଖାମାନ ପ୍ରକାଶ ପାଇ ତାଙ୍କୁ ଆଣିଦିଏ 'କିଶୋର ଶ୍ରୀ' ଉପାଧି । ସନ ୧୯୮୧ ମସିହା ପର ଠାରୁ ତାଙ୍କ ପ୍ରକାଶିତ ଶିଶୁପତ୍ରିକା 'ବଗଲାବଗୁଲୀ' ଓଡିଶାର ଅଗଣିତ କିଶୋର କିଶୋରୀଙ୍କର ଆଦର ଲାଭ କରିଛି ।

ସନ ୧୯୮୪ ମସିହା ଠାରୁ ସୁନାବେଡାକୁ ନିଜର କର୍ମଭୂମି ଭାବେ ଗ୍ରହଣ କରିବା ପର ଠାରୁ ସେ ଅଧିକ ମାତ୍ରରେ ନିଜକୁ ଓଡ଼ିଆ ସାହିତ୍ୟ ସେବାରେ ନିୟୋଜିତ କରିଛନ୍ତି । ଲେଖକ ସେଠାରେ ଚାକିରି କରୁଥିବା ବେଳେ ଏକ 'ସର୍ବଭାରତୀୟ ମସଲା



Digitized by srujanika@gmail.com

ଚାଷ କର୍ମଶାଳା'ର ଆୟୋଜନ କରିଥିଲା । ଏହି ଉପଲକ୍ଷେ ଗବେଷଣା ସ୍ମାରକୀ (Souvenir) ପ୍ରକାଶନରେ ତାଙ୍କର ପ୍ରମୁଖ ସହଯୋଗ ଓ ସକାରାତ୍ମକ ଭୂମିକାକୁ ଲେଖକ ଆଜୀବନ ସ୍ମରଣ କରିବ । ତାଙ୍କର ଗବେଷଣାଧର୍ମୀ ପୁସ୍ତକ ଓ ପତ୍ରପତ୍ରିକା ପ୍ରକାଶନ, ସମ୍ପାଦନା ଓ ସଂକଳନ ସହ ଓଡିଆ ଶିଶୁ ସାହିତ୍ୟକୁ ବିଶେଷ ଅବଦାନ ନିମନ୍ତେ ବସନ୍ତଙ୍କୁ ମିଳିଛି ଭୁବନେଶ୍ୱର ପୁସ୍ତକ ମେଳା, ରାଜଧାନୀ ପୁସ୍ତକ ମେଳା, ମୀନାବଜାର ଆଦି ୨୦ରୁ ଉର୍ଦ୍ଧ୍ୱ ଅନୁଷ୍ଠାନରୁ ସମ୍ବର୍ଦ୍ଧନା ଓ ପୁରସ୍କାର ।

ମୌଖିକ ଶିଶୁ ସାହିତ୍ୟ ଉପରେ ଉଚ୍ଚକୋଟୀର ଗବେଷଣା ପାଇଁ ସାହିତ୍ୟରେ ଡକ୍ଟରେଟ୍ ଡିଗ୍ରୀ ହାସଲ କରିବା ସହ ତାଙ୍କର ଅଧ୍ୟାପନା କାଳରେ ଅନେକ ତାଙ୍କ ଅଧିନରେ ଗବେଷଣା କରି ଡକ୍ଟରେଟ୍ ଡିଗ୍ରୀ ହାସଲ କରିଛନ୍ତି ଏବଂ ସମ୍ପ୍ରତି କେତେକ ମଧ୍ୟ ଗବେଷଣାରତ । ବସନ୍ତ ସୁନାବେଡା 'ଏରୋନଟିକସ୍ କଲେଜ'ର ଓଡିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ ଭାବେ ଛାତ୍ରମହଲରେ ଖୁବ୍ ଆଦୃତ । ତାଙ୍କ ସଦ୍ୟତମ ପୁସ୍ତକ 'କାହାକୁ କହିବା' ସମାଜରୁ ଅନୀତି, ଅନ୍ୟାୟ, ଦୁର୍ନୀତି ଓ ଭ୍ରଷ୍ଟାଚାର ଦୂର କରିବାରେ ଜନସମାଜକୁ ଉତ୍ସାହିତ କରିବ । ଉପାନ୍ତ ଅଞ୍ଚଳରେ ଓଡିଆ ଭାଷା ସାହିତ୍ୟର ସୁରକ୍ଷା ପାଇଁ ବସନ୍ତ ଉତ୍ସର୍ଗୀକୃତ । ଅଧ୍ୟାପନା, ସାହିତ୍ୟ ସାଧନା, ସମାଜ ସଂସ୍କାର ଏବଂ ସାମାଜିକ ଅନୁଷ୍ଠାନ ମାନଙ୍କ ସହ ନିଜର ସମ୍ପୃକ୍ତି ବ୍ୟତିରେକ ବସନ୍ତର ଆଉ ଏକ ପରିଚୟ ହେଲା ଜଣେ 'ଉଦ୍ୟୋଗପତି' ଭାବେ । ସୁନାବେଡା ଆସିବା ପୂର୍ବରୁ ସେ ନିଜ ଗ୍ରାମରେ (ଅଞ୍ଚଳରେ) ପ୍ରଥମ କରି 'ଅଜନ୍ତା ଟାଇପ୍ ଇନଷ୍ଟିଚ୍ୟୁଟ୍' ଟାଇପ ଏବଂ ଷ୍ଟେନୋଗ୍ରାଫି ତାଲିମ ଅନୁଷ୍ଠାନ ଖୋଲିଥିଲେ, ଯେଉଁଥିରୁ ଶତାଧିକ ଛାତ୍ରଛାତ୍ରୀ ଶିକ୍ଷାଲାଭ କରି ବିଭିନ୍ନ ସରକାରୀ ଓ ବେସରକାରୀ ଅନୁଷ୍ଠାନରେ କାର୍ଯ୍ୟକରି ରୋଜଗାରକ୍ଷମ ହୋଇଛନ୍ତି । ସେହି ଭଳି ସେମିଳିଗୁଡାରେ ମଧ୍ୟ ତାଙ୍କର 'ପୂର୍ଣ୍ଣିମା ଅଫସେଟ୍' ନାମକ ଏକ ପ୍ରିଣ୍ଟିଂ ପ୍ରେସ୍ ଅଛି, ଯେଉଁଥିରେ ସେ ଅଞ୍ଚଳର ପୁସ୍ତକ, ପତ୍ରପତ୍ରିକା ଆଦି ଛପା ହେବା ସହ ଉକ୍ତ ଅଞ୍ଚଳର ଯୁବକମାନେ କର୍ମ ନିଯୁକ୍ତିର ସୁଯୋଗ ପାଇଛନ୍ତି ।

ଅଧ୍ୟାପକ ତଥା ଶିଶୁ ସାହିତ୍ୟିକ ବସନ୍ତଙ୍କ ଠାରେ ଏଭଳି ଏକ ଅର୍ନ୍ତନିହିତ ଶକ୍ତି ଅଛି, ଯେଉଁଥି ପାଇଁ ସେ ନିଜର ଉଭୟ ଜନ୍ମଭୂମି ଓ କର୍ମଭୂମିର ଆବାଳ ବୃଦ୍ଧ ବନିତାଙ୍କର ଅତି ପ୍ରିୟ 'ବସନ୍ତ ଭାଇ' ହୋଇପାରିଛନ୍ତି । ଏହି ବହୁମୁଖୀ ପ୍ରତିଭା ଶିଶୁ ସାହିତ୍ୟିକ ଅଧ୍ୟାପକ ବସନ୍ତ କିଶୋର ସାହୁଙ୍କର ଅବଶିଷ୍ଟ କର୍ମମୟ ଜୀବନ ଚିର ବସନ୍ତ ରହି ଓଡିଶା, ଓଡିଆ ଓ ଓଡିଆ ଭାଷା ସୁରକ୍ଷାରେ ଉତ୍ସର୍ଗୀକୃତ ହେଉ ଏହାହିଁ ଈଶ୍ୱରଙ୍କ ଠାରେ ପ୍ରାର୍ଥନା ।



ଭୁବନେଶ୍ୱର



Digitized by srujanika@gmail.com

# ମୋ ସ୍ମୃତିରେ ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ଅଶୋକ କୁମାର ମହାନ୍ତି

"ରହି ନାହିଁ କେହି ରହିବେ ନାହିଁ ଏ ଭବ ରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳ ବଳେ ।"

ଏ ସୃଷ୍ଟିରେ କେତେ ବ୍ୟକ୍ତି ଜନ୍ମ ନେଇଛନ୍ତି କେତେ ବିଦାୟ ନେଇଛନ୍ତି ତା'ର ହିସାବ କେହି ରଖେନାହିଁ । ବୀର ଭୋଗ୍ୟା ଏ ବସୁନ୍ଧରା । କିନ୍ତୁ ମା, ମାଟି, ପାଣି ପବନ, ଭାଷା ଓ ମାତୃଭୂମିର କିଛି କଥା ଓ ଗାଥାକୁ ମର୍ମେ ମର୍ମେ ହୃଦୟଙ୍ଗମ କରି ନିଜ ଲେଖନୀକୁ ଅବାରିତ ଭାବରେ ସାଧାନାରତ କରିଥିବା ବନ୍ଧୁ ଡକ୍ଟର ବସନ୍ତ କିଶୋର ସାହୁ ସମସ୍ତଙ୍କ ନିକଟରେ ସ୍ମରଣୀୟ ହୋଇ ରହିବେ । ସେ ଏକାଧାରରେ ଜଣେ ଗାଳ୍ପିକ, କବି, ପ୍ରାବନ୍ଧିକ, ଆଲୋଚକ, ସାହିତ୍ୟ ବିଶାରଦ । ଓଡିଆ ଭାଷା ସାହିତ୍ୟର ଅଗ୍ରଣୀ ଲେଖକ । ପେଶାରେ ଶିକ୍ଷାବିତ୍ । ନିଶାରେ ସାହିତ୍ୟ ପ୍ରେମୀ । ଆମ କୋରାପୁଟ ଜିଲ୍ଲାର ପ୍ରାକୃତିକ ନୈସର୍ଗିକ ଶୋଭା ସମ୍ଭାର ତାଙ୍କ ଲେଖନୀରେ ହୋଇ ଉଠିଛି ଜୀବନ୍ତ, ପ୍ରାଣବନ୍ତ ଓ ହୃଦୟସ୍ପର୍ଶୀ । ଓଡିଶାର ଭୂସ୍ୱର୍ଗ କୋରାପୁଟ ଜିଲ୍ଲାର ପାହାଡ, ଝରଣା, ନଦନଦୀ, ବଣ ଜଙ୍ଗଲ, ଆଦିବାସୀ ଧାଙ୍ଗଡା-ଧାଙ୍ଗଡୀ, ତାଙ୍କ ପର୍ବପର୍ବାଣି ହୋଇଛି ଲେଖକଙ୍କ ରଚନାର ଉତ୍ସ । ଓଡିଶାର ଅନ୍ୟ ପ୍ରାନ୍ତ ଠାରୁ କୋରାପୁଟ ଟିକେ ନିଆରା । ସେ ସବୁକୁ ନିକଟରୁ ନିରୀକ୍ଷଣ କରି କାବ୍ୟ କବିତାରେ ଜୀବନ୍ତ ଭାବରେ ରୂପାୟିତ କରି ସଫଳ ହୋଇଛନ୍ତି ଡକ୍ଟର ସାହୁ । ଏହି ଭଳି ଭାବୁକ କବି ଓ ସାହିତ୍ୟିକଙ୍କର ଗୁଣଗାନ କରିବା ମୋ ପକ୍ଷରେ ଧୃଷ୍ଟତା ବ୍ୟତୀତ ଅନ୍ୟକିଛି ନୁହେଁ । ଛୋଟ୍ ମୁଖରେ ବଡ କଥା ।

ନିଜର ଗାଆଁ, ମାଟି, ମାଆ ଠାରୁ ଆରମ୍ଭ କରି ସାଂପ୍ରତିକ ସମସ୍ୟା, ସାମାଜିକ ପରିବର୍ତ୍ତନର ସର ସବୁ କଥାକୁ ନେଇ ତାଙ୍କ ସୃଷ୍ଟି ଚଳଚଞ୍ଚଳ । ଯାହା ପାଠକକୁ ନେଇଯାଏ ଭିନ୍ନ ଏକ ଜଗତକୁ । ପୁରାଣ, ଇତିହାସ ଠାରୁ ଆରମ୍ଭ କରି ଲୋକ କଥା, ଢଗଢମାଳିକୁ ସୁନ୍ଦର, ଚମତ୍କାର ଭାବେ ପରିବେଷଣ କରି ଅଗଣିତ ପାଠକ ଓ ଗବେଷକଙ୍କ ପାଇଁ ପ୍ରେରଣାର ଉତ୍ସ ପାଲଟି ଯାଇଛନ୍ତି ସିଏ । ତାଙ୍କର ସମଗ୍ର ରଚନା ଏକ ଉପାଦେୟ ପାଞ୍ଜି କହିଲେ ଅତ୍ୟୁକ୍ତି ହେବନାହିଁ ।

ତାଙ୍କ ସହିତ ମୋର ସମ୍ପର୍କ ନିବିଡ ନହେଲେ ମଧ ମଧୁର । ତାଙ୍କ ସହିତ



Digitized by srujanika@gmail.com

ବିତାଇ ଥିବା  କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତ ବର୍ଣ୍ଣନା କଲାବେଳେ ମନେ ପଡେ ମୋର ଗୋଟିଏ ଶିଶୁ କବିତା ସଂକଳନ ପୁସ୍ତକ 'ଆମେ ସବୁ ଟିକି କଢ'ପ୍ରକାଶର କଥା । ପୁସ୍ତକଟିକୁ ସଂଶୋଧନ ଓ ଛପାଇବା ପ୍ରତି ଦୃଷ୍ଟି ଦେବାକୁ ସାର୍‌ଙ୍କୁ ଅନୁରୋଧ କରିଥିଲି । ବିନା ଦ୍ୱିଧାରେ ସ୍ୱଳ୍ପ ସମୟ ମଧ୍ୟରେ ସେ ତାକୁ ସୂଚାରୁ ରୂପେ ସଂପାଦିତ କରିଥିଲେ । ତାଙ୍କ ପ୍ରଦତ୍ତ  ସୁଚିନ୍ତିତ ମତାମତ, ପରାମର୍ଶ  ମୋର ପରବର୍ତ୍ତୀ ଲେଖା  ପୁସ୍ତକ ପ୍ରକାଶନ ପଥକୁ ସୁଗମ କରିବାରେ ଉତ୍ସାହ ପ୍ରଦାନ କରିଥିଲା ।

ସରସ୍ୱତୀ ବିଦ୍ୟାମନ୍ଦିର, ଦାମନଯୋଡିର ତତ୍କାଳୀନ ଅଧ୍ୟକ୍ଷ ଡକ୍ଟର ଭାଗବତ ଶୁକ୍ଳ ମହାଶୟ ୨୦୦୭ ମସିହା ଡିସେମ୍ବରରେ ଚାକିରିରୁ ଅବସର ନେଲେ । ନିଜସ୍ୱ କର୍ମ କ୍ଷେତ୍ରରୁ ବିଦାୟ କାଳୀନ ସମ୍ବର୍ଦ୍ଧନା ନ ନେବା ପୂର୍ବରୁ ସୁନାବେଡା-୧ରେ ଥିବା ମହାପ୍ରଭୁ ଜଗନ୍ନାଥଙ୍କ ମନ୍ଦିରରେ ବସନ୍ତ ସାର୍, ଶୁକ୍ଳ ସାରଙ୍କ ନିମିତ୍ତ ଯେଉଁ ବିଦାୟ କାଳୀନ ସମ୍ବର୍ଦ୍ଧନା ସଭା କରିଥିଲେ, ତାହା ଏବେ ମଧ୍ୟ ମୋର ମାନସ ପଟରେ ଅଭୁଲା ସ୍ମୃତି ହୋଇ ରହିଛି । କେବଳ ଜଣେ ସାହିତ୍ୟ ପ୍ରେମୀ ନୁହଁନ୍ତି, ଜଣେ ଦରଦୀ ମଣିଷ ଭାବରେ ସଚ୍ଚୋଟ ବନ୍ଧୁ ଭାବରେ ମାର୍ଗଦର୍ଶକ ଭାବରେ ଆମ ଗହଣରେ ପରିଚିତ । ବନପ୍ରଭା ସାହିତ୍ୟ ସଂସଦ, ଉତ୍କଳ ସାଂସ୍କୃତିକ ପରିଷଦର ସେ ଉପଦେଷ୍ଟା, ଜୟପୁର 'ନିର୍ବାଣ' ସାହିତ୍ୟ ସଂସଦର ହେଉ କିମ୍ବା କୋରାପୁଟର 'ସତ୍ତା' ସାହିତ୍ୟ ସଂସଦ ହେଉ କିମ୍ବା ଦାମନଯୋଡିର 'ବର୍ଷା' ସାହିତ୍ୟ ସଂସଦ କାର୍ଯ୍ୟକ୍ରମରେ କବି ବନ୍ଧୁମାନଙ୍କର ଏକତ୍ରୀକରଣ ଘଟେ । ଅତିଥି ଭାବରେ, କବି ଭାବରେ, ସଂଯୋଜକ ଭାବରେ ହେଉ କିମ୍ବା ମାର୍ଗଦର୍ଶକ ଭାବରେ ସାକ୍ଷାତ ଆଲୋଚନା ଚାଲେ । ଭାବଗର୍ଭକ, ସୃଜନଶୀଳ, ପ୍ରଗତିବାଦୀ ଚିନ୍ତାଧାରାର ପ୍ରବକ୍ତା ଭାବରେ ସେ  କେବଳ କୋରାପୁଟରେ ନୁହଁନ୍ତି, ରାଜ୍ୟ ଓ ଜାତୀୟ ସ୍ତରର ସାହିତ୍ୟ ସାରଥୀର ଅଧିକାରୀ ଅଟନ୍ତି ।

" ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।।"

ଆଜିର ଏଇ ବସ୍ତୁବାଦୀ ଦୁନିଆରେ ତାଙ୍କ ପରି ମାନବିକତା ସମ୍ପନ୍ନ ପରୋପକାରୀ, ଦୟାଳୁ ଓ ସେବାବ୍ରତୀ ବ୍ୟକ୍ତିତ୍ୱ ବିରଳ । ତଥାପି ସମସ୍ୟା ଓ ସଂଘର୍ଷପୂର୍ଣ୍ଣ ଜୀବନ ମଧ୍ୟରେ ବସନ୍ତ ସାର୍‌ଙ୍କ ପରି ବ୍ୟକ୍ତିତ୍ୱ ସାହିତ୍ୟ ଜଗତର ଧ୍ରୁବତାରା ସଦୃଶ ଅଟନ୍ତି ।  ଫଳ ସ୍ୱରୂପ ତାଙ୍କ ଉଦ୍ୟମରେ କୋରାପୁଟ ଭଳି ଉପାନ୍ତ ଅଞ୍ଚଳରେ ଓଡିଆ ଭାଷା ସାହିତ୍ୟର ଫଲ୍‌ଗୁ କଟକ, ଭୁବନେଶ୍ୱର ଠାରୁ କୌଣସି ଗୁଣରେ କମ୍ ପ୍ରବାହିତ ହେଉନାହିଁ । ଉତ୍କଳର ବାଣୀ ଭଣ୍ଡାରକୁ ତାଙ୍କର ଯୋଗଦାନ, ଅବଦାନର ଉତ୍ତରୋତ୍ତର ବିକାଶ ନିମିତ୍ତ ଆରାଧ୍ୟ ଦେବତା ଜଗତରନାଥ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଛି ।



ଦାମନଯୋଡ଼ି, କୋରାପୁଟ



Digitized by srujanika@gmail.com

# ଋତୁରାଜ ବସନ୍ତ

## ଗୁଣନିଧି ବେହେରା

ଅତୀତର ସ୍ମୃତି ସବୁବେଳେ ମଧୁର ଓ ଅଭୁଲା । ବଣ ପାହାଡ଼ ଘେରା, ପ୍ରାକୃତିକ ସମ୍ପଦରେ ଭରପୁର କୋରାପୁଟ ହେଉଛି ଓଡ଼ିଶାର କାଶ୍ମୀର୍ । ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକଙ୍କ ଉଦ୍ୟମରେ ସୁନାବେଡ଼ାରେ ଗଢ଼ି ଉଠିଛି ମିଗ୍‌ବିମାନ କାରଖାନା । ଏହି କାରଖାନାରେ ଦୀର୍ଘ ୪୧ ବର୍ଷର କାର୍ଯ୍ୟକାଳ ମଧ୍ୟରେ ବହୁ ସାଂସ୍କୃତିକ ଓ ଧାର୍ମିକ ଅନୁଷ୍ଠାନରେ କାର୍ଯ୍ୟ କରିବାର ସୁଯୋଗ ମୋତେ ମିଳିଛି । ସେଥିପାଇଁ ଜଗତର ନାଥ ଜଗନ୍ନାଥଙ୍କ ପାଦପଦ୍ମରେ କୋଟି କୋଟି ପ୍ରଣାମ ।

ବିଭିନ୍ନ ଅନୁଷ୍ଠାନମାନଙ୍କରେ କାର୍ଯ୍ୟ କରିବା କାଳରେ ବହୁ ଗୁଣୀ, ଜ୍ଞାନୀ ଓ ସହୃଦୟ ବ୍ୟକ୍ତିମାନେ ଆମକୁ ସର୍ବଦା ସୁପରାମର୍ଶ ଓ ଦିଗ୍‌ଦର୍ଶନ ପ୍ରଦାନ କରି ଆମ ମନରେ ପ୍ରେରଣା ଓ ଉତ୍ସାହ ସୃଷ୍ଟି କରିଛନ୍ତି । ସେହି ଗୁଣୀ ବ୍ୟକ୍ତିମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ । ବର୍ଷକର ବାରମାସରେ ଛ' ଋତୁ ମଧ୍ୟରେ ଯେପରି ଋତୁରାଜ ବସନ୍ତ ଶ୍ରେଷ୍ଠ । ସେହିପରି ଆମକୁ ଦିଗ୍‌ଦର୍ଶନ ଓ ପ୍ରେରଣା ପ୍ରଦାନ କରିବାରେ ବସନ୍ତ ବାବୁଙ୍କ ସ୍ଥାନ ଶ୍ରେଷ୍ଠରେ । ସେଥିପାଇଁ ସେ ହେଉଛନ୍ତି ଆମମାନଙ୍କର ଋତୁରାଜ । ସେ ଉତ୍କଳ ସାଂସ୍କୃତିକ ପରିଷଦ, ବନପ୍ରଭା ସାହିତ୍ୟ ସଂସଦ ଓ ଶ୍ରୀଶ୍ରୀ ଜଗନ୍ନାଥ ସେବାସଂସ୍ଥା, ମଧୁସୂଦନ ସେବା ସଂଘ ଆଦି ଅନୁଷ୍ଠାନ ସହିତ ଅଙ୍ଗାଙ୍ଗି ଭାବରେ ଜଡ଼ିତ ରହି ଆମମାନଙ୍କୁ ସର୍ବଦା ମୂଲ୍ୟବାନ ପରାମର୍ଶ ଦେଇଆସିଛନ୍ତି ।

ତାଙ୍କ ସମ୍ପାଦନାରେ ଦୀର୍ଘ ସାତ ବର୍ଷ ହେଲା ଶ୍ରୀଶ୍ରୀ ଜଗନ୍ନାଥ ସେବାସଂସ୍ଥାର ମୁଖପତ୍ର 'ସ୍ୱର୍ଣ୍ଣକ୍ଷେତ୍ର' ପ୍ରକାଶିତ ହୋଇଆସୁଛି । ପତ୍ରିକାଟି ଯେପରି ଗବେଷଣାମୂଳକ, ସେହିପରି ସୁଦୃଶ୍ୟ ତଥ୍ୟ ନିଷ୍ଠ । ପତ୍ରିକାଟିର ଆଦର କେବଳ ସୁନାବେଡ଼ା ସହରରେ ନୁହେଁ, ସମଗ୍ର ରାଜ୍ୟ ତଥା ଦେଶର ବିଭିନ୍ନ ଅଞ୍ଚଳରେ ରହିଛି । ଗବେଷକମାନେ ଏହି ପତ୍ରିକାର ଭୂୟସୀ ପ୍ରଶଂସା କରିଛନ୍ତି । ୧୯୯୯ ମସିହାରୁ ଶ୍ରୀଶ୍ରୀ ଜଗନ୍ନାଥ ମନ୍ଦିର ରଥଯାତ୍ରା ହେବା ଦିନରୁ ଡକ୍ଟର ସାହୁ ଆମ ସହିତ ଜଡ଼ିତ ଅଛନ୍ତି । ତତ୍ ସହିତ ୨୦୦୬ରୁ ସ୍ୱର୍ଣ୍ଣକ୍ଷେତ୍ର ପତ୍ରିକାକୁ ନିଜସ୍ୱ ଶୈଳୀରେ ପ୍ରକାଶ କରି ସୁନାବେଡ଼ା ଜଗନ୍ନାଥ ମନ୍ଦିରକୁ ସମଗ୍ର ରାଜ୍ୟରେ ପରିଚିତ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି ।



Digitized by srujanika@gmail.com

ମୁଁ ଜଗନ୍ନାଥ ମନ୍ଦିରର ସଂପାଦକ ଦାୟିତ୍ୱ ଗ୍ରହଣ କରିବା ପରେ ତାଙ୍କ ସୁପରାମର୍ଶରେ ଆଧ୍ୟାତ୍ମିକ ସମ୍ମିଳନୀ, ପ୍ରବଚନ କାର୍ଯ୍ୟକ୍ରମ ଆଦି ଅନେକ କାର୍ଯ୍ୟକ୍ରମ ଗ୍ରହଣ କରି ସଫଳ ହୋଇଛି । ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟିର ଜଣେ ଉପଦେଷ୍ଟା ଭାବରେ ସେ ସବୁବେଳେ ଆମମାନଙ୍କ ପଛେ ପଛେ ରହି ସହଯୋଗର ହାତ ବଢ଼ାଇ ଆସିଛନ୍ତି ।

ତାଙ୍କ ପରି ନିରହଙ୍କାରୀ ନିରଳସ ଜଗନ୍ନାଥ ସେବକ ମିଳିବା କଷ୍ଟ । ସର୍ଣ୍ଣକ୍ଷେତ୍ର ମାଧ୍ୟମରେ ସେ ଜଗନ୍ନାଥଙ୍କ ବାର୍ତ୍ତାକୁ ସମଗ୍ର ଉତ୍କଳରେ ପ୍ରକାଶ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ସର୍ଣ୍ଣକ୍ଷେତ୍ରର ଭକ୍ତ ବିଶେଷାଙ୍କ, ବେଶ ବିଶେଷାଙ୍କ, କ୍ଷେତ୍ର ବିଶେଷାଙ୍କ ଓ ପର୍ବପର୍ବାଣି ବିଶେଷାଙ୍କ ଗୁଡ଼ିକ ଓଡ଼ିଆ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ଅମୂଲ୍ୟ ସମ୍ପଦ । ଜଗନ୍ନାଥଙ୍କ ପ୍ରତି ଏପରି ନିଷ୍ଠା ଓ ଏକାଗ୍ରତା ଖୁବ୍ କମ୍ ଲୋକଙ୍କ ପାଖରେ ଦେଖାଯାଏ । ସର୍ଣ୍ଣକ୍ଷେତ୍ର ବ୍ୟତୀତ ସେ ଉତ୍କଳ ସଂସ୍କୃତିକ ପରିଷଦର ମୁଖପତ୍ର, ବନପ୍ରଭାର ମୁଖପତ୍ର ସମ୍ପାଦନା କରିବା ସହିତ ନିଜର ୩୨ ଖଣ୍ଡ ପୁସ୍ତକ ପ୍ରକାଶ କରି ନିଜ ସୃଜନଶୀଳତା ତଥା ସମ୍ପାଦନା ଦକ୍ଷତାର ପରିଚୟ ଦେଇଛନ୍ତି ।

ସୁନାବେଡ଼ାର ସାହିତ୍ୟ, ସଂସ୍କୃତି, ଧାର୍ମିକ ଚେତନା ଆଦି କ୍ଷେତ୍ରକୁ ତାଙ୍କ ଦାନର ତୁଳନା ନାହିଁ । ଏହିପରି ଜଣେ ନିରଳସ ସେବକ ଆଉ କେତେ ଦିନ ପରେ ନିଜ ବୃତ୍ତିଗତ ଜୀବନରୁ ଅବସର ନେଇ ନିଜ ଜନ୍ମଭୂମି କୁସୁପୁରକୁ ବାହୁଡି ଯିବେ । ଛାଡି ଦେଇଯିବେ ଏଠି ଅନେକ ସ୍ମୃତି । ଯାହାକୁ ସୁନାବେଡ଼ା ସବୁଦିନ ପାଇଁ ମନେ ରଖିବ । ବିଶେଷ କରି ଉତ୍କଳ ସଂସ୍କୃତିକ ପରିଷଦର ମୁଖପତ୍ରର ୨୦୧୨ ସଂଖ୍ୟାକୁ ସେ ଯେଉଁ 'ସୁନାବେଡ଼ା ବିଶେଷାଙ୍କ' ଭାବେ ପ୍ରକାଶ କଲେ, ସେଥିପାଇଁ ସୁନାବେଡ଼ା ତାଙ୍କୁ ସବୁଦିନେ ମନେ ରଖିବ ।

ମହାପ୍ରଭୁ ବଳିଆର ଭୁଜ ଶ୍ରୀଶ୍ରୀ ବଳଭଦ୍ର ଦେବ, ମହାବାହୁ କଳାକାହ୍ନୁ ଶ୍ରୀଜଗନ୍ନାଥ, ଭଉଣୀ ମା ସୁଭଦ୍ରା ଓ ଚକ୍ରଧାରୀ ସୁଦର୍ଶନ ଆଦି ଚତୁର୍ଦ୍ଧାମୂର୍ତ୍ତିଙ୍କ ନିକଟରେ ପ୍ରାର୍ଥନା ବସନ୍ତ ବାବୁଙ୍କ ପରିବାରର ସର୍ବାଙ୍ଗୀନ ଉନ୍ନତି କରିବା ସହିତ, ସୁଖ ଶାନ୍ତିରେ ତାଙ୍କର ଅବସର ସମୟ ଅତିବାହିତ ହେଉ । ଏହାହିଁ କାମନା ।



ସାଧାରଣ ସମ୍ପାଦକ
ଶ୍ରୀଶ୍ରୀ ଜଗନ୍ନାଥ ସେବା ସଂସ୍ଥା
ସୁନାବେଡ଼ା-୨



Digitized by srujanika@gmail.com

# ଅନ୍ଧାରରେ ଆଲୋକ : ବସନ୍ତ ବାବୁ

ଧର୍ମେନ୍ଦ୍ର ବେହେରା

ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।

ସଂସାରରେ ମଣିଷର ଆବିର୍ଭାବ ଓ ବିଲୟ ଘଟେ । ଏହି ଆବିର୍ଭାବ ଓ ତିରୋଭାବ ମଝିରେ ରହିଯାଏ କର୍ମ । ଯାହାକି ମୃତ୍ୟୁ ପରେ ମଧ୍ୟ ତାକୁ ଅମର କରି ରଖେ । ଯିଏ ନିଜ ଜୀବନର ସୁଖ ସମ୍ଭୋଗକୁ ତ୍ୟାଗ କରି ମାନବ ସମାଜର କଲ୍ୟାଣ ପାଇଁ ପ୍ରତ୍ୟେକ୍ଷ ବା ପରୋକ୍ଷ ଭାବରେ ନିରବଚ୍ଛିନ୍ନ ଭାବେ କାର୍ଯ୍ୟ କରନ୍ତି ସେମାନଙ୍କୁ ଏ ସଂସାର ମନେ ରଖେ । ସେମାନଙ୍କ ପ୍ରତିଭାକୁ ଉଚିତ୍ ସମ୍ମାନ ମିଳେ । ଆଉ ସେମାନେ ହୁଅନ୍ତି ମହାନ୍ ।

ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ସଞ୍ଚାଳକ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ଅନୁରୋଧରେ ମୁଁ ଦୁଇ ତିନି ବର୍ଷ ହେଲା ଶିଶୁ ସାହିତ୍ୟ କର୍ମଶାଳାରେ ଯୋଗ ଦେବାର ସୁଯୋଗ ପାଇଛି । କର୍ମଶାଳାରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିଥିବା ସାହିତ୍ୟିକଙ୍କ ସହିତ ପରିଚିତ ହୋଇଛି । ସେଠାରେ ମୋର  ବସନ୍ତ ବାବୁଙ୍କ ସହିତ ସାକ୍ଷାତ । ତାଙ୍କ ସହିତ ଭାବ ବିନିମୟ । ଘନିଷ୍ଠତା ବଢ଼ିଛି । କର୍ମଶାଳାରେ ସମସ୍ତଙ୍କ ଠାରୁ ଅଲଗା ବାରି ହୋଇ ପଡନ୍ତି ବସନ୍ତ ବାବୁ । ତାଙ୍କ ବ୍ୟକ୍ତିତ୍ୱ ମୋ ପାଇଁ ଅଭୁଲା ସ୍ମୃତି ହୋଇ ରହିଛି ।

ଓଡ଼ିଆ ଶିଶୁ ସାହିତ୍ୟକୁ ଏକ ରୁଚିପୂର୍ଣ୍ଣ ଦିଗନ୍ତର ସନ୍ଧାନ ଦେବାର ଅଗ୍ରଗଣ୍ୟ ଭୂମିକା ଗ୍ରହଣ କରିଥିବା ସାଧକମାନଙ୍କ ମଧ୍ୟରୁ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ । ସେ କେବଳ ଜଣେ ଶିଶୁ ସାହିତ୍ୟିକ ନୁହଁନ୍ତି, ସାହିତ୍ୟ ସଂସ୍କୃତି ପ୍ରତି ଅନୁରକ୍ତ ଜଣେ-ସଂସ୍କାରକ ମଧ୍ୟ । ଗୌରବମୟ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସେ ଅନେକ କାମ ଆପଣେଇଛନ୍ତି । ତାଙ୍କ ସାରସ୍ୱତ ସାଧନାର ପରିସର ସୁଦୂରପ୍ରସାରୀ । ସେ ଜଣେ ଜାତିପ୍ରେମୀ, ଭାଷାପ୍ରେମୀ ଓ ଦରଦୀମଣିଷ । ତାଙ୍କ କଲମ ମୁନରେ ଆଧୁନିକ ଶିଶୁ ସାହିତ୍ୟର ପ୍ରତିଟି କୋଣ ଅନୁକୋଣ ଆଲୋକିତ ହୋଇଛି । ଭାଷାର ଆଭିଜାତ୍ୟ ଓ କମନୀୟତା, ଭାବ ଓ ଚେତନାର କୌଳିନ୍ୟ, ବିଷୟ ବିନ୍ୟାସରେ କଳାତ୍ମକ ସ୍ପର୍ଶ ଏବଂ ଅକାଟ୍ୟ ଯୁକ୍ତି ତାଙ୍କର ପ୍ରତିଟି କୃତିକୁ ପ୍ରାଣବନ୍ତ ଓ ସଫଳ କରିଛି ।



Digitized by srujanika@gmail.com

ଡକ୍ଟର ବସନ୍ତ କିଶୋର ସାହୁଙ୍କର ବ୍ୟକ୍ତିତ୍ୱର ତୁଳନା ନାହିଁ । ସେ ସମୟର ସ୍ରୋତରେ ନିଜକୁ ଭସାଇ ନଦେଇ ଉଜାଣି ଯାତ୍ରା ପାଇଁ ସର୍ବଦା ଅଣ୍ଟା ଭିଡନ୍ତି । ଯେତେ ବାଧାବିଘ୍ନ ଆସିଲେ ବି ତାକୁ ସେ ସାହସର ସହିତ ମୁକାବିଲା କରନ୍ତି । ସମ୍ପ୍ରତି ସମାଜରେ ଧନ ଓ କ୍ଷମତାର ପ୍ରତିପତ୍ତି ବଢ଼ିଛି । ଜ୍ଞାନର ଆଦର କ୍ଷୁର୍ଣ୍ଣ ହୋଇଛି । ଡକ୍ଟର ସାହୁ କିନ୍ତୁ ସେ ପ୍ରତିଯୋଗିତାର ବହୁ ଉର୍ଦ୍ଧ୍ୱରେ । ସ୍ୱାଧୀନ ଚେତା ଭାବରେ ସେ ତ୍ୟାଗ ଓ ସେବାର ପଥ ଅନୁସରଣ କରନ୍ତି । ଅନେକ କ୍ଷେତ୍ରରେ ଦେଖାଯାଏ ଅଜ୍ଞାନୀମାନେ କାମନା ରଖି କର୍ମଫଳ ଆଶାରେ କର୍ମ କରନ୍ତି । କିନ୍ତୁ ଜ୍ଞାନୀମାନେ କାମନା ନ ରଖି, କର୍ମଫଳ ଆଶା ନ କରି କର୍ମ କରନ୍ତି କେବଳ ଲୋକଶିକ୍ଷା ନିମନ୍ତେ । ଡକ୍ଟର ସାହୁ ସେହିପରି ଜଣେ ଜ୍ଞାନୀଲୋକ ଯିଏ କି ବିଭିନ୍ନ ସମୟରେ ଉପୁଜିଥିବା ସଂକଟଗୁଡ଼ିକର ସମାଧାନ କରିବା ଲକ୍ଷ୍ୟରେ ନିଜ କର୍ତ୍ତବ୍ୟରେ ଆଗୁସାର ହୁଅନ୍ତି । ସେ ସର୍ବଦା ଜ୍ଞାନ ଆହରଣ ଦୌଡ଼ରେ ନିଜକୁ ସାମିଲ୍ କରନ୍ତି । ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ପରି ଧନିକ ଓ କ୍ଷମତାଶାଳୀ ଗୋଷ୍ଠୀର ଗୁରୁ ରୂପେ ସେ ନିଜକୁ ନିୟୋଜିତ କରନ୍ତି ନାହିଁ । ଏକଲବ୍ୟ ପରି ଅନେକ ନିଷ୍ପେଷିତ ଓ ନିଷ୍ପାପ କିଶୋର ତାଙ୍କ ଠାରୁ ଶିକ୍ଷା ଲାଭ କରି ଆଜି ବିଭିନ୍ନ ପଦପଦବୀରେ ଗରିମାମଣ୍ଡନ କରିଛନ୍ତି ।

ମଣିଷର ଚରିତ୍ର ତାର ବ୍ୟକ୍ତିତ୍ୱର ପରିଚାୟକ । ଜଣେ ଶିକ୍ଷକ ଚରିତ୍ରବାନ ହେଲେ ତାର ପ୍ରଭାବ ଛାତ୍ର ସମାଜ ଉପରେ ପ୍ରତିଫଳିତ ହୁଏ । ଏଭଳି ଏକ ଘଡ଼ିସନ୍ଧି ସମୟରେ ଡକ୍ଟର ସାହୁଙ୍କର ଚାରିତ୍ରିକ ଉତ୍କର୍ଷତା ଅନ୍ୟ ଅଧ୍ୟାପକ ଓ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କ ପାଇଁ ଉଦାହରଣ ସୃଷ୍ଟି କରିଛି । ଶିକ୍ଷାନୁଷ୍ଠାନ ପ୍ରତି ଛାତ୍ରଛାତ୍ରୀଙ୍କର ଆସ୍ଥା ଫେରି ଆସିବା ପାଇଁ ସେ ଯତ୍‌ପରୋନାସ୍ତି ଚେଷ୍ଟା କରିଆସିଛନ୍ତି ।

ପରିବର୍ତ୍ତନଶୀଳ ଦୁନିଆ । ସମୟର ଗତିପଥରେ ଏ ଭୂପୃଷ୍ଠରେ ଅନେକ କିଛି ବଦଳିଯାଏ । କିଛି ସ୍ମରଣୀୟ ହୋଇ ରହିଯାଏ ତ ଆଉ କିଛି ବିସ୍ମୃତି ହୋଇଯାଏ । କବି ଓ ଭାବୁକମାନେ ସେହି ପରିବର୍ତ୍ତନରେ ବିମୋହିତ ହୋଇ ଅନେକ କଥା ଲେଖିଯାଆନ୍ତି । ଡକ୍ଟର ସାହୁ ୨୦୧୩ ମାର୍ଚ୍ଚରେ ନିଜ କର୍ମକ୍ଷେତ୍ରରୁ ଅବସର ନେବେ । ସୁନାବେଡ଼ା କଲେଜ ତଥା ସହରାଞ୍ଚଳ ନିଶ୍ଚିତ ଭାବରେ ଜଣେ ସାହିତ୍ୟ ସାଧକଙ୍କର ସେବାରୁ ବଞ୍ଚିତ ହେବ । ପରକୁ ଆପଣାର କରି ପାରୁଥିବା ଶାନ୍ତ ସରଳ ମଣିଷଟି କର୍ମମୟ ଜୀବନରୁ କିଞ୍ଚିତ୍ ନିସ୍ତାର ପାଇବେ । ବାକି ଜୀବନତକ ସେ ନିଜର ପରିବାର ଗହଣରେ ଖୁସିରେ ବିତାନ୍ତୁ । ଶିଶୁ ସାହିତ୍ୟର ସମୃଦ୍ଧି ପାଇଁ ତାଙ୍କ ଠାରୁ ଆହୁରି ଅନେକ କିଛି ପାଇବାକୁ ଓଡ଼ିଶାର ସାରସ୍ୱତ ସାଧକ ଆଶାବାଦୀ । ଜଗତର ନାଥ ଜଗନ୍ନାଥ ତାଙ୍କୁ ଦୀର୍ଘାୟୁ କରନ୍ତୁ ଓ ତାଙ୍କ କଲମ ସର୍ବଦା ଚଳଚଞ୍ଚଳ ରହୁ । ଏତିକି କାମନା ।



ଦେଶବନ୍ଧୁ ନୋଡ଼ାଲ୍ ଉ.ପ୍ରା. ବିଦ୍ୟାଳୟ
ଅସୁରାଳି, ଭଦ୍ରକ, ଓଡ଼ିଶା



Digitized by srujanika@gmail.com

# ଚିର ସବୁଜ ବସନ୍ତ କିଶୋର

**ବଲ୍ଲଭ ରାଉତ**

ଅପରୂପ ଶୋଭାରେ ବିମଣ୍ଡିତ ଏହି ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲା । ଯେଉଁଠି ସର୍ବଦା ପାହାଡ ପର୍ବତ ଧ୍ୟାନମଗ୍ନ । ଗେରୁଆ ରଙ୍ଗମାଟି ଉପରେ ଭରପୂର ସବୁଜିମା । ତାର ପ୍ରତ୍ୟେକଟି ବୃକ୍ଷଲତା ମଣିଷର ଆତ୍ମାରୁ ଅଧିକ । କଳ କଳ ଛନ୍ଦରେ ଶିଖରରୁ ଝରି ଚାଲିଛି ପାହାଡ଼ି ଝରଣା । କୁଳୁ କୁଳୁ ନାଦରେ ଛନ୍ଦ ତୋଳି ଅଙ୍କାବଙ୍କା ପଥଦେଇ ବହିଯାଇଛି ଅନେକ ଛୋଟ ବଡ ନଦୀ ନାଳ । ଅରଣ୍ୟ ତା'ର ଖୋଲା ମେଲା ହୃଦୟରେ ଭେଟି ଦେଇଛି ଫୁଲ, ଫଳ । ଏ ମାଟି ସମସ୍ତଙ୍କୁ ସ୍ୱାଗତ କରିଛି ପ୍ରବେଶ କରିବାକୁ । ମଣିଷକୁ ଶିଖାଇଛି ଭଲ ପାଇବାର ଭାବ । ଏମିତି ଏକ ପ୍ରାକୃତିକ ପରିବେଶ ଭିତରେ ପ୍ରବେଶ କରି ଭାଇଚାରା ସୃଷ୍ଟି କରିଛନ୍ତି ଅନେକ ମଣିଷ ।

ଏ ମାଟିକୁ ଅନେକ ଆସିଛନ୍ତି । ମାଟିକୁ ଭଲ ପାଇ ବସିଛନ୍ତି । ସେମାନଙ୍କ ମଧ୍ୟରୁ ଏମିତି ଜଣେ ମଣିଷ ରୁଦ୍ଧିମନ୍ତ କରିଛନ୍ତି ଏ ମାଟିର କଳା, ସାହିତ୍ୟ, ଶିକ୍ଷା ଓ ସଂସ୍କୃତିକୁ ।

ଏ ମାଟି ମଣିଷ ନୁହେଁ
ଏ ମାଟିକୁ ଭଲ ପାଏ
ମାଟି ପାଇଁ ମମତାରେ
ଜଡ ସଡ ଯା ହୃଦୟ
ସିଏତ ମଣିଷ ଟିଏ ।।
ମଣିଷକୁ ମଣିଷଟେ ପରି ଚିହ୍ନ
ଅପରର ପାଖେ ଚିହ୍ନାଇବା
ପାଲଟିଛି ଯାର ଜୀବନର ନିଶା
ସିଏତ ମଣିଷ ପରି ମଣିଷଟିଏ
ସିଏ ଆପଣାର ପ୍ରତିଭାରେ ଦୀପ୍ତିମନ୍ତ
ମୃଦୁ ହାସ୍ୟ ସଂମ୍ବୋଧନ ଯାର
ଭୁଲି ହୁଏ ନାହିଁ ବୋଲି
ତାଙ୍କ ପାଇଁ କିଛି କଥା



Digitized by srujanika@gmail.com

କିଛି ବ୍ୟଥା ଲେଖିବାକୁ
ଆପଣାକୁ କରଇ ପ୍ରସ୍ତୁତ
ସେ ଅଟନ୍ତି ଶିକ୍ଷା ସାହିତ୍ୟ
ସଂସ୍କୃତି କଳା ସୃଷ୍ଟିରେ
ଚିର ସବୁଜ କିଶୋର ବସନ୍ତ ॥

ଧରାବକ୍ଷରେ ବସନ୍ତ ଋତୁ ଆସିଲେ, ମନରେ ମାଦକତା ଭରିଯାଏ । ସୁଲୁ ସୁଲିଆ ପବନ ଦେହ ମନରେ ନୂଆ ଜାଗରଣ ସଞ୍ଚାର କରେ । ଫୁଲ, ଫଳ ଭରା ସବୁଜିମାରେ ପୃଥିବୀର ରୂପ ବଦଳିଯାଏ । ସତେ ଯେମିତି ପ୍ରକୃତି ବାର୍ଦ୍ଧକ୍ୟକୁ ତ୍ୟାଗ କରି କୈଶୋରରେ ପଦାର୍ପଣ କରେ ।

ସେମିତି ମୋ ଲେଖନୀର କାବ୍ୟ ପୁରୁଷ ଡଃ. ବସନ୍ତ କିଶୋର ସାହୁ । ଠିକ୍ ପ୍ରକୃତି ପରି । ଏମିତି ଏକ ବ୍ୟକ୍ତିତ୍ୱକୁ ମୁଁ ଭେଟିଥିଲି ୧୯୯୧ ମସିହା ଓଡିଆ ଲେଖକ ପାଠକ ସମ୍ମେଳନ ସୁନାବେଡା ଠାରେ । ମୋ ପାଇଁ ସଂପୂର୍ଣ୍ଣ ଅଚିହ୍ନା ହେଲେ ବି ବାରି ହୋଇ ପଡିଥିଲେ ଅତି ଆପଣାର ପରି । କାରଣ ବ୍ୟକ୍ତିର ବ୍ୟକ୍ତିତ୍ୱ ଜଣାପଡେ ତାଙ୍କର କଥାବାର୍ତ୍ତା ଚାଲିଚଳନ, ଆଚାର ବିଚାରକୁ ନେଇ । କମ୍ କଥା, ମାର୍ଜିତ ବ୍ୟବହାର, ବନ୍ଧୁ ପ୍ରୀତି, ସାଙ୍ଗଠନିକ ଦକ୍ଷତା ଆଉ ତାଙ୍କର ମଣିଷ ପଣିଆ ମୋତେ ମୁଗ୍ଧ କରିଥିଲା । କେଉଁଠି କେମିତି ଆସରରେ ହେଉ କିମ୍ବା କେଉଁଠି ଦେଖା ହେଲେ ନିଜର କରି ନିଅନ୍ତି, ଭଲମନ୍ଦ ପଚାରନ୍ତି, ସାହିତ୍ୟର ବାର୍ତ୍ତା ଦିଅନ୍ତି ଓ ଅନେକ କିଛି । ଏତ ଗଲା ମୋ ବ୍ୟକ୍ତିଗତ ଅନୁଭୂତି କଥା ।

ସାହିତ୍ୟ କ୍ଷେତ୍ରରେ ତାଙ୍କର ଅବଦାନ ଅବିଭକ୍ତ କୋରାପୁଟ ଜିଲ୍ଲା ପାଇଁ ଚିରସ୍ମରଣୀୟ । ଏ ମାଟି କେବେ ବି ଭୁଲି ପାରିବନି ତାଙ୍କର ସୃଷ୍ଟିକୁ । କୋରାପୁଟ ଜିଲ୍ଲାର ପ୍ରକୃତି ବର୍ଣ୍ଣନା, ଆଦିବାସୀ ମାନଙ୍କର ଜୀବିକା, ଜିଲ୍ଲାର ଐତିହ୍ୟ, କିମ୍ବଦନ୍ତୀ, ଲୋକ କଥା, ପର୍ବପର୍ବାଣି ଓ ଭୌଗୋଳିକ ମାନଚିତ୍ର ତାଙ୍କର ସୃଷ୍ଟିରେ ବେଶ୍ ଜୀବନ୍ତ ।

ବସନ୍ତ କିଶୋର ରଚନାବଳୀ ଗ୍ରନ୍ଥର ମୂଲ୍ୟବୋଧ ଭିତ୍ତିକ ଶିକ୍ଷାବିକାଶର ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ପାଠକମାନଙ୍କ ଉଦ୍ଦେଶ୍ୟରେ ଅବତାରଣା କରାଯାଇଛି । ଆମ ଭିତରେ ଥିବା ଭାବନାକୁ ସୁନ୍ଦର ଭାବରେ ଆଲୋଚନା ମାଧ୍ୟମରେ ସମାଧାନ କରାଯାଇଛି ।

ଆଜିର ଶିକ୍ଷା ବ୍ୟବସ୍ଥା କିପରି ଅନ୍ୟ ବାଟରେ ଚାଲି ଯାଇଛି, ତା'ର ସୁନ୍ଦର ଚିତ୍ର ଉକ୍ତ ପ୍ରବନ୍ଧରେ ସେ ଚେତେଇ ଦେଇଛନ୍ତି । ଆମ ପିଲାମାନେ ବର୍ତ୍ତମାନ ଯେଉଁ ସବୁ ଅନୁଷ୍ଠାନରେ ପଢିବାକୁ ଯାଉଛନ୍ତି ସେ ସବୁ ବିଦ୍ୟାଳୟ ନୁହେଁ । ତାହା ହେଉଛି ଗୋଟିଏ ଗୋଟିଏ ଶିକ୍ଷାନୁଷ୍ଠାନ । ସେଠାରେ ଶିକ୍ଷାଦାନ ଦିଆଯାଏ । ଯାହା ମଣିଷକୁ



Digitized by srujanika@gmail.com

ଜୀବିକାର୍ଜନ ପାଇଁ ପ୍ରମାଣ ପତ୍ରଟିଏ ଦିଏ । ସେହି ଶିକ୍ଷାର ଲକ୍ଷ୍ୟ ଚାକିରିଆ ତିଆରି କରିବା ନଚେତ ବେକାର ହେବା । ବିଦ୍ୟା ହେଉଛି ଆମ ବୌଦ୍ଧିକ ସଂପଦର ଗନ୍ତାଘର । ବିଦ୍ୟା ହେଉଛି ତାହା ଯାହା ମଣିଷକୁ ମୁକ୍ତି ପ୍ରଦାନ କରେ । ତାହା ହେଉଛି ସତ୍ୟ, ଅହିଂସା, ନ୍ୟାୟ ଓ ସେବା । ମଣିଷ ଧର୍ମର ଗୋଟିଏ ଗୋଟିଏ ଶ୍ରେଷ୍ଠ ନମୂନା । ଜୀବନ ପଦ୍ଧତି ପୂଜାପଦ୍ଧତି ନୁହେଁ । ଯେଉଁଠାରେ ଜୀବନ ପଦ୍ଧତିର ତାଲିମ ମିଳେ ତାହାହିଁ ହେଉଛି ବିଦ୍ୟାଳୟ । ସୁନ୍ଦର ଭାବରେ ଅବତାରଣା କରାଯାଇଛି ପ୍ରବନ୍ଧଟିରେ ।

ଲେଖା ଲେଖିବାକୁ ସମସ୍ତେ ସକ୍ଷମ ହୋଇ ନଥାନ୍ତି । ଶିଶୁ ମନ ଭିତରେ ଶବ୍ଦଟିଏ ପହଞ୍ଚାଇବା ଭାବଟିଏ ପହଞ୍ଚାଇବା, ଶିଶୁକୁ ହସାଇବା କିଛି ନୂଆ କଥା ଶିଖାଇବା ହେଉଛି ଶିଶୁ ମାନଙ୍କ ପାଇଁ ଲେଖୁଥିବା ଲେଖକଙ୍କର ଗୁରୁ ଦାୟିତ୍ୱ । ସେମାନଙ୍କ ଭିତରୁ ଡଃ. ବସନ୍ତ କିଶୋର ସାହୁ ଜଣେ । ତାଙ୍କର ପ୍ରତ୍ୟେକଟି ଶିଶୁ ଲେଖା ଶିଶୁ ମାନଙ୍କର ମନ କିଣି ନେଇଥାଏ ।

ସଂଗଠନ କ୍ଷେତ୍ରରେ ଡଃ. ସାହୁ ବେଶ ପରିଚିତ ନାଁ ଟିଏ । ତାଙ୍କ ପ୍ରଚେଷ୍ଟାରେ ଅନେକ ସଂଗଠନ ଓ ଅନୁଷ୍ଠାନ ଗଢିଉଠିଛି । ପ୍ରକୃତରେ ସେ ହେଉଛନ୍ତି ଗୋଟିଏ ଅନୁଷ୍ଠାନ । ତାଙ୍କର ନିଝୁମ ଝଡର କଲମ ମୂନରେ ସୃଷ୍ଟି ହୋଇଛି ଅନେକ ଲେଖା । ଏଥିରୁ ସ୍ପଷ୍ଟ ହୁଏ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଡଃ. ବସନ୍ତ କିଶୋର ସାହୁ ଜଣେ ସଫଳ ସ୍ରଷ୍ଟା, ତଥାପି ଆମେ ତାକୁ ଚିହ୍ନି ପାରିଲେନି ।

କେହି ତୁମକୁ ଚିହ୍ନି ପାରିଲେନି
ତୁମେ ଚିହ୍ନ ପ୍ରତିଟି ହୃଦୟ
ପାଠକର ସମସ୍ତ ଇଚ୍ଛାମାନଙ୍କୁ
ଜାଗ୍ରତ କରି କରିଦିଅ ॥
ତମେ ଜାଣିଛ ପଥରକୁ ପଥରରେ
କେମିତି ଯୋଡି ହେବ
ସୃଷ୍ଟି କରି ହେବ ଏକ ନୂତନ ଦିଗନ୍ତ
ସେଥିପାଇଁ ତୁମେ ଚିର ବସନ୍ତ
ପାଠକର ମନକଥା ବୁଝି
ଲେଖା ଗୁଡିକରେ ତୁମେ ଭରିଛ ପିୟୁଷ ।

ତେଣୁ ଏ ମାଟି ଆପଣଙ୍କୁ କେବେ ଭୁଲି ପାରିବ ନାହିଁ । ଅବଶ୍ୟ ସ୍ମରଣ ରଖିବ ।



ବନସୁରଭି ପ୍ରକାଶନ, ଖାତିଗୁଡା
ଇନ୍ଦ୍ରାବତୀ, ନବରଙ୍ଗପୁର



Digitized by srujanika@gmail.com

# ସୀମିତ ସଂପର୍କ

## ନିରଂଜନ ଖଟୁଆ

ଆଜି ଠିକ୍ ମନେ ନାହିଁ । କୌଣସି ଏକ ସାହିତ୍ୟ କାର୍ଯ୍ୟକ୍ରମରେ ତାଙ୍କ ସହ ଦେଖା ହୋଇଥିଲା ଶ୍ରୀରାମଚନ୍ଦ୍ର ଭବନରେ । କେବଳ ନମସ୍କାର ଆଦାନ ପ୍ରଦାନରେ ସୀମିତ ଥିଲା ସଂପର୍କ । ନାଁ ସହ ପରିଚୟ ହେଲି ତାଙ୍କ ପଠିତ କବିତାରୁ । ପରେ ପରେ ବିଭିନ୍ନ ପତ୍ର ପତ୍ରିକାରେ ତାଙ୍କ ରଚିତ କବିତା, ପ୍ରବନ୍ଧ, ଆଲୋଚନା ଇତ୍ୟାଦି ମୋର ଦୃଷ୍ଟି ଗୋଚର ହେଲା । ବେଶ୍ ଭାବୋଦ୍ଦୀପକ ଲେଖା । ସମାଜ ସଂସ୍କାରଧର୍ମୀ ବାର୍ତ୍ତା ଭରି ରହିଥାଏ ପ୍ରତିଟି ଧାଡିରେ ।

ଏବେ ସମୟ ବଦଳିଛି । ରୁଚି ବଦଳିଛି । ସମୟ ସହ ତାଳ ଦେଇ ଗତି କରୁଛି ସାହିତ୍ୟ । ଗାଁ ଗହଳିର ଢଗଢ଼ମାଳି, ମା ମାଉସୀଙ୍କ କାନ୍ଦଣା ଲହରୀ, କଉଡି ଖେଳ, ଭାଗବତ ଟୁଙ୍ଗିର ମୀମାଂଶା ଆଦି କ୍ରମଶଃ ଲୁଚି ଗଲାଣି । ସଂପ୍ରତି ସ୍ୱାର୍ଥାନ୍ଧ ମଣିଷର ମୁଁ ପଣିଆ ନଷ୍ଟ କରୁଛି ସମାଜକୁ । କହି ହେଉ ନାହିଁ କି ସହି ହେଉ ନାହିଁ । ଚେତନଶୀଳ ଲେଖକଟିଏ ତ ଏଇ ସମସ୍ୟା ବିରୁଦ୍ଧରେ ସ୍ୱର ଉଠାଇଥାଏ । ସମାଜକୁ ସଜାଡି ନେବାର ବାଟ ତିଆରି କରେ । ଯଦିଓ ସେ ବାଟରେ ଚାଲିବାକୁ କେହି ଆଗ୍ରହ ପ୍ରକାଶ କରନ୍ତି ନାହିଁ ତଥାପି ଲେଖକଟିଏ ନିଜେ ନିଜେ ସେ ବାଟରେ ବାଟଂବାର ମାଟି ପକେଇଥାଏ । ଖାଲ ଖମାକୁ ପୋତି ପକାଇଥାଏ । ଡଃ. ବସନ୍ତ କିଶୋର ସାହୁ ଏଇଭଳି ଜଣେ ନିଆରା ଲେଖକ ଯିଏକି ଏକା ଏକା ମାଟି ବୋହି ଏକ ସୁନ୍ଦର ରାସ୍ତା ତିଆରି କରିଛନ୍ତି । ସାହିତ୍ୟର ସମସ୍ତ ବିଭାଗରେ ଲେଖନୀ ଚାଳନା କରି ଏ ଯାବତ୍ ସେ ୩୨ରୁ ଉର୍ଦ୍ଧ୍ୱ ପୁସ୍ତକ ସୃଷ୍ଟି କରି ଓଡ଼ିଆ ସାହିତ୍ୟ ଜଗତକୁ ପ୍ରଦାନ କରିସାରିଲେଣି ।

ତାଙ୍କର ଶିଶୁ ସାହିତ୍ୟରେ ଶିଶୁ ମାନଙ୍କର ମାନସିକ ବିକାଶ ଘଟାଇବାର ବାର୍ତ୍ତା ରହିଥିବା ବେଳେ, ପ୍ରବନ୍ଧ ଓ ଆଲୋଚନା ପୁସ୍ତକର ଯୁବମାନସର ବୌଦ୍ଧିକ ବିକାଶ ଘଟିବାର ବାର୍ତ୍ତା ରହିଛି । ପିଲାବେଳ ଧୂଳିଖେଳର ସ୍ମୃତି ସଂଜୀବିତ ହୋଇଛି ଗଳ୍ପ ମାନଙ୍କରେ । ଏତଦ୍ ସହ କୋରାପୁଟର କେତେଗୁଡିଏ ଲୋକଗାଥା ପର୍ବପର୍ବାଣି ଏବଂ ଅନାଲୋଚିତ ସଂସ୍କୃତିକୁ ଲୋକ ଲୋଚନକୁ ଆଣିବାରେ ସମର୍ଥ ହୋଇଛନ୍ତି ଡଃ. ସାହୁ । ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ଡଃ. ସାହୁଙ୍କର ଲେଖନୀ ଚଳଚଞ୍ଚଳ ରହୁ । ଆହୁରି ଅନେକ ସୃଷ୍ଟି ସେ ଉପହାର ଦିଅନ୍ତୁ ଓଡିଆ ସାହିତ୍ୟକୁ ।



କମରପଦା (ବାଲିସାହି),ଯଶପଡା, କଟକ



Digitized by srujanika@gmail.com

# ସମତଳରୁ ଅସମତଳ... ସବୁଠି ବସନ୍ତ

## ନିରଞ୍ଜନ ଜେନା

ନଈକୂଳିଆ ଗାଆଁଟିଏ । ନାନା ଜାତିର ଲୋକଙ୍କ ବାସସ୍ଥଳୀ । ଇତିହାସ ପୃଷ୍ଠାରେ କୁସୁମପୁର; ପରବର୍ତ୍ତୀ ସମୟରେ ଅପଭ୍ରଂଶ ହୋଇ ଲୋକମୁଖରେ, ଖାତା-ଖତିଆନରେ କୁସୁପୁର । କଟକ ଜିଲ୍ଲାର ମାହାଙ୍ଗା ଅଞ୍ଚଳ । ଯେଉଁ ଐତିହ୍ୟ ସମ୍ପନ୍ନ ମାଟି-ଓଡ଼ିଶାର ବହୁ ପ୍ରତିଭାଧର ସାରସ୍ୱତ ସାଧକଙ୍କୁ ଜନ୍ମ ଦେଇ ଗୌରବାନ୍ୱିତ । ସେଇ ମାଟିର କୁସୁପୁର ଗ୍ରାମରେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ବସନ୍ତ କିଶୋରଙ୍କ ଜନ୍ମ ।

ଗାଁ ପାଖ 'ଆଲାମ ଗିରି' ଠିଆ ହୋଇଛି ଯୁଗଯୁଗରୁ । ସେଇ ପାହାଡ଼ ଦେହକୁ ଛୁଇଁ ବହିଯାଉଛି ଫୁଲେଇ 'ବିରୂପା ନଈ' । ସ୍ୱର୍ଣ୍ଣ ତ୍ରିଭୁଜର ବାୟୁକୋଣରେ ଏ ଗାଆଁ । ଅଗ୍ନିକୋଣରେ ବୌଦ୍ଧପୀଠ ଲଳିତଗିରି, ଐଶ୍ୱାନ କୋଣରେ ରତ୍ନଗିରି ଏବଂ ନୈରୁତ କୋଣରେ ଉଦୟଗିରି ଭଳି ଐତିହାସିକ ପାହାଡର ଅବସ୍ଥିତି । ଏକଦା ଏହି ତିନୋଟି ପାହାଡ଼ର କୋଳରେ ଗଢ଼ି ଉଠିଥିଲା 'ପୁଷ୍ପଗିରି ବିଶ୍ୱବିଦ୍ୟାଳୟ' । ଚୀନ୍, ଜାପାନ, ଇଣ୍ଡୋନେସିଆ, ବ୍ରହ୍ମଦେଶ, ସିଂହଳ ଏବଂ ନେପାଳର ବୌଦ୍ଧ ଶ୍ରମଣ, ବୌଦ୍ଧ ଭିକ୍ଷୁ ଓ ପରିବ୍ରାଜକ ଏଇ ଭୂଖଣ୍ଡକୁ ଆସି ବୌଦ୍ଧ ଧର୍ମର ପ୍ରସାର ଓ ପ୍ରଚାର ଘଟାଇଥିଲେ । ଅତୀତର ପୃଷ୍ଠଭୂମିରେ ଏ ଅଞ୍ଚଳ ତଥା କୁସୁପୁର ଗ୍ରାମ ନିଜସ୍ୱ ଗାରିମାରେ ମହିମାମଣ୍ଡିତ । ଏଇ ଗ୍ରାମରେ ପଲ୍ଲୀକବି ନନ୍ଦକିଶୋର ବଳ, ଶିଳ୍ପୀଗୁରୁ ବି. ବର୍ମା, ଔପନ୍ୟାସିକ ଓ କବି ଜ୍ଞାନୀନ୍ଦ୍ର ବର୍ମା, ଲେଖକ ରାଜେନ୍ଦ୍ର ବର୍ମା, ବିଦୂଷୀ ଲବଙ୍ଗଲତା, ଶିଶୁ ସାହିତ୍ୟିକ କବି ନନ୍ଦକିଶୋର ସାମଲଙ୍କ ସମେତ ବହୁ ସ୍ୱାଧୀନତା ସଂଗ୍ରାମୀ ଜନ୍ମ ଗ୍ରହଣ କରି ଉତ୍କଳ ସାହିତ୍ୟ ଭାରତୀଙ୍କୁ ମହିମା ମଣ୍ଡିତ କରିଛନ୍ତି । ପ୍ରଖ୍ୟାତ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ ବସନ୍ତର ସ୍କୁଲ ଶିକ୍ଷକ ଓ ପରବର୍ତ୍ତୀ ସମୟରେ ସାହିତ୍ୟ ଜୀବନର ଦିକ୍‌ଦ୍ରଷ୍ଟା ଥିଲେ ।

ନିକଟସ୍ଥ ଗ୍ରାମ କୋଠପଦାରେ ଗଣକବି ବୈଷ୍ଣବପାଣି, ବିରୂପା ନଦୀର ଆର ପାରି ମୂଳବସନ୍ତ ଗ୍ରାମର ବାଗ୍ମୀ ବିଶ୍ୱନାଥ କର, ଗୁଣ୍ଡୁପୁରର ସଂସ୍କାରକ ବୈରାଗୀ ମିଶ୍ର, କାଳିଅଣ୍ଡିର ଔପନ୍ୟାସିକ ପ୍ରାଣକୃଷ୍ଣ ସାମଲ, ପଶୁଲୁଣ୍ଠାର ପ୍ୟାରୀମୋହନ ଆଚାର୍ଯ୍ୟ,



Digitized by srujanika@gmail.com

ମାହାଙ୍ଗାର ଆଦି ନାଟ୍ୟକାର ଜଗମୋହନ ଲାଲ, ଦୀକ୍ଷିତ ପଡ଼ାର ନାଟ୍ୟକାର ରାମଶଙ୍କର ଓ ଗୌରୀଶଙ୍କର, ଗୋପାଳପୁରର କବି ଦ୍ୱିତୀୟ ଭଞ୍ଜ ଗୋଲକଚନ୍ଦ୍ର ପ୍ରଧାନ ଏବଂ ଧାରପୁରର କଥାକାର ରାମପ୍ରସାଦ, କବି ମହାଦେବ ମହାନ୍ତିଙ୍କ ପରି ବହୁ ସାରସ୍ୱତ ସାଧକଙ୍କ ଜନ୍ମପୀଠ ଏଇ ସାରସ୍ୱତ ପରିବେଶରେ । ସେମାନଙ୍କ ସାରସ୍ୱତ ସାଧନାରେ ଉତ୍କଳ ସାହିତ୍ୟ, ସଂସ୍କୃତି ଓ ଇତିହାସ ସ୍ୱତନ୍ତ୍ର ମାନ୍ୟତା ଲାଭ କରିଅଛି । ଉପରୋକ୍ତ ମହାନ ପତିଭୂଗଣଙ୍କ ଆଦର୍ଶ ଶତ ପ୍ରତିଶତ ବସନ୍ତଙ୍କ ଉପରେ ନ ପଡିଲେ ବି ଯେଉଁ କାଣିଚାଏ ଛୁଇଁଛି ସେଥିରେ ସେ ଦୀପ୍ତିମନ୍ତ ।

କୁଳୁକୁଳୁ ନିନାଦିନୀ 'ବିରୂପା' ବସନ୍ତଙ୍କୁ ଲେଖେଇଛି କବିତା, ନିର୍ବିକାର ଆଲମଗିରିର ଘନ ବନାନୀ ଓ ଐତିହାସିକ 'ପୁଷ୍ପଗିରି' ଶିଖେଇଛି ପ୍ରବନ୍ଧ, ନିବନ୍ଧ, ପଲ୍ଲୀଗ୍ରାମରେ ଖରା, ବର୍ଷା, ଶୀତ ଓ ବସନ୍ତ ଲେଖିବାକୁ ପ୍ରେରଣା ଦେଇଛି କୋମଳମତି ଶିଶୁ ଓ କିଶୋରମାନଙ୍କ ନିମନ୍ତେ କବିତାର ଫୁଲଚାଙ୍ଗୁଡ଼ି । ମାଟି, ପାଣି ଓ ପବନ ପ୍ରତିଟି ମଣିଷକୁ ଶିଖାଏ, ପଢ଼ାଏ ଓ ଲେଖିବାର ପ୍ରେରଣା ଯୋଗାଇଥାଏ । ସେଇ ନ୍ୟାୟରେ ବସନ୍ତ ବ୍ୟତିକ୍ରମ ନୁହନ୍ତି ।

ନନ୍ଦକିଶୋର ବିଦ୍ୟାମନ୍ଦିରର ଛାତ୍ର ଥିବା ସମୟରୁ ଶିଶୁ କବିତା ରଚନାରେ ମନପ୍ରାଣ ଢ଼ାଳି ଦିଅନ୍ତି ସେ । ନିଜ ପ୍ରଚେଷ୍ଟାରେ କେତେଜଣ ଉତ୍ସାହୀ ସମଗୋତ୍ରୀୟ ବନ୍ଧୁଙ୍କୁ ନେଇ ପ୍ରକାଶ କରିଛନ୍ତି 'ବଗଲାବଗୁଲୀ' ନାମକ ଶିଶୁ ପତ୍ରିକା । ତତ୍ ସହିତ ପ୍ରଜାତନ୍ତ୍ର ମୀନାବଜାରରୁ ଆରମ୍ଭ କରି ଓଡ଼ିଶାର ଲବ୍‌ଧ ପ୍ରତିଷ୍ଠ ଶିଶୁ ଓ କିଶୋର ପତ୍ରପତ୍ରିକାରେ ମନୋମୁଗ୍‌ଧକର ଶିଶୁ ମନଲାଖି କବିତା, ଗଳ୍ପ ପ୍ରକାଶ ପାଏ ବସନ୍ତଙ୍କର । ନିମ୍ନ ମଧ୍ୟବିତ୍ତ ପରିବାରର ଏକମାତ୍ର ସନ୍ତାନ ସେ । ପରିବାରର ବୃଦ୍ଧପିତାଙ୍କର ଅର୍ଥନୈତିକ ସ୍ଥିତିକୁ ସମ୍ଭାଳିବା ପାଇଁ ପ୍ରଥମେ ସେ ନିକଟସ୍ଥ ବାଲିଚନ୍ଦ୍ରପୁର ବଜାରରେ 'ଅଜନ୍ତା ଟାଇପ୍ ଇନ୍‌ଷ୍ଟିଚ୍ୟୁଟ' ସ୍ଥାପନ କରି ପିଲାମାନଙ୍କୁ କର୍ମାଭିମୁଖୀ ଶିକ୍ଷାଦାନ କରାଇବାରେ ସଫଳ ହେବା ସହିତ ନିଜେ ଚାକିରି କରନ୍ତି ସ୍ଥାନୀୟ ମହାପୁରୁଷ ହାଡିଦାସ ମହାବିଦ୍ୟାଳୟ, ଛତିଆରେ । ସେଠାରେ ଥିଲାବେଳେ ଗଭୀର ଅଧ୍ୟୟନ ଓ ଉଚ୍ଚ ଅକାଙ୍‌କ୍ଷା ନେଇ ଘରୋଇ ଭାବରେ ସ୍ନାତକୋତ୍ତର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯୋଗ ଦିଅନ୍ତି ସୁନାବେଡ଼ା କଲେଜରେ । ସେଇଠାରୁ ବସନ୍ତ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ଅଧ୍ୟାପନା ସହ କବିତା, ଗଳ୍ପ ଓ ପ୍ରବନ୍ଧ ରଚନାରେ ନିଜକୁ ହଜେଇ ବସନ୍ତି । ଇତିମଧ୍ୟରେ କୋରାପୁଟ ଜିଲ୍ଲାର ପାଣି ପବନ ଓ ସାହିତ୍ୟିକଗଣଙ୍କ ସହ ନିଜକୁ ସାମିଲ୍ କରି ବିଭିନ୍ନ ସାହିତ୍ୟ, ସଂସ୍କୃତି ଅନୁଷ୍ଠାନର ଅଂଶୀଦାର ହୋଇ ଉଠନ୍ତି । ବିଭିନ୍ନ ପତ୍ରପତ୍ରିକା ସମ୍ପାଦନାରେ ଓ ପୁସ୍ତକ ପ୍ରକାଶନ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରନ୍ତି । ନିଜସ୍ୱ



Digitized by srujanika@gmail.com

ପ୍ରଚେଷ୍ଟା ଓ ସାଧନା ବଳରେ ସେ 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ଶୀର୍ଷକରେ ଗବେଷଣା କରନ୍ତି କୋରାପୁଟ ମାଟିରେ ।

ସମତଳ ମାଟିରୁ ଜୀବନ ଜୀବିକା ନିମନ୍ତେ ସେ ଆଦ୍ୟ ଯୌବନରେ ପାଦ ଥାପିଥିଲେ ଚରି ସବୁଜ, ଶସ୍ୟ ଶ୍ୟାମଳା, ପାହାଡ଼ ବନାନୀ, ନଦୀ ଓ ଝରଣାରେ ବିମଣ୍ଡିତ ଓଡ଼ିଶାର ଭୂସ୍ୱର୍ଗ କୋରାପୁଟରେ । ସେ ମାଟିର ମହମହ ଗନ୍ଧରେ, ଜନଜୀବନର ବିଭୋର ପଣରେ ଓ ସାଂସ୍କୃତିକ ପରିବେଶରେ ବସନ୍ତ ନିଜକୁ ହଜେଇ ଦେଲେ ତିନୋଟି ଦଶନ୍ଧି । ମାଟିମନସ୍କତାର ତନ୍ମୟ ଭାବନା ଚିତ୍ରରୂପ ନେଲା ତାଙ୍କର ଗଳ୍ପ, କବିତା ଓ ପ୍ରବନ୍ଧରେ- କୋରାପୁଟର ଶ୍ୟାମଳ କ୍ଷେତ୍ରରେ । ସାହିତ୍ୟର ପରିବେଶରେ ସାହିତ୍ୟିକଗଣଙ୍କ ମଧୁର ସଂପର୍କରେ ଆସି ସେ ସର୍ଜନାରେ ନିମଜ୍ଜିତ ହେଲେ । କୋରାପୁଟର ଜନଜୀବନ, ଦୁର୍ଗମ ପଥ, ଭୂଗୋଳ, ଇତିହାସ, ଶିକ୍ଷାନୁଷ୍ଠାନ, ଆଦିବାସୀ ଜୀବନଚିତ୍ର ତଥା ଅଗ୍ରଣୀ ସାହିତ୍ୟ ଅନୁଷ୍ଠାନମାନଙ୍କ ସହ ସେ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ଉଠିଲେ ମନ ଓ ପ୍ରାଣରେ । ମାଟିର ସ୍ପନ୍ଦନ ସହ ନିଜ ଆତ୍ମାର ସ୍ପନ୍ଦନକୁ ମିଶେଇ ଦେଲେ ସେ । ସାହିତ୍ୟ, ଜୀବନ ଓ ସର୍ବୋପରି ଜନଜୀବନକୁ ପ୍ରାଣ ଭରି ଭଲ ପାଉଥିବା ମଣିଷ ବସନ୍ତ ଜାଣି ନାହାନ୍ତି ସେ କବି, ସମାଲୋଚକ ଓ ଗାଳ୍ପିକ ହୋଇ ଉଠିଛନ୍ତି ଇତି ମଧ୍ୟରେ ।

ଧନ୍ୟ ସେ କୋରାପୁଟର ସୁନାବଢ଼ାର ଉର୍ବର ମାଟି । ଯିଏ ଅଙ୍କୁରଟିକୁ ମହାଦ୍ରୁମରେ ଏବଂ ବସନ୍ତଙ୍କୁ ପ୍ରାଜ୍ଞ ଓ ପ୍ରତିଭାଧାରୀ ଭାବରେ କୋଳେଇ ନେଇଛି ସସମ୍ମାନେ । ହେ ମୋର ଭୂସ୍ୱର୍ଗ କୋରାପୁଟ ! ତୋ ପାଦରେ କୋଟିଏ ପ୍ରଣାମ । କର୍ମମୟ ଜୀବନର ସାମୟିକ ଅବସର ବେଳାରେ ବସନ୍ତଙ୍କୁ ଶୁଭେଚ୍ଛାର ଶତଭାର ।



ସଭାପତି, ବିରୂପା ସାହିତ୍ୟ ସଂସଦ
ନାନପୁର, ବାଲିଚନ୍ଦ୍ରପୁର, ଯାଜପୁର



Digitized by srujanika@gmail.com

# ନିଷ୍ଠା, ଉଦ୍ୟମ ଓ ଇଚ୍ଛାଶକ୍ତି ବସନ୍ତ ଭାଇଙ୍କୁ ଏତେ ବାଟ ନେଇଯାଇଛି

**ସାମ୍ବାଦିକ ଭକ୍ତ ଚରଣ ସାହୁ**

ନିଷ୍ଠା, ଉଦ୍ୟମ, ପରିଶ୍ରମ ଓ ନିଜର ଇଚ୍ଛାଶକ୍ତି ମଣିଷଙ୍କୁ ସଫଳ ସୋପାନରେ ପହଞ୍ଚାଇ ଦିଏ । ଏହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ବସନ୍ତ ଭାଇ । ତାଙ୍କ ଜନ୍ମ କଟକ ଜିଲ୍ଲାର ମାହାଙ୍ଗା ଥାନାର ଏକ ସମ୍ଭ୍ରାନ୍ତ ଗ୍ରାମ କୁସୁପୁରରେ । ଆମ ଘର ସେଇ କୁସୁପୁର ଗ୍ରାମ ପଞ୍ଚାୟତର ପଣସପୁର ଗ୍ରାମରେ । କୁସୁପୁର ଆଉ ପଣସପୁର ଗ୍ରାମ ମଝିରେ ପଟ୍ଟାମୁଣ୍ଡାଇ କେନାଲ ବହିଯାଇଛି କଟକରୁ ପଟ୍ଟାମୁଣ୍ଡାଇ ଯାଏ । ମଝିରେ ଏହି କେନାଲ ନଥିଲେ ଆମ ଦୁଇଟି ଗାଁ ଗୋଟିଏ ଗାଁ ହୋଇଯାଇଥାଆନ୍ତା ।

ବସନ୍ତଭାଇଙ୍କୁ ମୁଁ ପିଲାଦିନରୁ ଅତି ନିକଟରୁ ଦେଖିଛି । ତାଙ୍କ ସହିତ ମିଶିଛି । ବସିଛି । ସେ ମୋ ଠାରୁ ବୋଧେ ତିନି ଚାରି ବର୍ଷ ବଡ଼ ହେବେ । ମୋତେ ସାନଭାଇ ପରି ଖୁବ୍ ଶ୍ରଦ୍ଧା କରିଥାନ୍ତି । ପିଲାଦିନରୁ ସେ ଅଭାବ, ଅସୁବିଧା ଓ ସମସ୍ୟାକୁ ଖୁବ୍ ନିକଟରୁ ଅନୁଭବ କରିଛନ୍ତି । ମୁଁ ବାଲିଚନ୍ଦ୍ରପୁର ହାଇସ୍କୁଲ୍‌ରେ ଦଶମ କି ଏକାଦଶ ପଢ଼ିଲା ବେଳକୁ ସେ ସେଠାରେ 'ଅଜନ୍ତା ଟାଇପ୍ ଇନଷ୍ଟିଚ୍ୟୁଟ' ଖୋଲି ପିଲାମାନଙ୍କୁ ବୈଷୟିକ ଶିକ୍ଷା ପ୍ରଦାନ କରୁଥିଲେ । ନିଜର ସାହିତ୍ୟିକ ରୁଚିକୁ ଚରିତାର୍ଥ କରିବା ସହିତ ସେହି ସମୟରେ ତାଙ୍କ ଗାଁ କୁସୁପୁରରୁ 'ବଗଲାବଗୁଲୀ' ଶିଶୁ ପତ୍ରିକା ମଧ୍ୟ ପ୍ରକାଶ କରୁଥିଲେ । ଓଡ଼ିଶାର ପ୍ରତିଷ୍ଠିତ ଲେଖକ/ଲେଖିକାଙ୍କ ଲେଖାମାନ 'ବଗଲାବଗୁଲୀ'ରେ ପ୍ରକାଶ କରି ପତ୍ରିକାଟିକୁ ପାଠକଙ୍କ ନିକଟରେ ବେଶ୍ ଆଦୃତ କରିପାରିଥିଲେ । ଏବେ ବି ସେହି ପତ୍ରିକାର କେତେଖଣ୍ଡ ସଂଖ୍ୟା ମୋ ପାଖରେ ଗଚ୍ଛିତ ଅଛି । ତାକୁ ଦେଖିଲେ ବସନ୍ତ ଭାଇଙ୍କ ସେ ବେଳର କଥା ଭଲ ଭାବେ ମନେ ପକାଇଦିଏ ।

ପରବର୍ତ୍ତୀ କାଳରେ କେନ୍ଦ୍ରାପଡା କଲେଜରୁ ମୁଁ ଓଡ଼ିଆ ଅନର୍ସ ପାସ୍ କଲି । ବସନ୍ତ ଭାଇଙ୍କ ଉଚ୍ଚ ଅଭିଳାଷ ତାଙ୍କୁ ଅଧିକ ପଢ଼ିବା ପାଇଁ ପ୍ରେରିତ କରିଥିଲା । ଆମେ ଦୁହେଁ ଘରୋଇ ଭାବେ ବାଣୀବିହାରରେ ଏମ୍.ଏ. ପରୀକ୍ଷା ଦେଇଥିଲୁ । ତାଙ୍କ ସହିତ ଏମ୍.ଏ. ପରୀକ୍ଷା ଦେବାର ଗୋଟିଏ ବିରଳ ସୌଭାଗ୍ୟ ପାଇଥିଲି ସେତେବେଳେ ।



Digitized by srujanika@gmail.com

ବସନ୍ତ ଭାଇ ଖୁବ୍ ଧୀର, ନମ୍ର ଆଉ ଶାନ୍ତ ସ୍ୱଭାବର ମଣିଷ । ଗର୍ବ, ଅହଙ୍କାର ଠାରୁ ସେ ବହୁ ଦୂରରେ ଥିଲେ । ପିଲା ବେଳରୁ ସେ ଭାରି ପରିଶ୍ରମୀ । ଯେଉଁ କାମରେ ହାତ ଦେଇଥାନ୍ତି ତାକୁ ସେ ମନପ୍ରାଣ ସହକାରେ କରିଥାନ୍ତି । ଫଳରେ ସଫଳତା ତାଙ୍କ ହାତ ପାଆନ୍ତାରେ ପହଞ୍ଚିଥାଏ ।

ପରବର୍ତ୍ତୀ କାଳରେ ବସନ୍ତ ଭାଇ ସୁନାବେଡ଼ା କଲେଜରେ ଯୋଗଦେଲେ । ଏ ଖବର ଶୁଣି ମୁଁ ଅତ୍ୟନ୍ତ ଖୁସି ହୋଇଥିଲି । ଅଧ୍ୟାପନା ସହିତ ସେ 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ବିଷୟରେ ଗବେଷଣା କରି ଡକ୍ଟରେଟ୍ ଡିଗ୍ରୀ ପାଇ ନିଜକୁ ଓ ଆମ ଅଞ୍ଚଳକୁ ଗୌରବାନ୍ୱିତ କରିଥିଲେ । ଅଧ୍ୟାପନା ଭିତରେ ହଜି ଯାଇଥିଲେ ମଧ୍ୟ ସେ ସାହିତ୍ୟ ସାଧନା କାର୍ଯ୍ୟରୁ ଓହରି ଯାଇନଥିଲେ । ପିଲାଟି ଦିନରୁ ସାହିତ୍ୟ ପ୍ରତି ରୁଚି ରଖିଥିବା ବସନ୍ତ ଭାଇ କୋରାପୁଟ ମାଟିରେ ଜଣେ ବିଶିଷ୍ଟ ସାହିତ୍ୟିକର ମାନ୍ୟତା ପାଇ ଆମକୁ ଗୌରବାନ୍ୱିତ କରିଛନ୍ତି । ସାହିତ୍ୟ ସଂସ୍କୃତି ସଂପନ୍ନ ମାହାଙ୍ଗା ମାଟିର କୁସୁପୁର ଭଳି ଏକ ପ୍ରତିଷ୍ଠିତ ଗ୍ରାମରେ ବହୁ ସାରସ୍ୱତ ସାଧକ ଜନ୍ମ ନେଇ କୁସୁପୁର ମାଟିକୁ ଧନ୍ୟ କରିଛନ୍ତି । ସେଇ ପଲ୍ଲୀପ୍ରକୃତି ଭରା ପ୍ରସିଦ୍ଧ କୁସୁପୁର ଗାଁରେ ବସନ୍ତ ଭାଇଙ୍କର ଜନ୍ମ । ଏଭଳି ଏକ ସମ୍ଭ୍ରାନ୍ତ ଗ୍ରାମରେ ଜନ୍ମ ହୋଇ କିଏ ଭାବୁକ, କିଏ କବି, କିଏ ଚିତ୍ରକର ଆଉ କିଏ ସାହିତ୍ୟିକ ହେବାର ସୌଭାଗ୍ୟ ପାଇଥିବା ବେଳେ ବସନ୍ତ ଭାଇ ଏଥିରୁ ବାଦ ଯାଇଥାନ୍ତେ କିପରି ?

ତେବେ ବିରୂପା ନଦୀ, ଆମ୍ବ ତୋଟା ସହିତ ଭରପୁର ପଲ୍ଲୀ ପ୍ରକୃତିର ଚିତ୍ର ଥିବା କୁସୁପୁର ଗାଁ ଛାଡ଼ି ସେ ନିଜର କର୍ମସଂସ୍ଥାନ ପାଇଁ ବଣପାହାଡ଼ ଘେରା କୋରାପୁଟ ମାଟିରେ ପାଦ ଦେଲା ପରେ ପିଲାଟି ଦିନରୁ ସାହିତ୍ୟ ପ୍ରତି ରୁଚି ରଖିଥିବା ବସନ୍ତ ଭାଇ କୋରାପୁଟ ପ୍ରକୃତିର ଅପୂର୍ବ ଶୋଭା ଦେଖି ବିଭୋର ହୋଇଯାଇଥିଲେ । ପରେ ପରେ ତାଙ୍କ ଲେଖନୀରୁ ଆପେ ଆପେ ଝରିପଡିଥିଲା ସାହିତ୍ୟର ମହାର୍ଘ ଲେଖା ସବୁ । ଶିଶୁ ସାହିତ୍ୟରୁ ଆରମ୍ଭ କରି ସାହିତ୍ୟର ବିଭିନ୍ନ ବିଭାବ ତାଙ୍କ ଲେଖନୀ ସ୍ପର୍ଶରେ ବେଶ୍ ଜୀବନ୍ତ ହୋଇ ଉଠିଲା । କୋରାପୁଟରେ ଚାକିରି କାଳ ଭିତରେ ସେ ଅବିଭକ୍ତ କୋରାପୁଟ ଜିଲ୍ଲାର ଜଣେ ସାହିତ୍ୟର ଶ୍ରେଷ୍ଠ ବିନ୍ଧାଣୀ ସାଜି ଅନେକ ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରି ସାରା କୋରାପୁଟରେ ନିଜ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ରଖିଛନ୍ତି । ଏଥିପାଇଁ ଆମେ ତାଙ୍କୁ ଭଲ ପାଉଥିବା ଏ ପଟର ମଣିଷମାନେ ତାଙ୍କ ପାଇଁ ବେଶ୍ ଗର୍ବିତ । ଖଣ୍ଡେ କି ଦୁଇ ଖଣ୍ଡ ନୁହେଁ ଏହା ଭିତରେ ସେ ୩୨ ଖଣ୍ଡ ଅମୂଲ୍ୟ ପୁସ୍ତକ ରଚନା କରିପାରିଛନ୍ତି । ତାଙ୍କ ରଚିତ ଶିଶୁ ସାହିତ୍ୟ ପୁସ୍ତକଗୁଡ଼ିକ ପିଲାମାନଙ୍କ ପାଇଁ ବେଶ୍ ମନଛୁଆଁ ଆଉ ଶିକ୍ଷଣୀୟ ହୋଇପାରିଛି । ଆଦିବାସୀମାନଙ୍କ ଜୀବନ ଉପରେ ତାଙ୍କ ରଚିତ ପ୍ରବନ୍ଧପୁସ୍ତକ ଗୁଡ଼ିକ



Digitized by srujanika@gmail.com

ପାଠକଙ୍କୁ ଆଦିବାସୀଙ୍କ ସମ୍ପର୍କରେ ଅନେକ ଅଜଣା କଥାକୁ ଜଣାଇ ଦେଇଥାଏ । ସେ ଯାହା ହେଉନା କାହିଁକି ବସନ୍ତ ଭାଇଙ୍କ ବିଷୟରେ ଏତିକି କୁହାଯାଇ ପାରେ ଯେ, ନିଜର ନିଷ୍ଠା, ଉଦ୍ୟମ, ପରିଶ୍ରମ ଓ ଇଚ୍ଛାଶକ୍ତି ଯୋଗୁ ସେ ଆଜି ଜଣେ ଆଦର୍ଶ ଅଧ୍ୟାପକ, ଜଣେ ଉଚ୍ଚକୋଟୀର ଗବେଷକ, ସୁଲେଖକ, ସୁସଂଗଠକ, ଜଣେ ଭଲ ମଣିଷର ମର୍ଯ୍ୟାଦା ପାଇଛନ୍ତି । ଆଉ ଅଳ୍ପ ଦିନ ଭିତରେ ସେ ତାଙ୍କ ଚାକିରି ଜୀବନରୁ ଅବସର ନେବେ । ତା' ପରେ ସୁଦୂର କୋରାପୁଟରୁ ଫେରି ଆସିବେ ନିଜ ଗାଁ କୋଳକୁ । ଶୁଣିଛି ଅନେକ ଲୋକ ଚାକିରି ପରେ ସେଇଠାରେ ଘର ଦ୍ୱାର କରି ରହିଯାଆନ୍ତି ବା କଟକ ଭୁବନେଶ୍ୱରରେ ରହିବାକୁ ଭଲ ପାଉଥିବା ବେଳେ ବସନ୍ତ ଭାଇ ମନସ୍ଥ କରିଛନ୍ତି ତାଙ୍କ ଅବସର ଜୀବନ ଗାଁରେ କଟାଇବା ପାଇଁ । ଏଥିରୁ ସେ ତାଙ୍କ ଗାଁକୁ କେତେ ଭଲ ପାଆନ୍ତି ତାହା ଜଣା ପଡେ । ଦୀର୍ଘ ବର୍ଷ ଧରି କୋରାପୁଟର ମାଟି, ପାଣି ପବନ ସହିତ ବିତେଇ ଦେଇଥିବା ପ୍ରତିଟି ମୁହୂର୍ତ୍ତଗୁଡ଼ିକ ତାଙ୍କ ପାଇଁ ସ୍ମୃତି ହୋଇ ରହିଯିବ ଚିରଦିନ । ଆଉ ସେହି ମିଠାମିଠା ସ୍ମୃତି ସବୁ ତାଙ୍କ ଲେଖନୀକୁ ଖାଲି ଯେ ଚଳଚଞ୍ଚଳ କରିବ ତାହା ନୁହେଁ ବରଂ ସେହି ଲେଖାଗୁଡ଼ିକ ବେଶ୍ ଜୀବନ୍ତ ହୋଇ ଉଠିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଶେଷରେ ତାଙ୍କ ଅବସରକାଳୀନ ବିଦାୟ ସମ୍ବର୍ଦ୍ଧନା ପାଇଁ କୋରାପୁଟରେ ତାଙ୍କ ପ୍ରିୟ ମଣିଷ ଓ ତାଙ୍କ ଶୁଭେଚ୍ଛୁମାନଙ୍କ ଦ୍ୱାରା ଆୟୋଜିତ ହେବାକୁ ଥିବା ବିଭିନ୍ନ ପୂଜ୍ୟପୂଜା କାର୍ଯ୍ୟକ୍ରମର ସଫଳତା କାମନା କରିବା ସହ ତାଙ୍କ ଅବସର ଜୀବନ ସୁସ୍ଥ, ନିରାମୟ ତଥା ସାରସ୍ୱତମୟ ହେବା ପାଇଁ ମୁଁ ଶ୍ରୀଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଛି ।



ସଭାପତି
ମାହାଙ୍ଗା-ବଡ଼ଚଣା ସାହିତ୍ୟ ସଂସ୍କୃତି ପରିଷଦ
ବାଲିଚନ୍ଦ୍ରପୁର, ଯାଜପୁର ୭୫୪୨୮୫



Digitized by srujanika@gmail.com

# ବଂଧୁ ! ତୁମ ଅବସର ବେଳେ...

**ପୁରୁଷୋତ୍ତମ ବେହେରା**

ଜୀବନ କି ଖାଲି ନିରାଶାର ବାଲି
ମରୁ ମରିଚିକା ସେନେହ ପ୍ରୀତି
କହ କି ଆଶାରେ ଏ' ମର ସଂସାରେ
ପରଲାଗି ନର ମରୁଛି ନିତି...।।

ମଣିଷ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି । ତ୍ୟାଗ, ସ୍ନେହ, ପ୍ରେମ ପ୍ରୀତିର ଏକ ମୂର୍ତ୍ତୀମନ୍ତ ପ୍ରତୀକ । ଜୀବନର ଚଲା ପଥରେ ନକାରାତ୍ମକ ଚିନ୍ତାଧାରା ନେଇ ଆଗକୁ ଚାଲିଲେ ତାକୁ ସଂମ୍ପୂର୍ଣ୍ଣ ସଂସାର ଏକ ବୋଝ ପରି ମନେ ହେବ । କିନ୍ତୁ ସକାରାତ୍ମକ ଭାବନା ତା ଜୀବନରେ ଭରିଦେବ ଅଶେଷ ଆନନ୍ଦ । ସେହି ଆନନ୍ଦମୟ ପରିବେଶରେ ଅନେକ ବଂଧୁ ମିଳିବେ, ଭାବନାର ଆଦାନ ପ୍ରଦାନ ହେବ, ଦୁଃଖ ସୁଖ ପରସ୍ପର ମଧ୍ୟରେ ବାଣ୍ଟିବେ, ସମୟ ଜଣା ନପଡ଼ି ଗଡି ଚାଲିବ ଆଗକୁ । ସେଦିନ ଏହି ଭଳି ଏକ ପରିସ୍ଥିତିର ବଂଧୁ ବସନ୍ତ ବାବୁଙ୍କ ସହ ସାକ୍ଷାତ ହୋଇଥିଲା ସ୍ୱର୍ଣ୍ଣକ୍ଷେତ୍ର ସୁନାବେଡ଼ାରେ । ତାଙ୍କ କଥାବାର୍ତ୍ତା, ସାହିତ୍ୟ ପ୍ରତି ଶ୍ରଦ୍ଧା ମୋତେ ଅବିଭୂତ କରିଥିଲା । ସେତେବେଳକୁ ତାଙ୍କର କେତେ ଖଣ୍ଡ ବହି ପ୍ରକାଶ ପାଇ ସାରିଥିଲା । ମୁଁ ତାଙ୍କୁ ପ୍ରସ୍ତାବ ଦେଇଥିଲି ମୋର ପ୍ରକାଶ ହେବାକୁ ଥିବା ସ୍ୱଲିଖିତ ଓଡିଆ କାବ୍ୟ 'ଓଡିଆ ବଧୂ'ଟିକୁ ପଢି ପ୍ରକାଶ କାର୍ଯ୍ୟରେ ସାହାଯ୍ୟ କରିବାକୁ । ଭାବୁଥିଲି ହୁଏତ ସେ ରାଜି ହେବେ କି ନାହିଁ । କିନ୍ତୁ ସେ ତତ୍କ୍ଷଣାତ୍ ସମ୍ମତି ପ୍ରକାଶ କରିଥିଲେ ଆଉ ସେହି କାବ୍ୟଟିର ଲେଖା ସଂଶୋଧନ ଠାରୁ ପ୍ରକାଶ ହେବା ପର୍ଯ୍ୟନ୍ତ ସେ ଯେଉଁ ଆଗ୍ରହ ଓ ନିଷ୍ଠା ସହ ସମୟ ଦାନ କରିଥିଲେ ତାହା ଆଜିବି ମୋ ଚକ୍ଷୁ ସମ୍ମୁଖରେ ଜୀବନ୍ତ ହୋଇ ନାଚି ଉଠୁଛି ।

ସେ ଆଜି ଅବସର ନେବେ ନିଜର କର୍ମକ୍ଷେତ୍ରରୁ । କେତେ ଛାତ୍ର ତାଙ୍କ ହାତରେ ଗଢା ଯାଇଛନ୍ତି । କିଏ କେଉଁଠି ସାନ ବଡ ପଦ ପଦବୀରେ ଅଧିଷ୍ଠିତ ଥାଇ ତାଙ୍କ କଥା ମନେ ପକାଇବେ । ମାତ୍ର ଜଣେ ବଂଧୁ ଭାବରେ ସେ ସବୁଦିନେ ମୋ ମନ ମଧ୍ୟରେ ସ୍ଥାନ ପାଇଛନ୍ତି । ପରସ୍ପର ଠାରୁ ଆମେ ୫୦୦ରୁ ଊର୍ଦ୍ଧ୍ୱ କିଲୋମିଟର ଦୂରରେ



Digitized by srujanika@gmail.com

ଅବସ୍ଥାପିତ ହେଲେ ମଧ୍ୟ ଆଜି ପର୍ଯ୍ୟନ୍ତ କୌଣସି ଓଡିଆ ପର୍ବପର୍ବାଣି ନାହିଁ ଯେଉଁଥିରେ ତାଙ୍କର ଶୁଭବାର୍ତ୍ତା ମୋ ପାଖକୁ ନ ଆସିଛି । ସୁନାବେଡା ଛାଡିଲା ପରେ ସାକ୍ଷାତ ଖୁବ କମ୍ ମାତ୍ର ଟେଲିଫୋନରେ ସର୍ବଦା ଯୋଗାଯୋଗ ଆମ ସଂପର୍କକୁ ଦୃଢ କରିଛି । ଥରେ ତାଙ୍କ ଗ୍ରାମ କୁସୁପୁର ଯାଇଥିଲି ମୋର ଜଣେ ସହକର୍ମୀଙ୍କର ପୁଅଙ୍କ ବିବାହ ଭୋଜିରେ ଯୋଗ ଦେବା ପାଇଁ । ହଠାତ୍ ତାଙ୍କ କଥା ମନେ ପଡିଗଲା, ଟେଲିଫୋନରେ ତାଙ୍କୁ ଯୋଗାଯୋଗ କରିବାରୁ ଜଣାପଡିଲା ସେ ଗାଁକୁ ଆସିଛନ୍ତି । ଯାହା ହେଉ ବଂଧୁଙ୍କ ସହିତ ବହୁ ଦିନ ପରେ ସେଠାରେ ଦେଖା ହେଲା । କିଛି ସମୟ କଥାବାର୍ତ୍ତା ପରେ ପରସ୍ପର ଠାରୁ ବିଦାୟ ନେଇଥିଲୁ । ଏସବୁ ମୋର ନିଜସ୍ୱ ଅନୁଭୂତି । କିନ୍ତୁ ମଣିଷ ତ ସର୍ବଦା ନିଜ ପାଇଁ ବଞ୍ଚେ ନାହିଁ । ଯେଉଁ ପାଣି, ପବନ, ପରିବେଶ ତାକୁ ଆଜି ବଞ୍ଚିବାର ଖୋରାକ ଯୋଗାଇଛି, ଯେଉଁ ପିତା, ମାତା, ଗୁରୁ, ଗୁରୁଜନ ତଥା ଅଦୃଶ୍ୟର ଅନେକ ବ୍ୟକ୍ତିଙ୍କର ଶୁଭେଚ୍ଛା ଓ ସଦିଚ୍ଛା ମଣିଷକୁ ଆଜି ସମାଜ ଆଗରେ ପରିଚିତ କରାଇଛି ସେହି ସମସ୍ତଙ୍କ ପାଇଁ ପ୍ରତ୍ୟେକ ମଣିଷର କିଛି ନା କିଛି କର୍ତ୍ତବ୍ୟ ରହିଛି । ତେଣୁ ଅଧିକାଂଶ ବେଳେ ମଣିଷଟିକୁ ପଚରାଯାଏ, ତୋର ସମାଜ ପ୍ରତି ଦାନ କ'ଣ ? (What is your contribution to the society? ), କିଏ କିଛି କହେ ତ କିଏ ନିରବ ରହେ । ଏହି ପରିପ୍ରେକ୍ଷୀରେ ମୁଁ ମୋର ବଂଧୁ ବସନ୍ତ ସାହୁଙ୍କ ପାଇଁ କିଛି କହିବି -

ସେ ଜଣେ ଶିଶୁ ସାହିତ୍ୟିକ, ନିଜ ଲେଖା ପାଇଁ ଅନେକ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ । ସମାଜ ପାଇଁ ତାଙ୍କର ଅବଦାନ ସ୍ୱୀକୃତି ପାଇ ସାରିଥିବା ବେଳେ ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି ଜଣେ ଉଚ୍ଚ ଚିନ୍ତାଧାରାର ସୁମଣିଷଟିଏ ଭାବନା ନିଜ ଲୋକ ମାଧ୍ୟମରେ ଜନତା ଦରବାରରେ ପହଞ୍ଚିଯାଇଛି । ତାଙ୍କର ସ୍ୱଲିଖିତ ୩୨ ଖଣ୍ଡ ବହି ମଧ୍ୟରୁ ମୁଁ ପଢିଥିବା ବହି 'କାହାକୁ କହିବା' ୧୪ଟି ରମ୍ୟରଚନାକୁ ନେଇ ପ୍ରକାଶିତ । ଯେଉଁଥିରେ ସେ ଆହ୍ୱାନ ଦେଇଛନ୍ତି ସେହି ସୁପ୍ତ ମଣିଷମାନଙ୍କୁ " ହେ ସୃଷ୍ଟିର ଶ୍ରେଷ୍ଠ ଜୀବ ! ତୁମେ ମାନେ ଉଠ, ଜାଗ୍ରତ ହୁଅ ନୀରବ ରହିଲେ ଶୋଇ ରହିଲେ ସବୁବେଳେ ନିଜ ସୁବିଧାକୁ ଖୋଜିଲେ ରାତି ପାହି ଯିବ ହେଲେ ମନର ଆଶା ମେଣ୍ଟିବ ନାହିଁ । ସତ୍ୟ କୁହ, ଅନ୍ୟାୟର ପ୍ରତିବାଦ କର, ହାଁଜୀ ନୀତି ଛାଡ, ଖରାପ ଅଭ୍ୟାସ ପରିତ୍ୟାଗ କରି, ଅନ୍ୟର ଭଲ କର୍ମକୁ ଅନୁସରଣ କର କିନ୍ତୁ ଖରାପ କର୍ମକୁ ନୁହେଁ । ଏହା ଦ୍ୱାରା ତୁମର ମଙ୍ଗଳ ହେବ ଓ ସମାଜର ମଧ୍ୟ" ଅବକ୍ଷୟଗାମୀ ଏହି ସମାଜ ଓ ପରିବେଶ ପ୍ରତି ଆମ ସମସ୍ତଙ୍କର କର୍ତ୍ତବ୍ୟ ଅନେକ ଓ ଅସୀମ । ଶିଶୁଟିକୁ ଗଢିବା ଯେପରି ପିତା ମାତାଙ୍କର ନୈତିକ ଦାୟିତ୍ୱ, ଭବିଷ୍ୟତରେ ଉଚିତ୍ ଦିଗ୍‌ଦର୍ଶନ ନେଇ ତାକୁ ସୁନାଗରିକ ଭାବେ ସମାଜରେ ପରିଚିତ କରାଇବା ଆମ ସମସ୍ତଙ୍କର ଅବଦାନ ।



Digitized by srujanika@gmail.com

ପ୍ରତ୍ୟେକ ମଣିଷ ଏକ ବିରାଟ ଶକ୍ତି ପୁଞ୍ଜର ଅଂଶ ବିଶେଷ । ଛୋଟ ଅଶ୍ୱତଥ ମଞ୍ଜିର ଚାରା ଯେଭଳି ଦିନେ ମହାଦ୍ରୁମରେ ପରିଣତ ହୋଇ ମାନବ କଲ୍ୟାଣରେ ବ୍ରତୀ ହୁଏ, ଛୋଟ ଶିଶୁ ସେହିପରି ବଡ ହୋଇ ବୈଜ୍ଞାନିକ, ଆଇନଷ୍ଟାଇନ, ସ୍ୱାମୀ ବିବେକାନନ୍ଦ, ଶ୍ରୀସାଇବାବା, ଯୋଗୀ ଅରବିନ୍ଦ ରୂପେ ପରିଚିତ ହୁଏ । ଏହି ମହାମାନବଙ୍କ ପ୍ରତ୍ୟେକ କର୍ମର ସୁପ୍ରଭାବ ଦ୍ୱାରା ସମାଜ ଉପକୃତ ହୁଏ ।

ମୋର ବଂଧୁ ବସନ୍ତ ବାବୁ ମଣିଷ ମଧ୍ୟରେ ଥିବା ସେହି ଅସୀମ ଶକ୍ତିକୁ ବୁଝିଛନ୍ତି । ତେଣୁ ତାଙ୍କର ସାଧୁ ଉଦ୍ୟମ ନିଜ ଲେଖା ମାଧ୍ୟମରେ ପ୍ରତିଫଳିତ । ସେ ରାତ୍ରିର ଘନ ଅଂଧକାର ପରେ ସକାଳର ସୂର୍ଯ୍ୟାଲୋକକୁ ପ୍ରତୀକ୍ଷାରତ । ସକାଳର ମଙ୍ଗଳାଚରଣରେ ମଣିଷ ମନରେ ଥିବା ସବୁ ଗ୍ଲାନି, ସ୍ୱାର୍ଥପରତା, ଲୋଭ ଓ ଅନ୍ୟାନ୍ୟ ଅନେକ ଦୁର୍ଗୁଣ ଧୋଇ ଯିବାର ଆଶା ତାଙ୍କ ମନରେ ସଦା ଉଜ୍ଜିବିତ ।

ବଂଧୁ ! ତୁମର ଉଦ୍ୟମକୁ ପୁର୍ନବାର ଶତ ସାଧୁବାଦ । ତୁମର ଏହି ଅବସର ବେଳରେ ମୋର ଆରାଧ୍ୟ ସଦାଶିବ ସାଇଙ୍କ ନିକଟରେ ପ୍ରାର୍ଥନା ସପରିବାର ତୁମର ଚଲାପଥ ପୁଷ୍ପିତ ସୁକୋମଳ ହେଉ । ସର୍ଣ୍ଣକ୍ଷେତ୍ର ଓ ଏହାର ବନପ୍ରଭା ସାହିତ୍ୟ ସଂସଦ ସହ ପ୍ରତି ମଣିଷ ତୁମକୁ ମନେ ରଖୁ । ବୟସର ଅପରାହ୍ନରେ ତୁମର ଲେଖନୀ ଆହୁରି ଶକ୍ତିଶାଳୀ ହୋଇ ଓଡିଆ ତଥା ବିଶ୍ୱ ସାହିତ୍ୟ ଜଗତକୁ ବହୁ ମୂଲ୍ୟ ଲେଖା ପ୍ରଦାନ କରୁ । ଆମ ବଂଧୁତ୍ୱର ଡୋରି ଆହୁରି ଶକ୍ତ ହେଉ ।

ଅନେକ ଅନେକ ଶୁଭେଚ୍ଛା ସହ -
" ଶତହସ୍ତ ସମାହାର ସହସ୍ର ହସ୍ତ ସଂ କିର
କୃତସ୍ୟ କାର୍ଯସ୍ୟ ଚେହ ସ୍ୱାତି ସମାବହ ।"
(ଅଥର୍ବ ବେଦ ୩, ୨୪, ୫)

(ଶତ ହସ୍ତରେ ସଂଗ୍ରହ ସହସ୍ର ହସ୍ତରେ ସମାଜକୁ ଦାନ କର)



ଭାରତୀୟ ଷ୍ଟେଟ ବ୍ୟାଙ୍କ
ଷ୍ଟ୍ରେସଡ୍ ଆସେଟସ୍ ରିକଭରି ଶାଖା
କଟକ



Digitized by srujanika@gmail.com

# ବର୍ଣ୍ଣିଳ ବସନ୍ତ:ସାମାନ୍ୟ ସ୍ମୃତି ଚିତ୍ର

## ଡକ୍ଟର ନୂତନ ମହାନ୍ତି

ବସନ୍ତ ଏକ ଋତୁର ନାମ । ଯାହା ଋତୁ ମାନଙ୍କର ରାଜା । ଯିଏ ମଳୟ ଆଣେ । ମନରେ ଉନ୍ମାଦନା ଆଣେ, ପ୍ରାଣରେ ପୁଲକ ଜଗାଏ । ବସନ୍ତ ବି ଏକ ରୋଗର ନାମ । ଯାହା ମନରେ ଭୀତି ସଞ୍ଚାର କରେ । ଯଦିଓ ସେ ରୋଗକୁ ଏବେ ନିର୍ମୂଳ କରାଗଲାଣି । ସେମିତି ବସନ୍ତ ଜଣେ ବ୍ୟକ୍ତିଙ୍କର ନାମ । ଯେଉଁ ନାମଟି ଅଧ୍ୟାପନା, ସାହିତ୍ୟ ଓ ସମାଜସେବା ସହ ସଂପୃକ୍ତ । ସେ ହେଉଛନ୍ତି ଡକ୍ଟର ବସନ୍ତ କିଶୋର ସାହୁ । ବୃତ୍ତିରେ ଅଧ୍ୟାପକ । କର୍ମସ୍ଥଳୀ ସୁନାବେଡ଼ାସ୍ଥ ଏରୋନଟିକ୍ସ ମହାବିଦ୍ୟାଳୟ ।

ଡକ୍ଟର ସାହୁଙ୍କୁ ମୁଁ ଲେଖାରୁ ଜାଣିଥିଲି । ତାଙ୍କ ରଚିତ ଶିଶୁ ମନଲାଖି କବିତା କିଛି ମୁଁ ବିଭିନ୍ନ ପତ୍ରପତ୍ରିକାରୁ ପଢ଼ିଥିଲି । ତାଙ୍କ ସହ ମୋର ନା ବ୍ୟକ୍ତିଗତ ନା ପତ୍ରଗତ ସଂପର୍କ ଥିଲା । ମୁଁ ପାଠ ପଢ଼ା ପରେ ଛତ୍ରପୁରସ୍ଥିତ ସରକାରୀ ବିଜ୍ଞାନ କଲେଜରେ ଯୋଗଦେଲି । କିଛି ବର୍ଷ ପରେ, ମାଟ୍ରିକ୍ ପରୀକ୍ଷା କେନ୍ଦ୍ରଗୁଡ଼ିକରେ ପରୀକ୍ଷା ସୂଚାରୁ ରୂପେ ପରିଚାଳିତ ହେଉଛି କି ନାହିଁ, ସେ ସବୁର ତଦାରଖ ନିମନ୍ତେ ମାଧ୍ୟମିକ ଶିକ୍ଷା ବୋର୍ଡଙ୍କ ପକ୍ଷରୁ ସ୍ୱତନ୍ତ୍ର ସ୍କାର୍ଡର ସଦସ୍ୟ ଭାବେ କୋରାପୁଟ, ଫୁଲବାଣୀ, ଗଞ୍ଜାମ ଆଦି (ଅବିଭକ୍ତ) ଜିଲ୍ଲାର ବିଭିନ୍ନ କେନ୍ଦ୍ରକୁ ଯିବାର ସୁଯୋଗ ମିଳିଥିଲା । ସେଇ ସୂତ୍ରରେ ସୁନାବେଡ଼ା ଗ୍ରସ୍ତ ଓ ସେତିକିବେଳେ ସାହିତ୍ୟିକ ଅଧ୍ୟାପକ ବସନ୍ତ ବାବୁଙ୍କ ସହ ମୋର ସାକ୍ଷାତ । ତାଙ୍କର ଆତ୍ମୀୟତା ଓ ଆତିଥ୍ୟ ମତେ ତାଙ୍କ ସାହତ୍ୟ କୃତି ଅପେକ୍ଷା ଅଧିକ ଆପଣାର ମନେ ହେଲା । ତାଙ୍କ ସହ ମୁଁ ତାଙ୍କ କଂପାନୀ ପ୍ରଦତ୍ତ ବାସଗୃହକୁ ଯାଇ ତାଙ୍କ ପରିବାରର ସାହଚର୍ଯ୍ୟ ଲାଭ କଲି । ଫେରିବା ବେଳକୁ ସେ ମତେ ବନଫୁଲ ସାହିତ୍ୟ ପରିଷଦ ପକ୍ଷରୁ ପ୍ରକାଶିତ କିଛି ପୁସ୍ତକ ସ୍ନେହୋପକାର ଭାବେ ଦେଲେ । ତା' ଆଜି ଯାଏ ମୋ ପାଖରେ ସ୍ମୃତି ହୋଇ ରହିଛି ।

ତା' ପରଠୁ ଆମର ସଂପର୍କ ପତ୍ରଗତ ହେଲା । ସେ ସବୁ ସାହିତ୍ୟ ସଂପର୍କୀୟ । ପରବର୍ତ୍ତୀ କାଳରେ ମୁଁ ପୁନଶ୍ଚ ସୁନାବେଡ଼ା ଗଲି ଆମ କଲେଜର ଛାତ୍ରଛାତ୍ରୀମାନଙ୍କୁ ନେଇ । ସେଠାରେ ଆୟୋଜିତ ବିଶ୍ୱବିଦ୍ୟାଳୟସ୍ତରୀୟ ଫୁଟବଲ ଟୁର୍ଣ୍ଣାମେଣ୍ଟର ତତ୍ତ୍ୱାବଧାରକ ହୋଇ । ସେତେବେଳେ ସଂପର୍କ ହୋଇଉଠିଲା ଆହୁରି ଘନିଷ୍ଠ ଓ ନିବିଡ଼ ।



Digitized by srujanika@gmail.com

ପରବର୍ତ୍ତୀ କାଳରେ ଆମର ଦୂରଭାଷ ସଂପର୍କ ଅବ୍ୟାହତ ରହିଲା । ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ବସନ୍ତ ଭାଇ ଜଣେ ସକ୍ରିୟ କର୍ମକର୍ତ୍ତା । ସେହି ପରିଷଦର ଅନ୍ୟତମ ଉପଦେଷ୍ଟା ଥିଲେ ମୋର ଅନ୍ତରଙ୍ଗ ସହପାଠୀ ଡକ୍ଟର ସରୋଜକାନ୍ତ ଚୌଧୁରୀଙ୍କ ଶ୍ୱଶୁର ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତି । ସେହି ସୂତ୍ରରେ ବସନ୍ତ ଭାଇଙ୍କ ସହ ସଂପର୍କ ଓ ସାନ୍ନିଧ ବୃଦ୍ଧି ପାଇଲା । ତାଙ୍କ ସମ୍ପାଦନାରେ ପ୍ରକାଶିତ ଫକୀରମୋହନ ବିଶେଷାଙ୍କ ଓ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଅଭିନନ୍ଦନ ଗ୍ରନ୍ଥରେ ସେ ମୋ ଲେଖା ଛପାଇଲେ ।

ବସନ୍ତ ଭାଇ ବାସ୍ତବରେ ଜଣେ ଦରଦୀ ବନ୍ଧୁ, ନିଷ୍ପାପର ସାହିତ୍ୟ ସାଧକ ଭାବେ ସେ ରାଜ୍ୟରେ ଜଣାଶୁଣା । ସବୁଠୁ ବଡ଼ କଥା ହେଉଛି ସାହିତ୍ୟ ସର୍ଜନା ସହ ସାହିତ୍ୟ ସଂଗଠନରେ ସକ୍ରିୟ ରହିବା କ୍ୱଚିତ ସାହିତ୍ୟ ସ୍ରଷ୍ଟାଙ୍କ ଦ୍ୱାରା ସମ୍ଭବ ହୋଇଥାଏ । ସେ ଦୃଷ୍ଟିରୁ ବସନ୍ତ ଭାଇ ବେଶ୍ ସଫଳ । ଜନ୍ମ ସହ ମୃତ୍ୟୁ ଯେପରି ଏକ ନିଶ୍ଚିତ ସତ୍ୟ, ସେହିପରି ଚାକିରି ସହ ଅବସର । ଚାକିରି ଏକ ବନ୍ଧନ । ଏକ ଧରାବନ୍ଧା ନିୟମିତ କାର୍ଯ୍ୟରୁ ନିଷ୍କୃତି ନଥାଏ ଚାକିରିରେ । ଅବଶ୍ୟ ଅଧ୍ୟାପନା ଏକ ଭିନ୍ନ ବୃତ୍ତି, ଏକ ସତନ୍ତ୍ର ସାଧୀନତା ଏ ବୃତ୍ତିରେ ଥାଏ । ତଥାପି ଏହା ଏକ ବନ୍ଧନ । ହୁଏତ ଏକ ଆମୋଦଦାୟକ ବନ୍ଧନ । ଏବେ ସେ ମୁକ୍ତ ହେବେ, ସମୟର ସଦ୍ ବିନିଯୋଗ କରିବେ ନିଜର ସର୍ଜନଶୀଳତାରେ । ମୁଁ ତାଙ୍କର ଦୀର୍ଘ, ନିରାମୟ ଅବସରକାଳୀନ ସୁଖମୟ ଜୀବନ କାମନା କରୁଛି ପ୍ରଭୁ ଜଗନ୍ନାଥଙ୍କ ଶ୍ରୀପୟରେ ।



ଅଧ୍ୟାପକ, ଓଡ଼ିଆ ବିଭାଗ,
ଜାତୀୟ କବି ବୀରକିଶୋର ସରକାରୀ ମହାବିଦ୍ୟାଳୟ,
ଓ.ଏମ୍.ପି. ଛକ, କଟକ-୩



Digitized by srujanika@gmail.com

# ଅନୁଭୂତିରେ ମହକର ଝଲକ

**ହରେକୃଷ୍ଣ ଦଳାଇ**

'ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି ।'

ଉପରୋକ୍ତ ଉକ୍ତିର ମର୍ମରେ ସତ କହିଲେ, ନା ମୁଁ ଜଣେ ସାହିତ୍ୟିକ ନା ମୋର ଅଛି ସାହିତ୍ୟ ପ୍ରତି ଅନୁରାଗ । ଏପରି ସ୍ଥିତିରେ ଥାଇ ପ୍ରତିଷ୍ଠିତ ସାହିତ୍ୟିକ ତଥା ଶିଶୁ ସାହିତ୍ୟ ଗବେଷକ ଡଃ.ବସନ୍ତ କିଶୋର ସାହୁଙ୍କ ପ୍ରସଙ୍ଗରେ ଲେଖାଟିଏ ଲେଖିବା ମୋ ପକ୍ଷରେ ଧୃଷ୍ଟତା ଛଡା ଅନ୍ୟ କିଛି ନୁହେଁ । ତଥାପି ସାହସ ସଞ୍ଚୟ କରି କିଛି ଲେଖୁଛି ।

ସୁନାବେଡାର ହାଲ୍ ସଂସ୍ଥାନରେ ୧୯୭୨ ମସିହା ଅପ୍ରେଲ ମାସରେ ଚାକିରି ପାଇଲା ପରେ ମୁଁ ପ୍ରଥମ ଥର ପାଇଁ ଗାଁ କୁ ଯାଇଥାଏ । ସେଠାରେ ଜଗବଂଧୁ ଓରଫ୍ ଜଗୁ ସହିତ ସାକ୍ଷାତ ହେଲା । ଜଗୁ ସଂପର୍କରେ ସାନଭାଇ ହେଲେ ବି ପିଲାଦିନର ଗାଁ-ସାଥି । କଥା ପ୍ରସଂଗରେ ଜଗୁ ମୋ ଠାରୁ ବସନ୍ତ ବାବୁଙ୍କ ସଂପର୍କରେ ଜାଣିବାକୁ ଚାହିଁଲା । ମୁଁ ଜାଣି ନାହିଁ କହି ସେଦିନ ପ୍ରସଂଗଟିକୁ ଟାଳି ଦେଇଥିଲି । ଜଗୁ କିନ୍ତୁ ବସନ୍ତ ବାବୁଙ୍କ ଗୁଣଗାନ କରି ମୋ ମନରେ ତାଙ୍କ ପ୍ରତି ସୃଷ୍ଟି କରିଥିଲା ଅହେତୁକ ଆଗ୍ରହ ଓ ଶ୍ରଦ୍ଧା ।

ଛୁଟି ସରିଲା । କର୍ମସ୍ଥଳୀର ମୋହ ଜନ୍ମସ୍ଥଳୀର ମୋହକୁ ପରାହତ କଲା । ସ୍ୱଳ୍ପ ଦିନର ରହଣି ପରେ ଅନିଚ୍ଛା ସତ୍ତ୍ୱେ ସୁନାବେଡା ଫେରିବାକୁ ପଡିଲା । କାର୍ଯ୍ୟରେ ବ୍ୟସ୍ତ ରହି ବସନ୍ତ ବାବୁଙ୍କ କଥା ବିସ୍ମୃତି ଗର୍ଭରେ ହଜି ଯାଇଥିଲା । ସଂଯୋଗ କ୍ରମେ ସୁନାବେଡାର ରଂଗମଣ୍ଡପରେ ଆୟୋଜିତ ଏକ କାର୍ଯ୍ୟକ୍ରମରେ ଉଭୟଙ୍କ ମଧ୍ୟରେ ସାକ୍ଷାତ ହେଲା । ପରିଚୟ ବିନିମୟ ମାଧ୍ୟମରେ ପରସ୍ପରକୁ ଜାଣିବାର ସୁଯୋଗ ମିଳିଲା । ସେହି ଦିନଠାରୁ ଆରମ୍ଭ ହେଲା ଆମ ଦୁହିଁଙ୍କ ସଂପର୍କର ସେତୁ ।

ସୁନାବେଡ଼ାରେ ଅନ୍ୟ ସହର ପରି ଗଢି ଉଠିଛି ଓଡିଆ ଭାଷା ଓ ସାହିତ୍ୟ-କଳା ଓ ସଂସ୍କୃତିର ପ୍ରଚାର ପ୍ରସାର ପାଇଁ ବିଭିନ୍ନ ଅନୁଷ୍ଠାନ । 'ଉତ୍କଳ ସାଂସ୍କୃତିକ ପରିଷଦ' ଏମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ୨୦୦୩-୦୪ ବର୍ଷ ପାଇଁ ପରିଷଦର ସଭାପତି ଦାୟିତ୍ୱ ନେବାପାଇଁ ମୋତେ ଅନୁରୋଧ ଆସିଲା । ଏହା ପୂର୍ବରୁ ହାଲ ଅଫିସରସ୍ ଆସୋସିଏସନ୍‌ର ଉପ-ସଭାପତି ରହି ପରିଷଦ ସଂସ୍ଥା ସହ ହାଲ କର୍ତ୍ତୃପକ୍ଷଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିଥିଲି । ପରିଷଦ କାର୍ଯ୍ୟକ୍ରମକୁ ଏକ ଶୃଙ୍ଖଳିତ ଭାବରେ ପରିଚାଳନା



Digitized by srujanika@gmail.com

କରିବାରେ ମୁଖ୍ୟ ଭୂମିକା ଥାଏ ସଭାପତିଙ୍କର ।

ସଭାପତି ଭାବେ ନିର୍ବାଚିତ ହେବା ପରେ ବସନ୍ତ ବାବୁ ମୋତେ ବ୍ୟକ୍ତିଗତ ଭାବେ ବଧେଇ ଜଣାଇଥିଲେ । ଡଃ.ସାହୁ ଏରୋନଟିକସ୍ ମହାବିଦ୍ୟାଳୟର ଓଡିଆ ଅଧ୍ୟାପକ ଭାବେ ଅବସ୍ଥାପିତ । ଓଡିଶାର କଳା ଓ ସଂସ୍କୃତି ସଂପର୍କରେ ସ୍ୱାଭାବିକ୍ ଭାବେ ସେ ଥିଲେ ବେଶ୍ ସଚେତନ । ତାଙ୍କ ନିକଟରେ ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରକାଶ କରିଥିଲି ମୋର ବ୍ୟକ୍ତିଗତ ଅକ୍ଷମତା । ଶାନ୍ତ ସ୍ୱଭାବ ଢଙ୍ଗରେ ଏବଂ ସହଜ ଭାବରେ ପରିଷଦର କାର୍ଯ୍ୟକ୍ରମ ଓ ସଭାପତିଙ୍କ ଦାୟିତ୍ୱ ସଂପର୍କରେ ବସନ୍ତ ବାବୁ ମୋତେ ଅବଗତ କରାଇଥିଲେ । ମୋ ମନ କିନ୍ତୁ ବୁଝି ନ ଥିଲା । ମାତ୍ର ମୋ ମନର ଅସହାୟତା ମୋତେ ବାରମ୍ବାର ନିରୁତ୍ସହିତ କରୁଥାଏ । ବସନ୍ତବାବୁଙ୍କ କେତୋଟି କଥା ମୋ ମନରେ ସେଦିନ ଭରି ଦେଇଥିଲା ଅଫୁରନ୍ତ ସାହସ ଆଉ ଦମ୍ଭ । ସେ କହିଥିଲେ ଗୋଟିଏ ବର୍ଷର କଥା । ସମୟ କେମିତି କଟିଯିବ ଆପଣ ଜାଣି ପାରିବେ ନାହିଁ । ମୁଁ ଆପଣଙ୍କ ପାଖେ ପାଖେ ଥିବି । ଯାହା ଚାହିଁବେ ସାହାଯ୍ୟ କରିବି । ଆପଣ ନିରୁତ୍ସାହିତ ହୁଅନ୍ତୁ ନାହିଁ । ପରିସ୍ଥିତିର ମୁକାବିଲା କରିବାକୁ ପ୍ରୟାସ କରନ୍ତୁ-ଦେଖିବେ ଆପଣଙ୍କ ଭିତରେ ଲୁଚି ରହିଥିବା ପାରିବାପଣିଆକୁ । ସେ ଜଣେ ମନସ୍ତତ୍ତ୍ୱବିତ୍ ନ ହେଲେବି ଅଧ୍ୟାପକ ଭାବେ ଛାତ୍ର ଛାତ୍ରୀମାନଙ୍କୁ ବୁଝାଇ ଥାଆନ୍ତି । ସଭାସମିତିରେ ଭାଷଣ ମାଧ୍ୟମରେ ଦର୍ଶକଙ୍କୁ ଭାବପ୍ରବଣ କରିଥାଆନ୍ତି । ମାତ୍ର ମୋ ପରି ଶୁଖିଲା କାଠରୁ ପାଣି ବାହାର କରିବାର କୌଶଳରେ ସେ ମହାଶୟ ଯେ, ସିଦ୍ଧହସ୍ତ- ମୁଁ ସେଦିନ ଠିକ୍ ବୁଝିପାରିଥିଲି । ବସନ୍ତବାବୁଙ୍କ ପ୍ରତିଶୃତିରେ ଆଶ୍ୱସ୍ତ ହେଲି । ପରିଷଦ କାର୍ଯ୍ୟକ୍ରମ ବାବଦରେ ମୋ ମନରେ ଥିବା ଶଂକା ପରିହାର କରି ସଭାପତି ପଦ ଗ୍ରହଣ କଲି ।

ପରିଷଦର ବହୁବିଧ କାର୍ଯ୍ୟକ୍ରମ ମୋର ପୂର୍ବସୁରୀମାନଙ୍କ ଦ୍ୱାରା ଲିପିବଦ୍ଧ ହୋଇ ସାରିଥାଏ । ସବୁ କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ଧାରା ଓ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ସମ୍ପାଦିତ ହେଲା । କିଛି କାର୍ଯ୍ୟକ୍ରମ ବି ନୂଆ କରି ଆରମ୍ଭ ହେଲା । ସେହି ବର୍ଷ ଡଃ.ବସନ୍ତ କିଶୋର ସାହୁଙ୍କ ସଂପାଦକତ୍ୱରେ ପରିଷଦର ମୁଖପତ୍ର 'ସ୍ମରଣିକା' ପ୍ରକାଶ ପାଇଲା । ରୁଚି ସମ୍ପନ୍ନ ପତ୍ରିକାଟି ପାଠକୀୟ ଆଦୃତି ଲାଭକଲା । ସେହି ବର୍ଷଠାରୁ କ୍ରମାଗତ ଡଃ.ସାହୁଙ୍କ ସଂପାଦକତ୍ୱରେ ଅଦ୍ୟାବଧି ପତ୍ରିକାଟି ପ୍ରକାଶ ପାଉଛି । ପରିଷଦର ପ୍ରତ୍ୟେକ କାର୍ଯ୍ୟକ୍ରମର ସଫଳତା ମୋତେ ଖୁବ୍ ଆନନ୍ଦ ଦେଲା । ବ୍ୟକ୍ତିଗତ ପ୍ରଶଂସା ମାଧ୍ୟମରେ ମୋ ପାରିବାରପଣିଆ ଆଲୋଚନା ହେଲା । ମୁଁ କିନ୍ତୁ ଭାବୁଥାଏ ଏ ସବୁର ନିର୍ଦ୍ଦେଶକ ପରଦା ପଛର ନାୟକ ବସନ୍ତବାବୁ । ମୋତେ ଦେଇଥିବା ପୂର୍ବ ପ୍ରତିଶୃତି ଅନୁଯାୟୀ ସଂସ୍ଥାର ପ୍ରତ୍ୟେକ ସଫଳ କାର୍ଯ୍ୟକ୍ରମ ଉଦ୍ଦେଶ୍ୟରେ ବସନ୍ତବାବୁ ଥିଲେ ଉତ୍ସର୍ଗୀକୃତ । ତାଙ୍କ ଚିନ୍ତା ଓ ଚେତନାର ରୂପାନ୍ତରୀତ ଅବଦାନ ଥିଲା ମୋ ବ୍ୟକ୍ତିଗତ ସଫଳତାର ପୃଷ୍ଠଭୂମି । ତେଣୁ ଏହି ପାରିବାପଣିଆଟି ମୋର ନଥିଲା ବରଂ ଥିଲା ବସନ୍ତବାବୁଙ୍କର । ବସନ୍ତବାବୁ ମୋ ପାଇଁ ନମସ୍ୟ ଏ କଥା ସ୍ୱୀକାର କରିବାକୁ ହେବ ।



*Digitized by srujanika@gmail.com*

ପରିଷଦ କାର୍ଯ୍ୟକାଳ ପରେ ମୋ ଉପରେ ସଭାପତି ଦାୟିତ୍ୱ ଆସିଥିଲା ସାମାଜିକ ଅନୁଷ୍ଠାନ-ମଧୁସୂଦନ ସେବା ସଂଘର । ପୁଣି ମନେ ପଡିଲା ବସନ୍ତବାବୁଙ୍କ କଥା । ତାଙ୍କର ଦ୍ୱାରସ୍ଥ ହେଲି ଓ ସାହାଯ୍ୟ ମାଗିଲି । ବିନା ଦ୍ୱିଧାରେ ସେ ପରିପୂର୍ଣ୍ଣ ସାହାଯ୍ୟର ହାତ ବଢାଇଲେ । ସେବା ସଙ୍ଘ କାର୍ଯ୍ୟରେ ମୁଁ ଯେଉଁଠି ଝୁଣ୍ଟି ପଡେ, କାଳ ବିଳମ୍ବ ନକରି ଯଥା ଶୀଘ୍ର ପହଞ୍ଚିଯାଏ ବସନ୍ତ ସାହୁଙ୍କ ନିକଟରେ । ଜଟିଳ ପ୍ରସଙ୍ଗକୁ ସରଳ କରି ସମାଧାନର ରାସ୍ତା ଦେଖାନ୍ତି ସେ । ଏଥର ସେ ଏକା ନୁହଁନ୍ତି, ମୋ ସହିତ ଯୋଡିଦେଲେ ଡଃ.ଅରୁଣେନ୍ଦ୍ର ନନ୍ଦ, ଡଃ. ସୌଭାଗ୍ୟ ପାଢ଼ୀ ଓ ଡଃ.ରାଜବିଷ୍ଣୁ ମହାନ୍ତିଙ୍କ ଭଳି ଶିକ୍ଷାବିତ୍ ବନ୍ଧୁବର୍ଗ । ଏହି ବନ୍ଧୁମାନଙ୍କ ସହାୟତାରେ ବିଭିନ୍ନ କାର୍ଯ୍ୟକ୍ରମ କରି ମୋ ଦକ୍ଷତା ବୃଦ୍ଧିର ସହାୟକ ହେଲେ ବସନ୍ତବାବୁ । ସଂଘ କାର୍ଯ୍ୟ ଆଗେଇ ଚାଲିଲା । ପ୍ରାଥମିକ ସ୍ତରରେ ଏହା ସାଂସ୍କୃତିକ କାର୍ଯ୍ୟକ୍ରମରେ ସୀମିତ ରହି ପରବର୍ତ୍ତୀ ଦିନରେ ସାମାଜିକ ସେବା କାର୍ଯ୍ୟରେ ଉଦ୍‌ଭାସିତ ହେଲା । କାର୍ଯ୍ୟକ୍ରମଗୁଡିକ ଖବର କାଗଜର ପୃଷ୍ଠା ମଣ୍ଡନ କଲା । ସହକର୍ମୀ ବନ୍ଧୁମାନଙ୍କର ଆଗ୍ରହ ବଢିଲା । ବସନ୍ତବାବୁଙ୍କ ଉପଦେଶ କ୍ରମେ ୨୦୦୦ରୁ ୨୦୦୭ ମସିହା ପର୍ଯ୍ୟନ୍ତ (ଚାକିରିରୁ ଅବସର ପର୍ଯ୍ୟନ୍ତ)ସଂଘ ସହିତ ସଂପୃକ୍ତ ରହି କାର୍ଯ୍ୟ କରିଥିଲି । ଏହା ଥିଲା ମୋ ପାଇଁ ବେଶ୍ ଉତ୍ସାହପ୍ରଦ ।

ଉତ୍କଳ ସାଂସ୍କୃତିକ ପରିଷଦ ପରେ ଏବଂ ମଧୁସୂଦନ ସେବା ସଂଘ ପୂର୍ବରୁ ସୁନାବେଡା ମାଟିରେ ସଂଗଠିତ ହୋଇ ସାରିଥାଏ 'ବନପ୍ରଭା ସାହିତ୍ୟ ସଂସଦ' । ଶ୍ରୀଯୁକ୍ତ ବାବାଜୀ ଚରଣ ଜେନା ଥିଲେ ଏହାର ସଂପାଦକ । ଶ୍ରୀଯୁକ୍ତ ଜେନା ତାଙ୍କର ସହକର୍ମୀ ବନ୍ଧୁମାନଙ୍କ ଉଦ୍ୟମ କ୍ରମେ ବନପ୍ରଭା ସାହିତ୍ୟ ସଂସଦ ସୁନାବେଡା ସହରରେ ସମ୍ପାଦନ କରି ଚାଲିଥାଏ ଅନେକ କବିତା ଓ ସାହିତ୍ୟ ଆସର । ସାଂସ୍କୃତିକ ପରିଷଦ ଏବଂ ସାମାଜିକ ସେବା ସଂଘ ସଭାପତି ଭାବେ ଉକ୍ତ ସାରସ୍ୱତ ଆସରକୁ ମୋତେ ଅନେକ ଥର ବାବାଜୀ ବାବୁଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ପଡିଥିଲା । ବସନ୍ତ ବାବୁ ସଂସଦର ପରାମର୍ଶଦାତା । ତାଙ୍କର ପରାମର୍ଶରେ ବନପ୍ରଭାର ବାର୍ଷିକ ଉତ୍ସବକୁ ଏକଦା ମୋତେ ସମ୍ମାନୀତ ଅତିଥି ଭାବେ ନିମନ୍ତ୍ରଣ କରାଗଲା । ଏ ପ୍ରସଙ୍ଗରେ ମୁଁ ଏଠାରେ ସୂଚେଇ ଦେବାକୁ ଚାହେଁ ଯେ, ମୋ ଭଳି ପଛଧାଡିର ବ୍ୟକ୍ତିକୁ ଆଗ ଧାଡିରେ ସ୍ଥାନିତ କରିବା ପ୍ରକ୍ରିୟାରେ ବସନ୍ତ ବାବୁ ହିଁ ସିଦ୍ଧହସ୍ତ ।

ଏହାଛଡା ମୋ ଦୃଷ୍ଟିରେ ବସନ୍ତ ବାବୁଙ୍କ ନିଆରା ପଣିଆର ଆଉ ଏକ ଦିଗ ହେଲା ତାଙ୍କର ସ୍ନେହ ଭିଜା ଆତିଥେୟତା । ଯେ କୌଣସି କାର୍ଯ୍ୟ ସମ୍ପର୍କରେ ବସନ୍ତବାବୁଙ୍କ ବାସ ଭବନରେ ପହଞ୍ଚିଲେ ପ୍ରାଥମିକ ପର୍ଯ୍ୟାୟରେ ଅତିଥି ସତ୍କାର କରାଯାଏ । ତା'ପରେ ବ୍ୟକ୍ତିଗତ କଥୋପକଥନ ଏବଂ ପରେ ପ୍ରାସଂଗିକ କାର୍ଯ୍ୟର ଆଲୋଚନା । ସଭା ସମିତି ସହ ସେ ସଂପୃକ୍ତ ହେଲେ, ଏହାର ପ୍ରାକ୍‌କାଳୀନ ଆୟୋଜନ ଠାରୁ ଶେଷ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟସୂଚୀକୁ ନିଖୁଣ ଭାବେ ନୀରିକ୍ଷଣ କରିଥାଆନ୍ତି । ୨୦୦୭ ମସିହା ଡିସେମ୍ବର ମାସରେ ମୁଁ ଚାକିରି ଜୀବନରୁ ଅବସର ନେଇଥାଏ ।



Digitized by srujanika@gmail.com

ଫେବୃଆରୀ ମାସର ହାଲକା ଶୀତ ଦିନ । ମୁଁ ଓ ମୋର ପରିବାର ବର୍ଗଙ୍କ ଉଦ୍ଦେଶ୍ୟରେ ବସନ୍ତ ବାବୁ ବନପ୍ରଭା ଆନୁକୂଲ୍ୟରେ ପ୍ରସାଦ ସେବନର ଆୟୋଜନ କରିଥାଆନ୍ତି ସୁନାବେଡା ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ । ପୂର୍ବାହ୍ନ ୧୧ଟା ସମୟରେ ପହଞ୍ଚିବାକୁ ନିମନ୍ତ୍ରଣ ଥାଏ । ସେଠାରେ ପହଞ୍ଚି ଦେଖିଲି ପ୍ରାୟ ୪୦/ ୫୦ ଜଣ ଲୋକଙ୍କ ସମାଗମ । ନମସ୍କାର ପ୍ରତି ନମସ୍କାର ବିନିମୟରେ ସୃଷ୍ଟି ହୋଇଥିଲା ବଂଧୁତ୍ୱପୂର୍ଣ୍ଣ ମହଲ । ପରେ ପରେ ସମସ୍ତଙ୍କ ଉଦ୍ଦେଶ୍ୟରେ ନିଜ ମଧ୍ୟରେ କିଛି ସମୟ ଆଲୋଚନା କରିବାକୁ ବସନ୍ତ ବାବୁ ବିନମ୍ର ଭାବରେ ଅନୁରୋଧ କଲେ, ଉପସ୍ଥିତ ସଜ୍ଜନମାନଙ୍କୁ ଓ ଆଲୋଚନାର ଉଦ୍ଦେଶ୍ୟ ସଂପର୍କରେ ସୂଚନା ଦେଲେ ବସନ୍ତ ବାବୁ । ସବୁ କିଛି ଥିଲା ମୋ ଉଦ୍ଦେଶ୍ୟରେ । ମୋତେ ଓ ମୋର ସହଧର୍ମିଣୀଙ୍କୁ ପୁଷ୍ପଗୁଚ୍ଛ ଦ୍ୱାରା ବଧେଇ ଜଣାଗଲା । ଏହା ପରେ ବସନ୍ତ ବାବୁ ମାଡାମ୍ ସରଳା ବେହେରାଙ୍କୁ ମାନପତ୍ର ପାଠ କରିବାକୁ ଇଂଗିତ ଦେଲେ । ମାନପତ୍ର ପଢାଗଲା । ଏହା ଥିଲା ବସନ୍ତ ବାବୁଙ୍କ ଲିଖିତ ଏ କଥା ବୁଝିବାକୁ ମୋର ବାକି ନ ଥିଲା । ଲେଖାର ମର୍ମ ଥିଲା ସଂପୂର୍ଣ୍ଣ ବ୍ୟକ୍ତିଗତ ଏବଂ ଅତ୍ୟନ୍ତ ହୃଦୟସ୍ପର୍ଶୀ ଯାହା ଆମ ସମସ୍ତଙ୍କ ଭାବାବେଗକୁ ଉଦ୍‌ବେଳିତ କରିଥିଲା । ଜଳର ସ୍ରୋତ କୁଳ ଲଂଘନ କଲା ପରି ଅଜାଣତରେ ଆମ ଚକ୍ଷୁ ପ୍ଲାବିତ ହୋଇଥିଲା । ପରିସ୍ଥିତି ଦୃଷ୍ଟିରୁ ନିଜକୁ ସଂଜମ ରଖିବାକୁ ପଡିଥିଲା । ଏକ ଉପଢ୍ଯୌକନ ସହ ଉପହାର ମାଧ୍ୟମରେ ମୋତେ ସମ୍ମାନିତ କରାଗଲା । ପରେ ପରେ କିଛି ବଂଧୁ ମୋ ଉଦ୍ଦେଶ୍ୟରେ ନିଜ ନିଜର ମତାମତ ପ୍ରକାଶ କରି ଆତ୍ମିୟତାପଣ ସୃଷ୍ଟି କରିଥିଲେ । ବିଶେଷ କରି ବସନ୍ତବାବୁଙ୍କ ପ୍ରଭାବଶାଳୀ ବକ୍ତବ୍ୟ ଆମକୁ ଅଭିଭୂତ କରିଥିଲା । ବସନ୍ତ ବାବୁଙ୍କର ଏତାଦୃଶ ସାହଚର୍ଯ୍ୟ ସାରା ଜୀବନ ଭୁଲିବାର ନୁହେଁ ।

ଆଜିବି ବସନ୍ତ ବାବୁ ମନେ ପଡନ୍ତି ୫ବର୍ଷର ବ୍ୟବଧାନ ପରେ । ଏବେ ବି ଏସ୍ .ଏମ୍. ଏସ୍ ଜରିଆରେ ମେସେଜ୍ ମିଳେ ବସନ୍ତ ବାବୁଙ୍କ ଠାରୁ । ଏହା ମାଧ୍ୟମରେ ବସନ୍ତ ବାବୁ ଆମ ଦୁହିଁଙ୍କ ସଂପର୍କରେ ବ୍ୟବଧାନକୁ ସଂକୁଚିତ କରି ସଂପର୍କର ନବୀକରଣ କରି ଥାଆନ୍ତି । କଥା ଅନେକ-ଅନୁଭୂତି ବି ଅନେକ । ପାଠକୀୟ ରୁଚିର ସୀମା ଲଂଘନ କରି ବସନ୍ତ ବାବୁଙ୍କ ସଂପର୍କରେ ଲେଖି ବସିଲେ ଅନେକ କଥା ମନକୁ ଆସେ । ପ୍ରସଂଗ ସମାପ୍ତ କରିବାକୁ ହେବ । ଏଥିସହ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ବସନ୍ତ ବାବୁଙ୍କ ଦୀର୍ଘ ଜୀବନ କାମନା କରି ଆଗାମୀ ଦିନରେ ସମାଜ ସେବାରେ ନିଜକୁ ନିୟୋଜିତ କରନ୍ତୁ ଓ ନିଜ ମହକକୁ ଆହୁରି ସୁଗନ୍ଧିତ କରନ୍ତୁ । ଏହି କାମନା ସହ ମୁଁ କହିପାରେ -

‘ବସନ୍ତ ବାବୁଙ୍କୁ ଭୁଲିବାର ନୁହେଁ
ଏବେ ନୁହେଁ କି କେବେ ବି ନୁହେଁ
ଜୀଇଥିବା ଯାଏ ଏ ମର ଦେହେ ।।’



ନୂଆବଜାର, କଟକ



Digitized by srujanika@gmail.com

# କୁସୁପୁରର ଅନ୍ୟତମ ଗୌରବ

**ସୀତାନାଥ ନାୟକ**

କୁସୁପୁର ହେଉଛି ପ୍ରତିଭାର ମାଟି । ସେହି ପ୍ରତିଭାମାନଙ୍କ ତାଲିକାରେ ଯୋଡ଼ି ହୋଇଯାଇଛି ଆଉ ଜଣଙ୍କର ନାଆଁ । ସିଏ ହେଲେ ଶ୍ରଦ୍ଧେୟ ବସନ୍ତ କିଶୋର ସାହୁ । ପିଲାବେଳୁ ସେ ତାଙ୍କର ସାହିତ୍ୟିକ ଦକ୍ଷତା ପ୍ରତିପାଦିତ କରିଛନ୍ତି । ଦଶମ ଶ୍ରେଣୀରୁ ଲେଖାଲେଖି ଆରମ୍ଭ କରି ଏକାଦଶ ଶ୍ରେଣୀରେ 'କିଶୋରଶ୍ରୀ' ଉପାଧି ପାଇଛନ୍ତି । ସାହିତ୍ୟର ଅନ୍ୟାନ୍ୟ ବିଷୟରେ ଲେଖନୀ ଚାଳନା କଲେ ମଧ୍ୟ ଶିଶୁ ସାହିତ୍ୟରେ ନିଜର ପାରଦର୍ଶିତା ପ୍ରଦର୍ଶନ କରି ଯଶସ୍ୱୀ ହୋଇଛନ୍ତି । ଅଧ୍ୟାପନା ସହିତ ବିଭିନ୍ନ ସାଂସ୍କୃତିକ, ସାମାଜିକ ଓ ଆଧ୍ୟାତ୍ମିକ ଅନୁଷ୍ଠାନ ସହିତ ଜଡ଼ିତ ରହି ନିଜର ସାଙ୍ଗଠନିକ ଦକ୍ଷତାର ପରିଚୟ ଦେଇଛନ୍ତି ।

ପରିବାରର ଆର୍ଥିକ ସଂକଟକୁ ଭ୍ରୂକ୍ଷେପ ନକରି ସେ ପିଲାବେଳୁ ଶିକ୍ଷା ସହିତ ସାହିତ୍ୟ ସାଧନାରେ ବ୍ରତି ହୋଇଛନ୍ତି । ନିଜେ ଗବେଷକ ହେବା ସହିତ ଅନେକ ଗବେଷକ ସୃଷ୍ଟି କରିଛନ୍ତି । ଗାଁ କୁସୁପୁର ଠାରୁ ଦୀର୍ଘ ୬୦୦ କିଲୋମିଟର ଦୂରରେ ରହି ସେଠାରେ ଓଡ଼ିଆ ସାହିତ୍ୟର ପ୍ରଚାର, ପ୍ରସାର ପାଇଁ ଯେଉଁ ସବୁ ଆଖିଦୃଶିଆ କାର୍ଯ୍ୟ କରିଛନ୍ତି, ତାହା ଆମ କୁସୁପୁର ଗ୍ରାମବାସୀଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ । ଏଥିପାଇଁ ତାଙ୍କୁ କୋରାପୁଟବାସୀ କାହିଁକି ସମଗ୍ର ଓଡ଼ିଶା ମନେ ରଖିବ ।

'ନମ୍ରନ୍ତେ ଫଳିନ ବୃକ୍ଷ, ନମ୍ରନ୍ତେ ଗୁଣିନ ଜନା' ଆପ୍ତ ବାକ୍ୟକୁ ଶ୍ରୀମାନ ବସନ୍ତ ଅକ୍ଷରେ ଅକ୍ଷରେ ସତ୍ୟରେ ପରିଣତ କରିଛନ୍ତି । ସବୁ ସମୟରେ ନିଜର ନମ୍ରତା ଓ ମିଷ୍ଟ ବ୍ୟବହାରରେ ସମସ୍ତଙ୍କର ପ୍ରିୟ ଭାଜନ ହୋଇପାରିଛନ୍ତି । ପ୍ରକୃତରେ ସେ କୁସୁପୁର ଗାଁର ନାଁ ଉଜ୍ଜ୍ୱଳ କରିଛନ୍ତି । ତାଙ୍କ ଅବସର ଜୀବନ ସୁଖମୟ ହେଉ ଏହାହିଁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା । ଅବସର ପରେ ସେ ଗାଁ ଓ ସମାଜ ପାଇଁ କାର୍ଯ୍ୟ କରିବାକୁ ଭଗବାନ ତାଙ୍କୁ ଶକ୍ତି ଓ ଉତ୍ସାହ ପ୍ରଦାନ କରନ୍ତୁ । ଏତିକି କାମନା ।



ସମ୍ପାଦକ, ପଲ୍ଲୀକବି ସ୍ମୃତି ସଂସଦ, କୁସୁପୁର



Digitized by srujanika@gmail.com

# ଦୁବରୁ ଦାରୁ : ବସନ୍ତ ବାବୁ

## ଡକ୍ଟର କୈଳାସ ଚନ୍ଦ୍ର ବେହେରା

ନନ୍ଦକିଶୋର ବିଦ୍ୟାମନ୍ଦିର, କୁସୁପୁର ଓଡ଼ିଶାର କଟକ ଜିଲ୍ଲାର ଏକ ଅତି ପ୍ରାଚୀନ ଓ ପ୍ରସିଦ୍ଧ ହାଇସ୍କୁଲ । ତାର କମନ୍‌ରୁମ୍‌ରୁ ଜନ୍ମ ନେଇଥିଲା 'ସୌଖିନ୍ ସାହିତ୍ୟ ସମାଜ'; ଗୋଟିଏ ସାହିତ୍ୟ ଅନୁଷ୍ଠାନ (୧୯୮୦ ମସିହା ପାଖାପାଖି) । ନିୟମିତ ଭାବେ କବିତା ପାଠ ଓ ସମୀକ୍ଷା ଅନେକ ବର୍ଷ ଧରି ଚାଲିଥିଲା । ଫଳରେ ଅନେକ ନୂଆ ଲେଖକ ସୃଷ୍ଟି ହେବା ସହିତ କେତେକ ପୁରୁଣା କବି ତଥା ଲେଖକଙ୍କର ସାହିତ୍ୟର ଅମଳ ବଢ଼ିଯାଇଥିଲା । ସେହି ସାହିତ୍ୟ ଚାଷୀମାନଙ୍କ ମଧ୍ୟରେ ଅଳ୍ପ କେତେଜଣ କମ୍ ବୟସର ପିଲା ଥିଲେ । ଆଜିର ଡକ୍ଟର ବସନ୍ତ କିଶୋର ସାହୁ ସେଇମାନଙ୍କ ଭିତରୁ ଅନ୍ୟତମ ।

ବସନ୍ତ ବାବୁ ସେତେବେଳେ ଯେମିତି ଥିଲେ ଆଜି ଉତ୍ତୀର୍ଣ୍ଣ ବୟସରେ ବି ସେମିତି । ଥଟ୍ଟାରେ ତାଙ୍କ ସମବୟସ୍କ ବନ୍ଧୁମାନେ ତାଙ୍କୁ- ବସନ୍ତ, ଚିର ବସନ୍ତ ବୋଲି କହି ମଜା ଉଠାଉଥିବାର ମୁଁ ଶୁଣିଛି । ସବୁବେଳେ ହସହସ ମୁହଁ । ନିଖୁଲୁଆ ସ୍ୱଭାବର । ତାଙ୍କ ଶିଶୁ କବିତାଗୁଡ଼ିକ ବେଶ୍ ସୁଖପାଠ୍ୟ ଆଉ ମନଛୁଆଁ ଲାଗୁଥିଲା ।

ବସନ୍ତ ବାବୁ ମହାପୁରୁଷ ହାଡିଦାସ ମହାବିଦ୍ୟାଳୟରେ ଚାକିରିଟିଏ ସାଙ୍ଗକୁ ବାଲିଚନ୍ଦ୍ରପୁର ବଜାରରେ 'ଅଜନ୍ତା ଟାଇପ୍ ଇନଷ୍ଟିଚ୍ୟୁଟ୍' ଖୋଲି ପିଲାଙ୍କୁ ସର୍ଟହ୍ୟାଣ୍ଡ ଓ ଟାଇପ୍ ଶିକ୍ଷା ଦେଉଥିଲେ । ଆଜି ସେଠୁ ଶିକ୍ଷା ଲାଭ କରି ଅନେକ ବୃତ୍ତିଗତ ଜୀବନରେ ସଫଳ ହୋଇଛନ୍ତି । ସେତେବେଳେ ତାଙ୍କର ଅଭାବ, ଅସୁବିଧା ଥିଲା ହେଲେ ବସନ୍ତ ବାବୁଙ୍କ ସମଗ୍ର ବ୍ୟକ୍ତିତ୍ୱକୁ ତାହା ଆକ୍ରାନ୍ତ କରିପାରି ନଥିଲା । ତାଙ୍କ କାର୍ଯ୍ୟଦକ୍ଷତା ନିକଟରେ କାୟାବିସ୍ତାର କରିପାରିଲାନି ବିଚରା ଅଭାବ ଅନଟନ । ଉଦ୍‌ଯୋଗ ହିଁ ଭାଗ୍ୟଲକ୍ଷ୍ମୀଙ୍କ ଆବାହକ । ଏ ଉକ୍ତିର ସଫଳ ଦୃଷ୍ଟାନ୍ତ ବସନ୍ତ ବାବୁ । ଓଡ଼ିଶାର ପ୍ରସିଦ୍ଧ ଶିକ୍ଷାବିତ୍ ପ୍ରଫେସର ଗୌରୀକୁମାର ବ୍ରହ୍ମାଙ୍କ ତତ୍ତ୍ୱାବଧାନରେ ଓଡ଼ିଆରେ ଏମ୍.ଏ. ପାଶ୍ କରି ଅଧ୍ୟାପକଟିଏ ହେବାର ଯୋଗ୍ୟତା ହାସଲ କଲାପରେ ପ୍ରିୟ ପଲ୍ଲୀ କୁସୁପୁର ଆଉ ଅନେକ ପ୍ରିୟଜନଙ୍କ ଠାରୁ ଦୂରେଇ ଯିବାକୁ ପଡ଼ିଲା ତାଙ୍କୁ । ଘର ଠାରୁ କୋରାପୁଟ ବହୁତ ଦୂର । ସେଠି କାମ କଲେବି ବସନ୍ତ ବାବୁ ଯେବେ ଗାଆଁକୁ ଆସିବେ ପ୍ରିୟ ବନ୍ଧୁମାନଙ୍କୁ ଖୋଜି ଖୋଜି ଭେଟିବେ । କୋରାପୁଟରେ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ତାଙ୍କର ସହଯୋଗ ସମ୍ବନ୍ଧରେ ଅନେକ କଥା ମୁଁ ଶୁଣିଛି, ଆଉ ସଂକଳିତ ତାଙ୍କ ପତ୍ରପତ୍ରିକା ପଢ଼ିଛି । ଯେବେ ଭେଟ ହେବ, ଖଣ୍ଡିଏ ନୂଆ ପତ୍ରିକା କିମ୍ବା ଛପା ବହି ଉପହାର ଦେବେ ।



Digitized by srujanika@gmail.com

ଆମ ସୌଖିନ୍ ସାହିତ୍ୟ ସମାଜର ଜଣେ ବିଶିଷ୍ଟ ସଭ୍ୟ ଥିଲେ କବି ନନ୍ଦ କିଶୋର ସାମଲ । ବସନ୍ତ ବାବୁ ନିଜ ତତ୍ତ୍ୱାବଧାନରେ ଜଣେ ଗବେଷିକା ନିଯୁକ୍ତି କରାଇ 'ଓଡ଼ିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋର ସାମଲଙ୍କ ଅବଦାନ' ଶୀର୍ଷକରେ ଗବେଷଣା କରାଇବାରେ ସଫଳ ହୋଇଛନ୍ତି । ଏହା କେବଳ ବସନ୍ତ ବାବୁଙ୍କ କୃତିତ୍ୱ ନୁହେଁ ନିଜର ଅତି ପ୍ରିୟ ଶିକ୍ଷକଙ୍କ ପ୍ରତି ଜଣେ ଆଦର୍ଶ ଛାତ୍ରର ଉପଯୁକ୍ତ ଗୁରୁଦକ୍ଷିଣା ବୋଲି ମୁଁ ଭାବେ । ବହୁ ଦୂରରେ ଥିଲେ ବି ନିଜ ଶିକ୍ଷକଙ୍କ ପାଇଁ କିଛି କରିବା ପାଇଁ ତାଙ୍କ ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ ।

ବସନ୍ତ ବାବୁଙ୍କୁ ଚିହ୍ନିଥିଲି ସୌଖିନ୍ ସାହିତ୍ୟ ସମାଜ ଜରିଆରେ । ତାର ବହୁ ବର୍ଷ ପୂର୍ବରୁ ତାଙ୍କ ବାପାଙ୍କ ସହିତ ମୋର ଭଲ ପରିଚୟ ହୋଇଥିଲା । ତାଙ୍କର ସରଳ ବ୍ୟବହାର, ଖୋଲା ଚରିତ୍ର ମତେ ବହୁତ ମୁଗ୍ଧ କରିଥିଲା । ସେପରି ପିତାଙ୍କ ଠାରୁ ବସନ୍ତ ବାବୁଙ୍କ ପରି ପୁଅଟିଏ-ସ୍ୱାଭାବିକ ସମ୍ଭାବନା ।

ବସନ୍ତ ବାବୁ ଛତିଆ କଲେଜରେ ଚାକିରି କରୁଥିବା ବେଳେ ଗୋଟିଏ ଘଟଣା ମୋର ସ୍ୱତଃ ମନେ ପଡୁଛି । ଏକା ବସ୍‌ରେ ଆମେ ଫେରୁଥାଉ । ଟିକେଟ ପଇସା ଦେଲାବେଳକୁ ଆମ ଭିତରେ ଘମାଘୋଟିଆ ଲଢ଼େଇଟିଏ ହୋଇଗଲା । ମୁଁ ଯିଦ୍ ଧରିଥାଏ-ମୁଁ ବୟସରେ ବଡ଼ । ଅଧିକ ପଇସା ରୋଜଗାର କରୁଛି ତମଠୁ । ଟିକେଟ ପଇସା ଦବାର ହକ୍ ମୋର, ତୁମର ନୁହେଁ । ତାଙ୍କର ଅତି ବିନମ୍ର ଯୁକ୍ତି- ନାଇଁ ସାର୍, ମୁଁ ବି ରୋଜଗାର କରୁଛି.. ବେକାର ନୁହେଁ.. ମୁଁ ଦଉଛି ଅନ୍ତତଃ ଏଇ ଥରଟା-ଇତ୍ୟାଦି ଇତ୍ୟାଦି । ଶେଷରେ ମୋତେ ପରାସ୍ତ ହେବାକୁ ପଡ଼ିଲା । ସେତେବେଳେ ତାଙ୍କ ରୋଜଗାର ସ୍ୱଳ୍ପ । ଆବଶ୍ୟକତା ଠାରୁ କମ୍ ମୁଁ ଜାଣିଥିଲି । ଆଉବି ଜାଣିଥିଲି ତାଙ୍କର ଅଭାବ ଅଛି । ଅଭାବ ଥିବ ଅଥଚ ନଥିବ ଅଭାବବୋଧ-ଇଏ ସାଧାରଣ କଥା ଆଦୌ ନୁହଁ । ବସନ୍ତ ବାବୁ ଏ କ୍ଷେତ୍ରରେ ଏକ ସ୍ମରଣୀୟ ଦୃଷ୍ଟାନ୍ତ ।

ବସନ୍ତ ବାବୁଙ୍କର ଗୋଟିଏ କଥା ମତେ ଖୁବ୍ ମୁଗ୍ଧ କରେ । ସେଇଟା ହେଲା ସବୁ କ୍ଷେତ୍ରରେ ଉପରକୁ ଉଠିବାର ଝୁଙ୍କ୍ । କଥା କମ୍ କାମ ବେଶୀ । ଶିଶୁ କବିତାର ଲେଖନୀ ଚାଳନା, ଗବେଷଣା, ଶିଶୁ ସାହିତ୍ୟ ଗବେଷକମାନଙ୍କର ତତ୍ତ୍ୱାବଧାରକ ତାଙ୍କର ଅନନ୍ୟ ସାଧାରଣ ସଫଳତା । କବିତା, ଗଳ୍ପ, ପ୍ରବନ୍ଧ, ବ୍ୟଙ୍ଗ ଇତ୍ୟାଦି ସାହିତ୍ୟର ୩୨ରୁ ଅଧିକ ପୁସ୍ତକ ଲୋକାର୍ପିତ । କିଛି ବହି ହିନ୍ଦୀ, ବଙ୍ଗଳା ଭାଷାରେ ଅନୁବାଦିତ ହୋଇ ଅଣଓଡ଼ିଆମାନଙ୍କୁ ଉପକୃତ କରାଇଛି । ଏ ସବୁ କମ୍ ଗୌରବର କଥା ନୁହେଁ । ଏଭଳି ଯୋଗ୍ୟ ବ୍ୟକ୍ତିତ୍ୱ ଅନେକ ପୁରସ୍କାର ଓ ସମ୍ମାନର ଅଧିକାରୀ । ଏଇ ସବୁ କଥା ଭାବିଲାବେଳେ ଗୋଟିଏ କଥା ମନକୁ ସ୍ୱତଃ ଆସିଯାଏ-ବସନ୍ତ ବାବୁ ଦୁବରୁ ଦାରୁ ପାଲଟି ଯାଇଛନ୍ତି । ଈଶ୍ୱରଙ୍କ କୃପାରୁ ସେଇ ଦାରୁ ଆହୁରି ବିସ୍ତୃତ ହେଉ ।



ନାନପୁର, ବାଲିଚନ୍ଦ୍ରପୁର, ଯାଜପୁର



Digitized by srujanika@gmail.com

# ବସନ୍ତ ବାବୁଙ୍କ ସଂପର୍କରେ ଇତିବୃତ୍ତି

**ରଘୁନାଥ ରଥ**

ଓଡିଶା ସାହିତ୍ୟରେ ବହୁ ଚର୍ଚ୍ଚିତ ନାମଟିଏ, ଡକ୍ଟର ବସନ୍ତ କିଶୋର ସାହୁ । ବୃତ୍ତି ତାଙ୍କର ଅଧ୍ୟାପନା । ମାତ୍ର ନିଶା ହେଲା ସାହିତ୍ୟ ଚାଷ । ମୁଖ୍ୟତଃ ଓଡିଶା ତଥା ଓଡିଶା ବାହାରେ ଜଣେ ବିଶିଷ୍ଟ ଶିଶୁ ସାହିତ୍ୟିକ ଭାବରେ ତାଙ୍କର ସୁନାମ ରହିଥିଲେ ମଧ୍ୟ ଓଡିଆ ସାହିତ୍ୟର ସମସ୍ତ ବିଭାଗରେ ଲେଖନୀ ଚାଳନା କରି ସଫଳତା ଅର୍ଜନ କରି ପାରିଛନ୍ତି । ସେ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । ଶିଶୁ ସାହିତ୍ୟ, ସମାଲୋଚନା ସାହିତ୍ୟ, ଲୋକ ସାହିତ୍ୟ, ଆଦିବାସୀ ସଂସ୍କୃତି, ବ୍ୟଙ୍ଗ ସାହିତ୍ୟ, ଜୀବନାଲେଖ୍ୟ, ଜଗନ୍ନାଥ ସଂସ୍କୃତି ଇତ୍ୟାଦି ସଂପର୍କରେ ଉଚ୍ଚକୋଟୀର ପ୍ରବନ୍ଧ ରଚନା ତଥା ଗଳ୍ପ ଓ କବିତା ଲେଖିବାରେ ସିଦ୍ଧହସ୍ତ । ବର୍ତ୍ତମାନ ସୁଦ୍ଧା ତାଙ୍କର ବତିଶ ଗୋଟି ପୁସ୍ତକ ପ୍ରକାଶିତ । ତନ୍ମଧ୍ୟରୁ ଗୋଟିଏ ପୁସ୍ତକ ହିନ୍ଦୀ ଏବଂ ବଙ୍ଗଳା ଭାଷାରେ ଅନୁଦିତ ହୋଇ ପ୍ରକାଶ ପାଇଛି । ଏହା ବ୍ୟତୀତ ବସନ୍ତ କିଶୋର ରଚନବଳୀ ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ ମଧ୍ୟ ପ୍ରକାଶ ପାଇ ସାରିଛି ।

ସଂପାଦନା କ୍ଷେତ୍ରରେ ମଧ୍ୟ ସେ ଜଣେ ଉଚ୍ଚକୋଟୀର ସଂପାଦକ ଭାବରେ ସର୍ବଜନ ସ୍ୱୀକୃତ । ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡାର ମୁଖପତ୍ର 'ସ୍ମରଣିକା', ଶ୍ରୀଶ୍ରୀ ଜଗନ୍ନାଥ ସେବା ସଂସ୍ଥା, ସୁନାବେଡାର ମୁଖପତ୍ର 'ସର୍ଣ୍ଣକ୍ଷେତ୍ର'ର ବଳିଷ୍ଠ ସଂପାଦନା ତାହାର ଉତ୍କୃଷ୍ଟ ପ୍ରମାଣ । ଏହା ବ୍ୟତୀତ ବନଫୁଲ ସାହିତ୍ୟ ପରିଷଦର ମୁଖପତ୍ର ବନଫୁଲ, ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ, ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି, ନନ୍ଦ କିଶୋର ରଚନାବଳୀ ସଂପାଦନା କ୍ଷେତ୍ରରେ ମଧ୍ୟ ତାଙ୍କର କୃତିତ୍ୱକୁ ଆକଳନ କରି ହୁଏ । ଛାତ୍ର ଜୀବନରେ ମଧ୍ୟ ସେ 'ବଗଲାବଗୁଲୀ' ନାମକ ଏକ ଶିଶୁ ପତ୍ରିକାର ସଂପାଦନା ଓ ପ୍ରକାଶନରୁ ତାଙ୍କର ସଂପାଦକ ଜୀବନର ପ୍ରାରମ୍ଭ ହୋଇଥିଲା । ଏଥିରୁ ସାହିତ୍ୟ ପ୍ରତି ଏକ ସମର୍ପିତ ଜୀବନର ପରିଚୟ ମିଳିଥାଏ ।

ବସନ୍ତ ବାବୁ ଜଣେ ସୁସଙ୍ଗଠକ । ବିଭିନ୍ନ ସାହିତ୍ୟ ସଂସ୍ଥା ଗଠନ କରିବା ଓ ତାହାର ସୁପରିଚାଳନା କରିବା ତାହାଙ୍କ ସାଙ୍ଗଠନିକ ଦକ୍ଷତାର ପରିଚୟ ଦିଏ । ସୁନାବେଡାରେ ଲେଖକ ପାଠକ ସମ୍ମେଳନ ଆୟୋଜନ କରିବା, ବନଫୁଲ ସାହିତ୍ୟ



Digitized by srujanika@gmail.com

ସଂସଦର ବାର୍ଷିକ ଉତ୍ସବ ବେଳେ ବିଭିନ୍ନ ବିଷୟରେ ଆଲୋଚନାଚକ୍ରର ଆୟୋଜନ ଓ ତାହାର ମୁଖପତ୍ରର ସତନ୍ତ୍ର ସଂଖ୍ୟା ପ୍ରକାଶନ, ଉତ୍କଳ ସାଂସ୍କୃତିକ ପରିଷଦର ସ୍ମରଣିକାର ସଂଖ୍ୟାଗୁଡିକ ବିଭିନ୍ନ ବରପୁତ୍ରଙ୍କ ବିଶେଷ ସଂଖ୍ୟା ଭାବରେ ପ୍ରକାଶ କରିବା ଏବଂ ସର୍ବକ୍ଷେତ୍ରର ସଂଖ୍ୟାଗୁଡିକ ମଧ୍ୟ ଜଗନ୍ନାଥ ସଂସ୍କୃତିର ବିଭିନ୍ନ ବିଭାଗର ସତନ୍ତ୍ର ସଂଖ୍ୟା ଭାବରେ ପ୍ରକାଶ କରାଇବା ତାହାଙ୍କ ଦୂର ତଥା ସୂକ୍ଷ୍ମ ଦୃଷ୍ଟିର ସୂଚକ ଅଟେ ଏବଂ ଏହା ଦ୍ୱାରା ସେହି ମୁଖପତ୍ର ଗୁଡିକର ଗବେଷଣାତ୍ମକ ମୂଲ୍ୟ ଯୋଗୁଁ ସେଗୁଡିକ ଗବେଷକମାନେ ଖୋଜନ୍ତି ଓ ସାଇତି ରଖନ୍ତି ।

ତାହାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଦିଗ ଗୁଡିକ ହେଲା, ତାହାଙ୍କ ନମ୍ରଭାବ, ମିଷ୍ଟ ଆଳାପ ଏବଂ ଛଳନାହୀନ ବନ୍ଧୁ ପଣିଆ । ସହାସ୍ୟ ବଦନରେ ସମସ୍ତଙ୍କୁ ଆପଣେଇ ନେବା ତାହାଙ୍କ ଜୀବନର ଆଉ ଏକ ବୈଶିଷ୍ଟ୍ୟ । ବନ୍ଧୁତା କରିବା ତାହାଙ୍କ ଏକ ଜନ୍ମଗତ ଅଭ୍ୟାସ । ଏସବୁ ତାହାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚାୟକ ।

ଏହିପରି ଜଣେ ବହୁମୁଖୀ ପ୍ରତିଭାଧାରୀଙ୍କ ସହ ବନ୍ଧୁତ୍ୱ ସୃଷ୍ଟି କରିବା ମୋ ପାଇଁ ସୌଭାଗ୍ୟର ବିଷୟ । ଏହି ମହାନୁଭବଙ୍କ ସହ ମୋର ପ୍ରଥମ ଦେଖା ଓ ପରିଚୟ ହୁଏ ୧୯୯୧ ମସିହାର ଏକ ଶୁଭ ଲଗ୍ନରେ । ୧୯୯୧ ମସିହା ନଭେମ୍ବର ୩୦ ଓ ଡିସେମ୍ବର ୧ ତାରିଖରେ ଫୁଲବାଣୀ ଠାରେ ଶିଶୁ ସାହିତ୍ୟ ଗବେଷଣା ପରିଷଦ, ଭଦ୍ରକ ତରଫରୁ ତାହାର ନିର୍ଦ୍ଦେଶକ ସମ୍ମାନନୀୟ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ଉଦ୍ୟମରେ ଏକ ଦୁଇ ଦିନିଆ ଜାତୀୟ ସ୍ତରର ଏକ ଆଲୋଚନା ଚକ୍ର ଓ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ଏହା ଥିଲା ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ (RICOL)ର ନବମ କର୍ମଶାଳା । RICOL ଆନୁକୂଲ୍ୟରେ ଶିଶୁ ସାହିତ୍ୟର ଅଭିବୃଦ୍ଧି, ଶିଶୁ ସାହିତ୍ୟିକ ସୃଷ୍ଟି କରିବା ଉଦ୍ଦେଶ୍ୟରେ ପ୍ରତିବର୍ଷ ଗୋଟିଏ ଜିଲ୍ଲାରେ ଗୋଟିଏ କର୍ମଶାଳା ଅନୁଷ୍ଠିତ କରାଯାଉଥିଲା । ସ୍ଥାନୀୟ ଲେଖକମାନଙ୍କୁ ଶିଶୁ ସାହିତ୍ୟ ସଂପର୍କରେ ସଚେତନ କରାଇବା ଥିଲା ଏହି କର୍ମଶାଳାର ଉଦ୍ଦେଶ୍ୟ ।

ସେହି କର୍ମଶାଳାରେ କଲିକତାର ଶ୍ରୀଯୁକ୍ତ ରବୀ ରଞ୍ଜନ ଚାଟାର୍ଜୀ, କାନପୁରର ରାଷ୍ଟ୍ରବନ୍ଧୁ, ଚକ୍ରଧରପୁରର ଶ୍ରୀଯୁକ୍ତ ରାମ ବଚନ ସିଂହ "ଆନନ୍ଦ" ଙ୍କ ସହିତ ଓଡିଶାରୁ ଡକ୍ଟର ମନୀନ୍ଦ୍ର ମହାନ୍ତି, ଡକ୍ଟର ଦିଗରାଜ ବ୍ରହ୍ମା, ଡକ୍ଟର ବ୍ରଜଗୋପାଳ ମହାନ୍ତି, ଶ୍ରୀ ରମେଶ ଚନ୍ଦ୍ର ଦାସ ତଥା ଶ୍ରୀ ବସନ୍ତ କିଶୋର ସାହୁ, ମୁଁ ଓ ଫୁଲବାଣୀ ଜିଲ୍ଲାରୁ କେତେକ ଲେଖକ ଯୋଗ ଦେଇଥିଲେ । ଫୁଲାବାଣୀରେ ନଭେମ୍ବରର ସେହି ଶୀତୁଆ ପରିବେଶରେ ପ୍ରଥମ ଦେଖା ହୋଇଥିଲା, ବସନ୍ତ ବାବୁଙ୍କ ସହିତ । ସେହି ଆଲୋଚନା ଚକ୍ରରେ ବସନ୍ତ ବାବୁ ତାହାଙ୍କ ପ୍ରବନ୍ଧ 'ଓଡିଆ ଶିଶୁ ସାହିତ୍ୟରେ ଜହ୍ନ' ଏବଂ ମୁଁ ମୋର ପ୍ରବନ୍ଧ ଶିଶୁ ରଚିତ ଗଳ୍ପ ପଢିଥିଲୁ । ଆଉ କିଏ କ'ଣ ପଢିଥିଲେ ଏବେ ମନେ ନାହିଁ । ଆମ ଭିତରେ



Digitized by srujanika@gmail.com

ସେଇ ପ୍ରଥମ ଦେଖା ଓ ସେଇ କର୍ମଶାଳାର ସ୍ମୃତି ରୋମନ୍ଥନ କଲାବେଳେ ମନରେ ଅଶେଷ ରୋମାଞ୍ଚ ଓ ପୁଲକ ସୃଷ୍ଟି ହେଉଛି ।

ଫୁଲବାଣୀର ସେଇ ହାଡଥରା ଶୀତରେ ରାତ୍ରି ଯାପନ ଓ ଶୀତୁଆ ସକାଳରେ ଗରମ ଗରମ ଚାହା ପାନ ଭିତରେ ଆମ ଭିତରେ କେତେବେଳେ କେମିତି ଯେ ବନ୍ଧୁତ୍ୱର ବୀଜଟିଏ ରୋପି ହୋଇଗଲା ଜାଣି ହେଲାନାହିଁ । ସେଇ ବୀଜଟି ଧୀରେ ଧୀରେ ଅଙ୍କୁରିତ ହୋଇ ଦ୍ରୁମରେ ପରିଣତ ହୋଇ ଆଜିଯାଏ ସତେଜ ଭାବରେ ବଞ୍ଚି ରହିଛି । ଯାହା ଆଜିର ଯୁଗରେ ସମ୍ଭବ ନୁହେଁ । ସତରେ ବଡ କଠିନ ଏ ପ୍ରୀତି ପାଳିବା ।

କର୍ମଶାଳା ପରେ ବସନ୍ତ ବାବୁ ମୋ ସହିତ ପୁରଣା କଟକସ୍ଥିତ ବାସଭବନକୁ ଗଲେ । ମୋ ପାଠାଗାର ଦେଖି ଫେରିଲେ । ତା' ପର ଠାରୁ ପତ୍ରାଳାପ ଚାଲିଲା । ସଂଭବତଃ ୧୯୯୨ରେ ସରକାରୀ କାର୍ଯ୍ୟୋପଲକ୍ଷେ ମୁଁ ସୁନାବେଡା ଗଲି । ସେଠାରେ ମୋତେ ପ୍ରାୟ ସାତ/ଆଠ ମାସ ରହିବାକୁ ହେଲା । ବସନ୍ତ ବାବୁ ତ ସେଠାରେ ବହୁ ପୂର୍ବରୁ ଏରୋନଟିକ୍ସ ମହାବିଦ୍ୟାଳୟରେ ଅଧ୍ୟାପକ ଥାଆନ୍ତି । ସେଠାରେ ଆମ ବନ୍ଧୁତ୍ୱ ଆହୁରି ଗାଢ ହେଲା । ସେତେବେଳେକୁ ସେ ମୌଖିକ ଓଡିଆ ଶିଶୁ ସାହିତ୍ୟ ଉପରେ ପିଏଚ୍.ଡି ନିମନ୍ତେ ଗବେଷଣା କରୁଥିଲେ । ସେଥି ନିମନ୍ତେ ମୁଁ ତାଙ୍କୁ କିଛି କୁଇ ଶିଶୁ ଗୀତ ନିବନ୍ଧରେ ବ୍ୟବହାର ପାଇଁ ଦେଇଥିଲି ଓ ସେ ସେଗୁଡ଼ିକ ବ୍ୟବହାର କରିଥିଲେ । ସେ ଦିନର ଆମ ସଂପର୍କ ସେପରି ହିଁ ରହିଛି । ଆମ ଆତ୍ମୀୟତାରେ ତିଳେ ହେଲେ ଆଞ୍ଚ ଆସିନାହିଁ । ଶ୍ରୀ ଜଗନ୍ନାଥଙ୍କ ଚରଣରେ ପ୍ରାର୍ଥନା କରୁଛି, ଆମ ସଂପର୍କ ସେପରି ଅତୁଟ ରହୁ ଏବଂ ଜଗନ୍ନାଥେ ତାଙ୍କୁ ଦୀର୍ଘ ନିରାମୟ ଜୀବନ ଦିଅନ୍ତୁ ଓ ସେ ଓଡିଆ ସାହିତ୍ୟକୁ ଋଦ୍ଧିମନ୍ତ କରନ୍ତୁ ।



ପଣସପଡି
ବାଲିଗୁଡା, କନ୍ଧମାଳ



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କୁ ଯେମିତି ଜାଣୁ

ନିବେଦିତା ରଥ
ଲକ୍ଷ୍ମୀ ନୃସିଂହ ରଥ

ମନେ ପକାଇ ପାରୁନି କେଉଁ ମସିହାରୁ ବସନ୍ତ ବାବୁଙ୍କ ସହ ସଂପର୍କର ପ୍ରାରମ୍ଭ । ସଂପର୍କଟା ପ୍ରାରମ୍ଭ ଓ ପୂର୍ଣ୍ଣଚ୍ଛେଦରେ ଅଟକିଲାନି । ମନ୍ଥର ଗତିରେ ଆଗକୁ ଆଗକୁ ପ୍ରବାହମାନ ହେଲା । କୌଣସି ଏକ ପତ୍ରିକାରେ ତାଙ୍କର ଲେଖାଟିଏ ପଢ଼ିବା ପରେ, ସରଳ ଭାଷା ଓ ସଂଯତ ପଦ ବିନ୍ୟାସ ମନକୁ, ହୃଦୟକୁ ଆବୋରି ବସିଥିଲା । ସେହି ସମୟରେ ପାରଳାଖେମୁଣ୍ଡିରୁ ପ୍ରକାଶ ପାଉଥିବା, ତ୍ରୈମାସିକ ସାହିତ୍ୟ ଓ ସଂସ୍କୃତ ପତ୍ରିକାର ସଂପାଦନା ଦାୟିତ୍ୱରେ ଥିଲି । ଲେଖାଟିଏ ନିମିତ୍ତ ମୋ ଅନୁରୋଧ ପତ୍ରର ଉତ୍ତର ଅଚିରେ ପାଇଥିଲି ।

ରାଜ୍ୟ ସରକାରୀ କର୍ମଚାରୀ ଭାବେ ୧୯୭୫ ଠୋ ୧୯୮୧ ଯାଏ, ମୁଁ ସୁନାବେଡା-୧ରେ ବାସ କରୁଥିଲି । ଉକ୍ତ ସମୟ ସୀମା ମଧ୍ୟରେ ବସନ୍ତ ବାବୁ ସୁନାବେଡାରେ ଅବସ୍ଥାପିତ ହୋଇ ନଥିଲେ । ଥିଲେ ବି ସାକ୍ଷାତ ହୋଇ ପାରି ନଥାନ୍ତା । କାରଣ ସେତେବେଳେ ସାହିତ୍ୟରେ ପ୍ରକାଶ କରିବାକୁ ସମୟ ନଥିଲା, ଯନ୍ତ୍ରୀ ଜୀବନରେ ।

'ଅଙ୍କୁର' ତ୍ରୈମାସିକୀ କୌଣସି କାରଣ ବଶତଃ ପ୍ରକାଶ ପାଇ ପାରିଲାନି । ତତ୍‌ପରେ ଜନ୍ମ ନେଲା ସାହିତ୍ୟ ସଂସ୍ଥା 'ସୁସ୍ଥ ସାହିତ୍ୟ ସମାଜ, ଓଡିଶା' । ଏହି ସଂସ୍ଥା ତରଫରୁ ପ୍ରକାଶ ପାଇଲା ମାସିକ 'ଆମ ସହର ଆମ ଗାଁ' ସାହିତ୍ୟ ପତ୍ରିକା । ସଂପାଦନା ଦାୟିତ୍ୱ ବହନ କଲେ ଶ୍ରୀମତୀ ନିବେଦିତା ରଥ, ସେହି ସମୟରେ ମୋର ବଦଳି ହେଲା ରମଣଗୁଡା । କିନ୍ତୁ ବାସସ୍ଥାନ ହେଲା ଗୁଣୁପୁର । ସୁସ୍ଥ ସାହିତ୍ୟ ସମାଜ, ଓଡିଶା, ତରଫରୁ ପାଳନ କରାଯାଏ, ରକ୍ଷାବନ୍ଧନ ଉତ୍ସବ (ମେହେର ଜୟନ୍ତୀ ଓ ବଳରାମ ଜୟନ୍ତୀ), ମକର ସଂକ୍ରାନ୍ତି ଉତ୍ସବ (ଫକୀର ମୋହନ ଜୟନ୍ତୀ) ଓ ବିଷୁବ ଉତ୍ସବ (ହନୁମାନ ଜୟନ୍ତୀ ଓ ପଣା ସଂକ୍ରାନ୍ତି) ।

୧୯୯୪ କି ୧୯୯୫ର କଥା, ସେତେବେଳେ ଦୂରଭାଷ ବା ଚଳମାନ



Digitized by srujanika@gmail.com

ଦୂରଭାଷ ବହନ ପ୍ରୟୋଗ ନଥିଲା । ଆଗକୁ ଥାଏ ମକର ଉତ୍ସବ, ବକ୍ତାଙ୍କ ଆବଶ୍ୟକ । ନିବେଦିତା ପ୍ରସ୍ତାବ ଦେଲେ ବସନ୍ତ ବାବୁଙ୍କୁ ନିମନ୍ତ୍ରଣ କରିବା । ଚିଠିଟିଏ ପ୍ରେରଣ କଲୁ, ଅଚିରେ ସ୍ୱୀକୃତି ପତ୍ର ବି ପାଇଗଲୁ । ମନ ଆମ ଆନନ୍ଦରେ ନାଚି ଉଠିଲା । ନୂତନ ବକ୍ତାଟିଏ ପାଇଲୁ । ବସନ୍ତ ବାବୁ ଆସିଲେ । ସାହିତ୍ୟ ସମାରୋହ ହେଲା । ବସନ୍ତ ବାବୁଙ୍କ ତଥ୍ୟ ଭିତ୍ତିକ ଅଭିଭାଷଣରେ ଶ୍ରୋତୃମଣ୍ଡଳୀ ମନ୍ତ୍ରମୁଗ୍ଧ ହେଲେ । ଗୁଣୁପୁର ଛୋଟ ସହର ହେଲେ ହେଁ, ଜ୍ଞାନୀଗଣ ଉପସ୍ଥିତ ଥିଲେ ।

ସୁନାବେଡାରେ ପାରିବାରିକ ବନ୍ଧୁ ବହୁ । ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେବାକୁ ସୁନାବେଡା ଯାଏ । ଗଲେ ସୁନାବେଡା-୧/୨ରେ ରୁହେ । ମୋ ଭାଣିଜୀର ଝିଅ ଜ୍ୟୋତି ବସନ୍ତ ବାବୁଙ୍କ ଛାତ୍ରୀ । ସିଏ ତାଙ୍କର ପ୍ରଶଂସାରେ ଶତମୁଖ । ତାଙ୍କୁ ସାକ୍ଷାତ କରିବାକୁ ମନରେ ପ୍ରବଳ ଆଗ୍ରହ ଜାତ ହେଲା । ତାଙ୍କରି ଘରକୁ ଗଲୁ । ତାଙ୍କ ସହଧର୍ମିଣୀଙ୍କ ସହ ଆମର ସ୍ୱାଗତ କଲେ । ସହଧର୍ମିଣୀ ମିଷ୍ଟଭାଷିଣୀ ଓ ମେଳାପି । ସିଏ ହିଁ ବସନ୍ତ ବାବୁଙ୍କ ଲେଖକୀୟ ଜୀବନର ପ୍ରଚ୍ଛଦପଟ ନାୟିକା । ଆମ ସଂପର୍କର ଉତ୍ତରୋତ୍ତର ଉନ୍ନତି ଘଟିଲା ।

ତାଙ୍କର ପ୍ରେରଣା ଓ ସାହାଯ୍ୟରେ ମୋର କବିତା ସଂକଳନ, 'ଅକବିର କବିତା' ଏବଂ ମୋର ପତ୍ନୀ ଶ୍ରୀମତୀ ନିବେଦିତାଙ୍କ କବିତା ସଂକଳନ, 'ମୀନାର, ଏକ ସମର୍ପିତ ସଂଳାପ' ପ୍ରକାଶିତ । ଯାହା ଚିରଦିନ ଅଭୁଲା ରହିବ ।

ଜୀବନରେ ବହୁ ବ୍ୟକ୍ତି କିଛି ନା କିଛି କର୍ମ ଓ କର୍ତ୍ତବ୍ୟ ସମାପନ କରି ସମାଜରେ ନାମ ଅର୍ଜନ ସହ ନିଜର ସ୍ଥାନ ନିରୂପଣ କରି ପାରିଛନ୍ତି । ଏହି ପରିପ୍ରେକ୍ଷୀରେ ବିଖ୍ୟାତ ଶିଶୁ ସାହିତ୍ୟିକ ଡ. ବସନ୍ତ କିଶୋର ସାହୁ ବି ନିଜ ସ୍ଥାନ ସ୍ଥିରିକୃତ କରିବାରେ ସକ୍ଷମ ହୋଇଛନ୍ତି । ଆମ ଲେଖା ଅଯଥା ପ୍ରଶଂସା ପାତ୍ର । ଯେହେତୁ ନିଜ ଲେଖା ଜ୍ଞାନରେ ସିଏ ଉଚ୍ଚ ପ୍ରଶଂସିତ । ଅହମିକାହୀନ ସ୍ମିତହାସ୍ୟ ମୁଖର ନିଃସୃତ୍ତ ସଂଯତ ଭାଷା, ଜନମାନସକୁ ମୋହିତ କରେ । ତାଙ୍କର ଦୀର୍ଘ ନିରାମୟ ଜୀବନ, ନିରାକାରଙ୍କ ନିକଟରେ ପ୍ରାର୍ଥନା କରୁ । ଆଶା ରଖୁଛୁ ସିଏ ଓଡିଆ ସାହିତ୍ୟ ଭଣ୍ଡାରର ଶ୍ରୀବୃଦ୍ଧିରେ ନିରନ୍ତର ସହଯୋଗ ପ୍ରଦାନ କରି ଚାଲିବେ ।



ବୃନ୍ଦାବନ, ରାଜମାର୍ଗ
ପାରଳାଖେମୁଣ୍ଡି-୭୬୧ ୨୦୦



Digitized by srujanika@gmail.com

# ଅଗ୍ରଜ ପ୍ରତିମ ବସନ୍ତ ବାବୁ

**ଅଧ୍ୟାପକ ଶରତ ଚନ୍ଦ୍ର ପଣ୍ଡା**

ଓଡିଆ ଭାଷା ସାହିତ୍ୟକୁ ପେଶା ଓ ନିଶା କରିଥିବା ଅଗ୍ରଜ ପ୍ରତିମ ବସନ୍ତ ବାବୁ ମୋର ବଡ ଭାଇ । ମୋର ଭଲ ମନ୍ଦ ସବୁବେଳେ ପଚାରି ବୁଝନ୍ତି । ବିପଦ ଆପଦରେ ମୋ ପାଖରେ ରହିଥାନ୍ତି । ଆଜି ଯଦି ସାହିତ୍ୟିକ ଭାବରେ କେବେ କେଉଁଠି ଗଣା ହେଉଥାଏ, ତାହା ତାଙ୍କରି ପ୍ରେରଣା, ଉତ୍ସାହ, ତାଗିଦ୍ ଓ ଆଶୀର୍ବାଦ ଯୋଗୁ । ସୁନାବେଡା ଏରୋନଟିକସ୍ କଲେଜରେ ଯୋଗଦାନର ପ୍ରଥମ ଦିନରୁ ହିଁ ତାଙ୍କ ଘରେ ଭୋଜନର ବ୍ୟବସ୍ଥା ସହିତ ମୋର ରହିବାର ସମସ୍ତ ବନ୍ଦୋବସ୍ତ କରିଦେଇଥିଲେ । ମାଡାମ୍ ଖୁବ୍ ସ୍ନେହୀ ଲୋକ । ଯେତେବେଳେ ତାଙ୍କ ଘରକୁ ଯାଇଛି, ବିନା ଜଳଯୋଗରେ ଫେରିନି । ଟି-ଜୋନ୍ କଲୋନିରେ ବବୁଲୁ ସେତେବେଳେ ଛୋଟ ପିଲା, ସମସ୍ତଙ୍କର ଗେହ୍ଲା । ବୁଲ୍‌ବୁଲ୍ ଜନ୍ମ ବେଳକୁ ସେମାନେ ଟି-ଜୋନ କ୍ୱାଟର ଛାଡି ଏ-ଜୋନ୍ କଲୋନିରେ । ଚାରିଜଣିଆ ଖୁସି ପରିବାର ସମସ୍ତଙ୍କୁ ଆନନ୍ଦ ବାଣ୍ଟିବାରେ ବ୍ୟସ୍ତ ।

ତାଙ୍କ ବିଷୟରେ ଲେଖି ବସିଲେ ଗୋଟିଏ ପୋଥିହେବ । ସଂକ୍ଷିପ୍ତରେ କିଛି ଅତୀତର ରୋମନ୍ଥନ କରୁଛି । ବିଶେଷ ତଥ୍ୟ ତାଙ୍କ ଉପରେ ଏବଂ ତାଙ୍କର ସାମଗ୍ରିକ ସାହିତ୍ୟ କୃତି ଉପରେ ଚାଲିଥିବା ଗବେଷଣାରୁ ଉପଲବ୍ଧି ହେବ । ମୋ ମତରେ ସେ ଜଣେ ବ୍ୟକ୍ତି ବିଶେଷ ନୁହଁନ୍ତି,ଏକ ଅନୁଷ୍ଠାନ । ଏକାଧାରରେ ସେ ଜଣେ ଛାତ୍ର ବତ୍ସଳ ଅଧ୍ୟାପକ, ସୁ-ସାହିତ୍ୟିକ, ଦକ୍ଷ ସଂଗଠକ, ସୁବକ୍ତା, କବି, ଲେଖକ, ପ୍ରକାଶକ, ଗବେଷକ, ସଂକଳକ, ପ୍ରାବନ୍ଧିକ ତଥା ସମାଜ ସଂସ୍କାରକ ।

ଶିଶୁ ପତ୍ରିକା 'ବଗୁଲାବଗୁଲୀ' ସଂପାଦନା କରୁଥିବା କିଶୋରଶ୍ରୀ ବସନ୍ତ ବାବୁ ଅନେକ ସମ୍ମାନ ଓ ପୁରସ୍କାରର ଅଧିକାରୀ । ତାଙ୍କର ସମଗ୍ର ଜୀବନ ସତେ ଯେପରି ସାହିତ୍ୟ ପାଇଁ ଉତ୍ସର୍ଗୀକୃତ । ଅବିଭକ୍ତ କୋରାପୁଟ ଜିଲ୍ଲା, ବିଶେଷ କରି ଉପାନ୍ତ ଅଞ୍ଚଳ ସୁନାବେଡା ଓ ସେମିଳିଗୁଡା ଯୁଗ୍ମ ନଗରୀରେ ଓଡିଆ ଭାଷା ସାହିତ୍ୟର ପ୍ରଚାର, ପ୍ରସାର, ସୁରକ୍ଷା, ନୂତନ ସାହିତ୍ୟିକ ସୃଷ୍ଟି ତଥା ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନରେ ତାଙ୍କର ଭୂମିକା ଚିରସ୍ମରଣୀୟ । କଲେଜ ମାଗାଜିନ୍ 'ଦି ଏରୋନଟିକା'ର ପ୍ରାୟ ୧୦ଟି ସଂଖ୍ୟା ତାଙ୍କ ଦ୍ୱାରା ସମ୍ପାଦିତ । ଅଶୀ ପାଖାପାଖି ପତ୍ରପତ୍ରିକାର ସେ ସଂପାଦକ । ଦୁଇହଜାର ବାର ମସିହା ଜାନୁଆରୀ ୨୯ ଓ ୩୦ ତାରିଖ ଦୁଇଦିନ ଧରି ସୀତମ୍



Digitized by srujanika@gmail.com

ଇଂଜିନିୟରିଂ କଲେଜ, ସେମିଳିଗୁଡା ମହାବିଦ୍ୟାଳୟ ପରିସରରେ ଓଡିଆ ଲେଖକ ପାଠକ ସମ୍ମେଳନର ରାଜ୍ୟସ୍ତରୀୟ ସାରସ୍ୱତ ସମାରୋହର ସେ ଥିଲେ ମୁଖ୍ୟ ପୁରୋଧା ।

ତାଙ୍କ ଗବେଷଣା ସଂଦର୍ଭ 'ଓଡିଆ ମୌଖିକ ଶିଶୁ ସାହିତ୍ୟ' ପ୍ରକାଶିତ । ତାଙ୍କ ଲେଖନୀରୁ ଓଡିଆ, ହିନ୍ଦି, ଇଂରାଜୀ ଭାଷାରେ ଅନେକ ଶିଶୁ ସାହିତ୍ୟ, ଗଳ୍ପ, ପ୍ରବନ୍ଧ, କବିତା, ଗ୍ରନ୍ଥ, ରଚନାବଳୀ, ସମାଲୋଚନା ପୁସ୍ତକ, ସବୁ ମିଶି ଅଗଣିତ । ୱେବସାଇଟରେ ତାଙ୍କର କୃତି ସ୍ଥାନ ପାଇଛି । ନୂଆ ବହିଟିଏ ପ୍ରକାଶ ପାଇଲେ, ମତେ ତାର କପିଟିଏ ଧରାଇ ଦିଅନ୍ତି, ପଢିବାକୁ କୁହନ୍ତି । ସାଂପ୍ରତିକ ସମାଜର ବାସ୍ତବ ଚିତ୍ରକୁ ନେଇ ତାଙ୍କର ପୁସ୍ତକ 'କାହାକୁ କହିବା' ସାମାଜିକ ପରିବର୍ତ୍ତନର ସନ୍ଦେଶ ବହନ କରେ । ଯେତେ ଥର ପଢିଲେବି ମତେ ନୂଆ ଲାଗୁଥାଏ ।

ସବୁ ଠିକ୍ ଠାକ୍ ଆମ ସଂପର୍କ । କିନ୍ତୁ ସେ ଯେତେବେଳେ ତାଙ୍କ ସମ୍ପାଦିତ ପତ୍ରପତ୍ରିକା ପାଇଁ ମତେ ଲେଖା ପାଇଁ ତାଗିଦ୍ କରନ୍ତି, ମୁଁ ଟିକିଏ ଡରିଯାଏ । ଆଗରୁ ତ କେବେ ଲେଖାଲେଖି କରୁ ନଥିଲି । ସୁନାବେଡା ଆସିବା ପରେ ତାଙ୍କ ନିର୍ଦ୍ଦେଶରେ କିଛି କିଛି ଲେଖିବାକୁ ଚେଷ୍ଟା କଲି । ଆସିବା ପ୍ରଥମବର୍ଷ 'ବନଫୁଲ ସାହିତ୍ୟ ପରିଷଦ'ର ବାର୍ଷିକ ଉତ୍ସବରେ ଯୋଗ ଦେଲି । ଏରୋନଟିକ୍ସ କଲେଜ ଓ ସେମିଳିଗୁଡ଼ା ମହାବିଦ୍ୟାଳୟର ସମସ୍ତ ଅଧ୍ୟାପକ, ଅଧ୍ୟାପିକା, କର୍ମଚାରୀଙ୍କ ସହିତ ସୁନାବେଡା-ସେମିଳିଗୁଡା-ଦାମନଯୋଡ଼ି-କୋରାପୁଟ ତଥା ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରାୟ ସମସ୍ତ କବି, କବୟିତ୍ରୀ, ଲେଖକ, ପାଠକ ଓ ସାହିତ୍ୟିକମାନେ ଏଥିରେ ଯୋଗ ଦିଅନ୍ତି । ପଂକ୍ତି ଭୋଜନରେ ତଳେ ବସି ଖଲିପତ୍ରରେ ଭାତ, ଡାଲମାକୁ ପରମ ତୃପ୍ତିରେ ମହାପ୍ରସାଦ ମନେ କରନ୍ତି । ବନ୍ଧୁମିଳନ, ଆଲୋଚନା, ଭାବର ଆଦାନ ପ୍ରଦାନ, ଖୁସିବାସି, କୋଳାହଳରୁ ମୁଁ କିଛି କିଛି ଖୁସି ଅନୁଭବ କରିଛି ଓ ପ୍ରେରଣା ପାଇଛି ।

ସୁନାବେଡ଼ାରେ ବନଫୁଲ ସାହିତ୍ୟ ଆସର ସାଙ୍ଗକୁ ଉତ୍କଳ ସାଂସ୍କୃତିକ ପରିଷଦର ନିୟମିତ ସାହିତ୍ୟ ଆସର ହୁଏ । ମତେ ସେଠାକୁ ସାଙ୍ଗରେ ନେଇ ଯାଆନ୍ତି । କବିତା ଆସର ପାଇଁ ଲେଖିବାକୁ କହନ୍ତି । ସୁନାବେଡାରେ ସେତେବେଳେ ଅପେକ୍ଷାକୃତ ଅଧିକ ବର୍ଷା ହେଉଥିବାରୁ, କିଛି ନ ପାଇ 'ବର୍ଷା' କବିତା ଲେଖିଲି । ସେ ବର୍ଷ କଲେଜ ମାଗାଜିନ୍ ଦାୟିତ୍ୱରେ ବସନ୍ତ ବାବୁ ଥିଲେ । ଲେଖା ମାଗିଲେ, ଇଂରାଜୀରେ ପ୍ରବନ୍ଧଟିଏ ଦେଲି । ତାକୁ ଛପାଇ ମତେ ଲେଖାଲେଖି କରିବାକୁ ପ୍ରେରଣା ପ୍ରଦାନ କଲେ ।

ବର୍ଷେ ବନଫୁଲ ସାହିତ୍ୟ ପରିଷଦ ଆନୁକୁଲ୍ୟରେ 'ଓଡିଆ ଲୋକ ସଂସ୍କୃତି ପରିଷଦ' ତରଫରୁ ସୁନାବେଡାରେ ୧୯୯୦ ମସିହା ଏପ୍ରିଲ ୭ ଓ ୮ ତାରିଖ ଦୁଇ ଦିନ ଧରି 'ଓଡ଼ିଶାର ଲୋକନାଟ୍ୟ' ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଲୋକସଂସ୍କୃତି ପରିଷଦର ରେଜିଷ୍ଟ୍ରାର ଡକ୍ଟର ଆଦିକନ୍ଦ ମହାନ୍ତ, ଡଃ. ମନୀନ୍ଦ୍ର ମହାନ୍ତି. ଡକ୍ଟର ମହେନ୍ଦ୍ର କୁମାର ମିଶ୍ର ଆଦି ଅନେକ ବିଜ୍ଞ ବ୍ୟକ୍ତିମାନେ ଆସିଥାନ୍ତି । ମତେ କହିଲେ



Digitized by srujanika@gmail.com

ଲୋକନାଟ୍ୟ ଉପରେ ଲେଖିବାକୁ । ରୋକ୍ ଠୋକ୍ ମନା କରି ନପାରି କହିଲି ଓଡ଼ିଶାର ପାଲା ବିଷୟରେ ଲେଖିବି । ମୋ କଥା ଶୁଣି କହିଲେ ବଢିଆ ହେବ । ଉତ୍କଳୀୟ ପାଲା ଯାହା ଆସିଲା ଲେଖିକରି ଦେଇଦେଲି । ପରେ 'ଓଡିଶାର ଲୋକନାଟ୍ୟ' ପୁସ୍ତକରେ ତାକୁ ସଂଶୋଧନ କରି ପ୍ରକାଶ କଲେ । ହାତ ଲେଖାଟି ଛାପା କାଳିରେ ମୁଦ୍ରିତ ହୋଇଗଲେ ଖୁସି ଲାଗେ । ମନ ଆନନ୍ଦରେ ପୁରି ଉଠେ । ପ୍ରତିଥର ଲେଖା ପ୍ରକାଶିତ ହେବାର ଖୁସି ମୁଁ ମଧ୍ୟ ଅନୁଭବ କରୁଥାଏ । ବିଶ୍ୱାସ ହେଉ ନଥାଏ ଯେ, ମୋ ହାତ ଲେଖା ପୁସ୍ତକରେ ପ୍ରକାଶିତ ।

ବର୍ଷଣ ମୁଖର ଏକ ଅପରାହ୍ନରେ ତାଙ୍କ ଘରେ ଚାଲିଥାଏ ସାହିତ୍ୟ ଚର୍ଚ୍ଚା । ଗରମ ଗରମ କଖାରୁ ପକୁଡି ସାଂଗକୁ ଚା'ର ବ୍ୟବସ୍ଥା ହୋଇଥାଏ । ବର୍ଷା ଟିକିଏ ଛାଡି ଆସିଲା ବେଳକୁ ମୋ କବିତା 'ବର୍ଷା' ସଂଶୋଧିତ ହୋଇ ସାରିଥାଏ । ଫେରିଲାବେଳକୁ ତାଙ୍କ ନିଜ ଲେଖା ବହିଟିଏ ଏବଂ ଅନ୍ୟ ଦୁଇଟି ପୁସ୍ତକ ଦେଲେ । ପଢନ୍ତୁ ଯେତେ ପାରିବେ ପଢନ୍ତୁ କହି ହସି ଦେଲେ । କର୍ମମୟ ବ୍ୟସ୍ତବହୁଳ ଜୀବନ ଭିତରେ କେଉଁଠି ସେ ଏତେ ସମୟ ପାଆନ୍ତି ପଢିବାକୁ ଲେଖିବାକୁ କେଜାଣି । ଇଣ୍ଟରନେଟ୍ ଯୁଗରେ ଫୋନ୍, ଇ-ମେଲ୍ ବ୍ୟତୀତ ଦୈନିକ ଅଫିସ ଓ ତାଙ୍କ ଘର ଠିକଣାରେ ଅନେକ ଚିଠି ପତ୍ର ଆସେ । ସେ ମଧ୍ୟ ସମପରିମାଣରେ ଚିଠି ଲେଖନ୍ତି ।

ଆଉ ବର୍ଷେ କଲେଜ ମାଗାଜିନ୍ ଦାୟିତ୍ୱରେ ସେ ଥାଆନ୍ତି । ସବୁଥର ପରି ଏଥରକ ମଧ୍ୟ ଲେଖାଟିଏ ମାଗିଲେ । ମୁଁ ସଫା ସଫା ମନା କରିଦେଲି । ମୋ ହାତରେ ଏବେ ଧର୍ମ ପୁସ୍ତକ 'ଉର୍ଜ୍ଜନା' । ସତ୍‌ସଙ୍ଗରେ ଯୋଗ ଦେବା ପର ଠାରୁ ମୁଁ ଏବେ ଠାକୁରଙ୍କ କାମରେ ଲାଗିଛି । ଧର୍ମ ଉପରେ କହିଲେ କିଛି ଗୋଟିଏ ଲେଖିଦେଇ ପାରେ । ଏ କଥା ଖସି ଯିବା ପାଇଁ ଚାଲାକ୍ କରି କହି ଦେଲି । ସଙ୍ଗେ ସଙ୍ଗେ ସେ କ'ଣ ଟିକିଏ ଚିନ୍ତାକରି କହିଲେ-ଭଲ ହେବ, ଧର୍ମ ଉପରେ ଲେଖାଟିଏ ଦିଅନ୍ତୁ । ଆମେ ମଧ୍ୟ ଧର୍ମ କ'ଣ ଜାଣିବା । ପିଲାମାନେ ମଧ୍ୟ ସେଥିରୁ ଅନେକ କଥା ଶିଖିବେ । ଦେଖିଲି ତ୍ରାହି ନାହିଁ । କେତେ ଜଣ ମହାପୁରୁଷଙ୍କ ବାଣୀକୁ ଉଦ୍ଧୃତ କରି ଏମିତି ଦୁଇଧାଡି ଲେଖି ଧରାଇ ଦେଲି । ତାକୁ ସେ ସଜେଇ କରି ସୁନ୍ଦର ପ୍ରବନ୍ଧଟିଏ କରି ଛାପିଦେଲେ । ମଝିରେ ମଝିରେ କବିତା ଆସରକୁ ତାଙ୍କ ପ୍ରେରଣାରେ ଯାଏ । ବରାଦ ପାଇ କବିତା ଲେଖୁଥାଏ । କବି ବନ୍ଧୁମାନଙ୍କର ସଂପର୍କରେ ଆସି ଟିକିଏ ଟିକିଏ କବି ହେଲିଣି ବୋଲି ଲାଗୁଥାଏ । ହେଲେ ସମସ୍ୟାତ ପିଛା ଛାଡୁନି । ପୁଣି ଥରେ କଲେଜ ମାଗାଜିନ ପାଇଁ ଗଳ୍ପଟିଏ ବରାଦ କଲେ । ଶୀଘ୍ର ଲେଖି ଦିଅନ୍ତୁ । ତାଙ୍କ କଥା ଏମିତି, ଉପରକୁ ନଡିଆ ପରି ଟାଣ । କିନ୍ତୁ ଭିତରଟା ଖୁବ୍ ନରମ । ଗଳ୍ପ କଥା ଶୁଣି ଠକି ଠକି ଚାଲିଥାଏ । ହଠାତ୍ ଗୋଟିଏ ଆଇଡିଆ ମୁଣ୍ଡକୁ ଆସିଗଲା । ନାୟିକା, ନାୟକ ସବୁ ମିଳି ଗଲେ କ୍ୟାରିୟର ପ୍ଲାନିଙ୍ଗ, ନାରୀ ସଶକ୍ତିକରଣ, ସରକାରୀ ଯୋଜନାର ରୂପରେଖ, ଭବିଷ୍ୟତର ମାର୍ଗଦର୍ଶନ ଇତ୍ୟାଦି ଥାଇ ଗପଟିଏ ପ୍ରସ୍ତୁତ ହୋଇଗଲା । ମାଗାଜିନ୍ ପ୍ରକାଶିତ ହେବା


Digitized by srujanika@gmail.com

ପରେ, କିଛି ପିଲା ଏବଂ ଅଭିଭାବକ, କେତେକ କ୍ୟାରିୟର ବିଷୟରେ ବିସ୍ତୃତ ଭାବରେ ଆସି ବୁଝିଗଲେ। ପ୍ରତିଦିନ ଖବରକାଗଜ ପଢ଼ିବା ଏବଂ ନିଜକୁ ଅପ୍-ଟୁ-ଡେଟ୍ ରଖିବାର ଏ ହେଉଛି ଫଳ। କିନ୍ତୁ ମନ ମୋର ଆତ୍ମଗ୍ଲାନିରେ ଭରି ଗଲା। ମୋ ଭିତରେ ଥିବା ଲୁକ୍‌କାୟିତ ପ୍ରତିଭାକୁ ବିକଶିତ କରିବା ପାଇଁ, ମୋର ପ୍ରତିଷ୍ଠା ପାଇଁ, ମତେ କବି, ଲେଖକ, ଗାଳ୍ପିକ, ସାହିତ୍ୟିକ ଭାବରେ ସମାଜରେ ପ୍ରତିଷ୍ଠା ଦେବା ପାଇଁ ବସନ୍ତ ବାବୁ କେତେ ଚେଷ୍ଟିତ। ଅଥଚ ମୁଁ ତାଙ୍କୁ ଠକି ଠକି ଚାଲିଥିଲି। ଆଉ ଏମିତି ହେବ ନାହିଁ ବୋଲି ମନେ ମନେ ଶପଥ କଲି।

ତା ପରଠୁ, ତାଙ୍କ ଆଦେଶ ପାଇଲା ମାତ୍ରକେ, ଯାହା ଯେମିତି ଆସିଲା, ଲେଖିକରି ଦେଇଦିଏ। ସେ ତାକୁ ପରିମାର୍ଜିତ କରି ପ୍ରକାଶ କରି ଦେଉଥାନ୍ତି। ସେ କବିତା ଆସରରେ ଖବର ସବୁ ଆଗରୁ ଦିଅନ୍ତି। ମୁଁ ଯଦି କେଉଁଠିକୁ ଯାଏ ସେ ଖୁସି ହୁଅନ୍ତି। ରାୟଗଡାର ସାହିତ୍ୟ ଏକାଡେମୀ ଉତ୍ସବକୁ ଯିବାକୁ କହିଥିଲେ। ମୁଁ ଯାଇପାରିଲି ନାହିଁ ବୋଲି ଦୁଃଖ କରି କହିଲେ ଆପଣତ କେଉଁଠିକି ଯିବେନାହିଁ, କିଛି ଦେଖିବେ ନାହିଁ, ଶୁଣିବେ ନାହିଁ, ଜାଣିବେ କୁଆଡୁ ସାହିତ୍ୟ ବିଷୟରେ। ଏମିତି କହି ହସି ଦିଅନ୍ତି।

ଗତବର୍ଷ କୋରାପୁଟ ପରବ ଉପଲକ୍ଷେ ଆୟୋଜିତ ସାହିତ୍ୟ ଆସରର ସୂଚନା ଦେଇଥିଲେ। ସୁବିଧା ହେଲେ ମୁଁ ଏ ବର୍ଷ ଯିବି ବୋଲି କହିଦେଲି। ବାଧ ହୋଇ ଛୁଟି ନେଇ ଗଲି। କଟକରେ କାମଥିବାରୁ ସେ ଯାଇ ପାରିଲେ ନାହିଁ। କିନ୍ତୁ, ଫୋନ୍ କରି କର୍ମକର୍ତ୍ତାଙ୍କୁ କହୁଥିବାର ମୁଁ ଶୁଣିଲି, ଆମ କଲେଜରୁ ପଣ୍ଡା ବାବୁ ଯାଉଛନ୍ତି। ତାଙ୍କର ଯେପରି କିଛି ଅସୁବିଧା ନ ହୁଏ। ଦାନମଯୋଡି ସାହିତ୍ୟ ଆସରକୁ ଯିବା ବାଟରେ ହଠାତ୍ ଦେଖା ହୋଇଗଲା। ବଂଧୁ ଲକ୍ଷ୍ମୀ ନାରାୟଣ ପ୍ରଧାନ ଓ ମୁଁ ବସ୍‌ରୁ ଓହ୍ଲାଇ ଚାଲି ଚାଲି ଯିବା ଦେଖି ଆମକୁ ଗାଡିରେ ନେଇ ସଭା ସ୍ଥଳରେ ଛାଡ଼ିଲେ। ଚଳିତ ବର୍ଷ ଓଡିଆ ଲେଖକ ପାଠକ ସମ୍ମେଳନ, ସେମିଳିଗୁଡା ଉତ୍ସବର ନିମନ୍ତଣ ପାଇ ମୁଁ ପ୍ରଥମ ଦିନ ନଯାଇ ଦ୍ୱିତୀୟ ଦିନ ଯିବାକୁ ମନସ୍ଥ କରିଥିଲି। ସେ ଏ କଥା ଶୁଣି ବିରକ୍ତ ହୋଇ କହିଲେ ପ୍ରଥମ ଦିନ ଭଲ ଭଲ ବକ୍ତା ଆସୁଛନ୍ତି ଭଲ ଆଲୋଚନା ହେବ। ତା ସହିତ ସୁନ୍ଦର ସୁନ୍ଦର ବ୍ୟାଗ ଆସିଛି। ସେ ସବୁ ପ୍ରଥମ ଦିନ ହିଁ ସରିଯିବ। ବ୍ୟାଗର ଆଶା, ବକ୍ତାଙ୍କର ଆକର୍ଷଣ ଏବଂ ତାଙ୍କ ତାଗିଦ୍ ହେତୁ ମୁଁ ପ୍ରଥମ ଦିନ ହିଁ ଏହି ଉତ୍ସବରେ ଯୋଗଦେଲି। ଦ୍ୱିତୀୟ ଅଧିବେଶନରେ ଦେଶାତ୍ମବୋଧକ କବିତା ପାଠ ଉତ୍ସବ ଥିବାରୁ, କେତେକ ବୀର ପୁରୁଷଙ୍କ ନାମ, କିଛି କ୍ରାନ୍ତିକାରୀ ଶବ୍ଦକୁ ନେଇ କବିତା ଲେଖିବାକୁ ଆରମ୍ଭ କଲି ଓ ଭଲ କବିତାଟିଏ ମଧ୍ୟ ଲେଖିଦେଲି। କବି ବଂଧୁ ଶ୍ରୀଯୁକ୍ତ ପ୍ରଧାନଙ୍କୁ ସାଙ୍ଗରେ ଧରି ପୁରୁଣା ସ୍କୁଟରରେ ଗଲୁ। ଫେରିଲା ବେଳକୁ ମୁହଁ ସନ୍ଧ୍ୟା ହୋଇଗଲା। ବର୍ଷା ମଧ୍ୟ ପଡିଲା। କିନ୍ତୁ ସେ ଦିନର ବକ୍ତାମାନଙ୍କର ଅଭିଭାଷଣ, ବିଷୟବସ୍ତୁ ଉପସ୍ଥାପନା, ବିଶେଷକରି ଦେଶାତ୍ମବୋଧକ କବିତା ପାଠରେ, ପ୍ରମାଣପତ୍ର ସହ ଉତ୍ତରୀୟ ପ୍ରଦାନ, ଭଳି ସାରସ୍ୱତ ଆନନ୍ଦ ସର୍ବୋପରି ଶ୍ରୀଯୁକ୍ତ କୃଷ୍ଣ ସିଂହଙ୍କର ପ୍ରଶଂସା



Digitized by srujanika@gmail.com

ଓ ଆର୍ଶୀବାଦ ଲାଭ ମୋ ଜୀବନରେ ଅଭୁଲା ସ୍ମୃତି ହୋଇ ରହିବ ।

ଅନୁଭୂତି ଅସରନ୍ତି, ସୁଯୋଗ ସୀମିତ । ଆଉ ଗୋଟିଏ କଥା କହି ଶେଷ କରିବି । ଚଳିତ ବର୍ଷ ଉତ୍କଳ ସାଂସ୍କୃତିକ ପରିଷଦ ତରଫରୁ 'ସୁନାବେଡା ବିଶେଷାଙ୍କ' ପ୍ରକାଶ ପାଇଁ ବସନ୍ତ ବାବୁ ପ୍ରସ୍ତାବ ଦେବା ସହିତ ଦାୟିତ୍ୱ ମଧ୍ୟ ନେଇଥାନ୍ତି । ଔପଚାରିକ ପତ୍ର ମିଳିବାର ବହୁ ଆଗରୁ ସେ ମତେ ସୂଚନା ଦେଇଥାନ୍ତି ପ୍ରବନ୍ଧ ଲେଖିବା ପାଇଁ । ମତେ ଅନେକ ଟପିକ୍ ସବୁ ଦେଲେ । ଅନେକ ବାଟ ଦେଖାଇଲେ, ମୁଁ କିନ୍ତୁ ନିଦା ବିଷ୍ଣୁ । ସେଠିକି ଯାଇ ତଥ୍ୟ ପାଇ ପାରିବି ନାହିଁ । ସେ କଥା ଜଣାନାହିଁ । ଏ କଥା ଲେଖି ପାରିବି ନାହିଁ । ତଥ୍ୟ ମିଳୁନାହିଁ । ଏମିତି ସବୁ ରାସ୍ତା ବନ୍ଦ କରି ନାସ୍ତି ବାଣୀ ଶୁଣାଇଲେ ସେ ମୋତେ ଆଉ ଗୋଟିଏ ରାସ୍ତା ଦେଖାଇ ଦିଅନ୍ତି । ତାଙ୍କ କଥା ଶୁଣି ହଉ କହି ବସିଯାଏ । ଶେଷକୁ କହିଲେ, ଆପଣଙ୍କ ସଂସ୍ଥା ସତ୍‌ସଙ୍ଗ ଉପରେ ଲେଖନ୍ତୁ । ଖୁସିରେ ହଁ ମାରିଦେଲି । କିନ୍ତୁ ତାହା ମଧ୍ୟ ଏତେ ସହଜ ନଥିଲା । ଯାହା ହେଉ ଶେଷରେ, ସୁନାବେଡାରେ ଶ୍ରୀ ଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ରଙ୍କର ସତ୍‌ସଙ୍ଗ ଆନ୍ଦୋଳନ ଲେଖିଲି ଓ ତାହା ସେଥିରେ ପ୍ରକାଶ ପାଇଲା । ବହୁତ ଖୁସି ଲାଗିଲା । ପୁସ୍ତକଟି ସୁନାବେଡାର ଅମୂଲ୍ୟ ଗ୍ରନ୍ଥ ହୋଇ ରହିଲା ।

ମୋ ପରି ଅନେକ ସାହିତ୍ୟିକ ସୃଷ୍ଟି କରିଛନ୍ତି ବସନ୍ତ ବାବୁ । ପ୍ରକାଶିତ କରାଇଛନ୍ତି ଶହ ଶହ ପୁସ୍ତକ । ଦୀର୍ଘ ପଚିଶ ବର୍ଷ ସାହିତ୍ୟସାଧନାରେ ବ୍ରତୀ ହୋଇ, କବିଟିଏ ହୋଇପାରିଛି କି ନାହିଁ, ସେକଥା ମୁଁ ଜାଣେନା । କିନ୍ତୁ ପାଇଛି ଅନେକ ଦରଦୀ କବି ବନ୍ଧୁ, ବାଣ୍ଟିଛି ସୁଖ ଦୁଃଖ, ବାଢିଛି ଅଭିବ୍ୟକ୍ତି, ଅନୁଭବିଛି ଅନ୍ୟର ବ୍ୟଥା, ସାଉଁଟିଛି ସାରସ୍ୱତ ଆନନ୍ଦ, ପାଇଛି ପାଠକୀୟ ଆଦର, ରାଶି ରାଶି ଖୁସିବାସି, ଶ୍ରୋତାଙ୍କର କରମର୍ଦ୍ଦନ, ବନ୍ଧୁଙ୍କର ମହନୀୟତା ମିଳିଛି, ଆଦର ସମ୍ମାନ ସଭାପତି, ବକ୍ତା, ଅତିଥିର ଆସନ, ପ୍ରକାଶିତ ହୋଇଛି ଅନେକ କବିତା, ଗଳ୍ପ ଓ ପ୍ରବନ୍ଧ । ଏ ସବୁର ଶ୍ରେୟ ବସନ୍ତ ବାବୁଙ୍କର ।

ଏହି ଅବସରରେ, ମୁଁ ଘୋଷଣା କରୁଛି ଯେ, ତାଙ୍କ ମନରେ କେବେ ଯଦି କେଉଁଠି କଷ୍ଟ ଦେଇଥାଏ, ମୋର ବ୍ୟବହାର, କଥାବାର୍ତ୍ତା, କାର୍ଯ୍ୟକଳାପ ତାଙ୍କୁ ଯଦି ସାମାନ୍ୟତମ କଷ୍ଟ ଦେଇଥାଏ, ସେଥିପାଇଁ ମୁଁ ଦୁଃଖିତ । ପରିଶେଷରେ, ଜଗତର ନାଥ ଜଗନ୍ନାଥଙ୍କର କରୁଣା ଲାଭ କରି ବସନ୍ତ ବାବୁ, ତାଙ୍କର ପରିବାର, ପରିଜନ, ସୁସ୍ଥ, ସୁନ୍ଦର, ନିରାମୟ ଜୀବନ ଯାପନ କରନ୍ତୁ । ଏହାହିଁ କାମନା । ତାଙ୍କର ଲେଖନୀ ଓଡିଆ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ନିରନ୍ତର ଚାଲୁଥାଉ । ଆହୁରି ଅନ୍ୟୁନ ଶହେଟି ପୁସ୍ତକ ସେ ଆଗାମୀ ପିଢି ପାଇଁ ଗଚ୍ଛିତ ରଖନ୍ତୁ । ତାଙ୍କର ଲେଖନୀ କାଳଜୟୀ ହେଉ ।



ଏରୋନଟିକସ୍ ମହାବିଦ୍ୟାଳୟ, ସୁନାବେଡ଼ା, କୋରାପୁଟ



Digitized by srujanika@gmail.com

# କିଶୋରଶ୍ରୀ ଡକ୍ଟର ବସନ୍ତ କିଶୋର

**ରମେଶ ଚନ୍ଦ୍ର ସାମଲ**

ସାହିତ୍ୟ, ସଂସ୍କୃତି, ରାଜନୀତି, ସମାଜ ସଂସ୍କାର କ୍ଷେତ୍ରରେ ଯଶସୀ ହୋଇଥିବା ଅନେକ ବରପୁତ୍ରଙ୍କୁ ଜନ୍ମଦେଇ କୁସୁପୁର ଗ୍ରାମ ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ସେହି ଗ୍ରାମର ଅନ୍ୟତମ ବରପୁତ୍ର, ଶିକ୍ଷାବିତ୍, ସାହିତ୍ୟିକ ଡକ୍ଟର ବସନ୍ତ କିଶୋର ସାହୁ । ସତେ ଯେପରି ସେହି ଗ୍ରାମର ପାଣି ପବନରେ ପ୍ରତିଭା ସୃଷ୍ଟି ପାଇଁ ପ୍ରଚୁର ଉପାଦାନ ଭରି ରହିଛି ଓ ପୂର୍ବସୁରୀମାନଙ୍କ ପ୍ରେରଣା ପ୍ରତିଭା ସୃଷ୍ଟି ପାଇଁ ଉତ୍ସାହ ଯୋଗାଇ ଆସୁଛି ।

ତରୁଣ ବସନ୍ତ କିଶୋର ସାହୁଙ୍କ ସହ ମୋର ପ୍ରଥମ ସାକ୍ଷାତ ହୁଏ ଆମର ବାହାଦୂରନଗରସ୍ଥ ବାସଭବନରେ । ବସନ୍ତ ବାବୁ, ସେହି ଗ୍ରାମର ଅନ୍ୟତମ ଶିଶୁ ସାହିତ୍ୟିକ ଦାଶରଥି ସାହୁ ଓ ଅନ୍ୟ ଜଣେ ବଂଧୁଙ୍କୁ ଧରି ମୋର ଦାଦା ଶିକ୍ଷାବିତ୍, ଶିକ୍ଷା ପ୍ରଶାସକ ସାହିତ୍ୟିକ ଶ୍ରୀ ଧନେଶ୍ୱର ସାମଲଙ୍କୁ ଭେଟିବାକୁ ଆମ ବାସଭବନରେ ପହଞ୍ଚିଥିଲେ । ଉଦ୍ଦେଶ୍ୟ ଥିଲା ପ୍ରକାଶ ପାଇବାକୁ ଯାଉଥିବା ଶିଶୁକିଶୋର ପତ୍ରିକା 'ବଗଲାବଗୁଲୀ' ପାଇଁ ଲେଖାଟିଏ ଆଣିବା । ମନେ ହେଉଥିଲା ସେହି ଯୁବକଙ୍କ ମନରେ ସାହିତ୍ୟ ସାଧନା ପାଇଁ ଅଦମ୍ୟ ଉତ୍ସାହ ଭରି ରହିଛି । ପରବର୍ତ୍ତୀ ସମୟରେ ତାହାହିଁ ପ୍ରମାଣିତ ହୋଇଛି ।  ଡକ୍ଟର ବସନ୍ତ କିଶୋର ସାହୁଙ୍କ ଓଡ଼ିଆ ସାହିତ୍ୟ ପ୍ରତି ଅବଦାନ ତାଙ୍କ ପାଇଁ ସ୍ୱତନ୍ତ୍ର ପରିଚୟ ଆଣି ଦେଇଛି ।

ପରିଚୟ ହେବା ପରେ ତାଙ୍କ ସହ 'ସୌଖିନ ସାହିତ୍ୟ ସମାଜ'ର ବିଭିନ୍ନ ଆସରରେ ଭେଟ ହେଉଥିଲା । ଶିଶୁ କିଶୋରଙ୍କ ପାଇଁ ଉଦ୍ଦିଷ୍ଟ ଓ ଆଧୁନିକ କବିତା ଆବୃତ୍ତି କରୁଥିଲେ । ସେଥିରୁ ତାଙ୍କର ସାହିତ୍ୟିକ ପ୍ରତିଭାର ପରିଚୟ ମିଳୁଥିଲା । ତାଙ୍କ ସମ୍ପାଦନାରେ କୁସୁପୁରରୁ 'ବଗଲାବଗୁଲୀ' ପ୍ରକାଶିତ ହେଲା । ମୋର ଲେଖା ସେଥିରେ ସ୍ଥାନିତ ହେଉଥିଲା । ବିଜ୍ଞାନଭିତ୍ତିକ ଲେଖା ଦେବା ପାଇଁ ସେ ମୋତେ ଉତ୍ସାହିତ କରୁଥିଲେ । ପତ୍ରିକାଟି ଉଚ୍ଚକୋଟିର ହେଉଥିଲା ଓ ଶିଶୁକିଶୋରମାନଙ୍କ ମଧ୍ୟରେ ଆଦୃତି ଲାଭ କରିଥିଲା । ସେ ସମୟରେ ତାଙ୍କର ଶିଶୁକିଶୋର ଉପଯୋଗୀ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା ଓ ସେ ମାତୃଭୂମି ତରଫରୁ 'କିଶୋରଶ୍ରୀ' ଉପାଧି ପାଇ ସେଇ ନାମରେ ସମସ୍ତଙ୍କ ନିକଟରେ ପରିଚିତ ଥିଲେ । ବସନ୍ତ ବାବୁ ନନ୍ଦକିଶୋର



Digitized by srujanika@gmail.com

ବିଦ୍ୟାମନ୍ଦିରର ଛାତ୍ର ଥିଲେ । ମୁଁ ମଧ ସେହି ବିଦ୍ୟାଳୟରେ ଅଧ୍ୟୟନ କରୁଥିଲି । ସେହି ବିଦ୍ୟାଳୟରେ ସେହି ଗ୍ରାମର ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଶିଶୁ ସାହିତ୍ୟିକ ଓ ନାଟ୍ୟକାର ନନ୍ଦକିଶୋର ସାମଲ ଶିକ୍ଷକତା କରୁଥିଲେ । ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ତାଙ୍କର ଅନେକ ଛାତ୍ରଛାତ୍ରୀ ସାହିତ୍ୟ ସାଧନାରେ ବ୍ରତୀ ହୋଇଥିଲେ । ବସନ୍ତ ବାବୁଙ୍କ ଉପରେ ମଧ ତାଙ୍କର ଅନେକ ପ୍ରଭାବ ପଡିଥିଲା ।

ପରବର୍ତ୍ତୀ ସମୟରେ ତାଙ୍କର କର୍ମକ୍ଷେତ୍ର ବଦଳିଗଲା ଓ ସେ ସୁନାବେଡ଼ାରେ ନିଯୁକ୍ତି ପାଇଲେ । ସେଠାରେ ରହିବା ପରେ ତାଙ୍କ ସାହିତ୍ୟ ସାଧନାରେ ଭଟ୍ଟା ପଡିନଥିଲା । ଅନ୍ୟ ପକ୍ଷରେ ସେ ସାହିତ୍ୟ ସାଧନା ପାଇଁ ତାଙ୍କ ସୁବିଧାସୁଯୋଗର ଅଧିକ ବିନିଯୋଗ କରିପାରିଥିଲେ । ବିଭିନ୍ନ ସାହିତ୍ୟ ଅନୁଷ୍ଠାନ, ଗୋଷ୍ଠୀ ସହ ସଂପୃକ୍ତ ହେବା ସହ ଅଧିକତର ଲେଖା ଲେଖିବାରେ ବ୍ରତୀ ହେଲେ । ଗବେଷଣା କରି ନିଜେ ଡକ୍ଟରେଟ ଉପାଧିରେ ଭୂଷିତ ହେବା ସହ ଗବେଷଣାର ମାର୍ଗଦର୍ଶକ ହୋଇ କେତେକଙ୍କୁ ଡକ୍ଟରେଟ ଉପାଧି ପାଇବାରେ ସହଯୋଗ କଲେ । ଗୁରୁ ନନ୍ଦକିଶୋରଙ୍କ କୃତି ଉପରେ ମାର୍ଗଦର୍ଶକ ଭାବରେ କାର୍ଯ୍ୟ କରି ଡକ୍ଟରେଟ ଉପାଧି ଦେବାରେ ସଫଳ ହୋଇ ଗୁରୁ ଋଣ ପରିଶୋଧ କରିବାରେ ସକ୍ଷମ ହୋଇଛନ୍ତି । ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସାହିତ୍ୟ ସାଧନା ପାଇଁ ସମ୍ବର୍ଦ୍ଧିତ ହେବା ସହ ସଫଳ ଶିକ୍ଷାବିତ୍ ଭାବେ ନିଜର ପାରଦର୍ଶିତା ପ୍ରତିପାଦନ କରି ସେ ଓଡ଼ିଆ ସାହିତ୍ୟ ପାଇଁ ଜଣେ ସମର୍ପିତ ବ୍ୟକ୍ତିତ୍ୱରେ ପରିଣତ ହୋଇଛନ୍ତି ।

ନନ୍ଦସାର୍‌ଙ୍କ ପୁଅ ସୁକୁମାର ଠାରୁ ଜାଣିବାକୁ ପାଇଲି ବସନ୍ତ ବାବୁ କର୍ମକ୍ଷେତ୍ରରୁ ଅବସର ନେଉଛନ୍ତି ଓ ତାଙ୍କ ଉଦ୍ଦେଶ୍ୟରେ ଏକ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶିତ ହେବାକୁ ଯାଉଛି । ଖୁସି ଲାଗିଲା । ଗୋକର୍ଣ୍ଣିକାର 'ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପୁରସ୍କାର' ପାଇଲା ପରେ ତାଙ୍କ ସହ ଦେଖା ହୋଇଥିଲା । ବତିଶିରୁ ଉର୍ଦ୍ଧ୍ୱ ତାଙ୍କ ରଚିତ ପୁସ୍ତକ ପ୍ରକାଶିତ ହେବା କଥା ତାଙ୍କ ଠାରୁ ଜାଣିଲି । ଏହି ସରଳ, ଭଦ୍ର, ଶାନ୍ତ, ଅମାୟିକ ସାଧକଙ୍କ ସାଧନାର ସ୍ତର କେତେ ଉଚ୍ଚ ଜାଣିବାକୁ ପାଇ ଉଲ୍ଲସିତ ହେଲି, ଆଶ୍ଚର୍ଯ୍ୟ ମଧ ।

ଈଶ୍ୱର ଏହି ଉତ୍ସର୍ଗୀକୃତ, ନିଷ୍ପାପର ସାହିତ୍ୟସାଧକଙ୍କୁ ଦୀର୍ଘ ନିରାମୟ ଜୀବନ ପ୍ରଦାନ କରନ୍ତୁ । କିଶୋରଶ୍ରୀ ଙ୍କ ମନ କିଶୋର ଉଦାମତାରେ ଭରି ରହୁ, ଚିର ସବୁଜ ରହୁ । ଅବସର ପରେ ଓଡ଼ିଆ ଭାଷା ସାହିତ୍ୟକୁ ଅଧିକ ଋଦ୍ଧିମନ୍ତ କରି ଚାଲନ୍ତୁ । ନିଜ ପାଇଁ, ପିତାମାତାଙ୍କ ପାଇଁ, ଗ୍ରାମ ପାଇଁ, ଗୁରୁଙ୍କ ପାଇଁ ଅଧିକ ଯଶ ଅର୍ଜନ କରି ଓଡ଼ିଆ ଜାତିକୁ ଗୌରବ ମଣ୍ଡିତ କରନ୍ତୁ ।



ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ
ଶାରଦା ଭବନ, ବାଲିଚନ୍ଦ୍ରପୁର, ଯାଜପୁର



Digitized by srujanika@gmail.com

# ଧୂଳିଖେଳରୁ ଅବସର ବେଳ

ପ୍ରଫୁଲ୍ଲ କୁମାର ସାହୁ

ଧୂଳି ଖେଳରୁ ଅବସର ବେଳ । ଦୀର୍ଘ ସମୟ । ଆମେ ଗୋଟିଏ ଗାଆଁର ପିଲା । ଗୋଟିଏ ସ୍କୁଲ୍ 'ନନ୍ଦକିଶୋର ବିଦ୍ୟାମନ୍ଦିର'ର ଛାତ୍ର । ପିଲା ଦିନ କଥା ଖୁବ୍ କୌତୁକ ବିମଣ୍ଡିତ । ତଥାପି ବାଲ୍ୟ ସ୍ମୃତି ଜୀବନ ସାରା ମନେ ପଡେ । ମନେ ପଡେ ପିଲାବେଳ ସାଙ୍ଗ ବସନ୍ତ । ତା'ର ଚଳଚଞ୍ଚଳ ଖୁସି ମିଜ୍ଞାସର ଭାବ ବିହ୍ୱଳତା । ସେ କେମିତି ଲୁଚି ଲୁଚି କବିତା ଲେଖୁଥିଲା, ଆମକୁ ପଢ଼ାଉଥିଲା । ତା' କବିତା ସମ୍ପର୍କରେ ଚର୍ଚ୍ଚା କଲେ ଲାଜରେ ଝାଉଁଳି ପଡୁଥିଲା । ସାର୍‌ମାନଙ୍କୁ ଡରୁଥିଲା । କାଳେ ଧରା ପଡିଯିବ, ସେ କବିତା ଲେଖାରେ ସମୟ ଦଉଚି ବୋଲି ।

ସବୁବେଳେ ମାପଚୁପ୍ କଥା । ଗୋଟେ ଦାର୍ଶନିକ ସୁଲଭ ମାନସିକତା ତା'ର । ତାକୁ ବୁଝିବା କଷ୍ଟ । କଣ ସବୁ ଭାବେ ସପ୍ନ ଦେଖେ । ନିଜ ଭିତରର ଖିଆଲ ଏଥିରେ ଆଙ୍କି ହୋଇପଡେ । ବୁଝା ପଡେ ବି ।

ବସନ୍ତ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ସେ ଦିନର ସ୍କୁଲ୍ ସାଥୀ ବସନ୍ତ ଆଜି ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ତାର ଶିଶୁ କିଶୋରମାନଙ୍କ କବିତା ଗଳ୍ପ ଲେଖାରେ ନିବିଷ୍ଟ ଥିବା ମୂଳରେ ଆମ ଗାଆଁର ପଲ୍ଲୀକବି ନନ୍ଦକିଶୋର ବଳ ଓ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲଙ୍କ କୃତି ତାକୁ ଅନେକ ପ୍ରେରଣା ଯୋଗାଇଛି । କୁସୁପୁରର ସାହିତ୍ୟିକ ପରିବେଶ, ପ୍ରାକୃତିକ ସୁଷମା ଓ ଅଧ୍ୟୟନ ପିପାସା ତା ଭିତରେ ସାହିତ୍ୟସାଧନା ପାଇଁ ଏକ ଭିତ୍ତିଭୂମି ସୃଷ୍ଟି କରିଥିଲା । ସ୍କୁଲ୍ ଜୀବନରୁ ପତ୍ରିକା ପ୍ରକାଶ ପାଇଁ ସେ ଯେଉଁ ଉଦ୍ୟମ କରିଥିଲା ତାହା ମଧ୍ୟ ଆମକୁ ଆଶ୍ଚର୍ଯ୍ୟ କରିଥିଲା ।

ଅଧ୍ୟାପନା କାର୍ଯ୍ୟରେ ଯୋଗଦେଲା ପରେ ପ୍ରକୃତରେ ତାର ସାହିତ୍ୟିକ ଜୀବନର ଅଭିବୃଦ୍ଧି ଘଟିଛି । ଶିଶୁ ସାହିତ୍ୟର ଗବେଷକ ଭିନ୍ନ ସେ ସମ୍ପାଦନା, ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତି, କୋରାପୁଟର ଜନଜାତି ତଥା ପରିବେଶ ସହିତ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ ପାଇଁ ସେ ନିଜକୁ ବିକଶିତ କରାଇ ପାରିଛି । ଭାବିଲେ ଆଶ୍ଚର୍ଯ୍ୟ ଲାଗେ



Digitized by srujanika@gmail.com

ଯେ ସେ ୩୨ ଖଣ୍ଡ ପୁସ୍ତକ ଲେଖିଛି । ସେହି ସବୁ ବହି ପୁଣି ସାହିତ୍ୟର ସମସ୍ତ ବିଭବ ଓ ବିଭାବକୁ ସ୍ପର୍ଶ କରିଛି ।

ଆକାଶବାଣୀ, ଶିଶୁ ସାହିତ୍ୟ ଗବେଷଣା ପରିଷଦ, ଅଧ୍ୟାପନା, ସଂଗ୍ରହ ଆଦି କାର୍ଯ୍ୟରେ ତାର ସୃଜନଶୀଳ ପ୍ରତିଭା ବେଶ୍ ପ୍ରତିଶୃତିପୂର୍ଣ୍ଣ । ସେ ଆମ ଗାଁ ମାଟି କୁସୁପୁରର ଅନ୍ୟତମ ଗର୍ବ ଓ ଗୌରବ । ସେ ଯେତେବେଳେ ଗବେଷଣା କରି ପିଏଚ୍.ଡି. ପାଇଲା ଆମ ଗାଁ ଲୋକ ଖୁସିରେ ଫାଟି ପଡିଲେ । ଆମେ ତାକୁ ଗାଁରେ ମଧ୍ୟ ସମ୍ବର୍ଦ୍ଧନା ଦେଇଥିଲୁ । ଆମେ ସମସ୍ତେ ଆଶା କରିଥିଲୁ, ବସନ୍ତ ତା ସାରସ୍ୱତ ଜୀବନରେ ଅନେକ କିଛି କରିବ । ଆଜି ତାହାହିଁ ହୋଇଛି । ବସନ୍ତ, ଗୋଟିଏ ବସନ୍ତ ପରେ ଆଉ ଗୋଟିଏ ବସନ୍ତ ଅତିକ୍ରମ କରି ଚାଲିଛି । ଆଜି ସେ ଅଧ୍ୟାପକ ଜୀବନରୁ ଅବସର ନେଉଛି । ମୁଁ ଖୁସି ଆଜି ତା ସମ୍ପର୍କରେ କିଛି ଲେଖିବାକୁ ମୋତେ ସୁଯୋଗ ମିଳିଛି । ଏହା ମୋ ପାଇଁ ନିଶ୍ଚୟ ଗର୍ବ ଓ ଗୌରବର ବିଷୟ । ସେ ଏବେ ଗାଆଁକୁ ଫେରିବ ଓ ଆମମାନଙ୍କ ସମ୍ପର୍କରେ ଆସିବ । ତା ପ୍ରେରଣା ଓ ଦିଗ୍‌ଦର୍ଶନରେ ଆମେ ଗାଁଆ ପାଇଁ, ସମାଜ ପାଇଁ ଓ ସାହିତ୍ୟ ପାଇଁ କିଛି କାମ କରିବୁ ବୋଲି ଆଶା ରଖୁଛି । ଏବେ ବସନ୍ତକୁ ଜଣେ ଶ୍ରଦ୍ଧାଶୀଳ ପାଠକ ଭାବରେ ମୁଁ ନିଶ୍ଚୟ ଚାହିଁବି । ସେ ଆଗକୁ ଆଗକୁ ଯାଉ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଜଣେ ସଚେତନ, ସମ୍ବର୍ଦ୍ଧିତ ଯଶସ୍ୱୀ ପାଠକ ଭାବରେ ତାର ନିଜସ୍ୱ ସ୍ଥିତି ସୁଦୃଢ଼ ରହୁ ।



କୁସୁପୁର
କଟକ-୭୫୪ ୨୮୫






Digitized by srujanika@gmail.com

# ସିଏ ଜଣେ ବ୍ୟକ୍ତି ନୁହଁନ୍ତି ଏକ ଅନୁଷ୍ଠାନ

## ପବିତ୍ର କୁମାର ବେଦାନ୍ତ

କାହିଁକି କେଜାଣି ଡକ୍ଟର ବସନ୍ତ କିଶୋର ସାହୁଙ୍କ ପ୍ରତି ମୋ ମନରେ ଅହେତୁକ ଦୁର୍ବଳତା । ସାର୍ ମୋତେ ବହୁତ ଆପଣାର ଆପଣାର ଲାଗନ୍ତି । ତାଙ୍କୁ ଦେଖିଲେ ମୁଣ୍ଡ ଆପେ ଆପେ ନଇଁଯାଏ । କିଛି କଥା ହେବା ପାଇଁ ଇଚ୍ଛା ହୁଏ । ଆବଶ୍ୟକ ପଡିଲେ ତାଙ୍କ ଠାରୁ କିଛି ପରାମର୍ଶ ମଧ୍ୟ ନିଏ । ତାଙ୍କ ସହିତ ମୋର ସମ୍ପର୍କ ନିବିଡ଼ ହୁଏ, ଆମ ମହାବିଦ୍ୟାଳୟର ମାଗାଜିନ୍ 'ସ୍ୱର୍ଣ୍ଣଲିପି' ପ୍ରକାଶ ସମୟରୁ । ସାର୍‌ଙ୍କୁ ମାଗାଜିନ୍ ଛପାଇବା ପାଇଁ ଦାୟିତ୍ୱ ଦିଆଯାଇଥାଏ । ହାତରେ ସମୟ ବହୁତ କମ୍ ଥାଏ । ବାର୍ଷିକ ଉତ୍ସବର ତାରିଖ ସ୍ଥିର ହୋଇ ସାରିଥାଏ । ମୁଖ୍ୟ ଅତିଥିଙ୍କ ଦ୍ୱାରା 'ସ୍ୱର୍ଣ୍ଣଲିପି' ଉନ୍ମୋଚନ ହେବା ପାଇଁ ପରିଚାଳନା ସମିତି ସ୍ଥିର କରିଥାଏ । ବାର୍ଷିକ ଉତ୍ସବରେ ଏହା ଉନ୍ମୋଚିତ ହୋଇପାରିବ କି ନାହିଁ ମୋ ମନରେ ଆଶଙ୍କା ଥାଏ । କିନ୍ତୁ, ସାର୍ ସଳ୍ପ ସମୟ ମଧ୍ୟରେ ତାଙ୍କ ଦାୟିତ୍ୱ ସୁଚାରୁ ରୂପେ ନିର୍ବାହ କଲେ । ପତ୍ରିକାଟିର ଅଳଙ୍କରଣ, ମୁଦ୍ରଣ ଯେ କେବଳ ସୁନ୍ଦର ଓ ଆକର୍ଷଣୀୟ ହୋଇଥିଲା ତାହା ନୁହେଁ, ଲେଖା ଓ ବାର୍ତ୍ତା ମଧ୍ୟ ନିର୍ଭୁଲ୍ ଭାବରେ ଛପାଯାଇଥିଲା । ପତ୍ରିକାଟି ଠିକ୍ ସମୟରେ ଉନ୍ମୋଚିତ ହେବା ସହିତ ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ତାଙ୍କର କର୍ତ୍ତବ୍ୟ ନିଷ୍ଠା ଓ ସମୟାନୁବର୍ତ୍ତିତା ଗୁଣର ପରିଚୟ ମୁଁ ଏହି ଗୋଟିଏ ଘଟଣାରୁ ଜାଣି ପାରିଲି ।

ତା' ପରେ ତାଙ୍କ ସହିତ ମୋର ଘନିଷ୍ଠତା ବଢ଼ିଲା । ବାଟରେ ଘାଟରେ ଯେଉଁଠି ଦେଖିଲେ ଭାବର ଆଦାନ ପ୍ରଦାନ ହେଲା । ଭଲମନ୍ଦ ବିଷୟରେ ଆଲୋଚନା ହେଲା । ତା' ପରେ ମୁଁ ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭା ସହିତ ଧୀରେଧୀରେ ପରିଚିତ ହେଲି । ସେ ଜଣେ ସୁସାହିତ୍ୟିକ ବୋଲି ଏହା ପୂର୍ବରୁ ମୁଁ ଜାଣି ନଥିଲି । ତାଙ୍କ ଲେଖା ସହିତ ପରିଚିତ ହେଲି । ତାଙ୍କ ପ୍ରତିଭା ଓ ବ୍ୟକ୍ତିତ୍ୱ ସହିତ ପରିଚିତ ହେଲା ପରେ ଜାଣିଲି ଯେ ସେ ଜଣେ ବ୍ୟକ୍ତି ନୁହଁନ୍ତି ଏକ ଅନୁଷ୍ଠାନ । ଶିଶୁ ସାହିତ୍ୟ, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟରଚନା କ୍ଷେତ୍ରରେ ତାଙ୍କର ସମଗ୍ର ଓଡ଼ିଶାରେ ନାଁ ରହିଛି । ପେଷାରେ ଜଣେ ଅଧ୍ୟାପକ ହେଲେ ମଧ୍ୟ ନିଶାରେ ଜଣେ ସାହିତ୍ୟପ୍ରେମୀ । କୋରାପୁଟ ତଥା ରାଜ୍ୟର



Digitized by srujanika@gmail.com

ବିଭିନ୍ନ ସାହିତ୍ୟ ଉତ୍ସବରେ ସେ କେବଳ ଯୋଗଦାନ କରନ୍ତି ନାହିଁ, ନିଜ ସାଂଗଠନିକ ଦକ୍ଷତା ପ୍ରତିପାଦନ କରି ସମସ୍ତଙ୍କର ପ୍ରିୟ ଭାଜନ ହୋଇଛନ୍ତି । ସୁନାବେଡ଼ା, ସେମିଳିଗୁଡ଼ା, ଦାମନଯୋଡ଼ି ଓ କୋରାପୁଟ ଠାରେ ଥିବା ସାହିତ୍ୟ ଅନୁଷ୍ଠାନମାନଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ସଂପୃକ୍ତି ରହିଛି । ସୁନାବେଡ଼ାର ମଧୁସୂଦନ ସେବା ସଂଘ ଦ୍ୱାରା ଆୟୋଜିତ ରଜପର୍ବ ତାଙ୍କ ବଳିଷ୍ଠ ମାନସିକତା ଓ ନେତୃତ୍ୱର ପରିଚୟ ପ୍ରଦାନ କରେ । ଏହି ଉତ୍ସବ ଆମ ସଂସ୍କୃତିକୁ ବଜାୟ ରଖିବା ସହିତ ଉପାନ୍ତ ଅଞ୍ଚଳ ସୁନାବେଡ଼ାରେ ନିଜସ୍ୱ ଏକ ପରିଚୟ ସୃଷ୍ଟି କରିପାରିଛି । ସୁନାବେଡ଼ାସ୍ଥ (ଏଲ୍.ଜୋନ୍) ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥା ଦ୍ୱାରା ଆୟୋଜିତ ସମସ୍ତ ଧାର୍ମିକ କାର୍ଯ୍ୟକ୍ରମରେ ତାଙ୍କ ହାତ ଥାଏ । ସେହିପରି ବନପ୍ରଭା ସାହିତ୍ୟ ସଂସଦର ସାହିତ୍ୟ ଉତ୍ସବ କୁହ କି ଉତ୍କଳ ସାଂସ୍କୃତିକ ପରିଷଦ ଦ୍ୱାରା ଆୟୋଜିତ କୌଣସି କାର୍ଯ୍ୟକ୍ରମ ପାଇଁ ତାଙ୍କ ପରାମର୍ଶ ଓ ଉପଦେଶ ନିଆଯିବା ସହିତ ସେଠାରେ ତାଙ୍କର ସଂପୃକ୍ତି ଲକ୍ଷ୍ୟ କରାଯାଏ । ତାଙ୍କ ଉପସ୍ଥିତି କାର୍ଯ୍ୟକ୍ରମକୁ ଅଧିକ ରୁଚିଶୀଳ ଓ ମନୋମୁଗ୍ଧକର କରିଥିବା ଦେଖାଯାଏ ।

ଏହି ଅଳ୍ପ ଦିନ ତଳେ ଏରୋନଟିକ୍ସ ମହାବିଦ୍ୟାଳୟ ଗୋଲେଇ ଛକ ନିକଟରେ ହଠାତ୍ ମୋର ସାର୍‌ଙ୍କ ସହିତ ଦେଖା ହୋଇଗଲା । ମୋ ଗାଡ଼ି ସାର୍‌ଙ୍କୁ ଦେଖୁ ଦେଖୁ ଅଟକି ଗଲା । ମୁଁ ସାର୍‌ଙ୍କୁ ନମସ୍କାର କରି ତାଙ୍କ ଭଲମନ୍ଦ ପଚାରିଲି । ସାର୍ କହିଲେ, ଭଲ ମନ୍ଦ ସଂସାରର ନିୟମ । ତେବେ ମୁଁ ଭଲ ଅଛି । ଆସନ୍ତା ମାର୍ଚ୍ଚ ୧୩ରେ ମୁଁ ଚାକିରିରୁ ଅବସର ନେବି । କଥାଟି ମୋତେ ହତଚକିତ କରିଦେଲା । ସାର୍ ଏତେ ଶିଘ୍ର ଅବସର ନେବା ପରି ଦେଖାଯାଉ ନଥିଲେ । ମୁଁ ତାଙ୍କ କଥାକୁ ବିଶ୍ୱାସ କଲି ନାହିଁ । ମାଟ୍ରିକ୍ ସାର୍ଟିଫିକେଟରେ ଜନ୍ମତାରିଖ ଭୁଲ୍ ଲେଖାଯାଇଥିବାରୁ ସେ ବର୍ଷକ ଆଗରୁ ଅବସର ନେଉଛନ୍ତି ବୋଲି କହିଲେ । ତା ପରେ କ'ଣ କରିବେ ? ଏଠି ରହିବେ ନାଁ ଅନ୍ୟ କେଉଁଠି ରହିବେ ପଚାରିଲି । ସାର୍ କହିଲେ ଗାଁରେ ରହିବି ।

ତାଙ୍କ କଥାବାର୍ତ୍ତାରୁ ଜାଣିଲି, ଗାଁ ପ୍ରତି ତାଙ୍କର ବଡ ଦୁର୍ବଳତା । ଗାଁ ମାଟିକୁ ସେ ବହୁତ ଭଲ ପାଆନ୍ତି । କୁସୁପୁର ଏକ ପ୍ରତିଷ୍ଠିତ ଗାଁ । ସହରର ସବୁ ସୁବିଧା ସୁଯୋଗ ରହିଛି । ତେଣୁ ସେ ଗାଁରେ ରହିବାକୁ ସ୍ଥିର କରିଛନ୍ତି । ମୁଁ ଭାବି ନଥିଲି ସାର୍ ଏତେ ଶିଘ୍ର ଏ ସ୍ଥାନ ଛାଡ଼ି, ଆମମାନଙ୍କୁ ଛାଡ଼ି ଚାଲିଯିବେ ବୋଲି । ମୁଁ ସାର୍‌ଙ୍କୁ କହିଥିଲି ଅବସର ପରେ ସେମିଳିଗୁଡ଼ାରେ କିଛି ଦିନ ରହିଯିବା ପାଇଁ । କାରଣ ସେ ଯେଉଁ ବାତାବରଣ ଏଠି ସୃଷ୍ଟି କରିଥିଲେ ତାହା ତାଙ୍କ ଅବର୍ତ୍ତମାନରେ ପୂରଣ ହେବାକୁ ଅନେକ ଦିନ ଲାଗିବ । ପୂରଣ ହୋଇ ପାରିବ କି ନାହିଁ ସମୟ କହିବ । ସାର୍ ଭାବପ୍ରବଣ ହୋଇ ସ୍ମିତ ହସଟିଏ ହସି ଦେଇ କହିଲେ, ହଉ ଦେଖିବା ।



Digitized by srujanika@gmail.com

ସାର୍‌ଙ୍କ ସେଇ 'ହଉ ଦେଖିବା' ଶବ୍ଦଟି ମୋ ଭିତରେ ଆଶାର କିରଣ ଦେଖାଉଥିଲେ ମଧ୍ୟ ମନରେ ଆନନ୍ଦ ଦେଉ ନଥିଲା । କାରଣ ମୁଁ ଜାଣିଛି ସାର୍ ଏ ସ୍ଥାନ ଛାଡ଼ି ଚାଲିଯିବେ । ସିଏ ଯାହା ଥରେ ମନରେ ଭାବି ନିଅନ୍ତି, ତାହା କାର୍ଯ୍ୟକାରୀ କରନ୍ତି । ମୋର ଆଉ ତାଙ୍କ ସହିତ ଦେଖା କି କଥାବାର୍ତ୍ତା ହୋଇପାରିବ ନାହିଁ । ସାର୍‌ଙ୍କୁ ଆଉ କୌଣସି ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଦେଖିବାର ସୁଯୋଗ ମିଳିବ ନାହିଁ । ମନଟା ମୋର ବହୁତ ଦୁଃଖ ହେଲା । ସୁନାବେଡ଼ାର ପାଣି ପବନ ସବୁବେଳେ ସାର୍‌ଙ୍କ ଅନୁପସ୍ଥିତି ଅନୁଭବ କରିବ । କାରଣ ସୁନାବେଡ଼ାର ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ସେ ଯାହା କରିଛନ୍ତି ତାହା ସବୁବେଳ ଅନ୍ୟମାନଙ୍କ ପାଇଁ ଉଦାହରଣ ହୋଇ ରହିବ । ଏରୋନଟିକ୍‌ସ ମହାବିଦ୍ୟାଳୟରେ ଦୀର୍ଘ ୨୯ ବର୍ଷ କର୍ମମୟ ଜୀବନ ଅତିବାହିତ କରିବା ସହିତ କୋରାପୁଟର ପାଣି ପବନ ସହିତ ସେ ଓତଃପ୍ରୋତ ଭାବେ ଏପରି ଜଡ଼ିତ ହୋଇଛନ୍ତି ଯେ ତାଙ୍କ ଅନୁପସ୍ଥିତିରେ ଅନୁଷ୍ଠାନଗୁଡ଼ିକ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ଅସମ୍ଭବ ପରି ମନେହୁଏ ।

ସେ କେବଳ ଜଣେ ଆଦର୍ଶ ଅଧ୍ୟାପକ ନଥିଲେ, ସେ ଜଣେ ସୁସାହିତ୍ୟିକ ଓ ସୁସଙ୍ଗଠକ ଥିଲେ । ଜଣେ ମିଷ୍ଟଭାଷୀ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସେ ଯେପରି ଅଗଣିତ ଛାତ୍ରଙ୍କ ହୃଦୟରେ ସ୍ଥାନ ପାଇବେ, ସେହିପରି ଜଣେ ସୁସାହିତ୍ୟିକ ଭାବେ ସମଗ୍ର ଓଡ଼ିଶାବାସୀଙ୍କ ଅନ୍ତରରେ ଆଦରର ପାତ୍ର ହୋଇ ରହିବେ । ମୋ ବିଚାରରେ ସେ ଜଣେ ବ୍ୟକ୍ତି ନୁହଁନ୍ତି, ଜଣେ ଅନୁଷ୍ଠାନ । ସେ ଯେଉଁଠି ଥାଆନ୍ତୁ, ଜଗନ୍ନାଥଙ୍କ ଆଶୀର୍ବାଦରୁ ସପରିବାର ଭଲରେ ଥାଆନ୍ତୁ । ଏହାହିଁ ମୋର ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ଅଧ୍ୟକ୍ଷ
ସୁନାବେଡ଼ା ମହିଳା ମହାବିଦ୍ୟାଳୟ
ସୁନାବେଡ଼ା



Digitized by srujanika@gmail.com

# ଗବେଷଣାର ନାୟକ:
# ଡକ୍ଟର ବସନ୍ତ କିଶୋର ସାହୁ

**ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ**

ଓଡ଼ିଆ ଶିଶୁ ସାହିତ୍ୟ ଜଗତର ଗବେଷକ, ଏକନିଷ୍ଠ ଆଲୋଚକ, ମୌଳିକ ରଚନାକାର, 'ଚିରବସନ୍ତ', ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହିତ ମୋର ଘନିଷ୍ଠ ପରିଚିତି ରହିଛି । ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ସଭାସମିତି, ଆଲୋଚନାଚକ୍ର ତଥା ସମ୍ବର୍ଦ୍ଧନା ସଭାମାନଙ୍କରେ ତାଙ୍କ ସହିତ ମୁହାଁମୁହିଁ ଭେଟ ହୋଇଗଲେ, ତାଙ୍କର ମୋ ପ୍ରତି ସମ୍ମାନବୋଧ, ବିନମ୍ରତା ଏବଂ ବନ୍ଧୁବତ୍ସଳତା ମୋତେ ମୁଗ୍ଧ କରିଥାଏ । ବିଶେଷ କରି ସେ ସ୍ୱର୍ଗତ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ପ୍ରତିଷ୍ଠିତ ମାଣିକ ବିଶ୍ୱନାଥ ଦାତବ୍ୟ ସ୍ମୃତିନ୍ୟାସ ତରଫରୁ ଅନୁଷ୍ଠିତ ବାର୍ଷିକ ସଭା ସମିତିରେ ଯୋଗ ଦିଅନ୍ତି ଓ ମୋର ସେଠାରେ ତାଙ୍କ ସହିତ ସାକ୍ଷାତ ହୁଏ । ନ୍ୟାସ ଦ୍ୱାରା ପ୍ରକାଶିତ ପୁସ୍ତକର ଲେଖକ ଭାବରେ ମୋର ତାଙ୍କ ସହିତ ଘନିଷ୍ଠତା ବୃଦ୍ଧି ପାଇଥିଲା ।

ଡକ୍ଟର ସାହୁ, ଓଡ଼ିଆ ଶିଶୁ ସାହିତ୍ୟର ମୂଳ ଭିତ୍ତିଭୂମି ଲୋକସାହିତ୍ୟ ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଲାଭ କରିଛନ୍ତି । ତାଙ୍କ ଗବେଷଣା ସନ୍ଦର୍ଭଟି 'ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ' ଶିରୋନାମାରେ ପୁସ୍ତକ ଆକାରରେ ୧୯୯୬ ମସିହାରେ ପ୍ରକାଶିତ । ସେଥିରୁ ଖଣ୍ଡିଏ ମୋତେ ୧୪/୧/୧୯୯୭ରେ ପ୍ରୀତ୍ୟୁପହାର ଦେଇଛନ୍ତି । ପୁସ୍ତକଟି ନିଶ୍ଚିତରେ ନୂତନ ପିଢ଼ିର ଗବେଷକମାନଙ୍କ ପାଇଁ ରେଫ୍ରେନସ୍ ପୁସ୍ତକ ହୋଇ ରହିଅଛି । ଦୀର୍ଘ ଦିନ ଧରି ସେ ସୁନାବେଡ଼ାସ୍ଥ 'ବନଫୁଲ ସାହିତ୍ୟ ପରିଷଦ' ଓ ବନପ୍ରଭା ସାହିତ୍ୟ ସଂସଦ' ସହିତ ଜଡ଼ିତ ଥିବାରୁ ଏହି ସଂସ୍ଥାମାନଙ୍କ ତରଫରୁ ଅନେକ ପୁସ୍ତକ ଓ ପତ୍ରପତ୍ରିକା ତାଙ୍କ ବଳିଷ୍ଠ ଉଦ୍ୟମରେ ପ୍ରକାଶ ଲାଭ କରିଛି ।

ଜଣେ ସଫଳ ସାରସ୍ୱତ ସଂଗଠକ, ସୃଜନଶୀଳ ସ୍ରଷ୍ଟା, ସର୍ବୋପରି ବୃତ୍ତିରେ ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସେ ନିଜର ଦାୟିତ୍ୱ ନିଷ୍ଠାର ସହିତ ତୁଲାଇ ସମସ୍ତଙ୍କର ପ୍ରିୟଭାଜନ ହୋଇଛନ୍ତି । ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ତାଙ୍କର ବହୁ ଶୁଭେଚ୍ଛୁ ବନ୍ଧୁ, ଶିଶୁ ଓ ବିଦ୍‌ଗଧ ସାହିତ୍ୟିକ ବନ୍ଧୁ ଅଛନ୍ତି । ରମଣ ମହର୍ଷି ଏକଦା କହିଥିଲେ



Digitized by srujanika@gmail.com

'ଦୂରତାର କିଛି ଅର୍ଥ ନାହିଁ । ପୋଖରୀରେ ବେଙ୍ଗ ସବୁ ପଦ୍ମବନ ଚାରିପଟେ ଘୂରି ବୁଲୁଥାନ୍ତି । ହେଲେ କ'ଣ ପାଆନ୍ତି ? ମାତ୍ର ଦୂରାଗତ ମହୁମାଛି ଆସି ମଧୁ ସଂଗ୍ରହ କରି ଚାଲିଯାଏ । ଡକ୍ଟର ସାହୁ ସୁଦୂରରେ ଅବସ୍ଥିତ ସୁନାବେଡ଼ା ପରି ସ୍ଥାନକୁ ନିଜର କର୍ମକ୍ଷେତ୍ର ଭାବେ ବାଛିନେଲେ ମଧ୍ୟ, ଉପଯୁକ୍ତ ସମୟରେ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ କାର୍ଯ୍ୟକ୍ରମରେ ଭାଗ ନେଇ ନିଜର ସମ୍ପର୍କକୁ ସମତୁଲ ରଖିଛନ୍ତି । ତାଙ୍କର ଭଦ୍ରଜନୋଚିତ ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରିଥାଏ ।

ଆଜି ତାଙ୍କର ଅବସର ଉପଲକ୍ଷେ ତାଙ୍କର ଶୁଭେଚ୍ଛୁମାନେ ତାଙ୍କ ପାଇଁ ଏକ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ କରୁଥିବା ଜାଣି ଖୁସି ହେଲି । ଏହା ଜଣେ ପ୍ରକୃତ ସାହିତ୍ୟିକ ପ୍ରତି ଶ୍ରଦ୍ଧାର ପରିଚୟ ପ୍ରଦାନ କରେ । ଏହା ଶୁଣି ମୁଁ ଆନନ୍ଦିତ ଓ ମୋର ଶୁଭେଚ୍ଛା ଜଣାଉଛି । ଏବେ ଲମ୍ବା ସମୟ ତାଙ୍କ ହାତରେ । ସେ ଦୀର୍ଘାୟୁଷ ଲାଭ କରନ୍ତୁ । ସାରସ୍ୱତ ସୃଷ୍ଟି ମାଧ୍ୟମରେ ଓଡ଼ିଆ ଶିଶୁ ସାହିତ୍ୟକୁ ଆହୁରି ପରିପୁଷ୍ଟ ଓ ପୁଷ୍କଳ କରନ୍ତୁ । ଜୟ ଜଗନ୍ନାଥ ।



ଗୁଗୁପାଆଁଚି, ୩୫, ବସନ୍ତ ବିହାର
ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ , ଭୁବନେଶ୍ୱର -୧୮






Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ପାଇଁ

**ଡକ୍ଟର ଅନନ୍ତ ନାରାୟଣ ମିଶ୍ର**

ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ ୧୯୮୪ ମସିହାରେ । ବ୍ୟକ୍ତିତ୍ୱ ଗମ୍ଭୀର । ଅଳ୍ପଭାଷି, ହାସ୍ୟ ବିରହିତ । ତଥାପି ସମସ୍ତଙ୍କ ଦ୍ୱାରା ଆଦୃତ ହେଉଥିଲେ ସିଏ । ଛାତ୍ରମାନଙ୍କୁ ନେଇ ପ୍ରଥମ ବିଶ୍ୱକର୍ମା ପୂଜାର ଆୟୋଜନ କରିଥିଲେ ବସନ୍ତ ବାବୁ ଏରୋନଟିକ୍ସ ମହାବିଦ୍ୟାଳୟରେ । ପ୍ରଥମେ ସେ ସେକ୍ରେଟାରିଆଲ୍ ପ୍ରାକ୍ଟିସ ବିଭାଗରେ କାର୍ଯ୍ୟ କରୁଥିଲେ । ପରବର୍ତ୍ତୀ କାଳରେ ନିଜ ଯୋଗ୍ୟତା ବଳରେ ଓଡ଼ିଆ ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ ଅନ୍ୟମାନଙ୍କ ସହିତ । ସମସ୍ତେ ଆଶ୍ୱସ୍ତ ହୋଇଥିଲୁ । ମୋତେ ସେ ଟାଇପ୍ ଶିଖେଇ ଥିଲେ ପାଖରେ ବସି ।

ପରବର୍ତ୍ତୀ ସମୟ ମାନଙ୍କରେ ସେ ମୋତେ ଓ ମୋ ସ୍ତ୍ରୀ ଉଭୟଙ୍କୁ ଲେଖିବାକୁ, ପଢ଼ିବାକୁ ଓ ଓଡ଼ିଆ ସାହିତ୍ୟକୁ ଭଲ ପାଇବାକୁ ପ୍ରୋତ୍ସାହିତ କରିଥିଲେ । ମୋ ପତ୍ନୀ ଗଳ୍ପ ଲେଖନ୍ତି । ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଓ ରେଡ଼ିଓରେ ପ୍ରସାରିତ ୧୦ଟି ଗଳ୍ପକୁ ନେଇ 'ମଧୁସ୍ୱପ୍ନ'କୁ ପୁସ୍ତକ ଆକାରରେ ମୁଦ୍ରଣ କରିବା ଓ ଉନ୍ମୋଚନ କରିବାର ଶ୍ରେୟ ବସନ୍ତ ବାବୁଙ୍କର । ତା ଛଡା ମୋର ଏମ୍.ଫିଲ୍.ର ନିବନ୍ଧ "Glimpses of Maritime History of Ancient Odisha" (ଗ୍ଲିମ୍ପସେସ୍ ଅଫ୍ ମାରିଟାଇମ୍ସ ହିଷ୍ଟ୍ରି ଅଫ୍ ଆନ୍‌ସିଏଣ୍ଟ ଓଡ଼ିଶା)କୁ ପୁସ୍ତକ ଆକାରରେ ପ୍ରକାଶ କରିବାରେ ତାଙ୍କର ଅକୁଣ୍ଠ ସହାୟତା ଭୁଲିବାର ନୁହେଁ ।

ସମଗ୍ର ପ୍ରଦେଶରେ ଜଣେ ବିଶିଷ୍ଟ ଶିଶୁ ସାହିତ୍ୟିକ ରୂପରେ ପ୍ରତିଷ୍ଠା ଲାଭ କରିବା ସହିତ ଡକ୍ଟର ବସନ୍ତ କିଶୋର ସାହୁ ଏକ ଦକ୍ଷ ସଂଗଠକ, ସମ୍ପାଦକ ଓ ଗବେଷକ ମଧ୍ୟ । ଆମ ମହାବିଦ୍ୟାଳୟରେ ବିଭିନ୍ନ ସଭାସମିତି ଓ ଉତ୍ସବ ପରିପ୍ରେକ୍ଷୀରେ ଅନେକ କାର୍ଯ୍ୟକ୍ରମରେ ସେ ସଂଶ୍ଳିଷ୍ଟ ରହି ସବୁ କାମର ଟିକିନିଖି ତଦାରଖ କରନ୍ତି । ଏହାଛଡ଼ା ସୁନାବେଡ଼ା, ଦାମନଯୋଡ଼ି ଏବଂ ଅଭିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ସ୍ଥାନମାନଙ୍କରେ ଓଡ଼ିଆ ଭାଷା ଓ ସାହିତ୍ୟର ପୁଷ୍ଟି ଓ ପ୍ରସାର ନିମନ୍ତେ ତାଙ୍କର ଅତୁଳନୀୟ ଅବଦାନ ରହିଅଛି । ଏକ ସାଧାରଣ କାର୍ଯ୍ୟକ୍ରମକୁ ରୁଚିପୂର୍ଣ୍ଣ, ଅନନ୍ୟ ଓ ଅସାଧାରଣ ରୂପରେ



Digitized by srujanika@gmail.com

ପର୍ଯ୍ୟବେଶିତ କରିପାରିବାର ଦକ୍ଷତା ବସନ୍ତବାବୁଙ୍କ ପାଖରେ ଗଚ୍ଛିତ ଅଛି ।

ଅତି ଅଳ୍ପ ସମୟ ମଧ୍ୟରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ବ୍ୟଞ୍ଜନର ଆୟୋଜନ କରି ଅତିଥି ଓ ବନ୍ଧୁମାନଙ୍କୁ ଆପ୍ୟାୟିତ କରିବା ପାଇଁ ସସ୍ତ୍ରୀକ ବସନ୍ତବାବୁ ସର୍ବଦା ଉତ୍ସୁକ ଥାଆନ୍ତି । ଖରା, ବର୍ଷା, ଶୀତ, ଝଡ଼ ଯାହା ହୋଇଥାଉ ପଛେ ଘରେ ବନ୍ଧୁ ପହଞ୍ଚିଲେ ସମସ୍ତଙ୍କର ତେଣା ଲାଗିଯାଏ ଯେମିତି । ଉନ୍ନତ ମନସ୍କ ସମ୍ପନ୍ନ ପ୍ରଥିତଯଶା ଡକ୍ଟର ବସନ୍ତ ସାହୁ, ତାଙ୍କ ସହଧର୍ମିଣୀ ଶ୍ରୀମତୀ ବୀଣାପାଣି ସାହୁ (ଯାହାଙ୍କୁ ମୋ ସ୍ତ୍ରୀ 'ବାସନ୍ତୀ' ବୋଲି ହିଁ ସମ୍ବୋଧନ କରନ୍ତି), ପୁଅ ଆୟୁଷ୍ମାନ ଗୀତିମୟ ସାହୁ(ବବୁଲ୍) ଓ ଝିଅ ବୁଲ୍‌ବୁଲ୍ ପ୍ରିୟଦର୍ଶିନୀ ସାହୁ  ସମସ୍ତଙ୍କୁ ଆମର ଏହି ପରିପ୍ରେକ୍ଷୀରେ ଅଶେଷ ଆଶୀର୍ବାଦ ସହ ବିନମ୍ର କୃତଜ୍ଞତା ।

ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା, ବସନ୍ତ ବାବୁ, ମାଡାମ୍, ବବୁଲ୍, ବୁଲ୍‌ବୁଲଙ୍କ ଜୀବନ କୁସୁମିତ ହେଉ । ଦୀର୍ଘାୟୁ ହୁଅନ୍ତୁ ସମସ୍ତେ । ସୁଖୀ ହୁଅନ୍ତୁ ସପରିବାର ।




ପୂର୍ବତନ ଅଧ୍ୟକ୍ଷ

ଏରୋନଟିକ୍‌ସ ମହାବିଦ୍ୟାଳୟ

ଓ ସଂପ୍ରତି

ଉନ୍ନୟନ ଅଧିକାରୀ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜ ବିହାର, ବ୍ରହ୍ମପୁର





Digitized by srujanika@gmail.com

# ସ୍ମୃତିର ଆଲେଖ୍ୟ

ଅରୁଣ କାନୁନ୍‌ଗୋ

ମନେ ପଡିଯାନ୍ତି ବସନ୍ତ କିଶୋର
ଶିଶୁଙ୍କର ସିଏ ସାଥୀ,
ସାହିତ୍ୟ ଜଗତେ ଅନନ୍ୟ ପ୍ରତିଭା
କାଳଜୟୀ ତାଙ୍କ କୃତି ॥

ଜାଣି ନ ଥିଲି ଓଡ଼ିଶାର ବିଶିଷ୍ଟ ଶିଶୁ ସାହିତ୍ୟିକ ବସନ୍ତ ସାର୍‌ଙ୍କର ଅବସର ସମୟ ହୋଇଗଲାଣି । ମନେ ନାହିଁ ବହୁ ବର୍ଷ ତଳେ ସାର୍‌ଙ୍କର ସାକ୍ଷାତକାରଟିଏ 'ସମ୍ବାଦ' ରବିବାର ସଂଖ୍ୟାରେ ପ୍ରକାଶ କରିଥିଲି । ଏ ଭିତରେ ସାର୍ ବହୁ ବାଲିବନ୍ଧ ଅତିକ୍ରମ କରି ବିରାଟ ପାହାଡ଼ରେ ପରିଣତ ହେଲେଣି । ବସନ୍ତ କିଶୋର ସାହୁ ୧୯୫୬ ମସିହାରେ କଟକ ଜିଲ୍ଲାର କୁସୁପୁର ଗ୍ରାମରେ ସରସ୍ୱତୀ ପୂଜା ଦିନ ବାପା ବୀରକିଶୋର ଓ ମା' ମଲ୍ଲୀ ଦେବୀଙ୍କ କୋଳରୁ ଜନ୍ମ ଗ୍ରହଣ କରିଥିଲେ । ସତରେ ମା' ସରସ୍ୱତୀ ତାଙ୍କୁ ଲେଖନୀ ଚାଳନା କରିବା ପାଇଁ ଆଶୀର୍ବାଦ ଦେଇଥିଲେ । ନ ହେଲେ ଜଣେ ଲୋକ କାହାର ସାହାଯ୍ୟ ନ ନେଇ ଏକଲା ଚଲୋରେ ନ୍ୟାୟରେ ୧୯୭୨ ରୁ ୨୦୧୨ ଦୀର୍ଘ ୪୦ ବର୍ଷ ଧରି ସାହିତ୍ୟର ବିଭିନ୍ନ ବିଭାଗକୁ ଋଦ୍ଧିମନ୍ତ କରି ଆସିଛନ୍ତି କିପରି ? ତାହା ତାଙ୍କ ରଚନାବଳୀରୁ ପ୍ରମାଣିତ ।

ଖୁବ୍ କମ୍ ଲୋକ ସାହିତ୍ୟ କ୍ଷେତ୍ରରେ ସତ କଥାକୁ ଲେଖା ମାଧ୍ୟମରେ ଉପସ୍ଥାପିତ କରିଥାନ୍ତି । ସେଥିରୁ ଅନ୍ୟତମ ହେଉଛନ୍ତି ବସନ୍ତ କିଶୋର । ତାଙ୍କ ସ୍ମୃତିକୁ ବଖାଣୁ ଥିବା ଏ ଲେଖକ 'ବସନ୍ତ କିଶୋର ରଚନାବଳୀ' ଦ୍ୱିତୀୟ ଖଣ୍ଡ ପୃଷ୍ଠା ୨୩୫ରେ ପ୍ରକାଶିତ 'ସ୍ମୃତି ବିସ୍ମୃତି' ପଢ଼ିଲା ପରେ ତାହା ଅନୁଭବ କରିଛି । ସେ ଲେଖାଟି ଅତ୍ୟନ୍ତ ଚମତ୍କାର ହୋଇଛି ।

ଗଳ୍ପରେ ଲେଖକଙ୍କ ଜୀବନ ଚିତ୍ର ପ୍ରକାଶ ପରି ମନେ ହୁଏ । ଏଥିରେ ଗଳ୍ପର ନାୟକ ଜଣେ ସହପାଠିନୀଙ୍କ ରୂପ, ଯୌବନ ଓ ଧନ କେବେ ବାନ୍ଧି ରଖି ପାରିନି । ସେ ତାଙ୍କ ବାପା ଓ ମା' ଏବଂ ନିଜେ ଆର୍ଥିକ ଅସୁବିଧାର ସମ୍ମୁଖୀନ ହୋଇଥିଲେ ତା'ର ଉଦାହରଣ ଦେଇଛନ୍ତି । ସେ କେତେ ତାଙ୍କ ବାପା ଏବଂ ମା'ଙ୍କୁ ଭଲ ପାଆନ୍ତି ଓ ଭକ୍ତି କରନ୍ତି ତାହା ଆଜି ଏବଂ ଆଗାମୀ ପିଢ଼ି ପାଇଁ ଧେୟ ହେବା ଉଚିତ୍ ।



Digitized by srujanika@gmail.com

ବସନ୍ତ କିଶୋର ରଚନାବଳୀ (ଦ୍ୱିତୀୟ ଖଣ୍ଡ) ଓଡ଼ିଆ ସାହିତ୍ୟର ଏକ ଅନନ୍ୟ ଗ୍ରନ୍ଥ । ଏଥିରେ ମାତୃଭୂମି ଓ ମାତୃଭାଷା ପ୍ରତି ମମତ୍ୱବୋଧ, ଦେଶବାସୀଙ୍କ ପ୍ରାଣର କଥା ଓ ଆତ୍ମାର ଗାଥା ବିଷୟରେ ବର୍ଣ୍ଣନା କରାଯାଇଛି । ବହୁ ଘାତ ପ୍ରତିଘାତରେ ଲେଖନୀ ଚାଳନା କରିଥିବା ସାରସତ ସାଧକଙ୍କ ସଂଖ୍ୟା ସୀମିତ । ମାତ୍ର ସେମାନଙ୍କ କୃତି କାଳଜୟୀ । ସେହି ସ୍ରଷ୍ଟାଙ୍କ ମଧ୍ୟରେ ବସନ୍ତ କିଶୋର ଅନ୍ୟତମ । ସେହିପରି ସେ କୋରାପୁଟ ସଂସ୍କୃତି ପୁସ୍ତକ ମୁଖବନ୍ଧରେ ଲେଖିଛନ୍ତି, କୋରାପୁଟ ମାଟିର ଏକ ମହକ ଅଛି । ଆତ୍ମୀୟତା ଅଛି । ଏଠି କେବଳ ପ୍ରକୃତିର ଆକର୍ଷଣ ନାହିଁ, ଅଛି ଜୀବନର ଆକର୍ଷଣ । ଏଭଳି ଭାବେ ତାଙ୍କ ଲେଖାରେ ଓଡ଼ିଶାର ଜନଜୀବନ ଚିତ୍ର ପ୍ରତିଫଳିତ ହୋଇଛି ।

ସେ ବହୁଦିନ ନିରଭିମାନ ସଦାଚରଣନିଷ୍ଠ ଆଚାର୍ଯ୍ୟ ଭାବରେ ତାଙ୍କର କଲ୍ୟାଣମୟ ସ୍ନିଗ୍ଧ ପ୍ରଭାବ ବଢ଼ାଇ ଚାଲିଥାନ୍ତୁ । ସେ ଆଜି ଆମର ଗୁରୁ ପ୍ରତିମ । ବିଦ୍ୟାରେ ତଥା ବିଶ୍ୱାସ ଓ ଆଚରଣରେ ଗୁରୁ ପଦାରୁଢ଼ ଯଥାର୍ଥ ଶିକ୍ଷକ । ତାଙ୍କ ସାଧନା ଅନୁକରଣୀୟ । ଏମିତି ଜଣେ ଜଣେ ପୂଜ୍ୟ ଗୁରୁ ଜୀବିତ ଥିଲେ କେବଳ କୁଳ ପବିତ୍ର ହୁଏ ନାହିଁ କି ଜନନୀ କୃତାର୍ଥ ହୁଅନ୍ତି ନାହିଁ, ଧରଣୀ ବି ପୁଣ୍ୟବତୀ ହୁଏ ।

ଶେଷରେ ଏତିକି କହିବି ତାଙ୍କ ସ୍ନେହ ସବୁବେଳେ ଅକପଟ ଓ କର୍ତ୍ତବ୍ୟରତ । ଦୂରରେ ଥିଲେ ବି ସେହି ସ୍ନେହ ସମ୍ପଦରେ ଆମେ ଧନ୍ୟ ହୋଇଛୁ । ଭାଷା ମୃଦୁ ମଧୁର, ମିଠା ଓ ଆନ୍ତରିକ । ସେଥି ଲାଗି ତାଙ୍କ ସହିତ କଥାବାର୍ତ୍ତା କଲେ ତୀର୍ଥ ସ୍ଥାନର ଶାନ୍ତି ଓ ସନ୍ତୋଷ ମିଳେ । ସାର୍ 'ତୋମାର କୀର୍ତ୍ତିର ଚେୟେ ତୁମି ଯେ ମହତ ।' ଲେଖକ ଫୋନ୍ କଥାବାର୍ତ୍ତାରେ ସାର୍‌ଙ୍କ ଭାବମୂର୍ତ୍ତି ଦେଖିପାରେ । ଆଚାର୍ଯ୍ୟ ଚିତ୍ତର ବିଗ୍ରହବନ୍ତ ପୁଣ୍ୟ ପୁରୁଷ ସେ-ଭଗବାନ ଏମିତି ଆଚାର୍ଯ୍ୟ ଚିତ୍ତରୂପ କଳେବର ଧାରଣ କରି ଦେହୀମାନଙ୍କ ଅନ୍ତର ଓ ବାହାରର ସମସ୍ତ ଅଶୁଭ ନାଶ କରିଥାନ୍ତି । ଡକ୍ଟର ସାହୁ ସେହି ଆଚାର୍ଯ୍ୟ ଚିତ୍ତ ରୂପ ସଜ୍ଜନ । ସେ ଏହି ଅବସର ସମୟରେ ମୋର ଭକ୍ତିପୂତ ପ୍ରଣାମ ଗ୍ରହଣ କରନ୍ତୁ । ଦୀର୍ଘ ନିରାମୟ ଜୀବନ ଲାଭକରି ଚାରି ପାଖର ଅଶୁଭ ବିନାଶୁ ଥାନ୍ତୁ । ଲେଖନୀ ଚାଳନାରେ ବିଦ୍ରୋହୀ ବିଶ୍ୱାମିତ୍ର ସାଜନ୍ତୁ । ଆଜିର ଦିନରେ ପ୍ରଭୁ ଜଗନ୍ନାଥଙ୍କ ପାଖରେ ମୋର ଏତିକି ପ୍ରାର୍ଥନା ।



ସବ୍ ଏଡିଟର, ଧରିତ୍ରୀ
ଉପାସନା, ୨୫୬୦-ବି-କେଦାରଗୌରୀ ବିହାର,
ଭୁବନେଶ୍ୱର-୧୪
ମୋ-୯୯୩୭୫୮୨୧୩୪



Digitized by srujanika@gmail.com

# କର୍ମବୀର-ବସନ୍ତ କିଶୋର

**ଇ. ଅଭୟ ସୂତାର**

ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁଙ୍କ ସୃଜନୀର ମୁଁ ଜଣେ ମୁଗ୍ଧ ପାଠକ । ମୋ ମତରେ ସେ ଜଣେ ପରୋପକାରୀ, ସମ୍ବେଦନଶୀଳ, ନିଷ୍କପଟ, ଧୈର୍ଯ୍ୟଶୀଳ, ମିଷ୍ଟଭାଷୀ, ପ୍ରଚଣ୍ଡ ପ୍ରତିଭାର ଅଧିକାରୀ, ସମୟାନୁବର୍ତ୍ତୀ, ନୀତିନିଷ୍ଠ ଓ ଶୃଙ୍ଖଳିତ ମଣିଷ । ଓଡ଼ିଶାର ଜଣେ ଖ୍ୟାତିସମ୍ପନ୍ନ ଶିଶୁ ସାହିତ୍ୟ ସ୍ରଷ୍ଟା, କୃତବିଦ୍ ଗବେଷକ, ଦକ୍ଷ ସାରସ୍ୱତ ସଙ୍ଗଠକ, କର୍ମବୀର, ଅନେକ ସାରସ୍ୱତ ଅନୁଷ୍ଠାନର ଅନନ୍ୟ ରୂପକାର ହିସାବରେ ଚିର ନମସ୍ୟ । ବସନ୍ତ ଭାଇଙ୍କର ସାହିତ୍ୟ ସୃଷ୍ଟି ଏପରି ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଯେ ସେଭଳି ଜଣେ ସ୍ରଷ୍ଟା ଆମ ଓଡ଼ିଆ ଶିଶୁ ସାହିତ୍ୟରେ ବହୁ କମ୍ ଅଛନ୍ତି । ତାଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱ ସମ୍ପର୍କରେ ଯେତେ ଆଲୋଚନା କଲେ ବି, କିଛି ଅସମ୍ପୂର୍ଣ୍ଣ ରହିଯିବ ବୋଲି ମୋର ମନେହୁଏ ।

ସେ ସଦା ସ୍ୱପ୍ନ ଦେଖୁଛନ୍ତି ଶିଶୁମାନଙ୍କର ପରିବେଶ ଓ ଉଜ୍ଜ୍ୱଳ ଭବିଷ୍ୟତକୁ ନେଇ ତଥା ଏକ ସ୍ୱଚ୍ଛ ସୁନ୍ଦର ପୃଥିବୀ ଗଠନ ପାଇଁ । ତାଙ୍କ ଠାରେ ମୁଁ ଅନେକ ବିଶେଷ ଲକ୍ଷଣ ଲକ୍ଷ୍ୟ କରିଛି । ସାମ୍ପ୍ରତିକ ଓଡ଼ିଆ ଶିଶୁ ସାହିତ୍ୟ ରଚନା ଦିଗରେ ତାଙ୍କର ମୂଲ୍ୟବୋଧ, ଆଦର୍ଶ, ନମନୀୟ ଚରିତ୍ର ଓ ବାର୍ତ୍ତା ସ୍ପଷ୍ଟ ବାରିହୋଇ ପଡେ । ତାଙ୍କର ବହୁ ପୁସ୍ତକ ପଢ଼ିବାର ସୁଯୋଗ ପାଇଛି । ତାଙ୍କ ବର୍ଣ୍ଣିତ ଚରିତ୍ରଗୁଡ଼ିକ ବାସ୍ତବଧର୍ମୀ, ସହଜ ଓ ଅତ୍ୟନ୍ତ ସରଳ, ସାବଲୀଳ, ବୋଧଗମ୍ୟ, ବାର୍ତ୍ତାବହ ଓ ଶିକ୍ଷଣୀୟ । କୌଣସି ପୁସ୍ତକରେ ଉଦ୍ଭଟ ପରିକଳ୍ପନାକୁ ସୁଯୋଗ ଦିଆଯାଇ ନାହିଁ । ଭାଷା ତାଙ୍କର ଅତି ଆପଣାର । ସାହିତ୍ୟ ଠାରୁ ସେ ଦୂରେଇ ଯାଇପାରନ୍ତି କିନ୍ତୁ ସାହିତ୍ୟ ତାଙ୍କ ଠାରୁ ଦୂରେଇ ଯାଇପାରିବ ନାହିଁ । କାରଣ ବସନ୍ତ ଭାଇଙ୍କ ସୁଗୁଣ କେବଳ ସହରାଞ୍ଚଳରେ ସୀମିତ ନରହି ଗ୍ରାମାଞ୍ଚଳରେ ମଧ୍ୟ ବିଚ୍ଛୁରିତ ହୋଇସାରିଛି । ତାଙ୍କର ସୁକର୍ମକୁ ଆମେ ପାଥେୟ କରି ସାଧନାରେ ବ୍ରତୀ ହୋଇଛୁ ।

ମନୀନ୍ଦ୍ର ଓ ବସନ୍ତ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଭଦ୍ରକ ମାଟି ପ୍ରତି ତାଙ୍କର ରହିଛି ଅଜସ୍ର ଶ୍ରଦ୍ଧା ଓ ମମତା । ଭଦ୍ରକର ଗୌରବ ପ୍ରଖ୍ୟାତ ଶିଶୁ ସାହିତ୍ୟିକ ଓ ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ପ୍ରତିଷ୍ଠିତ 'ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ'ର ଅନ୍ୟତମ ମୁଖ୍ୟ ପୁରୋଧା ଭାବେ ଦାୟିତ୍ୱ ବହନ କରି ଶିଶୁ ସାହିତ୍ୟ ତଥା ଶିଶୁମାନଙ୍କର



Digitized by srujanika@gmail.com

ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଯେଉଁ ପ୍ରଶଂସନୀୟ ଓ ସମୟ ଉପଯୋଗୀ ପଦକ୍ଷେପ ନେଉଛନ୍ତି, ସେଥିପାଇଁ ଆମେ ଭଦ୍ରକବାସୀ ଡକ୍ଟର ସାହୁଙ୍କ ନିକଟରେ କୃତଜ୍ଞ । ଅନୁଭବ କରିଛି ଓଡ଼ିଶାର ବହୁ ବରିଷ୍ଠ ଓ କନିଷ୍ଠ ଶିଶୁ ସାହିତ୍ୟ ସାଧକଙ୍କ ସହିତ ସୁସମ୍ପର୍କ ଓ ପ୍ରତ୍ୟକ୍ଷ ସହଯୋଗ ରକ୍ଷା କରି ଏବଂ ବହୁ ଅନାଲୋଚିତ ପ୍ରତିଭାଙ୍କୁ ଲୋକଲୋଚନକୁ ଆଣି ଏ ଅନୁଷ୍ଠାନକୁ ଆଜି ରାଜ୍ୟର ଏକ ଅଗ୍ରଣୀ ଶିଶୁ ସାହିତ୍ୟ ଗବେଷଣା ପରିଷଦରେ ପରିଣିତ କରିପାରିଛନ୍ତି । ଡକ୍ଟର ମହାନ୍ତିଙ୍କ ମାନସପୁତ୍ର ଭାବେ ଏହି ଅନୁଷ୍ଠାନର ଖ୍ୟାତି ଆଜି ଯେପରି ସୁଦୂର ପ୍ରସାରୀ, ତାହା କେବଳ ସମ୍ଭବ ହୋଇପାରିଛି ବସନ୍ତଭାଇଙ୍କ ଭଳି ନିଃସ୍ୱାର୍ଥପର, ସହାନୁଭୂତିଶୀଳ, ଲବ୍‌ଧ ପ୍ରତିଷ୍ଠିତ ଗବେଷକ ଓ ସଂସ୍କୃତିର ଉପାସକଙ୍କ ପାଇଁ । ତାଙ୍କର ମହତ୍ୱପୂର୍ଣ୍ଣ ଅବଦାନ ଓ ଜ୍ଞାନଦୀପ୍ତ ବାଣୀ ପାଇଁ ଆମେ ବି ମହାନ ହୋଇଛୁ ।

ଶୁଣିଛି, ସେ ଛାତ୍ର ଜୀବନରୁ ଓଡ଼ିଆ ସାହିତ୍ୟ ଓ ଭାଷା ପ୍ରତି ଆକୃଷ୍ଟ ହୋଇଥିଲେ । ଖୁବ୍ କମ୍ ସମୟ ମଧ୍ୟରେ ଗାଁ ପାଠାଗାରରୁ ବହୁସଂଖ୍ୟାରେ ବିଭିନ୍ନ ପୁସ୍ତକ ଅଧ୍ୟୟନ କରି ସାରସ୍ୱତ ସାଧନା ପ୍ରତି ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ନିଜସ୍ୱ ଶୈଳୀ ଓ ନୂତନ କୌଶଳ ବଳରେ କୋମଳମତି ଶିଶୁଙ୍କ ପାଇଁ ସେ ଏକ ଉଦାହରଣ ହୋଇଗଲେ । ତାଙ୍କ ସାଧନା ଓ ସାହିତ୍ୟ ସମ୍ପର୍କରେ ଏବେ ଆମେ ବିଭିନ୍ନ ପର୍ଯ୍ୟାଲୋଚନା କରୁଛୁ । ମୁଁ ବିଶେଷ ଭାବେ ଲକ୍ଷ୍ୟ କରିଛି ତାଙ୍କ ଠାରେ ଅଛି ସରଳ ଜୀବନଯାତ୍ରା, ଉଚ୍ଚ ଚିନ୍ତା ଓ ଜିଜ୍ଞାସା । ସାରସ୍ୱତ ସାଧନା ପାଇଁ ତାଙ୍କ ମନରେ ଯେଉଁ ତୀବ୍ର ଅଭିଳାଷ ସୃଷ୍ଟି ହୋଇଛି, କେହି ତାକୁ ଅଟକାଇ ପାରିବେ ନାହିଁ । ମଣିର ସ୍ପର୍ଶରେ ଲୁହା ସୁନା ହେଲା ପରି ତାଙ୍କ ସହ ମିଶୁଥିବା ବହୁ ନୂତନ ଲେଖକ ଜୀବନରେ ଭଲ ଓ ଉନ୍ନତ ସାହିତ୍ୟିକ ହୋଇଥିବାର ଦୃଷ୍ଟାନ୍ତ ରହିଛି ।

ଶିଶୁ ସାହିତ୍ୟର ଜଣେ ପାଠକ ହିସାବରେ ବସନ୍ତ ଭାଇଙ୍କ ସୃଷ୍ଟି ଉପରେ ମୋର ସମ୍ପୂର୍ଣ୍ଣ ଆସ୍ଥା ରହିଛି । ଶିଶୁ ସାହିତ୍ୟ ବ୍ୟତୀତ ସେ କବିତା, ପ୍ରବନ୍ଧ, ଗଳ୍ପ ରଚନାରେ ମଧ୍ୟ ସିଦ୍ଧହସ୍ତ । ସାହିତ୍ୟର ଶିଖର ସ୍ଥାନକୁ ଛୁଇଁବା ପାଇଁ ଚେଷ୍ଟିତ ବସନ୍ତ ଭାଇ ନିଶ୍ଚୟ କଠୋର ପରିଶ୍ରମ, ଅକ୍ଳାନ୍ତ ଅଧ୍ୟବସାୟ ଓ ଐକାନ୍ତିକ ଉଦ୍ୟମ ପ୍ରତି ସଚେତନ ଥିବେ । ସୁନାବେଢ଼ାରେ ସେ ନିଜ ପାଇଁ ବ୍ୟସ୍ତ ନଥାନ୍ତି । ମୁଁ ନିଜେ ଦେଖିଛି ଓଡ଼ିଆ ଭାଷା ସାହିତ୍ୟ ଓ ସାରସ୍ୱତ ସଙ୍ଗଠନ ପାଇଁ ନିଜ ଜୀବନକୁ ବାଜି ଲଗାଇ ଦେବାରେ । ସେଠି ସେ ଓଡ଼ିଆ ସାହିତ୍ୟ ପ୍ରଚାର ଓ ପ୍ରସାର ପାଇଁ ସର୍ବଦା ଚେଷ୍ଟିତ । ବହୁ ଅନାଲୋଚିତ ପ୍ରତିଭାକୁ ସେ ଆମ ସହିତ ପରିଚିତ କରାଇ ତାଙ୍କର ଦକ୍ଷତା ଓ ବନ୍ଧୁବତ୍ସଳ ବ୍ୟକ୍ତିତ୍ୱର ପ୍ରମାଣିତ କରିଛନ୍ତି । ସାହିତ୍ୟ ସଭା ଓ ସେମିନାରରେ ସେ କୌଣସି କଥାକୁ ହୀନ ଭାବନ୍ତି ନାହିଁ । ସବୁ କାମରେ ଧୂରନ୍ଧର । ବହୁ ବରିଷ୍ଠ କର୍ମକର୍ତ୍ତାଙ୍କ ମତରେ ସେ ପଦପଦବୀ ପାଇଁ ଲାଳାୟିତ ନ ହୋଇ ନିଜ କର୍ତ୍ତବ୍ୟ ପ୍ରତି ଅତି ସଚେତନ ଥାଆନ୍ତି । କର୍ମ ହିଁ ତାଙ୍କ ଜୀବନ । ଜୀବନ ହିଁ ଏକ ସଂଘର୍ଷ ସରଣୀ ବୋଲି ସେ ବୁଝି ନେଇଛନ୍ତି ।



Digitized by srujanika@gmail.com

ଗତ ବର୍ଷ ସେମିଳିଗୁଡ଼ା ଠାରେ ଆୟୋଜିତ ଓଡ଼ିଆ ଲେଖକ ପାଠକ ସମ୍ମେଳନର ବାର୍ଷିକ ଉତ୍ସବରେ ତାଙ୍କର କାର୍ଯ୍ୟଦକ୍ଷତା ଦେଖିଛି । ଏପରି ଅନୁଷ୍ଠାନ ଓ ସମ୍ବର୍ଦ୍ଧନା ଉତ୍ସବ ବୋଧହୁଏ କଟକ ଭୁବନେଶ୍ୱରରେ ହେଉନାହିଁ । ବହୁ ଦିଗରୁ ତାଙ୍କ କୃତି ଓ କୃତିତ୍ୱ ସହିତ ପରିଚିତ ହୋଇ ତାଙ୍କୁ ପରୀକ୍ଷା କରିଛି । ଜାଣିଛି ପ୍ରକୃତରେ ସେ ଜଣେ ନୀରବ ସ୍ରଷ୍ଟା ଓ କର୍ମବୀର । ବିଭିନ୍ନ କ୍ଷେତ୍ରରେ ତାଙ୍କର ଭୂମିକା ପ୍ରଶଂସାର୍ହ । ତାଙ୍କର ଗବେଷଣା ଲବ୍ଧ ଜ୍ଞାନ ଓ ସାଧନା ଓଡ଼ିଶାର ଶିଶୁ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ସମ୍ପଦ ।

ନିଜ ଗାଁ କୁସୁପୁର ଠାରୁ ସୁନାବେଡ଼ା ଯାଏ ସେ ଶିଶୁ ସାହିତ୍ୟର ସମୃଦ୍ଧି ପାଇଁ ଯେଉଁ ଐକାନ୍ତିକ ଉଦ୍ୟମ ଅବ୍ୟାହତ ରଖିଛନ୍ତି, ବାସ୍ତବିକ୍ ତାହା ଆମ ପାଇଁ ଚଳନ୍ତି ଇତିହାସ । ତାଙ୍କର ଅମାୟିକ, ନିଷ୍କପଟ ଓ ନମ୍ର ବ୍ୟବହାର ପାଇଁ ସେ ସର୍ବଜନାଦୃତ । କଟକ, ଭୁବନେଶ୍ୱର, ସୁନାବେଡ଼ାର ବହୁ ଶିଶୁ ସାହିତ୍ୟ ଆଲୋଚନା ଚକ୍ରରେ ଦେଖିଛି ସେ କର୍ମକର୍ତ୍ତାମାନଙ୍କ ସହ ମିଶି ଜୋତା ସିଲେଇ ଠୁ ଚଣ୍ଡିପାଠ ପର୍ଯ୍ୟନ୍ତ ସମସ୍ତ କାମରେ ସଚେତନ ଥାନ୍ତି । କୌଣସି କାମ ଉପର ଠାଉରିଆ ଭାବେ କରିବା ମୁଁ ଅନୁଭବ କରିନାହିଁ । ତାଙ୍କର ପ୍ରେରଣା ଓ ଆଶୀର୍ବାଦ ପାଇ ଓଡ଼ିଶାର ବହୁ ସୁପ୍ତ ଓ ଅବହେଳିତ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ନବ ପଲ୍ଲବରେ ପଲ୍ଲବିତ ହୋଇ କଳା-ସଂସ୍କୃତିର ଫୁଲ ଫଳ ଧରି ବିକଶିତ ହୋଇଛନ୍ତି ।

ସେ ବଣମଲ୍ଲୀ । ଅନ୍ୟ ଫୁଲ ପରି ନିଜ ରୂପରଙ୍ଗରେ କାହାକୁ ଆକୃଷ୍ଟ କରି ନାହାଁନ୍ତି । କିନ୍ତୁ, ତାଙ୍କ ମଣିଷପଣିଆ, ଏକନିଷ୍ଠ ଗବେଷଣା ଓ ସାଧନାରେ ଅନ୍ୟମାନେ ଆକୃଷ୍ଟ ହୋଇ ବହୁ ଉପାୟରେ ଉପକୃତ ହୋଇଛନ୍ତି । ତାଙ୍କ ସ୍ନେହ ଓ ଶ୍ରଦ୍ଧାର ରଜ୍ଜୁରେ ମୁଁ ଚିରକାଳ ବନ୍ଦୀ । ତାଙ୍କ ହସହସ ଭରା ମୁହଁ, ବନ୍ଧୁ ବତ୍ସଳତା, ଆତ୍ମୀୟତାଭରା କଥା, ସମ୍ବେଦନଶୀଳତା, ସୁଗୁଣାବଳୀ ସବୁ ଅଭୁଲା ସ୍ମୃତି । ତାଙ୍କ କର୍ତ୍ତବ୍ୟନିଷ୍ଠା, ସଂକଳ୍ପ ଆମ କେତେଜଣ ଶିଶୁସାହିତ୍ୟପ୍ରେମୀଙ୍କୁ ସାଧନା ପଥରେ ବ୍ରତୀ କରାଇପାରିଛି । ତାଙ୍କର ପ୍ରତ୍ୟେକ ଲେଖା ପ୍ରତ୍ୟେକ ମୁହୂର୍ତ୍ତରେ ସମାଜର ଅଗ୍ରଗତି ପାଇଁ ସ୍ୱର ଉତ୍ତୋଳନ କରିଛି ।

ବସନ୍ତଭାଇଙ୍କର ସାରସ୍ୱତ ଅଭିମାନ ଆହୁରି ଫଳପ୍ରସୂ ହେଉ । ଅବସରକାଳୀନ ଜୀବନ ସଦା ସୁଖମୟ ଓ ସୁସ୍ଥ-ସମୃଦ୍ଧ ହେଉ ତାଙ୍କ ପାରିବାରିକ ଜୀବନ-ପ୍ରଭୁଙ୍କ ପାଖରେ ଏତିକି ପ୍ରାର୍ଥନା ।



ସଦସ୍ୟ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର



Digitized by srujanika@gmail.com

# ପୁରୁଣା ଦିନ ଓ ବସନ୍ତ କିଶୋର

**ବିଜୟ ନାୟକ**

ଡକ୍ଟର ବସନ୍ତ କିଶୋର ସାହୁ, ମୋର ସୁହୃଦ ଓ ସତୀର୍ଥ । ଏକଦା ସେ ଥିଲେ ସହକର୍ମୀ; ମୁଁ ସୁନାବେଡ଼ାର ଏରୋନଟିକ୍ସ ମହାବିଦ୍ୟାଳୟରେ ଅଧ୍ୟାପନା କରୁଥିବା ସମୟରେ ।

୧୯୮୬ ମସିହାର କଥା । ଏକ ବର୍ଷଣ ମୁଖର ସକାଳେ ମୁଁ ପହଞ୍ଚିଥିଲି ସୁନାବେଡ଼ାରେ । ତାହା ଥିଲା କୋରାପୁଟ ଜିଲ୍ଲାକୁ ମୋର ପହିଲି ଯାତ୍ରା । ମନୋରମ ଉପତ୍ୟକା ସହର ସୁନାବେଡ଼ାର ରୂପକାନ୍ତି ମୋତେ ବିମୁଗ୍ଧ କରିଥିଲା । ଚାରିପାଖର ପାହାଡ଼, ପାହାଡ଼ର ବାହୁବନ୍ଧନୀରେ ମେଘ, ଅବିରତ ବର୍ଷା ଝିପିଝିପି । ପରିଚ୍ଛନ୍ନ ରାସ୍ତାଘାଟ । ନିୟମିତ ବ୍ୟବଧାନରେ କେଶକର୍ତ୍ତନ ପୂର୍ବକ ନିରବରେ ଦଣ୍ଡାୟମାନ ଶାଳୀନ ଗଛବୃଛ ।

ମହାବିଦ୍ୟାଳୟଟି ଥିଲା ଭାରତ ବର୍ଷର ଏକ କ୍ଷୁଦ୍ର ପ୍ରତିରୂପ । ବିଭିନ୍ନ ଭାଷାଭାଷୀ ଛାତ୍ରଛାତ୍ରୀ । ଶ୍ରେଣୀ ଗୃହଟି ଭାରତବର୍ଷର ବିବିଧତା ଓ ବିପୁଳତାର ଥିଲା ଏକ ନିଛକ ପ୍ରତିଫଳନ ।

ବସନ୍ତ ବାବୁଙ୍କ ସହିତ ସେହିଠାରେ ପରିଚୟ । ପରିଚୟରୁ ଆତ୍ମୀୟତା । ଆତ୍ମୀୟତାର ସେହି ସୂକ୍ଷ୍ମ ରଜ୍ଜୁ ସମୟର ପ୍ରବହମାନତା ଭିତରେ ଅଧିକ ସୁଦୃଢ଼ ହୋଇଛି ସିନା ଦୁର୍ବଳ ହୋଇନାହିଁ ।

ସୁନାବେଡ଼ାର ସାରସ୍ୱତ ପରିବେଶ ନିଆରା । ମନେପଡେ 'ବନଫୁଲ' ସାହିତ୍ୟ ପରିଷଦ କଥା । ଅଧ୍ୟାପକ କ୍ଷୀରୋଦ ସାମଲ, ବସନ୍ତ କିଶୋର ସାହୁ, ଶିରୀଶ ଚନ୍ଦ୍ର ଜେନା, ଦୀପ୍ତିରଞ୍ଜନ ପଟ୍ଟନାୟକ, ଅଶୋକ କୁମାର ବାବୁ (ଏବେ ଗତାୟୁ), ସର୍ବୋଦୟ ନେତା ତଥା ସୁଲେଖକ କୃଷ୍ଣ ସିଂହ ପ୍ରମୁଖ ଥିଲେ ଏହି ସାରସ୍ୱତ ସଂସଦର ମଙ୍ଗୁଆଳ । କେତେ କବିତା ପାଠୋତ୍ସବ, ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଛି ସେହି ସଂସ୍ଥା ମାଧ୍ୟମରେ । ସେବେଳର ଅଧ୍ୟକ୍ଷ ଚିରଞ୍ଜିବୀ ଓ ଉପାଧ୍ୟକ୍ଷ ଅନନ୍ତ ମିଶ୍ର, ହାଲ୍‌ର ମୁଖ୍ୟ ଇଂ ନଳିନୀ ରଞ୍ଜନ ମହାନ୍ତିଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ରହିଥିଲା ଏ ସବୁ ପଛରେ ।



Digitized by srujanika@gmail.com

ବସନ୍ତ ବାବୁଙ୍କ ଭିତରେ ଏକ କବିତା ପଣ ଯେ କେହି ଲକ୍ଷ୍ୟ କରିପାରିବ। ଭାରି ଚୁପ୍‌ଚାପ୍, ଗମ୍ଭୀର, ଅନ୍ତର୍ମୁଖୀ। ଗୋଟେ ଭାବର ପୃଥିବୀରେ ସେ ଯେମିତି ସର୍ବଦା ବିଚରଣ କରୁଥାନ୍ତି। ପରବର୍ତ୍ତୀ ସମୟରେ ଶିଶୁ ସାହିତ୍ୟ ଓ ଗବେଷଣା କ୍ଷେତ୍ରରେ ସେ ବେଶ୍ ନାଁ କରିଛନ୍ତି। ତାଙ୍କର ଅନେକ ପୁସ୍ତକ ପ୍ରକାଶିତ ହୋଇଛି। ଶିଶୁ ସାହିତ୍ୟ ସଂଗଠନ ପାଇଁ ସେ ଯେମିତି ଏକ ସମର୍ପିତ ପ୍ରାଣ।

ତାଙ୍କ ସେବା ନିବୃତ୍ତି ଆଗତ ପ୍ରାୟ ଜାଣି ବିସ୍ମିତ ହେଲି। ସମୟର ବେଗ ଆହା କେଡେ ପ୍ରଖର। ଅବସରକାଳୀନ ତାଙ୍କ ଅଳସ ମୁହୂର୍ତ୍ତ ସବୁ ସୃଜନ କର୍ମରେ ନିୟୋଜିତ ହେବ ବୋଲି ମୋର ଆଶା।

ମୁଁ ତାଙ୍କର ସୁଦୀର୍ଘ, ନିରାମୟ ସାରସ୍ୱତ ଜୀବନ କାମନା କରୁଛି।



ସଚିବ, ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର






Digitized by srujanika@gmail.com

# ସ୍ମରଣୀୟ ସ୍ମୃତି

**ବିଜୟଲକ୍ଷ୍ମୀ ମିଶ୍ର**

ବାହାଘର ପରେ ସୁନାବେଡ଼ା । ଦୀର୍ଘ ବର୍ଷର ରହଣି ଭିତରେ ମୋର ଯତ କିଞ୍ଚିତ୍ ସାହିତ୍ୟ ସାଧନା, ସୃଜନଶୀଳତା ପରିପ୍ରେକ୍ଷୀରେ ଯେଉଁ କେତେଜଣ ମୋତେ ପ୍ରୋତ୍ସାହିତ ଓ ଅନୁପ୍ରେରିତ କରିଛନ୍ତି ସେମାନଙ୍କ ମଧ୍ୟରୁ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ଓ ଗବେଷକ ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ ଅନ୍ୟତମ । ସୁନାବେଡ଼ାରେ ଚନ୍ଦ୍ରିକା ମହିଳା ସାହିତ୍ୟ ସଂସଦର ସଂସ୍ଥାପନାରେ ସେ ମୋତେ ଅକୁଣ୍ଠରେ ସାହାଯ୍ୟ କରିଛନ୍ତି । ଗପ ଲେଖି ବିଭିନ୍ନ ପତ୍ରପତ୍ରିକାମାନଙ୍କୁ ପଠେଇବା ପାଇଁ ମୋତେ ପ୍ରରୋଚନା ଦେଇଥିଲେ ବସନ୍ତ ସାର୍ । ପୂର୍ବ ପ୍ରକାଶିତ ଓ ପ୍ରସାରିତ ମୋର କେତେଗୁଡ଼ିଏ ଗଳ୍ପକୁ ନେଇ ସେ ମୋର ଏ ଯାବତ୍ ଏକମାତ୍ର ପ୍ରକାଶିତ ଗଳ୍ପ ସଂକଳନ 'ମଧୁସପ୍ନ'କୁ ସାକାର କରିଛନ୍ତି । ଉତ୍କଳ ସାଂସ୍କୃତିକ ପରିଷଦ 'ସ୍ମରଣିକା'ର ଅନେକ ବିଶେଷାଙ୍କ ମାନଙ୍କର ସେ ହେଉଛନ୍ତି ମୁଖ୍ୟ ସମ୍ପାଦକ । ଜଣେ ସମ୍ପାଦକର ଅନେକ ଦାୟିତ୍ୱ ଭିତରେ ସ୍ରଷ୍ଟାର ମାନସିକତା ପ୍ରତି ସମ୍ବେଦନ ଏକ ବିଶେଷ ଦାୟିତ୍ୱ, ଯାହା ମୁଁ କେବଳ ବସନ୍ତ ସାର୍‌ଙ୍କ ପାଖରେ ଦେଖି ଅନେକ ଥର ଅଭିଭୂତ ହୋଇଛି । 'ସ୍ମରଣିକା'ର ଏକ ବିଶେଷାଙ୍କ ପାଇଁ ଥରେ ଲେଖାଟିଏ ଦେଇଥିଲି । କୌଣସି କାରଣ ବଶତଃ ବୋଧହୁଏ ସ୍ଥାନର ଅଭାବ ଯୋଗୁ ମୋର ଲେଖାଟିକୁ କାଟି ଛୋଟ କରିବାକୁ ପଡ଼ିଥିଲା । ଜଣେ ସଫଳ ସ୍ରଷ୍ଟା ହୋଇଥିବାରୁ ସେ ନିଜେ ବ୍ୟକ୍ତିଗତ ଭାବେ ମୋତେ ତାଙ୍କର ବିବଶତା ସମ୍ପର୍କରେ କହିଥିଲେ । ଲେଖାଟିକୁ ସଙ୍କୁଚିତ କରିବା ଦ୍ୱାରା ତାଙ୍କ ମନରେ ସୃଷ୍ଟି ହୋଇଥିବା ଦରଦ ବାରି ହୋଇ ପଡୁଥିଲା ତାଙ୍କ କଥାରୁ । ତାଙ୍କର ଏହି ସମ୍ବେଦନଶୀଳତା ମୋତେ ବିଶେଷ ଭାବରେ ପ୍ରଭାବିତ କରିଥିଲା । ବସନ୍ତ ସାର୍ ବାସ୍ତବିକ୍ ଜଣେ ପ୍ରତିଭାବାନ୍ ସାରସ୍ୱତ ଶିଳ୍ପୀ । ହଠାତ୍ ଦେଖିଲେ ଲାଗନ୍ତି ଜଣେ ରୁକ୍ଷ ପ୍ରକୃତିର ଲୋକ । କିନ୍ତୁ, ଖୁବ୍ କମ ସମୟ ଭିତରେ ତାଙ୍କ ହୃଦୟର ଲୁକ୍‌କାୟିତ ଭାବପ୍ରବଣତା, ସ୍ନେହ, ଦରଦ, ଅନୁରାଗ, ଅଭିମାନ ଓ କୋମଳତା ଜଣା ପଡିଯାଏ ।

ଏକ ସଫଳ ସଂପାଦକ ଓ ସାହିତ୍ୟ ଅନୁରାଗୀ ବସନ୍ତ ସାର୍ ଓଡ଼ିଆ ସାହିତ୍ୟରୁ



Digitized by srujanika@gmail.com

କ୍ରମ ଅପସୃୟମାଣ ପଦମାନଙ୍କୁ ପୁନଃସ୍ଥାପିତ କରିବା ପାଇଁ ସ୍ରଷ୍ଟାଙ୍କୁ ନିବେଦନ କରନ୍ତି । ବ୍ୟକ୍ତିଗତ ଭାବେ ବିଭିନ୍ନ ଅନୁଷ୍ଠାନ ସହିତ ସଂଶ୍ଲିଷ୍ଟ ରହି ନିରବଚ୍ଛିନ୍ନ ସାହିତ୍ୟ ସାଧନାରେ ବ୍ରତୀ ବସନ୍ତ ସାର୍‌ଙ୍କ ସମ୍ପାଦନାର ଅନ୍ୟତମ ବିଶେଷତ୍ୱ ହେଉଛି ପରିବର୍ତ୍ତନଶୀଳତା । ସମ୍ପାଦନାର ପାରମ୍ପରିକ ଶୈଳୀରେ କିଛି ପରିବର୍ତ୍ତନ ରହିଲେ ହିଁ ପାଠକଙ୍କ ପାଇଁ ଅଧିକ ରୁଚିବନ୍ତ ଓ ପ୍ରଭାବଶାଳୀ ହୋଇପାରିବ । ଏହି ବିଶ୍ୱାସ ରଖିଥିବା ବସନ୍ତ ସାର୍ ସବୁବେଳେ ତାଙ୍କ ସମ୍ପାଦନାରେ ବୈଚିତ୍ର୍ୟ ବିଭବ ସୃଷ୍ଟି କରିବାରେ ସମର୍ଥ ହୋଇପାରିଛନ୍ତି । 'ବନପ୍ରଭା', 'ସ୍ୱର୍ଣ୍ଣକ୍ଷେତ୍ର' ଓ ଉତ୍କଳ ସାଂସ୍କୃତିକ ପରିଷଦର ମୁଖପତ୍ର 'ସ୍ମରଣିକା'ର ବିଶେଷ ସଂଖ୍ୟା ଏହି ଉକ୍ତିର ସାକ୍ଷର ବହନ କରିଛି ।

'ବସନ୍ତ କିଶୋର ରଚନାବଳୀ'ର ବସନ୍ତ କିଶୋର ଗଳ୍ପମାନସ ତାଙ୍କର ଏକ ଅନବଦ୍ୟ କୃତି । ଏଥିରେ ସ୍ଥାନ ପାଇଥିବା ଗଳ୍ପଗୁଡ଼ିକୁ ମୋତେ ଓ ମୋ ସ୍ୱାମୀଙ୍କୁ ଉତ୍ସର୍ଗ କରି ବସନ୍ତ ସାର୍ ଆମକୁ ଋଣୀ କରିଛନ୍ତି । ମୋତେ ସମ୍ମାନିତ କରିଛନ୍ତି । ଭଲ ଗଳ୍ପ ଲେଖିବା ପାଇଁ ପ୍ରେରଣା ଦେଇଛନ୍ତି । ଭବିଷ୍ୟତରେ ଲେଖାଲେଖି କରିପାରିବି କି ନାହିଁ ଜାଣେନି, କିନ୍ତୁ, ସାର୍‌ଙ୍କ ପ୍ରୋତ୍ସାହନ ପାଇଁ ସବୁବେଳେ ତାଙ୍କ ନିକଟରେ କୃତଜ୍ଞ ରହିବି ।

ମୁଁ ଏବଂ ମୋର ପରିବାର, ବସନ୍ତ ସାର୍, ତାଙ୍କ ଧର୍ମପତ୍ନୀ(ବାସନ୍ତୀ)ବୀଣା ମାଡାମ୍, ପୁଅ ବବୁଲ୍ ଓ ଝିଅ ବୁଲ୍‌ବୁଲ୍‌ଙ୍କର ସର୍ବାଙ୍ଗୀନ ମଙ୍ଗଳ କାମନା କରୁଅଛି ।



କ୍ୱାଟର ନମ୍ବର- ସି/୮
ଭଞ୍ଜବିହାର, ବ୍ରହ୍ମପୁର



Digitized by srujanika@gmail.com

# ସାରସ୍ୱତ ସାମ୍ରାଜ୍ୟର ସମ୍ଭ୍ରାନ୍ତ ସମ୍ରାଟ

**ଡକ୍ଟର ଅଭିଲାଷ ନାୟକ**

ସବୁଜ ବନାନୀ ପରିବେଷ୍ଟିତ ଶିଳ୍ପ ସମୃଦ୍ଧ ଯୋଜନାବଦ୍ଧ ସହର ସୁନାବେଡ଼ା ଏକ କ୍ଷୁଦ୍ର ବିଜ୍ଞାପିତ ଅଞ୍ଚଳ ପରିଷଦ । ଭାରତର ମାନଚିତ୍ରରେ ହିନ୍ଦୁସ୍ଥାନ ଏରୋନଟିକ୍ସର ଇଞ୍ଜିନ୍ ନିର୍ମାଣ କାରଖାନା ଲାଗି ପ୍ରସିଦ୍ଧ । ଏ ମାଟିର ମନୋମୁଗ୍ଧକର ପରିବେଶ ଓ ନାତିଶୀତୋଷ୍ଣ ଜଳବାୟୁ ସବୁ ଆଗନ୍ତୁକଙ୍କ ସକାଶେ ଏକ ବଡ଼ ଆକର୍ଷଣ । ମାଳମାଳ ଗଛର ସବୁଜିମାରେ ଆଚ୍ଛାଦିତ ଏହି ସହର । ଏହାର ଛାତିକୁ ଚିରି ଲମ୍ବିଯାଇଥିବା ଫିନ୍‌ଫିନ୍ ଚଉଡା ରାସ୍ତା, ରଙ୍ଗବେରଙ୍ଗ ଘରକୁ ନେଇ ସୁସଜ୍ଜିତ ଆବାସିକ କଲୋନୀଗୁଡ଼ିକର ବର୍ଣ୍ଣାଳୀ, ନୀରନ୍ଧ୍ର ନୀରବତା, ଶାନ୍ତ ତଥା ସ୍ନିଗ୍ଧ ବାତାବରଣ, ସନ୍ଧ୍ୟାରେ ସୋଡ଼ିୟମ ଆଲୁଅରେ ଝଲ୍‌ସି ଉଠୁଥିବା କୁଳବଧୂ ତଥା କୁଆଁରୀଙ୍କ କୋମଳ ହସ ଓ ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ କର୍ମକ୍ଳାନ୍ତ କର୍ମଚାରୀଙ୍କ ମୁହଁରୁ ଝରିପଡୁଥିବା ଭଜନ ଓ ଚଉତିଶାର ଝଙ୍କାର ଏହି ସହରକୁ ଅନ୍ୟ ସବୁ ସହର ଠାରୁ ଭିନ୍ନ କରିଛି, ମର୍ତ୍ତ୍ୟର ଜଞ୍ଜାଳଗ୍ରସ୍ତ ଦର୍ଶକ ମନରେ ଅଳକାପୁରୀର ଭ୍ରମ ସୃଷ୍ଟି କରିଛି । ଏହି ମନଲୋଭା ସୃଜନ ଓ ସର୍ଜ୍ଜନକ୍ଷମ ପରିବେଶରେ ସମୃଦ୍ଧ ସାରସ୍ୱତ ସାଧକମାନଙ୍କ ମଧ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଅଗ୍ରଗଣ୍ୟ କର୍ଣ୍ଣଧାର । କ୍ଷୁଦ୍ରାତିକ୍ଷୁଦ୍ର ସହର ସୁନାବେଡ଼ାରୁ ଆରମ୍ଭ ହୋଇ ସଂସ୍କୃତିର ପ୍ରାଣକେନ୍ଦ୍ର କଟକ ଯାଏଁ ମାଡ଼ିଯାଇଛି ଏହି ସାରସ୍ୱତ ସ୍ରୋତର ଧାରା । ସୁନାବେଡ଼ା ପାଲଟି ଯାଇଛି ସାରସ୍ୱତ ସାଧକମାନଙ୍କର ସର୍ଣ୍ଣକ୍ଷେତ୍ର ।

ଡକ୍ଟର ବସନ୍ତ କିଶୋର ସାହୁ ଓରଫ୍ ବସନ୍ତ ଭାଇ ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ସାରସ୍ୱତ ସାଧକମାନଙ୍କର ଭାଇ । ରକ୍ତ ସମ୍ପର୍କୀୟ ଭାଇ ନହେଲେ ମଧ୍ୟ ବସନ୍ତ ଭାଇଙ୍କ ଅନାବିଳ ଆନ୍ତରିକତା ଅନୁକରଣୀୟ । 'ବନଫୁଲ' ପରି କୋରାପୁଟର ଅଗନାଅଗନି ଜଙ୍ଗଲ ଭିତରେ ସୁନାବେଡ଼ା ଭଳି ସହରରେ ଫୁଟି ନିଜ ମହକରେ ସାରା ଓଡ଼ିଶାକୁ ମହକାଇ ଦେଇଛନ୍ତି ସିଏ । ବଣମଲ୍ଲୀ ପରି ଗୋଟାଏ ଦିନ ମହକି ଚୁପ୍ ହୋଇଯାଇ ନାହାନ୍ତି । ଉଭୟ ବୃତ୍ତିଗତ ଜୀବନ ଓ ସାରସ୍ୱତ ଜୀବନରେ ପାହାଚ ପରେ ପାହାଚ ଚଢ଼ିଯାଇଛନ୍ତି । ଈଶ୍ୱରଙ୍କ ଅପାର କରୁଣା ବଳରେ ତାଙ୍କ ସମୃଦ୍ଧ ଲେଖନୀ ସୃଷ୍ଟି କରିପାରିଛି ଅସଂଖ୍ୟ ଅମ୍ଳାନ କୃତି । ମୁଖ୍ୟତଃ ଶିଶୁ ସାହିତ୍ୟ ରଚନାରେ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ ସାରସ୍ୱତ ସାମ୍ରାଜ୍ୟର କୌଣସି ପ୍ରଦେଶକୁ ସେ ଅଛୁଆଁ ଛାଡ଼ିନାହାନ୍ତି । ଦୀର୍ଘ ୪୦ ବର୍ଷ ଧରି ସାରସ୍ୱତ ସାଧନା କାଳରେ ସବୁ କ୍ଷେତ୍ରରେ ଲେଖନୀ ଚାଳନା



Digitized by srujanika@gmail.com

କରି ଯଶସ୍ୱୀ ହୋଇଛନ୍ତି । ଅଗଡ଼ ବଗଡ଼ ଝାଇଁକି ଝୁମ୍ପା, ଗାଇଦିନ ପଦେ ଗୀତ ଆଦି ୩୨ ଖଣ୍ଡ ଅନବଦ୍ୟ କୃତି ପାଇଁ ସେ ଶିଶୁ ସାହିତ୍ୟ ଜଗତରେ ଏକ ଜଣାଶୁଣା ନାଆଁ । ଖାଲି ଓଡ଼ିଆ ଭାଷା ନୁହେଁ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷା ସାହିତ୍ୟ ପ୍ରତି ତାଙ୍କର ଅବଦାନ ରହିଛି । ନିଜ କୃତି ଓ କୃତିତ୍ୱ ପାଇଁ ସେ ପ୍ରାୟ ୩୦ରୁ ଉର୍ଦ୍ଧ୍ୱ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି । ତାଙ୍କ ସମ୍ପାଦନାରେ ୫୦ରୁ ଉର୍ଦ୍ଧ୍ୱ ଗବେଷଣାଧର୍ମି ପତ୍ରପତ୍ରିକା ପ୍ରକାଶ ପାଇ ତାଙ୍କ ସମ୍ପାଦନାର ଉତ୍କୃଷ୍ଟତା ପ୍ରତିପାଦନ କରେ । ନିକଟ ଅତୀତରେ ପ୍ରକାଶିତ 'କାହାକୁ କହିବା' ଏକ ଭିନ୍ନ ସ୍ୱାଦର ପୁସ୍ତକ । ବସନ୍ତ ଭାଇ ଆକାଶବାଣୀରୁ ପ୍ରସାରିତ ଓ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ବ୍ୟଙ୍ଗାତ୍ମକ ରଚନାଗୁଡ଼ିକର ଏକ ଅଭିନବ ଉପହାର ଦେଇଛନ୍ତି ଆମକୁ । ବହିଟିର ପ୍ରତ୍ୟେକ ଅଧ୍ୟାୟ ତାହାର ରସାଳ ତଥା କଟାକ୍ଷପୂର୍ଣ୍ଣ ଭାଷା ମାଧ୍ୟମରେ ଆମ ଭିତରେ ଥିବା ସୁପ୍ତସୁପ୍ତ ମାନବିକତାକୁ ଜାଗ୍ରତ କରୁଛି । ଅନ୍ୟାୟ, ଅନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏକ ନୂତନ ସକାଳକୁ ସ୍ୱାଗତ କରିବାକୁ ଅନୁପ୍ରାଣିତ କରୁଛି । ଶାନ୍ତ, ସ୍ଥିର, ନମ୍ର ବସନ୍ତ ଭାଇ ଏକ ଭିନ୍ନ ସତ୍ତାରେ ପ୍ରତିଭାତ ହୋଇଛନ୍ତି ଆମ ସାମନାରେ । କୋରାପୁଟ ଭଳି ଏକ ଉପାନ୍ତ ଜିଲ୍ଲାରେ ସାହିତ୍ୟ କ୍ଷେତ୍ରରେ ଏତିକି ଉତ୍କର୍ଷତା ପ୍ରତିପାଦନ କରିବା ହିମାଳୟ ଜୟ କରିବା ଠାରୁ କୌଣସି ଦୃଷ୍ଟିରୁ କମ୍ ନୁହେଁ । ସରସ୍ୱତୀଙ୍କର ବରପୁତ୍ର ସେ । ଯେଉଁଠି ଥାଆନ୍ତୁ ସେ ଭାରତୀୟ ଭାଷା ସାହିତ୍ୟକୁ ଏମିତି ଋଦ୍ଧିମନ୍ତ କରି ଚାଲିଥିବେ ।

ବସନ୍ତ ଭାଇଙ୍କ ସହ ମୋର ପ୍ରଥମ ଦେଖା ହୋଇଥିଲା ୯୦ ଦଶକର ବନଫୁଲ ଓ ଓଡ଼ିଆ ଲେଖକ ପାଠକ ସମ୍ମିଳନୀରେ । ସେହି ସମ୍ମିଳନୀରେ ପାଠ କରାଯାଇଥିବା ପ୍ରବନ୍ଧ ଗୁଡ଼ିକର ପ୍ରକାଶନ ଦାୟିତ୍ୱ ନେଇଥିଲେ ସେ । ପ୍ରବନ୍ଧଗୁଡ଼ିକ ମୌଳିକ, ନିର୍ଭୁଲ ତଥା ଆକର୍ଷଣୀୟ ରୂପରେ ପ୍ରକାଶ କରିବା ପାଇଁ ଯେଉଁ ଅକ୍ଳାନ୍ତ ପରିଶ୍ରମ କରିଥିଲେ ତାହା ସ୍ମରଣୀୟ ହୋଇ ରହିବ ସବୁଦିନ ପାଇଁ । 'କୋରାପୁଟ ପରିକ୍ରମା' ପ୍ରବନ୍ଧ ସଂକଳନଟି ଯାହା ପାଖରେ ଅଛି ସେ ନିଶ୍ଚିତ ଭାବେ କହିପାରିବେ ସଂକଳନର ସମ୍ପାଦକ କେତେ ନିଷ୍ଠାପର । ସଉରା ଭାଷା ଉପରେ ମୋର ଏକ ଦୀର୍ଘ ପ୍ରବନ୍ଧ ସ୍ଥାନୀତ ହୋଇଥିଲା ସେଥିରେ । ପ୍ରେସ୍‌ରେ ସଉରା ଭାଷା ଲିପି ନଥିବା କାରଣରୁ ସେ ମୋତେ ବିଶେଷ ଅନୁରୋଧ କରିଥିଲେ ସଉରା ବର୍ଣ୍ଣମାଳାର ଅକ୍ଷର ଗୁଡ଼ିକୁ କବି ଜଳଧର ସାଇଁଙ୍କ ପାଖରେ ପହଞ୍ଚାଇବା ପାଇଁ । ମୁଁ ଜଳଧର ଭାଇଙ୍କ ଘରକୁ ଯାଇ ତାହା ଦେଇ ଆସିଥିଲି ଓ ତାହା ନିର୍ଭୁଲ୍ ଭାବେ ଛପା ଯାଇଥିଲା କଟକର ଏକ ପ୍ରେସ୍‌ରେ । ସେହି ନିଷ୍ଠାପରତା, ସେଇ ଗୁଣବତ୍ତା ଓ ଅଧ୍ୟବସାୟ ବସନ୍ତଭାଇଙ୍କୁ ଜଣେ ସାରସ୍ୱତ କର୍ମୀରୁ ନେଇ ସାରସ୍ୱତ ସମ୍ରାଟର ଆସନରେ ଅଭିଷିକ୍ତ କରିଛି ।

ପରବର୍ତ୍ତୀ ସମୟରେ ବସନ୍ତ ଭାଇଙ୍କ ସହିତ ବାରମ୍ବାର ଦେଖା ହୋଇଛି । କେବେ ଜୟପୁରରେ ତ କେବେ କୋରାପୁଟରେ । କେବେ ସୁନାବେଡ଼ା ବା



Digitized by srujanika@gmail.com

ଦାମନଯୋଡ଼ିରେ । ସବୁଥର ସେ ଅମ୍ଳାନ ହସ, ସେହି ଅହଂଶୂନ୍ୟ ଆଳାପ ଓ ସେଇ ଅନାବିଳ ଆନ୍ତରିକତା । ମୁଁ ଚଣ୍ଡୀଗଡ଼ ଯିବାପରେ ମୋର ସାହିତ୍ୟ ସହିତ ସମ୍ପର୍କ ହୁଗୁଳିବାରେ ଲାଗିଲା । ଚଣ୍ଡୀଗଡ଼ରେ ଛଅ ବର୍ଷ ରହଣିକାଳରେ ଅତି ବେଶିରେ ପାଞ୍ଚଦଶଟି କବିତା ଓ ଚାରି ପାଞ୍ଚଟି ପ୍ରବନ୍ଧ ଲେଖିଛି । ସାରସ୍ୱତ ସମାଜ ସହିତ ସମ୍ପର୍କ ବି ନିୟମିତ ରହିଲାନି । କେବେ କେମିତି ଫୋନ୍‌ରେ କଥାବାର୍ତ୍ତା ଭିତରେ ହିଁ ତାହା ସୀମିତ ରହିଲା । ପୁଣି ୨୦୦୮ ମସିହାରେ ଓଡ଼ିଶା ଫେରିବା ପରେ ବସନ୍ତ ଭାଇ, ବାବାଜୀ ଭାଇ, ଧ୍ରୁବଚରଣ ସାଇଁ, ଜଳଧର ଭାଇ, ରବି ଶତପଥୀ, ପ୍ରୀତିଧାରା ସାମଲ, ସରଳା ବେହେରା, ଚକ୍ରପାଣି ପରିଚ୍ଛା, ସ୍ୱର୍ଗତ କୈଳାସ ଷଡଙ୍ଗୀ, ରାଜେନ୍ଦ୍ର ପାଢ଼ୀ, ଗଣପତି ଭାଇ, କମଳାକୃଷ୍ଣ ତ୍ରିପାଠୀ ଓ ମାନଗୋବିନ୍ଦ ଭାଇ ଆଦି କବି-ଲେଖକ ବନ୍ଧୁଙ୍କ ସମ୍ପର୍କରେ ଆସି ସାହିତ୍ୟମୁହାଁ ହେଲି । ପୁଣି ବସନ୍ତ ଭାଇଙ୍କ ସାନ୍ନିଧ ମିଳିଲା । ତାଙ୍କ ଲେଖନୀ ପ୍ରସୂତ ସାହିତ୍ୟସୁଧା ପାନ କରିବାର ଅବସର ଆସିଲା ଓ ତାଙ୍କ ଭାଷାଗତ ଦକ୍ଷତା ଲାଭ ଉଠାଇବାର ସୁଯୋଗ ମିଳିଲା । ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟର ଗ୍ରାମୀଣ ବିକାଶ ଉପରେ ଏକ ସ୍ନାତକୋତ୍ତର ଡିପ୍ଲୋମା ପାଠ୍ୟକ୍ରମର ଓଡ଼ିଆ ଅନୁବାଦର ଦାୟିତ୍ୱ ନେବାପାଇଁ ଯେତେବେଳେ ମୁଁ ତାଙ୍କୁ ଅନୁରୋଧ କଲି, ସେ ଅକୁଣ୍ଠିତ ଚିତ୍ତରେ ତୁରନ୍ତ ରାଜି ହୋଇଗଲେ । ଖାଲି ସେତିକି ନୁହେଁ, ନିଜର ସମସ୍ତ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ସେ ସବୁଠାରୁ ପ୍ରଥମେ ନିଜର କାମ ସାରି ଦେଇଥିଲେ । ଯିଏ ନିଜ ଜୀବନର ପ୍ରତ୍ୟେକ କାମକୁ ନିଖୁଣତା ଓ ନିପୁଣତାର ସହିତ କରି ଜାଣିଛି, ଜୀବନ ରାସ୍ତାରେ ସିଏବା ସଫଳ ନହେବ କେମିତି ? ବସନ୍ତ ଭାଇଙ୍କ ପ୍ରତିଭା ପ୍ରତି ସମ୍ମାନ ଜଣାଇ 'ବନପ୍ରଭା ସାହିତ୍ୟ ସଂସଦ' ଏକ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ କରିବା ନିମନ୍ତେ ନିଷ୍ପତ୍ତି ନେବା ଅତି ଆନନ୍ଦକର କଥା ।

ବସନ୍ତ ଭାଇଙ୍କ ଜୀବନର ୫୭ଟି ବସନ୍ତ ଅତିକ୍ରାନ୍ତ ହୋଇସାରିଛି ବୋଲି କହିଲେ କେହି ବିଶ୍ୱାସ କରିବ ନାହିଁ । ନିଜର କର୍ମ, ଚିନ୍ତନ, ସାଧନା-ସବୁଥିରେ ସେ ସକ୍ରିୟ । ଏଭଳି ଜଣେ କର୍ମବୀରର ବୃତ୍ତିଗତ କର୍ମରୁ ଅବସର ନେବାର ସମୟ ହୁଏତ ଉପନୀତ ହୋଇଯାଇଛି, କିନ୍ତୁ ସାରସ୍ୱତ ସାମ୍ରାଜ୍ୟର ସମ୍ରାଟ ଏବେ ବି ଚଳଚଞ୍ଚଳ ଓ ଦିଗ୍‌ବିଜୟୀ । ଶ୍ରୀଜଗନ୍ନାଥଙ୍କ ଚରଣାବିନ୍ଦରେ ଏତିକି ପ୍ରାର୍ଥନା ତାଙ୍କର ଅବସର ପରବର୍ତ୍ତୀ ଜୀବନ ମଧ୍ୟ ଏମିତି ଜୀବନ୍ତ, ସକ୍ରିୟ ଓ ଋଦ୍ଧିମନ୍ତ ହେଉ ଓ ତାଙ୍କର ସ୍ନେହାଶିଷ ବଳରେ ମୋ ଭଳି ପଛଧାଡ଼ିର ସାହିତ୍ୟିକଙ୍କ ଭିତରେ ସାହିତ୍ୟ ସାଧନାର ଦୀପ ମିଞ୍ଜିମିଞ୍ଜି ହୋଇ ଜଳୁଥାଉ ।



ଆଞ୍ଚଳିକ ନିର୍ଦ୍ଦେଶକ
ଇନ୍ଦିରାଗାନ୍ଧୀ ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟ, କୋରାପୁଟ



Digitized by srujanika@gmail.com

# ଶିଶୁ ସାହିତ୍ୟର ଅନନ୍ୟ ସ୍ରଷ୍ଟା

**ଯୁଗଳ କିଶୋର ଷଡ଼ଙ୍ଗୀ**

ଓଡ଼ିଆ ଶିଶୁ ସାହିତ୍ୟ ଜଗତରେ ଡକ୍ଟର ବସନ୍ତ କିଶୋର ସାହୁ ଜଣେ ଲବ୍ଧ ପ୍ରତିଷ୍ଠିତ ସ୍ରଷ୍ଟା ଭାବେ ସମଗ୍ର ଓଡ଼ିଶାରେ ପରିଚିତ । ଜଣେ ନିରଳସ ସାହିତ୍ୟ ସାଧକ, ଅଧ୍ୟାପକ ଭାବେ ସବୁଜ ବନାନୀ ଘେର ଭିତରେ ଥିବା ସୁନାବେଡ଼ାସ୍ଥ ଏରୋନଟିକ୍ସ କଲେଜରେ କାର୍ଯ୍ୟରତ ।

ସାଧନା ପଥରେ ଅବିଶ୍ରାନ୍ତ ଓ ନିରବଚ୍ଛିନ୍ନ ଭାବରେ ଗତି କରି ନିଜ ମନ ଓ ହୃଦୟର ଭାବନାକୁ ବିକଶିତ କରିଛନ୍ତି ପଲ୍ଲୀଚିତ୍ର ଓ ଚରିତ୍ର, ପ୍ରକୃତି ଓ ପରିବେଶକୁ ନେଇ ସୃଷ୍ଟି କରିଛନ୍ତି ରାଶି ରାଶି ଶିଶୁ ସାହିତ୍ୟ । ଅନେକ ଶିଶୁ ସାହିତ୍ୟ ପୁସ୍ତକର ସେ ସ୍ରଷ୍ଟା । ଆଲୋଚନା, ସମୀକ୍ଷା, ଗବେଷଣା ସହ ପର୍ବପର୍ବାଣି, ଲୋକକଥା, ସଂସ୍କୃତି ଓ ଜନଜୀବନକୁ ନେଇ ଅନେକ ଦିଗରେ ସେ ଲେଖନୀ ଚାଳନା କରିଛନ୍ତି ।

ତାଙ୍କର କେତେକ ପୁସ୍ତକ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷାରେ ପ୍ରକାଶିତ । ତାଙ୍କ ସମ୍ପାଦନାରେ ୫୦ରୁ ଊର୍ଦ୍ଧ୍ୱ ପତ୍ରପତ୍ରିକା ପ୍ରକାଶିତ । ଶିଶୁମାନଙ୍କ ଭାବକୁ ସରଳ ଓ ତରଳ ଭାବରେ ଉପସ୍ଥାପନ କରି ସେ ଶିଶୁ ପ୍ରିୟ ହୋଇପାରିଛନ୍ତି । ଶିଶୁ ପତ୍ରିକା 'ବଗଲାବଗୁଲୀ' ପାଇଁ ସେ ସର୍ବଦା ସ୍ମରଣୀୟ ହୋଇ ରହିବେ । ସେ ଜଣେ ସରଳ, ଅମାୟିକ, ଦରଦୀ ମଣିଷ ଭାବେ ପରିଚିତ । ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ଜଣେ ସକ୍ରିୟ ସଦସ୍ୟ ଭାବେ ଅତ୍ୟନ୍ତ ଦକ୍ଷତା ଓ ନୈପୁଣ୍ୟତାର ସହ କାର୍ଯ୍ୟ ସମ୍ପଦନା କରିଛନ୍ତି । ଶିଶୁ ସାହିତ୍ୟ ଗବେଷଣା, ରଚନା ଓ ସମ୍ପାଦନା ପାଇଁ ସେ ଅନେକ ଅନୁଷ୍ଠାନରୁ ସମ୍ବର୍ଦ୍ଧିତ ହୋଇଛନ୍ତି । ସାହିତ୍ୟ ଓ ସମାଜ ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରିଛନ୍ତି ଆଜିଯାଏ ।

ତାଙ୍କ ଅବସର ଜୀବନ ଶୁଭଙ୍କର ହେଉ ଓ ଚଲାପଥ କୁସୁମିତ ହେଉ । ଏହାହିଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ନୀଳଚକ୍ର ନଗର, ଟିଟିଲାଗଡ଼



Digitized by srujanika@gmail.com

# ଏକାଧିକ ନୁହେଁ : ଏକମାତ୍ର

**ଡାକ୍ତର ରଘୁନାଥ ରାଉତ**

ସେ ଦେଉଳ ଗଢ଼ନ୍ତି ନାହିଁ-ଯେଉଁମାନେ ଦେଉଳ ଗଢ଼ନ୍ତି-ପଥର କାଟନ୍ତି-ହାତୁଡ଼ି ପିଟନ୍ତି-ସେ ସେମାନଙ୍କ ପାଖେ ପାଖେ ରହି.. ମଝିରେ ମଝିରେ ତାଙ୍କ ହାତକୁ ଖଣ୍ଡିଏ ଖଣ୍ଡିଏ ପାନ ବଢ଼ାଇ ଦିଅନ୍ତି । ଗାମୁଛା କାନିରେ ସେମାନଙ୍କର ନିଗିଡ଼ି ପଡୁଥିବା ବିନ୍ଦୁ ବିନ୍ଦୁ ଝାଳ ସବୁକୁ ଅତି ସନ୍ତର୍ପଣରେ ପୋଛି ଦିଅନ୍ତି । ଶୋଷରେ ଆଉଟି ପାଉଟି ହେଲାବେଳେ ପାଣି ଢାଳେ ନେଇ ରଖି ଦିଅନ୍ତି ପାଖରେ । କ୍ରମେ ଦେଉଳ ଚୂଳି ମରେ । ଦେଉଳ ତୋଳୁଥିବା ଲୋକଙ୍କର ନାଆଁ ପଡେ.. ମାତ୍ର ସେ ରହିଯାଆନ୍ତି ଆଢୁଆଳରେ.. ନେପଥ୍ୟରେ... । କେହି ତାଙ୍କ କଥା ମନେ ପକାଉ ବା ନ ପକାଉ, ସେଥିପାଇଁ ଚିନ୍ତା ନଥାଏ ମନରେ । ଏହିଭଳି ମଣିଷଙ୍କୁ ତ୍ ଗୀତା କହେ 'କର୍ମଯୋଗୀ'.. 'ନିଷ୍କାମ କର୍ମଯୋଗୀ' । କୋଟିକରେ ଏମିତି ମଣିଷ ଗୋଟିଏ ମିଳନ୍ତି ।

ଡକ୍ଟର ବସନ୍ତ କିଶୋର ସାହୁ ଏହିପରି ଜଣେ ବ୍ୟକ୍ତିତ୍ୱସଂପନ୍ନ ବ୍ୟକ୍ତି । ସେ ଯେମିତି ନୂଆ ନୂଆ ଖଣ୍ଡି ଉଡ଼ା ଦେଉଥିବା ଯୁବ ଲେଖକମାନଙ୍କ ପାଇଁ ଉପରକୁ ଉଡ଼ିବାର ଦୁଇ ଡେଣା, ସେମିତି ପୁରୁଣା ଲେଖକମାନଙ୍କ ପାଇଁ ପ୍ରେରଣାର ଉତ୍ସ । ଜୀବନରେ ସବୁ ଭଲପଣିଆର ପ୍ରତିଫଳନ ଘଟାଇ ନିଜ ଉଚ୍ଚପଣ ଏବଂ ଆଚରଣରେ ସମନ୍ୱୟ ରକ୍ଷା କରି ସେ ଓଡ଼ିଶାରେ ଯେଉଁ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଛନ୍ତି ତା'ର ତୁଳନା ନାହିଁ । ଏହି ମିଷ୍ଟଭାଷୀ, ନିରହଙ୍କାରୀ, ଅଜାତଶତ୍ରୁ ବ୍ୟକ୍ତତ୍ୱଟି ସହିତ ମୋର କେବେ କେଉଁଦିନ ସଂପର୍କ ଗଢ଼ି ଉଠିଲା, ସେ କଥା ଯଦିଓ ମୋର ଠିକ୍ ମନେ ନାହିଁ-ତେବେ ସଂପର୍କ ଗଢ଼ି ଉଠିବା ଦିନଠୁ ମୁଁ ତାଙ୍କ ପ୍ରତି ସ୍ୱତଃ ଆକର୍ଷିତ ହୋଇଯାଇଥିଲି । ଚିର ଯୌବନ, ଚିର ବସନ୍ତର ରଙ୍ଗରେ ରଙ୍ଗେଇ ହେବାକୁ ନଚାହେଁ କିଏ ? ସେ ପୁଣି କିଶୋର ବସନ୍ତ । ବୃଦ୍ଧ ବି ତାଙ୍କ ସଂପର୍କରେ ଆସିଲେ କିଶୋର ହୋଇଯିବ । ସମୟ ଯେତିକି ଯେତିକି ଦୀର୍ଘ ହେଲା.. ଆମ ଦୁଇଜଣଙ୍କର ଅଦୃଶ୍ୟ ଘନିଷ୍ଠତା.. ସେତିକି ସେତିକି ବୃଦ୍ଧି ପାଇବାରେ ଲାଗିଲା ଏବଂ ଆମେ ପରସ୍ପରର ଏକ ପ୍ରକାର ଆତ୍ମୀୟ ହୋଇଗଲୁ ।

ତାଙ୍କ ସହିତ ମୋର ଦିନ ଅଧକର ସମ୍ପର୍କ ନୁହେଁ-ବର୍ଷ ବର୍ଷର ନିବିଡ଼ ସମ୍ପର୍କ ।



Digitized by srujanika@gmail.com

ମୋ ପ୍ରତି ଥିବା ତାଙ୍କର ଗଭୀର ଆନ୍ତରିକତା ସବୁବେଳେ କଜଳ ମେଘ ପରି ସଜଳ ହୋଇ ରହିଛି । କର୍ମ ବ୍ୟସ୍ତତା ମଧ୍ୟରେ ରହି ମୁଁ କେବେ ତାଙ୍କୁ ଭୁଲି ଯାଇଛି, ମାତ୍ର ସେ କେବେ ମୋତେ ଭୁଲି ନାହାନ୍ତି । ସେହି କିଶୋର ବସନ୍ତର ମଧୁର ବଂଶୀ ସ୍ୱନ ମଝିରେ ମଝିରେ ମୋ କାନରେ ଆସି ପଡେ । ଆଲୁଅ ପଛରେ ଯେମିତି ଛାଇ, ସେମିତି କେବେ କେବେ କୌଣସି ପତ୍ରପତ୍ରିକା ଖେଳେଇ ପକେଇଲେ ମୋ କୃତିତ୍ୱର ଆଲୋଚନା କି ଉଦାହରଣଟିଏ ଦେଖିବାକୁ ପାଏ । (ଓଡ଼ିଆ ଗୀତିକବି ସମାଜ ସ୍ମରଣିକା-୨୦୧୦, ୧୦୯ ପୃଷ୍ଠା, ଓ ୨୦୧୧ ମସିହାର ୧୧୭ ପୃଷ୍ଠା) ମନ କୃତଜ୍ଞତାରେ ନଇଁ ଯାଏ । ଯାହା ହେଉ ବସନ୍ତ ବାବୁ ଏ ଯାଏ ମୋତେ ଭୁଲି ନାହାନ୍ତି । ତାଙ୍କର ମୋ ପ୍ରତି ଥିବା ଶ୍ରଦ୍ଧାର ଗଭୀରତାକୁ ମୁଁ ଭାଷାରେ ବ୍ୟକ୍ତ କରିପାରିବି ନାହିଁ । ଅସୀମ ଆକାଶର ବିସ୍ତୀର୍ଣ୍ଣତା ଅନନ୍ତ ଜଳଧିର ଗଭୀରତାକୁ କେବେ କ'ଣ ଆକଳନ କରାଯାଇପାରେ ? ତାଙ୍କର ଅକପଟ ସ୍ନେହ.. ସେଥିରେ ବିମୋହିତ ହୋଇ ଅନେକ ସମୟରେ ଭାବେ, ସତରେ ଏମିତି ମଣିଷ କୋଟିକରେ ଗୋଟିଏ ।

ମୋର ମନେ ପଡୁଛି ଯେତେବେଳେ ଓଡ଼ିଆ ଶିଶୁ ସାହିତ୍ୟର ଦୀର୍ଘକାଳୀନ ଗଜାମରୁଡ଼ି ପରେ ପୁଣି ସେ ନୂଆ କୁଆଁଟିଏ ମେଲିଥାଏ । ସେ କୁଆଁଟି ଅଳ୍ପ ଦିନ ହେଲା କଡ ଲେଉଟେଇବାକୁ ଆରମ୍ଭ କରିଥାଏ । ମୁଁ ପ୍ରଶାନ୍ତ କୁମାର ମହାନ୍ତିଙ୍କର 'ଟିକି ଦୁନିଆ' ଏବଂ ସମ୍ବଲପୁରର ବ୍ରଜବିହାରୀ ପାଣିଗ୍ରାହୀଙ୍କର 'ପରୀ ରାଇଜ' ପତ୍ରିକା ଦୁଇଟିର କାର୍ଯ୍ୟକାରୀ ସମ୍ପାଦକ ଦାୟିତ୍ୱ ତୁଲାଉଥାଏ । ଓଡ଼ିଆ ଶିଶୁ ସାହିତ୍ୟକୁ ପୁନର୍ଜୀବନ ଦେବା ପାଇଁ ଗଢ଼ିଥାଏ 'ଓଡ଼ିଆ ଶିଶୁ ସାହିତ୍ୟ ପରିଷଦ' । ଏହି ସମୟରେ ଭଦ୍ରକରୁ ଶୁଣିଲି ମନୀନ୍ଦ୍ର ଭାଇ ଓ ବସନ୍ତ ଭାଇଙ୍କର ସ୍ୱର । ଗାନ୍ଧୀଙ୍କ ପାଖରେ ନେହେରୁ ଯେମିତି, ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ପାଖରେ ଡକ୍ଟର ବସନ୍ତ କିଶୋର ସାହୁ ସେମିତି । ମହତ୍ତର ଉଚ୍ଚତାର ବ୍ୟକ୍ତି ସେ ଦୁହେଁ । ଓଡ଼ିଶା ଶିଶୁ ସାହିତ୍ୟ ଗବେଷଣା ପରିଷଦ ଗଢ଼ି ସେମାନେ ଆହ୍ୱାନ ଦେଇଥାନ୍ତି ନବାଗତ ଶିଶୁସାହିତ୍ୟିକମାନଙ୍କୁ ଓ ସମଗ୍ର ଓଡ଼ିଶାବାସୀଙ୍କୁ । ଏହି ସମୟରେ ଦୁଇ ମହାରଥୀଙ୍କ ସହିତ ଗଢ଼ି ଉଠିଲା ମୋର ସଂପର୍କର ସେତୁ । ଆମ ଭିତରେ ଚାଲିଲା ଭାବର ଆଦାନ ପ୍ରଦାନ । ମନକୁ ଉତ୍ସାହ ମିଳିଲା । ମୁଁ ୫୦/୬୦ ଯାଏ ମଜାମଜା ଶିଶୁ ଗପ ଓ କବିତା ଲେଖି ପ୍ରକାଶନରେ ଲାଗି ପଡ଼ିଲି । ଓଡ଼ିଶା ବୁକ୍‌ଷ୍ଟୋରର ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ରଙ୍କୁ ଧରି ରଙ୍ଗୀନ ଜହ୍ନମାମୁ ପରି 'ହସଖୁସି' ନାମକ ପିଲାଙ୍କ ପତ୍ରିକାଟିଏ କାଢ଼ିଲି । ତେଣେ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଗୀତିକାର ହୋଇ ପିଲାଙ୍କ ପାଇଁ ମଜାମଜା ଶିଶୁ ସଙ୍ଗୀତ, ଭଜନ ଓ ସଙ୍ଗୀତ ରୂପକ ସବୁ ଲେଖିଲି । ସେ ସବୁ ଓଡ଼ିଶାର ସମସ୍ତ ଆକାଶବାଣୀରୁ ପ୍ରଚାରିତ ହେଲା । ଓଡ଼ିଶା ଶିଶୁ ସାହିତ୍ୟ ଗବେଷଣା


Digitized by srujanika@gmail.com

ପରିଷଦ ଓ ଓଡ଼ିଶା ଶିଶୁ ସାହିତ୍ୟ ପରିଷଦ ମାଧ୍ୟମରେ ପ୍ରତିଭା ସମ୍ପନ୍ନ ଶିଶୁ ସାହିତ୍ୟିକଙ୍କୁ ସମ୍ବର୍ଦ୍ଧିତ କରାଗଲା । ପୂର୍ବରୁ ହାତଗଣତି ଶିଶୁ ପତ୍ରିକା ପ୍ରକାଶ ପାଉଥିଲା । ଏବେ ୬୦/୭୦ ଯାଏ ଶିଶୁ ପତ୍ରିକା ପ୍ରକାଶ ପାଇଲା । ସେ ପତ୍ରିକା ମଧ୍ୟରେ ଥିଲା ବସନ୍ତ ବାବୁଙ୍କର 'ବଗଲାବଗୁଲୀ' । ବଞ୍ଚିଗଲା ଓଡ଼ିଆ ଶିଶୁ ସାହିତ୍ୟ । ଚାରିଆଡେ ହଇଚଇ ପଡିଗଲା । ଚାରିଆଡେ ପରିବର୍ତ୍ତନର ବାର୍ତ୍ତା ପ୍ରଚାରିତ ହେଲା । ଓଡ଼ିଆ ଶିଶୁ ସାହିତ୍ୟ ମାନଚିତ୍ରରେ ..ଅନେକ ନୂଆ ଲେଖା ସୃଷ୍ଟି ହେଲା । ଶିଶୁ ସାହିତ୍ୟକୁ ମିଳିଲା ନୂତନ ଆକାର । ସଚେତନ ଗବେଷକ ଓ ଆଲୋଚକଙ୍କୁ ମିଳିଲା ନୂତନ ଶବ୍ଦ । ମୋତେ ସେ ସମୟରେ ଯେଉଁମାନଙ୍କ ଠାରୁ ଅଧିକ ପ୍ରେରଣା ଓ ଉତ୍ସାହ ମିଳିଥିଲା ସେମାନଙ୍କ ମଧ୍ୟରେ ଅଛନ୍ତି-ଡକ୍ଟର ମନୀନ୍ଦ୍ର ମହାନ୍ତି, ଡକ୍ଟର ବସନ୍ତ କିଶୋର ସାହୁ, ଡକ୍ଟର ମହେଶ୍ୱର ମହାନ୍ତି, ଡକ୍ଟର ଜଗନ୍ନାଥ ମହାନ୍ତି, ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦ, ବନମାଳୀ ବ୍ରହ୍ମଚାରୀ, ନଦୀୟାବିହାରୀ ମହାନ୍ତି(ବଡ଼ଭାଇ) ଓ ଶିଶୁଲେଖାର ସମ୍ପାଦକ ଅନନ୍ତ ପଟ୍ଟନାୟକ ।

ମଝିରେ ମଝିରେ ବସନ୍ତ ବାବୁଙ୍କ ସହିତ ସାକ୍ଷାତ ହେବା ସହିତ ଡକ୍ଟର ମନୀନ୍ଦ୍ର ମହାନ୍ତି ଓ ବସନ୍ତ ବାବୁଙ୍କ ପତ୍ର ମୋତେ ନିୟମିତ ମିଳୁଥିଲା ।

ଡକ୍ଟର ବସନ୍ତ କିଶୋର ସାହୁ ଓଡ଼ିଆ ସାହିତ୍ୟର ଯେମିତି ଜଣେ ଗବେଷକ, ଆଲୋଚକ, ସଂଗଠକ, ସଂପାଦକ, ସଂକଳକ ସେମିତି ଜଣେ ଅଦ୍ୱିତୀୟ ପ୍ରଚଣ୍ଡ ପ୍ରତିଭା ଓ ସୃଜନଶୀଳ ସ୍ରଷ୍ଟା । ଯେଉଁ ମାଟିରେ ପ୍ରଥିତଯଶା ପ୍ରବାଦପୁରୁଷ ନନ୍ଦକିଶୋର ବଳଙ୍କର ଜନ୍ମ, ସେଇ ମାଟିରେ ତାଙ୍କର ଜନ୍ମ । ସେହି ମାଟି ଠାରୁ ଓଡ଼ିଶାର ସାରସ୍ୱତ ପୀଠ କଟକ ଠାରୁ ଜୀବନ ଜୀବିକା ସନ୍ଧାନରେ ଯାଇ ସେ ଦୀର୍ଘକାଳ ଯାଏ କୋରାପୁଟରେ ରହିଲେ । ଗଛରୁ ଝଡ଼ି ପଡିଥିବା ଶୁଖିଲା ପତ୍ରଟିର ଯେମିତି କୌଣସି ଇଚ୍ଛା ନଥାଏ-ମର୍ଜି ନଥାଏ, ପବନର ସୁଅ ତାକୁ ଯୁଆଡେ ଉଡେଇ ନିଏ ସେ ଉଡିଯାଏ-ଯେଉଁଠି ପକାଇଦିଏ..ସେଠାରେ ପଡିରହେ..ସେମିତି ଆମେ ସମସ୍ତେ ସେହି ମହାକାଳର ମହାପ୍ରବାହରେ ଏକ ଏକ ଖେଳନା । ବସନ୍ତ ବାବୁ ସେଥିରୁ ବାଦ ପଡନ୍ତେ କେମିତି ? ବଣପାହାଡ଼ ଘେରା ଉପାନ୍ତ ଅଞ୍ଚଳକୁ ମହାକାଳ ତାଙ୍କ ପାଇଁ ବାଛିଥିଲା ଏଇଥିପାଇଁ - ପତ୍ରଝଡ଼ା ଥୁଣ୍ଟା ବନ ପାଇଁ ବସନ୍ତର ଆବଶ୍ୟକତା ଥିଲା ବେଶି । ବସନ୍ତର ଆଗମନରେ ସେଠାରେ ବନଫୁଲ ଫୁଟିଛି । ବନପ୍ରଭା ବିକଶିତ ହୋଇଛି । ତା'ର ମହକରେ ସମଗ୍ର ଓଡ଼ିଶା ମହକିତ ହୋଇ ଉଠିଛି-ତାର ସୌରଭରେ ଉପାନ୍ତ ଜିଲ୍ଲା ଗୌରବାନ୍ୱିତ ହୋଇ ଉଠିଛି । ଆସନ୍ତା ୨୦୧୩ ମାର୍ଚ୍ଚରେ ସେ ଚାକିରିରୁ ଅବସର ନେଉଛନ୍ତି, ମାତ୍ର ତାଙ୍କର ହାତଗଢ଼ା କୋଣାର୍କ ବନପ୍ରଭା ସାହିତ୍ୟ ସଂସଦ ଠାରୁ ନୁହେଁ । ଯେଉଁଠି ରହିଲେ ଶରୀର ସେଠି ରହିବ । ସେ ସବୁ ଅନୁଷ୍ଠାନ ପାଇଁ ତାଙ୍କର ହାତ କାମ କରିବ । ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ



Digitized by srujanika@gmail.com

ଶାପ ଗ୍ରସ୍ତ ଦଣ୍ଡକାରଣ୍ୟରେ ଆଜି ଯେତେବେଳେ ଫୁଲ ଫୁଟିଛି-ମରୁକ୍ଷେତ୍ର ସ୍ୱର୍ଣ୍ଣକ୍ଷେତ୍ରରେ ପରିଣତ ହୋଇଛି-ସେ କ୍ଷେତ୍ରର ପ୍ରଭା ସବୁଦିନେ ଅତୁଟ ହୋଇ ରହିବ ହିଁ ରହିବ ।

ମହାଭାରତରେ ଅନେକ ଯୋଦ୍ଧା, ମାତ୍ର ଅର୍ଜୁନ ହେଉଛନ୍ତି ଜଣେ । ମହାଭାରତରେ ଅନେକ ଗୁରୁ, ମାତ୍ର ଅର୍ଜୁନଙ୍କୁ ଗୁରୁଜ୍ଞାନ ଶିକ୍ଷା ଦେଇଥିବା ଶ୍ରୀକୃଷ୍ଣ ହେଉଛନ୍ତି ଜଣେ । ସେଥିପାଇଁ ସେ ସବୁ ଅନୁଷ୍ଠାନର କର୍ମକର୍ତ୍ତାଙ୍କୁ ଗୁରୁଙ୍କର ଆଦର୍ଶକୁ ଗ୍ରହଣ କରିବାକୁ ଆମର ବିନମ୍ର ନିବେଦନ ।

ପ୍ରଜ୍ଞାପୁରୁଷ ଡକ୍ଟର ସାହୁଙ୍କର ହୃଦୟ ଯେମିତି ବିଶାଳ ତାଙ୍କର ଅକ୍ଷୟ କୀର୍ତ୍ତି ସେପରି ବିଶାଳ । ଜଣେ ଅତି ସାଦାସିଧା ମଣିଷଟିଏ ପରି ମନେ ହେଉଥିଲେ ହେଁ ସେ ଅସାଧାରଣ, ଅନନ୍ୟ । ତାଙ୍କର ବିଶାଳ ସ୍ୱରୂପ.. ତାଙ୍କ ବିଶାଳ କୀର୍ତ୍ତିରାଜିରେ ଲୁଚି ରହିଛି । ସେ ଏତେ କୃତିତ୍ୱର ସ୍ରଷ୍ଟା ହେବା ମୂଳରେ ରହିଛି, ତାଙ୍କର ଅହଙ୍କାରହୀନ ବ୍ୟକ୍ତିତ୍ୱ । ଗର୍ବ ନାହିଁ.. ଅଭିମାନ ନାହିଁ, ମାତ୍ର ସ୍ୱାଭିମାନ ଅଛି । ଓଡ଼ିଆ ଜାତି, ଓଡ଼ିଆ ଭାଷା, ସଂସ୍କୃତି ପାଇଁ ସେ କ'ଣ କେତେ କରିଛନ୍ତି-ସେ ଫଳରେ ଆଶା କେବେ ଦିନେ ହେଲେ ରଖି ନାହାନ୍ତି । ଫଳତ ଫଳ । ସେ ଫଳରୁ ଆଉ କ'ଣ ଫଳିବ ? ଏଭଳି ବିରାଟ ବ୍ୟକ୍ତିତ୍ୱ ବିଶିଷ୍ଟ ପ୍ରଜ୍ଞାପୁରୁଷଙ୍କ ଜୀବନକୁ ଏଭଳି ଏକ ଛୋଟ କଳେବର ମଧ୍ୟରେ ପ୍ରସ୍ତୁତ କରାଯାଇ ନପାରେ । ମାତ୍ର ଆଉ ଜଣେ କିପରି ଏତେ ଉଚ୍ଚତାରେ ପହଞ୍ଚିବ ତାଙ୍କ ଜୀବନରୁ ଶିକ୍ଷା କରାଯାଇପାରେ । ଆମ ସମସ୍ତଙ୍କ ପାଇଁ ଏକାଧିକ ନୁହନ୍ତି ଏହି ଏକମାତ୍ର ସୁପୁରୁଷ ହିଁ ଯଥେଷ୍ଟ । ଈଶ୍ୱର ତାଙ୍କୁ ତେନ୍ତୁଳିଗୁମା ଅଞ୍ଚଳର ଯେତିକି ତେନ୍ତୁଳି ପତ୍ର ସେତିକି ପରମାୟୁ ଦିଅନ୍ତୁ ।



(ସାହିତ୍ୟିକ, ଯୋଗ, ଆଧ୍ୟାତ୍ମିକ, ପ୍ରାକୃତିକ ଏବଂ ଆୟୁର୍ବେଦ ଚିକିତ୍ସକ, ଭାରତୀୟ ତତ୍ତ୍ୱଦର୍ଶନ ତଥା ପ୍ରାଚ୍ୟ ବିଦ୍ୟା ଏବଂ ସଂସ୍କାର ସଂସ୍କୃତିର ଅନନ୍ୟ ଗବେଷକ ଓ ପ୍ରସିଦ୍ଧ ବ୍ୟାଖ୍ୟାକାର)

ମାର୍ଫତ : ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨



Digitized by srujanika@gmail.com

# ବସନ୍ତ କିଶୋର ସାହୁଙ୍କୁ ମୁଁ ଯେମିତି ଜାଣେ

**ବିଜୟ କୁମାର ପ୍ରଧାନ**

ତାରିଖଟା ଠିକ୍‌ରେ ମୋର ମନେ ପଡୁନି । ତେବେ ୧୯୮୯ ମସିହା ଧାନକଟା ଛୁଟି (ଖ୍ରୀଷ୍ଟୀୟ ବଡଦିନ)ର ଠିକ୍ ଅବ୍ୟବହିତ ପୂର୍ବରୁ ବସନ୍ତ ବାବୁଙ୍କର ପୋଷ୍ଟକାର୍ଡ ଚିଠିଟିଏ ହସ୍ତଗତ ହେଲା । ମୋ ପାଇଁ ତାହା ଥିଲା ତାଙ୍କର ପ୍ରଥମ ଚିଠି । ତା ପୂର୍ବରୁ ତାଙ୍କୁ ମୁଁ ଜାଣି ନଥିଲି କହିଲେ ଭୁଲ୍ ହେବ । ଜଣେ ଶିଶୁ ସାହିତ୍ୟିକ ଭାବେ ସେ ପରିଚିତ ହୋଇ ସାରିଥାନ୍ତି ଏବଂ ଜଣେ ମୁଗ୍ଧ ପାଠକ ହିସାବରେ ମୁଁ ଯେଉଁଠି ବି ତାଙ୍କ ଲେଖା ପଢିବାର ସୁଯୋଗ ପାଇଛି, ସେ ପତ୍ରିକାଟିକୁ ନେଇ ବିଦ୍ୟାଳୟରେ ମୋ ଛାତ୍ର-ଛାତ୍ରୀମାନଙ୍କୁ ପଢିବାର ସୁଯୋଗ ଦେଇଛି । ଖୁବ୍ ଚମତ୍କାର ଓ ଶିକ୍ଷଣୀୟ ତାଙ୍କ ଲେଖାଗୁଡିକ ।

ହଁ.... ତାଙ୍କ ପ୍ରଥମ ଚିଠି ପାଇବା ଦିନର କଥା କହୁଥିଲି ନା ? ଚିଠିଟିର ବିଷୟବସ୍ତୁ ଅତି ସଂକ୍ଷିପ୍ତ ହୋଇଥିଲେ ବି ତାହା ଥିଲା ମୋ ପାଇଁ ଏକାନ୍ତ ମହତ୍ୱପୂର୍ଣ୍ଣ । ୧୯୯୦ ମସିହା ଏପ୍ରିଲ ମାସରେ 'ବନଫୁଲ ସାହିତ୍ୟ ପରିଷଦ' ପକ୍ଷରୁ ସୁନାବେଡା ଠାରେ ଲୋକନାଟକ ଉପରେ ଏକ ଦୁଇଦିନିଆ ରାଜ୍ୟସ୍ତରୀୟ ସମ୍ମାନ ଆୟୋଜିତ ହେବ । ଉକ୍ତ ସମ୍ମାନରେ ଦକ୍ଷିଣ ଓଡିଶାର ବହୁଚର୍ଚ୍ଚିତ ଲୋକନାଟକ 'ପ୍ରହଲ୍ଲାଦ ନାଟକ' ଉପରେ ଏକ ନିବନ୍ଧ ପ୍ରସ୍ତୁତ କରି ଉପସ୍ଥାପନ କରିବା ପାଇଁ ତାହା ଥିଲା ଏକ ସବିନୟ ଅନୁରୋଧ ପତ୍ର । ସେତେବେଳକୁ ମୁଁ କିଛି କିଛି ଲେଖାଲେଖି କରୁଥାଏ । କିନ୍ତୁ ନିବନ୍ଧ ଲିଖନ, ତାହା ପୁଣି ଏକ ନର୍ଦ୍ଦିଷ୍ଟ ବିଷୟବସ୍ତୁକୁ ନେଇ...... ମୋର ଅପରିପକ୍ୱ କଲମ ଦ୍ୱାରା ଏହା କଣ ସଂଭବ । ବସନ୍ତ ବାବୁଙ୍କ ଚିଠିଟି ଥିଲା ମୋ ପାଇଁ ଏକ ମସ୍ତବଡ ଚାଲେଞ୍ଜ । ତାଙ୍କ ସୂଚନାନୁସାରେ ମୋ ହାତରେ ପାଖାପାଖି ୧୦୦ ଦିନର ସମୟ ଥାଏ । ସେଇ ଛୁଟିରେ ମୁଁ ଗାଁକୁ ଗଲି । ଉଲ୍ଲେଖନୀୟ ଏହିକି ଯେ ଦକ୍ଷିଣ ଓଡିଶାର ଉପାନ୍ତ ଅଞ୍ଚଳ (ସଂପ୍ରତି ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲା ଅନ୍ତର୍ଗତ) ଜଳନ୍ତର ତାଲୁକାର ମୁଣ୍ଡଳା ଗ୍ରାମରେ ମୋ ଜନ୍ମ, ଯେଉଁ ଜଳନ୍ତର ରାଜାଙ୍କ ଠାରୁ ବଳଦେବ ରଥ ପାଇଥିଲେ 'କବିସୂର୍ଯ୍ୟ' ଉପାଧି ଏବଂ ଯେଉଁ ଜଳନ୍ତର ଗଡର ନରେଶ ରାମକୃଷ୍ଣ



Digitized by srujanika@gmail.com

ଛୋଟରାୟ ନିଜ ରାଜବାଟୀରେ ଓଡିଆ ପ୍ରହ୍ଲାଦ ନାଟକ ମଣ୍ଡଳୀ ଗଠନ କରି ଉକ୍ତ ନାଟକକୁ ପ୍ରଥମ ଥର ପାଇଁ ଅଭିନୀତ କରାଇଥିଲେ । ଏଇଠି କହିବା ପ୍ରାସଂଗିକ ହେବ ଯେ ଏବେ ବି ମୋ ଗାଁରେ ପ୍ରହ୍ଲାଦ ନାଟକ ବଂଚି ରହିଛି ଓ ବର୍ଷର ବିଭିନ୍ନ ସମୟରେ ଅଭିନୀତ ହେଉଛି ।

ସେ ଯା ହେଉ, ପ୍ରହ୍ଲାଦ ନାଟକ ଦକ୍ଷିଣ ଓଡିଶାର ବିସ୍ତୃତ ଅଞ୍ଚଳରେ କାୟାବିସ୍ତାର କରିଥିବା ବିଷୟ ଲୋକନାଟକ ପ୍ରତି ସଚେତନ ଲୋକଙ୍କୁ ଅଜଣା ନୁହେଁ । ଉକ୍ତ ଛୁଟିରେ ଗାଁକୁ ଯାଇ ପ୍ରହ୍ଲାଦ ନାଟକ ମଣ୍ଡଳୀ ଥିବା ଆଖପାଖ ଓ ବ୍ୟକ୍ତି ବିଶେଷଙ୍କୁ ସାକ୍ଷାତ କରି ବହୁ ତଥ୍ୟ ସଂଗ୍ରହ କରିଥିଲି । ଏ କ୍ଷେତ୍ରରେ ମୋର ସ୍ୱର୍ଗତ ପିତା ଭରତ ପ୍ରଧାନ (ଏକଦା ସେଇ ନାଟକର ମୁଖ୍ୟ ଚରିତ୍ର 'ହିରଣ୍ୟକଶ୍ୟପ' ଭୂମିକାରେ ଅଭିନୟ କରି 'ରାଜା-ଭରତ' ନାମରେ ଲୋକ ପରିଚିତ ହାସଲ କରିଥିଲେ) ଏବଂ ଆମ ଗ୍ରାମର ବହୁ ପୁରୁଣା ବ୍ୟକ୍ତିଙ୍କ ଠାରୁ ନାଟକ ସଂପର୍କରେ ଉପାଦେୟ ତଥ୍ୟମାନ ସଂଗ୍ରହ କରି ମୋର କର୍ମସ୍ଥଳୀ ଗୁଣପୁର (ଏବେ ରାୟଗଡା ଜିଲ୍ଲା ଅନ୍ତର୍ଗତ)କୁ ଫେରି ଆସିଥିଲି ।

ପରବର୍ତ୍ତୀ ସମୟରେ ସଂଗୃହୀତ ସମସ୍ତ ତଥ୍ୟ ଭିତ୍ତିରେ ମୋ ଜୀବନର ପ୍ରଥମ ଗବେଷଣାଧର୍ମୀ ନିବନ୍ଧ ଲେଖିଥିଲି-"ଦକ୍ଷିଣ ଓଡିଶାର ଲୋକପ୍ରିୟ ଲୋକନାଟ୍ୟ : ପ୍ରହ୍ଲାଦ ନାଟକ"। ସମୟାନୁକ୍ରମେ ବସନ୍ତ ବାବୁଙ୍କ ଠାରୁ କାର୍ଯ୍ୟକ୍ରମ ସଂପର୍କୀତ ନିମନ୍ତ୍ରଣ ତଥା ସୂଚନା ପାଇ ମୁଁ ଆସିଥିଲି ସୁନାବେଡା ସହରକୁ । ସେଇ ଦିନଟି ଥିଲା ୧୯୯୦ ମସିହା ଏପ୍ରିଲ ମାସ ୭ ତାରିଖ ସକାଳ । ସେତେବେଳେ ବସନ୍ତ ବାବୁଙ୍କ ସହିତ 'ବନଫୁଲ ସାହିତ୍ୟ ପରିଷଦ'ର କର୍ମକର୍ତ୍ତାବୃନ୍ଦ ମୋତେ ଯେଉଁ ଭଳି ସ୍ୱାଗତ ଜଣାଇଥିଲେ ଓ ଆତିଥ୍ୟ ପ୍ରଦାନ କରିଥିଲେ, ତାହା ଏବେ ବି ମୋ ମାନସପଟରେ ଉଜ୍ଜୀବିତ ହୋଇ ରହିଛି ।

ସୁନାବେଡା-୧ର ବିସ୍ତୃତ ଆମ୍ରକାନନର ସୁଶୀତଳ ଛାୟାରେ ଆୟୋଜିତ ହୋଇଥିଲା ଲୋକନାଟକ ସଂପର୍କୀତ ଏକ ଭବ୍ୟ କର୍ମଶାଳା । ଉକ୍ତ କାର୍ଯ୍ୟକ୍ରମକୁ ସହଯୋଗ କରିଥିଲେ, ଓଡ଼ିଶା ଲୋକ ସଂସ୍କୃତି ପରିଷଦ Institute of Folk Culture (IFCO), ଚିତ୍ରଡା, ମୟୂରଭଞ୍ଜ, ଓଡିଶାର ତତ୍କାଳୀନ ରେଜିଷ୍ଟ୍ରାର ଡକ୍ଟର ଆଦିକନ୍ଦ ମହାନ୍ତ । ଓଡିଶାର କୋଣାନୁକୋଣରୁ ଉପସ୍ଥିତ ହୋଇଥିଲେ ଲୋକନାଟକର ବହୁଜ୍ଞାନୀ, ଗୁଣୀ ଓ ବିଶେଷଜ୍ଞ ବୃନ୍ଦ । ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଅଭିନୀତ ହେଉଥିବା ପ୍ରାୟ ତିରିଶଟି ବିଭିନ୍ନ ଲୋକନାଟକ ଉପରେ ପ୍ରବନ୍ଧ ପାଠ ସହିତ ପ୍ରତ୍ୟେକ ନାଟକ ଉପରେ ଆଲୋଚନା, ତର୍କ, ବିତର୍କ ଓ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ମଧ୍ୟ ଅନୁଷ୍ଠିତ ହୋଇଥିଲା । ଉକ୍ତ କାର୍ଯ୍ୟକ୍ରମର କିଛି ଦିନ ପରେ ଆକାଶବାଣୀ, ଜୟପୁର କେନ୍ଦ୍ର



Digitized by srujanika@gmail.com

ତରଫରୁ "ପ୍ରହ୍ଲାଦ ନାଟକ" ଉପରେ ଏକ ଦଶମିନିଟିଆ ଆଲୋଚନା ପାଇଁ ମୋତେ ଡକାଯାଇଥିଲା ଏବଂ ଜୀବନରେ ପ୍ରଥମ ଥର ପାଇଁ ମୁଁ ଆକାଶବାଣୀ କେନ୍ଦ୍ରର ରେକର୍ଡିଂ କକ୍ଷକୁ ପ୍ରବେଶ କରିବାର ସୁଯୋଗ ପାଇଥିଲି ।

କହିବାର ଦ୍ୱିଧା ନାହିଁ ଯେ ଡକ୍ଟର ବସନ୍ତ କିଶୋର ସାହୁଙ୍କ ପାଇଁ ହିଁ ପରବର୍ତ୍ତୀ ସମୟରେ ମୁଁ ନିବନ୍ଧ ଲେଖାରେ ମନୋନିବେଶ କରିଥିଲି ଯାହାକି ଅଦ୍ୟାବଧି ଅବ୍ୟାହତ ରହିଛି । ବସନ୍ତ ବାବୁ ହିଁ ମୋତେ ଆକାଶବାଣୀର ବିଭିନ୍ନ କାର୍ଯ୍ୟକ୍ରମ ସହିତ ପରିଚୟ କରାଇଛନ୍ତି । ସମୟାନୁକ୍ରମେ ବହୁ ସାହିତ୍ୟ ସମାବେଶରେ ତାଙ୍କ ସହିତ ମୋର ଦେଖାସାକ୍ଷାତ ଓ ଭାବ ବିନିମୟ ହୋଇଛି, ହେଉଛି ଏବଂ ଭବିଷ୍ୟତରେ ମଧ୍ୟ ଏହା ଚାଲୁ ରହିବ, ଏ ଆଶା ଓ ବିଶ୍ୱାସ ରଖୁଛି

ପରିଶେଷରେ ନିଃସଂକୋଚରେ ଏତିକି କହିବି ଯେ ବସନ୍ତ ବାବୁ ଏକାଧାରରେ ଜଣେ ସୁସାହିତ୍ୟିକ, ସୁସଂଗଠକ, ସମଗ୍ର ରାଜ୍ୟରେ ଜଣେ ଆଗଧାଡିର ଶିଶୁ ସାହିତ୍ୟିକ, ସୁଆଲୋଚକ ଏବଂ ଆହୁରି ଅନେକ....... । ଏ କ୍ଷୁଦ୍ର ସ୍ମୃତିଲେଖାଟି ପ୍ରସ୍ତୁତ କରିବା ଅବସରରେ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଚରଣକମଳରେ ଏତିକି ପ୍ରାର୍ଥନା କରିବି ଯେ ଆଗାମୀ ଦିନମାନଙ୍କରେ ବସନ୍ତ ବାବୁଙ୍କ ବଳିଷ୍ଠ ଲେଖନୀ ମୂନରୁ କାଳଜୟୀ ଲେଖାମାନ ନିଃସୃତ ହୋଇ ଓଡିଆ ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରୁ ଏବଂ ସେ ଦୀର୍ଘଜୀବନ ଲାଭ କରନ୍ତୁ ।



କୋରାପୁଟ, ଓଡ଼ିଶା



Digitized by srujanika@gmail.com

# ମୋ ସ୍ମୃତିର ଇଲାକାରେ ବସନ୍ତ ସାର୍

## ଡକ୍ଟର ବିଦ୍ୟୁତ୍ ପ୍ରଭା ରଥ

ସମୟର ଗତି ଅବିରାମ । ମନୁଷ୍ୟ ତା କର୍ମମୟ ଜୀବନରେ ସମୟର ଗତି ସହିତ ତାଳ ଦେଇ ଆଗେଇ ଚାଲେ । ତାରି ଭିତରେ ଆଜିମାନେ ବଦଳି ଚାଲନ୍ତି କାଲିକୁ । ପାଲଟି ଯାଆନ୍ତି ଅତୀତ । କାଳର ଏହି ଗତିଧାରାରେ କେତେ ସ୍ମୃତି, କେତେ ଅନୁଭୂତି-ତାର ହିସାବ ରଖି ହୁଏନା । ମାତ୍ର ସେ ସମସ୍ତ କଥା ମନକୁ ଆସିଲେ ଅତୀତର ଅନେକ ମହାର୍ଘ ସ୍ମୃତି ଜୀବନ୍ତ ହୋଇ ଉଠନ୍ତି । ମନଶ୍ଚକ୍ଷୁରେ ଝଲସି ଉଠେ ସେମାନଙ୍କର ଝଲମଲ ରୂପଶୋଭା । ସେହିଭଳି କେତେ ସ୍ମୃତି ଭିତରେ ଏକ ସ୍ମୃତି ଭାବରେ ସବୁ ସମୟରେ ମନକୁ ଆସନ୍ତି ଡକ୍ଟର ବସନ୍ତ କିଶୋର ସାହୁ । ସାର୍‌ଙ୍କ ସହିତ ମୋର ସଂପର୍କ ଓ ଆତ୍ମୀୟତା ଦୀର୍ଘ ୨୫/୨୬ ବର୍ଷର । ଏରୋନଟିକ୍ସ ଉଚ୍ଚ ବାଳିକା ବିଦ୍ୟାଳୟରେ ମୋର ଯୋଗଦାନ କାଲି ଭଳି ମନେ ହେଉଛି । ସେଦିନର ସେ ଅଜଣା ଅପରିଚିତ ପରିବେଶ ଓ ପରିସର ଆଜି ସମ୍ପୂର୍ଣ୍ଣ ଆପଣାର ହୋଇ ସାରିଛି ।

ଏହି ପରିପ୍ରେକ୍ଷୀରେ ବସନ୍ତ ସାର୍‌ଙ୍କ ସହିତ ମୁଁ ସଂପର୍କିତ ହେବା କଥା ମନେ ପକାଇଲେ ମନେ ପଡୁଛି ଏଠି ଯୋଗଦାନ କରିବାର କିଛି ଦିନ ପରେ ସାର୍‌ଙ୍କ ସହିତ ପ୍ରଥମେ ପରିଚିତ ହୋଇଥିଲି ଉତ୍କଳ ସାଂସ୍କୃତିକ ପରିଷଦର ସାହିତ୍ୟ ଆସରରେ । ସାର୍‌ଙ୍କୁ ମୁଁ ସେଇଠି ଭେଟିଥିଲି ଏବଂ ତାଙ୍କ ବ୍ୟକ୍ତିତ୍ୱର ଚୁମ୍ବକୀୟ ଆକର୍ଷଣରେ ଆକର୍ଷିତ ହୋଇଥିଲି । ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ଓ ଅଭିବୃଦ୍ଧି ନିମନ୍ତେ ତାଙ୍କର ବ୍ୟାକୁଳତା ଓ ପ୍ରଚେଷ୍ଟା ମୋତେ ବିଶେଷ ପ୍ରଭାବିତ କରିଥିଲା । ଓଡ଼ିଆ ଭାଷା ସାହିତ୍ୟର ଛାତ୍ରୀ ଭାବରେ ସମଗୋତ୍ରୀୟ ବ୍ୟକ୍ତି ବିଶେଷଙ୍କ ସହିତ ଶ୍ରଦ୍ଧା ଓ ସମ୍ମାନ ସୃଷ୍ଟି ହେବା ଥିଲା ଏକାନ୍ତ ସ୍ୱାଭାବିକ । ସେହି ଦିନରୁ ଆଜି ପର୍ଯ୍ୟନ୍ତ ଅଗ୍ରଜର ଶ୍ରଦ୍ଧା ଓ ସମ୍ମାନ ମୁଁ ତାଙ୍କୁ ଦେଇ ଆସିଛି । ଓଡ଼ିଆ ସାହିତ୍ୟର ଉନ୍ନତି କଳ୍ପେ ତାଙ୍କର ଉତ୍ସର୍ଗୀକୃତ ମନୋଭାବ ସୁନାବେଡ଼ାରେ ସମସ୍ତ ସାହିତ୍ୟାନୁରାଗୀଙ୍କ ପ୍ରେରଣାର ଉତ୍ସ ପାଲଟିଛି ।

ଶ୍ରୀଯୁକ୍ତ ସାହୁ ଜଣେ ଉଚ୍ଚକୋଟୀର ସାହିତ୍ୟିକ । ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅଧ୍ୟୟନ ଓ ଅଧ୍ୟାପନା ସନ୍ନିବଦ୍ଧ । ତେଣୁ ସାହିତ୍ୟ ପ୍ରତି ଅନୁକୂଳ ରଚି ପ୍ରକାଶ କରିବା ନିଶ୍ଚିତ ଭାବରେ ତାଙ୍କ ଠାରୁ ଆଶା କରିବା ସ୍ୱାଭାବିକ୍ । ଅବଶ୍ୟ ସମସ୍ତଙ୍କ କ୍ଷେତ୍ରରେ ଏହା ପ୍ରଯୁଜ୍ୟ ନ ହୋଇପାରେ । ମାତ୍ର ଓଡ଼ିଆ ଭାଷା ସାହିତ୍ୟର ଜଣେ ଛାତ୍ର



Digitized by srujanika@gmail.com

ତଥା ଛାତ୍ରବତ୍ସଳ ଅଧ୍ୟାପକର ଦାୟିତ୍ୱ ନିର୍ବାହ କରିବା ବ୍ୟକ୍ତିଙ୍କ ଠାରୁ ସମସ୍ତେ ଏହାହିଁ ଆଶା କରିବେ । ସାର୍ ସେ ଆଶା ପୂରଣ କରିବାର ପ୍ରୟତ୍ନ କରି ଆସିଛନ୍ତି ଉଭୟ ଜୀବନ ଓ ଜୀବିକା କ୍ଷେତ୍ରରେ । ଛାତ୍ର ଜୀବନରୁ ତାଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଗଭୀର ଅନୁରକ୍ତି । ତାର ପୃଷ୍ଠଭୂମିରେ ରହିଛି ଆଉ ଏକ ଗୂଢ଼ ରହସ୍ୟ । ତାହା ହେଉଛି ଜନ୍ମମାଟି ପ୍ରତି ଅନୁରକ୍ତି ଓ ଜନ୍ମମାଟିର ବିଶିଷ୍ଟ ସାହିତ୍ୟିକମାନଙ୍କର ଗଭୀର ପ୍ରଭାବ । ସାର୍ଙ୍କର ଜନ୍ମ ଓଡ଼ିଶାର ସୁପ୍ରତିଷ୍ଠିତ ସାହିତ୍ୟିକ ଭୂମି କୁସୁପୁରରେ, ଯେଉଁଠି ଜନ୍ମ ନେଇଛନ୍ତି ପଲ୍ଲୀକବି ନନ୍ଦକିଶୋର ବଳ, କବି ଜ୍ଞାନୀନ୍ଦ୍ର ବର୍ମା, ଶିଳ୍ପିଗୁରୀ ବିଦ୍ୟାଧର ବର୍ମା ଓ ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ । ପିଲାଦିନୁ ତାଙ୍କ ଅବଚେତନରେ ସେମାନଙ୍କ ପ୍ରଭାବ ନିଶ୍ଚୟ ପଡିଥିବ । ତେଣୁ କିଶୋର ବୟସରୁ ଲେଖାଲେଖି କରିବା ପାଇଁ ସେ ଆଗ୍ରହୀ ହେବା ସହିତ ବାଗ୍‌ଦେବୀଙ୍କର ଆଜୀବନ ସେବକ ସାଜିବାର ମନୋଭାବ, ତାଙ୍କ ଠାରେ ଜାଗ୍ରତ ହୋଇଥିଲା । ଯାହା ଅଦ୍ୟାବଧି ଜାରି ରହିଛି ।

ନିଜର ସାଂଗଠନିକ ମନୋଭାବ ଯୋଗୁ ସେ ବହୁ ସାହିତ୍ୟିକ ଅନୁଷ୍ଠାନ ସହିତ ଜଡ଼ିତ ରହି ବିଭିନ୍ନ ପତ୍ରିକାର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଛନ୍ତି । ସେହି ଭାବାବେଗ କୋରାପୁଟ ଆସିବା ପରେ ଅଧିକ ବ୍ୟାପ୍ତ ହୋଇଛି । ସୁନାବେଡ଼ା ଆସିବା ପରେ କୋରାପୁଟର ବହୁ ସାହିତ୍ୟ ଅନୁଷ୍ଠାନ ସହିତ ସେ ନିଜକୁ ଜଡ଼ିତ କରିଛନ୍ତି । ତାଙ୍କ ପ୍ରଚେଷ୍ଟା ଓ ଆମ ଭଳି କେତେକ ସାହିତ୍ୟାନୁରାଗୀ ବ୍ୟକ୍ତି ବିଶେଷଙ୍କର ତାଙ୍କ କାର୍ଯ୍ୟ ପ୍ରତି ସ୍ୱୀକୃତି ଓ ସହଯୋଗ ଯୋଗୁ ସୁନାବେଡ଼ାରେ ଗଢ଼ି ଉଠିଲା 'ବନଫୁଲ ସାହିତ୍ୟ ପରିଷଦ' । ବନଫୁଲର ବିଷୁବ ମିଳନ ସେ ସମୟରେ ଅବିଭକ୍ତ କୋରାପୁଟ ଜିଲ୍ଲାର ସାହିତ୍ୟିକ, କବିମାନଙ୍କୁ ସୁନାବେଡ଼ାରେ ଏକତ୍ରିତ ହୋଇ ଭାବ ବିନିମୟ ପାଇଁ ଏକ ବିସ୍ତୃତ କ୍ଷେତ୍ର ସୃଷ୍ଟି କରିଥିଲା । ଏହାର ସୁପରିଚାଳନା ପାଇଁ ବସନ୍ତ ସାର୍ଙ୍କର ଉଦ୍ୟମ, ସାଂଗଠନିକ ଦକ୍ଷତା ନିଶ୍ଚୟ ପ୍ରଶଂସନୀୟ । ସେ ସମୟରେ ସୁନାବେଡ଼ାର ସାହିତ୍ୟିକ ବାତାବରଣ ସରଗରମ ହୋଇ ଉଠୁଥିଲା ବନଫୁଲ ସାହିତ୍ୟ ପରିଷଦର କାର୍ଯ୍ୟକ୍ରମକୁ ନେଇ । ବିଶିଷ୍ଟ ଭୂଦାନ କର୍ମୀ ଓ ସାହିତ୍ୟିକ କୃଷ୍ଣ ସିଂହଙ୍କର ଏହି ଉଦ୍ୟମକୁ ସମର୍ଥନ ଓ ସହଯୋଗ ଫଳରେ ସେମିଳିଗୁଡ଼ାରେ ଗଢ଼ି ଉଠିଲା 'ଓଡ଼ିଆ ଲେଖକ ପାଠକ ସମ୍ମେଳନ' । ଯାହାକି ବାତାବରଣକୁ ଅଧିକ ସମୃଦ୍ଧ ଓ ରସାପ୍ଲୁତ କଲା, ଅଗ୍ନିରେ ଘୃତ ଢ଼ାଳିବା ଭଳି । ଏହି ସବୁ କାର୍ଯ୍ୟକ୍ରମରେ ନିଜକୁ ସାମିଲ୍ କରି ଆମେ ବେଶ୍ ଉତ୍‌ଫୁଲ୍ଲିତ ହେଉଥିଲୁ । ଆଜି ମଧ ସେହି ଆସର ଗୁଡ଼ିକର ସ୍ମୃତି ଓ ସାର୍ଙ୍କର ଏଥି ନିମିତ୍ତ ସାଗ୍ରହ ଉଦ୍ୟମ ସ୍ମୃତିରେ ରହିଛି । ଅବଶ୍ୟ ପରେ କୌଣସି କାରଣରୁ ବନଫୁଲ କ୍ରିୟାହୀନ ହୋଇ ପଡିଲା । କିନ୍ତୁ ସାର୍ଙ୍କର ଉଦ୍ୟମରେ ଶିଥିଳତା ଆସିଲା ନାହିଁ । ବନଫୁଲ ପରେ ବନପ୍ରଭା ମୁଣ୍ଡ ଟେକି ଉଠିଲା । ଏହା ପଛରେ ସାର୍ଙ୍କର ପ୍ରୋତ୍ସାହନ, ପ୍ରେରଣା ତଥା ପରାମର୍ଶ, ଉପଦେଶ, ଦିଗ୍‌ଦର୍ଶନ କାର୍ଯ୍ୟ କରି ତାହା ଏ ପର୍ଯ୍ୟନ୍ତ ଅବ୍ୟାହତ ରହିଛି ।

ଉନ୍ନତ ତଥା ସୁସ୍ଥ ସାହିତ୍ୟିକ ବାତାବରଣ ସୃଷ୍ଟି କରିବା ପାଇଁ ସେ ତାଙ୍କ



Digitized by srujanika@gmail.com

ଉଦ୍ୟମ ସର୍ବଦା ଜାରି ରଖିଛନ୍ତି । ଉତ୍କଳ ସାଂସ୍କୃତିକ ପରିଷଦ, ସ୍ମରଣିକା ଓ ଶ୍ରୀଜଗନ୍ନାଥ ସେବା ସଂସ୍ଥା ସୁନାବେଡ଼ାର ମୁଖପତ୍ର 'ସ୍ୱର୍ଣ୍ଣକ୍ଷେତ୍ର'ର ସମ୍ପାଦନା କ୍ଷେତ୍ରରେ ତାଙ୍କର ଭୂମିକା ବେଶ୍ ଉଲ୍ଲେଖନୀୟ । ଜଣେ ସହ ସମ୍ପାଦିକା ଭାବରେ ମୁଁ କେତେକ ସଂଖ୍ୟାରେ କାର୍ଯ୍ୟକରି ତାଙ୍କ କାର୍ଯ୍ୟଶୈଳୀ ସହିତ ପରିଚିତ ହୋଇଛି । ପତ୍ରିକାଗୁଡ଼ିକୁ ଆଙ୍ଗୀକ ଓ ଆତ୍ମିକ ଦିଗରୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ତାଙ୍କ ବ୍ୟାକୁଳତାକୁ ଲକ୍ଷ୍ୟ କରିଛି । ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ତଥା ଓଡ଼ିଶାର ବରପୁତ୍ରମାନଙ୍କୁ ସମଗ୍ର ଓଡ଼ିଆଙ୍କ ନିକଟରେ ପୁନଃ ପରିଚିତ କରାଇବା ପାଇଁ ତାଙ୍କର ଆନ୍ତରିକ ଇଚ୍ଛାକୁ ସାଧୁବାଦ ନ ଜଣାଇ ମୁଁ ରହିପାରୁନାହିଁ । ବାସ୍ତବରେ ତାଙ୍କ ପ୍ରଚେଷ୍ଟାରୁ ହିଁ ଏହି ଉପାନ୍ତ ଅଞ୍ଚଳରେ ଅନେକ ଯୁବ ସାହିତ୍ୟିକ ସୃଷ୍ଟି ହୋଇଛନ୍ତି । ସୁନା ଚିହ୍ନେ ବଣିଆ ନ୍ୟାୟରେ ସୁପ୍ତ ପ୍ରତିଭାମାନଙ୍କୁ ଲୋକଲୋଚନକୁ ଆଣିବା ସହିତ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଘଟାଇବାରେ ତାଙ୍କର ଏହି ଅଭିଯାନ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ଯେ କରିଛି ତାହା ଅସ୍ୱୀକାର କରିହେବ ନାହିଁ । ସେ ସାହିତ୍ୟର ବିଭିନ୍ନ ବିଭାଗ ଓ ବିଭାବରେ ଲେଖନୀ ଚାଳନା କରିଛନ୍ତି । ନିଜର ୩୨ ଖଣ୍ଡ ପୁସ୍ତକ ସହିତ ସେ ୬୦ରୁ ଉର୍ଦ୍ଧ୍ୱ ପତ୍ରପତ୍ରିକାର ସଂପାଦନା କରି ନିଜ କୃତି ଓ କୃତିତ୍ୱର ପଦଚିହ୍ନ ଓଡ଼ିଆ ସାହିତ୍ୟରେ ରଖିଛନ୍ତି ।

ବ୍ୟକ୍ତିଗତ ଭାବରେ ସେ ଜଣେ ସ୍ୱଳ୍ପଭାଷୀ, ଶାନ୍ତିପ୍ରିୟ ତଥା ସ୍ନେହଶୀଳ ବ୍ୟକ୍ତି । ସାହିତ୍ୟ କ୍ଷେତ୍ରରେ ସେ ଜଣେ ନିଷ୍ଠାବାନ ବାଣୀସାଧକ, ସଂଗଠକ ତଥା ନବଜାଗରଣ ଓ କ୍ରାନ୍ତି ସୃଷ୍ଟିକାରୀ । ଓଡ଼ିଆ ଜାତିକୁ, ମାଟିକୁ ଏବଂ ଭାଷାକୁ ସେ ସର୍ବଦା ଗଭୀର ଭାବରେ ଭଲ ପାଇ ଆସିଛନ୍ତି । ବୃତ୍ତି ଓ ପ୍ରବୃତ୍ତିର ସାମ୍ୟତା ଆମ ଭିତରେ ଏକ ସଂପର୍କ ଗଢ଼ି ତୋଳିଥିଲା । ଜଣେ ଅଗ୍ରଜର ଆପଣାର ଅନୁଜା ପ୍ରତି ଯେତିକି ସ୍ନେହ, ଶ୍ରଦ୍ଧା ଓ ଆପଣାର ଭାବ ରହିବାର କଥା ତାହା ମୁଁ ତାଙ୍କ ଠାରୁ ସବୁ ସମୟରେ ସବୁ କ୍ଷେତ୍ରରେ ପାଇଛି ।

ହୁଏତ ସେ କର୍ମ କ୍ଷେତ୍ରରୁ ଅବସର ନେବା ପରେ ଏହି ପରିବେଶରୁ ଆମକୁ ଅଲଗା ହେବାକୁ ପଡିବ । ମାତ୍ର ଆନ୍ତରିକ ସଂପର୍କର ନିବିଡ଼ ଗ୍ରନ୍ଥି ବନ୍ଧନ କେବେବି ଶିଥିଳ ହେବନାହିଁ । ମତର ପାର୍ଥକ୍ୟ କେବେକେବେ ଘଟିଲେ ବି ମନର ଐକ୍ୟବଦ୍ଧତା ଆମ୍ଭମାନଙ୍କୁ ଗୋଟିଏ ରଜ୍ଜୁରେ ନିଶ୍ଚିତ ବାନ୍ଧି ରଖିବ । ଶେଷରେ ଏତିକି କହିବି ସେ ଦୀର୍ଘାୟୁ ହୁଅନ୍ତୁ ଏବଂ ସୁସ୍ଥ ସୁନ୍ଦର ନିରାମୟ ଜୀବନ ନେଇ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି କଳ୍ପେ ଆପଣାର ପ୍ରଚେଷ୍ଟା ଜାରି ରଖନ୍ତୁ । ସର୍ବନିୟନ୍ତା ପରମେଶ୍ୱର ସମସ୍ତ କ୍ଷେତ୍ରରେ ତାଙ୍କର ସହାୟକ ହୁଅନ୍ତୁ ।



ଶିକ୍ଷୟିତ୍ରୀ, ଏରୋନଟିକ୍ସ ଗାର୍ଲସ ହାଇସ୍କୁଲ, ସୁନାବେଡ଼ା



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ସାହିତ୍ୟ ଓ ସାହିତ୍ୟ ସଂଗଠନ ସଂପର୍କିତ ଏକ ସଂକ୍ଷିପ୍ତ ଉପସ୍ଥାପନ

**କୃଷ୍ଣ ସିଂହ**

ଡକ୍ଟର ବସନ୍ତ କିଶୋର ସାହୁ ଜଣେ ସନାମଧନ୍ୟ ଶିଶୁ ସାହିତ୍ୟିକ ଓ ଲୋକ ସାହିତ୍ୟର ଜଣେ ଅଗ୍ରଗଣ୍ୟ ଗବେଷକ ସତ କିନ୍ତୁ ତାଙ୍କର ସାହିତ୍ୟ କୃତି ଗବେଷଣା ଲବ୍ଧ ଜ୍ଞାନର ଚର୍ଚ୍ଚା କିମ୍ବା ତର୍ଜମା କରିବା ଅଭିଳାଷ ଏଠି ମୋର ନାହିଁ । ସେ ସଂପର୍କରେ ବହୁ ସାହିତ୍ୟିକ ବଂଧୁଙ୍କର ସଂନ୍ଦର୍ଭ ଏ ପୁସ୍ତକରେ ସ୍ଥାନିତ । ମୋର କାର୍ଯ୍ୟ ଏ ଉପାନ୍ତ ଅଞ୍ଚଳରେ ଓଡିଆ ଭାଷା ସାହିତ୍ୟର ପ୍ରଚାର ପ୍ରସାର ପାଇଁ କାର୍ଯ୍ୟ ସଂପର୍କିତ କିଛି କଥା, ନିଜସ୍ୱ ଭାଷା ଥିବା ଆଦିବାସୀମାନଙ୍କୁ ଏବଂ ଦୋ ଭାଷୀ କୋରାପୁଟ ଅଧିବାସୀମାନଙ୍କର ଓଡିଆ ଭାଷା ପ୍ରତି ଆନୁଗତ୍ୟ, ବିଶୁଦ୍ଧ ଉଚ୍ଚାରଣ ପଠନ/କଥନ ପ୍ରତି କିପରି ଆକୃଷ୍ଟ କରାଯିବ ତାହା ଏକ ପ୍ରଧାନ କାର୍ଯ୍ୟକ୍ରମ ଆମର ଥିଲା ଓ ଅଛି । ମାଡ୍ରାସ ପ୍ରେସିଡେନ୍‌ସିରେ ଇଂରେଜ ଶାସନ କାଳରେ ଥିବା ଦକ୍ଷିଣ ଓଡିଆ ଭାଷା, ସାହିତ୍ୟ, ସଂସ୍କୃତି ତେଲୁଗୁ ଭାଷା ଦ୍ୱାରା ସଂକ୍ରମିତ କେବଳ ନୁହେଁ-ବହୁ ଭାବେ ଓଡିଆ ଭାଷା ଚାଲିଚଳଣ ଓ ନିଜେ ଓଡିଆଟି ଏକ ରକମ ଘରେ କୁଣିଆ ପରି ଏଠି ଥିଲା । ୧୯୫୦ରୁ ୧୯୭୦-୮୦ ଦଶକ ପର୍ଯ୍ୟନ୍ତ, ଓଡିଆ ଲେଖକ ପାଠକ ସମ୍ମେଳନ ସେ ଚେତନାକୁ ସଂଭୂତ ସଂଗଠନ । ତାର ଜଣେ ମଶାଲବାହୀ ଅଗ୍ରଗଣ୍ୟ ସେନାନୀ ହେଲେ ଡଃ. ବସନ୍ତ କିଶୋର ସାହୁ । ସେ ଜଣେ ତପସ୍ୟାରତ ଭାଷା ସାହିତ୍ୟ ସଂଗଠକ । ଗତ ୩ ଦଶନ୍ଧି ଧରି ମୋର ତାଙ୍କ ସହିତ ଥିବା ଅତୁଳନୀୟ ସାରସତ ସଂପର୍କରେ କେବେ ଦିନେ ତାଳମେଳରେ ତୃଟି ବିଚ୍ୟୁତି ଘଟିନାହିଁ । ସରଳ ନିରାଡମ୍ବର ସଳ୍ପଭାଷୀ ଭାଷା ସାହିତ୍ୟ ପାଇଁ ହାତରୁ ଖାଇ ଘୋଡା ଆଗରେ ଧାଇଁବା ଡକ୍ଟର ସାହୁ-ପେଷାରେ ଅଧ୍ୟାପକ ଏବଂ ଛାତ୍ର ବତ୍ସଳ ଅଧ୍ୟାପକ । ଅନେକ ସାମାଜିକ, ସାଂସ୍କୃତିକ କାର୍ଯ୍ୟରେ ସାହିତ୍ୟ ସଂଗଠନ ଭିତରେ ସେ ମୋର ସହକର୍ମୀ । ପ୍ରତିବାଦ ନାହିଁ, ପ୍ରତିରୋଧ ନାହିଁ, କାହାରି ତୃଟିକୁ ଖୋଜିବା ନାଆଁ ନେଇ, କାର୍ଯ୍ୟ ସଂପାଦନାରେ ଅବହେଳା ସେ ସୃଷ୍ଟି କରନ୍ତି ନାହିଁ । ଓଡିଆ ଲେଖକ ପାଠକ ସମ୍ମେଳନ, ବନଫୁଲ ଆଦି ସଂଗଠନ ସମାରୋହରେ ଦେଖିଛି ଅସହ୍ୟ ବୋଝ ଭାରରେ ସେ ନଇଁ ପଡୁଥିଲେ ମଧ୍ୟ ସାରସତ କାର୍ଯ୍ୟକୁ ସେ ସଂପାଦନ କରିଛନ୍ତି । ତାଙ୍କୁ ଏପରି ଅବସ୍ଥାରେ ଦେଖି ମୁଁ ମୁହଁରେ ସିଧା ଧନ୍ୟବାଦ ଦେଇନାହିଁ । ପ୍ରଚୁର ପ୍ରାଣ



Digitized by srujanika@gmail.com

ପ୍ରାଚୁର୍ଯ୍ୟରେ ନିଜକୁ ନିଜେ ଉଲ୍ଲସିତ ହୋଇଛି । କୌଣସି କାର୍ଯ୍ୟରେ ମଧ୍ୟ ଏ ପ୍ରକାର ସଭ୍ୟତା ପ୍ରଦର୍ଶନ କରୁଥିବା ସହକର୍ମୀର କର୍ମ କୁଶଳତାରେ ଅନ୍ୟମାନେ ଧନ୍ୟ ହୋଇଯାନ୍ତି ଯେପରି ମୁଁ ହୋଇ ଯାଉଥିଲି । ବସନ୍ତ ବାବୁଙ୍କ ଠି ମାର୍ଜିତ ବ୍ୟକ୍ତିର ଲକ୍ଷଣ ରହିଛି । ରହିଛି ଜଣେ କବି ସାହିତ୍ୟିକର ବିନମ୍ର ଜୀବନର ଶୈଳୀ ।

ଲେଖକ ପାଠକ ସମ୍ମେଳନ, ବନଫୁଲ, ବନପ୍ରଭା, ସତ୍ତା ଅଥବା ଶ୍ରୀଜଗନ୍ନାଥ ସ୍ମରଣିକା ପ୍ରକାଶନ ଅଥବା ସାହିତ୍ୟ ସଂସ୍କୃତିର କୌଣସି ସମାରୋହରେ ଯେତେବେଳେ ସ୍ମରଣ କରାଯାଇଛି, ଅଗ୍ରଭାଗରେ ବସନ୍ତ ବାବୁ ଉଭା ଅଛନ୍ତି ଏଥିରେ ସନ୍ଦେହ ନାହିଁ । ସେ ମୋର ଏକାନ୍ତ ଶ୍ରଦ୍ଧେୟ ଅନୁଜ ପ୍ରତିମ । ତାଙ୍କ ପ୍ରତି ମୋର ଅଦେୟ କିଛି ନାହିଁ ସିନା ଦେଇ ପାରବି କଣ ? ସାହିତ୍ୟ ଗବେଷଣା ଭିତରେ/ ଶିଶୁ କବିତାରେ ଶିଶୁଙ୍କ ଭିତରେ ତାଙ୍କୁ ଜଣେ ଗତିଶୀଳ ସ୍ରଷ୍ଟା ଭାବେ ସଦା ଦେଖିବାକୁ ମିଳୁଥାଉ, ଏହାହିଁ ଅଗ୍ରଜ ଭାବରେ ମୋର ତାଙ୍କ ପ୍ରତି ଆର୍ଶୀବଚନ ।

"ଅନୁଜ ବସନ୍ତ ତୁମେ ଆୟୁଷ୍ମାନ
ରୁହ ଚିରକାଳ
ଶିଶୁ ସାରଲ୍ୟ ଭିତରେ -
କବିତାରେ ଲୋକଗୀତ
ଲୋକନୃତ୍ୟ, କବି ଅନ୍ୱେଷାରେ-
ମୁଁ ତୁମକୁ ସଦା ଦେଖେ ସଶରୀରେ/
ମୋ ଦେହରେ/ ମୋ ଅଦେହରେ
ମୋ ନେପଥ୍ୟେ -
ଅନୁରାଗୀ, ଅନୁରାଗୀ ସ୍ନେହ ଶ୍ରଦ୍ଧା
ସଦିଚ୍ଛା ଭିତରେ -
ସାରସତ କର୍ମ ଆଉ ସାଂସ୍କୃତିକ ଚେତନାରେ
ଭାଷା ଜାତି ଅହମିକା ବଜାୟ ରଖିବା ପାଇଁ
ଉପାନ୍ତରେ ପଦାତିକ ସଂଗ୍ରାମୀ ଭାବରେ - ।"



ଚେୟାରମ୍ୟାନ
ସୀତମ ସେମିଳିଗୁଡା, କୋରାପୁଟ



Digitized by srujanika@gmail.com

# ଅତି ନିକଟରେ ହୃଦୟର

**ସରସ୍ୱତୀ ରାୟ**

ସମୟ ଏମିତି ଏକ ଶକ୍ତି ଯାହା ଆଗରେ ଅନ୍ୟାନ୍ୟ ଶକ୍ତି ସମୂହ ଫିକା ପଡିଯାଏ । ଚିରକାଳ ଲାଗି ଅଣ୍ଟିରେ ବାନ୍ଧି ରଖିବାକୁ ଚାହୁଁଥିବା ମୁହୂର୍ତ୍ତମାନଙ୍କୁ ଏଇ ସମୟ ହିଁ ଦୂରକୁ ଛାଟି ଫିଙ୍ଗିଦିଏ । ସ୍ମୃତିର କଙ୍କାଳ କରି ଠେଲିଦିଏ ସଂଗ୍ରହାଳୟର ଅନ୍ଧାରୀ ଗୃହକୁ । ସେଇ ସ୍ମୃତିକୁ ସାଉଁଟିବା ଲାଗି ହୁଏତ ପୁଣି ଧାଇଁ ଯିବାକୁ ପଡେ ଅନୁଭବୀକୁ ଅନ୍ଧାର ଘରର ଦରଜା ପର୍ଯ୍ୟନ୍ତ ।

ସମୟ ଦିନେ ସାଗତିକାର ତୋରଣ ସଜେଇଥିଲା ତାଙ୍କ ପାଇଁ-ଆଦେଶ ଦେଇଥିଲା ସୁନାବେଡା ସହରକୁ ଏକ ନିର୍ଦ୍ଦିଷ୍ଟ ଅବଧି ପାଇଁ ବାନ୍ଧି ରଖିବାକୁ ତାଙ୍କୁ କର୍ତ୍ତବ୍ୟର ଡୋରିରେ । କର୍ମକ୍ଷେତ୍ର କଲେଜରେ ରାଜକାର୍ଯ୍ୟ ତୁଲଉ ତୁଲଉ କେତେବେଳେ ଆଉ ଏକ ମହାକର୍ତ୍ତବ୍ୟ ନିମିତ୍ତ ସନ୍ଧିପତ୍ର ସାକ୍ଷର କରିସାରିଥିଲେ ସେ, ନିଜ ଅଜାଣତରେ । ତାହା ଥିଲା ସାହିତ୍ୟ ସେବା । ଅନ୍ତରର ଶ୍ରଦ୍ଧାକୁ ଯେଉଁ କାର୍ଯ୍ୟରେ ଶହେ ପ୍ରତିଶତ ଢାଳି ଦିଆଯାଏ । କୌଣସି ଅପେକ୍ଷା ନ ରଖି, ତାହାହିଁ ତ ମୋ ବୁଝିବାରେ ମହାକର୍ତ୍ତବ୍ୟ ବା ସେବା । ବସନ୍ତ ସାର୍‌ଙ୍କୁ ସେ ସମୟରୁ ମୁଁ ଦେଖିଛି ଯେତେବେଳେ ମୋ କଳ୍ପନାରେ ନୂଆ ନୂଆ ପର କଅଁଳୁଥିଲା । ଯୁକ୍ତ ଦୁଇ ଶ୍ରେଣୀରେ ଖଣ୍ଡି ଉଡା ଦଉଦଉ ଭୂଇଁରେ କଚଡା ଖାଇ ଲହୁଲୁହାଣ ହେଉଥିବା ଟିକି ଚଢେଇଟେ ଥିଲି ମୁଁ । ଖୋଜୁଥିଲି ଏମିତି ପୁଳେ ଆଶୀର୍ବାଦ ଯାହାର ବର୍ଷାରେ ମୋ କୁଢକୁଢ ସପ୍ନରେ ଡେଣା ଲାଗିଯାଆନ୍ତା । କତିପୟ ଶିକ୍ଷକଙ୍କ ସମେତ ବସନ୍ତ ସାର୍‌ଙ୍କ ଠୁ ବି ସେଇ ଅପୂର୍ବ ଚିଜ ପ୍ରାପ୍ତ ହୋଇଥିଲା ମୋତେ । ଶାନ୍ତ ଏବଂ ଲାଜକୁଳା ସ୍ୱଭାବର ବସନ୍ତ ସାର୍‌ଙ୍କୁ ଦେଖି ଆମେ ସବୁ ଭାବୁଥିଲୁ -'ସାର୍‌ଙ୍କ ଚାଷ ନିଶ୍ଚୟ ଗଭୀର ପାଣିରେ ।'

ନୂଆ ନୂଆ ଆଧୁନିକ କବିତା ଲେଖୁଥାଏ ମୁଁ ଏବଂ ସାଙ୍ଗମାନଙ୍କୁ ଶୁଣାଉଥାଏ । ମନେ ମନେ ଆବଶ୍ୟ ଖୋଜୁଥାଏ ସୁଯୋଗଟିଏ, ଯେଉଁଠି ଏକ ବୃହତ୍ ଜନତାକୁ ଶୁଣେଇ ହୁଅନ୍ତା ମୋ ହୃଦୟର ସନ୍ଦେଶ । ଠାକୁରେ ଯେମିତି ମନକଥା ଜାଣି ପାରିଲେ । ସେଇ ବର୍ଷ ହିଁ ମାନେ ଛୟାଅଶୀ ସାଲରେ ଆରମ୍ଭ ହେଲା 'ବନଫୁଲ'ର ପ୍ରଥମ କବିତା ଉତ୍ସବ ।



Digitized by srujanika@gmail.com

ବୋଧହୁଏ ବସନ୍ତ ସାର୍‌ଙ୍କର ମହାକର୍ତ୍ତବ୍ୟର ଅଂଶବିଶେଷ ଥିଲା ତାହା । ବାବାଜୀ ଭାଇ, ଗଣପତି ଭାଇଙ୍କ ସହ ଆଉ ଯେଉଁ କେତେଜଣଙ୍କୁ ମୁଁ ଏ କାର୍ଯ୍ୟରେ ନିଃସର୍ତ୍ତ ଜଡିତ ଥିବାର ଦେଖିଥିଲି, ସେ ହେଲେ ବସନ୍ତ ସାର୍ । ସେଇ ଦିନରୁ ଯାତ୍ରା ଚାଲୁ ରହିଛି । 'ବନଫୁଲ' ପାଲଟି ଯାଇଛି 'ବନପ୍ରଭା' । ଅସଂଖ୍ୟ ଆସର, ଶେଷହୀନ କବିତା, ପୁସ୍ତକର ପୁଆର, ସଂବର୍ଦ୍ଧନା, ଅତିଥି ସତ୍କାର-ସର୍ବୋପରି ମାନବିକ ଭାବ ଦିଆନିଆର ଯେଉଁ ପରଂପରା ପ୍ରତିଷ୍ଠିତ କରିଦେଇଛି ସମୟ ସୁନାବେଡାରେ ତା' ପଛରେ ମୁଷ୍ଟିମେୟ କିଛି ଲୋକଙ୍କୁ ଛାଡିଦେଲେ, ବସନ୍ତ ସାର୍‌ଙ୍କ ପ୍ରଚ୍ଛନ୍ନ ହାତ ରହିଛି । ନୂତନ ଲେଖିକା ଲେଖକଙ୍କୁ ପ୍ରୋତ୍ସାହନ ଦେବା ସହିତ ସେମାନଙ୍କ ପୁସ୍ତକ ପ୍ରକାଶନରେ ଖୋଲା ହୃଦୟରେ ସହଯୋଗ କରିଛନ୍ତି ବସନ୍ତ ସାର୍ । ବିଶେଷ କରି ବାବାଜୀ ଭାଇ ଓ ସରଳା ଦିଦି ଯେବେ ତାଙ୍କ ନିଃସ୍ୱାର୍ଥ ସାହିତ୍ୟ ସେବା ବିଷୟରେ କହନ୍ତି, ଆମେ ଖୁବ୍ ଉତ୍ସାହରେ ଶୁଣୁ । ମନେ ମନେ ସଂକଳ୍ପ ନିଏ ମୁଁ, 'ସାର୍‌ଙ୍କ ଭଳି କିଛି କାମ କରିବି ।' କିନ୍ତୁ ଆଗେଇ ପାରେନି ।

ସାର୍‌ଙ୍କ ଚରିତ୍ରର ସବୁଠି ବେଶି ଛୁଉଁଥିବା ଦିଗ ହେଲା ତାଙ୍କର ଆତ୍ମପ୍ରଚାର ବିମୁଖତା । ଆଜିର ବିଜ୍ଞାପନ ସର୍ବସ୍ୱ ଯୁଗରେ, ଯେଉଁଠି ମଣିଷ ନିଜ ଢୋଲ ନିଜେ ପିଟିବାରେ ବ୍ୟସ୍ତ ସାର୍ ହେଉଛନ୍ତି ଏକ ବ୍ୟତିକ୍ରମ । ସ୍ଥିତପ୍ରଜ୍ଞ ଯୋଗୀଟିଏ ଭଳି ସଂପାଦନ କରିଚାଲିଛନ୍ତି ସେ ଅନେକ କର୍ମ । ତାଙ୍କ କୃତିତ୍ୱର ଏକ ଲମ୍ବା ତାଲିକା ତିଆରି କରିହବ । ସାର୍ ଶିଶୁ ସାହିତ୍ୟ ଉପରେ ଯଥେଷ୍ଟ କାମ କରିଛନ୍ତି । ଅଥଚ ଅନେକ ଦିନ ଯାଏଁ ସେ ସମ୍ବନ୍ଧରେ ଅଜ୍ଞ ଥିଲି ମୁଁ ।

ଯେଉଁ ଶକ୍ତିଶାଳୀ ସମୟ ସାର୍‌ଙ୍କ ପାଇଁ ତୋରଣ ସଜେଇ ଥିଲା ସ୍ୱାଗତିକାର, ସେଇ ସମୟ ଆଜି ବଜେଇ ଦେଲାଣି ବିଦାୟର ଘଣ୍ଟା । ରାଜକାର୍ଯ୍ୟରୁ ଅବସର ନେବାର ତିଥି ପାଖେଇ ଆସିଲାଣି ତାଙ୍କର । କିନ୍ତୁ ମୋତେ ଲାଗୁନି ସେ କେବେ ହେଲେ ଆମ ମାନଙ୍କୁ ଠୁ ଦୂରେଇ ଯିବେ, ବ୍ୟକ୍ତିଗତ ଅଙ୍ଗୀକାର ବଦ୍ଧତା ପାଇଁ ସାହିତ୍ୟର କୃଷ୍ଣଚୂଡାରେ ନିଜକୁ ରକ୍ତାକ୍ତ କରିଥିବା ବସନ୍ତ ସାର୍ ସଦାସର୍ବଦା ଆମ ହୃଦୟ ପାଖରେ ହିଁ ଥିବେ । ଆମରି କର୍ମର ବୋଝ ନିଜ କାନ୍ଧ ଉପରକୁ ନେଇ ଓଲଟା ଆମଙ୍କୁ ବାହାବା ଦେଉଥିବେ । ଭାବିଲେ ଦେଖି, ଏଭଳି ଜଣେ ମଣିଷଙ୍କୁ ଆମେ କଣ ସହଜେ ଛାଡିଦେବା ?



ଅଧ୍ୟାପିକା, ଇଂରାଜୀ ବିଭାଗ
ସେମିଳିଗୁଡ଼ା ମହାବିଦ୍ୟାଳୟ, ସେମିଳିଗୁଡ଼ା, କୋରାପୁଟ



Digitized by srujanika@gmail.com

# ସାରସ୍ୱତ ସାଧନାରେ ବିନମ୍ର ଜୀବନ ଶିଳ୍ପୀ: ଡକ୍ଟର ବସନ୍ତ କିଶୋର ସାହୁ

**ପ୍ରଦୀପ କୁମାର ମିଶ୍ର**

ସଂସ୍କୃତରେ କୁହାଯାଇଛି- 'କାବ୍ୟ ଶାସ୍ତ୍ର ବିନୋଦେନ କାଲୋଃ ଗଚ୍ଛତି ଧୀମତାମ୍'। ଧୂଳି ଧୂସରିତ ଧରଣୀରେ ସ୍ୱର୍ଗ ସୃଜିବାର କ୍ଷମତା କେବଳ ସ୍ରଷ୍ଟାର ହିଁ ଅଛି । ତା' ଅମୃତ ଦୃଷ୍ଟି, ମଧୁର କଳ୍ପନା, ସ୍ୱର୍ଗୀୟ ଭାବ ପାଠକ ପ୍ରାଣରେ ଯେଉଁ ରସାନନ୍ଦ ସୃଷ୍ଟି କରେ ତାହା ହିଁ ସ୍ରଷ୍ଟାର ସିଦ୍ଧି । ତା'ର ସାରସ୍ୱତ ସାଧନା ଭିତରେ ଜୀବନର ପ୍ରତିଟି ମୁହୂର୍ତ୍ତକୁ ସେ ମାହେନ୍ଦ୍ର ବେଳାରେ ରୂପାନ୍ତରିତ କରୁଥାଏ । ଆପଣା ଭିତରେ ଶୁଣୁଥାଏ ଶୃଙ୍ଖଳିତ ଶବ୍ଦର ଭାବୋଚ୍ଛ୍ୱାସ । ଗୁଣୁଗୁଣୁ ହୋଇ ଲେଖୁଥାଏ ଜୀବନ ଓ ଜଗତର ମଧୁଝରା ସଙ୍ଗୀତ । ଯଥାର୍ଥ ଜୀବନଶିଳ୍ପୀ ନ ହେଲେ କେହି କେବେ ସ୍ରଷ୍ଟା ହୋଇପାରିବେ ନାହିଁ । ଜୀବନବୋଧ ଭିତରେ ଭଲ ପାଇବାର ସୁକୁମାର ଭାବଟି ନିରନ୍ତର ବିତରଣ କରି ସେ ଏ ମାଟିକୁ ସ୍ୱର୍ଗୀୟ ସୁଷମାରେ ଭରି ଦେଉଥାଏ । ଫଳରେ ନିମିଷକ ଲାଗି ପାଠକ ଏ ରୁକ୍ଷ ଧରଣୀକୁ ସ୍ୱର୍ଗ ବୋଲି ଭାବେ । ଏହି ଭାବ ମନସ୍କ ସ୍ରଷ୍ଟା ବିନମ୍ର ଜୀବନ ଶିଳ୍ପୀ ଡକ୍ଟର ବସନ୍ତ କିଶୋର ସାହୁ ଆମର ଗର୍ବ ଓ ଗୌରବ । ସ୍ୱର୍ଗତ ନନ୍ଦକିଶୋର ବଳଙ୍କ ସାଧନା ପୀଠ, ପଲ୍ଲୀ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟର ପୂଣ୍ୟମାଟି କୁସୁପୁରରେ କବିଙ୍କର ଜନ୍ମ । ବାଲ୍ୟ ଶିକ୍ଷା ଓ କବିତ୍ୱର ଉନ୍ମେଷ ପର୍ବ ଶେଷ କରି ତାରୁଣ୍ୟରେ ବଣମୂଲକ ଘେରା ମର୍ତ୍ତ୍ୟର ଅମରାବତୀ କୋରାପୁଟରେ କବି ପାଦ ଦିଅନ୍ତି । ଏହାର ଅନୁପମ ବନ ପ୍ରକୃତି, ବନବାସୀ ଜୀବନଚର୍ଯ୍ୟା ତାଙ୍କୁ ମୁଗ୍ଧ କରେ । କୋରାପୁଟକୁ ପ୍ରାଣ ଦେଇ ସେ ଭଲ ପାଆନ୍ତି । ଆପଣାର, କବିତ୍ୱ, ବାଗ୍ମୀତା, ଅମାୟିକ ବ୍ୟବହାର, ନମ୍ର ସ୍ୱଭାବ ଯୋଗୁ ସମସ୍ତଙ୍କର ଅତି ପ୍ରିୟ ହୋଇ ଉଠନ୍ତି । ଜଣେ ସଚ୍ଚା ସାହିତ୍ୟିକ ଓ ସଂଗଠକର ବିଶେଷ ଦକ୍ଷତା ତାଙ୍କ ପାଖରେ ମୁଁ ଲକ୍ଷ୍ୟ କରିଥିଲି ଆଜିକୁ ୧୯ ବର୍ଷ ତଳେ । ୧୯୯୩ ମସିହା, ଜାନୁଆରୀ ମାସ, ତାରିଖ ମନେ ନାହିଁ । ସରସ୍ୱତୀ ବିହାର ସେମିଳିଗୁଡ଼ା ମହାବିଦ୍ୟାଳୟରେ ଅନୁଷ୍ଠିତ ହେଉଥିଲା 'ଓଡ଼ିଆ ଲେଖକ ପାଠକ ସମ୍ମେଳନ' । ନିମନ୍ତ୍ରଣ ପାଇ, ଅଗ୍ରଜ ଲଳିତ ଭାଇ, ସୁବାସ ଚନ୍ଦ୍ର ମିଶ୍ର, ଅନିଲ ଚନ୍ଦ୍ର ଦାଶଙ୍କ ସହ ମୁଁ ବି ଯାଇଥାଏ । ଲକ୍ଷ୍ୟ କଲି ସୌମ୍ୟକାନ୍ତ ଚେହେରା, ସାଙ୍ଗଙ୍କୁ ବିନମ୍ର



Digitized by srujanika@gmail.com

ସଭାବ, ମଞ୍ଚ ଉପରେ, ଛିଡ଼ା ହୋଇ ସାଗତ କରୁଥାନ୍ତି ଅବିଭକ୍ତ କୋରାପୁଟର ସାହିତ୍ୟିକମାନଙ୍କୁ ଖୁବ୍ ବିନୟ ଭାବରେ, କୋମଳ ଶବ୍ଦରେ ।

ଏକ ଚୁମ୍ବକୀୟ ବ୍ୟକ୍ତିତ୍ୱର ନିଆରା ମଣିଷ ଭାବେ ସେ ଦିନରୁ ଆଜିଯାଏଁ ତାଙ୍କୁ ମୁଁ ଦେଖିଆସିଛି ବିଭିନ୍ନ ସଭାସମିତିରେ । ବରିଷ୍ଠ ସାହିତ୍ୟିକ, ସଂଗଠକ କୃଷ୍ଣ ସିଂହ ଆଜ୍ଞାଙ୍କ ଠୁ ବାବାଜୀ ଭାଇ, ସରଳା ଅପା ଏବଂ ଜଳଧର ସାଇଁଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହ ତାଙ୍କ ସମ୍ପର୍କର ପରିଭାଷା ନିଆରା । ତାଙ୍କ ସଂପର୍କରେ ମୁଁ ଅନ୍ୟଠୁ ବହୁ କଥା ଶୁଣିଛି । ଜଣେ ନିଷ୍ଠାପର ଶିଶୁ ସାହିତ୍ୟିକ ଭାବେ ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ଅଧୀନରେ ସେ ଗବେଷଣା କରୁଥିବା ବେଳେ, ବହୁ ଉଚ୍ଚକୋଟିର ପ୍ରବନ୍ଧ ସବୁ ବିଭିନ୍ନ ପତ୍ରପତ୍ରିକାରେ ପଢ଼ିଛି । ମନେ ମନେ ତାରିଫ୍ କରିଛି ଜଣେ ଅଧ୍ୟାପକଙ୍କୁ ଯିଏ, ଯୁବକମାନଙ୍କୁ ପଢ଼ାଉଥିଲେ ବି ଶିଶୁଙ୍କ ମନସ୍ତତ୍ତ୍ୱ ଓ ଶିଶୁ ସାହିତ୍ୟରେ ଆଗ୍ରହର ସହ ଗବେଷଣା କରୁଥିଲେ । ଯାହା ମୋତେ ପରବର୍ତ୍ତୀ ସମୟରେ ଏକ ପ୍ରକାର ଅନୁପ୍ରେରିତ କରିଛି ଏ ଦିଗରେ କୋରାପୁଟ ମାଟିରେ ରହି ଅଧିକ କିଛି ଗବେଷଣା କରିବା ପାଇଁ । ଡକ୍ଟର ସାହୁଙ୍କ ବିପୁଳ ସୃଷ୍ଟି ସମ୍ଭାର ମଧ୍ୟରେ ଶିଶୁ ସାହିତ୍ୟକୁ ନେଇ ୬୫ରୁ ଉର୍ଦ୍ଧ୍ୱ ଉଚ୍ଚକୋଟିର ପ୍ରବନ୍ଧ, କୋରାପୁଟ ସମ୍ପର୍କରେ ୧୨ରୁ ଅଧିକ ଗବେଷଣାତ୍ମକ ପ୍ରବନ୍ଧ, ଭାଷା ସାହିତ୍ୟ ସଂପର୍କରେ ୧୬ରୁ ଅଧିକ ଲେଖା ପ୍ରକାଶ ପାଇଛି । ଶିଶୁ ସାହିତ୍ୟରେ ୧୭ଟି ପୁସ୍ତକ, ୧୫ଟି ଆଲୋଚନା ଗ୍ରନ୍ଥ, ଗୋଟିଏ ଲଘୁ ଆଲୋଚନା ପୁସ୍ତକ 'କାହାକୁ କହିବା' ସହ ହିନ୍ଦୀ ଓ ବଙ୍ଗଳାରେ ୨ଟି ଅନୁଦିତ ଶିଶୁ ପ୍ରିୟ ପୁସ୍ତକ ଏବଂ ତିନୋଟି ଇଂରାଜୀ ପୁସ୍ତକ ସହ ବହୁ ସାରସ୍ୱତ କୃତି ପାଠକ ସମାଜକୁ ସେ ଭେଟି ଦେଇଛନ୍ତି ।

ସାହିତ୍ୟ ସେବା, ସଂଗଠନ, ସାରସ୍ୱତ ସମ୍ପର୍କ, ଅମାୟିକ ବ୍ୟକ୍ତିତ୍ୱ, ନମ୍ର ସଭାବ ତାଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱର କେତୋଟି ଲୋଭନୀୟ ଦିଗ ଯାହା ଆମ୍ଭମାନଙ୍କୁ ଅନୁପ୍ରାଣିତ କରିଛି । ସେ ଜୀବନର ଚଲାପଥରେ ସାହିତ୍ୟ କାନନରୁ ଅଧିକରୁ ଅଧିକ ପୁଷ୍ପ ଚୟନ କରି ସୁଶୋଭିତ ଜୟମାଲ୍ୟରେ ଉତ୍କଳ ଜନନୀ, ଭାଷା ଭାରତୀଙ୍କ ଗଳାରେ ଅର୍ପଣ କରିବେ ଏ ଶୁଭ କାମନା ସହ ତାଙ୍କ ଦୀର୍ଘ ନିରାମୟ ଅବସର ଜୀବନର ମଙ୍ଗଳ ମନାସି ତାଙ୍କ ଭିତରେ ଥିବା ପ୍ରଜ୍ଞା ପୁରୁଷକୁ ପ୍ରଣାମ ଜଣାଉଛି ।



ଓଡ଼ିଶା ସାହିତ୍ୟ ଏକାଡେମୀ ସଦସ୍ୟ,

ଶାନ୍ତି ନଗର, ଡି.ଏନ୍.କେ, ଉମରକୋଟ, ନବରଙ୍ଗପୁର



Digitized by srujanika@gmail.com

# ସେଇ ମଣିଷ ଯାହାଙ୍କୁ ମୁଁ ଭଲପାଏ

**ମାନଗୋବିନ୍ଦ ଦାସ**

ଶିଶୁ ସାହିତ୍ୟ କଥା ମନକୁ ଆସିଲେ ସଙ୍ଗେ ସଙ୍ଗେ ମାନସପଟରେ ସେଇ ସରଳ ଅମାୟିକ ମଣିଷର ଶାନ୍ତପୂର୍ଣ୍ଣ ମୁଖମଣ୍ଡଳଟି ନାଚି ଉଠେ । ଉଦାର ହୃଦୟ ତଥା ପରକୁ ଆପଣାର କରିବାର ଆପଣାପଣ । କାଳଜୟୀ ତାଙ୍କ ସୃଷ୍ଟି । କିଛି ନୂଆ କରି ଦେଖାଇବା ପାଇଁ ମାନସିକ ପ୍ରସ୍ତୁତି । ସମସ୍ତ ସାହିତ୍ୟିକଙ୍କୁ ନିଜ ବଳିଷ୍ଠ ଚିନ୍ତାଧାରାରେ ଉଦ୍‌ବୁଦ୍ଧ କରିବା ସହିତ ଉପଦେଶ ଓ୍ ସ୍ନେହ ଶ୍ରଦ୍ଧା ମାଧମରେ ଗୋଟିଏ ସୂତ୍ରରେ ବାନ୍ଧି ରଖିବାର କଳା ଯେପରି ତାଙ୍କ ଠାରେ ମାଆ ସରସ୍ୱତୀ ଭଣ୍ଡାର ଖୋଲି ପ୍ରଦାନ କରିଛନ୍ତି । ଅଧାପନା ସହିତ ସାହିତ୍ୟ କରି ସୁନାମ ଅର୍ଜନ କରିଥିବା ଏଇ କ୍ଷୁଦ୍ର ସହର ସୁନାବେଡ଼ାର ମଉଡମଣି ତାଙ୍କୁ କହିଲେ ଅତ୍ୟୁକ୍ତି ହେବନାହିଁ । ଅନେକ ସାହିତ୍ୟ ଅନୁଷ୍ଠାନ ସହିତ ସେ ଜଡ଼ିତ । ଜଗନ୍ନାଥ ମନ୍ଦିର ସହିତ ଜଡିତ ହେବା ସହିତ ଜଣେ ଜଗନ୍ନାଥପ୍ରେମୀ ମଧ୍ୟ । ସୁନାବେଡ଼ାରୁ ପ୍ରକାଶ ପାଉଥିବା ଅନେକ ପତ୍ରପତ୍ରିକାର ସେ ସୁଦକ୍ଷ ସମ୍ପାଦକ ।

କବି, ଲେଖକ, ପ୍ରାବନ୍ଧିକ ଓ ବକ୍ତା ଭାବରେ ସୁପରିଚିତ । ମୁଖ୍ୟତଃ କବି ଭାବରେ ସାରା ଓଡ଼ିଶାରେ ସୁନାମ ଅର୍ଜନ କରିଥିବା, ବିଭିନ୍ନ ସ୍ଥାନରୁ ସମ୍ମାନିତ ହୋଇଥିବା ଏବଂ ଚଲାପଥରେ ଥକି ନ ପଡିଥିବା ଜଣେ ଉତ୍ତମ ମଣିଷ ସିଏ । ଜନ୍ମ ତାଙ୍କର ସରସ୍ୱତୀ ପୂଜା ଦିନ ହୋଇଥିବାରୁ ମାଆଙ୍କ ଅପାର କରୁଣା ତାଙ୍କ ଉପରେ ଅଜାଡି ହୋଇ ପଡିଛି । ପିଲାଦିନରୁ ସମ୍ବାଦପତ୍ରରେ ଲେଖା ପ୍ରକାଶ ପାଇ ଆସୁଥିବା ଓ ଏ ପର୍ଯ୍ୟନ୍ତ ପ୍ରାୟ ୩୨ଟି ପୁସ୍ତକର ସ୍ରଷ୍ଟା ହୋଇ ମଧ ଏ ଯାବତ୍ ତାଙ୍କର ଲେଖା ଚଳଚଞ୍ଚଳ । ମାତୃଭାଷା ଓଡ଼ିଆ ବ୍ୟତୀତ ବଙ୍ଗଳା ଓ ହିନ୍ଦୀ ଭାଷାରେ ମଧ ତାଙ୍କ ପୁସ୍ତକ ଅନୁଦିତ ହୋଇ ପ୍ରକାଶ ପାଇଛି ।

କର୍ମତ କାହାରି ସରେ ନାହିଁ-ଆରପାରିକୁ ଯିବା ପର୍ଯ୍ୟନ୍ତ । କିନ୍ତୁ, କିଏ ନିଜ ପାଇଁ କରେ ତ କିଏ ପର ପାଇଁ; କିଏ କରେ ସମାଜ ପାଇଁ ତ ପୁଣି କିଏ କରେ କାଳଜୟୀ ହେବା ପାଇଁ । ମୁଁ ଯେଉଁ ଯୋଗଜନ୍ମାଙ୍କ କଥା ଏଠି କହୁଛି, ସେ ହେଉଛନ୍ତି ଆମର ଅତି ପ୍ରିୟ ବସନ୍ତ ସାର୍ ଅର୍ଥାତ୍ ଡକ୍ଟର ବସନ୍ତ କିଶୋର ସାହୁ । ଯାହାଙ୍କ ସହିତ ମୁଁ ଅଳ୍ପ କେତେ ବର୍ଷ ତଳେ ଅର୍ଥାତ୍ ୭/୮ ବର୍ଷ ତଳେ ପରିଚିତ ହୋଇଛି । ତାଙ୍କ ସଂସର୍ଶରେ



Digitized by srujanika@gmail.com

ଆସିଲା ପରେ ମୁଁ-ଜାଣିଲି ସାହିତ୍ୟ କାହାକୁ କହନ୍ତି ଓ ତା'ର ସମାଜ ପାଇଁ କି ଉପାଦେୟତା ରହିଛି ବୋଲି । ଲେଖା ଶବ୍ଦରୁ ଜାତ । ସେ ପୁଣି ଶବ୍ଦ ବ୍ରହ୍ମ । ଏହି ବ୍ରହ୍ମ ବିଶାଳ ସୃଷ୍ଟିର ଆଧାର । ସମାଜ ଗଠନରେ ଏହା ଯଥେଷ୍ଟ ସହାୟତା କରେ । ଏହା ଜାଣିଲା ପରେ ମନରେ ସର୍ବଦା ଆନ୍ଦୋଳନ ସୃଷ୍ଟି ହେବାରେ ଲାଗିଛି । କିଛି କରି ଦେଖାଇବା ପାଇଁ ମନରେ ଉଦ୍‌ବେଳନ ସୃଷ୍ଟି ହେଉଛି । ସମୟ ଚକ୍ରରେ ପେଶି ନହୋଇ ବ୍ରହ୍ମ ସୃଷ୍ଟି କରିବାକୁ ଆଗ୍ରହ ବୃଦ୍ଧି ପାଉଛି । ଯେତେବେଳେ ଯାହାତ ହେବାର ଥିବ ହେବ । ମାତ୍ର ମଣିଷ ଅନ୍ଧ ପରି ଅନ୍ଧାରରେ ବାଡ଼ି ବୁଲାଏ ନିଜର ଇପସିତ୍ ଇଚ୍ଛାକୁ ଲାଭ କରିବା ପାଇଁ । ମୁଁ ତା'ର ବ୍ୟତିକ୍ରମ । ତାଙ୍କ ଆଶୀର୍ବାଦ ପାଇଲେ ସଫଳ ହେବି ବୋଲି ଆଶା ରଖିଛି ।

କର୍ମମୟ ଜୀବନରେ ଜୀବନର ସଂଜ୍ଞା ଖୋଜୁ ଖୋଜୁ ଅନେକ ଚାଲିଯାଆନ୍ତି ବହୁ ଦୂରକୁ । ଯେଉଁଠିକୁ କାହାରି ହାତ ପାଏ ନାହିଁ । କିନ୍ତୁ, ଏମିତି ମଣିଷ ଅଛନ୍ତି ଯାହାଙ୍କ ଶବ୍ଦ ବ୍ରହ୍ମର ଅଦୃଶ୍ୟ ହାତ ଦୁଇଟି ସଦାସର୍ବଦା ପର ପିଢ଼ିକୁ ଲେଖାର ବନ୍ଧନରେ ବାନ୍ଧି ରଖିଥାଏ । ମରି ମଧ୍ୟ ସେ ଅମର ହୋଇଯାଏ ।

ତେଲଲୁଣ ସଂସାର ଭିତରେ ଘର କରିଥିଲେ କେତେବେଳେ ମସ୍ତକ ଉପରେ ପୁଷ୍ପ ବୃଷ୍ଟି ହୁଏ ତ କେତେବେଳେ ଦୁଷ୍ଟ ଗ୍ରହଙ୍କ ତାଡନା ସହିବାକୁ ହୁଏ । କିନ୍ତୁ ଭଗବତ୍‌ପ୍ରେମୀ ଭଗବାନଙ୍କ ପ୍ରସାଦ ଭାବି .ତାକୁ ଶ୍ରଦ୍ଧାରେ ଗ୍ରହଣ କରିନିଏ । ଖାଲି ତୋରି ଇଚ୍ଛା କହି ନିଜର କର୍ମ ପଥରେ ଅଗ୍ରସର ହୋଇଥାଏ । ଭଲ କର୍ମ କରିବା ଲୋକଙ୍କ ପାଇଁ ପ୍ରଥମେ ତ ଦୁଃଖ ସହଚର ହୋଇ ଆସିଥାଏ ବହୁ କ୍ଷେତ୍ରରେ । କିନ୍ତୁ ଧର୍ମ ବଳରେ ସେ ଦୁଃଖ ଭୁଲିଯାଏ ଓ ଚାଲିଯାଏ ଦୂରକୁ ବହୁଦୂରକୁ । ଏମିତି ହିଁ ଜୀବନ ସଂଗ୍ରାମ ଓ ସଂଗ୍ରାମୀ ମଣିଷ । ହାରି ହାରି ଜିତିବାର ଦୃଢ଼ ସଂକଳ୍ପ ଆଗରେ ହାର୍ ମାନେ ଦୁଷ୍ଟ ଗ୍ରହର ଜୀବନ ।

ସେଇ କରୁଣାମୟ ଓ କରୁଣାମୟୀ ମାଆଙ୍କ ପାଖରେ ପ୍ରାର୍ଥନା ବସନ୍ତ ସାର୍‌ଙ୍କ ଜୀବନ ପଥ କୁସୁମରେ ଭରି ଯାଉ । ତାଙ୍କ ଲେଖନୀ ଚିରସ୍ରାବୀ ହୋଇ ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରି ଚାଲିଥାଉ । ତାଙ୍କର ଆଶୀର୍ବାଦର ବର୍ଷା ପର ପିଢ଼ି ଉପରେ ବର୍ଷୁଥାଉ । ଏତିକି ମୋର ଭିକ୍ଷା ।



ସୁନାବେଡ଼ା, କୋରାପୁଟ



Digitized by srujanika@gmail.com

# ବନ୍ଧୁ ପରି ବନ୍ଧୁ : ବସନ୍ତ ବାବୁ

## ବୀର କିଶୋର ନାୟକ

ଜୀବନର ଅଙ୍କା ବଙ୍କା ରାସ୍ତାରେ ଚାଲୁ ଚାଲୁ ଜନ୍ମମାଟି କେନ୍ଦ୍ରାପଡାରୁ ଯାଇ ୧୯୭୦ ମସିହାରେ ପହଞ୍ଚିଲି ସୁନାବେଡ଼ାରେ । ସେଠିକାର ଜଳବାୟୁ ମୋ ଶରୀର ପ୍ରତି ବେଶ୍ ଅନୁକୂଳ ଜଣାଗଲା । ସୁନାବେଡ଼ାର ପ୍ରାକୃତିକ ସୌନ୍ଦର୍ଯ୍ୟ ମୋର କବି ପ୍ରାଣକୁ ପ୍ରେରଣା ଯୋଗାଇଲା । ଉତ୍କଳ ସଂସ୍କୃତିକ ପରିଷଦ ମାଧ୍ୟମରେ ସମଧର୍ମୀ ବନ୍ଧୁମାନଙ୍କ ସହିତ ଭାବର ଆଦାନ ପ୍ରଦାନ ହେଲା । ୧୯୮୪ରେ ଆକାଶବାଣୀ ଗୀତିକାର ଭାବେ ସ୍ୱୀକୃତି ପାଇଲି । ସହରାଞ୍ଚଳ କବିମାନଙ୍କୁ ନେଇ ପରିଷଦ ଗୃହରେ ପ୍ରତି ରବିବାର ଅପରାହ୍ନରେ କବିତା ପାଠୋତ୍ସବ କରି ସଫଳ ହେଲି ।

ସେହି ସମୟକୁ ବସନ୍ତ ବାବୁ ସୁନାବେଡା ଆସିଲେ । ଅଧ୍ୟାପକ କ୍ଷୀରୋଦ କୁମାର ସାମଲ ଓ ତାଙ୍କ ଉଦ୍ୟମରେ ସୁନାବେଡ଼ାରେ ଗଢ଼ି ଉଠିଲା 'ବନଫୁଲ ସାହିତ୍ୟ ପରିଷଦ' । ମୁଁ ସେମାନଙ୍କୁ ପରିଷଦର ଆସରକୁ ଆସିବାକୁ ନିମନ୍ତ୍ରଣ ଜଣାଇଲି । ବସନ୍ତ ବାବୁ ଆସରକୁ ଆସି ଖୁସି ହେଲେ । ବନଫୁଲ ମଧ୍ୟ ତାର କାର୍ଯ୍ୟଧାରା ଅବ୍ୟାହତ ରଖିଲା । ୧୯୮୬ରେ ବନଫୁଲ ତାର ପ୍ରଥମ ପ୍ରାକ୍ ବିଷୁବ ମିଳନର ଆୟୋଜନ କଲା । ବହୁତ ସଫଳ ହେଲା । ପରବର୍ତ୍ତୀ କାଳରେ ମୁଁ ବନଫୁଲ ସହିତ ଅଧିକ ଜଡ଼ିତ ହେଲି ଓ ତା'ର ଉପସଭାପତି ହେଲି । ସୁନ୍ଦର ଭାବେ ବନଫୁଲ ତାର ସୁରଭିକୁ ବିତରଣ କରି ଚାଲିଲା । ଅବିଭକ୍ତ କୋରାପୁଟର କୋଣ ଅନୁକୋଣରେ ଥିବା ସାହିତ୍ୟିକମାନଙ୍କୁ ନେଇ ବର୍ଷକୁ ଥରେ ବିଷୁବ ମିଳନ ପାଳନ କରାଗଲା । ତା ସହିତ ସାମୟିକ ଆସର ବସି ସାହିତ୍ୟିକମାନଙ୍କୁ ଆକୃଷ୍ଟ କଲା । ବନଫୁଲ ନାମରେ ଗଳ୍ପ କବିତା ସଂକଳନ ପ୍ରକାଶ ପାଇଲା । ବନ୍ଧୁମିଳନ, କବିତା ପାଠୋତ୍ସବ, ଆଲୋଚନା ଚକ୍ର, ସମ୍ବର୍ଦ୍ଧନା ଇତ୍ୟାଦି ମାଧ୍ୟମରେ ଅନୁଷ୍ଠାନ ସମଗ୍ର ରାଜ୍ୟରେ ଆଲୋଡନ ସୃଷ୍ଟି କଲା । ୧୯୮୬ ରୁ ୧୯୯୬ ଯାଏ ମୋର ସମୟ ବସନ୍ତ ବାବୁ ଓ ବନଫୁଲ ସହିତ ଜଡିତ ହୋଇ ଗଡ଼ି ଚାଲିଲା । ବନଫୁଲ ସାହିତ୍ୟ ପରିଷଦ ସାରା ଓଡ଼ିଶାରେ ଚହଳ ପକାଇଲା । ଏହି ସଂସ୍ଥା ମାଧ୍ୟମରେ ଅନେକ ନୂତନ ଲେଖକ/କବି ସୃଷ୍ଟି ହେଲେ । ପୁରୁଣାମାନେ ପ୍ରେରଣା ପାଇ ଅଧିକ କ୍ରିୟାଶୀଳ ହେଲେ । କ୍ରମେ ବସନ୍ତ ବାବୁଙ୍କ ନାଆଁ ସୁନାବେଡ଼ାରୁ ସାରା ଓଡ଼ିଶାରେ ପ୍ରଚାର ହେଲା । ତାଙ୍କ ବ୍ୟବହାର, କଥା କହିବାର ଶୈଳୀ, ହସ ହସ ମୁଖ , କାର୍ଯ୍ୟ ଦକ୍ଷତା, ବଳିଷ୍ଠ ସମ୍ପାଦନା, ସୁନ୍ଦର ପରିଚାଳନା ତାଙ୍କୁ ଲୋକପ୍ରିୟ କରିବାରେ ଲାଗିଲା ।



Digitized by srujanika@gmail.com

କଥାରେ ଅଛି ପେଡ଼ ଖିଆ ଲୋକ ଶାଗ ଖିଆକୁ ଦେଖି ପାରେ ନାହିଁ । କିଛି ହିଂସୁକ, ଅସାଧୁ, ଅସାମାଜିକ ଲୋକ ବସନ୍ତ ବାବୁଙ୍କୁ ଏବଂ ବନଫୁଲର ପ୍ରତିଷ୍ଠା ଓ ଉନ୍ନତିକୁ ସହି ପାରିଲେ ନାହିଁ । କପଟ ଆଚରଣ କରି ଲେଖକ, କବି ଏବଂ କାର୍ଯ୍ୟକାରୀ କମିଟି ଭିତରେ ବିଶୃଙ୍ଖଳା ସୃଷ୍ଟି କଲେ । ସ୍ୱାଭିମାନୀ ବସନ୍ତ ବାବୁ ନିଜ ସମ୍ମାନ ପାଇଁ ସଂଗଠନରୁ ଦୂରେଇ ରହିବାକୁ ଚାହିଁଲେ । ୧୯୯୬ ବେଳକୁ ବନଫୁଲ ମଉଳି ଗଲା ସତ କିନ୍ତୁ ବସନ୍ତ ବାବୁ ଚିର ବସନ୍ତ ପରି ରହି ମଳୟର ଶୀତଳ ପବନକୁ ଏ ଯାବତ୍ ପରଶି ଚାଲିଛନ୍ତି ସମଗ୍ର ଓଡ଼ିଶାରେ । ଯେଉଁମାନେ ତାଙ୍କ ପ୍ରତି ଈର୍ଷା ଓ ପରଶ୍ରୀକାତରତା ଭାବ ପ୍ରକଟ କରୁଥିଲେ ସେମାନେ ସେମିତି ରହିଗଲେ ଲୋକଲୋଚନର ଆଢୁଆଳରେ । ଦିଗରୁ ଦିଗନ୍ତ ବ୍ୟାପୀ ଚାଲିଛି ବସନ୍ତ ବାବୁଙ୍କର ବ୍ୟକ୍ତିତ୍ୱ ଏବଂ କୃତି । ମୋର ଯେତେଗୁଡ଼ିଏ ବହି ପ୍ରକାଶ ପାଇଛି ସବୁଥିରେ ବସନ୍ତ ବାବୁଙ୍କ ପ୍ରେରଣା, ସାହାଯ୍ୟ, ସହଯୋଗ ଓ ପ୍ରଚ୍ଛନ୍ନ ହାତ ରହିଛି ।

ସେ ଜଣେ ଏପରି ବ୍ୟକ୍ତି ଯେ କି କେବଳ ଅନ୍ୟମାନଙ୍କୁ ସତ୍ ଉପଦେଶ ଦେଇ ଜାଣନ୍ତି । କେବେ ବି କାହାର କ୍ଷତି କରିବା ବା କାହା ବିରୁଦ୍ଧରେ ପଛରେ ସମାଲୋଚନା କରିବା, କାହା ଉପରେ ଅଭିମାନ କରିବା ମୁଁ କେବେ ଜାଣିନି କି ଶୁଣିନି । ତାଙ୍କର ଏହି ଗୁଣ ଓ ବ୍ୟକ୍ତିତ୍ୱ ତାଙ୍କୁ ବସନ୍ତରୁ ଚିର ବସନ୍ତ କରି ପାରିଛି । ସୁନାବେଡ଼ାର ପ୍ରତ୍ୟେକ ସାହିତ୍ୟିକ, ସାହିତ୍ୟ ପ୍ରେମୀ ତଥା ସୁନାବେଡ଼ାର ବାସିନ୍ଦା ବସନ୍ତ ବାବୁଙ୍କ ଅବଦାନକୁ କେବେବି ଭୁଲି ପାରିବେ ନାହିଁ । ମୁଁ ତ ମୋର ଶେଷ ନିଶ୍ୱାସ ଥିବା ଯାଏ ତାଙ୍କୁ ଝୁରି ହେଉଥିବି । ମଣିଷର ମନ ଭିତରେ ଯାହା ଥାଏ ସବୁ ପ୍ରକାଶ କରି ହୁଏ ନାହିଁ । ବସନ୍ତ ବାବୁଙ୍କ ସହିତ ମୋର ଯେଉଁ ସମ୍ପର୍କ ତାକୁ ମୁଁ ଚାହିଁଲେ ବି ପ୍ରକାଶ କରିପାରୁନାହିଁ । ଆମର ଅପାଶୋରା ସମ୍ପର୍କକୁ କେବଳ ଅନୁଭବ କରିହେବ, ପ୍ରକାଶ କରି ହେବ ନାହିଁ

ତାଙ୍କ କର୍ମମୟ ଜୀବନରୁ ସେ ଅବସର ନେଉଛନ୍ତି ସତ କିନ୍ତୁ ତାଙ୍କ ସାରସ୍ୱତ ଜୀବନରୁ ନୁହେଁ । କଥାରେ ଅଛି ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ । ସେ ତାଙ୍କ ଚାକିରିରୁ ଅବସର ନେଲେ ବି ତାଙ୍କ ସାହିତ୍ୟ ସୃଷ୍ଟି, ତାଙ୍କ ସମାଜ ସେବା, ତାଙ୍କ ସାଙ୍ଗଠନିକ କାର୍ଯ୍ୟକୁ ଆହୁରି ବଳିଷ୍ଠ ଓ ଲୋକପ୍ରିୟ କରିବେ ଏଥିରେ ସନ୍ଦେହ ନାହିଁ । ପରିଶେଷରେ ମୁଁ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା କରିବି 'ହେ ଜଗତ କର୍ତ୍ତା, ହେ ଜଗତର ନାଥ, ହେ ଚକାଡୋଳା, ହେ କାଳିଆ ସାଆନ୍ତ ମୋ ବନ୍ଧୁଙ୍କର ଅବସର ଜୀବନଟି ସଦା ସୁଖମୟ ହେଉ । ତାଙ୍କର ଚଲାପଥ ପୁଷ୍ପିତ ହେଉ । ତାଙ୍କ ପାରିବାରିକ, ସାମାଜିକ, ସାହିତ୍ୟିକ ଜୀବନ ମଧୁମୟ ହେଉ ।



ଗ୍ରିନ ଫିଲ୍ଡ ରେସିଡେନସୀ

ଫ୍ଲାଟ ନଂ-ଡ଼/୨୦୫, ବିଗ୍ ବଜାର ସାମନା, ପଟିଆ, ଭୁବନେଶ୍ୱର



Digitized by srujanika@gmail.com

# ଆପଣାର ମଣିଷ ଡକ୍ଟର ବସନ୍ତ କିଶୋର ସାହୁ

**କୁମୁଦଲତା ମହାନ୍ତି**

ସଂସାରରେ ଏମିତି କିଛି ମଣିଷ ଅଛନ୍ତି ଯେଉଁମାନେ ବନ୍ଧୁତ୍ୱର ସଂପର୍କ ସ୍ଥାପନ କରନ୍ତି, କିନ୍ତୁ କିଛି ବର୍ଷ ପରେ ସେଇ ସଂପର୍କକୁ ନିଜ ହାତରେ ଭାଙ୍ଗି ଦିଅନ୍ତି । ସେତେବେଳେ ମନରେ ପ୍ରଶ୍ନ ଆସେ ଯେ ସେ ସଂପର୍କ କିଭଳି ସୃଷ୍ଟି ହୋଇଥିଲା ଓ କାହିଁକି ଭାଙ୍ଗିଗଲା । ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଆମେ ଜାଣିବା ଉଚିତ୍ ଯେ ସ୍ୱାର୍ଥଜଡ଼ିତ ସଂପର୍କ ଚିରସ୍ଥାୟୀ ନୁହେଁ । ଏତେ କଥା କହିବାର ଉଦ୍ଦେଶ୍ୟ ହେଉଛି ବସନ୍ତ ବାବୁଙ୍କର ନିଃସ୍ୱାର୍ଥପର ସଂପର୍କ ବିଷୟରେ କିଛି କହିବା ।

ଡକ୍ଟର ବସନ୍ତ କିଶୋର ସାହୁ କେବଳ ଜଣେ ଅଧ୍ୟାପକ କି ସାହିତ୍ୟିକ ଭାବରେ ନୁହେଁ, ବରଂ ଜଣେ ଆତ୍ମୀୟ ମଣିଷ ଭାବରେ ସମସ୍ତଙ୍କ ପାଖରେ ପରିଚିତ । ସୁନାବେଡ଼ାରେ ସେ ଥିଲେ ଆମ ପରିବାରର ଜଣେ ନିଃସ୍ୱାର୍ଥପର ବନ୍ଧୁ । ମୋ ସ୍ୱାମୀ ନଗେନବାବୁ ଓ ମୋର ଥିଲେ ସାନ ଭାଇ ପରି । ଆଜି ମନେ ପଡୁଛି ଅନେକ ଦିନ ତଳର କଥା । ଅଧ୍ୟାପକ କ୍ଷୀରୋଦ ସାମଲ, ବସନ୍ତ ବାବୁ, ପ୍ରଭାକର ପତି ଆଦି ସୁନାବେଡ଼ାରେ ସାହିତ୍ୟିକ ପରିବେଶ ସୃଷ୍ଟି ପାଇଁ ବନଫୁଲ ସାହିତ୍ୟ ପରିଷଦ ଗଠନ କରିଥିଲେ । ମୁଁ ସେଥିରେ ସକ୍ରିୟ ସଦସ୍ୟା ଥିଲି । ସେହି ସମୟରୁ ମୁଁ ବସନ୍ତ ବାବୁଙ୍କ ସାଂଗଠନିକ ଦକ୍ଷତା ସହିତ ପରିଚିତ । ତାଙ୍କ ନିଷ୍ଠା ଓ କାର୍ଯ୍ୟଶୈଳୀ ପାଇଁ ବନଫୁଲ ଅନେକ ଦିନ ଧରି ଅବିଭକ୍ତ କୋରାପୁଟ ଜିଲ୍ଲାରେ ତାର ବିଜୟ ଯାତ୍ରା ଜାରି ରଖିଥିଲା । ସମଗ୍ର ଓଡ଼ିଶାରେ ଏକ ଅଗ୍ରଣୀ ଅନୁଷ୍ଠାନ ଭାବରେ ସମସ୍ତଙ୍କର ପ୍ରଶଂସାଭାଜନ ଓ ପ୍ରିୟ ହୋଇପାରିଥିଲା ।

ମନେ ପଡୁଛି ମୋର ସୁନାବେଡ଼ା ରହଣି ସମୟର କଥା । ବେଳେବେଳେ ବସନ୍ତ ବାବୁ ତାଙ୍କ ସ୍କୁଟର ଧରି ଆମ ଘରେ (ଡି/୧୪୮)ପହଞ୍ଚି ଯାଉଥିଲେ । କ'ଣ ଲେଖାଲେଖି କରୁଛି, କି ବହି ପ୍ରକାଶ ପାଇଲା ସେ କଥା ପଚାରି ବୁଝନ୍ତି । ଆମ ଘରେ ସାହିତ୍ୟ ବିଷୟରେ ଆଲୋଚନା ହୁଏ । ମୋ ଲେଖାକୁ ପ୍ରଶଂସା କରି ଆହୁରି ଲେଖିବାକୁ ଉତ୍ସାହିତ କରନ୍ତି । ମୋ ସୃଷ୍ଟି ବ୍ୟତୀତ ସେ ମୋତେ ପ୍ରଶଂସା କରନ୍ତି ବୋଲି ଶୁଣେ ଓ ଭଲ ପାଆନ୍ତି ବୋଲି ଜାଣେ । ଏ କଥାଟି କହିବାର ଉଦ୍ଦେଶ୍ୟ ହେଉଛି-ଥରେ



Digitized by srujanika@gmail.com

ସୁନାବେଡ଼ାସ୍ଥ ଭଞ୍ଜମଣ୍ଡପରେ ସାହିତ୍ୟ ସଭା ଚାଲିଥାଏ ଓ ସେଥିରେ ମୁଁ ସଭାପତିତ୍ୱ କରୁଥାଏ । ଏହି ସମୟରେ ମନ୍ତ୍ରୀ ବକ୍ସିପାତ୍ର ଆସିଲେ । ବସନ୍ତ ବାବୁଙ୍କୁ ମୋର ପରିଚୟ ପଚାରିବାରୁ, ସେ ମୋ ବିଷୟରେ କ'ଣ କହିଲେ ମୁଁ ଜାଣି ନାହିଁ । କିନ୍ତୁ, ବକ୍ସିପାତ୍ର ନିଜ ଭାଷଣରେ ମୋତେ ଲେଖିକା ଓ ଶିକ୍ଷୟିତ୍ରୀ ବୋଲି ତାରିଫ୍ କରିବା ଶୁଣି ମୋ ଛାତି କୁଣ୍ଢେମୋଟ ହୋଇଗଲା । ଏଥିରୁ ଜାଣିଲି ବସନ୍ତ ବାବୁ ସମସ୍ତଙ୍କୁ ସମ୍ମାନ ଦିଅନ୍ତି ଓ ପ୍ରଶଂସା କରନ୍ତି । କାହାକୁ ନିନ୍ଦା କରିବା ମୁଁ କେବେ ତାଙ୍କ ମୁହଁରୁ ଶୁଣିନାହିଁ । ଅନ୍ୟର ପ୍ରଶଂସା ଶୁଣିବାରେ ଯେତିକି ଆଗ୍ରହୀ ଅନ୍ୟକୁ ପ୍ରଶଂସା କରିବାରେ ସେତିକି ଉତ୍ସାହୀ । ସେଥିପାଇଁ ସବୁଠି ସମସ୍ତେ ତାଙ୍କୁ ଶ୍ରଦ୍ଧା କରନ୍ତି ଓ ଭଲ ପାଆନ୍ତି । ଯିଏ ପ୍ରତି ମଣିଷକୁ ଭଲ ପାଏ, ପ୍ରଶଂସା କରେ, ତାକୁ ବା କାହିଁକି କିଏ ଭଲ ନ ପାଇବ । ତେଣୁ ମୁଁ ମଧ୍ୟ ତାଙ୍କର ସମସ୍ତଙ୍କୁ ଭଲ ପାଇବା ଗୁଣଟିକୁ ଭଲ ପାଏ ।

ତାଙ୍କର ଆହୁରି ଅନେକ ଭଲ ଗୁଣ ରହିଛି । ଲେଖାଲେଖି ସହିତ ସେ ଚାକିରି କ୍ଷେତ୍ରରେ ମଧ୍ୟ ନିଷ୍ଠାବାନ । ସମାଜସେବାରେ ମଧ୍ୟ ରୁଚି ରହିଛି । ଜଣେ ଭଲ ସଂଗଠକ ଭାବରେ ତାଙ୍କର ସୁନାମ ରହିଛି । ଏକତା ରକ୍ଷା କରି କାର୍ଯ୍ୟଟିକୁ ସୂଚାରୁ ରୂପେ ପରିଚାଳନା କରିବାରେ ସେ ଧୂରିଣ । ବିବାହ ପରେ ତାଙ୍କ ପରିବାର ସହିତ ମୋର ଘନିଷ୍ଠତା ବୃଦ୍ଧି ପାଇଥିଲା । ତାଙ୍କ ସ୍ତ୍ରୀ ବୀଣା ଖୁବ୍ ସ୍ନେହୀ , ମେଳାପୀ ଓ ଅତିଥି ପରାୟଣା । ତାଙ୍କ ସ୍ତ୍ରୀ ବୀଣାର ଆତିଥ୍ୟ ଏ ପର୍ଯ୍ୟନ୍ତ ଭୁଲି ପାରିନୁ ।

ବସନ୍ତ ବାବୁ ଲେଖକ ଓ ଗବେଷକ ଭାବରେ ଓଡ଼ିଆ ଶିଶୁ ସାହିତ୍ୟରେ ଜଣେ ଜଣାଶୁଣା ପ୍ରତିଭା । ନିଜର ନିଷ୍ଠା ଓ ଏକାଗ୍ରତା ପାଇଁ ସେ ଆଜି ଏହି ସ୍ଥାନରେ ପହଞ୍ଚି ପାରିଛନ୍ତି । ତାଙ୍କୁ ମୁଁ ଆଶୀର୍ବାଦ କରୁଛି ସେ ଈଶ୍ୱରଙ୍କ କୃପାରୁ ଆହୁରି ଆଗକୁ ବଢ଼ନ୍ତୁ, ବଡ଼ ହୁଅନ୍ତୁ, ଯଶସ୍ୱୀ ଓ ଦୀର୍ଘଜୀବୀ ହୁଅନ୍ତୁ । ତାଙ୍କର ଲେଖନୀ ଆହୁରି ସୁଦୃଢ଼ ହେଉ । ତାଙ୍କର ମାନବିକତା ସର୍ବତ୍ର ପ୍ରଶଂସିତ ହେଉ । ଏହି ଆଶୀର୍ବାଦ ଟିକିଏ ଛଡ଼ା ମୋ ପାଖରେ ଆଉ କିଛି ନାହିଁ ତାଙ୍କୁ ଦେବା ପାଇଁ । ତା ସହିତ ତାଙ୍କ ଉପରେ ମୋର ଅଭିମାନ ମଧ୍ୟ । ସୁନାବେଡ଼ାରେ ସେ ଆମ ଘରକୁ ଆସୁଥିଲେ ଓ ଆମ ଠାରୁ ସ୍ନେହ ଶ୍ରଦ୍ଧା ପାଉଥିଲେ । ଏବେ ଭୁବନେଶ୍ୱର ଆମ ଘରକୁ ଆସିଲେ ସେହି ସ୍ନେହ ଶ୍ରଦ୍ଧା ପାଇବେ । କିନ୍ତୁ, କାର୍ଯ୍ୟବ୍ୟସ୍ତତା କି ଅନ୍ୟ କେଉଁ କାରଣରୁ ସେ ଭୁବନେଶ୍ୱର ଆସିଲେ ମଧ୍ୟ ଆମ ଘରକୁ ଆସୁନାହାନ୍ତି । ମଣିଷ ସତରେ କେଡେ ଜଞ୍ଜାଳଗସ୍ତ । ନିଜ କାମରେ ସବୁବେଳେ ବ୍ୟସ୍ତ । ଆଶା ବସନ୍ତ ବାବୁ ଅବସର ପରେ ଆମର ପୂର୍ବ ସଂପର୍କ ଓ ସ୍ନେହ ଅଧିକ ସୁଦୃଢ଼ କରିବେ । ଏହାହିଁ ଆଶା ।



ନୀଳାଦ୍ରି ବିହାର, ଭୁବନେଶ୍ୱର



Digitized by srujanika@gmail.com

# ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ ଓ ବସନ୍ତ ଭାଇ

ସୁକୁମାର ସାମଲ

ଓଡ଼ିଆ ସାହିତ୍ୟରେ ଡକ୍ଟର ବସନ୍ତ କିଶୋର ସାହୁ ଏକ ସ୍ମରଣୀୟ ଉଚ୍ଚାରଣ । ନିଜ ଶିଙ୍ଗରେ ମାଟି ଖୋଳି ସେ ଆଜି ପ୍ରତିଷ୍ଠିତ । ଜଣେ ସାହିତ୍ୟପ୍ରେମୀ ଭାବେ ମୁଁ ସବୁଠି ତାଙ୍କ ପ୍ରଶଂସା ଶୁଣିଛି । ଗାଁ କୁସୁପୁର ଠାରୁ ଆରମ୍ଭ କରି କଟକ-ଭୁବନେଶ୍ୱର-ବାଲେଶ୍ୱର-ଭଦ୍ରକ-ପୁରୀ ପର୍ଯ୍ୟନ୍ତ, ସବୁ ଅଞ୍ଚଳର ସାହିତ୍ୟିକଙ୍କ ସହିତ ତାଙ୍କର ସୁସମ୍ପର୍କ । ତାଙ୍କ ସହିତ ମୋର ମଧ୍ୟ ସମ୍ପର୍କ ନିବିଡ଼ । ମୁଁ ତାଙ୍କୁ ବଡ଼ ଭାଇର ସମ୍ମାନ ଦିଏ । କମ୍ ବୟସର ସାହିତ୍ୟିକମାନେ ମଧ୍ୟ ତାଙ୍କୁ ଭାଇ ଡାକନ୍ତି । ବୟସ୍କ ସାହିତ୍ୟିକମାନେ ସ୍ନେହ ଆଦର କରନ୍ତି । ସମସ୍ତଙ୍କର ସେ ସ୍ନେହ ଆଦରର ପାତ୍ର । ତାଙ୍କ ବିରୁଦ୍ଧରେ ମୁଁ ଆଜିଯାଏ କାହା ଠାରୁ କିଛି ଶୁଣିନାହିଁ । ସତରେ ସେ ଆମ ଗାଁର ଗର୍ବ ଓ ଗୌରବ ।

ପିଲାବେଳୁ ସେ ସାଧୀନଚେତା ଓ ସାଭିମାନୀ । ଉଚ୍ଚ ଅଭିଳାଷୀ ଓ କଠିନ ପରିଶ୍ରମୀ । ଅଭାବ ଅସୁବିଧାରେ କାହା ନିକଟରେ ହାତ ପତାନ୍ତି ନାହିଁ । ନିଜ ଗୋଡରେ ଛିଡ଼ା ହୋଇ ଆଗକୁ ବଢ଼ିବା ଶିଖିଛନ୍ତି । ଦୃଢ଼ ଆତ୍ମବିଶ୍ୱାସ ଓ କଠୋର ସାଧନା ବଳରେ ସେ ଆଜି ଯଶ, କୀର୍ତ୍ତି ଓ ଉଚ୍ଚ ଆସନର ଅଧିକାରୀ ହୋଇଛନ୍ତି ।

ତାଙ୍କ ସହିତ କଟାଇଥିବା କିଛି ଘଟଣାର ସ୍ମୃତିଚାରଣ ହିଁ ଏ ଲେଖାର ଉଦ୍ଦେଶ୍ୟ । ମୋ ହେତୁ ପାଇଲା ବେଳକୁ ସେ ପାରାଦ୍ୱୀପରେ କୌଣସି ଏକ ବେସରକାରୀ ଅନୁଷ୍ଠାନରେ ଚାକିରି କରୁଥିଲେ । ତାହା ତାଙ୍କ ସାଭିମାନରେ ଆଞ୍ଚ ଆଣିବାରୁ ନିଜେ ସାବଲମ୍ବୀ ହେବା ପାଇଁ ବାଲିଚନ୍ଦ୍ରପୁରରେ 'ଅଜନ୍ତା ଟାଇପ୍ ଇନଷ୍ଟିଚ୍ୟୁଟ' ପ୍ରତିଷ୍ଠା କରି ପିଲାଙ୍କୁ ଟାଇପ୍ ଓ ଷ୍ଟେନୋଗ୍ରାଫି ଶିକ୍ଷା ଦେଲେ । ଏହା ୧୯୭୮-୭୯ର କଥା । ସେଠାରୁ ଶିକ୍ଷାଲାଭ କରି ଗ୍ରାମାଞ୍ଚଳର ଅନେକ ପିଲା ଆଜି ସରକାରୀ ଓ ବେସରକାରୀ ସଂସ୍ଥାରେ ନିଯୁକ୍ତ । ମୋତେ ଏଠାରେ ଶିକ୍ଷା ଲାଭ କରିବାର ସୁଯୋଗ ମିଳିଥିଲା । ବି.ଏ. ପାଶ୍ ପରେ, ମୋ ବାପା (ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ ତଥା ବସନ୍ତ ଭାଇଙ୍କର ଶିକ୍ଷକ)ମୋତେ ସାଙ୍ଗରେ ନେଇ ତାଙ୍କ ପାଖରେ ପହଞ୍ଚି କହିଲେ, 'ବସନ୍ତ ଆଜି ଠାରୁ ଶୁକ ତୋ ପାଖରେ ଟାଇପ୍ ଶିଖିବ । ଘରେ କାହିଁକି ଖାଲିଟାରେ ବସିବ ! ଏହା ତାର



Digitized by srujanika@gmail.com

ଭବିଷ୍ୟତରେ କାମରେ ଆସିବ ।' ଆଡ୍‌ମିଶନ ଓ ଟିଉସନ ଫି ଦେବାକୁ ବାପା ଚାହିଁବାରୁ ସେ ନବାଙ୍କୁ ନାହିଁ କରି କହିଲେ, 'ଆପଣ କ'ଣ ପଇସା ଦେବେ ? ଏହା ମୋ ପାଇଁ ଅପମାନ ହେବ । ଶୁକ ଯେତେଦିନ ଶିଖିବ ଶିଖୁ । ସିଏ ମୋ ସାନଭାଇ ପରି ।' ଏଥିରୁ ତାଙ୍କ ଗୁରୁଭକ୍ତି ଜଣାପଡେ । ତାଙ୍କ ରୋଜଗାରର ମାଧ୍ୟମ ସେଇ ଇନଷ୍ଟିଚ୍ୟୁଟ ଥିଲେ ମଧ୍ୟ ସେ ମୋ ପରି ଅନେକଙ୍କୁ ଏପରି ସୁଯୋଗ ଦେଇ ବୃତ୍ତିଗତ ଜୀବନରେ ସଫଳ କରାଇଛନ୍ତି । ଗୁରୁଙ୍କ ପ୍ରତି ତାଙ୍କର ଅଧିକ ସମ୍ମାନ ଓ ଆଦର । ବାଲ୍ୟଗୁରୁ କେଶବାନନ୍ଦ ସାହୁଙ୍କ ପ୍ରତି ମଧ୍ୟ ତାଙ୍କର ଗଭୀର ଭକ୍ତି ଓ ସମ୍ମାନ । ତାଙ୍କ ପାଖରେ କିଛିଦିନ ବିନା ଦରମାରେ ଟିଉସନ ହୋଇଥିଲେ ବୋଲି ତାଙ୍କୁ ଆଣି ନିଜ ଘରେ କୋଡିଏ କି ବାଇଶି ବର୍ଷ ରଖି ଗୁରୁ ଋଣ ପରିଶୋଧ କରୁଛନ୍ତି ।

ସେ ନନ୍ଦକିଶୋର ବିଦ୍ୟାମନ୍ଦିରରେ ଦଶମ ଶ୍ରେଣୀରୁ ଲେଖାଲେଖି ଆରମ୍ଭ କରିଥିଲେ । ବାପାଙ୍କ ପାଖକୁ ଅନେକ ସମୟରେ ସାହିତ୍ୟ ଆଲୋଚନା ବା ଦିଗ୍‌ଦର୍ଶନ ପାଇଁ ଆସନ୍ତି । ବାପା ଥିଲେ ପ୍ରଚାର ବିମୁଖ । କୌଣସି ପତ୍ରପତ୍ରିକାକୁ ଲେଖା ପଠାନ୍ତି ନାହିଁ କି କୌଣସି ସାହିତ୍ୟ ସମ୍ମିଳନୀରେ ଯୋଗ ଦିଅନ୍ତି ନାହିଁ । ବସନ୍ତ ଭାଇ ବାପାଙ୍କ ଲେଖା ପଢ଼ି ତାଙ୍କୁ ପ୍ରତିଷ୍ଠିତ ସାହିତ୍ୟିକ ତଥା ଓଡ଼ିଶାରେ ସମସ୍ତଙ୍କ ନିକଟରେ ପରିଚିତ କରାଇବା ପାଇଁ 'ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ: ଏକ ଅନାଲୋଚିତ ପ୍ରତିଭା' ଶୀର୍ଷକରେ ଏକ ଆଲୋଚନା ଲେଖିଥିଲେ । ଲେଖାଟି କଲିକତାରୁ ପ୍ରକାଶିତ ସମ୍ଭ୍ରାନ୍ତ ପତ୍ରିକା 'ଆସନ୍ତାକାଲି'ରେ(୧୯୮୮ ମସିହା, ନଭେମ୍ବର ସଂଖ୍ୟା) ପ୍ରକାଶ ପାଇଥିଲା । ଲେଖାଟି ସେତେବେଳେ ଅନ୍ୟମାନଙ୍କ ଦୃଷ୍ଟିକୁ ଆସିବା ସହିତ ବାପାଙ୍କୁ ମଧ୍ୟ ଅନେକ ଖୁସି ଦେଇଥିଲା । ବାପାଙ୍କୁ ପ୍ରଭାବିତ କରି ସେ ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦର ବାରିପଦା, ବଲାଙ୍ଗୀର ଭୁବନେଶ୍ୱର ଓ ରାହାମା କର୍ମଶାଳାକୁ ନେଇଥିଲେ । ବାପାଙ୍କର ସେହି ସବୁ ସ୍ଥାନରେ ବହୁ ସାହିତ୍ୟିକଙ୍କ ସହିତ ପରିଚୟ ହୋଇ ପରବର୍ତ୍ତୀ ୨୦୦୩ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା ।

ସେ ଗାଆଁକୁ ଆସିଲେ ନିଜ କାମ ସହିତ ବାପାଙ୍କର ବହି କିପରି ଅଧିକ ପ୍ରକାଶ ପାଇବ ସେଥିପାଇଁ ଚିନ୍ତା କରୁଥିଲେ । ବାପାଙ୍କ ବହି ଓ ଗ୍ରନ୍ଥାବଳୀ ପ୍ରକାଶ ପାଇଁ ମୋତେ ସାଙ୍ଗରେ ଧରି କେତେ ଥର କଟକର ପ୍ରକାଶକଙ୍କ ପାଖକୁ ଯାଇଛନ୍ତି । କିନ୍ତୁ, ଏଥିରେ ଆମେ ସଫଳ ହୋଇପାରିଲୁ ନାହିଁ । କାରଣ ପ୍ରକାଶକମାନେ ଗ୍ରନ୍ଥାବଳୀ ଛାପିବା ପାଇଁ ଅର୍ଥ ଦାବି କଲେ, ଯାହା ସପକ୍ଷରେ ସେ ଓ ବାପା ନଥିଲେ । ପ୍ରକାଶକ ନ ଛାପିଲେ ମଧ୍ୟ ନିଜେ ଛାପି ପାଣ୍ଡୁଲିପି ଗୁଡ଼ିକୁ ଲୋକଲୋଚନକୁ ଆଣିବାକୁ ସେ ପରାମର୍ଶ ଦେଉଥିଲେ । ମାତ୍ର, ମୋର ସେ ଦିଗରେ ଧାରଣା ନ ଥିବାରୁ ମୁଁ ଆଗ୍ରହ ଦେଖାଉ


Digitized by srujanika@gmail.com

ନଥିଲି । ଏଥିପାଇଁ ସେ ଆମ ଦୁଇ ଭାଇଙ୍କ ଉପରେ ଅନେକ ଥର ବିରକ୍ତି ପ୍ରକାଶ କରିଛନ୍ତି । କଟୂ କଥା ମଧ୍ୟ କହିଛନ୍ତି । ସେହି କଟୂ କଥାର ଉଦ୍ଦେଶ୍ୟ ମୁଁ ଆଜି ଅନୁଭବ କରୁଛି ।

ବାପାଙ୍କର କାଳଜୟୀ ରଚନା ସମୂହକୁ ଲୋକଲୋଚନକୁ ଆଣିବା ପାଇଁ ସେ ସର୍ବଦା ଚେଷ୍ଟା କରୁଥିଲେ । ସବୁବେଳେ କହୁଥିଲେ ସାର୍ ଆପଣଙ୍କ କୃତି ଉପରେ ଗବେଷଣା ହେବା ଆବଶ୍ୟକ । ତାହା ସେ ମଧ୍ୟ ସାକାର କରିଥିଲେ । 'ଓଡ଼ିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋର ସାମଲଙ୍କ ଅବଦାନ' ଶୀର୍ଷକରେ ତାଙ୍କର ଜଣେ ଛାତ୍ରୀ ଡକ୍ଟର ଜ୍ୟୋର୍ତିମୟୀ ରାଜଗୁରୁଙ୍କୁ ଗବେଷଣାରେ ନିୟୋଜିତ କରାଇ ସଫଳ ହୋଇଥିଲେ । ଏହି ଗବେଷଣା ନିବନ୍ଧଟି ବାପାଙ୍କ ଜୀବଦଶାରେ ହେବ ବୋଲି ସେ ଆଶା ବାନ୍ଧିଥିଲେ । କିନ୍ତୁ, କ୍ରୁର କାଳ ତାହା କରାଇ ଦେଲାନାହିଁ । ନିବନ୍ଧ ଦାଖଲ ହେବାର ମାତ୍ର ଅଳ୍ପ ଦିନ ପୂର୍ବରୁ ବାପା ଆଖି ବୁଜିଲେ । ଏଥିରେ ବସନ୍ତ ଭାଇ ମର୍ମାହତ ହେବା ସହିତ, ଖୁବ୍ ଶିଘ୍ର ଥେସିସ୍‌ଟି ଦାଖଲ କରାଇଲେ ଓ ଗବେଷିକା ପିଏଚ୍.ଡି. ଡିଗ୍ରୀ ଲାଭ କଲେ ।

ମୋ ବାପା ସ୍ୱର୍ଗତ ନନ୍ଦ କିଶୋର ସାମଲଙ୍କ ଦେହାନ୍ତ ପରେ ଆମେ ନନ୍ଦକିଶୋର ସାମଲ ସ୍ମୃତି ସଂସଦ ଗଠନ କରିବାକୁ ପ୍ରଥମେ ସ୍ଥିର କରିଥିଲୁ । କିନ୍ତୁ ତାଙ୍କ ପରାମର୍ଶ ଓ ଦିଗ୍‌ଦର୍ଶନରେ ତାହା 'ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ' ରୂପେ ଗଠିତ ହୋଇ ତାଙ୍କ ଜନ୍ମଦିନ କୁସୁପୁର, କଟକ, ବାଲେଶ୍ୱର ଓ ପୁରୀ ଠାରେ ପାଳିତ ହେଉଅଛି । ସ୍ମୃତିନ୍ୟାସ ଗଠନ ପଛରେ ତାଙ୍କର ଯେଉଁ ଦୃଷ୍ଟିକୋଣ ଓ ଲକ୍ଷ୍ୟ ଥିଲା ତାହା ସମ୍ପୂର୍ଣ୍ଣ ସଫଳ ନହେଲେ ମଧ୍ୟ କିଛି ଅଂଶରେ ସଫଳ ହୋଇଛି । ତାଙ୍କ ସମ୍ପାଦନାରେ 'ସ୍ମରଣିକା' ଦୁଇ ତିନି ବର୍ଷ ବାହାରିବା ପରେ ବନ୍ଦ ରହିଛି । ୨୦୦୮ରେ ତାଙ୍କ ସମ୍ପାଦନାରେ ନନ୍ଦକିଶୋର ସାମଲ ରଚନାବଳୀ (ପ୍ରଥମ ଭାଗ) ଉନ୍ମୋଚିତ ହୋଇଛି । ଉନ୍ମୋଚନ ବେଳେ ଡକ୍ଟର ମହେଶ୍ୱର ମହାନ୍ତିଙ୍କ ପ୍ରସ୍ତାବ କ୍ରମେ ତାଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ କହିବାରୁ ସେ ରାଗିଯାଇ କହିଲେ 'ମୁଁ ସାର୍‌ଙ୍କ ଛାତ୍ର ଓ ସ୍ମୃତିନ୍ୟାସର କର୍ମକର୍ତ୍ତା । ସାରଙ୍କ ରଚନାବଳୀ ସମ୍ପାଦନା କଲି ବୋଲି କଣ ସମ୍ବର୍ଦ୍ଧିତ ହେବି । ଲୋକେ କଣ କହିବେ ?' ଆମେ ସମସ୍ତେ ଚୁପ୍ ରହିଲୁ । ଏଥିରୁ ତାଙ୍କ ସ୍ୱାଭିମାନର ପରିଚୟ ଆମେ ପାଉ । ଯେତେ ଦୂରରେ ଥିଲେ ମଧ୍ୟ ବାପାଙ୍କ ଜୟନ୍ତୀ ଉତ୍ସବରେ ଶ୍ରଦ୍ଧାଞ୍ଜଳି ଦେବା ପାଇଁ ସେ ଆସି ଯୋଗ ଦିଅନ୍ତି ।

ସେ ଭାରି ସମୟାନୁବର୍ତ୍ତୀ ଓ କଠିନ ପରିଶ୍ରମୀ । ଦୃଢ଼ ଇଚ୍ଛାଶକ୍ତି ଯୋଗୁ ସେ ଯେଉଁ କାର୍ଯ୍ୟରେ ହାତ ଦିଅନ୍ତି ସେଥିରେ ସଫଳ ହୁଅନ୍ତି । ତାଙ୍କର ଏହି ଗୁଣ ଆଜି ତାଙ୍କୁ ଏତେ ବାଟରେ ଆଣି ପହଞ୍ଚାଇଛି । ସେ ଆମ ଗାଆଁ ଓ ଅଞ୍ଚଳ ପାଇଁ ଏକ ଆଦର୍ଶ । ତାଙ୍କ



Digitized by srujanika@gmail.com

ନିଷ୍ଠା ଓ ଏକାଗ୍ରତା ତଥା ଆପଣାପଣର ପ୍ରଭାବ ମଧ୍ୟ ତାଙ୍କ ପରିବାର ଉପରେ ପଡ଼ିଛି । ତାଙ୍କ ପୁଅ ଆଜି ଇନଫୋସିସ୍‌ରେ ସଫ୍ଟୱେୟାର ଇଞ୍ଜିନିୟର । ଝିଅ ବର୍ତ୍ତମାନ ବ୍ୟାଙ୍କିଙ୍ଗ ଆଣ୍ଡ ଇନସୁରାନସ୍ ମ୍ୟାନେଜମେଣ୍ଟ ପଢୁଛି । ସେ ମଧ୍ୟ ଜଣେ ମେଧାବୀ ଛାତ୍ରୀ ଭାବରେ ବାପାମାଆଙ୍କର ନାମକୁ ଉଜ୍ଜ୍ୱଳ କରିବ ବୋଲି ଆଶା ।

ଗାଆଁକୁ ଆସିଲେ ସେ ବିଭିନ୍ନ ସଭାସମିତି, ସାହିତ୍ୟ ଓ ସଂଗଠନ କାମରେ ବ୍ୟସ୍ତ ରହନ୍ତି । କଷ୍ଟ ହେଲେ ମଧ୍ୟ ସେ ନେଇଥିବା ଦାୟିତ୍ୱ ଓ ଦେଇଥିବା କଥାକୁ ସଫଳ ଓ ସାକାର କରିବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ । ନିକଟରେ ତାଙ୍କ ବ୍ୟାଚର ବନ୍ଧୁମାନଙ୍କର ବନ୍ଧୁମିଳନ ସଫଳତାର ସହିତ ଆୟୋଜିତ କରି ସମସ୍ତଙ୍କର ପ୍ରଶଂସାର ପାତ୍ର ହୋଇଛନ୍ତି । ଗାଁରେ ଦୁଃଖି ଓ ଦରିଦ୍ର ଲୋକମାନଙ୍କୁ ଆବଶ୍ୟକୀୟ ସାହାଯ୍ୟ କରିବାକୁ କେବେ କୁଣ୍ଠିତ ହୁଅନ୍ତି ନାହିଁ ।

ଫୋନ୍‌ରେ କଥା ହେବା ସମୟରେ ସେ ପ୍ରଥମେ ଦେହପା ଓ ପିଲାମାନଙ୍କର ଭଲମନ୍ଦ କଥା ପଚାରନ୍ତି । ତା ପରେ ଗାଁ କଥା ଓ ସାଙ୍ଗସାଥୀ ବା ଅଞ୍ଚଳର କଥା ପଚାରି ବୁଝନ୍ତି । ମୁଁ କଟକରେ ରହିଲା ପରେ ସେ ଯିବା ଆସିବା ବେଳେ ମୋ ବସାକୁ ଆସନ୍ତି । କଟକରେ କୌଣସି କାମ ଥିଲେ ମୋ ଉପରେ ନିର୍ଭର କରନ୍ତି । ଘରକୁ ଆସିଲେ ଖାଲି ଆସନ୍ତି ନାହିଁ, ହାତରେ ମିଠା, କି ଫଳମୂଳ ଧରି ଆସନ୍ତି । ଯେତେ ମନା କଲେ ମଧ୍ୟ କୁହନ୍ତି, ତୋ ପାଇଁ କଣ ନିଆଯାଉଛି, ପିଲାଙ୍କ ପାଇଁ ପରା ନେଉଛି ।

ସେ ଭାରି ସରଳ, ସ୍ୱାଭିମାନୀ, ସ୍ନେହୀ ଓ ବିଚାରବନ୍ତ, ସାଧୁ, ଦୟାଶୀଳ ଓ ପରୋପକାରୀ । ବୁଦ୍ଧିମାନ ମଧ୍ୟ । ସାହାଯ୍ୟ ମାଗୁଥିବା ବ୍ୟକ୍ତିକୁ ସେ ବିନା କୁଣ୍ଠାରେ ସାହାଯ୍ୟ କରନ୍ତି । ମନା କରିବା ବା ହତୋତ୍ସାହିତ କରିବା ତାଙ୍କ ନୀତି ବିରୁଦ୍ଧ ।

ଏହିଭଳି ଜଣେ ପ୍ରତିଭାଙ୍କ ପାଇଁ ବନପ୍ରଭା ସାହିତ୍ୟ ସଂସଦ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ କରି ପୂଜ୍ୟପୂଜାର ଯଥାଯଥ ପଦକ୍ଷେପ ଗ୍ରହଣ କରିଛନ୍ତି ବୋଲି ମୋର ମତ । ତାଙ୍କର ଅବସର ଜୀବନ ସୁଖ ଓ ଆନନ୍ଦମୟ ହେଉ ଏହାହିଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ମ୍ୟାନେଜର
ଓରିଏଣ୍ଟାଲ ଇନ୍‌ସୁରାନସ କମ୍ପାନୀ, ଚଣ୍ଡିଖୋଲ



Digitized by srujanika@gmail.com

# ଜଣେ ସୁହୃଦଙ୍କ ସମ୍ପର୍କରେ

**ସଦାଶିବ ମିଶ୍ର**

ମାନବ ହେଉଛି ପୃଥିବୀର ସର୍ବଶ୍ରେଷ୍ଠ ଓ ଚେତନଶୀଳ ପ୍ରାଣୀ । ସେ ନିଜର ଚିନ୍ତା, ଚେତନା ଓ ସାଧନା ଦ୍ୱାରା ଅନ୍ତର୍ନିହିତ ଗୁଣରାଜିର ବିକାଶ କରି ଅସମ୍ଭବକୁ ସମ୍ଭବ କରିପାରୁଛି । ବର୍ତ୍ତମାନ ଯୁଗରେ ବିଜ୍ଞାନର ଜୟଯାତ୍ରା ଦେଖିଲେ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ । ଶିକ୍ଷା, ଅଧ୍ୟବସାୟ, ନିଷ୍ଠା ବଳରେ ଅନେକ ଅସମ୍ଭବକୁ ସମ୍ଭବ କରିହୁଏ । ସମାଜରେ ଅନେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ କି ଜୀବନର ଲକ୍ଷ୍ୟ ବୁଝନ୍ତି ନାହିଁ, ନିଜ ସ୍ୱାର୍ଥ ଓ ପରିବାରର ମୋହମାୟାରେ ଆବଦ୍ଧ ରହି ଜୀବନ ରଙ୍ଗମଞ୍ଚରେ ନିଜର ଅଭିନୟ ସାରି ବାହୁଡି ଯାଆନ୍ତି କାଳ ବଳେ ଆରପାରିକୁ । ଆଉ କେତେ ବ୍ୟକ୍ତି ଅଛନ୍ତି ସେମାନେ ନିଜେ ବଞ୍ଚିବା ସହିତ, ନିଜର ବିକାଶ ସହିତ ସାମାଜିକ ବିକାଶକୁ ଗୁରୁତ୍ୱ ଦେଇଥାନ୍ତି । ତଦନୁଯାୟୀ ସଦାସର୍ବଦା କାର୍ଯ୍ୟ କରିଥାନ୍ତି । ସେମାନେ ହେଲେ ସମାଜର ଏକ ଭିନ୍ନ ବର୍ଗର ମଣିଷ ।

ଏହିଭଳି ଏକ ଭିନ୍ନ ବର୍ଗର ମଣିଷ ହେଲେ ଡକ୍ଟର ବସନ୍ତ କିଶୋର ସାହୁ । ଯେ କି ଏକାଧାରରେ ଜଣେ ମାନବବାଦୀ ମଣିଷ, ସୁସାହିତ୍ୟିକ, ସୁଶିକ୍ଷକ, ସୁସଂଗଠକ, ପ୍ରକୃତିପ୍ରେମୀ, ସଂସ୍କୃତିପ୍ରେମୀ ଉଦାରବାଦୀ ବ୍ୟକ୍ତି, ଯିଏ ତାଙ୍କ ସାନ୍ନିଧ ଲାଭ କରିଛି, ତାଙ୍କ ମହତ୍ ଗୁଣର ପରିଚୟ ପାଇଛି ସେ ବା ଭୁଲିପାରିବ କେମିତି ? ମୋର ତାଙ୍କ ସହିତ ପରିଚୟ ତାଙ୍କ ସାହିତ୍ୟ ସୃଷ୍ଟିରୁ । ଜଣେ ଜଣାଶୁଣା ଶିଶୁ ସାହିତ୍ୟିକ, ପ୍ରାବନ୍ଧିକ ଭାବେ ତାଙ୍କ ସୃଷ୍ଟିକୁ ମୋ ଦ୍ୱାରା ପ୍ରକାଶିତ ଓ ସମ୍ପାଦିତ ପତ୍ରିକାରେ ସ୍ଥାନ ଦେବାକୁ ପତ୍ର ମାଧ୍ୟମରେ ଯୋଗାଯୋଗ ଆରମ୍ଭ କରିଥିଲି । କ୍ରମେ ଏହା ଘନିଷ୍ଠ ହେଲା । ବସନ୍ତ ବାବୁ ବୃତ୍ତିରେ ଅଧ୍ୟାପକ ହେଲେ ମଧ୍ୟ ସାହିତ୍ୟ ସୃଷ୍ଟି ପାଇଁ ତାଙ୍କର ଅନୁରକ୍ତି ଶୈଶବ କାଳରୁ । ପିଲାବେଳେ ଗଳ୍ପ କବିତା ପଢ଼ିବା ପାଇଁ ତାଙ୍କର ଆଗ୍ରହ ପ୍ରବଳ ଥିଲା, ଯାହା ପରବର୍ତ୍ତୀ ଅବସ୍ଥାରେ ସାହିତ୍ୟ ସୃଷ୍ଟି ପାଇଁ ପ୍ରେରିତ କରିଥିଲା । କବିତା ଲେଖାରୁ ସାହିତ୍ୟ ସାଧନା ଆରମ୍ଭ କରି ଜଣେ ସଫଳ ଶିଶୁ ସାହିତ୍ୟିକ, ପ୍ରାବନ୍ଧିକ ଓ ସମାଲୋଚକ ହୋଇ ସାହିତ୍ୟ ଜଗତରେ ନିଜକୁ ବେଶ୍ ପରିଚିତ କରାଇ ପାରିଛନ୍ତି । ଜନ୍ମ କଟକ ଜିଲ୍ଲାର କୁସୁପୁର ଗ୍ରାମରେ କିନ୍ତୁ ବୃତ୍ତିଗତ କ୍ଷେତ୍ର ହେଉଛି କୋରାପୁଟର ପ୍ରାକୃତିକ ପରିବେଶ ବେଷ୍ଟିତ



Digitized by srujanika@gmail.com

ଛୋଟ ସହର ସୁନାବେଡ଼ାରେ, ସାଧନାର କ୍ଷେତ୍ର ମଧ୍ୟ ଏହି ସୁନାବେଡ଼ା ।

କର୍ମକ୍ଷେତ୍ର ସୁନାବେଡ଼ା ହୋଇଥିବାରୁ ସେ ଅଞ୍ଚଳର ସାହିତ୍ୟ, ସଂସ୍କୃତିର ବିକାଶ ପାଇଁ ସେ ଉଦ୍ୟମ କରିଆସିଛନ୍ତି ଦୀର୍ଘ ତିନି ଦଶନ୍ଧି ଧରି । ତାଙ୍କ ସମ୍ପାଦିତ 'କୋରାପୁଟ ପରିକ୍ରମା' ଏହାର ନିଦର୍ଶନ । ଏତଦ୍ ବ୍ୟତୀତ 'କୋରାପୁଟର ପର୍ବପର୍ବାଣି', 'ବଣ୍ଡା ସମ୍ପ୍ରଦାୟର ଜୀବନଚିତ୍ର', 'କୋରାପୁଟର ଭାଷା', 'କୋରାପୁଟର ପରଜା ସଂସ୍କୃତି' ସମେତ କୋରାପୁଟର ଲୋକନୃତ୍ୟ ଉପରେ ସେ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ତାଙ୍କର କର୍ମ, ସାଧନା ଓ ସାଂଗଠନିକ କାର୍ଯ୍ୟ ଅନ୍ୟମାନଙ୍କ ପାଇଁ ଆଦର୍ଶ ଓ ଉଦାହରଣ ନିଶ୍ଚୟ ।

ପୂଜ୍ୟପୂଜା ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଅନୁରକ୍ତି । ସାରସ୍ୱତ ସାଧକ ଜଗନ୍ନାଥ ମହାନ୍ତି, ନନ୍ଦକିଶୋର ସାମଲ ରଚନାବଳୀ, ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ ସମେତ କୃଷ୍ଣଚନ୍ଦ୍ର ଗଜପତି, ଉତ୍କଳଗୌରବ ମଧୁସୂଦନ, ଗୋପବନ୍ଧୁ ଓ ଫକୀରମୋହନଙ୍କ ପରି ଅମର ପୁରୁଷଙ୍କ ସ୍ମୃତିରେ ଅନେକ ପୁସ୍ତକ ସମ୍ପାଦନା କରି ଜନସାଧାରଣଙ୍କ ମନ ଓ ପ୍ରାଣରେ ସୃଷ୍ଟି କରିଛନ୍ତି ଗଭୀର ଆତ୍ମପ୍ରତ୍ୟୟ ।

୧୯୭୨ରୁ ଅଦ୍ୟାବଧି ଦୀର୍ଘ ୪୦ ବର୍ଷ ସାରସ୍ୱତ ସାଧନା ସହିତ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ପରମ୍ପରା ଓ ଇତିହାସ ସଂପର୍କରେ ବସନ୍ତବାବୁ ଯେଉଁ ଉଦ୍ୟମ କରିଆସିଛନ୍ତି ତାହା ଅଭିନନ୍ଦନୀୟ ଓ ସ୍ମରଣୀୟ । ନିଜର ଅସାଧାରଣ ପ୍ରତିଭା, ବିଜ୍ଞତା, ମାନବିକତା ବଳରେ ସେ ଓଡ଼ିଶାର ବିଭିନ୍ନ ବର୍ଗର ଜନସାଧାରଣଙ୍କର ପ୍ରିୟଭାଜନ ହୋଇପାରିଛନ୍ତି । ଏଇଭଳି ଜଣେ ମହାନ୍ ବ୍ୟକ୍ତିଙ୍କର ସାନ୍ନିଧ ଓ ଆତିଥ୍ୟ ଗ୍ରହଣ କରି ମୁଁ ନିଜକୁ ଧନ୍ୟ ମଣିଛି । ବସନ୍ତ ବାବୁଙ୍କ ସାଧନାର ଉତ୍ତର ଜୀବନ ଓ ତାଙ୍କ ପାରିବାରିକ ଜୀବନ ଅଧିକ ମଙ୍ଗଳମୟ, ଶାନ୍ତିପ୍ରଦ ଓ ଯଶୋମୟ ହେଉ ମହାପ୍ରଭୁ ନୀଳାଦ୍ରିବିହାରୀ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରି ରହୁଛି ।



ସଭାପତି, ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ
ସୁଲେଖା ସାହିତ୍ୟ ସଂସ୍କୃତି ପରିଷଦ
ବିମାନବଡୁସାହି, ଚଟିଆପଡ଼ା ଗଳି, ପୁରୀ-୮
ମୋ: ୯୭୭୮୩୭୬୨୭୩



Digitized by srujanika@gmail.com

# ମୋ ଦୃଷ୍ଟିରେ ବସନ୍ତ କିଶୋର ସାହୁ

ଡକ୍ଟର ଅନସୂୟା ନନ୍ଦ

ଡକ୍ଟର ବସନ୍ତ କିଶୋର ସାହୁ ଜଣେ ଶାନ୍ତ, ସରଳ, ଅମାୟିକ, ସ୍ପଷ୍ଟବାଦୀ ନିର୍ଭୀକ ବ୍ୟକ୍ତିତ୍ୱ । ତା ସହିତ ଜଣେ ନୀରବ ସାରସତ ସାଧକ । ସାହିତ୍ୟ ସାଧନା ଦିଗରେ ପ୍ରବଳ ଇଚ୍ଛାଶକ୍ତି ତାଙ୍କୁ ଏ ପର୍ଯ୍ୟନ୍ତ ଚଳଚଞ୍ଚଳ କରି ରଖିଛି । ସାହିତ୍ୟକୁ ଜୀବନର ବ୍ରତ, ବାଟ ଏବଂ ବୃତ୍ତି ଭାବରେ ଗ୍ରହଣ କରି ସେ ନିରବଚ୍ଛିନ୍ନ ଭାବରେ ଆଗକୁ ମାଡ଼ି ଚାଲିଛନ୍ତି । ଜଣେ ସୃଜନଶୀଳ ଶିଶୁ ସାହିତ୍ୟିକ, ଗବେଷକ ଏବଂ ସତ୍ୟ ଓ ଆଦର୍ଶନଷ୍ଠ ମଣିଷ ହିସାବରେ ତାଙ୍କୁ ମୁଁ ମହାବିଦ୍ୟାଳୟରେ ଯୋଗଦେବା ଦିନରୁ ହିଁ ଜାଣେ । ସେ କେବଳ ଜଣେ ସଫଳ ସ୍ରଷ୍ଟା ନୁହଁନ୍ତି ବରଂ ସୃଷ୍ଟି ପାଇଁ ଅନ୍ୟମାନଙ୍କର ପ୍ରେରଣାର ଉତ୍ସ । ଲେଖିବା ଓ ଲେଖିବା ପାଇଁ ଉତ୍ସାହିତ କରିବା ତାଙ୍କ ବ୍ୟକ୍ତିତ୍ୱର ଏକ ବଳିଷ୍ଠ ଅଙ୍ଗ । ସେ ଲେଖି ଲେଖି ଲେଖାକୁ ଜୀବନ, ଜୀବିକା ଏବଂ ଜୀବନ୍ତ ମଧ୍ୟ କରିଛନ୍ତି ।

ଏଠାରେ କିଛି ବ୍ୟକ୍ତିଗତ ଅନୁଭୂତି ଉଲ୍ଲେଖ କରୁଛି । କାଲି ପରି ମନେ ପଡିଯାଉଛି, ଆକାଶବାଣୀ ଜୟପୁରରୁ ମୋର ଗୋଟିଏ ଲଘୁ ଆଲୋଚନା ରେକର୍ଡିଂ ପାଇଁ ଚିଠି ଆସିଥାଏ । ଶୀର୍ଷକ ଥିଲା, 'କହି ଦେଉଥାଏ ପରକୁ, ବୁଦ୍ଧି ନ ଦିଶଇ ଘରକୁ' । କଣ ଲେଖିବି, କେଉଁଠୁ ଆରମ୍ଭ କରିବି, ମୁଣ୍ଡକୁ କିଛି ବି ଧାରଣା ଆସିଲାନି । ସେଥିରେ ପୁଣି ଆଠ ମିନିଟ୍‌ର ରେକର୍ଡିଂ । ଅନ୍ତତଃ ଦଶ ପୃଷ୍ଠା ଲେଖିବାକୁ ପଡିବ । ପୂର୍ବରୁ ଆକାଶବାଣୀର ଅନ୍ୟ କାର୍ଯ୍ୟ କ୍ରମରେ ଭାଗ ନେଇଚି, କିନ୍ତୁ ଏପରି ବ୍ୟଙ୍ଗାତ୍ମକ ଲେଖା କେବେ ଲେଖିନି । ଏମିତିରେ ବି ସାହିତ୍ୟ ବା ଲେଖାଲେଖି ଉପରେ ବିଶେଷ ଜ୍ଞାନ ନଥିଲା । କେବଳ ସାହିତ୍ୟ, ଗଳ୍ପ, କବିତା ପଢ଼ିବାକୁ ଭଲ ଲାଗେ । ବେଳେବେଳେ କବିତା ହିଁ ଲେଖେ । ସୁତରାଂ ସାର୍‌ଙ୍କ ପାଖକୁ ଗଲି ଓ ନିଜର ଦୁର୍ବଳତାକୁ ନ ଲୁଚେଇ ଅତି ସଂଭ୍ରମର ସହ କହିଲି । ସାର୍, କଣ କେମିତି ଲେଖିବି କିଛି ଜାଣି ପାରୁନି । ସଙ୍ଗେ ସଙ୍ଗେ ସେ ଅତ୍ୟନ୍ତ ଉଦାରତାର ସହ କହିଲେ, ଆପଣ ଯାହା ଚିନ୍ତା କରୁଛନ୍ତି ଲେଖି ନେଇ ଆସନ୍ତୁ, ମୁଁ ସଂଶୋଧନ କରିଦେବି । ଲେଖିବାକୁ ଦ୍ୱିଧା ନାହିଁ ଯେ ସେ ଲଘୁକଥାଟିର ସମ୍ପୂର୍ଣ୍ଣ କାୟାକଳ୍ପ ତାଙ୍କରି ହାତରେ ହିଁ ହୋଇଥିଲା ଓ ବହୁ ପ୍ରଶଂସିତ ମଧ୍ୟ ହୋଇଥିଲା । ପୁଣି ତିନିମାସ ପରେ ଆଉ ଏକ ଲଘୁକଥା ଲେଖିବା ପାଇଁ ଚିଠି ଆକାଶବାଣୀରୁ ପହଞ୍ଚିଲା । ଏଥର ନିଜେ ଲେଖିବାକୁ ଅଣ୍ଟା ଭିଡିଲି ଓ ଲେଖିଲି । କିନ୍ତୁ ଗୁରୁଙ୍କ ସାକ୍ଷର ବିନା ଲେଖା ସଫଳ ହେବ ନାହିଁ ଭାବି ତାଙ୍କୁ ଦେଖେଇଲି- ସାର୍



Digitized by srujanika@gmail.com

ଯଥାନୁରୂପ ଟିକ୍‌କା ଟିପପ୍‌ଣୀ ଏବଂ ଏଥିପାଇଁ ସହାୟକ ପୁସ୍ତକର ସୂଚନା ମଧ୍ୟ ଦେଇଥିଲେ । ମୁଁ ପାଦଟିଏ ଆଗକୁ ବଢ଼େଇଥିଲି କିନ୍ତୁ ସେ ମୋତେ ଦୁଇ ପାଦ ଆଗେଇ ନେଇଥିଲେ । କେବଳ ସେତିକି ନୁହେଁ, ସେ ସବୁ ଲେଖାକୁ ଏକାଠି କରି ପ୍ରକାଶ କରିବାକୁ ମଧ୍ୟ ଅନେକ ଥର ଉପଦେଶ ଦେଇଛନ୍ତି । କିନ୍ତୁ ସ୍ୱଭାବରେ ଅଳସୁଆ, ବିଶେଷ କରି ଲେଖା ପ୍ରକାଶ କରିବାରେ ଟିକେ ପଛଘୁଞ୍ଚା ଥିବାରୁ ତାଙ୍କ ଉପଦେଶକୁ କାର୍ଯ୍ୟକାରି କରିପାରି ନାହିଁ । ସାର୍ ମଧ୍ୟ ଲଘୁକଥାର ଜଣେ ନିୟମିତ ବକ୍ତା ଭାବରେ ଆକାଶବାଣୀରେ ପରିଚିତ ।

ଯେତେବେଳେ ତାଙ୍କର ସମସ୍ତ ଲଘୁକଥାକୁ 'କାହାକୁ କହିବା' ଆକାରରେ ପ୍ରକାଶ କଲେ, ଭାରି ଖୁସି ଲାଗିଲା । ସାମାଜିକ ମୂଲ୍ୟବୋଧର ଅବକ୍ଷୟ ହିଁ ଏ ପୁସ୍ତକର ବଳିଷ୍ଠ ଆଭିମୁଖ୍ୟ । ଏଥିରେ ସେ ସାମାଜିକ ବ୍ୟବସ୍ଥାର ମୂଳଦୁଆ ଉପରେ ମଧ୍ୟ ପ୍ରଶ୍ନ ଉଠେଇ ସୁନ୍ଦର ଭାବରେ ନିଜର ସ୍ପଷ୍ଟ ମତ ରଖି ଜନସାଧାରଣଙ୍କ ମନକୁ ଛୁଇଁ ପାରିଛନ୍ତି । ତାଙ୍କର କାଳିଆ ବଳଦ ଗଳାରେ ଗଳା, ଉଦୁଉଦୁମା, ଇଞ୍ଚିଡି ମିଞ୍ଚିଡି, ଖରାବରଷା ଗୀତର କବିତା/କଥାଗୁଡ଼ିକ ଅବସର ସମୟରେ ମୋ ପିଲାଙ୍କୁ ବଡ଼ ପାଟି କରି ଶୁଣାଏ । ପିଲାମାନେ ଖୁସି ହୁଅନ୍ତି । କହନ୍ତି, ମାମା, ତୋ କବିତା ସିନା ଆମେ ବୁଝିପାରୁନୁ କିନ୍ତୁ ଏ ସବୁ ବିଷୟ ଭଲଭାବରେ ବୁଝି ପାରୁଛୁ । ଖୁସି ଲାଗେ ତାଙ୍କର ସରଳ, ସ୍ପଷ୍ଟ, ଶିଶୁ ମନକୁ ଛୁଇଁଲା ଭଳି ବିଷୟବସ୍ତୁର ଚୟନ ଏବଂ ଉପସ୍ଥାପନ ଶୈଳୀକୁ ପଢ଼ିଲେ । ଅନ୍ତତଃ ଆଜିକାଲିର ଯାନ୍ତ୍ରିକ ପରିବେଶରେ ପିଲାମାନଙ୍କ ପାଖରେ ପଢ଼ିବାର, ଶୁଣିବାର ତଥା ସୃଷ୍ଟି କରିବାର ଆଶାଟିଏ ବଞ୍ଚେଇ ରଖିବାର ପ୍ରଚେଷ୍ଟା, ଯାହା ସାର୍ କରିଛନ୍ତି ତାହା କିଛି ମାତ୍ରାରେ ସଫଳ ବୋଲି ମନେହୁଏ ।

ସାର୍‌ଙ୍କର ଏବଂ ମୋର ବିଭାଗର ଗୋଟିଏ ରୁମ୍ । କଲେଜ ମାଗାଜିନ୍ ପ୍ରକାଶ ସମୟ ହେଲେ ସାର୍ ବାରମ୍ବାର ଲେଖା ମାଗନ୍ତି । ମୁଁ ଆଜି ଦେବି କାଲି ଦେବି କହି ଦେଇ ପାରେନି । ଆଉ ଦିନ କେଇଟା ପରେ ସାର୍ ଅବସର ନେବେ । କିନ୍ତୁ, ସ୍ରଷ୍ଟାଙ୍କର କଣ ବୟସ ବା ଅବସର ଥାଏ ? ସେ ତ ଚିର ସବୁଜ, ସଦା ଚଞ୍ଚଳ । ଜଣେ ବହୁମୁଖୀ ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷକୁ ମୋ ଭଳି ସାଧାରଣ ମଣିଷଟିଏ କେବଳ ଶ୍ରଦ୍ଧା, ସମ୍ମାନ ଏବଂ ଆନ୍ତରିକ ଶୁଭେଚ୍ଛା ଛଡ଼ା କଣ ଦେଇ ପାରିବ ? ସାର୍ ନୂଆବର୍ଷ ଅଭିନନ୍ଦନ ପତ୍ରଟି ଦେଲେ ବର୍ଷ ସାରା ମୋ ଟେବୁଲ୍ ଉପରେ ଥାଏ । ଚକାଆଖିଙ୍କର ଆଶୀର୍ବାଦରେ ତାଙ୍କର ଭବିଷ୍ୟତ ଜୀବନ ଆହୁରି କର୍ମମୁଖର ହେଉ, ସେ ଆହୁରି ସାହିତ୍ୟ ମନସ୍କ ହୁଅନ୍ତୁ । ଏତିକି କାମନା



ଦର୍ଶନ ବିଭାଗ, ଏରୋନଟିକ୍‌ସ କଲେଜ, ସୁନାବେଡା



Digitized by srujanika@gmail.com

# ନିଆରା ବ୍ୟକ୍ତିତ୍ୱ ବସନ୍ତ ବାବୁ

**ରମାକାନ୍ତ ଜେନା**

ଶିକ୍ଷକ, ପଥିକ ଓ ଭକ୍ତ ଅବସର ନେଇ ପାରନ୍ତି ନାହିଁ । ତଥାକଥିତ ଅବସର ଗ୍ରହଣ କରିବା ପରେ ସେମାନେ ବାଟ ଚାଲନ୍ତି, ଏକ ବୃହତ୍ତର ଅର୍ଥରେ ସେମାନେ ତଥାପି ଶିକ୍ଷକ, ପଥିକ ଓ ଭକ୍ତ ହୋଇ ରହିବେ ଏ କଥା ଆମେ ଜାଣିଛେ । ଏତଦ୍ ବ୍ୟତୀତ ସାହିତ୍ୟକୁ ଭଲ ପାଉଥିବା ମଣିଷ ସମସ୍ତଙ୍କୁ ଭଲପାଏ । ଏକ ସଂପ୍ରସାରିତ ଜୀବନବୋଧରେ ସେ ଅନୁପ୍ରାଣିତ ହେଉଥାଏ । ପ୍ରଚାର ଓ ପ୍ରତିଷ୍ଠାର ଅଣ ନିଃଶ୍ୱାସୀ ଦୌଡ଼ ଠାରୁ ଦୂରରେ ରହି ମଗ୍ନଥାଏ ତାର ସାଧନାରେ । ଏହିପରି ଜଣେ ଉଦାର ଗୁଣଗ୍ରାହୀ, ଶିଶୁ ସାହିତ୍ୟିକ, କୃତବିଦ୍ୟ ଅଧ୍ୟାପକ ଓ ଜଣେ ଦକ୍ଷ ସାହିତ୍ୟ ସଂଗଠକ ହେଉଛନ୍ତି ବସନ୍ତ କିଶୋର ସାହୁ । ଆଧୁନିକ ଓଡ଼ିଆ ଶିଶୁ ସାହିତ୍ୟକୁ ପରିପୁଷ୍ଟ କରିବାକୁ ଯେଉଁମାନେ ଅନବଦ୍ୟ ପ୍ରୟାସ କରି ଚାଲିଛନ୍ତି, ସେମାନଙ୍କ ମଧ୍ୟରୁ ବସନ୍ତବାବୁ ଅନ୍ୟତମ ।

ଦୀର୍ଘ ୪୦ବର୍ଷରୁ ଅଧିକ କାଳ ଶିଶୁ ମାନଙ୍କ ମନଲାଖି ଲେଖା ଲେଖି ଆସିଛନ୍ତି ସେ । ନିଜର ଐକାନ୍ତିକ ନିଷ୍ଠା ପ୍ରକାଶ କରି ଆସିଛନ୍ତି ଶିଶୁ ସାହିତ୍ୟକୁ ଋଦ୍ଧିମନ୍ତ କରିବା ପାଇଁ । ଗୋକର୍ଣ୍ଣିକା ସାହିତ୍ୟ ସମାଜ ପକ୍ଷରୁ ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ଶିଶୁ ସାହିତ୍ୟିକ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ ଜୟନ୍ତୀ ଉତ୍ସବରେ ୨୦୧୨ ମସିହା ସେପ୍ଟେମ୍ବର ୧୦ ତାରିଖରେ ତାଙ୍କ ସହ କିଛି ସମୟ ବିତାଇବାର ସୁଯୋଗ ପାଇଥିଲି । ଚଳିତବର୍ଷ ଶିଶୁ ସାହିତ୍ୟ ପୁରସ୍କାର ବିଜେତା ଥିଲେ ବସନ୍ତ ବାବୁ । ଦୃଢ଼ ନୈତିକ ମୂଲ୍ୟବୋଧ, ମନୋହର ପଲ୍ଲୀ ପ୍ରକୃତି, ଗ୍ରାମୀଣ ସଂସ୍କୃତି ତାଙ୍କ ମାନସ ଚେତନାକୁ ବିଶେଷ ଭାବରେ ପ୍ରଭାବିତ କରିଥିବା ମୁଁ କଥାବାର୍ତ୍ତାରୁ ଲକ୍ଷ୍ୟ କରିଛି । ବସନ୍ତବାବୁ ଜଣେ ଶିଶୁ ସାହିତ୍ୟ ସ୍ରଷ୍ଟା ଭାବରେ ଓଡ଼ିଶାରେ ସର୍ବତ୍ର ସୁପରିଚିତ । ସଂପ୍ରତି ଶିକ୍ଷକ ସମାଜ ମୂଲ୍ୟବୋଧର ଏକ ସଂକଟ ଭିତରେ ଅସ୍ୱସ୍ତି ଅନୁଭବ କରୁଥିବାବେଳେ ସେ ନୈତିକ ଭାବଧାରା ଆଦର୍ଶ ଓ ସ୍ନେହ ଶ୍ରଦ୍ଧାରେ ବିଶ୍ୱାସ ରଖି ହସଖୁସିରେ ତାଙ୍କ ଅଧ୍ୟାପନା ସମୟ ଅତିବାହିତ କରିଛନ୍ତି । ଚିର ଉଦାର, ନିଷ୍ଠାପର ଅଧ୍ୟାପକ, କର୍ମଚଞ୍ଚଳ, ସଦା ପ୍ରଫୁଲ୍ଲ ଏଇ ମଣିଷଟିକୁ ଦେଖିଲେ ଶ୍ରଦ୍ଧା ଆପେ ଆପେ ମନ ଭିତରକୁ ଆସିଯାଏ ।



Digitized by srujanika@gmail.com

ତାଙ୍କ ଅଧ୍ୟାପକ ଜୀବନରୁ ଅବସର ଉପଲକ୍ଷେ ବିଦାୟ ସଂବର୍ଦ୍ଧନା ସଭା ଓ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ ପାଉଥିବା ଆନନ୍ଦର କଥା । ଓଡ଼ିଶାରେ ସବୁକିଛି ସଂବର୍ଦ୍ଧନା ମୁଖ୍ୟତଃ ରାଜନୈତିକ ନେତାମାନଙ୍କ ପାଇଁ ହୋଇଥାଏ । ଅଧ୍ୟାପକ, ଶିକ୍ଷକ ସଂପ୍ରଦାୟକୁ କ୍ୱଚିତ୍ ସମ୍ମାନ ଦିଆଯାଏ। କିନ୍ତୁ ଗୁରୁଜୀ ଯେ ଏ ଜାତିକୁ ତାର ଶିକ୍ଷା ମାଧ୍ୟମରେ ନେତୃତ୍ୱ ଦେଇଥାଏ, ଏକଥା ବହୁ ସମୟରେ ସମାଜ ଭୁଲିଯାଏ ସୁତରାଂ ଶିକ୍ଷକ, ଅଧ୍ୟାପକମାନଙ୍କୁ ପ୍ରଥମେ ସମ୍ମାନ ଦେଇ ଶିଖିବା ସମାଜର ଏକ ମୌଳିକ କର୍ତ୍ତବ୍ୟ ।

ବସନ୍ତ ବାବୁ ଛାତ୍ର ଜୀବନରୁ ସାହିତ୍ୟ ପାଇଁ ମନ ବଳାଇଥିବା ମୁଁ ଅନୁଭବ କରିଛି । ଜଣେ ଦକ୍ଷ ସଂଗଠକ ଭାବେ ତାଙ୍କୁ ଜାଣିଛି । ଜଣେ ପ୍ରବୀଣ ଅଧ୍ୟାପକ ଯୋଗୁଁ ଅନେକ ଛାତ୍ରଛାତ୍ରୀ ତାଙ୍କ ଅଧୀନରେ ଗବେଷଣା କରିଛନ୍ତି । ଜୀବନରେ ବହୁ ଛାତ୍ରଛାତ୍ରୀଙ୍କୁ ମଣିଷ କରି ଗଢ଼ିଛନ୍ତି । ବହୁ ଅନୁଷ୍ଠାନ ସହ ସଂପୃକ୍ତ ରହି ସମାଜକୁ ଦିଗ୍‌ଦର୍ଶନ ଦେଇଛନ୍ତି । ଶାନ୍ତି ପ୍ରିୟ ବସନ୍ତ ବାବୁ ଆଜି ତାଙ୍କ ଚାକିରି ଜୀବନରୁ ଅବ୍ୟାହତ ନେଇ ଘରକୁ ବାହୁଡୁଛନ୍ତି । ଆମର ଗର୍ବ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ମାଟିରେ, ଶିଶୁ ସାହିତ୍ୟ ସ୍ରଷ୍ଟା ନନ୍ଦ କିଶୋର ସାମଲଙ୍କ ଭୂମିର ସେ ଭୂମିପୁତ୍ର । ତାଙ୍କ ଶିଶୁ ସାହିତ୍ୟର ବିଶାଳ ପରିଧି ଓ ନିର୍ଭୀକ ଦୃଷ୍ଟିକୋଣକୁ ଆମେ ସ୍ୱାଗତ କରୁଛୁ । ମୁଁ ଦୃଢ଼ କଣ୍ଠରେ କହିବି ଯେ ବସନ୍ତ ବାବୁଙ୍କ ଚିନ୍ତାଧାରାର ସ୍ୱଚ୍ଛତା ଶିଶୁ ସାହିତ୍ୟ ପାଠକମାନଙ୍କୁ ବେଶ୍ ସ୍ପର୍ଶ କରେ ଯାହା ଯଥାର୍ଥରେ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ।



ସଂପାଦକ, ଗୋକର୍ଣ୍ଣିକା
ଜାରକା, ଯାଜପୁର-୭୫୫୦୫୦



Digitized by srujanika@gmail.com

# ଜଣେ ଲୋକପ୍ରିୟ ବ୍ୟକ୍ତିତ୍ୱ

ଡକ୍ଟର ଅରୁଣେନ୍ଦ୍ର ନନ୍ଦ

ବ୍ୟକ୍ତିତ୍ୱ ହେଉଛି ମଣିଷର ଦର୍ପଣ । ତା ଉପରେ ମଣିଷର ସଫଳତା ଓ ବିଫଳତା ନିର୍ଭର କରେ । ସେଥିପାଇଁ ମଣିଷ ନିଜ ବ୍ୟକ୍ତିତ୍ୱକୁ ଲୋକପ୍ରିୟ କରାଇ ସମାଜରେ ସତନ୍ତ୍ର ସ୍ଥାନ ଅଧିକାର କରେ । ନିଜ ପ୍ରତିଚ୍ଛବିକୁ ଅନ୍ୟ ମସ୍ତିସ୍କରେ ସଫଳତା ସହିତ ଆଙ୍କି ପାରିଲେ ବ୍ୟକ୍ତିତ୍ୱ ଆଦୃତ ହୁଏ । ସମସ୍ତେ ସେହି ବ୍ୟକ୍ତିଙ୍କୁ ଆଦର କରନ୍ତି, ସ୍ନେହ ଶ୍ରଦ୍ଧା ପ୍ରକଟ କରନ୍ତି ଓ ସମ୍ମାନ ଦିଅନ୍ତି । ମଣିଷର ଚାଲିଚଳନ, ପୋଷାକ ପରିଚ୍ଛଦ, ହାବଭାବ ଓ ବ୍ୟବହାର ସବୁ ତାର ବ୍ୟକ୍ତିତ୍ୱରୁ ଜଣାପଡେ ।

ଏହି ଦୃଷ୍ଟିରୁ ଜଣେ ସଫଳ ବ୍ୟକ୍ତିତ୍ୱର ଅଧିକାରୀ ହେଉଛନ୍ତି ବିଶିଷ୍ଟ ଶିଶୁ ସାହିତ୍ୟିକ, କବି, ପ୍ରାବନ୍ଧିକ, ସମାଲୋଚକ, ପ୍ରକାଶକ ତଥା ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ । ଏରୋନଟିକ୍ସ କଲେଜର ଜଣେ ସହକର୍ମୀ ତଥା ଘରେ ଜଣେ ଉତ୍ତମ ପଡୋଶୀ ଭାବରେ ଦୀର୍ଘ ଦୁଇ ଦଶନ୍ଧି ଧରି ତାଙ୍କୁ ବହୁ ନିକଟରୁ ଦେଖିଛି ଓ ଅନୁଭବ କରିଛି ଓ ଜାଣିଛି ମଧ । ମୋ ଦୃଷ୍ଟିରେ ସିଏ ଓ ତାଙ୍କ ବ୍ୟକ୍ତିତ୍ୱ ସଂପର୍କରେ କିଛି କହିବା ହେଉଛି ଏହି କ୍ଷୁଦ୍ର ଆଲେଖ୍ୟଟିର ଉଦେଶ୍ୟ ।

ଭାଷା ହେଉଛି ଭାବର ବାହକ ଓ ସର ହିଁ ବ୍ୟକ୍ତିର ଦର୍ପଣ । ଯିଏ ସଂଯତ ଭାଷା ପ୍ରୟୋଗ କରି ଅନ୍ୟକୁ ମିଠା କଥା କୁହେ, ତା ସହିତ ସମସ୍ତେ କଥାବାର୍ତ୍ତା କରିବାକୁ ଆଗ୍ରହୀ ହୁଅନ୍ତି । ସମାଜ ମଧ ସେହି ବ୍ୟକ୍ତିଙ୍କୁ ସମ୍ମାନ ଦିଏ । ଏହି ଉକ୍ତି ଡକ୍ଟର ସାହୁଙ୍କ କ୍ଷେତ୍ରରେ ଅକ୍ଷରେ ଅକ୍ଷରେ ପ୍ରମାଣିତ । ତାଙ୍କର ମିଠା କଥା, ମପାଚୁପା ଶବ୍ଦ ପ୍ରୟୋଗ ତଥା ହସହସ ମୁହଁ ଅନ୍ୟ ଉପରେ ଗଭୀର ପ୍ରଭାବ ପକାଇ ତାଙ୍କ ବ୍ୟକ୍ତିତ୍ୱକୁ ଅଧିକ ଲୋକପ୍ରିୟ କରାଇ ପାରିଛି । ଏଥିପାଇଁ ସମସ୍ତେ ତାଙ୍କୁ ଆଗରେ ଓ ପଛରେ ମଧ ଆଦର କରନ୍ତି ।

ଅନ୍ୟର ସୁଗୁଣଙ୍କୁ ପ୍ରଶଂସା କରି ତାକୁ ଜୀବନରେ ଆଗକୁ ବଢ଼ିବା ପାଇଁ ଉତ୍ସାହିତ କରିବା କ୍ଷେତ୍ରରେ ଡକ୍ଟର ସାହୁ ସିଦ୍ଧହସ୍ତ । କାହାର ନିନ୍ଦା ଗାନ କରବା ବା ପରଚର୍ଚ୍ଚା କରିବା ମୁଁ କେବେ ଶୁଣିନାହିଁ । ତାଙ୍କର ଏହି ଗୁଣ ପାଇଁ ସେ ଅନ୍ୟମାନଙ୍କ



Digitized by srujanika@gmail.com

ହୃଦୟରେ ନିଜ ପାଇଁ ଭଲ ପାଇବାର ଏକ ସତନ୍ତ୍ର ସ୍ଥାନ ଅଧିକାର କରି ନେଇଛନ୍ତ ।

ସେ ଜୀବନ ଯାତ୍ରାରେ ବହୁ ସଫଳ ପଥ ଅତିକ୍ରମ କରିସାରିଥିଲେ ମଧ୍ୟ କେବେ ଅନ୍ୟମାନଙ୍କ ସମ୍ମୁଖରେ ନିଜର ଗର୍ବ, ଅହଙ୍କାର ପ୍ରଦର୍ଶନ କରନ୍ତି ନାହିଁ । ସେଥିପାଇଁ ସେ ସମସ୍ତଙ୍କ ନିକଟରେ ଜଣେ ନିଷ୍ଠାପର, ଭଦ୍ର ଓ ନମ୍ର ସଭାବର ମଣିଷ ଭାବରେ ପରିଗଣିତ । ତାଙ୍କ ଶିଷ୍ଟାଚାରପୂର୍ଣ୍ଣ କଥା ଓ ମଧୁର ବ୍ୟବହାର ସମସ୍ତଙ୍କୁ ଆକୃଷ୍ଟ କରେ । ନିଜ ବ୍ୟକ୍ତିତ୍ୱକୁ ନେଇ ଜୀବନରେ ସର୍ବଦା ସେ ଏକ ସକାରାତ୍ମକ ଭାବଧାରା ପୋଷଣ କରି ଆସିଛନ୍ତି ।

ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ ହେଲା-ସାମାଜିକ ସ୍ୱୀକୃତି ପାଇଁ ସେ ସମାଜ ଠାରୁ କେବେ ନିଜକୁ ଦୂରେଇ ରଖି ନାହାନ୍ତି । ଜଣେ ଦାୟିତ୍ୱ ସଂପନ୍ନ ନାଗରିକର ସମାଜ ପ୍ରତି ଥିବା କର୍ତ୍ତବ୍ୟକୁ ସେ ମର୍ମେ ମର୍ମେ ହୃଦୟଙ୍ଗମ କରି ସମାଜର ହିତସାଧନ ପାଇଁ କିଛି କାର୍ଯ୍ୟ କରିଛନ୍ତି । ଏଥିପାଇଁ ସେ ସମାଜର ସମସ୍ତ ବର୍ଗର ଲୋକଙ୍କ ସଂସ୍ପର୍ଶରେ ଆସି ନିଜ ବ୍ୟକ୍ତିତ୍ୱକୁ ଅଧିକ ଲୋକପ୍ରିୟ କରାଇ ପାରିଛନ୍ତି ।

ସମୟାନୁବର୍ତ୍ତିତା ଜଣେ ବ୍ୟକ୍ତିକୁ ସାଧାରଣରୁ ଅସାଧାରଣରେ ପରିଣତ କରେ । ଏ କ୍ଷେତ୍ରରେ ଡକ୍ଟର ସାହୁ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବା ସହିତ ସମସ୍ତଙ୍କର ପ୍ରିୟଭାଜନ ହୋଇଛନ୍ତି । ସମୟର ସଦୁପଯୋଗ କରି ସେ ବ୍ୟର୍ଥ ବିବାଦ ଓ ଆଲୋଚନାରୁ ନିଜକୁ ଦୂରେଇ ରଖିବା ସଙ୍ଗେସଙ୍ଗେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସଫଳତା ପାଇ ନିଜ ବ୍ୟକ୍ତିତ୍ୱର ଏକ ସାର୍ଥକ ପରିପ୍ରକାଶ ଘଟାଇଛନ୍ତି ।

ଜୀବନର ସମସ୍ତ କ୍ଷେତ୍ରରେ ପ୍ରଭାବ ବିସ୍ତାର କରି ନିଜକୁ ଜଣେ ସଫଳ ବ୍ୟକ୍ତିତ୍ୱର ଅଧିକାରୀ ଭାବେ ପ୍ରମାଣିତ କରିଥିବା ଡକ୍ଟର ସାହୁ ତାଙ୍କ ବୃତ୍ତିଗତ ଜୀବନରୁ ଏବେ ଅବସର ନେବେ । ତାଙ୍କ ବ୍ୟକ୍ତିତ୍ୱ ଆହୁରି ବିକଶିତ ହୋଇ ସମାଜର ହିତ ସାଧନରେ ନିୟୋଜିତ ହେଉ । ମହାପ୍ରଭୁ ଶ୍ରୀଜଗନ୍ନାଥ ତାଙ୍କୁ ସୁସ୍ଥ, ନୀରାମୟ ଓ ଦୀର୍ଘ ଜୀବନ ପ୍ରଦାନ କରନ୍ତୁ, ଏହାହିଁ ପ୍ରାର୍ଥନା ।



ଅଧ୍ୟାପକ, ଇତିହାସ ବିଭାଗ
ଏରୋନଟିକ୍ସ କଲେଜ, ସୁନାବେଡ଼ା



Digitized by srujanika@gmail.com

# ବସନ୍ତ ବାବୁଙ୍କୁ ମୁଁ ଯେତିକି ଜାଣେ

## ଡକ୍ଟର କିଶୋର ମହାନ୍ତି

ବସନ୍ତ ବାବୁଙ୍କ ଚେହେରାରୁ ସ୍ପଷ୍ଟ ବାରି ହୋଇପଡେ ତାଙ୍କ ଅନ୍ତଃ ମଣିଷର ସ୍ୱରୂପ । ସେ ଚେହେରାରେ କେମିତି କେଜାଣି ରୂପ ନେଇଥାଏ, ଏକ ଶାନ୍ତ, ସଂଭ୍ରାନ୍ତର ପ୍ରତିଛବି, ଜଣେ ସରଳ ନିଷ୍କପଟ ମଣିଷଟିଏ... ମଣିଷ ଭିତରେ ଏପରି ହୃଦୟବାନ ବ୍ୟକ୍ତିତ୍ୱଟିଏ ମିଳିବା ବଡ଼ କଷ୍ଟ ସାଧ । ବସନ୍ତ ବାବୁଙ୍କ ସହ ମୋର ସଂପର୍କ ଅତି ନିବିଡ଼ ଅଥଚ ଖୁବ୍ କମ୍ ଦିନର ଚିହ୍ନା ପରିଚୟ ।

କହିବାକୁ ଗଲେ ବସନ୍ତ ବାବୁ ମୋ ଅଞ୍ଚଳର ବାସିନ୍ଦା-ତାଙ୍କ ଗାଁ ମୋ ଗାଁ ଠାରୁ ବେଶୀ ଦୂର ନହେଲେ ବି ଆମ ଭିତରେ ପଢ଼ା ବେଳେ ଏତେ ବଂଧୁତ୍ୱ ଜମି ନଥିଲା । ମୁଁ ଆକାଶବାଣୀ, ଜୟପୁରରେ କାର୍ଯ୍ୟ କରୁଥିଲା ବେଳେ ବସନ୍ତ ବାବୁଙ୍କୁ ଝାପ୍‌ସା ଜାଣିଥିଲି । ପ୍ରାୟତଃ ଥରେ ବା ଦୁଇଥର ଦେଖା ସାକ୍ଷାତ, ବଂଧୁତ୍ୱ ଭିତରେ କେବଳ ସାହିତ୍ୟ ସଂପର୍କରେ ଆଳାପ ଆଲୋଚନା ତଥା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଜୀବନ ବିତାଇବାର ବିଶେଷତଃ କର୍ମମୟ ଜୀବନ୍ ଅତିବାହିତ ଏଠାରେ କିପରି ହେବ ସେହି ବିଷୟରେ ଚିନ୍ତା । କିନ୍ତୁ ବସନ୍ତ ବାବୁ ରହିଗଲେ ବନଫୁଲ ସାଉଁଟିବା ପାଇଁ-ମୁଁ ଚାଲି ଆସିଲି, କଟକ । ଏହା ଭିତରେ ଲମ୍ବା ବ୍ୟବଧାନ । ଅନେକ ବନ୍ଧୁ ତଥା ନିଜର ଲୋକ ଆସନ୍ତି ସୁଦୂର ସୁନାବେଡ଼ାରୁ । ମୁଁ କେବଳ ବସନ୍ତ ବାବୁଙ୍କ କଥା କେଇ ପଦ ଉଚ୍ଚାରଣ କରେ ଏବଂ ସେଇଠୁ ଶେଷ ହୁଏ । ମୋ ଭିତରେ ଥିବା ଉତ୍ତାପ ବସନ୍ତ ବାବୁଙ୍କ ପାଇଁ ।

ଦୀର୍ଘ ଦିନ ଅତିବାହିତ ହୋଇଗଲା, ଏହା ଭିତରେ ବସନ୍ତ ବାବୁଙ୍କର ଲେଖା ସବୁ ପ୍ରକାଶ ପାଇଲା ବିଭିନ୍ନ ପତ୍ରପତ୍ରିକାରେ, ଖୁସି ବି ଲାଗିଲା, ସାହିତ୍ୟର ପ୍ରଚାର ପ୍ରସାର ଦିଗରେ ନୀରବ ସାଧକ ବସନ୍ତ ବାବୁ ଉପାନ୍ତ ଅଞ୍ଚଳରେ ଥାଇ ଓଡ଼ିଆ ସାହିତ୍ୟର ଶ୍ରୀସମୃଦ୍ଧି ଦିଗରେ ଲାଗି ପଡ଼ିବା ସହ, ତାର ଉତ୍ତୋରତ୍ତର ଉନ୍ନତି କିପରି ହେବ ସେଥିରେ ମଙ୍ଗୁଆଳ ସାଜିଲେ । ବନଫୁଲ ସାହିତ୍ୟ ପରିଷଦ ମାଧମରେ ସୁନାବେଡ଼ା ତଥା କୋରାପୁଟ ଭଳି ଏକ ଉପାନ୍ତ ଅଞ୍ଚଳରେ ବେଶ୍ ସାହିତ୍ୟିକମାନଙ୍କୁ ସୃଷ୍ଟି କଲେ । ବିଭିନ୍ନ ସମୟରେ ସମ୍ମାନ, ଆଲୋଚନା ତଥା ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗକୁ ନେଇ ସେ ବିଭିନ୍ନ ଅନୁଷ୍ଠାନମାନଙ୍କରେ ପ୍ରଚାର କରିବାକୁ ଲାଗିଲେ ।

ମୁଁ କୋରାପୁଟର 'ଦେଶିଆ ନାଟ' ସଂପର୍କରେ ପିଏଚ୍.ଡି. ପାଇଁ ଗବେଷଣା



Digitized by srujanika@gmail.com

କରୁଥାଏ । ମୋତେ ମୋର ବଂଧୁ ଡକ୍ଟର ବିଜୟ କୁମାର ଶତପଥୀ ପ୍ରେରଣା ଯୋଗାଉଥାନ୍ତି-ଆଲୋଚନାରେ ଡକ୍ଟର ଶତପଥୀ ବସନ୍ତ ବାବୁଙ୍କ ନାମ ଉଲ୍ଲେଖ କଲେ । ଏବଂ କହିଲେ ସନ୍ଦର୍ଭ ପାଇଁ କିଛି ପାଣ୍ଡୁଲିପିର ଆବଶ୍ୟକତା ରହିଛି-ଏହା ଡକ୍ଟର ସାହୁଙ୍କ ଠାରୁ ତୁମେ ଆଣିପାର-ତାଙ୍କ ସହ କଥାବାର୍ତ୍ତା ହୁଅ-ସେ ତୁମ ଗାଆଁ ପାଖର । ମୋର ସାହସ ବଢ଼ିଗଲା । ଆଗରୁ ସମ୍ପର୍କ ଥାଏ, ତେଣୁ ଫୋନ୍ ମାଧ୍ୟମରେ ନୁହେଁ ମନକଥା ଚିଠିରେ ଜଣାଇଲି । ସେ ଚିଠିର ଉତ୍ତର ସଙ୍ଗେ ସଙ୍ଗେ ଲେଖି ଜଣାଇଲେ-ଲେଖିଥିଲେ ମୁଁ ଦଶହରା ଛୁଟିରେ ଗାଆଁକୁ ଯାଉଛି । ସାଙ୍ଗରେ ଦେଶିଆ ନାଟର ପାଣ୍ଡୁଲିପି ନେଇଥିବି, ଆପଣ ମୋ ପାଖରୁ ବସଷ୍ଟାଣ୍ଡରୁ ନେଇଯିବେ । ସତକୁ ସତ ସେ ଷ୍ଟାଣ୍ଡରେ ମୋତେ ଅପେକ୍ଷା କରିଥିଲେ । ଏତେଦିନ ପରେ ଦୋଦୋ ଚିହ୍ନା ହେଉଥିଲେ ହେଁ ତାଙ୍କର ଅନ୍ତରଙ୍ଗତା ମୋତେ ବାନ୍ଧିଦେଲା । ସେ ପାଣ୍ଡୁଲିପି ଦେଇ କହିଲେ କାମ ସରିଲେ ଫେରାଇ ଦେବେ । ମୁଁ ଜାଣିଥିଲି ସେ ପୂଜାଛୁଟିରେ ୧୦ ଦିନ ଖଣ୍ଡେ ରହି ପୁଣି ଫେରିଯିବେ କର୍ମସ୍ଥଳୀକୁ । ପାଣ୍ଡୁଲିପି ଗୁଡ଼ିକୁ ଡକ୍ଟର ଶତପଥୀଙ୍କୁ ଦେଖାଇଲି-ସେ ଖୁସି ହୋଇଯାଇ କହିଲେ ପ୍ରକୃତ ଲୋକଙ୍କୁ ଧରିପାରିଛ, ଯେ ତୁମକୁ ହିଁ ସାହାଯ୍ୟ କଲେ । ତା ପରେ ପାଣ୍ଡୁଲିପିଗୁଡ଼ିକ ଜେରକ୍ସ କରି ରଖିଲି ଓ ସେ ଫେରିବା ଦିନ ତାଙ୍କୁ ଅରିଜିନାଲ ଫେରାଇଦେଇ କୃତଜ୍ଞତା ଜଣାଇଲି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ବନ୍ଧୁ ବସନ୍ତ ବାବୁଙ୍କର ବ୍ୟକ୍ତିତ୍ୱ କଥା । ଜଣକୁ ଆଗକୁ ନେବା ପାଇଁ ତାଙ୍କର ପ୍ରଚେଷ୍ଟା, ଏମିତି କମ୍ ଲୋକଙ୍କ ପାଖରେ ମିଳିଥାଏ । ତାଙ୍କ ଭିତରେ ପ୍ରତିଭା ଯେମିତି ଭରି ରହିଛି, ସେମିତି ଅଧ୍ୟାପନା କ୍ଷେତ୍ରରେ ତାଙ୍କ ଭିତରେ ସେ ଅସାଧାରଣ ଦକ୍ଷତା ରହିଛି । ତାଙ୍କର ଅନ୍ୟ ଅଧ୍ୟାପକମାନେ ଆଲୋଚନା ପ୍ରସଙ୍ଗରେ ଏ କଥା କହିଥାନ୍ତି । ସେ ଯାହା ହେଉ ତାଙ୍କର ସରଳତା କୁହ, ଉଦାର ପଣ, ଶାନ୍ତବନ୍ତ ରୂପ ଯେତିକି ଆକୃଷ୍ଟ କରେ ସେତିକି ତାଙ୍କ ପାଖରେ ହାର୍ ମାନେ ତାଙ୍କର ଅସାଧାରଣ ମଣିଷପଣିଆ କଳାଚାତୁରୀ ଦେଖି । ସେ ଜଣେ ଉଚ୍ଚକୋଟୀର ସାହିତ୍ୟିକ, ପ୍ରାବନ୍ଧିକ ତଥା ଗବେଷକ ଏହା ଅନସ୍ୱୀକାର୍ଯ୍ୟ ।

ଯଥାର୍ଥରେ ତାଙ୍କ ସେ ବସନ୍ତ, ନାମକରଣରେ ସାର୍ଥକତା ରହିଛି । ଆମ ସାହିତ୍ୟକୁ ସବୁଜାୟିତ କରିବାରେ ସେ ଚିରବସନ୍ତ । ସେ ପିଲାମାନଙ୍କର ପ୍ରିୟ ଗୁରୁ ବସନ୍ତ - ସେ ଆମମାନଙ୍କର ଚିର ସାଥୀ ବସନ୍ତ । ସାହିତ୍ୟିକଙ୍କ ମହଲରେ ସେ ଅଭୁଲା ବସନ୍ତ ।

ସେ ସବୁଜର ଋତୁ ବସନ୍ତ ।
ସେ ହଳଦୀବସନ୍ତର ସାଥୀ ବସନ୍ତ
ସେ କୋଇଲିର କୁହୁକୁହୁ ସ୍ୱରରେ ଆନମନା ସ୍ୱରଟିଏ - ସେ ହେଉଛି ବସନ୍ତ ।।



ଆକାଶବାଣୀ, କଟକ



Digitized by srujanika@gmail.com

# ମୋ ସ୍ମୃତିରେ ବସନ୍ତ ସାର୍

**ବ୍ରଜ କିଶୋର ରାୟ**

୧୯୯୦ରେ ମୁଁ ଏରୋନଟିକ୍‌ସ କଲେଜରେ ଯୋଗ ଦେଲି । ନୂଆ ଯାଗା ନୂଆ ମୁହଁ । ସମସ୍ତଙ୍କୁ ନମସ୍କାର କଲି । କିଏ ହାତ ମିଳାଇଲା ତ କିଏ ହସି ଦେଇ ଚାଲିଗଲା । ଆଉ କିଏ ମୋ ବିଷୟରେ ଜାଣିବାକୁ ଚାହିଁଲେ । କଥା ପ୍ରସଙ୍ଗରେ ଘର, କେଉଁଠି ପଢୁଥିଲି କେଉଁଠି ଚାକିରି କରୁଥିଲି ଆଦି ସବୁକଥା ପଚାରି ବୁଝିଲେ । ସେଇ କେତେଜଣଙ୍କ ଭିତରେ ଥିଲେ ବସନ୍ତ ସାର୍ । ତାଙ୍କ କଥାରୁ ତାଙ୍କ ମଣିଷପଣିଆକୁ ଚିହ୍ନିଲି । ସପ୍ତାହକ ପରେ ମୁଁ ଏଲ୍-୯୧ରେ କ୍ୱାଟର ପାଇଲି । ଘର ସଫା କଲାବେଳେ ସେହି ବ୍ଲକର ଭୀମସେନ ସାହୁ ଆସି ନିଜ ପରିଚୟ ଦେଇ କହିଲେ, 'ଆପଣଙ୍କ ଘର ପରା କାଇପଡାରେ' । ମୁଁ କହିଲି ହଁ । ହେଲେ ଆପଣ କେମିତି ଜାଣିଲେ ବୋଲି ମୁଁ ପଚାରିଲାରୁ ସେ ବସନ୍ତ ସାର୍‌ଙ୍କ ଠାରୁ ଖବର ପାଇଛନ୍ତି ବୋଲି କହିଲେ ? ସେଇଠୁ ମୁଁ ବସନ୍ତ ସାର୍‌ଙ୍କ ବ୍ୟକ୍ତିତ୍ୱ ଓ ଲୋକ ସମ୍ପର୍କ ସହିତ ପରିଚିତ ହେଲି । ସେ କେବଳ ଲୋକଙ୍କ ନା, ଗାଆଁ ଠିକଣା ବୁଝନ୍ତି ନାହିଁ, ଅନ୍ୟମାନଙ୍କ ସହିତ ତାଙ୍କର ସମ୍ପର୍କ ମଧ ଯୋଡ଼ି ଦିଅନ୍ତି । ଯେମିତି ଭୀମ ବାବୁଙ୍କ ସହିତ ଯୋଡ଼ି ଦେଲେ ମୋର ସମ୍ପର୍କ । ପରବର୍ତ୍ତୀ କାଳରେ ଭୀମବାବୁଙ୍କ ସହିତ ମୋର ସମ୍ପର୍କ ନିବିଡ଼ ହୋଇଛି ଓ ତାହା ଏବେବି ଅତୁଟ ରହିଛି । ଯଦିଓ ଭୀମବାବୁ ଚାକିରିରୁ ଅବସର ନେଇ ସୁନାବେଡ଼ା ଛାଡ଼ି ତାଙ୍କ ଗାଆଁ ଧୁମାତ, ଇନ୍ଦୁପୁରରେ ରହୁଛନ୍ତି । ଏମିତି ସେ କେତେ ଲୋକଙ୍କୁ କେତେ ଲୋକଙ୍କ ସହିତ ଯୋଡ଼ି ଦେଇଛନ୍ତି ସମ୍ପର୍କର ଡୋରିରେ । ଦୀର୍ଘ ୨୨ ବର୍ଷ ହେଲା ମୁଁ ତାଙ୍କ ଘନିଷ୍ଠ ସମ୍ପର୍କରେ ଆସିଛି । କଲେଜର ଅନେକ କାର୍ଯ୍ୟ ମିଳିମିଶି କରିଛୁ । ତାଙ୍କ ପ୍ରେରଣା ଓ ପରାମର୍ଶରେ ମୁଁ ମଧୁସୂଦନ ସେବା ସଂଘ, ଉତ୍କଳ ସାଂସ୍କୃତିକ ପରିଷଦ, ଶ୍ରୀଜଗନ୍ନାଥ ସେବା ସଂସ୍ଥା, ବନପ୍ରଭା ସାହିତ୍ୟ ସଂସଦ ଆଦି ସହିତ ଜଡିତ ହୋଇଛି ଓ ସେଇ ଅନୁଷ୍ଠାନମାନଙ୍କ ସହ ମିଶି କାର୍ଯ୍ୟ କରିବାର ସୌଭାଗ୍ୟ ଲାଭ କରିଛି ।

ତାଙ୍କୁ ମୁଁ ବ୍ୟକ୍ତିଗତ ଭାବେ ଭଲପାଏ ଓ ସମ୍ମାନ ଦିଏ । କଥା ପ୍ରସଙ୍ଗରେ ଆମେ ବ୍ୟକ୍ତିଗତ ଓ ଅନୁଷ୍ଠାନ ସମ୍ପର୍କରେ କଥା ହେଉ । ସୁନାବେଡ଼ାରେ ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କ ଭବିଷ୍ୟତ ନେଇ ଆଲୋଚନା କରୁ । ବର୍ତ୍ତମାନର ଯୁବପିଢ଼ିର ଅନୁଷ୍ଠାନ ପ୍ରତି ବିମୁଖ ଭାବ ପାଇଁ ସେ ଦୁଃଖ ପ୍ରକାଶ କରନ୍ତି । ଯୁବପିଢ଼ିଙ୍କୁ ପ୍ରଭାବିତ କରିବା



Digitized by srujanika@gmail.com

ପାଇଁ ସେ ସବୁବେଳେ ପରାମର୍ଶ ଓ କାର୍ଯ୍ୟପନ୍ଥା ଗ୍ରହଣ କରନ୍ତି ।

ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବେ କଲେଜରେ ତାଙ୍କର ସୁଖ୍ୟାତି ରହିଛି । ମହାବିଦ୍ୟାଳୟର 'ଓଡ଼ିଆ ସାହିତ୍ୟ ସଂସଦ'ର ଉନ୍ନତି ଓ ସମୃଦ୍ଧି ପାଇଁ ସେ ସବୁବେଳେ ଆଖିଦୃଶିଆ କାର୍ଯ୍ୟ କରିଛନ୍ତି । ସଂସଦର ବାର୍ଷିକ ଉତ୍ସବ ଶୃଙ୍ଖଳିତ ଓ ପ୍ରଭାବଶାଳୀ ହେବା ପାଇଁ ସେ ସର୍ବଦା ଉଦ୍ୟମ କରନ୍ତି । ବଛାବଛା ବକ୍ତାଙ୍କୁ ଡାକି ଛାତ୍ରଛାତ୍ରୀଙ୍କୁ ଉଦ୍‌ବୋଧିତ କରିବାର ବ୍ୟବସ୍ଥା କରନ୍ତି । ଛାତ୍ରଛାତ୍ରୀଙ୍କର ସମସ୍ୟା ଓ ସମାଧାନ ଦିଗରେ ସେ ସାହାଯ୍ୟ କରନ୍ତି ଓ ପିଲାଙ୍କୁ ଭବିଷ୍ୟତ ପ୍ରତି ସଚେତନ କରାନ୍ତି ।

ଓଡ଼ିଆ ଭାଷା ସାହିତ୍ୟ ପ୍ରତି ତାଙ୍କର ପ୍ରବଳ ଅନୁରକ୍ତି । ନିଜ ସାଧନା ବଳରେ ସେ ଆଜି ପ୍ରତିଷ୍ଠିତ । ଜଣେ ସାହିତ୍ୟିକ, ଗବେଷକ, ଆଲୋଚକ ଓ ଶିଶୁ ସାହିତ୍ୟିକ ଭାବେ ସମଗ୍ର ରାଜ୍ୟରେ ତାଙ୍କର ସୁଖ୍ୟାତି ରହିଛି । ଅବିଭକ୍ତ କୋରାପୁଟ ଜିଲ୍ଲାର ସାହିତ୍ୟିକ ଓ ସାହିତ୍ୟ ଅନୁଷ୍ଠାନ ସହିତ ତାଙ୍କର ସୁସମ୍ପର୍କ ତାଙ୍କୁ ଏ ଅଞ୍ଚଳରେ ଲୋକପ୍ରିୟ କରାଇଛି । ନିଷ୍ଠାପର ଉଦ୍ୟମ, ସମସ୍ତଙ୍କ ପ୍ରତି ସାହାଯ୍ୟ ସହାନୁଭୂତି ମନୋଭାବ ଅନ୍ୟମାନଙ୍କୁ ସର୍ବଦା ଅନୁପ୍ରାଣିତ କରି ଆସିଛି । ସାହିତ୍ୟ ସୃଷ୍ଟି, ସାହିତ୍ୟ ପ୍ରତି ଅନୁରାଗ ଓ ସାହିତ୍ୟିକଙ୍କ ପ୍ରତି ଶ୍ରଦ୍ଧା, ଭଲ ପାଇବା ତାଙ୍କର ଏକ ମହତ ଗୁଣ । ଲେଖିବା ପଢ଼ିବା ତାଙ୍କର ନିଶା । ସମ୍ବାଦପତ୍ର, ପତ୍ରପତ୍ରିକା ପଢ଼ିବା, ଉଚ୍ଚକୋଟୀର ବହି ସଂଗ୍ରହ କରିବା, ଲେଖକଙ୍କ ସହିତ ବନ୍ଧୁତା ସ୍ଥାପନ କରିବା ତାଙ୍କ ଚରିତ୍ରର ଅନ୍ୟ ଏକ ବିଶେଷତ୍ୱ ।

ଜଣେ ପ୍ରକାଶକ, ମୁଦ୍ରକ, ସମ୍ପାଦକ ଓ ସଂକଳକ ଭାବରେ ତାଙ୍କର ଏ ଅଞ୍ଚଳରେ ଯଥେଷ୍ଟ ସୁଖ୍ୟାତି । ଉତ୍କୃଷ୍ଟ ମାନର ପୁସ୍ତକ ପ୍ରକାଶ କରାଇ ସେ ଏ ଅଞ୍ଚଳରେ ନିଜର ପ୍ରାଧାନ୍ୟ ବିସ୍ତାର କରିଛନ୍ତି । ସାହିତ୍ୟ, ସଂସ୍କୃତି ଓ ଶିକ୍ଷାନୁଷ୍ଠାନର ମୁଖପତ୍ର ପ୍ରକାଶରେ ସମସ୍ତେ ତାଙ୍କର ସାହାଯ୍ୟ ଲୋଡନ୍ତି । ସେ ମଧ୍ୟ ଅକୁଣ୍ଠିତ ଚିତ୍ତରେ ସମସ୍ତଙ୍କୁ ସାହାଯ୍ୟ କରନ୍ତି । ଅନେକ ପତ୍ରପତ୍ରିକାର ନିଜେ ସଂପାଦକ ହେବା ସହିତ ଅନ୍ୟମାନଙ୍କୁ ଏ ଦିଗରେ ସାହାଯ୍ୟ, ସହଯୋଗ ଓ ଦିଗ୍‌ଦର୍ଶନ ଦେଇ ଉଚ୍ଚକୋଟୀର ଓ ଆଖିଦୃଶିଆ ପୁସ୍ତକ ପ୍ରକାଶ କରାଇଛନ୍ତି । ଏବେ ସେ ଅବସର ନେଇ ନିଜ ଜନ୍ମଭୂମିକୁ ଫେରିଯିବେ । ଏ ଅଞ୍ଚଳ ତାଙ୍କର ପ୍ରତିଭା ଓ ସାହାଯ୍ୟ ସହଯୋଗରୁ ବଞ୍ଚିତ ହେବ । ପୂର୍ବପରି ପତ୍ରିକା ଓ ପୁସ୍ତକଗୁଡ଼ିକ ସରସ ସୁନ୍ଦର ହୋଇ ପାରିବ କି ନାହିଁ ତାହା ଏବେ ଏକ ପ୍ରଶ୍ନବାଚୀ ହୋଇ ରହିଛି । ତାଙ୍କର ଅବସର ଜୀବନ ସୁଖମୟ ହେଉ ଏହାହିଁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ଲାଇବ୍ରେରିଆନ, ଏରୋନଟିକ୍‌ସ କଲେଜ, ସୁନାବେଡ଼ା



Digitized by srujanika@gmail.com

# ସହକର୍ମୀଙ୍କ ଦୃଷ୍ଟିରେ ବସନ୍ତ କିଶୋର

ଡକ୍ଟର ବସନ୍ତ କିଶୋର ସାହୁଙ୍କ ସହ ମୋର ୨୮ ବର୍ଷର ସମ୍ପର୍କ । ସେ ଜଣେ ସ୍ନେହୀ, ସତ୍ୟବାଦୀ, ସ୍ପଷ୍ଟବାଦୀ, ମିଷ୍ଟଭାଷି, କର୍ତ୍ତବ୍ୟ ପରାୟଣ, ରୁଚିସମ୍ପନ୍ନ, ନିଚ୍ଛକ ବାସ୍ତବବାଦୀ ମଣିଷ । ମୁଁ ଅଧ୍ୟାପକ, ଉପାଧ୍ୟକ୍ଷ ଓ ଅଧ୍ୟକ୍ଷ ଭାବେ ରହି ତାଙ୍କ ସହିତ ସହକର୍ମୀ ହିସାବରେ ମିଶିବା ଓ କାର୍ଯ୍ୟ କରିବାର ସୁଯୋଗ ପାଇଛି । ତାଙ୍କ ସହ ବନ୍ଧୁତାର ଅନୁଭୂତି ସୁଦୂରପ୍ରସାରୀ । ଓଡ଼ିଆ ସାହିତ୍ୟ ବିଶେଷ କରି ଶିଶୁ ସାହିତ୍ୟ ପ୍ରତି ତାଙ୍କର ଅବଦାନ ପ୍ରଶଂସନୀୟ । ଓଡ଼ିଆ ପର୍ବପର୍ବାଣି ଓ ଉତ୍ସବ ପୂର୍ବରୁ ସେ ଭୁଲି ଯାଉଥିବା ଲୋକଙ୍କୁ ତାଙ୍କର ଶୁଭେଚ୍ଛା ବାର୍ତ୍ତା ଦ୍ୱାରା ଆମ ସଂସ୍କୃତିକୁ ମନେ ପକାଇ ଦିଅନ୍ତି । ମହାବିଦ୍ୟାଳୟରେ ତାଙ୍କର କାର୍ଯ୍ୟକାଳ ସୁନ୍ଦର, ସରସ ଓ ପ୍ରଭାବଶାଳୀ । ଅବସର ପରେ ତାଙ୍କର ଅନୁପସ୍ଥିତି ଆମ ପାଇଁ କଷ୍ଟ ଦାୟକ ନିଶ୍ଚୟ । ତଥାପି ତାଙ୍କର ଭବିଷ୍ୟତ ଚଲାପଥ କୁସୁମିତ ହେଉ ଏବଂ ଭଗବାନ ତାଙ୍କୁ ଓ ତାଙ୍କ ପରିବାରକୁ ଦୀର୍ଘଜୀବି କରାନ୍ତୁ ।

**ଡକ୍ଟର ବିବେକାନନ୍ଦ ବେଉରା**

ଅଧ୍ୟକ୍ଷ, ଏରୋନଟିକ୍ସ ମହାବିଦ୍ୟାଳୟ

ବସନ୍ତ ସାର୍ ଜଣେ ନୀତିବାନ୍ ଲୋକ । ସେ ନ୍ୟାୟ ଅନ୍ୟାୟ ଉପରେ ଗୁରୁତ୍ୱ ପ୍ରଦାନ କରି ସର୍ବଦା ନ୍ୟାୟ ସଂଗତ କଥା କୁହନ୍ତି ଓ କାର୍ଯ୍ୟ କରନ୍ତି । ସେ ଜଣେ ସରଳ ଓ ଅକପଟ ବ୍ୟକ୍ତିତ୍ୱ । ପ୍ରତ୍ୟେକ କାର୍ଯ୍ୟକୁ ସେ ନିଷ୍ଠାର ସହ ସମ୍ପାଦନ କରନ୍ତି ।

**ଡକ୍ଟର ଗୋପାଳକୃଷ୍ଣ ମହାନ୍ତି**

ଉପାଧ୍ୟକ୍ଷ, ଏରୋନଟିକ୍ସ ମହାବିଦ୍ୟାଳୟ

ସାହୁ ସାର୍ ଜଣେ ସରଳ ଓ ଶାନ୍ତ ଶିଷ୍ଟ ବ୍ୟକ୍ତି । ସେ ଅଫିସର ସମସ୍ତ ଅଧିକାରୀଙ୍କୁ ଉପଯୁକ୍ତ ବ୍ୟବହାର ପ୍ରଦର୍ଶନ କରିବା ସହ ସମସ୍ତଙ୍କୁ ସାହାଯ୍ୟ ସହାନୁଭୂତି ପୋଷଣ କରନ୍ତି । ସେ ଭାରି ସ୍ୱାଭିମାନୀ ଓ ସଚ୍ଚୋଟ ।

**ବିଦ୍ୟାଧର ନାୟକ**

ବରିଷ୍ଠ ଅଧିକାରୀ, ଏରୋନଟିକ୍ସ ମହାବିଦ୍ୟାଳୟ

ବସନ୍ତ ସାର୍ ଜଣେ ଉଦାର, ଅଳ୍ପଭାଷୀ, ମିଷ୍ଟଭାଷୀ, ନୀତିବାନ, ନିରାଡ଼ମ୍ବର ବ୍ୟକ୍ତି । ସେ ପ୍ରତ୍ୟେକ ପରିସ୍ଥିତିକୁ ଉପଲବ୍ଧି କରି କାର୍ଯ୍ୟପନ୍ଥା ଗ୍ରହଣ କରନ୍ତି । ଆବଶ୍ୟକ କରୁଥିବା ବ୍ୟକ୍ତି ଓ ଅନୁଷ୍ଠାନକୁ ଆବଶ୍ୟକୀୟ ସାହାଯ୍ୟ ସହଯୋଗ ଓ ସହାନୁଭୂତି ପ୍ରଦାନ କରନ୍ତି । ତାଙ୍କର ସମସ୍ତ ଭଲ ଗୁଣ ସତ୍ତ୍ୱେ ଗୋଟିଏ ଖରାପ ଗୁଣ ହେଲା ସେ ହଠାତ୍



Digitized by srujanika@gmail.com

ରାଗି ଯାଆନ୍ତି ଓ ଚିଡ଼୍‌ଚିଡ଼୍ ହୁଅନ୍ତି । ଏହା ଅନ୍ୟାୟ, ଅନୀତି ବା ଅସାଭାବିକ ପରିସ୍ଥିତି ଉପଜିଲେ ସୃଷ୍ଟି ହୁଏ ବୋଲି ମୋର ମତ ।

**ବ୍ରଜ କିଶୋର ରାୟ**
ଲାଇବ୍ରେରୀଆନ୍, ଏରୋନଟିକ୍‌ସ କଲେଜ

ସାହୁ ସାର୍ ଜଣେ ନୀତିବାନ୍ ଲୋକ । ସେ ଉତ୍କଳୀୟ ପରମ୍ପରା, ସଂସ୍କୃତିକୁ ଭଲ ପାଆନ୍ତି । ଗୁରୁତ୍ୱପୂର୍ଣ୍ଣ ଜାତୀୟ ଦିବସ ଓ ଉତ୍କଳୀୟ ପର୍ବପର୍ବାଣି ପୂର୍ବଦିନ ସେ ସମସ୍ତଙ୍କ ପାଖକୁ ଅଭିନନ୍ଦନ ଓ ଶୁଭେଚ୍ଛା ବାର୍ତ୍ତା ମୋବାଇଲ୍ ଦ୍ୱାରା ଜଣାନ୍ତି । ତାଙ୍କ ଠାରୁ ମୁଁ ବହୁତ ସାହାଯ୍ୟ ସହାନୁଭୂତି ପାଇଛି ଓ ତାଙ୍କର ଆବଶ୍ୟକ ସମୟରେ ମୁଁ ସାହାଯ୍ୟ କରିଛି । ତାଙ୍କର ଭଲ ପାଇବାକୁ ମୁଁ ଭୁଲି ପାରିବି ନାହିଁ । ତାଙ୍କ ଠାରେ ମୁଁ କୃତଜ୍ଞ ।

**ଚନ୍ଦ୍ରଶେଖର ରଣା**
ବରିଷ୍ଠ କିରାଣୀ, ଏରୋନଟିକ୍‌ସ କଲେଜ

**ଉପସ୍ଥାପନା : ବ୍ରଜ କିଶୋର ରାୟ**

# ମୋ ଭାବନାରେ ବସନ୍ତ ସାର୍

**ନୀଳକଣ୍ଠ ଡଲିଆ**

ଡକ୍ଟର ବସନ୍ତ କିଶୋର ସାହୁ ବୃତ୍ତିରେ ଅଧ୍ୟାପକ ଓ କୃତିରେ ଜଣେ ସୁସାହିତ୍ୟିକ ଓ ସାହିତ୍ୟପ୍ରାଣ ବ୍ୟକ୍ତି । ଏ ଅଞ୍ଚଳରେ ସାହିତ୍ୟର ଉନ୍ନତି ଓ ସମୃଦ୍ଧି ପାଇଁ ସେ ସର୍ବଦା କାର୍ଯ୍ୟ କରି ଆସିଛନ୍ତି । ତାଙ୍କର ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଭୁଲିବାର ନୁହେଁ । ଜଣେ ଅଧ୍ୟାପକ ଓ ଜ୍ଞାନୀ ବ୍ୟକ୍ତି ହୋଇଥିଲେ ମଧ୍ୟ ତାଙ୍କ ମନରେ ଗର୍ବ କି ଅହଙ୍କାର କିଛି ନାହିଁ । ସମାଜର ସବୁ ବର୍ଗର ଲୋକଙ୍କୁ ସେ ଉତ୍ତମ ବ୍ୟବହାର କରନ୍ତି । ସୃଜନଶୀଳ ପ୍ରତିଭାର ବିକାଶ ପାଇଁ ସର୍ବଦା ଚେଷ୍ଟା କରନ୍ତି । ମୋର 'ଆଦିଭୂମି କୋରାପୁଟ' ପୁସ୍ତକକୁ ସଂଶୋଧନ କରି ପ୍ରକାଶ କରିବାରେ ତାଙ୍କ ଭୂମିକାକୁ ମୁଁ ଅସ୍ୱୀକାର କରିପାରିବି ନାହିଁ । ମୋର ଅନ୍ୟତମ ପୁସ୍ତକ 'ବାଲ୍ମୀକି ଭାଷାରେ ସଂସ୍କୃତର ପ୍ରଭାବ' ପୁସ୍ତକ ଲେଖିବା ପାଇଁ ସେ ମୋତେ ଉତ୍ସାହିତ କରିଛନ୍ତି । ତାଙ୍କ ପରି ଜଣେ ବହୁମୁଖୀ ପ୍ରତିଭା ଚାକିରି ଜୀବନରୁ ଅବସର ଗ୍ରହଣ କରି ଏ ଅଞ୍ଚଳ ପରିତ୍ୟାଗ କରିବା ଖବରରେ ଆମେ ସମସ୍ତେ ମର୍ମାହତ ଓ ଦୁଃଖୀତ । ତାଙ୍କ ଅବସର ଜୀବନ ସୁଖକର ଓ ମଙ୍ଗଳମୟ ହେଉ । ଏହାହିଁ କାମନା ।





Digitized by srujanika@gmail.com

# ସୃଜନଶୀଳତାର ନୂତନ ପରିଭାଷା-ବସନ୍ତ ସାର୍

**କୁନା ସୁନା ଓ**
**ଟୁନା ସୁନା**

ଆମ ଦୃଷ୍ଟିରେ ସୃଜନଶୀଳତାର ନୂତନ ପରିଭାଷା ହେଉଛନ୍ତି ଆମ ସାର୍- ବସନ୍ତ ସାର୍ । ତାଙ୍କ ପାଖରେ ଦୀର୍ଘ ପାଞ୍ଚ ବର୍ଷ ଆମେ ପାଠ ପଢ଼ିଛୁ । ସାର୍ ସୃଜନଶୀଳତା ସମ୍ପର୍କରେ ସବୁବେଳେ କ୍ଲାସ୍‌ରେ କୁହନ୍ତି । କିନ୍ତୁ, ନିଜ ସୃଜନଶୀଳତା ସମ୍ପର୍କରେ ଟିକିଏ ବି ଆଭାସ ଦିଅନ୍ତି ନାହିଁ । ଅନ୍ୟମାନଙ୍କ ପରି ବାହାସ୍ଫୋଟ ମାରନ୍ତି ନାହିଁ । ସେ ଅନେକ ପୁସ୍ତକ ରଚନା କରିଛନ୍ତି, ଅନେକ ପତ୍ରପତ୍ରିକା ସମ୍ପାଦନା କରିଛନ୍ତି ଓ ଅନେକ ପୁରସ୍କାର ମଧ୍ୟ ପାଇଛନ୍ତି-କିନ୍ତୁ କେବେବି ଶ୍ରେଣୀ କକ୍ଷରେ ବା ବାହାରେ ନିଜ ବିଷୟରେ କହିବାର ଆମେ ଶୁଣିନାହୁଁ । ଏହାହିଁ ସାର୍‌ଙ୍କର ସ୍ୱତନ୍ତ୍ରତା । ଆତ୍ମବଡ଼ିମା ଓ ଆତ୍ମପ୍ରଶଂସା ଠାରୁ ଦୂରରେ ରହି ସେ ସାଧନା କରନ୍ତି । ସାଧନା କରିବା ପାଇଁ ଆମମାନଙ୍କୁ ଉତ୍ସାହିତ କରନ୍ତି । ସାର୍‌ଙ୍କ ହାତରେ ସବୁବେଳେ କିଛି ନା କିଛି ବହି ବା ପତ୍ରପତ୍ରିକା ଥାଏ । କ୍ଲାସ ନଥିବା ସମୟରେ ସାର୍ ଲାଇବ୍ରେରୀରେ ବସି ପଢ଼ାପଢ଼ି କରନ୍ତି । ଅନ୍ୟମାନଙ୍କ ପରି ବାଜେ କଥା ଗପି ସମୟ ବିତାନ୍ତି ନାହିଁ । ସିଏ ଯେତେ ପଢ଼ନ୍ତି ଆମ ଜାଣିବାରେ ଆଉ କେଉଁ ସାର୍ ପଢ଼ନ୍ତି ନାହିଁ । ସବୁବେଳେ ଆମକୁ ପତ୍ରପତ୍ରିକା ପଢ଼ିବାକୁ ଉତ୍ସାହିତ କରନ୍ତି ।

ସାର୍ ଆମକୁ ଓଡ଼ିଆ ସାହିତ୍ୟର ଇତିହାସ, ପଢ଼ାଉଥିଲେ । ସେ ସବୁ ତାଙ୍କ ମୁହଁରେ ରହିଛି । ପ୍ରାଞ୍ଜଳ ଭାବରେ ସେ ସବୁ ବିଷୟ ବୁଝାଇ ପାରନ୍ତି । ଯାହା ଆମର ସନ୍ଦେହ ଦୂର କରେ ଓ ମନେ ରହିଯାଏ । ପ୍ଲସ ଟୁରେ ସାର୍ ଆମକୁ କବିତା ପଢ଼ାଉଥିଲେ । ପଢ଼ା ସମୟରେ ସାର୍ ମଗ୍ନ ରୁହନ୍ତି । ପାଠ ଓ ଉଦାହରଣ ଭିତରେ ନିଜକୁ ଭୁଲି ଗଲା ପରି ଲାଗନ୍ତି । ସେଇଥିରୁ ସାର୍‌ଙ୍କ ବାଗ୍ମିତା ଜଣାପଡେ ।

ସାର୍‌ଙ୍କ ପାଖରେ ପାଞ୍ଚବର୍ଷ ପଢ଼ି ମଧ୍ୟ ତାଙ୍କ ସୃଜନଶୀଳତା ବିଷୟରେ ଆମେ ଦୁଇ ଭାଇ କାଣିଚାଏ ଜାଣି ପାରିଲୁ ନାହିଁ । ଜାଣିଥିଲେ ତାଙ୍କ ଠାରୁ ଅନେକ କଥା ଶିଖିଥାନ୍ତୁ । ସାର୍‌ଙ୍କ ସମ୍ପର୍କରେ ଜାଣିଲୁ ସେଣ୍ଟ୍ରାଲ୍ ୟୁନିଭରସିଟିରେ ଆଡମିଶନ ନେବା ପରେ । ସେଇଠୁ ସାର୍‌ଙ୍କ କୃତି ଓ କୃତିତ୍ୱ ସହିତ ପରିଚିତ ହେଲୁ । ପ୍ରଥମ ଦିନ କ୍ଲାସରେ ଆମେ ଏରୋନଟିକ୍ସ କଲେଜରୁ ଆସିଛୁ ବୋଲି କହିଲା ପରେ ସେଠି ସାର୍ ଓ ମାଡାମ୍ ବସନ୍ତ ସାର୍‌ଙ୍କ ବିଷୟରେ କହିଲେ । ତା' ପରେ ଆମ ଜିଜ୍ଞାସା ବଢ଼ିଲା ।



Digitized by srujanika@gmail.com

ଆମେ ଯାଇଁ ସାର୍‌ଙ୍କ ସହିତ ମିଶିଲୁ ଓ ସାର୍‌ଙ୍କ ସମ୍ପର୍କରେ ଅଧିକ ଜାଣିଲୁ । ସାର୍ ଯେ ଏତେ ବହି ଲେଖିଛନ୍ତି ସେ କଥା ଆମେ ତାଙ୍କ ସହିତ ତାଙ୍କ ଘରେ ମିଶିଲା ପରେ ଜାଣିଲୁ ।

ଓଡ଼ିଆ ଭାଷା ସାହିତ୍ୟର ଛାତ୍ର ହିସାବରେ କୋରାପୁଟର ସାହିତ୍ୟିକଙ୍କୁ ଆମେ ଯେତେବେଳେ ଅଧିକରୁ ଅଧିକ ଜାଣିବାକୁ ଚେଷ୍ଟାକଲୁ, ସେତେବେଳେ ସାର୍‌ଙ୍କ ପ୍ରତିଭା ସହିତ ପରିଚିତ ହେଲୁ । ସମସ୍ତଙ୍କ ଠାରୁ ସାର୍‌ଙ୍କ ବିଷୟରେ ଜାଣିଲୁ । ସାର୍‌ଙ୍କ ପ୍ରତିଭା ଯେ କୋରାପୁଟରେ ସୀମିତ ନହୋଇ ସମଗ୍ର ରାଜ୍ୟରେ ବିକଶିତ ଏହା ଜାଣି ଆମେ ଖୁସି ହେବା ସହିତ ଗର୍ବ ଅନୁଭବ କଲୁ ।

ସାର୍ ସୁନାବେଡ଼ା ଆସିବା ପୂର୍ବରୁ ଏଠାରେ ସାହିତ୍ୟଚର୍ଚ୍ଚା ପାଇଁ ଉପଯୁକ୍ତ ମଞ୍ଚ ନଥିଲା । ସାର୍‌ଙ୍କ ଉଦ୍ୟମ ଓ ଚେଷ୍ଟାରେ ଏଠାରେ ଏକ ମଞ୍ଚ ପ୍ରସ୍ତୁତ ହୋଇଛି । ବଣମଲ୍ଲୀ ପରି ଝାଉଁଳି ପଡୁଥିବା ପ୍ରତିଭାମାନେ ସେହି ମଞ୍ଚ ମାଧ୍ୟମରେ ନିଜ ସୃଜନଶୀଳତାକୁ ବିକଶିତ କରି ଆଜି ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସାର୍ ଜଣେ ବିଶିଷ୍ଟ ଶିଶୁ ସାହିତ୍ୟିକ । ଶିଶୁମାନଙ୍କ ମନୋରଞ୍ଜନ ପାଇଁ ସେ ଅନେକ ପୁସ୍ତକ ରଚନା କରିଛନ୍ତି ।

ପାଞ୍ଚବର୍ଷ ଆମେ ସାର୍‌ଙ୍କ ସଂସ୍ପର୍ଶରେ ଆସି ତାଙ୍କ ବ୍ୟକ୍ତିତ୍ୱ ସହିତ ଭଲ ଭାବରେ ପରିଚିତ ହୋଇଛୁ । ଅତି ନିକଟରୁ ଆମେ ତାଙ୍କୁ ଓ ତାଙ୍କ ବ୍ୟକ୍ତିତ୍ୱକୁ ଦେଖିଛୁ । ସେ ଯେତେ ପ୍ରତିଭାବାନ ସାହିତ୍ୟିକ ସେତିକି ମଧ୍ୟ ପ୍ରଭାବଶାଳୀ ଛାତ୍ରବତ୍ସଳ ଅଧ୍ୟାପକ ତଥା ସମ୍ବେଦନଶୀଳ ଦରଦୀ ବ୍ୟକ୍ତିତ୍ୱ । ଆମ ଜାଣିବାରେ ସେ ସମସ୍ତ ଦାୟିତ୍ୱକୁ ସଫଳତାର ସହିତ ତୁଲାଇବାରେ ଦକ୍ଷ । ଓଡ଼ିଆ ସାହିତ୍ୟ ସଂସଦର ଉତ୍ସବ ହେଉ କି ସ୍ୱାଗତ ସମ୍ବର୍ଦ୍ଧନା, ବିଦାୟ ସମ୍ବର୍ଦ୍ଧନା ହେଉ କି ବାର୍ଷିକ ପିକ୍‌ନିକ ସାର ସବୁବେଳେ ଆମକୁ ଦିଗ୍‌ଦର୍ଶନ ଓ ପରାମର୍ଶ ଦେଇ ସଫଳ କରାଇଛନ୍ତି । ସାର୍ ଅତି ସରଳ, ଗମ୍ଭୀର ଓ ଶାନ୍ତ ସ୍ୱଭାବର ବ୍ୟକ୍ତି । ଅଳ୍ପ ହସନ୍ତି । କିନ୍ତୁ, ଯେତେବେଳେ ହସନ୍ତି ମନଖୋଲି ହସନ୍ତି । ଅନ୍ୟକୁ ସହାୟତା ପ୍ରଦାନ କରିବା ପାଇଁ ସେ ସର୍ବଦା ପ୍ରସ୍ତୁତ ଥାଆନ୍ତି । ଶୁଣାଯାଏ 'ନମ୍ରତେ ଫଳିନ ବୃକ୍ଷ, ନମ୍ରତେ ଗୁଣିନ ଜନା' । ଅର୍ଥାତ୍ ଜ୍ଞାନୀଲୋକ ଯେତେ ଉଚ୍ଚ ସ୍ଥାନରେ ରହିଲେ ମଧ୍ୟ ସେ ସରଳ,ଶାନ୍ତ ଓ ଦୟାଳୁ ହୋଇଥାଏ । ଏହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ବସନ୍ତ ସାର୍ ।

ଛାତ୍ର ହିସାବରେ ଆମେ ତାଙ୍କ ପ୍ରତିଭାର ଗୁଣଗାନ କରି କେବଳ ଏତିକି କହିବୁ ସାର୍‌ଙ୍କ ପରି ଗୁରୁ ଓ ମଣିଷ ସବୁବେଳେ ଆମକୁ ମିଳୁଥାନ୍ତୁ । ସାର୍‌ଙ୍କ ଅବସର ଜୀବନ ସୁଖଶାନ୍ତିରେ ଅତିବାହିତ ହେଉ ।



ଏମ୍.ଏ. ଛାତ୍ର
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, କୋରାପୁଟ



Digitized by srujanika@gmail.com

# ଜଣେ ଆଦର୍ଶ ମଣିଷ

## ଲିଙ୍ଗରାଜ ପ୍ରଧାନ

ସେ ଜଣେ ଆଦର୍ଶ ମଣିଷ ଓ ଗୁରୁ । କଥାବାର୍ତ୍ତାରେ, ପାଠ ପଢ଼ାରେ, ନୀତି ଓ ଆଦର୍ଶରେ-କଲେଜରେ ସମସ୍ତଙ୍କ ଠାରୁ ନିଆରା ବ୍ୟକ୍ତିତ୍ୱ-ଚୁପ୍‌ଚାପ୍, ପଠନପିପାସୁ ଓ ଆତ୍ମବିଭୋର । ସ୍ମିତ ହସ ଓ ସରଳ ବ୍ୟବହାର । ବାହାରକୁ କଡ଼ା କିନ୍ତୁ ଭିତର ନରମ । ଅନ୍ୟମାନଙ୍କ ପରି ପାଟିତୁଣ୍ଡ ହୋ ହାଲ୍ଲା ନାହିଁ । ତାଙ୍କ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାହ୍ୟ ରୂପ ଦେଖି ତାଙ୍କ ଠାରୁ ଦୂରେଇ ଗଲେ ଶୂନ୍ୟତା ମିଳେ । ତାଙ୍କ ସହିତ ମିଶିଲେ ହିଁ ତାଙ୍କ ପ୍ରତିଭାର ସ୍ୱାଦୁ ଚାଖିବାକୁ ହୁଏ । ଯାହା ମଧୁର ଓ ଅନନ୍ୟ । ଏମିତି ପାଇଛନ୍ତି ଅନେକ ଛାତ୍ର-ଛାତ୍ରୀ, ସାହିତ୍ୟିକ ଓ କବି । ଏଠି ଯାହାଙ୍କ କଥା କୁହାଯାଉଛି ସେ ହେଉଛନ୍ତି ଆମର ପ୍ରିୟ ସାର୍ ଡକ୍ଟର ବସନ୍ତ କିଶୋର ସାହୁ । କଲେଜ ପିଲାଙ୍କ ଠାରୁ ବାହାର ଲୋକ ତାଙ୍କୁ ବେଶୀ ଜାଣନ୍ତି । ସେ ବୃତ୍ତିରେ ଅଧ୍ୟାପକ ହେଲେ ମଧ୍ୟ କୃତିରେ ସାହିତ୍ୟିକ । ସେ ୩୨ ଖଣ୍ଡ ପୁସ୍ତକ ଲେଖିଥିଲେ ମଧ୍ୟ ମନରେ ଗର୍ବ କି ଅହଙ୍କାର କିଛି ନାହିଁ ।

ପଢ଼ାଇଲା ବେଳେ ଏପରି ବାଛିବାଛି ଉଦାହରଣ ଓ ଗପ କୁହନ୍ତି ଯାହା ବିଷୟ ସହିତ ସମାନ୍ତରାଳ ଭାବରେ ଗତି କରୁଥାଏ । ଗପ ଓ ଉଦାହରଣ ସରିଲା ଭିତରେ ପାଠ୍ୟାଂଶ ସରିଯାଏ । ସାର୍ ସର୍ବଦା ନୀତି ଓ ଆଦର୍ଶର କଥା ଯେମିତି କୁହନ୍ତି ସେମିତି ତାକୁ କାମରେ କରି ଦେଖାନ୍ତି । ସାର୍‌ଙ୍କ ପଢ଼ାଇବା ଶୈଳୀ ଅନ୍ୟଠୁ ନିଆରା । ଶାସନ କରନ୍ତି, କିନ୍ତୁ ସେ ଶାସନ ଛାତ୍ରମାନଙ୍କ ମଙ୍ଗଳ ପାଇଁ ଉଦ୍ଦିଷ୍ଟ । ଛାତ୍ରଙ୍କ ମନରୁ ପାଠ ଓ ପରୀକ୍ଷା ଭୟ ଦୂର କରିବାକୁ ବାରମ୍ବାର ପରୀକ୍ଷା କରନ୍ତି । ସେଥିପାଇଁ ଆମ ବ୍ୟାଚ ପିଲାମାନେ ସେ ବର୍ଷ ଶତ ପ୍ରତିଶତ ସଫଳ ହୋଇଥିଲୁ । ସାର୍‌ଙ୍କ ସହିତ ଆମେ ଦେଓମାଳି ଓ କୋଲାବ ପିକ୍‌ନିକ୍‌ର ଯାଇଛୁ । ସବୁଠି ସାର୍ ଦାୟିତ୍ୱ ନେଇ ଆମ ବୋଝ ହାଲ୍‌କା କରିଦିଅନ୍ତି । ପିଲାଙ୍କ ସୃଜନଶୀଳତା ବୃଦ୍ଧି ପାଇଁ ସର୍ବଦା ପ୍ରୟାସ କରନ୍ତି । ସାର୍‌ଙ୍କ ଦ୍ୱାରା ମୁଁ ଅନେକ ପ୍ରଭାବିତ । ଯାହା ପ୍ରକାଶ କରିବା ସମ୍ଭବ ନୁହେଁ । ତାଙ୍କ ପ୍ରେରଣା ଓ ଆଶୀର୍ବାଦ ମୋ ଚଲାପଥକୁ ପୁଷ୍କଳ କରୁ । ଏତିକି ମୁଁ ସାର୍‌ଙ୍କ ଠାରୁ ଆଶା କରେ ।



ସମାଜ ଶାସ୍ତ୍ର ଛାତ୍ର, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, କୋରାପୁଟ



Digitized by srujanika@gmail.com

# କିଛି ସ୍ମୃତି : କିଛି କଥା

**ସଦାନନ୍ଦ ସାହୁ**

'ସଦା ବସନ୍ତ'ଏକ ଫୁଲର ନାମ । କିନ୍ତୁ ସାଙ୍ଗସାଥୀ ଓ ଗାଁ ଲୋକେ ଆମକୁ ଏହି ନାଆଁରେ ଡାକୁଥିଲେ । ଆମ ଦୁହିଁଙ୍କର ଯୋଡ଼ି ଖୁବ୍ ଜମୁଥିଲା । ଖାଇବା-ପିଇବା, ନାଚିବା-ଖେଳିବା, ଟିଉସନ-ସ୍କୁଲ୍ ସବୁ କାମ ଏକାଠି । ସିଏ କେତେବେଳେ ଆମ ଘରେ ତ, ମୁଁ କେତେବେଳେ ତାଙ୍କ ଘରେ । ପାରିବାରିକ ବନ୍ଧୁତା ବି କିଛି ଥିଲା । ତା ବୁଢ଼ୀମା ଓ ମୋ ବୁଢ଼ୀମା ଦୁଇ ଭଉଣୀ । ସେହି ସୂତ୍ରରେ ବନ୍ଧୁ-ବାନ୍ଧବ ସମ୍ପର୍କ ।

ମୋ ନାଁ ଆଗ କୁହାଯାଉଥିବାରୁ ତା ମନରେ ଦୁଃଖ । କହୁଥିଲା 'ତୋ ନାଁ କାହିଁକି ଆଗ କୁହାଯିବ ? ରହିଥା ଲୋକେ ମୋ ନାଁ ଆଗ କହିବେ । ତା କଥା ଆଜି ସତ । ସେ ଆଜି ମୋ ଠାରୁ ବହୁ ଆଗରେ । ପାଠ, ଚାକିରି ଓ ସାହିତ୍ୟ ସବୁଥିରେ । କେବଳ ମୋ ଠାରୁ ନୁହେଁ ଆମ ସାଙ୍ଗସାଥୀଙ୍କ ଠାରୁ ମଧ୍ୟ । ଓଡ଼ିଆ ସାହିତ୍ୟରେ ସେ ଆଜି ଏକ ସ୍ମରଣୀୟ ନାମ । ଜଣେ ଶିଶୁ ସାହିତ୍ୟିକ, ସଂପାଦକ, ସଂଗଠକ ଭାବେ ସାରା ଓଡ଼ିଶାରେ ତା ନାଆଁ ।

ତା ପାଇଁ ଆମେ ଗର୍ବିତ । ସିଏ ଥିଲା ବାପାମାଆଙ୍କର ଗୋଟିଏ ପୁଅ । ବହୁତ ଗେଲବସରରେ ବଢ଼ିଥିଲା । ପିଲାବେଳୁ ସେ ସାଧୀନଚେତା ଓ ସ୍ପଷ୍ଟବାଦୀ । ସମସ୍ତଙ୍କ ଠାରୁ ଅଲଗା ଥିଲା ତା ଚିନ୍ତାଧାରା । ସବୁବେଳେ ନୂଆ ଚିନ୍ତା ତା ମୁଣ୍ଡକୁ ଆସେ । ଭଲମନ୍ଦ ବିଚାର କରି କାମ କରେ । କେବେ ସଫଳ ହୁଏତ କେବେ ବିଫଳ ।

ଦୁଷ୍ଟ ପିଲାଙ୍କ ସହିତ ମିଶୁ ନଥିଲା । କିନ୍ତୁ ସେ ବି କମ୍ ଦୁଷ୍ଟ ନଥିଲା । ସୃଜନଶୀଳତାରେ ଥିଲା ତାର ଦୁଷ୍ଟାମି । କଣ୍ଢେଇ ନାଚ, ଯାତ୍ରା-ଡ୍ରାମା-ବିମାନ କରିବା, ଲାଇବ୍ରେରୀ କରିବା, ମୀନା ମଣ୍ଡଳୀ ଓ ଶିଶୁ ଶ୍ରୋତାମଣ୍ଡଳୀ ଗଠନ ମାଧ୍ୟମରେ ପିଲାଙ୍କୁ ଏକଜୁଟ କରି ଖବରକାଗଜ ଓ ରେଡ଼ିଓରେ ନାଁ ପ୍ରଚାର କରିବା ଆଦି ଅନେକ କାମ କରୁଥିଲା । କ୍ୟାରମ, ତାସ୍, ଭଲିବଲ ଖେଳୁଥିଲା । ଅନେକ କାମରେ ଏକା ସଙ୍ଗରେ ସେ ହାତ ଦେଉଥିଲା । ପିଲାବେଳର ସେହି ଗୁଣ ଆଜି ତାକୁ ଅନ୍ୟମାନଙ୍କ ଠାରୁ ସତନ୍ତ କରିଛି । ତା ସତନ୍ତତାର ବାସ୍ନା ଆଜି କୁସୁପୁର-ସୁନାବେଢ଼ା ଭିତରେ ସୀମିତ ନରହି ସମଗ୍ର ଓଡ଼ିଶାକୁ ବ୍ୟାପୀ ଯାଇଛି ।

ତାକୁ ଆକଟ କରିବାକୁ ଘରେ କେହି ନଥିଲେ । ତା ବାପା ବାହାରେ



Digitized by srujanika@gmail.com

ରହୁଥିଲେ । ଆମେ ଆଠ ଦଶ ଜଣ ସାଙ୍ଗ ତାଙ୍କ ଘରେ ଏକାଠି ହେଉଥିଲୁ । ଖେଳାଖେଳି କରୁଥିଲୁ । ପାଠର ହୋମ ଓ୍ୱାର୍କ ବି କରୁଥିଲୁ । ପଢ଼ାରେ ସେ ଆଗୁଆ ନଥିଲେ ମଧ ପଛୁଆ ନଥିଲା । ତା'ଖାତା ନେଇ ସାଙ୍ଗମାନେ ଉତାରନ୍ତି । ସ୍କୁଲ୍-ଟିଉସନ ଯିବାକୁ ଡାକି ଆସନ୍ତି । ବିନା ଦ୍ୱିଧାରେ ସେ ତା ହୋମ୍‌ଓ୍ୱାର୍କ ଖାତା ଅନ୍ୟମାନଙ୍କୁ ଦେଇଦିଏ । ସ୍କୁଲ୍ ଛୁଟି ପରେ ଘରେ ବ୍ୟାଗ୍ ରଖି ଆମେ ବିରୂପା ନଈ କୂଳକୁ ଯାଉ । ସେଠି କବାଡି ବୋହୁଚୋରି ଖେଳୁ, ନଈ ବାଲିରୁ କଇଁଛ ଅଣ୍ଡା ଖୋଳୁ । ବର୍ଷାଦିନେ ନଈବଢ଼ି ଦୃଶ୍ୟ ଓ ମାଛଧରା ଦେଖୁ । ଭରା ନଈରେ ଖପରା କାଟି ମାରି କେତେ ଖାଇଛୁ ପରୀକ୍ଷା କରୁ । ସକାଳ ଗାଧୁଆ ବି ବହୁତ ଜମେ । ଶୀତ ଓ ଖରା ଦିନେ ନଈରେ ପହଁରୁ । ଦିନେ ଦିନେ ମାଡ ଭୟରେ କ୍ଲାସ ନକରି (କଣ୍ଟେଇ, ଖଜୁରୀ ବା ଜାମୁକୋଳି)କୋଳି ଖାଇବାକୁ ପଳାଉ । ସିଏ ସବୁଥିରେ ଥାଏ ନାୟକ । ତା'ର କାର୍ଯ୍ୟକଳାପ ଦେଖି ସମସ୍ତେ କହୁଥିଲେ ଜୀବନରେ ଏ ପିଲା କିଛି କରିପାରିବନି । ବାପାମାଆଙ୍କର ନାଆଁ ପକାଇବ । ଆଜି ସେ କଥା ଭୁଲ୍ ପ୍ରମାଣିତ ହୋଇଛି ।

ଥରେ ସେ ବିମାନ କରିବାକୁ କହିଲା । ସମସ୍ତେ ତା ପ୍ରସ୍ତାବରେ ରାଜି ହେଲେ । ଆମ ବାଡ଼ିରୁ ବାଉଁଶ କଟା ଯାଇ ବିମାନ ତିଆରି ହେଲା । କପଡା ବଦଳରେ ଖବର କାଗଜ ଓ ପଞ୍ଚରଙ୍ଗୀ ମଡାଗଲା । ମୂର୍ତ୍ତି ବଦଳରେ ରାଧାକୃଷ୍ଣ ଫଟୋ ରଖାଗଲା । ସନ୍ଧ୍ୟାରେ ଲଣ୍ଠନ ଆଲୁଅରେ ଘଣ୍ଟ ବାଡେଇ ଚାଚେରି କରାଗଲା । ଲୋକେ ଖୁସିରେ ଭୋଗ-ବିଦାକି ଦେଲେ । ଖୁସି ଲାଗିଲା । ପର ବର୍ଷ ଆମ ସହିତ ଅନ୍ୟ ପିଲା ଆଉ ୨/ ୩ଟି ବିମାନ କଲେ । ଏଥିରେ ସଂସ୍କୃତି ପ୍ରେମୀ ସର୍ଗତ ମକର ସାହୁ ଆମକୁ ଉତ୍ସାହିତ କଲେ । ଆମ ବିମାନ ଗାଁ ବିମାନ ସହିତ ବିଭିନ୍ନ ମେଲଣକୁ ଗଲା । ପିଲାଙ୍କ ବିମାନର ମେଲଣ ଗାଁର ପୂର୍ବତନ ଜମିଦାର ହୃଦାନନ୍ଦ ସାହୁ କରି ଆମକୁ ଉତ୍ସାହିତ କଲେ । ପ୍ରସ୍ତୁତି ଓ ପ୍ରସେସନରେ ଆମ ବିମାନ ପ୍ରଥମ ହେଲା । ଦୁଇଟଙ୍କା ବିଦାକି ମିଳିଲା । ସେତେବେଳେ ଦୁଇଟଙ୍କାର ମୂଲ୍ୟ ବହୁତ । ଆମେ ବହୁତ ଖୁସି ହେଲୁ । ଏହି ପରମ୍ପରା ଏବେ ମଧ ଗାଁରେ ଅଛି ।

କଣ୍ଢେଇ ନାଚ ଦେଖି ସିଏ କଣ୍ଢେଇ ନାଚ କରିବାକୁ କହିଲା । ସାଙ୍ଗମାନଙ୍କ ଘରୁ ପୁରୁଣା କଣ୍ଢେଇ ମଗା ହୋଇ ଆସିଲା । ନୂଆ କଣ୍ଢେଇ କିଣା ହେଲା । କଣ୍ଢେଇମାନଙ୍କ ମୁଣ୍ଡ ଓ ହାତରେ ସୂତା ବାନ୍ଧି ନଚାଗଲା । ଗାଁ ପିଲା ଓ ଲୋକ ଉତ୍ସାହିତ ହୋଇ ଟିକେଟ କିଣି ନାଚ ଦେଖିଲେ । ବାଉଁଶ ଖଣ୍ଡା ଓ ଗଦା ଧରି ଯାତ୍ରା କରି ବିଫଳ ହେଲୁ । ସେ ସବୁ ଆଜି ସ୍ମୃତି ।

ପିଲାବେଳୁ ସେ କଳାପ୍ରିୟ । ସିନେମା ଦେଖିବାରେ ତାର ରୁଚି ।୧୯୭୦-୭୧ ମସିହା ବେଳକୁ କଂଗ୍ରେସ ନେତା ମତଲୁବ୍ ଅଲ୍ଲୀ ବାଲିଚନ୍ଦ୍ରପୁର ସ୍କୁଲ ପଡିଆରେ ସିନେମା ହଲ୍ କରିଥିଲେ । ମାଟି କାନ୍ଥ ଓ ଟାଳ ଛପର ଘର । ଆମେ ଦୁହେଁ (ତା ପିଉସୀ ପୁଅ ଭାଇ ଧ୍ରୁବାନନ୍ଦ ସାହୁଙ୍କ ମାଧ୍ୟମରେ) ବହୁତ ଥର ସେଠି ସିନେମା ଦେଖିଛୁ ।



Digitized by srujanika@gmail.com

ସେହି ସିନେମା ମଧ୍ୟରେ ଅପଲମ୍ ଚପଲମ୍, ଲମ୍ବେ ହାତ, ଶ୍ରୀଲୋକନାଥ, କିଏ କାହାର, ଅମଡ଼ା ବାଟ, ଭାଗ୍ୟ ଓ ଦୋସ୍ତି ଆଦି ପ୍ରଧାନ । ଗାଁରେ ବର୍ଷକୁ ତିନି ଚାରି ଥର ତିନି ଦିନ ଲେଖାଏ ଯାତ୍ରା ହୁଏ । ବଡ଼ ବଡ଼ ଯାତ୍ରାପାର୍ଟି ଆସି ନାଚ କରନ୍ତି । ସବା ଆଗରେ ବସି ଯାତ୍ରା ଦେଖୁ । କାର୍ତ୍ତିକ ପୂର୍ଣ୍ଣିମାରେ ପୂଜା ପଡିଆରେ ବାଦି ପାଲା ଦେଖୁ ।

ପିଲାବେଳୁ ସେ ଭ୍ରମଣ ପ୍ରିୟ । ବୁଲିବା ଓ ବିଭିନ୍ନ ସ୍ଥାନ ଦେଖିବାରେ ତା'ର ଆଗ୍ରହ । ଆଖପାଖରେ ହେଉଥିବା ଓଳାଶୁଣି ଯାତ୍ରା, କପିଳେଶ୍ୱର ଯଜ୍ଞ ଓ ଦେବୀ ଦେଖିବାକୁ ତା ସହିତ ଆମେ ଚାଲିଚାଲି ବା ସାଇକେଲ୍‌ରେ ଯାଉ । ବରା ତରକାରୀ ଖାଇ ମଜା କରି ଫେରୁ । ପ୍ରତିବର୍ଷ ନୂଆବର୍ଷରେ ଚଣ୍ଡିଖୋଲ, ମହାବିନାୟକ, ରତ୍ନଗିରି, ଓଳାଶୁଣି ଆଦି ସ୍ଥାନରେ ବଣଭୋଜି କରୁ । ମଝିରେ କେତେବେଳେ କେମିତି ତାଙ୍କ ଘରେ ଭୋଜି ହୁଏ । ମାନସିଂହଙ୍କ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତା ପଢ଼ି ତା'ର ଇଚ୍ଛା ହେଲା ଜହ୍ନ ରାତିରେ ମଝି ନଈରେ ଡଙ୍ଗାରେ ଭୋଜି କରିବାକୁ । ଆମେ ରାଜି ହେଲୁ । ସେତେବେଳେ ବିରୂପା ଥିଲା ଚିରସ୍ରୋତା । ବଡ଼ବଡ଼ ଡଙ୍ଗା କୂଳରେ ବନ୍ଧା ହେଉଥିଲା । ଡଙ୍ଗା ଥିବା ଜଣେ ପିଲାକୁ ସାଙ୍ଗ କଲୁ । ଭୋଜି ପାଇଁ ଜିନିଷ କିଣାକିଣି କରି ଡଙ୍ଗାରେ ରଖିଲୁ । ସନ୍ଧ୍ୟା ପୂର୍ବରୁ ଡଙ୍ଗା ନେଇ ମଝି ନଈକୁ ଗଲୁ । ଆମ ଭିତରୁ ଦୁଇ ଜଣ (ବିଷ୍ଣୁ ଓ ରସାନନ୍ଦ) ରୋଷେଇ କରିବେ ବୋଲି କହିଲେ । ଅଧା ରୋଷେଇ ହୋଇଛି ଜାଳ ସରିଗଲା । କ'ଣ କରାଯିବ ? ମୁଣ୍ଡରେ ଚିନ୍ତା ପଶିଲା ବେଳକୁ ଆଉ ଉପାୟ ନଥିଲା । ରାତି ଅଧକୁ ଭାତ, ଦରସିଝା ଡାଲି ଓ ପାଣିଆ ବେସନ ତରକାରୀ ଖାଇ ଘରକୁ ଫେରିବା ଏବେବି ସ୍ମୃତି ହୋଇ ରହିଛି ।

ମୁଁ ଭଲି ଖେଳୁଥିଲି । ବସନ୍ତ ମୋତେ ଉତ୍ସାହିତ କରୁଥିଲା । ତା ପ୍ରେରଣାରେ ମୁଁ ଭଲ ଖେଳିଲି । ସେହି ଖେଳ ମୋତେ ଚାକିରି ପାଇବାରେ ସହାୟକ ହେଲା । ଅଷ୍ଟମ ଶ୍ରେଣୀ ବେଳକୁ ଆମେ ଦୁହେଁ ଗାଁ 'ପଲ୍ଲୀଜ୍ୟୋତି ପାଠାଗାର'ର ଦାୟିତ୍ୱ ନେଇଥିଲୁ । ସେହି ସମୟରେ ବସନ୍ତ ପାଠାଗାରର ସମସ୍ତ ବହି ପଢ଼ିଦେଇଥିଲା । ନବମ ଦଶମ ବେଳକୁ ତା' ଠାରେ କବି ହେବାର ଲକ୍ଷଣ ଦେଖାଗଲା । ସେ କବିତା-ଗପ ଲେଖିଲା । ତାହା ପତ୍ରପତ୍ରିକାରେ ପ୍ରକାଶ ପାଇଲା । ମାଟ୍ରିକ ପରୀକ୍ଷା ବର୍ଷ ଶିଶୁ ପତ୍ରିକାଟିଏ ଛପାଇବା ପାଇଁ ଚେଷ୍ଟା କରି ବିଫଳ ହେଲା । ପରବର୍ତ୍ତୀ କାଳରେ ତା ସମ୍ପାଦନାରେ 'ବଗଲାବଗୁଲୀ' ଶିଶୁ ପତ୍ରିକା ପ୍ରକାଶ ପାଇଥିଲା ।

ମାଟ୍ରିକ୍ ପରେ ଆମେ କିଏ କୁଆଡେ ପଢ଼ିବାକୁ କି ଚାକିରି କରିବାକୁ ଗଲୁ । ବସନ୍ତ ସମସ୍ତଙ୍କ ସହିତ ପତ୍ର ସମ୍ପର୍କ ଯୋଡ଼ି ରଖିଲା । ମୁଁ ଏୟାରଫୋର୍ସରେ ଥିଲାବେଳେ ଅନେକ ଦିନ ଯାଏ ତା ସହିତ ଚିଠିପତ୍ର ଦବା ନବା କରୁଥିଲି । ସିଏ ସୁନାବେଡ଼ା ଆସିବା ପରେ ଚିଠିପତ୍ର କମିଗଲା । ମଝିରେ ମଝିରେ ଖରାଛୁଟିରେ ଆମର ଦେଖାସାକ୍ଷାତ ହୁଏ । ମୁଁ ଏୟାରଫୋର୍ସ ଛାଡି ଏଲ୍.ଆଇ.ସି.ରେ ଯୋଗ ଦେଲି । କଟକରେ ଘର କରି ରହିଲି । ପୁଣି ଆମ ସମ୍ପର୍କ ନିବିଡ଼ ହେଲା । 'ନନ୍ଦକିଶୋର ସାମଲ



Digitized by srujanika@gmail.com

ସ୍ମୃତିନ୍ୟାସ' ଗଠନ କରି ପରସ୍ପର ପୁଣି ମିଳି ମିଶି କାମ କଲୁ ।।

ଆମର ପୂଜ୍ୟ ଗୁରୁ ଓ ଶିଶୁ ସାହିତ୍ୟିକ ସର୍ଗତ ନନ୍ଦକିଶୋର ସାମଲଙ୍କ ଦେହାନ୍ତ ପରେ ତାଙ୍କ ସ୍ମୃତି ପାଇଁ ଉଦ୍ୟମ କଲୁ । ଏଥିରେ ତାଙ୍କ ସାନ ପୁଅ ସୁକୁମାର ସହିତ ଅନ୍ୟମାନେ ହାତ ମିଶାଇଲେ । ତିନି ଜଣଙ୍କ ସହଯୋଗ ଓ ଯୋଗାଯୋଗ ଫଳରେ ଗଢ଼ି ଉଠିଲା 'ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ' । ଏହି ଅନୁଷ୍ଠାନ ତରଫରୁ କବିଙ୍କ ଜନ୍ମଦିନ ଉଭୟ କଟକ ଓ କୁସୁପୁର ଠାରେ ପାଳିତ ହେଲା । ସ୍ମରଣିକା ପ୍ରକାଶ ପାଇଲା । ନନ୍ଦକିଶୋର ରଚନାବଳୀ (ପ୍ରଥମ ଭାଗ) ବସନ୍ତ ସମ୍ପାଦନାରେ ପ୍ରକାଶ ପାଇଲା । ଅସୁସ୍ଥତା ଯୋଗୁ ମୁଁ ଏବେ ସ୍ମୃତିନ୍ୟାସ କାମରେ ସହଯୋଗ କରିପାରୁନାହିଁ । ସ୍ମୃତିନ୍ୟାସ ତାର କାର୍ଯ୍ୟଧାରା ଅବ୍ୟାହତ ରଖିଛି । ଏହା ପୂର୍ବରୁ ବସନ୍ତ ନନ୍ଦକିଶୋର ସାମଲଙ୍କ କୃତି ସମ୍ପର୍କରେ ପ୍ରବନ୍ଧ ଲେଖି ପତ୍ରପତ୍ରିକା ଓ ପୁସ୍ତକରେ ପ୍ରକାଶ କରିଥିଲା । ତାଙ୍କ କୃତି ସମ୍ପର୍କରେ ଗବେଷଣା କରିବାର ପଥ ଉନ୍ମୋଚନ କରିଥିଲା । ତା ଅଧିନରେ ଡକ୍ଟର ଜ୍ୟୋତିର୍ମୟୀ ରାଜଗୁରୁ 'ଓଡ଼ିଆ ଶିଶୁ ସାହିତ୍ୟକୁ ନନ୍ଦକିଶୋର ସାମଲଙ୍କ ଅବଦାନ' ଶୀର୍ଷକରେ ଗବେଷଣା କରି ୨୦୦୩ରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିସାରିଥାନ୍ତି ।

ଆମ ଘରକୁ ଥରେ ଆସି ସେ ପ୍ରସ୍ତାବ ଦେଲା ଆମ ସ୍କୁଲ୍ (ନନ୍ଦକିଶୋର ବିଦ୍ୟାମନ୍ଦିର)ର ସୁବର୍ଣ୍ଣ ଜୟନ୍ତୀ ପାଳନ ସହିତ ଆମ ବ୍ୟାଚ୍‌ର (୧୯୭୩ ମାଟ୍ରିକ ବ୍ୟାଚର) ବଂଧୁମିଳନ କରିବାକୁ । ଏଥିପାଇଁ କଟକ, ଭୁବନେଶ୍ୱର ଓ କୁସୁପୁର ଆଦି ସ୍ଥାନରେ ମିଟିଂ ଆୟୋଜିତ ହେଲା । କେତେଜଣଙ୍କର ଅସହଯୋଗ ଯୋଗୁ ସୁବର୍ଣ୍ଣ ଜୟନ୍ତୀ ହୋଇପାରିଲା ନାହିଁ । କିନ୍ତୁ ଦୀର୍ଘ ୩୪ ବର୍ଷ ପରେ ୨୦୦୮ ମସିହା ମେ ମାସ ୧୮ରେ ଆମ ବ୍ୟାଚ ପିଲାଙ୍କର ବନ୍ଧୁମିଳନ ବସନ୍ତ ଓ ମୋ ଉଦ୍ୟମରେ ସ୍କୁଲ ପରିସରରେ ଆୟୋଜିତ ହେଲା । ଆମ ବ୍ୟାଚର ସବୁ ସାଙ୍ଗ ଏଥିରେ ଯୋଗ ଦେଇ ଉଲ୍ଲସିତ ଓ ଆନନ୍ଦିତ ହେଲେ । ଅନେକ ଦିନ ପରେ ଏକତ୍ର ହେବାର ମଜା ଉଠାଇଲେ । ପରସ୍ପର ମଧ୍ୟରେ ଭାବ ବିନିମୟ କଲେ । ଆନନ୍ଦ ଓ ଉଲ୍ଲାସରେ ଦିନଟି କଟିଲା । ଏହି ଅବସରରେ ଆମକୁ ପାଠ ପଢ଼ାଇଥିବା ଚାରିଜଣ ଶିକ୍ଷକଙ୍କୁ ଡାକି ସମ୍ବର୍ଦ୍ଧନା ଦେଲୁ । ସାର୍‌ମାନେ ଖୁସି ହୋଇ ଉଦ୍ୟମକୁ ପ୍ରଶଂସା କଲେ । ଏହି ବନ୍ଧୁମିଳନ ପାଇଁ ଯୋଗାଯୋଗ କରିବା ଠାରୁ ଅନ୍ୟ ସମସ୍ତ ଦାୟିତ୍ୱ ବସନ୍ତ ବ୍ୟକ୍ତିଗତ ଭାବେ କରିଥିଲା । ତା ଉଦ୍ୟମକୁ ସମସ୍ତେ ପ୍ରଶଂସା କଲେ । ପ୍ରତିବର୍ଷ ବନ୍ଧୁମିଳନ ହେବ ବୋଲି ସେଠାରେ ସ୍ଥିର ହେଲା । ମାତ୍ର, ଦୁହିଁଙ୍କର ଶାରୀରିକ ଅସୁସ୍ଥତା ପାଇଁ ଏହା ଆଉ କାର୍ଯ୍ୟକାରୀ ହୋଇପାରି ନାହିଁ । ଭଗବାନ ଚାହିଁଲେ ବସନ୍ତ ଅବସର ପରେ ଏହା କାର୍ଯ୍ୟକାରୀ ହେବ ।

୨୦୦୯ ଇଲେକ୍‌ସନ କାର୍ଯ୍ୟରେ ଥିବା ବେଳେ ମୋର ବ୍ରେନ୍ ହାମରେଜ ହେଲା । ମୁଁ ୧୫ ଦିନ ଆୟୁସ ହସିପିଟାଲର ଆଇସିୟୁରେ ରହିଲି । ବସନ୍ତ ଏହି ଖବରରେ ମର୍ମାହତ ହେବା ସହ ସମସ୍ତ ସାଙ୍ଗସାଥୀଙ୍କୁ ଏ ଖବର ସୂଚୀତ କରିଥିଲା । ସୁଦୂର



Digitized by srujanika@gmail.com

ସୁନାବେଡ଼ାରେ ରହି ମଧ୍ୟ ଆମ ପରିବାର ସହିତ ସମ୍ପର୍କ ରଖି ମୋର ସମସ୍ତ ଭଲମନ୍ଦ ଖବର ବୁଝୁଥିଲା ।

ଆଗରୁ କହିଛି ସେ ଖୁବ୍ ଭ୍ରମଣ ପ୍ରିୟ । ବିଭିନ୍ନ କାମରେ ସାରା ଓଡ଼ିଶା ବୁଲିଛି । ଭାରତର କେତେକ ଭଲଭଲ ସ୍ଥାନ ବୁଲିଛି । ତା ସହିତ ୨୦୧୦ରେ ମୁଁ ପୁଟପର୍ତ୍ତି, ବାଙ୍ଗାଲୋର, ମହୀଶୂର, ଉଟି ଓ ତିରୁପତି ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଛି । ସେ ସବୁ ସ୍ଥାନ ବୁଲିବା ସହିତ ବିଭିନ୍ନ ସ୍ଥାନରେ ମଜା ଉଠାଇବା ଆଜି ମଧ୍ୟ ମୋର ମନେ ଅଛି । ସୁନାବେଡ଼ାକୁ ତା ନିମନ୍ତ୍ରଣରେ ୨୦୧୧ ଏପ୍ରିଲ ୧ ତାରିଖରେ ବନ୍ଧୁ ଡକ୍ଟର ବିଜୟାନନ୍ଦ ସିଂହଙ୍କ ସହିତ ଯାଇଥିଲି । ତା ଯୋଗୁ ଆମେ ଦୁହେଁ ଏଚ୍.ଏ.ଏଲ୍. ଫ୍ୟାକଟ୍ରି ଦେଖିବାର ସୁଯୋଗ ପାଇଲୁ । ସେଠି ବସନ୍ତର ସ୍ୱତନ୍ତ୍ରତା, ପ୍ରଭାବ ସମସ୍ତଙ୍କ ସହିତ ବନ୍ଧୁତ୍ୱ ଭାବ ଦେଖି ଆମେ ଖୁସି ହେଲୁ ।

ସିଏ ଆମ ଗାଁର ପ୍ରଥମ ଓ ଶେଷ ପିଏଚ୍.ଡି. ପ୍ରାପ୍ତ ବ୍ୟକ୍ତି । ତା ପୂର୍ବରୁ କି ପରେ ଆଉ କେହି ପିଏଚ୍.ଡି. ପାଇ ନାହାନ୍ତି । ଆମ ବ୍ୟାଚର ଜଣେ ଅଧ୍ୟାପକ ଓ ସାହିତ୍ୟିକ ହୋଇ ଆମକୁ ଗୌରବାନ୍ୱିତ କରିଛି । ସୁଦୂର କୋରାପୁଟରେ ଥାଇ ସେ ଗାଁର ଉନ୍ନତି ପାଇଁ ଚିନ୍ତା କରିଛି । ଗାଁ ଖବର ଅନ୍ୟମାନଙ୍କ ଠାରୁ ବୁଝିଛି । ଆବଶ୍ୟକ ସାହାଯ୍ୟ ସହଯୋଗ କରିଛି । ଗାଁ ପୂର୍ବପରି ସବୁବେଳେ ଏକ ଆଦର୍ଶ ଗାଁ ହୋଇ ରହୁ ବୋଲି ସେ ଚାହେଁ ।

ସେ ଭାରି ଦୟାଶୀଳ ଓ ପରୋପକାରୀ । ଅନ୍ୟର ବ୍ୟକ୍ତିଗତ ଅସୁବିଧା ସମୟରେ ଅଣ୍ଟାଭିଡ଼ି ଛିଡ଼ା ହୁଏ । ଟଙ୍କା ପଇସା ପ୍ରତି ତା'ର ଆସକ୍ତ ନଥାଏ । ଜନହିତକର କାର୍ଯ୍ୟ ପାଇଁ ସବୁବେଳେ ସହଯୋଗର ହାତ ବଢ଼ାଏ । ତାଙ୍କ ପରିବାରେ ଝିଅ ନଥିବାରୁ ସେ ଛୋଟ ବେଳୁ ପଡିଶା ଘରର ଝିଅକୁ ଝିଅ କରି ଆଣିଥିଲା । ତାକୁ ମାଟ୍ରିକ ପର୍ଯ୍ୟନ୍ତ ପଢ଼ାଇ ଉଚ୍ଚଶିକ୍ଷିତା କଲା । ବିବାହ ବୟସ ହେବାରୁ ଉପଯୁକ୍ତ ପାତ୍ରରେ ବିବାହ ଦେଇ ଏକ ମହତ କାର୍ଯ୍ୟ ସମ୍ପାଦନ କରିଛି ।

ତା ପାଇଁ ଆମେ ସାଙ୍ଗ ସାଥୀ କେବଳ ଗର୍ବିତ ନୋହୁଁ, କୁସୁପୁର ଗାଁ ମଧ୍ୟ ଗର୍ବିତ । ଏବେ ସିଏ ଅବସର ନେବ । ତାର ଜନ୍ମ ତାରିଖ ଭୁଲ୍ ଲେଖା ଯାଇଥିବାରୁ ସେ ବର୍ଷକ ଆଗରୁ ଚାକିରିରୁ ଅବସର ନେଉଛି । ସେଥିପାଇଁ ତା ମନ ଦୁଃଖ ନାହିଁ । ବରଂ ସେ ଖୁସି ଯେ ସେ ଏବେ ଗାଁରେ ରହିବ । ଗାଁ ଲୋକଙ୍କ ସହିତ ମିଶିବ । ଗାଁ ପ୍ରତି ତାର ମମତା ବହୁତ । କୁସୁପୁରକୁ ନେଇ ସେ ଗର୍ବ କରେ । ତା'ର ଅବସର ଜୀବନ ଅଧିକ ସୁଖ, ସମୃଦ୍ଧିମୟ ହେଉ । ସେ ନୀରୋଗ ରହୁ । ଗାଁ, ଦେଶ, ଜାତି ତଥା ଓଡ଼ିଆ ସାହିତ୍ୟ ପାଇଁ ଅଧିକରୁ ଅଧିକ କାର୍ଯ୍ୟ କରି ଯଶସ୍ୱୀ ହେଉ ଓ ଆମେମାନେ ତା ପାଇଁ ଗୌରବାନ୍ୱିତ ହେଉ ଏହାହିଁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ମହମଦିଆ ବଜାର, କଟକ



Digitized by srujanika@gmail.com

# ସାରସ୍ୱତ ସାଧକ ଡକ୍ଟର ବସନ୍ତ କିଶୋର ସାହୁ

ଡକ୍ଟର ମନମୋହନ ମିଶ୍ର

ଡକ୍ଟର ବସନ୍ତ କିଶୋର ସାହୁ ଜଣେ ଶିଶୁ ସାହିତ୍ୟିକ, ଗବେଷକ, ଆଲୋଚକ, ପ୍ରାବନ୍ଧିକ, ସଂପାଦକ, ସଂକଳକ ତଥା ସୁସଙ୍ଗଠକ ଭାବରେ ଓଡ଼ିଆ ସାରସ୍ୱତ ଜଗତରେ ବେଶ ସୁପରିଚିତ । ସୁନାବେଡ଼ା ଓ ଅବିଭକ୍ତ କୋରାପୁଟ ଜିଲ୍ଲାରେ ତାଙ୍କର ସାରସ୍ୱତ ସାଧନା ସ୍ମରଣୀୟ ହୋଇ ରହିବ ସବୁଦିନ ପାଇଁ । ଯାହାକି ଆଗାମୀ ପିଢ଼ିକୁ ପ୍ରେରଣା ଓ ଉତ୍ସାହ ପ୍ରଦାନ କରିବ ।

ବସନ୍ତ ବାବୁଙ୍କ ସହିତ ମୋର ବନ୍ଧୁତା 'ବନଫୁଲ ସାହିତ୍ୟ ପରିଷଦର ବାର୍ଷିକ ଉତ୍ସବରୁ । ବନଫୁଲ ତାଙ୍କ ବ୍ୟକ୍ତିଗତ ଉଦ୍ୟମର ଫଳଶ୍ରୁତି । ତାଙ୍କର ଉଦ୍ଦେଶ୍ୟ ଥିଲା କୋରାପୁଟରେ ସାହିତ୍ୟିକ ପରିବେଶ ସୃଷ୍ଟି କରିବା । ଏହି ଅନୁଷ୍ଠାନ ଦୀର୍ଘ ଦଶ ବର୍ଷ ଧରି ପ୍ରାକ୍ ବିଷୁବ ମିଳନ ଆୟୋଜନ କରି ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲା ।

ପ୍ରାକୃତିକ ପରିବେଶ, ସବୁଜ ଗଛଲତା ତଳେ ସାରସ୍ୱତ ସଭା, କବିତା ପାଠୋତ୍ସବ ଅବିଭକ୍ତ କୋରାପୁଟର ସାହିତ୍ୟିକ ବନ୍ଧୁମାନଙ୍କ ମିଳନ, ଶ୍ରଦ୍ଧା, ଆନ୍ତରିକତା, ଭାବ ବିନିମୟ ଓ ସର୍ବୋପରି ସାହିତ୍ୟ ଆସର କ୍‌ବିତା ପାଠୋତ୍ସବ ନୂଆକରି ଅଧ୍ୟାପନା କରୁଥିବା ମୋତେ ତଥା ଏହି ଅଞ୍ଚଳର ସାହିତ୍ୟିକମାନଙ୍କୁ ସେତେବେଳେ ପ୍ରଭାବିତ କରିଥିଲା । ମୋର ଲେଖାଲେଖି କରିବା ସହିତ ବନଫୁଲର ସାଙ୍ଗଠନିକ କାର୍ଯ୍ୟରେ ସଂପୃକ୍ତ ହେବାରେ ସମସ୍ତ ଶ୍ରେୟ ବସନ୍ତ ବାବୁଙ୍କର ।

ପରବର୍ତ୍ତୀ କାଳରେ ସେମିଳିଗୁଡ଼ାରେ ଶ୍ରୀ କୃଷ୍ଣ ସିଂହଙ୍କ ନେତୃତ୍ୱରେ ଗଢ଼ି ଉଠିଲା ରାଜ୍ୟସ୍ତରୀୟ ସାହିତ୍ୟ ଅନୁଷ୍ଠାନ 'ଓଡ଼ିଆ ଲେଖକ ପାଠକ ସମ୍ମେଳନ' । ଏହାର ସମ୍ପାଦକ ଦାୟିତ୍ୱ ମଧ୍ୟ ବସନ୍ତ ବାବୁଙ୍କ ଉପରେ ନ୍ୟସ୍ତ ହେଲା । ସେହି ସମୟରେ ସେମିଳିଗୁଡ଼ା ମହାବିଦ୍ୟାଳୟ ଏହି ଦୁଇ ଅନୁଷ୍ଠାନର ଏକ ଅଙ୍ଗ ହୋଇଯାଇଥିଲା । ଦୀର୍ଘ ପାଞ୍ଚ ବର୍ଷ ଏହି ଅନୁଷ୍ଠାନ ରାଜ୍ୟସ୍ତରୀୟ ସାହିତ୍ୟ ଉତ୍ସବ, ପୁସ୍ତକ ମେଳା, ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରିଥିଲା । ଏହି ସବୁ ଅନୁଷ୍ଠାନରେ ଅନ୍ନପୂର୍ଣ୍ଣା ମହାରଣା, କବି ମନମୋହନ ମିଶ୍ର, ରବି ସିଂହ ଓ ମନୋରମା ମହାପାତ୍ର ଆଦି ଓଡ଼ିଆ ସାହିତ୍ୟର ପ୍ରତିଭାଶାଳୀ ସ୍ରଷ୍ଟା ଯୋଗ ଦେଇଥିଲେ ।

କାଳକ୍ରମେ ପୃଷ୍ଠପୋଷକତା ଅଭାବ ତଥା କର୍ମକର୍ତ୍ତାମାନଙ୍କର କାର୍ଯ୍ୟବ୍ୟସ୍ତତା



Digitized by srujanika@gmail.com

ପାଇଁ ଦୁଇଟି ଯାକ ଅନୁଷ୍ଠାନର କାର୍ଯ୍ୟକ୍ରମ ଧିମେଇ ଯାଇଥିଲା । ୨୦୧୨ରେ ପୁଣି ବସନ୍ତ ବାବୁଙ୍କ ଉଦ୍ୟମ, ଚେଷ୍ଟା ଓ ପ୍ରେରଣାରେ ଏହା ସକ୍ରିୟ ହୋଇଛି । ସମାଜସେବୀ, ଶିକ୍ଷାବିତ୍ ଶ୍ରୀ କୃଷ୍ଣ ସିଂହଙ୍କ ୭୫ ବର୍ଷ ପୂର୍ତ୍ତି ଉପଲକ୍ଷେ ଓଡ଼ିଆ ଲେଖକ ପାଠକ ସମ୍ମେଳନକୁ ସକ୍ରିୟ କରାଇବାର ଶ୍ରେୟ ବସନ୍ତ ବାବୁଙ୍କର । ଏହି ଉତ୍ସବରେ ବିଶିଷ୍ଟ ସାହିତ୍ୟିକ ରଜତ କୁମାର କର, ବ୍ରଜନାଥ ରଥ, ଶୈଳଜ ରବି, କୃପାସାଗର ସାହୁ, ରମେଶ ଦାସ ଆଦି ଯୋଗ ଦେବା ସହିତ ଓଡ଼ିଶାର ସବୁ ଅଞ୍ଚଳରୁ ଶତାଧିକ କବି ଓ ଲେଖକ ଯୋଗ ଦେଇ ଉତ୍ସବକୁ ସଫଳ କରିଥିଲେ । ଏହି ଉପଲକ୍ଷେ ରାଜ୍ୟର ସମସ୍ତ ଅଞ୍ଚଳର ପ୍ରାୟ ୫୦ ଜଣ ସ୍ରଷ୍ଟାଙ୍କୁ ସେମାନଙ୍କ କୃତି ଓ କୃତିତ୍ୱ ପାଇଁ ସମ୍ମାନିତ କରାଯାଇଥିଲା । ବସନ୍ତ ବାବୁ ଆଶା କରିଥିଲେ ଓଡ଼ିଆ ଲେଖକ ପାଠକ ସମ୍ମେଳନ ଓ କୃଷ୍ଣ ସିଂହଙ୍କ ଜନ୍ମ ବାର୍ଷିକ ପାଳନ ପାଇଁ ସେମିଳିଗୁଡ଼ା ମହାବିଦ୍ୟାଳୟ ପୃଷ୍ଠପୋଷକତା କରୁ ବୋଲି । କିନ୍ତୁ ତାହା କାର୍ଯ୍ୟକାରୀ ହୋଇପାରିନାହିଁ । ବସନ୍ତ ବାବୁ ତାଙ୍କ ସାହିତ୍ୟିକ କାର୍ଯ୍ୟଧାରା ଦୀର୍ଘ ଚାରି ଦଶନ୍ଧି ଧରି ଜାରି ରଖିଛନ୍ତି । ବହୁ ସଂସ୍ଥା ସହ ତାଙ୍କର ସୁସମ୍ପର୍କ । ସୁନାବେଡ଼ା ଓ ସେମିଳିଗୁଡ଼ାରେ ଏକ ସାହିତ୍ୟିକ ବାତାବରଣ ସେ ସୃଷ୍ଟି କରିଛନ୍ତି ।

ବସନ୍ତ ବାବୁ ଜଣେ ଭଲ ମଣିଷ । ବୟସରେ ବଡ଼ ହେଲେବି ମୋର ଜଣେ ପ୍ରିୟ ବନ୍ଧୁ । ମେଳାପି, ସ୍ୱାଭିମାନୀ, ଜଣେ ଦକ୍ଷ ପ୍ରଶାସକ, ସ୍ପଷ୍ଟବାଦୀ ହେତୁ ଅନ୍ୟମାନେ ବେଳେବେଳେ ମନ ଊଣା କରନ୍ତି । କିନ୍ତୁ, ପରେ ସମସ୍ତେ ତାଙ୍କୁ ଓ ତାଙ୍କ ବ୍ୟକ୍ତିତ୍ୱକୁ ବୁଝିପାରନ୍ତି । ସାହିତ୍ୟ ସାଧନା ପାଇଁ ତାଙ୍କର ନିଷ୍ଠା, ପ୍ରତିବଦ୍ଧତା, ବିଚକ୍ଷଣ ସାଙ୍ଗଠନିକ କାର୍ଯ୍ୟଧାରା ଓ ଧୈର୍ଯ୍ୟ ତାଙ୍କୁ ଯଥେଷ୍ଟ ପ୍ରତିଷ୍ଠା ଆଣି ଦେଇଛି ସମଗ୍ର ଓଡ଼ିଶାରେ ।

ତାଙ୍କ ସାହିତ୍ୟ ଓ ସାହିତ୍ୟିକଙ୍କ ପାଇଁ କେତେ ଦରଦ ଗୋଟିଏ ଘଟଣାରୁ ଜଣା ପଡେ । ଗତବର୍ଷ କିଛି ନକହି ମୋତେ ତାଙ୍କ ଘରକୁ ଡାକିଥିଲେ । ସେଠି ଯାଇ ଦେଖିଲି ଗୀତିକବି ବୀରକିଶୋର ନାୟକଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବା ପାଇଁ ସେ ଏକ ବନ୍ଧୁମିଳନର ଆୟୋଜନ କରିଛନ୍ତି । ମାନପତ୍ର, ସାଲ, ଫଟୋ ଓ ପ୍ରୀତିଭୋଜନର ବ୍ୟବସ୍ଥା । ସାହିତ୍ୟିକଙ୍କ ପାଇଁ କି ଆନନ୍ଦ, କି ଭାବ କି ଆବେଗ ଯାହା ଭୁଲିବାର ନୁହେଁ । ଜଣେ ସାହିତ୍ୟ ପ୍ରାଣ ବ୍ୟକ୍ତି ନହେଲେ ଏପରି କରିପାରିବ ନାହିଁ ।

ବସନ୍ତ ବାବୁ ସୁନାବେଡ଼ାରୁ ଅବସର ଗ୍ରହଣ କରି ଚାଲିଯିବେ । ସେ ସପରିବାର ନୀରୋଗ ଆନନ୍ଦମୟ ଜୀବନ ନିର୍ବାହ କରନ୍ତୁ । ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ଚିରଦିନ ଥାଉ, ଏହା ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ଅଧ୍ୟାପକ, ଇଂରାଜୀ ବିଭାଗ
ସେମିଳିଗୁଡ଼ା ମହାବିଦ୍ୟାଳୟ



Digitized by srujanika@gmail.com

# ପ୍ରତିଭାବାନ୍ ସୁଯୋଗ୍ୟ ଜାମାତା ଶ୍ରୀମାନ ବସନ୍ତ

ରାଜ କିଶୋର ସାହୁ

ବଣ ପର୍ବତ ବେଷ୍ଟିତ 'ସୁକିନ୍ଦା'ର ଦକ୍ଷିଣ ସୀମାରେ ବ୍ରାହ୍ମଣୀ ନଦୀ ପ୍ରବାହିତ । ବ୍ରାହ୍ମଣୀ-କନ୍ୟା, ପରିଭଦ୍ରା (ପାଣ୍ଡରା) ଏବଂ ଦୁଗ୍ଧ ସମବାରି ଧାରିଣୀ ଦୁଧେଇ ନଦୀ ତଟରେ 'ବର୍ତ୍ତଣ୍ଡା' ଗ୍ରାମ ଅବସ୍ଥିତ । ଏହି ଗ୍ରାମ ନିବାସୀ ମୋର ତୃତୀୟ କନ୍ୟା ବୀଣାପାଣିକୁ ଧର୍ମପତ୍ନୀ ରୂପେ ପ୍ରଥମ ଦେଖାରେ ପସନ୍ଦ କରି ଚୟନ କରିଥିଲେ କଟକ ଜିଲ୍ଲାସ୍ଥ ମାହାଙ୍ଗା ଥାନାର କୁସୁପୁର ଗ୍ରାମର ଭଦ୍ର, ସରଳ, ଗୁଣବାନ, ଉଦାର ଏକଭାଷୀ ଶିକ୍ଷିତ ଯୁବକ ଶ୍ରୀମାନ ବସନ୍ତ କିଶୋର ସାହୁ । କଟକସ୍ଥ ପ୍ୟାରୀମୋହନ ଏକାଡେମୀର କିରାଣୀ ଶୈଳେନ୍ଦ୍ର କୁମାର ସିଂହଙ୍କ ଦ୍ୱାରା ଅବଶ୍ୟ ଆଗରୁ ବିବାହ ପ୍ରସ୍ତାବ ଆସିଥିଲା । କିନ୍ତୁ ଶ୍ରୀମାନ ସାହୁଙ୍କର ଆକସ୍ମିକ ଆବିର୍ଭାବରେ ମୁଁ ତଟସ୍ଥ ହୋଇ କନ୍ୟା ବୀଣାପାଣି ସହିତ ସାକ୍ଷାତ୍ କରାଇଦେବାକୁ ରାଜି ହେଉ ନଥିଲି । ଗାୟକ-କବି-ଶିକ୍ଷକ ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ ତଥା ଶ୍ରୀ ଦାଶରଥି ସାଇଁ (ସହକର୍ମୀ)ଙ୍କ ପ୍ରରୋଚନା ତଥା ପ୍ରେରଣାରେ ଶ୍ରୀମାନ ସାହୁଙ୍କୁ ଅପ୍ରସ୍ତୁତ ଭାବେ ଘରକୁ ଡାକି ନେଇଥିଲି ।

ସୁକିନ୍ଦା ସାହିତ୍ୟ ସମାଜର ପ୍ରତିଷ୍ଠାତା ଦୁର୍ଯ୍ୟୋଧନ ନାୟକ (ହରିପୁର) ଆମ୍ଭ ଗ୍ରାମର ଅନ୍ୟ ସୁନ୍ଦରୀ ଧନୀ କନ୍ୟାଙ୍କ ସହ ସାକ୍ଷାତ କରାଇବାକୁ ଉଦ୍ୟମ କରି ଶ୍ରୀମାନ ସାହୁଙ୍କ ପାଖରେ ସଫଳ ହୋଇପାରି ନଥିଲେ । ଏ ବିବାହ ସତେ ଯେମିତି ବିଧି ନିର୍ଦ୍ଦିଷ୍ଟ ଥିଲା । ଜ୍ୟେଷ୍ଠ ଭ୍ରାତା ସ୍ୱର୍ଗୀୟ ଧ୍ରୁବଚରଣ ସାହୁଙ୍କ ସହିତ ମନାନ୍ତର ଥିବାରୁ ସେ ସଂପୂର୍ଣ୍ଣ ଅସହଯୋଗୀ ଥିଲେ । ମାତ୍ର ଆମ୍ଭର ଭଣଜା, ଆମ୍ଭୋଳବା ଗ୍ରାମର ସ୍ୱର୍ଗୀୟ ପ୍ରଫୁଲ୍ଲ କୁମାର ସାହୁ ସଂପୂର୍ଣ୍ଣ ରୂପେ ଉକ୍ତ ମାଙ୍ଗଳିକ କାର୍ଯ୍ୟରେ ସହଯୋଗ ପ୍ରଦାନ କରିଥିଲେ । ଅନେକ ସମସ୍ୟା ଥିଲେ ବି ସୁରୁଖୁରୁରେ ଶୁଭ ବିବାହ ଶୁଭମୟ ହୋଇଥିଲା ।

ଶ୍ୱଶୁର ହିସାବରେ ମୁଁ ଶ୍ରୀମାନ ବସନ୍ତଙ୍କ ସହିତ ବେଶୀ ମିଶି ପାରେ ନାହିଁ । କାରଣ ସେ ଥିଲେ ସ୍ପଷ୍ଟବାଦୀ ଓ ନିର୍ଭୀକ । ତାଙ୍କର ସିଧା ସିଧା କଥା ପାଇଁ ମୁଁ ତାଙ୍କ ସହିତ ବେଶୀ କଥାବାର୍ତ୍ତା କରିପାରେ ନାହିଁ । କିନ୍ତୁ ତାଙ୍କ ସମସ୍ତ ଭଲମନ୍ଦ ଖବର ଝିଅ ବୀଣାପାଣି ଓ ଅନ୍ୟମାନଙ୍କ ଠାରୁ ଜାଣି ଖୁସି ହୁଏ । ବିବାହ ସମୟରେ ତାଙ୍କର ଆର୍ଥିକ



Digitized by srujanika@gmail.com

ସ୍ବଚ୍ଛଳତା ନଥିଲେ ମଧ୍ୟ ଦୃଢ଼ ପ୍ରତିଜ୍ଞ ଶ୍ରୀମାନ ବସନ୍ତ, ଅଭାବ ଅନଟନକୁ ଭ୍ରୁକ୍ଷେପ ନ କରି ନିଜ ଗୋଡରେ ନିଜେ ଠିଆ ହେବାର ସଂକଳ୍ପ ନେଇ ଜୀବନ ସଂଗ୍ରାମରେ ବିଜୟ ଲାଭ କରିଥିଲେ । ସେ ଥିଲେ ଉଦାରଭାବ ସଂପନ୍ନ ନିରଳସ ନିଷ୍ଠାପର ସାରସ୍ୱତ ସାଧକ ଓ ସଂଗଠକ । ବତିଶି ଖଣ୍ଡରୁ ଉର୍ଦ୍ଧ୍ୱ ପୁସ୍ତକ ତାଙ୍କର ମୁଦ୍ରିତ କଳେବର ରୂପେ ଆତ୍ମ ପ୍ରକାଶ କରି ପାଠକୀୟ ଆଦର ଲାଭ କରି ସାରିଛି । ତିନି କୋଡିରୁ ଅଧିକ ପତ୍ରପତ୍ରିକା ଓ ପୁସ୍ତକର ସେ ସଂପାଦକ ତଥା ସଂକଳକ ରୂପେ ସୁଖ୍ୟାତି ଅର୍ଜନ କରି ସାରିଛନ୍ତି । କୋଡିଏରୁ ଉର୍ଦ୍ଧ୍ୱ ସାରସ୍ୱତ ଅନୁଷ୍ଠାନରୁ ସେ ପୁରସ୍କୃତ, ମାନ୍ୟତାପ୍ରାପ୍ତ ଓ ସମ୍ବର୍ଦ୍ଧିତ । ଏହା ଖାଲି ମୋ ପାଇଁ ନୁହେଁ କି, ପଲ୍ଲୀକବି ନନ୍ଦ କିଶୋର ବଳଙ୍କ ଜନ୍ମଭୂମୀ କୁସୁପୁର ପାଇଁ ନୁହେଁ ସାରା ଓଡିଶା ପାଇଁ ଗର୍ବ ଓ ଗୌରବର ବିଷୟ । ଶ୍ରୀମାନ ବସନ୍ତ ପିଏଚ୍.ଡି ଡିଗ୍ରୀ ଲାଭ କରି ଡକ୍ଟର ଉପାଧିରେ ମଣ୍ଡିତ । ତାଙ୍କ ଅଧୀନରେ ୨ଜଣ ପିଏଚ୍.ଡି. ଡିଗ୍ରୀ ଲାଭ କରି ସାରିଛନ୍ତି ଏବଂ ସଂପ୍ରତି ଆଉ ଦୁଇଜଣ ଗବେଷଣାରତ । ଜଣେ ଶିଶୁ ସାହିତ୍ୟିକ ହିସାବରେ ଯଶସ୍ୱୀ ଓ ସମାଦୃତ । ମୁଁ ଜଣେ ସାହିତ୍ୟିକ କି ପାଠକ ନୁହେଁ । ତଥାପି ଶ୍ରୀମାନ ବସନ୍ତଙ୍କର ପ୍ରକାଶିତ ପତ୍ରିକା (ବନପ୍ରଭା ସାହିତ୍ୟ ସଂସଦ - ସୁନାବେଡା ଦ୍ୱାରା) ଓ ୨/୩ଖଣ୍ଡ ପୁସ୍ତକରୁ କିଛି ଅଂଶ ପଢିଛି । ସେତିକିରୁ ତାଙ୍କ ସାରସ୍ୱତ ପ୍ରତିଭାର ସାକ୍ଷର ସ୍ୱଷ୍ଟ ଦେଖି ପାରିଛି । ସେ ମଧ୍ୟ ତାଙ୍କର ଏକ ପୁସ୍ତକ "ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ" ପୁସ୍ତକକୁ ମୋତେ ଉତ୍ସର୍ଗ କରି ତାଙ୍କର ମୋ ପ୍ରତି ଥିବା ସମ୍ମାନ ଓ ଶ୍ରଦ୍ଧାର ପରିଚୟ ଦେଇଛନ୍ତି ।

କୋରାପୁଟର ସୁନାବେଡା ଓ କୁସୁପୁରକୁ ମୁଁ ଅନେକ ଥର ଶ୍ୱଶୁର ଓ ବନ୍ଧୁ ହିସାବରେ ଯାଇଛି । ଶ୍ରୀମାନ ବସନ୍ତ ମୋତେ ସୁନାବେଡା ତଥା କୋରାପୁଟର ବିଭିନ୍ନ ଦର୍ଶନୀୟ ସ୍ଥାନ ଭ୍ରମଣ କରାଇ ଦେଖାଇଛନ୍ତି । ଶିରିଡି ସାଇ ମନ୍ଦିରକୁ ବୁଲାଇ ନେଇ ସେଠାରେ ନାସିକ୍, ସିଗ୍ନାପୁର, ଅଜନ୍ତା, ଏଲୋରା, ତ୍ରିମ୍ବେକଶ୍ୱର, ଘୃଷ୍ନେଶ୍ୱର (ଜ୍ୟୋର୍ତିଲିଙ୍ଗ), ପଞ୍ଚବଟୀ ଆଦି ବୁଲାଇ ଦେଖାଇଛନ୍ତି । ପୁରୀ ନନ୍ଦନକାନ, ବାଙ୍କିର ଚର୍ଚ୍ଚିକା ଓ କୋଣାର୍କ ଆଦି ମଧ୍ୟ ବୁଲାଇ ଦେଖାଇଛନ୍ତି । ଭ୍ରମଣ ଓ ପରିଦର୍ଶନ ସମୟରେ ମୁଁ ଗୁରୁଜନ ହେଲେ ମଧ୍ୟ ତାଙ୍କ ଠାରୁ ଅନେକ କଥା ଶିକ୍ଷା ଲାଭ କରିଛି । ବନ୍ଧୁପ୍ରୀତି, ସ୍ୱାସ୍ଥ୍ୟରକ୍ଷା, ଅନ୍ୟମାନଙ୍କ ସହ ସୁସଂପର୍କ ରକ୍ଷା ଏବଂ ରାଜନୀତି ମାଲିମକଦମା ଠାରୁ ଦୂରେଇ ରହିବାକୁ ଅନୁରୋଧ ଓ ପରାମର୍ଶ ଦେଇ ମୋ ଜୀବନର ଗତିପଥ ବଦଳାଇ ଦେଇଛନ୍ତି ।

ମୁଁ ବେଳେବେଳେ ଆଶ୍ଚର୍ଯ୍ୟ ହୁଏ ଶ୍ରୀମାନ ବସନ୍ତ କଲେଜରେ ଅଧ୍ୟାପନା ଦାୟିତ୍ୱ ତୁଲାଇବା ସହିତ ସାହିତ୍ୟ ସାଧନା ତଥା ବିଭିନ୍ନ ସାଂଗଠନିକ କାର୍ଯ୍ୟ ନିର୍ବିଘ୍ନରେ



Digitized by srujanika@gmail.com

କିପରି କରିପାରୁଛନ୍ତି । କର୍ମ ଜଞ୍ଜାଳରେ ମଗ୍ନ ରହି ସେ ପାରିବାରିକ ଜୀବନ, ଦାମ୍ପତ୍ୟ ପ୍ରେମ ଓ ସନ୍ତାନ ବାତ୍ସଲ୍ୟରେ କେବେ ବି ଅବହେଳା ପ୍ରଦର୍ଶନ କରିନାହାନ୍ତି । ତାଙ୍କର ପୁତ୍ର ଗୀତିମୟ (ବବୁଲ୍) ଇନ୍‌ଫୋସିସ କମ୍ପାନୀରେ କମ୍ପ୍ୟୁଟର ଇଂଜିନିୟର ରୂପେ କାର୍ଯ୍ୟରତ ଏବଂ କନ୍ୟା ବୁଲ୍‌ବୁଲ୍ ପ୍ରିୟଦର୍ଶିନୀ ବି.କମ୍ ପାଶ୍ କରି ଏବେ ବ୍ୟାଙ୍କିଙ୍ଗ ଆଣ୍ଡ ଇନ୍‌ସୁରାନ୍‌ସ ମ୍ୟାନେଜମେଣ୍ଟରେ ଅଧ୍ୟୟନରତା । ଭବିଷ୍ୟତରେ ମ୍ୟାନେଜମେଣ୍ଟ କିମ୍ବା ବ୍ୟାଙ୍କିଙ୍ଗ ଲାଇନ୍‌ରେ ଚାକିରି କରିବାର ଆଶା ରଖିଛି । ତା ସହିତ କମ୍ପାନୀ ସେକ୍ରେଟେରୀ ପାଠ ମଧ୍ୟ ପଢୁଅଛି । ଏଭଳି ନାତି ନାତୁଣୀଙ୍କ ପାଇଁ ଅଜା ହିସାବରେ ଛାତି ମୋର କୁଣ୍ଢେ ମୋଟ ।

ଶ୍ରୀମାନ ବସନ୍ତଙ୍କର ଆଦ୍ୟରୁ ଅର୍ଥ ପ୍ରତି ଲାଳସା କିମ୍ବା ସ୍ୱାର୍ଥପରତା ଗୁଣ ନଥିଲା କିମ୍ବା ଏବେ ମଧ୍ୟ ନାହିଁ । ସେ ପରୋପକାରୀ, ମିଷ୍ଟ, ସ୍ପଷ୍ଟ ଓ ଏକଭାଷୀ । ସମୟାନୁବର୍ତ୍ତିତା, ନିଷ୍ଠାପରକର୍ମୀ, ନିରଳସଧର୍ମୀ, ସାରସ୍ୱତ ସାଧକ, ସଂଗଠକ ଇତ୍ୟାଦି ଭାବରେ ସେ କୋରାପୁଟ ଅଞ୍ଚଳ ତଥା ଓଡ଼ିଶାରେ ଲୋକପ୍ରିୟତା ଲାଭ କରି ପ୍ରସିଦ୍ଧ ହୋଇପାରିଛନ୍ତି ।

ଶେଷରେ ଶ୍ରୀମାନ ବସନ୍ତଙ୍କର ମଙ୍ଗଳ କାମନା କରୁଛି । ପ୍ରଭୁ ନୀଳାଦ୍ରି ବିହାରୀ ଜଗନ୍ନାଥ ତାଙ୍କର ତନୁ ମନ ସୁସ୍ଥ ରଖି, ତାଙ୍କୁ ଦୀର୍ଘାୟୁ କରନ୍ତୁ । ତାଙ୍କର ଲେଖନୀ ଆଜୀବନ ଚଳଚଞ୍ଚଳ ରହିଥାଉ । ତାଙ୍କ ଜୀବନର ଚଲାପଥରେ ସୁଗନ୍ଧ କୁସୁମ ବର୍ଷୁଥାଉ ।



ବର୍ତ୍ତଣ୍ଡା, ଅତା,
ସୁକିନ୍ଦା, ଯାଜପୁର



Digitized by srujanika@gmail.com

# କର୍ମବୀର ଶିଶୁସାହିତ୍ୟିକ
# ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ

**କେଶବାନନ୍ଦ ସାହୁ**

ମାନବ ପରମ ବନ୍ଧୁ ଅଟେ ପରିଶ୍ରମ
ମାନବ ପରମ ଶତ୍ରୁ ଆଳସ୍ୟତା ନାମ ॥

୧୯୫୬ ମସିହା ମାର୍ଚ୍ଚ ମାସ ୧୫ ତାରିଖ, ଏଇଦିନ ମା, ସରସ୍ୱତୀ ଦେବୀଙ୍କ ପୂଜା ହେଉଥାଏ । ଏଇ ଶୁଭଦିନରେ ବସନ୍ତ କିଶୋରଙ୍କ ଜନ୍ମ । ପିତା ବୀର କିଶୋର ଓ ମାତା ମଲ୍ଲୀ ଦେଇଙ୍କ ମନରେ ଅପାର ଆନନ୍ଦ । ପଡୋଶୀମାନେ କହିଲେ, ଠାକୁରଙ୍କ ଅଶୀର୍ବାଦରୁ ପିଲାଟି ସରସ୍ୱତୀ ଦେବୀଙ୍କ ପୂଜାରେ ଜନ୍ମ ହୋଇଛି । ପିଲାଟି ନିଶ୍ଚୟ ପାଠୁଆ ହୋଇ କୁଳ ଉଜ୍ଜ୍ୱଳ କରିବ । ଯଶ ବାନା ଉଡ଼ାଇବ । ବସନ୍ତ ପଞ୍ଚମୀରେ ଜନ୍ମ ହୋଇଥିବାରୁ ତାର ନାମ ବସନ୍ତ ରଖାଯାଉ । ସେମାନଙ୍କ କଥାନୁସାରେ ପିଲାଟିର ନାମ ବସନ୍ତ ରଖାଗଲା ।

ଦ୍ୱିତୀୟା ଚାନ୍ଦ ପରି ପିଲାଟି ଦିନକୁ ଦିନ ବଢ଼ି ୫ ବର୍ଷର ହେଲା । ପିତା ବୀରକିଶୋର ଗ୍ରାମସ୍ଥ ବାଳକ ଉ.ପ୍ରା. ବିଦ୍ୟାଳୟରେ ତାର ନାମ ଲେଖାଇଲେ । ବସନ୍ତ ଅତି ଧିର ସ୍ଥିର, ଶାନ୍ତ ଶିଷ୍ଟ । ଦୁଷ୍ଟ ପିଲାଙ୍କ ସହିତ ସାଙ୍ଗ ହୁଏ ନାହିଁ । ଶିକ୍ଷକ ଦେଇଥିବା ପାଠ ରୀତିମତ କରିଦିଏ । ଏଣୁ ଶିକ୍ଷକମାନେ ବସନ୍ତକୁ ଅତି ଶ୍ରଦ୍ଧା କରନ୍ତି । ପିଲାଟିର ରୂପ ଯେପରି ସୁନ୍ଦର, ଗୁଣ ମଧ୍ୟ ସେହିପରି ସୁନ୍ଦର । ତେଣୁ ଗ୍ରାମର ସାହିପଡିଶା ଓ ବନ୍ଧୁବାନ୍ଧବମାନେ ବସନ୍ତକୁ ଭାରି ସ୍ନେହ କରନ୍ତି । ପିତା ବୀର କିଶୋରଙ୍କ ଆର୍ଥିକ ଅବସ୍ଥା ଅସଚ୍ଛଳ ହେଲେ ମଧ୍ୟ ମନ ଭାରି ଉଚ୍ଚମନା । ସେ ସ୍ପଷ୍ଟବାଦୀ ଓ ନିର୍ଭୀକ । ନ୍ୟାୟରେ ନବାବ ପୁଅକୁ ମଧ୍ୟ ଜବାବ ଦିଅନ୍ତି । ତେଣୁ ଗ୍ରାମର ଗରୀବ ଲୋକମାନେ ତାଙ୍କୁ ଭଲ ପାଆନ୍ତି । ଧନୀ ଲୋକମାନେ ତାଙ୍କୁ ଡରି କିଛି କହିପାରନ୍ତି ନାହିଁ । କାରଣ ସେ ସ୍ୱର୍ଗତ ଆଇନ୍‌ମନ୍ତ୍ରୀ ଦୀନବନ୍ଧୁ ସାହୁଙ୍କ ନିକଟରେ ସହାୟକ ଭାବରେ କାର୍ଯ୍ୟ କରୁଥାଆନ୍ତି ବୋଲି ।

ମୁଁ କୁସୁପୁର ବାଳିକା ବିଦ୍ୟାଳୟରେ ଶିକ୍ଷକତା କରୁଥାଏ । ମୋର ମାସିକ ଦରମା ୭ଟଙ୍କା ମାତ୍ର । କୁଟୁମ୍ବ ପ୍ରତିପୋଷଣ କରିବା ପାଇଁ ବାଧ୍ୟ ହୋଇ ଗ୍ରାମର ପିଲାମାନଙ୍କୁ ୩ ବେଳା ଟିଉସନ କରୁଥାଏ । ଦିନେ ବୀର ଭାଇ ମୋ ପାଖରେ ପହଞ୍ଚ



Digitized by srujanika@gmail.com

କହିଲେ, "କେଶବ ବସନ୍ତ ତୋ ପାଖରେ ଟିଉସନ ହେବ, ମୁଁ କିନ୍ତୁ ପଇସା ଦେବି ନାହିଁ।" ବୀରକିଶୋରଙ୍କୁ ଭାଇ ବୋଲି ଡାକେ ଓ ଭକ୍ତି ମଧ୍ୟ କରେ। ସେ ମୋତେ ସାନ ଭାଇ ହିସାବରେ ସ୍ନେହ, ଶ୍ରଦ୍ଧା କରନ୍ତି। ମୁଁ ତାଙ୍କୁ କହିଲି ୫ଟି ପିଲା ଯେଉଁ କ୍ଲାସରେ ପଢୁଛନ୍ତି ସେମାନେ ତ ଦରମା ଦେଉଛନ୍ତି, ଜଣେ ନ ଦେଲେ ଚଳିବ। ତମେ ବସନ୍ତକୁ ଆସନ୍ତା ଗୁରୁବାର ଦିନ ମୋ ପାଖକୁ ପଢ଼ିବାକୁ ପଠାଇବ।

କଥାନୁସାରେ ଗୁରୁବାର ଦିନ ବସନ୍ତ ବହି, ଖାତା ଓ କଲମ ଧରି ମୋ ପାଖରେ ପହଁଞ୍ଚି ଭୂମିଷ୍ଠ ପ୍ରଣାମ କରି ଠିଆ ହେଲା। ମୁଁ ବସିବାକୁ କହିବାରୁ ସେ ବସି ପଢ଼ା ଆରମ୍ଭ କଲା। ମୁଁ ଯାହା ପଢ଼ାଏ ଓ ପଢ଼ା ଦିଏ ସେ ସବୁପାଠ ଠିକ୍ ଭାବରେ କରିଦିଏ। ଏଣୁ ମୁଁ ତା ଉପରେ ଭାରି ଖୁସି। ସେ କୌଣସି କ୍ଲାସରେ ଫେଲ୍ ନହୋଇ ମୋ ପାଖରେ ପଢ଼ି ମାଇନର ପାଶ୍ କଲା। ମୁଁ ଅନେକ ସମୟରେ ପିଲାଙ୍କୁ କହେ-

"ଥରକେ ଯାହା ନୁହେଁ ଜାଣି। ମନକୁ ତହିଁ ନିଅ ଟାଣି ॥
ଅଭ୍ୟାସ କରି ବାରବାର। ଅସ୍ୟାଧ କର୍ମ ସାଧି ପାର ॥
ଅସାଧ ବୋଲି ଏ ଜଗତେ। ଯାହା ବା ହୁଅଇ ପରତେ ॥
ପାରିବ ତୁମେ ସବୁ କରି। ଅଭ୍ୟାସ ଗୁଣକୁ ଆଚରି ॥

ପରିଶ୍ରମ କର। ଭାଙ୍ଗି ପଡ଼ ନାହିଁ। ଧୈର୍ଯ୍ୟ ଧରି ଚେଷ୍ଟା କର, ନିଶ୍ଚୟ ପରିଶ୍ରମର ଫଳ ପାଇବ। ବସନ୍ତ ବୋଧହୁଏ ଏଇ ଉକ୍ତିଗୁଡ଼ିକ ମନେ ରଖି କାର୍ଯ୍ୟ କରୁଥାଏ। ମାଇନର ପାଶ୍ କଲା ପରେ ମୋ ପାଖରୁ ମେଲାଣି ନେଇ ଗ୍ରାମସ୍ଥ ନନ୍ଦକିଶୋର ବିଦ୍ୟାମନ୍ଦିରରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇ ପଢ଼ିଲା। ସେ ଅଭାବ ଅସୁବିଧା ମଧ୍ୟ ଦେଇ ଗତି କରୁଥିଲେ ମଧ୍ୟ ପଢ଼ାପଢ଼ି ପ୍ରତି ଆଗ୍ରହ ଥିବାରୁ ନିଜସ୍ୱ ଶୈଳୀ ଓ ପିଉସୀ ପୁଅ ଭାଇ ନଟବର ସାହୁଙ୍କ ପ୍ରେରଣା ଓ ସାହାଯ୍ୟ ପାଇ ମାଟ୍ରିକ ପରେ ଆଇ.ଏ, ବି.ଏ. ଓ ଏମ୍.ଏ. ପାଶ୍ କଲା। ବାଲିଚନ୍ଦ୍ରପୁର ଠାରେ ଅଜନ୍ତା ଟାଇପ୍ ଇନଷ୍ଟିଚ୍ୟୁଟ୍ ଖୋଲି ପିଲାମାନଙ୍କୁ ଶିକ୍ଷିତ କରୁଅଛି ସେମାନଙ୍କ ନିଯୁକ୍ତି କ୍ଷେତ୍ରରେ ସହାୟକ ହେଲା।

ନିଜ ଯୋଗ୍ୟତା ବଳରେ ସେ ପ୍ରଥମେ ଛତିଆସ୍ଥ ମହାପୁରୁଷ ହାଡିଦାସ ମହାବିଦ୍ୟାଳୟ ଓ ପରେ କୋରାପୁଟ ଜିଲ୍ଲାର ସୁନାବେଡ଼ାସ୍ଥ ଏରୋନଟିକ୍ସ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇ ଆଜି ପର୍ଯ୍ୟନ୍ତ ଶିକ୍ଷାଦାନ କରୁଅଛି। ତା ଶିକ୍ଷାଦାନରେ ଉପରିସ୍ଥ କର୍ମକର୍ତ୍ତା ଓ ଛାତ୍ରଛାତ୍ରୀମାନେ ସନ୍ତୁଷ୍ଟ।

ବିବାହ ବୟସ ଉପସ୍ଥିତ ହେବାରୁ ବର୍ତ୍ତଣ୍ଡାସ୍ଥ କପିଳ ଚରଣ ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ରାଜ କିଶୋର ସାହୁ ବସନ୍ତର ରୂପ ଗୁଣ ଓ ଶିକ୍ଷାଗତ ଯୋଗ୍ୟତାରେ ମୁଗ୍ଧ ହୋଇ ତାଙ୍କର କନ୍ୟା ବୀଣାପାଣିଙ୍କ ସହିତ ବିବାହ କରାଇଦେଲେ।

କିନ୍ତୁ ଦୁଃଖର କଥା ପିତା ବୀରକିଶୋର ଓ ମାତା ମଲ୍ଲୀ ଦେଇ ବେଶୀ ଦିନ



Digitized by srujanika@gmail.com

ବଞ୍ଚିଲେ ନାହିଁ । ବସନ୍ତ ସୁନାବେଡ଼ାରେ ଥିଲା ବେଳେ ପିତା କୁସୁପୁରରେ ଓ ସେ କୁସୁପୁରରେ ଥିଲାବେଳେ ମାତା ସୁନାବେଡ଼ା ଠାରେ ପ୍ରାଣତ୍ୟାଗ କଲେ । ପିତାମାତାଙ୍କ ଅନ୍ତିମ ସମୟରେ ପାଖରେ ନଥିବାରୁ ବସନ୍ତ ମର୍ମାହତ ହୋଇ ଅନେକ ଲୁହ ଝରାଇଛି ।

"ପିତା, ମାତା, ଗୁରୁ ଆମରି ଦେବତା
ଡାକିଲା କ୍ଷଣି ସେ କହନ୍ତି କଥା ।"

ସେମାନଙ୍କର ସେବା କଲେ ନିଶ୍ଚୟ ତାଙ୍କ ଆଶୀର୍ବାଦ ମିଳିବ । ଏହା ତାଙ୍କର ଦୃଢ଼ ବିଶ୍ୱାସ ।

ମୋର ପାରିବାରିକ ଅସୁବିଧା ହେତୁ ମୁଁ ଘର ଛାଡ଼ି ବାଲିଚନ୍ଦ୍ରପୁର ଠାରେ ଘରଭଡ଼ା ନେଇ ମୋ ସ୍ତ୍ରୀ ଓ ମାଆ ଛେଉଣ୍ଡ ନାତି ସହିତ ରହୁଥାଏ । ଏ କଥା ବସନ୍ତ ଜାଣିଲା । ୧୯୯୬ ମସିହାରେ ମୋତେ ବାଲିଚନ୍ଦ୍ରପୁର ଠାରେ ସାକ୍ଷାତ କରି କହିଲା, 'ସାର୍, ଆପଣ କ'ଣ ଗାଆଁକୁ ଯିବେ ନାହିଁ । ନିଜ ଘରକୁ ସିନା ଯିବେ ନାହିଁ, ଚାଲନ୍ତୁ ମୋ ଘରେ ରହିବେ । ସେହିଦିନ ଠାରୁ ଆଜି ପର୍ଯ୍ୟନ୍ତ ତାଙ୍କ ଘରେ ରହିଆସିଛି । ଏଥିରୁ ତା'ର ଗୁରୁଙ୍କ ପ୍ରତି ଭକ୍ତି କେତେ ଜଣା ପଡ଼େ । ଗରିବ ମେଧାବୀ ଛାତ୍ରଙ୍କୁ ସାହାଯ୍ୟ କରିବା, ଅନ୍ୟର ଉପକାର କରିବା, ଗ୍ରାମର ଅନୁଷ୍ଠାନମାନଙ୍କୁ ସାହାଯ୍ୟ କରିବାରେ ସେ କେବେ କୁଣ୍ଠିତ ହୋଇନାହିଁ ।

"ସତ୍ୟେ ମନରଖି ସତ୍ୟକୁ ବୁଝିବି ଗାଇବି ସତ୍ୟର ଜୟ
ମଙ୍ଗଳ କାର୍ଯ୍ୟରେ ଲାଗିଥିବି ସଦା ତେଜିଣ ସକଳ ଭୟ ॥

ନାନା ଅଭାବ ଅସୁବିଧା ମଧ୍ୟରେ ପିଲାବେଳ କଟାଇଥିବା ପିଲାଟି ନିଜେ ଧୈର୍ଯ୍ୟ ଧରି, ଅକ୍ଲାନ୍ତ ପରିଶ୍ରମ କରି ଆଜି ଗୁଣୀ, ଜ୍ଞାନୀ, ଲେଖକ ଓ ଅଧ୍ୟାପକ ହୋଇ ବିଭିନ୍ନ ଅନୁଷ୍ଠାନରୁ ସମ୍ବର୍ଦ୍ଧିତ ହେଉଛି । ତାହା ପ୍ରଶଂସନୀୟ । ଏହା ନିଜର ପରିଶ୍ରମ ଓ ଗୁରୁଜନଙ୍କ ଆଶୀର୍ବାଦର ଫଳ । ମାତ୍ର, ତାର ଜନ୍ମ ତାରିଖ ପିତାମାତାଙ୍କର ଅଜ୍ଞତା ପାଇଁ ୧୯୫୬ ପରିବର୍ତ୍ତେ ୧୯୫୫ ଲେଖାଯାଇଥିବାରୁ ସେ ବର୍ଷକ ପୂର୍ବରୁ ଅବସର ଗ୍ରହଣ କରୁଛି । ତଥାପି ତା ମନରେ ଦୁଃଖ ନାହିଁ । ତାର ଅବସର ଜୀବନ ଅଧିକ ସୁଖମୟ ହେଉ, ତାର ଚଲାପଥ କୁସୁମିତ ହେଉ ଏହାହିଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା । ସେ ସୁସ୍ଥ ସବଳ ରହି ଦୀର୍ଘଜୀବନ ଲାଭ କରୁ ଏହି କାମନା କରି ରହିଲି ।



ଅବସରପ୍ରାପ୍ତ ପ୍ରାଥମିକ ଶିକ୍ଷକ
କୁସୁପୁର, କଟକ



Digitized by srujanika@gmail.com

# ମୁଁ ତାଙ୍କୁ ଯେମିତି ଜାଣେ

**ପ୍ରଫୁଲ୍ଲ କୁମାର ଦାଶ**

ଦିନଯାଏ, ଚିହ୍ନ ରହେ । ଜୀବନରେ ବେଳେବେଳେ ଏମିତି ସମୟ ଆସେ, ଯେତେବେଳେ ଘଟଣାଟିଏ ସ୍ମୃତିର ସାକ୍ଷର ବହନ କରିଥାଏ । ସୁଖଦ ଅବା ଦୁଃଖଦ ହେଉ, ସେଇ ସ୍ମୃତି ଟିକକ ମୋତି ଭଳି ଅତୀତର ଶାମୁକା ଗର୍ଭରୁ ବାହାରି ଆସି ଆନନ୍ଦ ପ୍ରଦାନ କରିବା ସହିତ ଅବୋଧ ମନକୁ ପ୍ରବୋଧନା ଓ ସାନ୍ତ୍ୱନା ଯୋଗାଇବାର ପରିବେଶ ସୃଷ୍ଟିକରେ । ଘଟଣାଟି ସାଧାରଣ ହେଉ ବା ଅସାଧାରଣ, ଛୋଟ ହେଉ ବା ବଡ ତାହା ହୃଦୟରେ ଆଲୋଡନ ଉତ୍ପନ୍ନ କରି ଭବିଷ୍ୟତର ସ୍ୱପ୍ନକୁ ସାକାର କରିବାର ଦୃଢ ପ୍ରତିଶ୍ରୁତି ଆଣିଥାଏ ।

ଊଣେଇଶ ପଞ୍ଚାଅଶୀ ମସିହାର ଖରାଦିନ । ନିର୍ଦ୍ଦିଷ୍ଟ ମାସ ଓ ତାରିଖ ମନେ ପଡୁନାହିଁ, ତଥାପି ଯେତେ ଦୂର ସମ୍ଭବ ମଇ ମାସର ଦ୍ୱିତୀୟାର୍ଦ୍ଧ ନିଶ୍ଚୟ । ମୁଁ କପିଳ ଚରଣ ମଧ୍ୟ ଇଂରାଜୀ ବିଦ୍ୟାଳୟ ବର୍ତ୍ତଣ୍ଡାରେ ସହକାରୀ ଶିକ୍ଷକ ରୂପେ କାର୍ଯ୍ୟ କରୁଥାଏ । ପ୍ରଧାନ ଶିକ୍ଷକ ଥାଆନ୍ତି ଶ୍ରୀଯୁକ୍ତ ରାଜ କିଶୋର ସାହୁ (ଶ୍ରୀମାନ୍ ବସନ୍ତ କିଶୋର ସାହୁଙ୍କର ଶ୍ୱଶୁର) । ଆକସ୍ମିକ ଭାବେ କବି ବନ୍ଧୁ ଦୁର୍ଯ୍ୟୋଧନ ବାବୁ (ଶ୍ରୀଯୁକ୍ତ ଦୁର୍ଯ୍ୟୋଧନ ନାୟକ -ହରିପୁର, ରାଜ୍ୟପାଳ ପୁରସ୍କାର ପ୍ରାପ୍ତ ଶିକ୍ଷକ, ସୁକିନ୍ଦା ସାହିତ୍ୟ ସମାଜର ସଭାପତି) ଆମ ଅଫିସ କକ୍ଷକୁ ପଶି ଆସିଲେ । ବାର୍ଷିକ ପରୀକ୍ଷା ସରି ଯାଇଥିବାରୁ ଛାତ୍ରୋପସ୍ଥାନ ଖୁବ୍ କମ୍ ଥିଲା, ଉପସ୍ଥିତ ପିଲାମାନେ ପଡିଆରେ ଖେଳୁଥାନ୍ତି । ଆମେ ଅଫିସରେ ବସି କ୍ଷୁଦ୍ର ଭୋଜି (ଜଳଖିଆ ପର୍ବ)ର ଆୟୋଜନରେ ଥାଉ ।

ଦୁର୍ଯ୍ୟୋଧନ ବାବୁ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ସାହୁ ବାବୁଙ୍କୁ ଲକ୍ଷ୍ୟକରି କହିଲେ, ମାହାଙ୍ଗା-କୁସୁପୁରରୁ ବସନ୍ତ କିଶୋର ସାହୁ ଗେଟ୍ ପାଖରେ ତାଙ୍କ ପୁତୁରା ସହ ଅପେକ୍ଷା କରିଛନ୍ତି । ତାଙ୍କୁ ଡାକିଆଣନ୍ତୁ । ଆପଣଙ୍କ ଝିଅ ବୀଣାପାଣିକୁ ସେ ଦେଖିବାକୁ ଚାହାଁନ୍ତି । ରାଜବାବୁ କହିଲେ, ଏ କି କଥା ? ହଠାତ୍ ଚାଲିଆସିଲେ ଆଗରୁ ଖବର ନ ଦେଇ । ମୁଁ ତ ଅପ୍ରସ୍ତୁତ ଅବସ୍ଥାରେ । ଆମ ଗାଁଆରେ କ'ଣ ବା ମିଳିବ ? ଯେତେବେଳେ ଭଦ୍ରଲୋକ-ଆତିଥ୍ୟରେ ତ୍ରୁଟି ହେଲେ ... । କଥା ଶେଷ ହେବାକୁ ନ ଦେଇ ମୁଁ କହିଲି,-



Digitized by srujanika@gmail.com

ଦେଖନ୍ତୁ ସାର୍ ଅବିଳମ୍ବେ ତାଙ୍କୁ ଡାକି ଆଣନ୍ତୁ । ବାକି ସବୁ କଥା ମୁଁ ବୁଝିବି । ଛେନାଗୁଡ ଟେ ବୁଝିବ-ବିରକ୍ତ ହେଲେ ଶ୍ରୀଯୁକ୍ତ ସାହୁ ବାବୁ । ମୁଁ ନରମରେ କହିଲି-ସାହୁ ବାବୁ ! ବସନ୍ତ ବାବୁଙ୍କର ହଠାତ୍ ଆସିବାରେ କିଛି ମହତ ଅଭିପ୍ରାୟ ଥାଇପାରେ । ଆପଣ ଝିଅ ନ ଦେଖାନ୍ତୁ, ବାହାଘର ନ କରନ୍ତୁ କିନ୍ତୁ ଆପଣଙ୍କୁ ଦେଖା କରିବାକୁ ଆସୁଥିବା ଆଗନ୍ତୁକ-ଅତିଥିଙ୍କ ପାଖକୁ ଜାଣିଶୁଣି ନ ଯିବାଟା କେତେ ଦୂର ଭଲ ହେବ ଥରେ ତ ଚିନ୍ତା କରନ୍ତୁ । ଏହା ଦ୍ୱାରା ଆମର ସମ୍ମାନ, ଇଜ୍ଜତ୍ ରହିବଟି ?

ମନରେ କ'ଣ ଭାବିଲେ କେଜାଣି, ଟିକିଏ ନୀରବି ଯାଇ ହଠାତ୍ ଚେୟାର୍ ଛାଡ଼ି ବାହାରକୁ ଚାଲିଗଲେ । ଆମେ ବି ତାଙ୍କ ପଛେ ପଛେ ଉଠିଲୁ । ଗେଟ୍ ପାଖରୁ ହସ ହସ ବଦନରେ ପାଛୋଟି ଆଣିବାର ଦୃଶ୍ୟ । ଆମକୁ ଚକିତ କରି ଦେଲା । ଯଥାମାନ୍ୟ ପରେ ବସନ୍ତ ବାବୁ ଓ ଅନ୍ୟମାନେ ଆସନ ଅଳଂକୃତ କଲେ । ଇତ୍ୟବସରରେ ମୁଁ ପିଲାମାନଙ୍କ ଦ୍ୱାରା ଜଳଖିଆ (ପୂର୍ବ କ୍ଷୁଦ୍ର ଭୋଜି ପ୍ରସ୍ତୁତ) ପରିବେଷଣ କରାଇଲି । ନାହିଁ କରୁକରୁ ହାତ ଚଳିଲା । ଭୋଜି ପୂର୍ବରେ ଗପସପ ଚାଲିଥାଏ । ମୁଖ୍ୟାଂଶରେ ବସନ୍ତ ବାବୁ ସହିତ ମୁଁ । ଅନ୍ୟମାନେ ପଦେ ପଦେ ଯୋଗ କରୁଥାନ୍ତି । ବସନ୍ତ ବାବୁଙ୍କର ମିଠାମିଠା କଥା ବସନ୍ତ ପକ୍ଷୀ - କୋକିଳର କୁହୁ କୁହୁ ଧ୍ୱନି ପରି ପରି ଆମ ମନକୁ ମୋହି ଦେଉଥାଏ । ଭୋଜିପର୍ବ ଶେଷ ହେଲା ।

ବସନ୍ତ ବାବୁଙ୍କ କଥା କୁହାରେ କି ଯାଦୁ ଥିଲା କେଜାଣି, ବସନ୍ତ ବାବୁଙ୍କ ସାଙ୍ଗରେ ଧରି ସାହୁବାବୁ ଅଫିସରୁ ସିଧା ଘର ମୁହାଁ ହେଲେ । ମଙ୍ଗୁ ନଥିବା ଲୋକଟା ହଠାତ୍ ବଦଳିଗଲା କେମିତି ? ଏଇ ଭାବନା ଆମକୁ ବିସ୍ମିତ କଲା । କିଛି ସମୟ ପରେ ସେମାନେ ଫେରିଲେ । ଦୁର୍ଯ୍ୟୋଧନ ବାବୁ ଆଉ ୨/୩ଟି ଘରକୁ ଯିବାକୁ ଅନୁରୋଧ କଲେ । ବସନ୍ତ ବାବୁ କହିଲେ, ପ୍ରୟୋଜନ ନାହିଁ । ଏତିକିବେଳେ ବିଦ୍ୟାଳୟର ପ୍ରତିଷ୍ଠାତା ୰କପିଳ ଚରଣ ସାହୁ (ପ୍ରଧାନ ଶିକ୍ଷକଙ୍କ ଶ୍ୱଶୁର)ଙ୍କର ଜ୍ୟେଷ୍ଠ ପୁତ୍ର ଅବଧୂତ ସାହୁ ଦୁର୍ଯ୍ୟୋଧନ ବାବୁଙ୍କୁ ଡାକି ସ୍କୁଲ୍ ବାରଣ୍ଡାରେ କ'ଣ ଆଲୋଚନା କଲେ । ଏହି ସମୟରେ ପ୍ରଧାନ ଶିକ୍ଷକଙ୍କୁ ବସନ୍ତବାବୁ ସ୍ପଷ୍ଟ ଭାବେ ମନୋଭାବ ବ୍ୟକ୍ତି କଲେ । କହିଲେ-ଆପଣ ବିଭାଘର ପାଇଁ ପ୍ରସ୍ତୁତ ହୋଇଯାଆନ୍ତୁ । ଆପଣ କିମ୍ବା ଆମ ପକ୍ଷରୁ ଯିବା ଆସିବା ଦେଖିବା କଥା ଫର୍ମାଲିଟି ମେଣ୍ଟେନ୍ ବୋଲି ଧରି ନିଅନ୍ତୁ । ଏଇ ଆଗାମୀ ଜୁନ୍ ମାସରେ ବିବାହ କାର୍ଯ୍ୟ ସଂପନ୍ନ ହେବା ଜରୁରୀ ।

ଏତିକିବେଳେ ଦୁର୍ଯ୍ୟୋଧନ ବାବୁ ବସନ୍ତ ବାବୁଙ୍କୁ କହିଲେ, ଚାଲନ୍ତୁ କେବଳ ଗୋଟିଏ ଘରକୁ ଟିକେ ବୁଲିଆସିବା । ବସନ୍ତ ବାବୁ କହିଲେ, ବୀଣାପାଣି, ମୋର ପସନ୍ଦ । ଅନ୍ୟ ସ୍ଥାନ ଯିବାର ଆବଶ୍ୟକତା ହିଁ ନାହିଁ । ଏହା କହି ସମସ୍ତଙ୍କୁ ଅଭିବାଦନ



Digitized by srujanika@gmail.com

ଜଣାଇ ସେ ବାହୁଡିବା ପାଇଁ ଅଫିସରୁ ବାହାରିଲେ । ରାଜବାବୁ ଓ ଆମେ ଗେଟ୍ ପର୍ଯ୍ୟନ୍ତ ବଳେଇ ଦେଇ ଆସିଲୁ ।

ଦୁର୍ଯ୍ୟୋଧନ ବାବୁ ଏହା ପରେ ରାଜବାବୁ ଓ ତାଙ୍କ ଶାଳକଙ୍କ ଠାରୁ ଢେର ଗାଳି ଶୁଣିଲେ । ଘଟଣାଟି ଛୋଟ । ଗପ ଭଳି ଲାଗିଲେ ବି ସତ । ଏଇ ଘଟଣାରୁ ସ୍ପଷ୍ଟ ଭାବେ ଉପଲବ୍ଧ କଲି ବସନ୍ତ ବାବୁ ଜଣେ ଶିଷ୍ଟ-ମିଷ୍ଟ-ସ୍ପଷ୍ଟ-ଏକ ଭାଷୀ ବ୍ୟକ୍ତି । ନିଜର ଚିନ୍ତା ଓ ବିଚାରଧାରାରେ ସେ ଅଟଳ ଓ ଅଚଳ, ଗଭୀର ଆତ୍ମବିଶ୍ୱାସୀ ସେ । ଏଭଳି ବ୍ୟକ୍ତିତ୍ୱ ମୁଁ କମ୍ ଭେଟିଛି । ପରେ ଜୁନ୍ ୧୨ ତାରିଖ ୧୯୮୫ ମସିହାରେ ବୀଣାପାଣି ସହିତ ବସନ୍ତ ବାବୁଙ୍କର ଶୁଭ ବିବାହ ସଂପନ୍ନ ହେଲା । ବସନ୍ତ ବାବୁଙ୍କ ଲେଖା ଓ କାର୍ଯ୍ୟ ସଂପର୍କରେ ମୁଁ ଯେତିକି ଜାଣେ, ସେ ଜଣେ ପ୍ରତିଭାଧର ସାରସ୍ୱତ ସାଧକ, ଦୃଢ ସଂକଳ୍ପରେ ବିଚକ୍ଷଣ ସଂଗଠକ, କର୍ମଦକ୍ଷ ନିରଳସ ସୁଗୁଣ ସଂପନ୍ନ ବ୍ୟକ୍ତି । ତାଙ୍କ ଭଳି ମାହାଙ୍ଗା ଅଞ୍ଚଳରେ ଅନ୍ୟ ଜଣେ ବ୍ୟକ୍ତି ହେଉଛନ୍ତି-ମାଟିକବି ନାରାୟଣ ଚନ୍ଦ୍ର ମୁଦୁଲି । ପଲ୍ଲୀକବି ଓ ଗଣକବିଙ୍କୁ ଜନ୍ମ ଦେଇ ମାହାଙ୍ଗା ଅଞ୍ଚଳ ପ୍ରସିଦ୍ଧ । ଏବେ କିନ୍ତୁ ବସନ୍ତ ଓ ନାରାୟଣଙ୍କ ପରି ସୁଯୋଗ୍ୟ ସନ୍ତାନଙ୍କୁ ଜନ୍ମଦେଇ ସେ ଭୂମି ଗର୍ବ ଓ ଗୌରବରେ ସର୍ବଦା ମଣ୍ଡିତ ହୋଇ ରହିବ ।



ଅତା, ସୁକିନ୍ଦା, ଯାଜପୁର



Digitized by srujanika@gmail.com

# ସିଏ କେବଳ ତାଙ୍କ ପରି

## ଶ୍ରୀମତୀ ବୀଣାପାଣି ସାହୁ

ଆମ ବାହାଘର ହେଲା ୧୯୮୫ ମସିହା ଜୁନ୍ ୧୨ ତାରିଖରେ । ରଜ ଦିନେ ଥିଲା ମୁଁ ବୋହୂ ହୋଇ ଆସିଲି । ପ୍ରଥମେ ବାପା ବାହା କରିବାକୁ ନାହିଁ କରୁଥିଲେ । କ'ଣ ଦେଖିଲେ କେଜାଣି ତାଙ୍କୁ ଦେଖିଲା ପରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ସିଏ ମଧ୍ୟ ମୋତେ ଦେଖି ଏକା ଥରେ ପସନ୍ଦ କଲେ । ସେତେବେଳେ ମୁଁ କେଉଁଝର ମହିଳା ମହାବିଦ୍ୟାଳୟରେ ଆଇ.ଏ. ପରୀକ୍ଷା ଦେଇ ଫେରିଥାଏ । ଏତେ ଶିଘ୍ର ବାହାଘର ହେବ ବୋଲି ବିଶ୍ୱାସ କରି ନଥିଲି ।

ଘରେ ବୃଦ୍ଧ ଶାଶୁ, ଶଶୁର । ଆଉ ପିଲାବେଳୁ ପଡିଶା ଘରୁ ଝିଅ କରି ଆଣି ରଖିଥିବା ବନଲତା ସାହୁ(ଡାଙ୍ଗି) । ଛୋଟ ପରିବାର । ମୋତେ ମାତ୍ର ସତର ବର୍ଷ । ଘରକରଣା ଜାଣି ନଥାଏ । ମନ ଦୁଃଖରେ ଭାଙ୍ଗି ପଡୁଥାଏ ।  ସବୁ କାମରେ ଇଏ ସାହାଯ୍ୟ କଲେ । ସବୁ କଥା ଗୋଟିଗୋଟି କରି ଶିଖାଇଲେ । ବାହାଘର ପରେ ଝିଅମାନେ ଘରକୁ ଘରକରଣା ଓ ସାଜସଜା ଜିନିଷ କିଣନ୍ତି ।  ମୁଁ କିନ୍ତୁ ତାଙ୍କ ସଙ୍ଗରେ ମାର୍କେଟ ଗଲେ ମୋ ନିଜ ପାଇଁ ଚକୋଲେଟ କିଣୁଥିଲି । ସିଏ ବି ଖୁସି ହୋଇ କିଣି ଦେଉଥିଲେ ।

ପିଲାବେଳୁ ଭୁବନ ବାଳିକା ଉଚ୍ଚଙ୍ଗରାଜୀ ବିଦ୍ୟାଳୟ ଓ କେନ୍ଦୁଝର ମହିଳା ମହାବିଦ୍ୟାଳୟ ହଷ୍ଟେଲରେ ରହି ପଢୁଥିଲି । ରୋଷେଇ ବାସ ଜାଣି ନଥିଲି । ପ୍ରଥମେ ଯେଉଁଦିନ ରୋଷେଇ କଲି ସେଦିନ ଭାତ ଜାଉ ହୋଇଗଲା । ମାଂସ ତରକାରୀ ତଳ ଲାଗିଗଲା । ମୋ ବାପା ଆସିଥାଆନ୍ତି । ସେ ବିରକ୍ତ ହେଲେ । ମୋ ଶାଶୁ ଶଶୁର କିଛି କହିଲେ ନାହିଁ । ସବୁ ଚଳେଇ ନେଲେ । ମୋ ଶଶୁର ଭାରି ଭଲ ଲୋକ । ମୋତେ ସ୍ନେହରେ ମାଆ ଡାକୁଥିଲେ । ଝିଅ ପରି ସ୍ନେହ କରୁଥିଲେ । ସିଏ ଭଲ ରୋଷେଇ ଜାଣିଥିଲେ । ମୁଁ ରୋଷେଇ ଜାଣି ନଥିବା ଦେଖି ହସିଲେ । ପାଖରେ ବସି  ରୋଷେଇ ଶିଖାଇଲେ । ଶାଶୁ ବି କେତେ ରୋଷେଇ ଶିଖାଇଲେ । ପରିବା କାଟୁ କାଟୁ କେତେ ଥର ହାତ କଟିଛି, ପିଠା ଜଳିଲା ବେଳେ ମାଟି ହାଣ୍ଡି ଭାଙ୍ଗିଛି । ସବୁ ସେମାନେ ବାପାମାଆ ପରି ଚଳେଇ ନେଇଛନ୍ତି । କାହାରିକୁ ମୁଁ କେବେ ନିନ୍ଦା କରିପାରିବି ନାହିଁ । ମୋ ମନରେ ଦୁଃଖ ଯେ ମୁଁ ମୋ ଶ୍ୱଶୁରଙ୍କ ଶେଷ ସମୟରେ ତାଙ୍କୁ ଦେଖି ପାରିଲି ନାହିଁ ।

ବାହାଘରର ମାସକ ପରେ ମୁଁ ସୁନାବେଡ଼ା ଆସିଲି । ପରିବା କଟା କି



Digitized by srujanika@gmail.com

ରୋଷେଇ ଭଲ କରି ଶିଖିନଥାଏ । ପ୍ରଥମେ ପ୍ରଥମେ ଇଏ ରୋଷେଇ କଲେ । ଧୀରେ ଧୀରେ ମୁଁ ଶିଖିବାକୁ ଚେଷ୍ଟା କଲି । ତଥାପି ଭଲ ରୋଷେଇ କରିପାରୁ ନଥାଏ । ଘର କଥା ମନେ ପଡୁଥାଏ । ଥରେ ଡାଲ୍‌ମା କରିବାକୁ କହି ଦେଇ ଇଏ କଲେଜ ଗଲେ । ମୁଁ ଅମୃତଭଣ୍ଡାରୁ ଚୋପା ନଛଡ଼ାଇ ଡାଲ୍‌ମାରେ ପକାଇ ଦେଇଥିଲି । ସିଏ ଆସି ଦେଖିଲେ ଡାଲ୍‌ମାର ରଙ୍ଗ ନେଳିଆ ଦେଖାଯାଉଛି । ଚାଖିଲାରୁ ପିତା ଲାଗୁଛି । ବହେ ହସିଲେ । ମୋତେ ପଚାରିଲାରୁ ମୁଁ କହିଲି ତମେ ତ କଖାରୁରୁ ଚୋପା ଛଡ଼ାଇ ନଥିଲ । ମୁଁ ଭାବିଲି ଅମୃତଭଣ୍ଡାରୁ ମଧ୍ୟ ଚୋପା ଛଡ଼ାଯାଏ ନାହିଁ । ଆଉ ଥରେ ରୋଷେଇ ହେଲା । ତା ପରେ ମିଶି ଖାଇଲୁ । ମୋ ଭୁଲ୍‌କୁ ସିଏ ଗୋଟି ଗୋଟି ସୁଧାରିଛନ୍ତି । ଶାଶୁ ମୋତେ ରୋଷେଇ ଓ ପିଠାପଣା ଶିଖାଇଛନ୍ତି । କେଉଁ ପର୍ବପର୍ବାଣିରେ କି ପିଠା ହେବ ତାହା ମୁଁ ବାହାଘର ପରେ ଧୀରେ ଧୀରେ ଶିଖିଛି ।

ବାହଘର ପରେ ଜୁନ୍ ଶେଷ ସପ୍ତାହରେ ମୋ ପରୀକ୍ଷା ଫଳ ବାହାରିଲା । ମୁଁ ଭଲ ନମ୍ବର ରଖି ପାଶ୍ କଲି । ବି.ଏ. ପଢ଼ିବା ପାଇଁ ଇଏ ମୋତେ ଉତ୍ସାହିତ କଲେ । ତାଙ୍କ ପ୍ରେରଣା ଓ ସହଯୋଗରେ ମୁଁ ଘରୋଇ ଭାବେ କେନ୍ଦ୍ରାପଡା କଲେଜରେ ପରୀକ୍ଷା ଦେଇ ବି.ଏ. ପାଶ୍ କଲି । ଏମ୍.ଏ. ପରୀକ୍ଷା ଦେବାକୁ ମଧ୍ୟ କହୁଥିଲେ । ପିଲାଙ୍କ ଜଞ୍ଜାଳ ମଧ୍ୟରେ ମୁଁ ଆଉ ସେଥିରେ ମନ ଦେଲି ନାହିଁ ।

ଶାଶୁ ଘରେ ଇଏ ଗୋଟିଏ ପୁଅ । ଯାଙ୍କ ଭଉଣୀ ଠାରୁ ଇଏ ବହୁତ ଛୋଟ (ପ୍ରାୟ ୧୮/୨୦ବର୍ଷ) । ଡେରିରେ ଜନ୍ମ ହୋଇଥିବାରୁ ଶାଶୁ ଶଶୁରଙ୍କର ବହୁତ ଗେହ୍ଲା । କେତେବେଳେ କ'ଣ ଖାଇବେ, କ'ଣ ଖାଇବାକୁ ଭଲ ପାଆନ୍ତି ଶାଶୁ ବରାଦ କରି ରଖନ୍ତି । ଆମ ବାହାଘରର ଦୁଇ ବର୍ଷ ପରେ ପୁଅ ବବୁଲ୍‌ର ଜନ୍ମ । ପୁଅକୁ ତିନି ବର୍ଷ ହେଲା ପରେ ଝିଅ ବୁଲ୍‌ବୁଲ୍‌ର ଜନ୍ମ । ପୁଅ ଝିଅ ଦୁଇ ଜଣଙ୍କୁ ଇଏ ବହୁତ ଭଲ ପାଆନ୍ତି । ସେମାନଙ୍କର କେତେବେଳେ କ'ଣ ଦରକାର ସବୁ କଥା ବୁଝନ୍ତି ଓ ତାଙ୍କ ଅଳିଅର୍ଦ୍ଦଳି ପୂରଣ କରନ୍ତି । ପଢ଼ାପଢ଼ି ମଧ୍ୟ ଦେଖନ୍ତି । ସେମାନଙ୍କୁ ଆଜିଯାଏ ଅଭାବ କଣ ଜାଣିବାକୁ ଦେଇନାହାନ୍ତି ।

ପୁଅ ଆମର ଧୀର ଓ ଶାନ୍ତ । କିନ୍ତୁ, ଝିଅ ବୁଲ୍‌ବୁଲ୍ ବହୁତ ଜିଦ୍‌ଖୋର ଓ ଚଗଲା । ସବୁ ଜିନିଷ କିଣିବାକୁ ଜିଦ୍ କରେ । ଝିଅକୁ ଇଏ ବହୁତ ଭଲ ପାଆନ୍ତି । ତା ଜିଦି ଆଗରେ ହାର୍ ମାନନ୍ତି । ଘରେ ଅଶାନ୍ତି ହେବ ନାହିଁ ବୋଲି ତା ଆବଶ୍ୟକତା ପୂରଣ କରନ୍ତି । ସେ ଚାହୁଁଥିବା ଜିନିଷ କିଣି ଦିଅନ୍ତି । ଧୈର୍ଯ୍ୟର ସହିତ ସବୁ ସମସ୍ୟାର ସମାଧାନ କରନ୍ତି । ପିଲାମାନଙ୍କର ଭୁଲ୍‌କୁ ଇଏ ବାପା ହିସାବରେ ଯେମିତି ଶୃଙ୍ଖଳିତ ଭାବରେ ଚଳେଇ ନେଇ ସଜାଡି ଦିଅନ୍ତି, ତାହା ମୁଁ ଅନ୍ୟ କେଉଁ ପରିବାରରେ ଦେଖିନାହିଁ । ସେଥିପାଇଁ ଆମ ପରିବାର ଏକ ସୁଖୀ ପରିବାର ବୋଲି ମୁଁ ଭାବେ ।

ମୋ ବାପା ଜଣେ ହେଡ୍‌ମାଷ୍ଟର ଥିଲେ । ଆମେ ସବୁ ବହୁତ କାଇଦା



Digitized by srujanika@gmail.com

କଟକଣାରେ ବଢିଛୁ । ବଡ଼ ପାଟିରେ ହସିବା, କଥା କହିବା, କାହା ଘରକୁ ଯିବା, କାହା ସାଙ୍ଗରେ ମିଶିବାକୁ ସେ ଜମା ଭଲ ପାଆନ୍ତି ନାହିଁ । ଘରେ ଖାଇବା, ପିଇବା, ପିନ୍ଧିବା ସବୁ ତାଙ୍କ ରୁଚି ଅନୁଯାୟୀ ହୁଏ । ବୁଲ୍‌ବୁଲ୍ ଯାଙ୍କ ପାଖରେ ଯେତେବେଳେ ଗେହ୍ଲା ହୁଏ ଓ ଇଏ ତାର ସବୁ ଫରମାସ୍ ପୂରଣ କରନ୍ତି, ମୁଁ ନିଜକୁ ବୁଲ୍‌ବୁଲ୍ ସହିତ ତୁଳନା କରି ଦୁଃଖିତ ହୁଏ ।

ମୁଁ ଯାଙ୍କ ବିଷୟରେ ଏତିକି କହିବି ଯେ ସେ ସତ୍ୟବାଦୀ, କର୍ତ୍ତବ୍ୟପରାୟଣ, ସାଧୁଭାବାପନ୍ନ, ନିଷ୍କପଟ ଓ ନିରହଙ୍କାରୀ ମଣିଷ । ପରକୁ ଆପଣାର କରିବାର ଗୁଣ ଯାଙ୍କ ଠାରେ ଭରି ରହିଛି । ସାଇପଡ଼ିଶା ହୁଅନ୍ତୁ ବା ଚିହ୍ନା ଜଣା ସମସ୍ତଙ୍କୁ ସିଏ ରାତି ଅଧରେ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରିବାକୁ ଆଗେଇ ଯାଆନ୍ତି । ଛନ୍ଦ କପଟ ଆଙ୍କ ପାଖରେ ନଥାଏ । ଟଙ୍କା ପଇସାରେ ଇଏ ସବୁବେଳେ ଢ଼ିଲା । ପଇସା ଜମା ପାଖରେ ରଖିପାରନ୍ତି ନାହିଁ । ଆର୍ଥିକ ଅସୁବିଧାରେ ପଡିଥିବା ଲୋକଙ୍କୁ ଟଙ୍କା ପଇସା ସାହାଯ୍ୟ କରନ୍ତି । କିଏ ଡାକ୍ତରଖାନାରେ ପଡିଛି, କାହାର ବାହାଘର, ଜନ୍ମଦିନ, ମୃତଘର ଭୋଜିଭାତ ଆଦି କାମରେ ସେ ଶାରୀରିକ, ମାନସିକ ଓ ଆର୍ଥିକ ସାହାଯ୍ୟ ଦେଇ ପ୍ରଥମେ କାମ ଉଠାଇ ଦିଅନ୍ତି । ଗାଁରେ ସାଇପଡିଶାଙ୍କର ଝିଅ ବାହାଘର ବା ଶୁଦ୍ଧି କାମରେ ଟଙ୍କା ପଇସା ସାହାଯ୍ୟ କରିବାକୁ ପଛାନ୍ତି ନାହିଁ । ଗାଁକୁ ଗଲେ କାହାର ପିଲା ପରୀକ୍ଷା ଦେଇ ପାରୁନାହିଁ, କାହାର ଦେହ ଖରାପ-ଡାକ୍ତର ଦେଖାଇ ପାରୁନାହିଁ, ସମସ୍ତେ ସାହାଯ୍ୟ ପାଇଁ ଯାଙ୍କ ପାଖକୁ ଆସନ୍ତି । ଇଏ କାହାକୁ ମନା କରି ପାରନ୍ତି ନାହିଁ । ନିଜ କ୍ଷମତା ଅନୁଯାୟୀ କିଛିନା କିଛି ସାହାଯ୍ୟ ଦିଅନ୍ତି । ବନ୍ଧୁବାନ୍ଧବଙ୍କୁ ମଧ ସେମାନଙ୍କ ଅଭାବ ଅସୁବିଧାରେ ସାହାଯ୍ୟ କରନ୍ତି । କେତେ ଅପରିଚିତ ଲୋକ ତାଙ୍କ ଠାରୁ ଟଙ୍କା ପଇସା ନେଇ ଆଉ ଫେରାଇ ନାହାନ୍ତି । ସମସ୍ତେ ତାଙ୍କ ସରଳ ପଣିଆର ସୁଯୋଗ ନେଇ ଠକିଛନ୍ତି । ମୁଁ ଯେତେ ବାରଣ କଲେ ମାନନ୍ତି ନାହିଁ । କୁହନ୍ତି ଅସୁବିଧାରେ ପଡିଥିବା ଲୋକକୁ ସାହାଯ୍ୟ କଲେ ଭଗବାନ ଆମକୁ ସାହାଯ୍ୟ କରିବେ । ମୁଁ ମନେ ମନେ ରାଗେ । କିଛି କରିପାରେ ନାହିଁ । ସିଏ ସବୁବେଳେ ଏମିତି ।

ଇର୍ଷ୍ୟା-ହିଂସା-ଗଣ୍ଡଗୋଳ-କଳିଝଗଡ଼ା ଠାରୁ ଦୂରେଇ ରହିବାକୁ ଭଲ ପାଆନ୍ତି । ଆର୍ଥିକ କ୍ଷତି ହେଲେ ମଧ କାହା ସହିତ କଳିଝଗଡ଼ା କରନ୍ତି ନାହିଁ । ତାଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରୁଥିବା ବ୍ୟକ୍ତି ସହିତ ମଧ ସୁସମ୍ପର୍କ ରଖିବାକୁ ଚେଷ୍ଟା କରନ୍ତି । ନିଜର ଭୁଲ୍ ଥିଲେ ସଙ୍ଗେ ସଙ୍ଗେ ସ୍ୱୀକାର କରି ନିଅନ୍ତି । ଅଯଥା ଯୁକ୍ତି କରନ୍ତି ନାହିଁ । ଅନ୍ୟାୟ ଅନୀତି ବିରୁଦ୍ଧରେ ସବୁବେଳେ ପ୍ରତିବାଦ କରନ୍ତି । ଅହଙ୍କାରୀ, ଠକ ଓ ଦୁଷ୍ଟ ଲୋକଙ୍କ ଠାରୁ ସମ୍ପର୍କ ଛନ୍ନ କରି ଦିଅନ୍ତି ଧ୍ୟ ତା ଠାରୁ ଦୂରଇ ରହନ୍ତି ।

ବାହାରକୁ ସେ ସବୁବେଳେ ରାଗୀ ବୋଲି ଜଣା ପଡନ୍ତି । ସେଥିପାଇଁ ସାଇ ପଡିଶା, ବନ୍ଧୁବାନ୍ଧବ ଛାତ୍ରଛାତ୍ରୀ ସମସ୍ତେ ତାଙ୍କୁ ଡରନ୍ତି । ଭୟ କରନ୍ତି । ତାଙ୍କ ସମ୍ମୁଖରେ



Digitized by srujanika@gmail.com

କେହି କିଛି କହିପାରନ୍ତି ନାହିଁ । ରୋକ୍‌ଠୋକ କଥା କହୁଥିବାରୁ ସମସ୍ତେ ତାଙ୍କ ପାଖରୁ ଦୂରେଇ ରହନ୍ତି । ମୋ ଜାଣିବାରେ ସିଏ ସେମିତି ଲୋକ ନୁହଁନ୍ତି । ନଡ଼ିଆ ପରି ତାଙ୍କ ପ୍ରକୃତି ଓ ଚରିତ୍ର । ଉପର ଟାଣ ଓ ଭିତର କୋମଳ । ଥରେ ଯିଏ ତାଙ୍କ ସହିତ ମିଶିଛି, ସିଏ ତାଙ୍କୁ ଠିକ୍ ଭାବେ ଚିହ୍ନିଛି । ମିଶିଗଲା ପରେ ଡରଭୟ ସବୁ କୁଆଡେ ଉଭେଇ ଯାଏ । ତା ପରେ ସିଏ ତାଙ୍କ ପ୍ରଶଂସା ଗାନ କରେ ।

ସବୁବେଳେ ସତ ଓ ନ୍ୟାୟ କଥା କହୁଥିବାରୁ ଅନେକ ତାଙ୍କ ଉପରେ ରାଗନ୍ତି । ଇଏ କିନ୍ତୁ କେଉଁଠି ସାଲିସ୍ କରନ୍ତି ନାହିଁ । ସବୁବେଳେ ନ୍ୟାୟ ପାଇଁ ଲଢୁଥିବାରୁ ତାଙ୍କର ଉଚ୍ଚ ରକ୍ତଚାପ ରହିଛି । ବେଳେ ବେଳେ ଟିକେ ଟିକେ କଥାରେ ରାଗି ଉଠନ୍ତି । ମୁଁ ସେତେବେଳେ ଚୁପ୍ ରହିଗଲେ ସମସ୍ୟାର ସମାଧାନ ହୋଇଯାଏ ।

ସବୁବେଳେ ତାଙ୍କର ଲେଖା ପଢ଼ା ଓ ସାହିତ୍ୟ ଆଲୋଚନା । ଘର ଚଳିବା ପାଇଁ ମାସକୁ ଥରେ ଦୋକାନ ସଉଦ ଆଉ ସପ୍ତାହକୁ ଥରେ ପନିପରିବା ଆଣି ରଖିଦେଲେ ତାଙ୍କ ଦାୟିତ୍ୱ ସରିଯାଏ ବୋଲି ଭାବନ୍ତି । ବାକି ଯାହା ଦରକାର ସବୁ ମୋତେ କିଣି ଘର ଚଳେଇବାକୁ ପଡେ । ଯେତେ କହିଲେ ହଁ କରିବା କହି ଟାଳି ଯାଆନ୍ତି । ସୁନାବେଡ଼ାରେ ମୋତେ ଯେତେ ଦୋକାନୀ ଚିହ୍ନିଛନ୍ତି, ତାଙ୍କୁ ଚିହ୍ନି ନାହାନ୍ତି । ତାଙ୍କର ସାହିତ୍ୟିକ ଓ ବଡ଼ବଡ଼ ଲୋକଙ୍କ ସହିତ ସମ୍ପର୍କ । ଲୁଗାପଟା ଜାମା ତାଙ୍କୁ କିଣି ଆସେ ନାହିଁ । ଯିଏ ଯାହା କୁହେ ପଇସା ବଢ଼ାଇ ଦିଅନ୍ତି । ବାରଗେନିଙ୍ଗ ଜମା କରିପାରନ୍ତି ନାହିଁ । ତାଙ୍କ ପାଇଁ ପ୍ୟାଣ୍ଟ ସାର୍ଟ ଲୁଙ୍ଗି ତଉଲିଆ ସବୁ ମୁଁ କିଣେ ।

ମୋ ଶାଶୁ ଶଶୁର ଯେଉଁ ଝିଅକୁ ପିଲାବେଳୁ ଝିଅ କରି ଆଣିଥିଲେ ଇଏ ତାକୁ ମାଟ୍ରିକ ଯାଏ ପାଠ ପଢ଼ାଇ ମଣିଷ କଲେ । ବିବାହ ବୟସ ହେବାରୁ ତାକୁ ଉପଯୁକ୍ତ ପାତ୍ରରେ ବିବାହ ଦେଇ ଏକ ପୁଣ୍ୟ କାମ କରିଛନ୍ତି । ସେଇ ଝିଅ ଆଜି ସମାଜରେ ପ୍ରତିଷ୍ଠିତ ହୋଇ ନିଜ ଘର ସଂସାର କରିଛି । ୟାଙ୍କ ଠାରେ ଏତେ ଭଲ ଗୁଣ ଅଛିଯେ ମୁଁ ନିଜକୁ ବହୁତ ଛୋଟ ମନେ କରେ । ତାଙ୍କ ସହିତ କେହି ତୁଳନୀୟ ନୁହନ୍ତି । ସିଏ କେବଳ ତାଙ୍କ ପରି ।

ମୋର ଭଗବାନଙ୍କ ପାଖରେ ଏତିକି ମାଗୁଣି, ପିଲାମାନେ ମୋର ଭଲରେ ଓ ସୁଖରେ ରୁହନ୍ତୁ । ୟାଙ୍କୁ ସବୁବେଳେ ନୀରୋଗ ଓ ସୁସ୍ଥ ରଖନ୍ତୁ । ଅବସରପରେ ମୁଁ କିପରି ୟାଙ୍କ ଦେହପାର ଯତ୍ନ ନେବି ସେଥିପାଇଁ ମୋତେ ଶକ୍ତି ପ୍ରଦାନ କରନ୍ତୁ । ମୋତେ ଅହି ସୁଲକ୍ଷଣୀ କରି ରଖନ୍ତୁ । ମୁଁ ସଦା ସୁହାଗନ ରହେ । ମୋ ଜୀବନ ୟାଙ୍କ ଆଖି ଆଗରେ ଯାଉ ।



କୁସୁପୁର, କଟକ



Digitized by srujanika@gmail.com

# ମୋ ବାବା ମୋର ଆଦର୍ଶ ଓ ପ୍ରେରଣାର ଉତ୍ସ

ବୁଲ୍‌ବୁଲ୍ ପ୍ରିୟଦର୍ଶିନୀ ସାହୁ

ବାପାଙ୍କ ସାହାଯ୍ୟ, ସହଯୋଗ, ସ୍ନେହ ଶ୍ରଦ୍ଧା ପାଇ ଶିଶୁ ଛୋଟରୁ ବଡ଼ ହୁଏ । ପିଲାଙ୍କ ଭଲ-ମନ୍ଦ, ସୁଖ-ଦୁଃଖ ସହିତ ବାପା ସବୁବେଳେ ଜଡିତ ରୁହନ୍ତି । ପିଲାଙ୍କୁ ଭଲ ଓ ଆଦର୍ଶ ମଣିଷ କରିବାକୁ ସେ ପାଦେ ପାଦେ ଜଗନ୍ତି । ପ୍ରତି ପଦକ୍ଷେପରେ ସାହାଯ୍ୟ ସହଯୋଗର ହାତ ବଢ଼ାନ୍ତି । ସବୁ ଅଳିଅର୍ଦ୍ଦଳି ସହି ସେମାନଙ୍କୁ ଖୁସି ପ୍ରଦାନ କରନ୍ତି । ଶିଶୁ ବଡ଼ ହେଲେ ବାପାଙ୍କ ପରିଚୟରେ ପରିଚିତ ହୁଏ ।

ଶିଶୁକୁ ବଡ଼ କରିବାରେ ବାପାଙ୍କ ପରି ମାଆଙ୍କର ମଧ୍ୟ ଯଥେଷ୍ଟ ଭୂମିକା ରହିଛି । ପିତା-ମାତାଙ୍କ ମଧ୍ୟରେ ତୁଳନା କରିବା ଠିକ୍ ନୁହେଁ । ଶିଶୁଙ୍କୁ ମଣିଷ କରିବାରେ ଉଭୟଙ୍କର ଭିନ୍ନ ଭିନ୍ନ ଭୂମିକା ଅଛି । ଯାହାକୁ ଶବ୍ଦରେ ପ୍ରକାଶ କରିବା ସହଜ ନୁହେଁ । ମାଆ ପିଲାଙ୍କୁ ସ୍ନେହ, ଶ୍ରଦ୍ଧା କରନ୍ତି । ଖାଇବା ପିଇବା ଦାୟିତ୍ୱ ନିଅନ୍ତି । ସ୍ୱାସ୍ଥ୍ୟର ଯତ୍ନ ନିଅନ୍ତି । ବାପା ଅନୁଶାସନ ମଧ୍ୟରେ ପିଲାଙ୍କୁ ରଖି ମଣିଷ କରନ୍ତି । ତେଣୁ ଉଭୟ ମୋ ପାଇଁ ବଡ଼ ଓ ସ୍ମରଣୀୟ । ତେବେ ମୁଁ ଝିଅ ପିଲା ହୋଇଥିବାରୁ ମୋ ଜୀବନ ଗଠନରେ ବାପାଙ୍କର ଅବଦାନ ଅଧିକ ବୋଲି ମୁଁ ଅନୁଭବ କରେ । ମୋର କାର୍ଯ୍ୟକଳାପ ଓ ଶରୀରର ଗଠନ ବାବାଙ୍କ ପରି । ମୋତେ ଦେଖି ମୁଁ ବାପା( ଡକ୍ଟର ବସନ୍ତ କିଶୋର ସାହୁ)ଙ୍କ ଝିଅ ବୋଲି ଅନେକ ଅନୁମାନ କରି କୁହନ୍ତି । ଏହା ଶୁଣି ମୁଁ ନିଜକୁ ଗର୍ବ ଅନୁଭବ କରେ ।

ଆଜିଯାଏ ବାବା ମୋର ସବୁ ଅଳିଅର୍ଦ୍ଦଳିକୁ ପୂରଣ କରିଛନ୍ତି । ଆମ ପରିବାରରେ ଆମେ ଦୁଇ ଭାଇଭଉଣୀ । ଭାଇ ମୋ ଠାରୁ ବଡ଼ । ବାବା ପୁଅ-ଝିଅ ମଧ୍ୟରେ ଫରକ୍ ରଖନ୍ତି ନାହିଁ । ସେ ଭାଇକୁ ଯେତିକି ଭଲ ପାଆନ୍ତି, ମୋତେ ମଧ୍ୟ ସେତିକି ଭଲ ପାଆନ୍ତି । ମୁଁ ଅନୁଭବ କରେ ଯେ ବାବା ଭାଇ ଠାରୁ ମୋତେ ଅଧିକ ଭଲ ପାଆନ୍ତି । ପିଲାବେଳେ ଭାଇ ମୋତେ ମାରିଲେ କି ଗାଳି ଦେଲେ ବାପା ଭାଇକୁ ତାଗିଦ୍ କରନ୍ତି । ମୋତେ ସବୁବେଳେ ଜୀବନରେ ଭଲ ଓ ଆଦର୍ଶ ମଣିଷ ହେବାପାଇଁ ବୁଝାନ୍ତି । ତାଙ୍କ ଦିଗ୍‌ଦର୍ଶନ ଓ ଆଦର୍ଶବାଦୀ ସଂସ୍କାର ଓ ଚିନ୍ତାଧାରା ଫଳରେ ଆଜି ମୁଁ ଏତେ ବାଟ ଆସି ପାରିଛି । ପିଲାବେଳେ ମୁଁ ବହୁତ ଚଗଲା ଓ ଦୁଷ୍ଟ ଥିଲି । ବାପା ପ୍ରତି ପଦକ୍ଷେପରେ ମୋତେ ସଜାଡ଼ିଛନ୍ତି ଓ ଭଲ ମଣିଷ କରିବାକୁ ଚେଷ୍ଟା କରିଛନ୍ତି । ପାଟି



Digitized by srujanika@gmail.com

କଲେ ମଧ୍ୟ ସେହି ପାଟି କ୍ଷଣିକ । ଉପରେ ପାଟି କଲେ ମଧ୍ୟ ଅନ୍ତରରେ ମୋତେ ଅଧିକ ସ୍ନେହ କରନ୍ତି ଓ ମୋର ସବୁ ଦାବୀ ପୂରଣ କରନ୍ତି । ଘରେ ଦରକାର ନଥିବା ଜିନିଷ କିଣିବାକୁ ମୁଁ ଜିଦ୍‌କଲେ ମଧ୍ୟ କିଣି ଦିଅନ୍ତି ।

ବାବା ଚାହାଁନ୍ତି ମୁଁ ତାଙ୍କ ପରି ସତ୍ୟବାଦୀ, ନିଷ୍କପଟ, ହୃଦୟବାନ, ପରୋପକାରୀ ହୁଏ । ମୋ କାର୍ଯ୍ୟ ଦ୍ୱାରା ସମସ୍ତଙ୍କ ହୃଦୟ ଜୟ କରେ । ତା ସହିତ ଆତ୍ମନିର୍ଭରଶୀଳ ହୋଇ ନିଜ ଗୋଡ଼ରେ ନିଜେ ଛିଡ଼ା ହୁଏ । ଆତ୍ମନିର୍ଭରଶୀଳ ମଣିଷ ଦୁନିଆର ସବୁ ପରିସ୍ଥିତିର ମୁକାବିଲା କରିପାରେ ବୋଲି ବାବା ମୋତେ ବୁଝାନ୍ତି । ସେଥିପାଇଁ ସେ ମୋତେ ପାଠ ପଢ଼ାଇ ଉଚ୍ଚଶିକ୍ଷିତ କରିବାକୁ ଚେଷ୍ଟା କରିଛନ୍ତି । ମୁଁ ମୋ ପାରୁ ପର୍ଯ୍ୟନ୍ତ ତାଙ୍କ ଆଶା ପୂରଣ କରିବାକୁ ଚେଷ୍ଟା କରୁଛି ।

ମୋ ବାବା ମୋତେ ଅଧିକ ସ୍ନେହ କରନ୍ତି ବୋଲି ମୁଁ ଅନୁଭବ କରେ । ଆଜିଯାଏ ସିଏ ମୋର ଛୋଟରୁ ବଡ଼ ସବୁ ଇଚ୍ଛା ପୂରଣ କରିଛନ୍ତି । କେବେ ମୋତେ ଅଣଦେଖା କି ଅବହେଳା କରିନାହାନ୍ତି । ଅଭାବ ଅସୁବିଧାରେ ରହି ମଧ୍ୟ ମୋତେ ଅଭାବ କ'ଣ ଅନୁଭବ କରିବାକୁ ଦେଇ ନାହାନ୍ତି । ଉଦାହରଣ ସ୍ୱରୂପ ମୁଁ କଲେଜରେ ପଢ଼ିଲା ବେଳେ କେତେକ ପିଲାଙ୍କର ସ୍କୁଟି ଥିଲା । ମୁଁ କହିଲି ଆଉ ସାଇକେଲ୍ ଠେଲି କଲେଜ ଯାଇପାରିବି ନାହିଁ । ବାପା ସଙ୍ଗେ ସଙ୍ଗେ Income tax ପାଇଁ ରଖିଥିବା ଟଙ୍କାରେ ମୋ ପାଇଁ ସ୍କୁଟିଟିଏ କିଣି ଦେଲେ । ପ୍ଲସ ଟୁ ପରେ ମୁଁ କହିଲି ସୁନାବେଡାରେ ନପଢ଼ି ବାହାରେ ପଢ଼ିବାକୁ । ମମି ମନା କରିବା ସତ୍ତ୍ୱେ ବାବା ସେଥିରେ ରାଜି ହୋଇ ମୋ ନାଁ ରେଭେନ୍‌ସା କଲେଜରେ ଲେଖାଇ ଦେଲେ । ସେଠି ସବୁଠାରୁ ଭଲ ହଷ୍ଟେଲ 'ପରିଜା ହଷ୍ଟେଲ'ରେ ରହିବାର ସୁବିଧା କରାଇଦେଲେ । ଅବଶ୍ୟ କେତେକ ଶାରିରୀକ ଅସୁସ୍ଥତା କାରଣରୁ ମୁଁ ସେଠି ପଢ଼ିପାରିଲି ନାହିଁ । ବାବା ପୁଣି କଷ୍ଟ ସ୍ୱୀକାର କରି ମୋର ଗୋଟିଏ ବର୍ଷ ଯେପରି ନଷ୍ଟ ନହେବ ସେଥିପ୍ରତି ଦୃଷ୍ଟି ଦେଲେ । ମୋତେ ପୁଣି ତାଙ୍କ କଲେଜକୁ ଟ୍ରାନସ୍‌ଫର କରାଇନେଲେ । ଏଥିପାଇଁ ତାଙ୍କୁ ଅନେକ ଶାରୀରିକ, ମାନସିକ କଷ୍ଟ ସ୍ୱୀକାର କରିବା ସହିତ ଆର୍ଥିକ କ୍ଷତି ସହିବାକୁ ପଡିଥିଲା । ସେଠି ତାଙ୍କ ପାଖରେ ଓ ତତ୍ତ୍ୱାବଧାନରେ ରହି ମୁଁ କୃତିତ୍ୱର ସହିତ ଯୁକ୍ତ ତିନି ପାଶ୍ କଲି । ତାଙ୍କ ପ୍ରେରଣାରେ କମ୍ପାନୀ ସେକ୍ରଟାରୀର ଫାଉଣ୍ଡେସନ ପାଶ କଲି । ଏବେ ଇଣ୍ଟର ମଧ୍ୟ ପଢ଼ାପଢ଼ି କରିବା ସହିତ 'ବ୍ୟାଙ୍କିଙ୍ଗ ଓ ଇନସୁରାନସ୍ ମ୍ୟାନେଜମେଣ୍ଟ'ରେ ଅଧ୍ୟୟନ କରୁଛି । ବାପା ସବୁବେଳେ ଚାହାନ୍ତି ମୁଁ ସୁରକ୍ଷିତ ଓ ସୁସ୍ଥ ରହି ପାଠରେ ନାଁ କମାଏ ।

ଏବେ ମୋର ଲ୍ୟାପଟପ୍ ଦରକାର ପଡିଲା । ବାପାଙ୍କର କାନ ଅପରେସନ ହୋଇଥିଲା । ଦେହ ଅସୁସ୍ଥ ଥାଇ ମଧ୍ୟ ସେ ସଙ୍ଗେ ସଙ୍ଗେ ମୋ ପାଇଁ ଲ୍ୟାପଟପ୍ କିଣି ଦେଲେ । ଏଥିରୁ ଜଣାପଡେ ବାବା କିପରି ପିଲାମାନଙ୍କର ଛୋଟରୁ ଛୋଟ ଇଚ୍ଛାକୁ ପୂରଣ କରନ୍ତି । ତା ସହିତ ପିଲାମାନଙ୍କର ଯେପରି କିଛି ଅସୁବିଧା ନହୁଏ ସେଥିପାଇଁ ସର୍ବଦା ସଜାଗ ରୁହନ୍ତି ।



Digitized by srujanika@gmail.com

ଖରାପ ସମୟ କେବେ କାହାକୁ କହିକି ଆସେନାହିଁ । କିନ୍ତୁ, ଯେତେବେଳେ ଆସିବ ମୁଁ ଜାଣିଛି ମୋ ପଛରେ ଜଣେ ଅଛନ୍ତି । ସିଏ ହେଉଛନ୍ତି ମୋ ବାବା । ମୋର ଆଜମା ଥିବାରୁ ବାବା ସବୁବେଳେ ମୋ ପାଇଁ ଚିନ୍ତିତ । ଦେହପାର ଯତ୍ନ ନେବା ପାଇଁ କୁହନ୍ତି । ଆଲର୍ଜି ଜିନିଷ ଖାଇବାକୁ ମନା କରନ୍ତି । କିନ୍ତୁ ମୁଁ ବାରଣ ନମାନି ବେଳେବେଳେ ଖାଇଦିଏ । ଗତବର୍ଷ ମୁଁ ଭୁବନେଶ୍ୱରରେ କମ୍ପାନୀ ସେକ୍ରେଟାରୀ କୋଚିଂ ନେଉଥିଲା ବେଳେ ଥରେ ଅଧିକ ଅସୁସ୍ଥ ହୋଇ ପଡିଲି । ଆଜ୍‌ମା ବାହାରିଲା । ବାବା ସଙ୍ଗେ ସଙ୍ଗେ ଭାଇକୁ କହି ମୋତେ ମେଡିକାଲରେ ଆଡମିସନ କରାଇ ଭଲ କଲେ । ନିଜେ ସୁନାବେଡାରେ ଏକୁଟିଆ ହଇରାଣ ହୋଇ ରହିଲେ । ମମିକୁ ମୋ ଦାୟିତ୍ୱ ନେବାକୁ ଭୁବନେଶ୍ୱର ପଠାଇଦେଲେ । ମମି ମୋ ପାଖରେ କୋଚିଂ ସରିବା ପର୍ଯ୍ୟନ୍ତ ରହିଲା । ଏଥିରୁ ବାବାଙ୍କର ମୋ ପ୍ରତି କେତେ ସ୍ନେହ ଅନୁଭବ କରିହୁଏ । କେବଳ ବାବା ନୁହଁନ୍ତି ମମି ମଧ୍ୟ ମୋତେ ଅନେକ ସ୍ନେହ କରେ ।

ମୋତେ ଗର୍ବର ସହିତ କହିବାକୁ ପଡୁଛି ସଂସାରରେ ମୋ ବାବାଙ୍କ ପରି ଆଉ କାହାର ଏପରି ବାପା ନାହାନ୍ତି । ମୋ ବାବା ମୋ ପାଇଁ ଆଦର୍ଶ । ମୋ ପ୍ରେରଣାର ଉତ୍ସ । ମୋ ଜୀବନ ଗଠନରେ ତାଙ୍କର ଭୂମିକା ଅନେକ । ଏହା ଭଗବାନଙ୍କର ମୋ ପାଇଁ ସବୁଠାରୁ ବଡ଼ ଉପହାର । ଭଗବାନ ସବୁଠାରେ ରହି ପାରନ୍ତି ନାହିଁ । ତେଣୁ ସେ ମୋ ବାବାଙ୍କୁ ତାଙ୍କ ସ୍ଥାନରେ ମୋ ପାଖକୁ ପଠାଇଛନ୍ତି । ତାଙ୍କ ସ୍ନେହ ଶ୍ରଦ୍ଧା ପାଇ ମୁଁ ଜୀବନର ସବୁ ପରୀକ୍ଷାରେ ଆଜିଯାଏ ଉତ୍ତୀର୍ଣ୍ଣ ହୋଇଛି । ଜଣେ ପିଲାକୁ ଆଗକୁ ବଢ଼ିବାକୁ ଯେଉଁ ପ୍ରୋତ୍ସାହନ ଦରକାର ମୁଁ ମୋ ବାବାଙ୍କ ଠାରୁ ପାଇଛି । ସବୁ ପ୍ରକାର ପ୍ରୋତ୍ସାହନ ଯଥା mental, emotional ଓ financial ମୁଁ ତାଙ୍କ ଠାରୁ ପାଇଛି ।

ଶେଷରେ ଠାକୁରଙ୍କୁ ଧନ୍ୟବାଦ ଜଣାଉଛି ଯେ ସେ ମୋ ଜୀବନରେ ମୋ ବାବା ମାଆଙ୍କୁ ପ୍ରଦାନ କରିଛନ୍ତି । ଦୁଇଜଣଙ୍କର ସ୍ନେହ ଶ୍ରଦ୍ଧା ବିନା ମୁଁ ପାଦେ ମଧ୍ୟ ଆଗେଇ ପାରନ୍ତି ନାହିଁ । ଏମିତି ବାପାମାଆଙ୍କୁ ପାଇ ମୁଁ ବହୁତ ଭାଗ୍ୟଶାଳୀ । ସେମାନଙ୍କ ନେଇ ମୁଁ ଗର୍ବ ଅନୁଭବ କରେ । ଦୁହିଁଙ୍କର ଆଶୀର୍ବାଦ, ସାହାଯ୍ୟ ସହଯୋଗ ମୋତେ ଆଜି ଏତେ ବାଟରେ ଆଣି ପହଞ୍ଚାଇ ଦେଇଛି । ଆଗକୁ ମଧ୍ୟ ସେମାନଙ୍କର ସାହାଯ୍ୟ ସହଯୋଗ ଅବ୍ୟାହତ ରହିବ । ମୋ ବାପାଙ୍କ ପାଇଁ ମୁଁ ଗର୍ବିତ । ଯାହାର ତୁଳନା ଶବ୍ଦରେ ମଧ୍ୟ କରାଯାଇ ପାରିବ ନାହିଁ । ଭଗବାନଙ୍କ ନିକଟରେ ପ୍ରାର୍ଥନା ମୋତେ ସବୁଦିନେ ଏହିପରି ବାପାଙ୍କର ଆଶୀର୍ବାଦ ସାହାଯ୍ୟ ସହଯୋଗ ପ୍ରଦାନ କରୁଥାନ୍ତୁ ।



କୁସୁପୁର, କଟକ



Digitized by srujanika@gmail.com

# କିଛି ଅଭୁଲା ସ୍ମୃତି

## ଅଧ୍ୟାପିକା ଝାନସୀ ସିଂହ

ଡକ୍ଟର ବସନ୍ତ କିଶୋର ସାହୁ ଜଣେ ସର୍ଜନଶୀଳ ମୁକ୍ତ ମଣିଷ । ପ୍ରାୟେ ଚାରି ଦଶନ୍ଧି ଧରି ତାଙ୍କ ଲେଖନୀ ଜାରି ରହିଛି କବିତା, ଶିଶୁ କବିତା, ଲୋକସାହିତ୍ୟ, ପ୍ରବନ୍ଧ, ଗବେଷଣା ତଥା ସମ୍ପାଦନା କ୍ଷେତ୍ରରେ । କର୍ମରେ ଅଧ୍ୟାପନା ଓଡ଼ିଆ ଭାଷା ସାହିତ୍ୟ ବିଭାଗର । ଜୀବନ ରସାଣିତ ଉପାନ୍ତ ଅଞ୍ଚଳରେ ସାହିତ୍ୟକୁ ନେଇ । ଆତ୍ମୀୟତା, ତଲ୍ଲୀନତା ଏବଂ ଅନ୍ତରାତ୍ମାର ନିବିଡ଼ ଆଶ୍ଳେଷ ସାହିତ୍ୟ ଅନୁଷ୍ଠାନକୁ ନେଇ । ଏହି ନିର୍ଭୀକ ମଣିଷଙ୍କ ପ୍ରଚେଷ୍ଟାରେ ଗଢ଼ି ଉଠିଛି ବନଫୁଲ, ବନପ୍ରଭା ଭଳି ସାହିତ୍ୟ ଅନୁଷ୍ଠାନ । ଏହା ବ୍ୟତୀତ ଏହି ସାରସ୍ୱତ ସାଧକଙ୍କ ନିଷ୍ଠା, କର୍ମ ପ୍ରବଣତା ଏବଂ ଅନୁଷ୍ଠାନଧର୍ମିତାର ଝଲକ ଦେଖିବାକୁ ମିଳେ ଓଡ଼ିଆ ଲେଖକ ପାଠକ ସମ୍ମେଳନ, ସେମିଳିଗୁଡ଼ା, ବର୍ଷା ସାହିତ୍ୟ ସଂସଦ, ଦାମନଯୋଡ଼ି, ସତ୍ତା ସାହିତ୍ୟ ସଂସଦ, କୋରପୁଟରେ । କେବଳ ସେତିକି ନୁହେଁ ରାଜ୍ୟର ବିଭିନ୍ନ ସାହିତ୍ୟ ସଂଗଠନ ସହ ତାଙ୍କର ସଂପୃକ୍ତି ରହିଛି । ଏଠାରେ ମୁଁ ସେହି ସୃଜନଶୀଳ ପ୍ରତିଭାଙ୍କ ସାରସ୍ୱତ ଦିଗକୁ ଆଲୋଚନା ନକରି ବ୍ୟକ୍ତିଗତ ଅନୁଭୂତିରୁ କିଛି ସ୍ମୃତିଚାରଣ କରୁଛି ଯାହା ତାଙ୍କ ବ୍ୟକ୍ତିତ୍ୱକୁ ପରଖିବାରେ ସାହାଯ୍ୟ କରିବ ।

ଦୁଇ ବର୍ଷ ତଳର କଥା । ଭଞ୍ଜ ବିହାରରୁ ଜାତୀୟ ସେବା ଯୋଜନାର କାର୍ଯ୍ୟକ୍ରମ ଅଧିକାରୀ ଭାବେ ଡେପୁଟେସନରୁ ଫେରି ସେମିଳିଗୁଡ଼ା ମହାବିଦ୍ୟାଳୟରେ ଅଧ୍ୟାପନାରେ ଯୋଗ ଦେଇ ସାରିଥାଏ । ବସନ୍ତ ସାର୍‌ଙ୍କ ସହ ଆକସ୍ମିକ ଦେଖାହେଲା ସେମିଳିଗୁଡ଼ା କଲେଜ ପରିସରରେ । ଅନ୍ତରଙ୍ଗ ଆଳାପ ଦଶ/ପନ୍ଦର ମିନିଟ୍‌ର କଥାବାର୍ତ୍ତା । କହିଲି ସାର୍ ଆପଣଙ୍କ ଘରକୁ ଆସିବି, କଥା ହେବା .... । ଜାନୁଆରୀ ୧୫ ତାରିଖ ୨୦୧୧ ସନ୍ଧ୍ୟା ଆଗତ ପ୍ରାୟ । ମୁଁ ଏବଂ ଡକ୍ଟର ମନମୋହନ ମିଶ୍ର ବସନ୍ତ ସାର୍‌ଙ୍କ ଏଚ୍.ଏ.ଏଲ୍. କ୍ୱାଟରସ୍ଥ ବାସଭବନରେ ପହଞ୍ଚିଲୁ । ସାର୍ କବାଟ ଖୋଲିଲେ । ଶ୍ରଦ୍ଧାଳୁ ମଣିଷ । ହସହସ ସମ୍ଭାଷଣ ଆମକୁ ପାଛୋଟି ନେଇ ବସିବାକୁ କହିଲେ । ପତ୍ନୀଙ୍କୁ ଚା ଏବଂ ଜଳପାନ ପାଇଁ ନିର୍ଦ୍ଦେଶ ଦେଲେ । ମୁଁ କହିଲି ସାର୍ ଜାନୁଆରୀ ୧୭ ତାରିଖ ବାପାଙ୍କର ୭୪ତମ ଜନ୍ମଦିନ(ଶ୍ରୀ କୃଷ୍ଣ ସିଂହ) ପାଇଁ ଆପଣଙ୍କୁ ନିମନ୍ତ୍ରଣ



Digitized by srujanika@gmail.com

କରିବାକୁ ଆସିଥିଲି । ସେମିଳିଗୁଡ଼ାସ୍ଥ ଶ୍ରୀରାମ ମନ୍ଦିର ପରିସରରେ ସନ୍ଧ୍ୟା ୪ଟା ସମୟରେ ଅନୌପଚାରିକ ଭାବେ ଏକ ସଭାର ଆୟୋଜନ କରାଯାଇଛି । ଆମେ ତାଙ୍କୁ ଜନ୍ମଦିନ ଶୁଭେଚ୍ଛା ଦେବା ସହିତ ଆଗାମୀ ଦିନରେ ତାଙ୍କ ଉପରେ ଏକ ଅଭିନନ୍ଦନ ପୁସ୍ତିକା ପ୍ରକାଶ କରିବାର ଯୋଜନା ରଖିବା । ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ଯଥା ସମୟରେ ଆସି ଆମ ଗହଣରେ ପହଞ୍ଚି ସଭାକାର୍ଯ୍ୟ ପରିଚାଳନା କଲେ ଏବଂ ଉପସ୍ଥିତ କୃଷ୍ଣ ସିଂହ ପ୍ରେମୀଙ୍କୁ ଜଣେଇଲେ ଆଗାମୀ ୭୫ତମ ଶୁଭ ଜନ୍ମ ଦିବସରେ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶର ଯୋଜନା କଥା । ଏହି କାର୍ଯ୍ୟ ପାଇଁ ସେହିଠାରେ ଲୋଡ଼ିଲେ ସମସ୍ତଙ୍କ ଶ୍ରଦ୍ଧା, ସାହାଯ୍ୟ, ସହଯୋଗ ଓ ଆପଣାପଣ ।

ଏହା ପରେ ସେ ଆଉ ପଛେଇ ନାହାନ୍ତି । ବାରମ୍ବାର ମୋତେ ଫୋନ୍ କରିଛନ୍ତି । ଯଥା ସମୟରେ ତାଙ୍କ ଘରେ, ଜଗନ୍ନାଥ ମନ୍ଦିର ପରିସରରେ ବୈଠକ ବସିଛି । ସାର୍‌ଙ୍କ ନେତୃତ୍ୱରେ ଅଭିନନ୍ଦନ କମିଟି ଗଠିତ ହୋଇଛି । ଶ୍ରୀ କୃଷ୍ଣ ସିଂହଙ୍କ ଜୀବନୀ, ସାହିତ୍ୟ, ସମାଜସେବା, ଶିକ୍ଷାନୁଷ୍ଠାନ, ଭୂଦାନ ସର୍ବୋଦୟ ଆନ୍ଦୋଳନ ସହ ଜଡ଼ିତ ଥିବା ବହୁ ବ୍ୟକ୍ତି, ଶୁଭେଚ୍ଛୁ, ଲେଖକ, ପାଠକ ତଥା ଓଡ଼ିଶାର ବହୁ ବରେଣ୍ୟ ଲେଖକ/ଲେଖିକା ଏବଂ ସମାଜସେବୀଙ୍କୁ ସେ ପତ୍ର ପଠାଇଛନ୍ତି ଏବଂ ବାରମ୍ବାର ଫୋନ୍ କରି ଲେଖା ସଂଗ୍ରହ କରିଛନ୍ତି । ୭୫ତମ ଜନ୍ମଦିନ ଉତ୍ସବକୁ କିପରି ଉତ୍ସବ ମୁଖର କରାଯିବ ଓ ଏହି ଅବସରରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆସିଥିବା ସମ୍ମାନିତ କବି/ ଲେଖକ ଏବଂ ସମାଜସେବୀଙ୍କୁ ସମ୍ମାନୀତ କରାଯିବ ତଥା ଓଡ଼ିଆ ଲେଖକ ପାଠକ ସମ୍ମେଳନକୁ କିପରି ପୁନର୍ଜୀବନ ପ୍ରଦାନ କରାଯିବ ସେହି ସବୁ କାର୍ଯ୍ୟକୁ ସେ ଅତି ଉତ୍ତମ ରୂପେ ପରିଚାଳନା କରିଥିଲେ । କେବଳ ନିଷ୍ଠା, ଉତ୍ସାହ ଓ ସାଂଗଠନିକ ଦକ୍ଷତା ନୁହେଁ ପୂଜ୍ୟପୂଜାର ସେ ଜଣେ ଦରଦୀ ସ୍ତାବକ ମଧ୍ୟ ।

ତାଙ୍କ ବିବେକାବୋଧର ମାପକାଠିରେ ଯାହା ନ୍ୟାୟ-ଅନ୍ୟାୟ, ଭଲ-ମନ୍ଦ, ଛଳନା-ପ୍ରତାରଣା, ବିଶ୍ୱାସ-ଅବିଶ୍ୱାସ ତାହାକୁ ସ୍ପଷ୍ଟ ରୂପେ ପ୍ରକାଶ କରବାରେ ଏବଂ ବିରୋଧ କରିବାରେ ସେ ତିଳେ ମାତ୍ର କୁଣ୍ଠାବୋଧ କରନ୍ତି ନାହିଁ । ସାର୍‌ଙ୍କ କର୍ମରତ ଜୀବନର ବିଦାୟ ଅବସରରେ କେବଳ ମୋର ଏହି ସ୍ମୃତିର ସ୍ୱଚ୍ଛ ଶ୍ରଦ୍ଧାର୍ପଣ । ସେ ନିଜର ପ୍ରତିଭା, ସାଧନା ତଥା ଅଧ୍ୟବସାୟ ବଳରେ ତାଙ୍କ ସାରସ୍ୱତ ଏବଂ ସାଂସ୍କୃତିକ ଜଗତକୁ ଆହୁରି ଋଦ୍ଧିମନ୍ତ କରନ୍ତୁ, ଏତିକି କାମନା ।



ଅଧ୍ୟାପିକା, ରାଜନୀତି ବିଜ୍ଞାନ ବିଭାଗ
ସେମିଳିଗୁଡ଼ା ମହାବିଦ୍ୟାଳୟ



Digitized by srujanika@gmail.com

# MY FATHER

**Er. Gitimaya Sahoo**

There are many people who have effected my life but my father is the one who has influenced a lot. His influence on me cannot be compared to that of any others. He has taught me many good things like time-management, how to use my skills for the good and to shape up my future in a better way. He has always encouraged me to participate in events and competitions to build self-confidence in me and to face the world full of challenges.

He always tries to bring out the best in me. Not only he makes me learn new things, but when I was a kid, he used to spend a lot of time with me playing games and teaching me new funny things. I remember when for the first time I was trying to learn how to ride a cycle, he spent a lot of time with me and finally made me do it.

He is not only a lecturer but also successful writer and speaker. When I was a kid, he used to take me to the recordings of his work at the radio station and I would watch him and feel what a good speaker he is. He has published many books for the betterment of other people. He likes to spread the knowledge which he has. He also invests a lot of time researching on things to enhance his knowledge. He helps other people in need and has a good reputation in society.

He has a good friend circle and a lot of people who admire him for his work. He has worked hard a lot to keep the family happy not only financially but also by spending a lot of good times with us.

He is really great and the only hero in my life.

Infosys, Bhubaneswar



Digitized by srujanika@gmail.com

# How I know ... Basanta Sir

**Seshadev Jena**

The moment you see a leader leading from the front, It's always a great moment when you get an opportunity to work under his persona, Dr. Basanta Kishore Sahoo a renowned writer, poet, literaturist and a lecturer by profession. He was widely known for his encroachment in the field of poems exclusively meant for kids and contents of writing piece based on simple concept with deep imagination. I have always seen him working really seriously when he is involved in managing any event of literature and poems. "BANAPRAVA SAHITYA SANSAD", today is known for its best hospitatility and accumulating a large number of poets all from a variety of places of the state. Dr. Sahoo has an important role in this achivement of B.S.S.

He has really an outstanding personality not only as a saint of literature; but as a good established human being. Besides so many talents, qualifications, fame, awards etc., you have never brought wrinkler of proudness on his face. Really !! I am proud of you Sir.

I know today words may be few to describe you and your personality. But still I learnt many ways to handle your satisfaction; when you are at a critical stage of life. The way you have incorporated literature and exclusively its taste to establish a special place for rhythmic and creamy poems for "tiny tots". Today your presence in any programme turns to a battle whose head slot is on your shoulders. And uniquely you finish the battle with an unexpected and miraculous victory. "May Lord Jagannath Bless you and your thoughts.



GIET, (3rd Year)BBSR



Digitized by srujanika@gmail.com

# ବସନ୍ତ ଉଦୟ

ରବୀନ୍ଦ୍ରନାଥ ମାଝୀ

ଏ ପାଖରେ ସୁନା ସେ ପାଖେ ବସନ୍ତ
କିଏ ସେ ଛାଡ଼ିବ କାହାକୁ
ବସନ୍ତ ଛାଡ଼ିଲେ ସୁନାବେଡ଼ାଟାକୁ
କୋଇଲି ଛାଡ଼ିବ ତୋଟାକୁ ॥
ସୁନା ସୋରିଷିଆ କୋରାପୁଟ ମାଳ
ମନଲୋଭା ମକାବାଡ଼ି
କୋଲାବ, କେରାଣ୍ଡି ନୂପୁରର ଛନ୍ଦ
କେମିତି ଆସିବ ଛାଡ଼ି ॥

କେମିତି ପାରିବ ମନରୁ ପାଶୋରି
ଶାବର ଶ୍ରୀକ୍ଷେତ୍ର ଡ଼ୋର
କେମିତି ଭୁଲିବ ପାହାଡ଼ ଶିଖରେ
ଭସାମେଘ ହେଲେ ଥିର ॥
ମିଗ୍ ବିମାନକୁ ଯେଉଁ ସୁନାବେଡ଼ା
ଗଢୁଥିଲା ନିଜ ମନେ
କେମିତି ଉଡ଼ିବ ଘୁମନ୍ତ ଆକାଶେ
ଏଇ ଅବସର ଦିନେ ॥

କୁମ୍ଭାର ଚକ ଶାଳରେ ଘୂରିବ
ନୂଆ କୁମ୍ଭାର ହାତେ
ହାଣ୍ଡି,ମାଠିଆ ନିର୍ବାକ ହୋଇ
ତଥାପି ଖୋଜିବେ କେତେ !!



Digitized by srujanika@gmail.com

ଯେଉଁ ଲତାଟିକୁ                    ରଙ୍ଗା ଚଢ଼େଇ
            କରୁଥିଲ  ନିତି ହିତ,
ସେ ହାତେ ଏଣିକି                    ନୂଆ ଶବଦରେ
            ତା'ପାଇଁ ଲେଖିବ ଗୀତ ।।

ଏ କାନ ଶୁଣିଲା                    ସୁନାବେଢ଼ା ଛାଡ଼ି
            ବସନ୍ତ ଆସୁଛି ଚାଲି
କୈଶୋରତକ                    ରହିବ ସେଇଠି
            କେମିତି ପାରୁନି ଭାଳି ?
ସ୍ମୃତିର ମଳୟ                    ବସନ୍ତ ବେଢ଼ାରେ
            ଗାଉଥାଉ କୁହୁକୁହୁ,
କାଲି କଥାତକ                    ଆଜି ଜୀଇ ରହୁ
            କାଲିପାଇଁ ମୁହୁର୍ମୁହୁ ।।

ଏ  ନୁହେଁ ବନ୍ଧୁ                    ବସନ୍ତ ବିଦାୟ
            ଏ ଯେ ଉଦୟର ବେଳ,
ଉଦିତ ହେବାକୁ                    ନିତି ବୁଡ଼େ ରବି
            ପଛ କରି ସଞ୍ଜକାଳ ।।



ଭୁବନେଶ୍ୱର



Digitized by srujanika@gmail.com

# ବସନ୍ତ : ବସନ୍ତ

ମନମୋହନ ଆଚାର୍ଯ୍ୟ

ବସନ୍ତ-ସୁରଭି ସମ
ସୁବାସିତ ମଧୁ ବିତରଣେ
ବସନ୍ତ-ମଳୟ-ସ୍ପର୍ଶ
କରିଅଛ, କରୁଅଛ ତୁମେ
ବସନ୍ତର ପ୍ରେମ-ଉପହାର,
ଘେନ ବନ୍ଧୁ ପ୍ରୀତିପୁଷ୍ପ ବସନ୍ତ କିଶୋର ।।
ଦୀର୍ଘ ବର୍ଷ ସଂପର୍କରେ
ଘନିଷ୍ଠତା ରହିଲା ନିବିଡ଼
ରହିବ ସର୍ବଦା ଆଶା !
ଜୀବନରେ ଯେତେ ଆସୁ ଝଡ଼
ବନ୍ଧୁ, ଭ୍ରାତା, ଅଗ୍ରଜ, ପ୍ରତିମ,
ମଧୁର ଆଳାପେ, ଢାଳିଦିଅ ଶ୍ରଦ୍ଧା ଅନୁପମ ।।
ତନ୍ମୟ-ହୃଦୟସ୍ପର୍ଶୀ
କରିଅଛ ମନ୍ମୟ-ସାଧନା
ଅନେକଙ୍କ ଗତିପଥେ
ସାଜିଅଛ ପ୍ରଗତି-ପ୍ରେରଣା
କର୍ମକ୍ଷେତ୍ରୁ ନେଇ ଅବସର,
ସାରସ୍ୱତ ଜୀବନରେ ସୃଷ୍ଟି କର ଶାଶ୍ୱତ ସମ୍ଭାର ।।
ସଦିଚ୍ଛା-ଶୁଭେଚ୍ଛା ଘେନ
କର୍ମ ହେଉ ପୁଣ୍ୟ-ମନ୍ଦାକିନୀ
ଉତ୍କଳମାତା ସେବାରେ
ସୁଧାସ୍ରାବୀ ହେଉ ତ ଲିଖନୀ
ଈଶ୍ୱରଙ୍କ ଚରଣେ ପ୍ରାର୍ଥନା,
ଦୀର୍ଘ-ନିରାମୟ ଜୀବନରେ, ସୃଜିଯାଅ ଅମର ସର୍ଜନା ।।



ବାରିଣୀପୁଟ, ଜୟପୁର



Digitized by srujanika@gmail.com

# ବିଦାୟୀ ବସନ୍ତ

**ଅନାଦି ଚରଣ ପାଣିଗ୍ରାହୀ**

ହେ ତୁମେ ବସନ୍ତ　　ନୂତନ ଦିଗନ୍ତ　　ପୁରୁଷ ପ୍ରତିଭାବାନ
ତୁମ ଅବସରେ　　ଦୁଃଖିତ ଅଧୀର　　ସାହିତ୍ୟିକ ଅନୁଷ୍ଠାନ ।
ନବ ପ୍ରତିଭାର　　ନବ ସୃଜନର　　ତୁମେ ଯେ ମାର୍ଗଦର୍ଶକ
ଭରି ଦେଇଅଛ　　ପ୍ରେରଣା ଉତ୍ସାହ　　ବିକଶେ ତୁମ ମହକ ॥
ମୁଖ୍ୟ ସମ୍ପାଦନା　　ସ୍ମରଣିକା ଗୁଚ୍ଛ　　ବନପ୍ରଭା, ସ୍ୱର୍ଣ୍ଣକ୍ଷେତ୍ର
ତୁମରି ସ୍ପର୍ଶରେ　　ଅସଂଖ୍ୟ ରଚନା　　ମନଛୁଆଁ ଶିଶୁ ଗୀତ ।
ବିଶେଷ ପାଣ୍ଡିତ୍ୟ　　ଭାଷାରେ ମାର୍ଜିତ　　ଉଚ୍ଚକୋଟୀର ସାହିତ୍ୟ
ଶବ୍ଦ ଭାବଯୁକ୍ତ　　ଲେଖନୀ ଆଦୃତ　　କୃତି ତୁମ ପ୍ରଶଂସିତ ॥

ନିଃସ୍ୱାର୍ଥ ଭାବନା　　ମଙ୍ଗଳ କାମନା　　ଅମାୟିକ ସ୍ନେହଶୀଳ
ତୁମର ସାଧନା　　ତୁମ ସଫଳତା　　ଜୟ କରିଅଛି କାଳ ।
ତୁମେ ଯେ ଗାଳ୍ପିକ　　ଶିଶୁ ସାହିତ୍ୟିକ　　ଅଧ୍ୟାପକ, ପ୍ରାବନ୍ଧିକ
ତୁମ ପ୍ରଚେଷ୍ଟାରେ　　ଏହି ଅଞ୍ଚଳରେ　　ସୃଷ୍ଟି ହେଲା ବିଶେଷାଙ୍କ ।
ପତ୍ରପତ୍ରିକାରେ　　ଲେଖା ପ୍ରକାଶିତ　　କେତେ ଉପାଧି ମଣ୍ଡିତ
ତୁମ ସୃଷ୍ଟି ଦୃଷ୍ଟି　　ସବୁଠି ପ୍ରଶଂସା　　ସାରା ଓଡ଼ିଶାରେ ଖ୍ୟାତ ।
ଉପାନ୍ତ ଅଞ୍ଚଳେ　　ଓଡ଼ିଆ ସାହିତ୍ୟ　　ସୁଧାର ପ୍ରଚେଷ୍ଟା ଜାରି
କବି ସାହିତ୍ୟିକ　　ଲେଖକ ପାଠକ　　ସମ୍ମେଳନ ମାନ କରି ॥

ସାହିତ୍ୟ ଆସରେ　　ସଭା ସମିତିରେ　　ପରିଚାଳନା ଦାୟିତ୍ୱ
ତୁମ ପରେ ନ୍ୟସ୍ତ　　କର୍ତ୍ତବ୍ୟରେ ବ୍ୟସ୍ତ　　ତୁମର ଜୀବନ ଚିତ୍ର ।
ଚିନ୍ତା ଚେତନାର　　ଅଫୁରନ୍ତ ଛବି　　ପ୍ରସ୍ଫୁଟିତ ତୁମ ଶୋଭା
ତୁମ ଚିନ୍ତାଧାରା　　ସାହିତ୍ୟ ସଂପୃକ୍ତି　　ରହିବ ହୋଇ ଅଲିଭା ॥
ସାହିତ୍ୟ ବିକାଶ　　ଗବେଷଣା ଜ୍ଞାନ　　ଦୀର୍ଘ ଚାରି ଦଶନ୍ଧିରେ
ତୁମରି ସୁଖ୍ୟାତି　　ସେବା ମନୋବୃତ୍ତି　　ସୁନାବେଡ଼ାବାସୀ ଝୁରେ ॥

ସୁନାବେଡ଼ା-୨





Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ବଂଶାବଳୀ






Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ପ୍ରକାଶିତ ପୁସ୍ତକ

| ଶିଶୁ-ସାହିତ୍ୟ | ପ୍ରକାଶକ | ପ୍ରକାଶ ବର୍ଷ |
|---|---|---|
| ◆ ଫୁଲ ଆମେ ଫୁଲ | ବନଫୁଲ ସାହିତ୍ୟ ପରିଷଦ | ୧୯୯୨ |
| ◆ ଅଗଡ଼ ବଗଡ଼ ଝାଇଁକି ଝୁମ୍ପା | ଶୌର୍ଯ୍ୟ ପ୍ରକାଶନ | ୧୯୯୭ |
| ◆ କାଳିଆ ବଳଦ ଗଳାରେ ଗଳା | ଶୌର୍ଯ୍ୟ ପ୍ରକାଶନ | ୨୦୦୦ |
| ◆ ମାରିନେଲେ ମହାପାତ୍ରେ | ବିଲୁଆନନା ପ୍ରକାଶକ | ୨୦୦୦ |
| ◆ ଉଦୁଉଦୁମା | ନବ ଦିଗନ୍ତ | ୨୦୦୩ |
| ◆ ଗଛ ଆମ ଜୀବନ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ | ୨୦୦୩ |
| ◆ ଇଞ୍ଚିଡ଼ି ମିଞ୍ଚିଡ଼ି | ନବ ଦିଗନ୍ତ | ୨୦୦୩ |
| ◆ ଏଇ ମାଟିର ମଣିଷ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ | ୨୦୦୪ |
| ◆ ଗାଇ ଦିଅ ପଦେ ଗୀତ | ଜଗନ୍ନାଥ ରଥ | ୨୦୦୮ |
| ◆ ଖରାବରଷା ଗୀତ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ | ୨୦୦୮ |
| ◆ ବିଲୁଆନନାର ବଣଭୋଜି | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ | ୨୦୦୮ |
| ◆ ହାତ ଦେବା ଭଲକାମେ | କାହାଣୀ ପ୍ରକାଶନ | ୨୦୦୩ |
| | ସରସ୍ୱତୀ ପବ୍ଲିକେଶନସ୍ | ୨୦୦୯ |
| ◆ ଆଇଁଷି ମନ୍ତର କାଇଁଶି ମନ୍ତର | ସାଥୀ ପ୍ରକାଶନ | ୨୦୦୪ |
| ◆ ଶରତ ଋତୁର ଗୀତ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ | ୨୦୦୭ |
| ◆ ଶୀତ ପାଇଁ ଗାଅ ଗୀତ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ | ୨୦୦୭ |
| ◆ ବସନ୍ତ କିଶୋର ରଚନାବଳୀ (୧ମ ଭାଗ) | ସରସ୍ୱତୀ ପବ୍ଲିକେଶନସ୍ | ୨୦୦୯ |
| ◆ ବସନ୍ତ କିଶୋର ରଚନାବଳୀ (୨ୟ ଭାଗ) | ଅଗ୍ରଣୀ ପବ୍ଲିକେଶନସ୍ | ୨୦୧୨ |

**ଆଲୋଚନା ଗ୍ରନ୍ଥ ଓ ଅନ୍ୟାନ୍ୟ :**

| | | |
|---|---|---|
| ◆ ଓଡ଼ିଆ ଶିଶୁ-ସାହିତ୍ୟ ଆଲୋଚନା | ସରସ୍ୱତୀ ପବ୍ଲିକେଶନସ୍ | ୧୯୯୪ |
| ◆ ଓଡ଼ିଆ ମୌଖିକ ଶିଶୁ-ସାହିତ୍ୟ(ପିଏଚ୍.ଡି. ନିବନ୍ଧ) | ଚିତ୍ରୋତ୍ପଳା ପବ୍ଲିକେଶନସ୍ | ୧୯୯୬ |
| ◆ ସାଂପ୍ରତିକ ଶିଶୁ-ସାହିତ୍ୟ ଓ ସାହିତ୍ୟିକ | ସରସ୍ୱତୀ ପବ୍ଲିକେଶନସ୍ | ୨୦୦୦ |
| ◆ ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ | ମାଣିକ ବିଶ୍ୱନାଥ ଦାତବ୍ୟ ସ୍ମୃତିନ୍ୟାସ | ୨୦୦୨ |
| ◆ କୋରାପୁଟ ପରିକ୍ରମା (ସଂପାଦିତ) ପ୍ରବନ୍ଧ ସଂକଳନ | ବନଫୁଲ ସାହିତ୍ୟ ପରିଷଦ | ୧୯୯୨ |



Digitized by srujanika@gmail.com

◆ କୋରାପୁଟ ପରିକ୍ରମା (ସଂପାଦିତ) କବିତା ସଂକଳନ
ବନଫୁଲ ସାହିତ୍ୟ ପରିଷଦ ୧୯୯୩
◆ ଓଡ଼ିଶାର ଲୋକନାଟ୍ୟ (ସଂପାଦିତ)ବନଫୁଲ ସାହିତ୍ୟ ପରିଷଦ ୧୯୯୩
◆ ସାଂପ୍ରତିକ ଶିଶୁ କବିତା (ସଂପାଦିତ)(ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ ସହ)
ଜଗନ୍ନାଥ ରଥ ୨୦୦୦
◆ ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ (ସଂପାଦିତ)
ମନୀନ୍ଦ୍ର ଅଭିନନ୍ଦନ କମିଟି ୨୦୦୪
◆ ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି (ସଂପାଦିତ)
କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋର ୨୦୦୭
◆ ନନ୍ଦକିଶୋର ରଚନାବଳୀ (ସଂପାଦିତ)
ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ ୨୦୦୭
◆ କୋରାପୁଟର ପର୍ବପର୍ବାଣି ପୂର୍ଣ୍ଣିମା ଅଫ୍‌ସେଟ, ସେମିଳିଗୁଡ଼ା ୨୦୦୫
◆ କୋରାପୁଟର ଲୋକକଥା ପୂର୍ଣ୍ଣିମା ଅଫ୍‌ସେଟ, ସେମିଳିଗୁଡ଼ା ୨୦୦୫
◆ କୋରାପୁଟର ଲୋକକଥା ଶକ୍ତି ପବ୍ଲିଶର୍ସ ୨୦୧୦
◆ ଆମ କୋରାପୁଟ ଏସ୍.ଆର୍.ସି., ଭୁବନେଶ୍ୱର ୨୦୦୫
◆ ଆମ ଜିଲ୍ଲା କୋରାପୁଟ ଶକ୍ତି ପବ୍ଲିଶର୍ସ ୨୦୧୦

**ଲଘୁ ଆଲୋଚନା :**

◆ କାହାକୁ କହିବା ସରସ୍ୱତୀ ପବ୍ଲିକେଶନସ୍ ୨୦୦୩/୨୦୧୧

**ହିନ୍ଦୀ :**

◆ **भाई तो भाई** ସରସ୍ୱତୀ ପବ୍ଲିକେଶନସ୍ ୨୦୦୩

**ବଙ୍ଗଳା :**

◆ ଏକଟି ଚାନ୍ଦ୍ ଅନେକ ତାରା ସରସ୍ୱତୀ ପବ୍ଲିକେଶନସ୍ ୨୦୦୪

**ଇଂରାଜୀ :**

◆ Who's Who in Oriya Children's Literature, Vol. I ,
Mayur Publication 1995
◆ Who's Who in Oriya Children's Literature, Vol. II
Saragasashi Prakasani 1997
◆ DROPS OF NECTAR (Children's Poem),
Jaganath Rath 1998



Digitized by srujanika@gmail.com

## ସଂପାଦିତ ପତ୍ରପତ୍ରିକା :

| | | |
|---|---|---|
| ◆ ବଗଲାବଗୁଲୀ (ଦ୍ୱିମାସିକ ଶିଶୁ ସାହିତ୍ୟ ପତ୍ରିକା)୨୦ ଖଣ୍ଡ | | ୧୯୮୧-୮୫ |
| ◆ ବନଫୁଲ-୧ ରୁ ବନଫୁଲ-୮ | ଗଳ୍ପ କବିତା ସଂକଳନ | - |
| ◆ ବନଫୁଲ-୧(କବିତା ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୮୬ |
| ◆ ବନଫୁଲ-୨(ଗଳ୍ପ ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୮୭ |
| ◆ ବନଫୁଲ-୩(ଗଳ୍ପ ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୮୮ |
| ◆ ବନଫୁଲ-୪(କବିତା ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୮୯ |
| ◆ ବନଫୁଲ-୫(ଗଳ୍ପ ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୯୦ |
| ◆ ବନଫୁଲ-୬(ଗଳ୍ପ ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୯୦ |
| ◆ ବନଫୁଲ-୭(କବିତା ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୯୧ |
| ◆ ବନଫୁଲ-୮(ଗଳ୍ପ ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୯୧ |
| ◆ କୋରାପୁଟ ପରିକ୍ରମା (କବିତା ) | ଓଡ଼ିଆ ଲେଖକ-ପାଠକ ସମ୍ମେଳନ | ୧୯୯୪ |
| ◆ ପାଞ୍ଚପାଖୁଡ଼ା (ଶିଶୁ କବିତା ସଂକଳନ) | ବନଫୁଲ ସାହିତ୍ୟ ପରିଷଦ | ୧୯୯୨ |
| ◆ ଦେଶାତ୍ମବୋଧକ କବିତା ସଂକଳନ | ବନଫୁଲ ସାହିତ୍ୟ ପରିଷଦ | ୧୯୯୨ |
| ◆ ଭାଗୀରଥି ସ୍ମରଣିକା | ସତ୍ତା ସାହିତ୍ୟ ସଂସଦ | ୨୦୦୩ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୦୬ | ଜଗନ୍ନାଥ ମନ୍ଦିର ପରିଚାଳନା କମିଟ | ୨୦୦୬ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୦୭ | ଜଗନ୍ନାଥ ମନ୍ଦିର ପରିଚାଳନା କମିଟି | ୨୦୦୭ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୦୮ | ଜଗନ୍ନାଥ ମନ୍ଦିର ପରିଚାଳନା କମିଟି | ୨୦୦୮ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୦୯(କ୍ଷେତ୍ର ବିଶେଷାଙ୍କ) | ” | ୨୦୦୯ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୧୦(ଭକ୍ତ ବିଶେଷାଙ୍କ) | ” | ୨୦୧୦ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୧୧(ବେଶ ବିଶେଷାଙ୍କ) | ” | ୨୦୧୧ |
| ◆ ସ୍ୱର୍ଣ୍ଣକ୍ଷେତ୍ର-୨୦୧୨(ପର୍ବପର୍ବାଣି ବିଶେଷାଙ୍କ) | ” | ୨୦୧୨ |
| ◆ ସ୍ମରଣିକା(ସ୍ୱତନ୍ତ୍ର ଉତ୍କଳ ସଂଖ୍ୟା) | ଉତ୍କଳ ସାଂସ୍କୃତିକ ପରିଷଦ | ୨୦୦୩ |
| ◆ ସ୍ମରଣିକା(କୃଷ୍ଣଚନ୍ଦ୍ର ଗଜପତି ବିଶେଷାଙ୍କ) | ଉତ୍କଳ ସାଂସ୍କୃତିକ ପରିଷଦ | ୨୦୦୭ |
| ◆ ସ୍ମରଣିକା(ଉତ୍କଳ ଗୌରବ ବିଶେଷାଙ୍କ) | ଉତ୍କଳ ସାଂସ୍କୃତିକ ପରିଷଦ | ୨୦୦୮ |
| ◆ ସ୍ମରଣିକା(ଫକୀରମୋହନ ବିଶେଷାଙ୍କ) | ଉତ୍କଳ ସାଂସ୍କୃତିକ ପରିଷଦ | ୨୦୦୯ |



Digitized by srujanika@gmail.com

- ସ୍ମରଣିକା(ଗୋପବନ୍ଧୁ ବିଶେଷାଙ୍କ)ଉତ୍କଳ ସାଂସ୍କୃତିକ ପରିଷଦ ୨୦୧୦
- ସ୍ମରଣିକା(ସ୍ୱଭାବକବି ଗଙ୍ଗାଧର ବିଶେଷାଙ୍କ)ଉତ୍କଳ ସାଂସ୍କୃତିକ ପରିଷଦ ୨୦୧୧
- ସ୍ମରଣିକା(ସୁନାବେଡ଼ା ବିଶେଷାଙ୍କ)ଉତ୍କଳ ସାଂସ୍କୃତିକ ପରିଷଦ ୨୦୧୨
- ସ୍ମରଣିକା ଓଡ଼ିଆ ଲେଖକ ପାଠକ ସଂସଦ ୧୯୯୨
- ସ୍ମରଣିକା ଓଡ଼ିଆ ଲେଖକ ପାଠକ ସଂସଦ ୧୯୯୩
- ସ୍ମରଣିକା ଓଡ଼ିଆ ଲେଖକ ପାଠକ ସଂସଦ ୧୯୯୪
- ସ୍ମୃତିଅର୍ଘ୍ୟ ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ ୨୦୦୪
- ସ୍ମୃତିଅର୍ଘ୍ୟ ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ ୨୦୦୫
- ସ୍ମୃତିଅର୍ଘ୍ୟ ନନ୍ଦକିଶୋର ସାମଲ ସ୍ମୃତିନ୍ୟାସ ୨୦୦୬
- ବନପ୍ରଭା-୧ ବନପ୍ରଭା ସାହିତ୍ୟ ସଂସଦ ୨୦୦୮
- ବନପ୍ରଭା-୨ ବନପ୍ରଭା ସାହିତ୍ୟ ସଂସଦ ୨୦୦୯
- ବନପ୍ରଭା-୩(ଦେଶାତ୍ମବୋଧକ କବିତା ସଂକଳନ)
  ବନପ୍ରଭା ସାହିତ୍ୟ ସଂସଦ ୨୦୧୦
- ବନପ୍ରଭା-୪(ଶିଶୁ କବିତା ସଂକଳନ) ବନପ୍ରଭା ସାହିତ୍ୟ ସଂସଦ ୨୦୧୨
- ବନପ୍ରଭା-୫(ଶ୍ରୀଜଗନ୍ନାଥ ଶତକ) ବନପ୍ରଭା ସାହିତ୍ୟ ସଂସଦ ୨୦୧୩
- ମଧୁବାର୍ତ୍ତା ମଧୁସୂଦନ ସେବାସଂଘ ୨୦୦୮
- ବୋଇତ-୧୯୯୬ରୁ ୨୦୧୦ (୧୫ଖଣ୍ଡ)ସ୍ନେହୀ ସମାଜ
- Aeronautica-VII Aeronautics College 1987-88
- Aeronautica-XI Aeronautics College 1991-92
- Aeronautica-XVII Aeronautics College 1997-98
- Aeronautica-XIX Aeronautics College 1999-2000
- Aeronautica-XXI Aeronautics College 2002-03
- Aeronautica-XIV Aeronautics College 2004-05
- Aeronautica-XV Aeronautics College 2005-06
- Aeronautica-XVI Aeronautics College 2006-07
- Aeronautica-XVII & XVIII Aeronautics College 2008-09
- Aeronautica-XIX& XXX Aeronautics College 2011-12



Digitized by srujanika@gmail.com

# ଡକ୍ଟର ବସନ୍ତ କିଶୋର ସାହୁଙ୍କ ପ୍ରକାଶିତ ପ୍ରବନ୍ଧ ଓ ଆଲୋଚନା

## ଶିଶୁ ସାହିତ୍ୟ ସମ୍ପର୍କିତ

୧- ଶିଶୁ ସାହିତ୍ୟିକ ନନ୍ଦକିଶୋର ସାମଲ: ଏକ ଅନାଲୋଚିତ ପ୍ରତିଭା, ଆସନ୍ତାକାଲି, ନଭେମ୍ବର-୧୯୮୮, ପୃ.୩୩-୩୭, ସଂ. ଓଡ଼ିଆ ଶିଶୁ ସାହିତ୍ୟର ଇତିବୃତ୍ତ-୧୯୯୨, ପୃ.୨୦୫-୨୧୧ ।

୨- ଆଦିବାସୀ ମୌଖିକ ଶିଶୁ ସାହିତ୍ୟ,ଆସନ୍ତାକାଲି, ମାର୍ଚ୍ଚ-୧୯୮୯, ପୃ.୪୭-୫୨ ।

୩- ଓଡ଼ିଆ ଶିଶୁ ସାହିତ୍ୟ ସମାଲୋଚନାର ସମାଲୋଚନା, ଆସନ୍ତାକାଲି, ଏପ୍ରିଲ,୧୯୯୧, ପୃ.୪୭-୫୧ । ଶିଶୁ ସାହିତ୍ୟ ଆଲୋଚନା, ୧୯୯୪ , ପୃ.୫୩-୬୦ ।

୪- ଓଡ଼ିଆ ମୌଖିକ ଶିଶୁ ଗୀତ : ଏକ ଅନୁଧ୍ୟାନ, ଆସନ୍ତାକାଲି, ମେ-ଜୁନ୍, ୧୯୯୦, ପୃ.୩୮-୪୨ ।

୫- ଓଡ଼ିଆ ଶିଶୁ ସାହିତ୍ୟର କେତୋଟି ଦିଗ, ସଂ. ଶିଶୁ ସାହିତ୍ୟ ପ୍ରସଙ୍ଗ,୧୯୮୮, ପୃ.୨୭-୩୨ । ଶିଶୁ ସାହିତ୍ୟ ଆଲୋଚନା,୧୯୯୪,ପୃ.୧୦-୧୫

୬- ଓଡ଼ିଆ ମୌଖିକ ଶିଶୁଗୀତରେ ଜହ୍ନ, ସଂ. ଶିଶୁ ସାହିତ୍ୟ ସହକାର,୧୯୯୨, ପୃ.୨୬-୩୫ । ଶିଶୁ ସାହିତ୍ୟ ଆଲୋଚନା,୧୯୯୪,ପୃ.୪୦-୫୨ । କୋଣାର୍କ, ଅକ୍ଟୋବର-୯୫,ପୃ.୨୦-୨୯ ।

୭- ଶିଶୁ ରଚିତ ସାହିତ୍ୟ, ସଂ.ଓଡ଼ିଆ ଶିଶୁ ସାହିତ୍ୟର ଇତିବୃତ୍ତ,୧୯୯୨, ପୃ.୧୭୬-୧୮୬ ।

୮- ଶିଶୁ ସାହିତ୍ୟର ସଂଜ୍ଞା ଓ ସ୍ୱରୂପ, ଶିଶୁ ସାହିତ୍ୟ ଆଲୋଚନା,୧୯୯୪,ପୃ.୧-୯ ।

୯- ଓଡ଼ିଆ ଶିଶୁ-ସାହିତ୍ୟରେ ଚିତ୍ରର ଭୂମିକା, ଶିଶୁ ସାହିତ୍ୟ ଆଲୋଚନା, ୧୯୯୪, ପୃ.୧୬-୨୮

୧୦- ନନ୍ଦକିଶୋରଙ୍କ ଶିଶୁ କବିତାରେ ହାସ୍ୟରସ, ଶିଶୁ ସାହିତ୍ୟ ଆଲୋଚନା, ୧୯୯୪,ପୃ.୨୯-୩୯

୧୧- ଓଡ଼ିଆ ଶିଶୁ ସାହିତ୍ୟର ସହାୟକ ପାଠ୍ୟସୂଚୀ,ଶିଶୁ ସାହିତ୍ୟ ଆଲୋଚନା, ୧୯୯୪,ପୃ.୬୧-୧୧୧

୧୨- ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ : ଏକ ପରିଚୟ, ବନଜ୍ୟୋସ୍ନା, ୨ୟ ବର୍ଷ, ସାରସ୍ୱତ ସଂଖ୍ୟା, ୧୯୯୪, ପୃ.୪୦-୪୧ ।

୧୩- ଓଡ଼ିଆ ମୌଖିକ ଶିଶୁ ସାହିତ୍ୟରେ ସ୍ୱଦେଶ ପ୍ରେମ, ସ୍ମରଣିକା, ଉତ୍କଳ ସାଂସ୍କୃତିକ ପରିଷଦ, ପୃ.୧୨-୧୯ । /ଶ୍ରୀନନ୍ଦିଘୋଷ, ମଇ-୨୦୦୨, ପୃ.୧୧-୧୭

୧୪- ନୀଳକଣ୍ଠଙ୍କ ଶିଶୁ କବିତାରେ ହାସ୍ୟରସ, ତମସା, ପୂଜା ସଂଖ୍ୟା, ୧୯୯୩, ପୃ.୭୨-୮୪ ।

୧୫- ପୁଚିଖେଳ ଗୀତ ଏକ ଅନୁଧ୍ୟାନ, ସ୍ମରଣିକା-୯୨, ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡ଼ା, ପୃ.୧୪-୨୧ ।



Digitized by srujanika@gmail.com

୧୬- ଦୋଳିଗୀତ : ଏକ ଅନୁଧ୍ୟାନ, ସ୍ମରଣିକା-୯୩ , ଉତ୍କଳ ସାଂସ୍କୃତିକ ପରିଷଦ, ସୁନାବେଡ଼ା, ପୃ.୧୩-୧୯ ।

୧୭- ନାନାବାୟା ଗୀତ : ଏକ ପରିଚୟ, ପୌରୁଷ, ଜୁଲାଇ-୯୪,ପୃ.୧୫୯-୧୬୧ ।

୧୮- ଶିଶୁ ସାହିତ୍ୟିକ ରାଜକିଶୋର ପାଢ଼ୀଙ୍କ ଶିଶୁ କବିତାରେ ଶିଶୁ ମନସ୍ତତ୍ତ୍ୱ , ସ୍ମରଣିକା-୯୪,ଓଡ଼ିଆ ଲେଖକ ପାଠକ ସମ୍ମେଳନ, ସେମିଳିଗୁଡ଼ା, ପୃ.୧୨-୨୧। ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୭୬-୮୯

୧୯- ନାନାବାୟା ଗୀତରେ ଚେତନା ପ୍ରବାହ, ତମସା, ପୂଜା ସଂଖ୍ୟା-୯୫, ପୃ.୪୯-୫୩ ।

୨୦- ଶିଶୁ ସାହିତ୍ୟିକ ଅନନ୍ତ ଚରଣ ବେହେରାଙ୍କ କୃତିର ଶିଶୁ ସାହିତ୍ୟିକ ମୂଲ୍ୟାୟନ, ସୁନା ଫରୁଆ, ଜାନୁଆରୀ-୯୬, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୧୦୨-୧୧୨ ।

୨୧- ଶିଶୁପ୍ରିୟ ଶିଶୁ ସାହିତ୍ୟର ସ୍ରଷ୍ଟା : ଭଗବାନ ପାଢ଼ୀ, ତମସା-୯୪ ।
ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦ ,ପୃ.୬୬-୭୫ ।

୨୨- ନନ୍ଦକିଶୋର ସିଂହଙ୍କ ଶିଶୁ ଗଳ୍ପର ଶିଶୁ ମନସ୍ତତ୍ତ୍ୱ ଏକ ଅଧ୍ୟୟନ, ବିବର୍ତ୍ତନ, ପୂଜା ସଂଖ୍ୟା-୯୫ । ପୃ.୮୧-୮୭ । ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୯୦-୧୦୧ । ଝଲକ ଜୀବନର-ସୃଜନୀର, ୨୦୦୭, ପୃ. ୭୬-୮୬

୨୩- ନାନାବାୟା ଗୀତ ଏକ ପରିଚୟ ,ପୌରୁଷ, ନଭେମ୍ବର-୯୪,ପୃ.୮୫-୮୮ ।

୨୪- ଓଷା ଓ ପର୍ବପର୍ବାଣି ଗୀତରେ ମୌଖିକ ଶିଶୁ ଗୀତର ସ୍ୱରୂପ ,ପୌରୁଷ, ମାର୍ଚ୍ଚ-୧୯୯୫, ପୃ ୫୭-୬୨ ।

୨୫- ସାଂପ୍ରତିକ ଶିଶୁ ସାହିତ୍ୟ, ସ୍ମରଣିକା-୯୬, ଉତ୍କଳ ସାଂସ୍କୃତିକ ପରିଷଦ, ପୃ. ୧୯-୨୩ ।

୨୬- ଅନୁଭୂତି : ସ୍ମୃତି , ଶିଶୁବାର୍ତ୍ତା-୩,ପୃ.୨୭-୨୮

୨୭- ଖେଳ ଗୀତରେ ମୌଖିକ ଶିଶୁ ସାହିତ୍ୟର ସ୍ୱରୂପ, ପୌରୁଷ, ଫେବୃଆରୀ-୯୬, ପୃ. ୧୦୯-୧୧୪ ।

୨୮- ଓଡ଼ିଆ ଶିଶୁ ସାହିତ୍ୟକୁ ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ଅବଦାନ, ସହକାର, ଜୁନ-ଜୁଲାଇ-୯୭, ପୃ.୬୨-୬୯ । ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୩୯-୫୧ । ଓ.ଶି.ସା.ସ.-୨୦୦୦, ପୃ.୧୩୨-୧୪୨ ।

୨୯- ଡକ୍ଟର କୃତ୍ତିବାସ ନାୟକଙ୍କ ପ୍ରବନ୍ଧ ଓ ଆଲୋଚନା-ଏକ ସଂକ୍ଷିପ୍ତ ଦୃଷ୍ଟିପାତ, ପ୍ରେରଣା, ପୃ.୭୫-୮୨ ।

୩୦- ଓଡ଼ିଆ ଶିଶୁ ସାହିତ୍ୟର ଅତୀତ ଓ ବର୍ତ୍ତମାନ, ସ୍ମରଣିକା, AIJLC, ପୃ. ୧୭-୧୯ ।

୩୧- ଓଡ଼ିଆ ମୌଖିକ ଶିଶୁ ଗୀତର ଶିଶୁ ସାହିତ୍ୟିକ ମୂଲ୍ୟାୟନ, ଅଙ୍କୁର-୧୯୯୮, ପୃ.୭୧-୭୮ ।



Digitized by srujanika@gmail.com

୩୨- ଶିଶୁ ଶିକ୍ଷାରେ ମୌଖିକ ଶିଶୁ ସାହିତ୍ୟ, କସ୍ତୁରୀ, (ଲେଖକ ବିଶେଷାଙ୍କ), ଏପ୍ରିଲ-୧୯୯୮, ପୃ. ୪୪-୪୯ ।

୩୩- କ୍ଷୀରୋଦ ପୋଥାଲଙ୍କ ଶିଶୁ କବିତାର ଶିଶୁ-ମନସ୍ତାତ୍ତ୍ୱିକ ଅଧ୍ୟୟନ, ଓଡ଼ିଆ ଶିଶୁ ସାହିତ୍ୟର ଦିଗ ଦିଗନ୍ତ, ଗୁରୁଜୀ ବୁକ୍ ଷ୍ଟୋର, ପୃ.୯-୨୩ । ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୫୨-୬୫ ।

୩୪- ସାଂପ୍ରତିକ ଓଡ଼ିଆ ଶିଶୁ ଗୀତର ଭାଷା ସଂପଦ, ସାହିତ୍ୟ ପତ୍ର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଜାନୁଆରୀ-ମାର୍ଚ୍ଚ, ପୃ.୨୬-୩୩ । ସଂ. ସାଂପ୍ରତିକ ଶିଶୁ କବିତା-୨୦୦୦,ପୃ.୮୨-୯୨ ।

୩୫- ସ୍ନେହଲତା ମହାନ୍ତିଙ୍କ ଶିଶୁ ଗୀତିକାରେ ମୌଖିକ ଶିଶୁ ଗୀତର ସ୍ୱରୂପ ଓ ଶିଶୁ ମନସ୍ତତ୍ତ୍ୱ, ବିବର୍ତ୍ତନ, ନବବର୍ଷ ବିଶେଷାଙ୍କ-୨୦୦୦, ପୃ. ୭-୧୦ । ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୧୫-୨୭ ।

୩୬- ମୁଁ ଶିଶୁ ସାହିତ୍ୟ କାହିଁକି ଲେଖେ ? ମୁଁ ଶିଶୁ ସାହିତ୍ୟ କାହିଁକି ଲେଖେ ? ସଂ. ନିରଞ୍ଜନ ତୁରୁକ,୧୯୯୮, ଜଗନ୍ନାଥ ରଥ, ପୃ.୧୪୬-୧୫୫ ।

୩୭- ଶିଶୁ ସାହିତ୍ୟର କାର୍ଯ୍ୟ ଓ ଉଦ୍ଦେଶ୍ୟ ପରିପ୍ରେକ୍ଷୀରେ ରଘୁନାଥ ରାଉତଙ୍କ ଶିଶୁ ଗୀତର ସ୍ୱରୂପ, ସ୍ମରଣିକା-୨୦୦୦, ଉତ୍କଳ ସାଂସ୍କୃତିକ ପରିଷଦ, ପୃ.୧୮-୨୪ । ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୧୨୫-୧୩୫ ।

୩୮- ଶିଶୁର ମାନସିକ ବିକାଶରେ ନାଟକର ଭୂମିକା, ଶ୍ରୀ ନନ୍ଦିଘୋଷ, ଅଗଷ୍ଟ-୨୦୦୦, ପୃ.୫-୮ ।

୩୯- ଶିଶୁ ସାହିତ୍ୟର ସଫଳ ସ୍ରଷ୍ଟା-ନନ୍ଦ କିଶୋର ସାମଲ, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୧-୧୪ ।

୪୦- ଧନେଶ୍ୱର ସାମଲଙ୍କ ଶିଶୁ ଗଳ୍ପର ଶିଶୁ ସାହିତ୍ୟିକ ମୂଲ୍ୟାୟନ, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୨୮-୩୮ ।

୪୧- ପ୍ରଫୁଲ୍ଲ ଗିରିଙ୍କ ଶିଶୁ କବିତାରେ ଶିଶୁରସ୍ୱରୂପ, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦, ପୃ.୧୧୩-୧୨୪

୪୨- ଦାଶ ବେନହୁରଙ୍କ ଶିଶୁଗୀତର ସ୍ୱରୂପ, ସାଂପ୍ରତିକ ଶିଶୁ ସାହିତ୍ୟ ଓ ସାହିତ୍ୟିକ, ୨୦୦୦,ପୃ.୧୩୬-୧୪୭

୪୩- ଶିଶୁ ସାହିତ୍ୟର ବିନିମୟ କାର୍ଯ୍ୟକ୍ରମ, ଏଷଣା-୩୬, ଜୁନ-୧୯୯୮, ପୃ.୧୯୭-୧୯୯

୪୪- ଆନନ୍ଦମୟୀ ଶିକ୍ଷା ପାଇଁ ସଂଗୀତର ଆବଶ୍ୟକତା, ବୋଲେ ହୁଁ ଟି, ଏପ୍ରିଲ-ଜୁନ-୨୦୦୧, ପୃ.୬-୮ ।

୪୫- ଶିଶୁ-ସାହିତ୍ୟର ସମୃଦ୍ଧି ଓ ପ୍ରସାର ପାଇଁ ଆମେ ସଚେତନ କି ? ଆମ ସହର ଆମ ଗାଁ, ନଭେମ୍ବର-୨୦୦୧, ପୃ.୬-୮ ।

୪୬- ଓଡ଼ିଆ ଶିଶୁ ଗଳ୍ପର ଚରିତ୍ର ସମ୍ଭାର, ସାଂପ୍ରତିକ ଓଡ଼ିଆ ଶିଶୁ ଗଳ୍ପ, ୨୦୦୬, ପୃ.



Digitized by srujanika@gmail.com

୪୦-୪୯

୪୭- ଶିଶୁର ମାନସିକ ବିକାଶରେ ନାଟକର ଭୂମିକା,ଓଡ଼ିଆ ଶିଶୁ ନାଟକ, ସଂ. ବୀରେନ୍ଦ୍ର ମହାନ୍ତି, ପୁରୀ ଜିଲ୍ଲା ଲେଖକ ସହଯୋଗ ସମିତି, ୨୦୦୨, ପୃ. ୨୩-୩୨

୪୮- ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ସୃଷ୍ଟି ଓ ଦୃଷ୍ଟି, ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି, ୨୦୦୭, ପୃ.୬-୧୮

୪୯- ନନ୍ଦକିଶୋର ସିଂହଙ୍କ ଶିଶୁ ସାହିତ୍ୟର ଶିଶୁ ମନସ୍ତତ୍ତ୍ୱ, ନନ୍ଦକିଶୋର ପରିକ୍ରମା, ୨୦୦୭, ପୃ. ୨୬-୩୭/ଝଲକ ଜୀବନର-ସୃଜନୀର, ପୃ.୭୬-୮୦

୫୦- ଗୋଦାବରୀଶ ମହାପାତ୍ରଙ୍କ ଶିଶୁ କବିତାରେ ଶିଶୁ ମନସ୍ତାତ୍ତ୍ୱିକ ଅଧ୍ୟୟନ, ଶାଶ୍ୱତଶିଳ୍ପୀ ଗୋଦାବରୀଶ, ୨୦୦୫, ପୃ. ୯୩-୯୯

୫୧- ସ୍ନେହଲତା ମହାନ୍ତିଙ୍କ ଶିଶୁ ଗୀତିକାରେ ଶିଶୁ ମନସ୍ତତ୍ତ୍ୱ, ସାରସ୍ୱତ ସାଧିକା ସ୍ନେହଲତା ମହାନ୍ତି, ପୂଜ୍ୟପୂଜା ମଞ୍ଚ, ବାଲେଶ୍ୱର,୨୦୦୮, ପୃ.୪୮-୫୮

୫୨- କୁମୁଦଲତାଙ୍କ ଶିଶୁ ସାହିତ୍ୟ, ସୃଷ୍ଟି ଓ ଗବେଷଣା, ଦାମନଯୋଡି, ପୃ.୨୨-୩୧

୫୩- ଓଡ଼ିଆ ମୌଖିକ ଶିଶୁ ସାହିତ୍ୟ, ଶିଶୁ ସାହିତ୍ୟ ସନ୍ଦର୍ଭ, ସଂ. ସୁରେଶ ଚନ୍ଦ୍ର କର, ତମସା ପ୍ରକାଶନୀ, ୧୯୯୪, ପୃ.୬୩-୮୦

୫୪- ମୋ ଗବେଷଣା କଥା, ସଂ. ମନୀନ୍ଦ୍ର ମହାନ୍ତି ଓ ଲକ୍ଷ୍ମୀକାନ୍ତ ଖୁଣ୍ଟିଆ, ପଲ୍ଲୀପ୍ରଭା ପ୍ରକାଶନୀ, ୨୦୧୦,ପୃ.୫୪-୬୯,୧୬୭-୧୬୮

୫୫- ମୋ ପିଲାଦିନ କଥା, ସଂ. ଡ. ଲକ୍ଷ୍ମୀକାନ୍ତ ଖୁଣ୍ଟିଆ, ଦିବ୍ୟଦୂତ ପ୍ରକାଶନୀ, କଟକ, ୨୦୧୧, ପୃ.୧୫୨-୧୫୮

୫୬- ନନ୍ଦକିଶୋର ତ୍ରୟୀଙ୍କ ଶିଶୁ ସାହିତ୍ୟରେ ଶିଶୁ ମନସ୍ତତ୍ତ୍ୱ, ନନ୍ଦକିଶୋର ପରିକ୍ରମା, ୨୦୦୭, ବୋଲେ ହୁଁଟି, ପୃ. ୮୨-୯୨,

୫୭- ସାଂପ୍ରତିକ ଶିଶୁ ଗୀତି କବିତାର ସ୍ୱରୂପ ଓ ବିକାଶ, ସ୍ମରଣିକା-୨୦୧୦, ଓଡ଼ିଆ ଗୀତିକବି ସମାଜ, ପୃ. ୧୦୯-୧୧୩

୫୮- ଶିଶୁଗୀତରେ ଶିଶୁ ମନସ୍ତତ୍ତ୍ୱର ସ୍ୱରୂପ, ସ୍ମରଣିକା, ସୁନ୍ଦରଗଡ଼ କଳା ସଂସଦ, ୨୦୧୦, ପୃ. ୫୭-୬୩

୫୯- ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ସୃଷ୍ଟି ଓ ଦୃଷ୍ଟି, ସାରସ୍ୱତ ସାଧକ ଡକ୍ଟର ଜଗନ୍ନାଥ ମହାନ୍ତି, କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋର, ଭୁବନେଶ୍ୱର,୨୦୦୭, ପୃ.୬-୧୮

୬୦- ନାଁ ଦିଆ ମୌଖିକ ଶିଶୁ ସାହିତ୍ୟର ଅମୂଲ୍ୟ ସମ୍ପଦ, ସ୍ମରଣିକା, ନିଖିଳ ଉତ୍କଳ ଶିଶୁ ସାହିତ୍ୟ ଏକାଡେମୀ, ବାଲେଶ୍ୱର,୨୦୧୧, ପୃ.୯-୧୨

୬୧- ଶିଶୁର ନୃତ୍ୟ, ଝୁଲୁହାତୀ, ନଭେମ୍ବର, ପୃ.୧୬-୧୮

୬୨- ଶିଶୁ ସାହିତ୍ୟ ବିକାଶରେ ଶିଶୁ-ସାହିତ୍ୟ ସଂଗଠନର ଭୂମିକା, ସିଦ୍ଧାନ୍ତ, ଜାନୁଆରୀ, ୨୦୦୨, ପୃ.୩୧-୩୫

୬୩- ନନ୍ଦ କିଶୋର ସାମଲଙ୍କ ସୃଷ୍ଟି ଓ ଦୃଷ୍ଟି, ମୁଖଶାଳା, ଅକ୍ଟୋବର-୨୦୦୩, ପୃ.୬୬-୬୮



Digitized by srujanika@gmail.com

୬୪- ମହାପାତ୍ରଙ୍କ ଶିଶୁ କବିତାରେ ଶିଶୁ ମନସ୍ତାତ୍ତ୍ୱିକ ଅଧ୍ୟୟନ, ଶାଶ୍ୱତଶିଳ୍ପୀ ଗୋଦାବରୀଶ, ସଂ. କାହ୍ନୁ ଚରଣ ଶତପଥୀ, ପୃ.୯୩-୯୯

୬୫- ଓଡ଼ିଆ ଶିଶୁ ସାହିତ୍ୟର ଗତି ଓ ସ୍ଥିତି, ବୋଲେ ହୁଁଟି, ୯ ବର୍ଷ-୪ର୍ଥ ସଂଖ୍ୟା, ପୃ.୮-୧୫/ସହକାର, ଜୁନ-୨୦୦୯, ପୃ. ୩-୫

୬୬- ଶିଶୁର ମାନସିକ ବିକାଶରେ ଶିଶୁ ସାହିତ୍ୟର ସ୍ୱରୂପ, ସ୍ମରଣିକା, ଉ.ସା.ପ., ପୃ.୧୮-୨୦

୬୭- ଡକ୍ଟର ଜଗନ୍ନାଥ ମହାନ୍ତିଙ୍କ ପ୍ରବନ୍ଧ : ଏକ ମୁଖବନ୍ଧ, ଆହ୍ଲାଦିନୀ-୨୦୧୨, ପୃ ୫୭-୬୦

## ପ୍ରକାଶିତ ଅନ୍ୟାନ୍ୟ ଗବେଷଣାତ୍ମକ ପ୍ରବନ୍ଧ

### କୋରାପୁଟ ସଂପର୍କୀତ

୬୮- କୋରାପୁଟର ଚଇତି ପର୍ବ, ଆସନ୍ତାକାଲି, ମେ-୧୯୮୬, ପୃ.୪୪-୪୭ / ପରବ-୯୮, ପୃ. ୧୧-୧୫

୬୯- ବଣ୍ଡା ସଂପ୍ରଦାୟର ଜୀବନ ଚିତ୍ର, ଆସନ୍ତାକାଲି ,ଫେବୃୟାରୀ,୧୯୮୬, ପୃ.୩୬-୩୯

୭୦- କୋରାପୁଟର ନୃତ୍ୟ ସଙ୍ଗୀତ, ଆସନ୍ତାକାଲି, ନଭେମ୍ବର,୧୯୮୮, ପୃ. ୪୫-୪୮

୭୧- କୋରାପୁଟର ଭାଷା, ଏରୋନଟିକା, ୧୯୮୭-୮୮

୭୨- ଓଡ଼ିଶାର ଭୂ ସ୍ୱର୍ଗ କୋରାପୁଟ, କୋରାପୁଟ ପରିକ୍ରମା, ୧୯୯୪, ପୃ.୧

୭୩- କୋରାପୁଟର ପରଜା ସଂସ୍କୃତି: ଏକ ସର୍ବେକ୍ଷଣ, ଆରଣ୍ୟକ,୧୯୯୭ / ଓଡ଼ିଶାର ଆଦିବାସୀ, ସଂ. ଅଜୟ ସାହୁ, ପୃ. ୨୯-୩୮/ଆଦିବାସୀ, ସଂ. ଡକ୍ଟର ରଘୁନାଥ ମେହେର, ପୃ.,୯୯-୧୦୮

୭୪- କୋରାପୁଟର ପର୍ବପର୍ବାଣି, ଆମ କୋରାପୁଟ, ୨୦୦୫, ପୃ. ୧୭୪-୧୮୬/ଆଇନା, ଅଗଷ୍ଟ-୨୦୧୦, ପୃ. ୪୬-୫୦

୭୫- ଆଦିବାସୀଙ୍କ କୃଷିଭିତ୍ତିକ ପର୍ବପର୍ବାଣି, ଘାସଫୁଲ, ଶାରଦୀୟ ବିଶେଷାଙ୍କ-୨୦୧୧, ପୃ,୧୫୪-୧୬୦

୭୬- କୋରାପୁଟର ସାହିତ୍ୟ, ସାହିତ୍ୟିକ ଓ ସାହିତ୍ୟାନୁଷ୍ଠାନ,ସ୍ମରଣିକା (ଓଡ଼ିଆ ଲେଖକ ପାଠକ ସମ୍ମେଳନ)୧୯୯୦, ପୃ.୪୦-୪୫

୭୭- ଅବିଭକ୍ତ କୋରାପୁଟର ଲୋକପ୍ରିୟ ଲୋକନୃତ୍ୟ, ଦକ୍ଷିଣ ଓଡ଼ିଶାର ଲୋକନୃତ୍ୟ, ୨୦୧୨, ପୃ.୩୯-୪୮

୭୮- ରାୟଗଡ଼ାର କନ୍ଧ ସଂସ୍କୃତି ଏକ ସଂକ୍ଷିପ୍ତ ଦୃଷ୍ଟି ପାତ, ଚଇତାଳି-୨୦୧୧, ଜିଲ୍ଲା ସଂସ୍କୃତି ପରିଷଦ, ରାୟଗଡ଼ା, ପୃ.୯୩-୯୭



Digitized by srujanika@gmail.com

**ଭାଷା ସାହିତ୍ୟ ଓ ସଂସ୍କୃତି ସମ୍ପର୍କିତ**

୭୯- ମୂଲ୍ୟବୋଧଭିତ୍ତିକ ଶିକ୍ଷାର ବିକାଶରେ ଭାଷା ଶିକ୍ଷକଙ୍କ ଭୂମିକା, ସହକାର, ନଭେମ୍ବର-୨୦୦୪, ପୃ.୩-୮/Perspective on Value Education, Page-114-124

୮୦- ବହି ପଢ଼ା ଅଭ୍ୟାସ,ବିବର୍ତ୍ତନ, ପୂଜାସଂଖ୍ୟା, ୧୯୯୭, ପୃ.୫୦-୫୩ / ଆମ ସହର ଆମ ଗାଁ, ୭ମ ବର୍ଷ, ପୃ. ୬-୮

୮୧- ନବକୃଷ୍ଣ ଚୌଧୁରୀ ଜଣେ ନିଆରା ମଣିଷ, ଶ୍ରୀନନ୍ଦିଘୋଷ, ଅକ୍ଟୋବର, ୨୦୦୨, ପୃ.୫୪-୫୬

୮୨- ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବା ଦିଗରେ ଅଣ ଓଡ଼ିଆଙ୍କ ଅବଦାନ, ସ୍ମରଣିକା (ଉତ୍କଳ ସାଂସ୍କୃତିକ ପରିଷଦ),୧୯୮୭, ପୃ.୧୩-୧୯

୮୩- ନବ ଉତ୍କଳର ନିର୍ମାତା ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ, ଉତ୍କଳ ଆଭା, ଉତ୍କଳ ପରିଷଦ, ନବରଙ୍ଗପୁର,୨୦୦୯, ପୃ.୧୯-୨୬

୮୪- ଗାନ୍ଧିଜୀ ଓ କୁଷ୍ଠ ନିରାକରଣ, ଶ୍ରୀନନ୍ଦିଘୋଷ

୮୫- କୃଷ୍ଣ ସିଂହଙ୍କ ଚୌପଦୀରେ ରତି ଓ ପ୍ରୀତି, ଶ୍ରୀ ନନ୍ଦିଘୋଷ, ଜାନୁଆରୀ, ୨୦୦୦, ପୃ.୧୮-୨୧

୮୬- ସାଂପ୍ରତିକ କବିତାର ସାମାଜିକ ରୂପରେଖ, ଏରୋନଟିକା,୧୯୯୩-୯୪

୮୭- ଓଡ଼ିଆ କବିତାରେ ବ୍ୟଙ୍ଗ, ସ୍ମରଣିକା (ଉତ୍କଳ ସାଂସ୍କୃତିକ ପରିଷଦ)୧୯୯୭, ପୃ.୧୦-୧୫

୮୮- ଓଡ଼ିଆ ଲୋକଗୀତ:ଏକ ଅଧ୍ୟୟନ, ଶ୍ରୀନନ୍ଦିଘୋଷ ,ଅକ୍ଟୋବର,୧୯୯୭, ପୃ.୩୮-୪୧

୮୯- କୁମାର ପୂର୍ଣ୍ଣିମା, ପୌରୁଷ, ଅକ୍ଟୋବର, ୧୯୯୬

୯୦- ଡାଲଖାଇ ଓଷା, ଆମ ସହର ଆମ ଗାଁ, ଅକ୍ଟୋବର, ୧୯୯୮

୯୧- ଖରଖରୀ ଓଷା, ଆମ ସହର ଆମ ଗାଁ, ଅଗଷ୍ଟ, ୧୯୯୯

୯୨- ପୁଷପୁନି ବା ଛେର୍‌ଛେରା, ଆମ ସହର ଆମ ଗାଁ, ଏପ୍ରିଲ, ୨୦୦୦

୯୩- ସାନ୍ତାଳୀ ଲିପି, ଭାଷା ଓ ସଙ୍ଗୀତ:ଏକ ସଂକ୍ଷିପ୍ତ ଦୃଷ୍ଟିପାତ, ଏରୋନଟିକା, ୧୯୯୭, ପୃ.୧୬-୨୨

୯୪- କବି ଗୋପାଳକୃଷ୍ଣ ଏକ ସଫଳ ଚରିତ ନାଟକ, ଫୁଲ ରସିଆ, ୨୦୧୧, ପୃ.୮୬-୯୫

୯୫- ସାଂପ୍ରତିକ ପଲ୍ଲୀଗୀତରେ ଯୁଗଯନ୍ତ୍ରଣାର ଚିତ୍ର, ସ୍ମରଣିକା-୨୦୦୧, ଓଡ଼ିଆ ଗୀତିକବି ସମାଜ, ପୃ.୧୧୭-୧୨୪

୯୬- ଦୁର୍ଗାପୂଜା, ସ୍ମରଣିକା, ପୋପରଡ଼ା ମହାଦେବ ପୂଜା କମିଟି, ୨୦୧୨

**ବ୍ୟକ୍ତିତ୍ୱ**

୯୭- ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ପାରଳାର ଗଜପତିଙ୍କ ଭୂମିକା, ଗୋକର୍ଣ୍ଣିକା, ଜାନୁଆରୀ, ୧୯୮୫



Digitized by srujanika@gmail.com

୯୮- ନିସ୍ତରଙ୍ଗ ପାରାବାର, ମନୀନ୍ଦ୍ର ଅଭିନନ୍ଦନ ଗ୍ରନ୍ଥ, ୨୦୦୪, ପୃ. ୫-୧୩

୯୯- କବି ଜଳଧର ସ୍ୱାଇଁଙ୍କ ଗଳ୍ପ: ଏକ ଆକଳନ, ଜୀବନ ଛବିରେ ଶିକ୍ଷକ:କବି, ୨୦୧୦, ପୃ. ୩୯-୪୮

୧୦୦- ସମସ୍ତଙ୍କ ସାର୍, ବିସ୍ତୀର୍ଣ୍ଣ ବଳରାମ, ୨୦୦୬, ପୃ. ୧୧୯-୧୨୩

୧୦୧- ଜୀବନ ସଂଗ୍ରାମୀ ଆଦର୍ଶ ଶିକ୍ଷକ-କେଶବାନନ୍ଦ ସାହୁ, ସତୀର୍ଥ-୩, ବନଫୁଲର ଆରାଧନା, ୨୦୧୧, ପୃ.୭୬-୮୧

୧୦୨- ନାଟ୍ୟ କଳାକାର ଓ ନିର୍ଦ୍ଦେଶକ କୃଷ୍ଣଚନ୍ଦ୍ର ସାହୁ,ସତୀର୍ଥ-୩, ବନଫୁଲର ଆରାଧନା, ୨୦୧୧, ପୃ.୮୨-୮୫

୧୦୩- ସମସ୍ତଙ୍କର ପ୍ରିୟ ହେଡ୍‌ମାଷ୍ଟ୍ରେ: ରାଜକିଶୋର ସାହୁ, ସତୀର୍ଥ-୩, ବନଫୁଲର ଆରାଧନା, ୨୦୧୧, ପୃ.୮୬-୯୩

୧୦୪- ଗୁରୁ ଗୌରବ, ଶ୍ରଦ୍ଧାଞ୍ଜଳି, ଆଦର୍ଶ ଶିକ୍ଷକ ଅନନ୍ତ ପୃଷ୍ଟି ସ୍ମୃତି ସଂସଦ, ପୃ.୧୦-୧୨

୧୦୫- ଶାବରକବି ବୀରକିଶୋର ନାୟକ, ଏରୋନଟିକା, ପୃ.୨୨-୨୮

**ଜଗନ୍ନାଥ ସଂପର୍କୀତ :**

୧୦୬- ଭକ୍ତି ଭାବରେ ରଘୁ ବେହେରା, ଉଦୟନ୍ତୁ, ରଥଯାତ୍ରା-୨୦୧୦, ପୃ.୮୭-୯୩

୧୦୭- ଭକ୍ତ କବି ସାଲବେଗଙ୍କ ରଚନାରେ ଶ୍ରୀଜଗନ୍ନାଥ, ଉଦୟନ୍ତୁ, ରଥଯାତ୍ରା-୨୦୧୧, ପୃ.୪୫-୫୩

୧୦୮- ସୁନାବେଢ଼ାର ସ୍ୱର୍ଣ୍ଣକ୍ଷେତ୍ରରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା, ଉତ୍କଳ ପ୍ରସଙ୍ଗ, ଜୁଲାଇ-୨୦୧୦, ପୃ.୧୪୩-୧୪୯

୧୦୯- ସୁନାବେଢ଼ାର ରଥଯାତ୍ରା, ନୀଳାଦ୍ରୀ, ରଥଯାତ୍ରା ବିଶେଷାଙ୍କ-୨୦୧୧,ପୃ.୧୦୭-୧୧୧

୧୧୦- ଭାରତେ ଉତ୍କଳ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମ, ଶୈଳଶ୍ରୀକ୍ଷେତ୍ର, ଅନୁଗୋଳ, ୨୦୧୦,

୧୧୧- ଶ୍ରୀଜଗନ୍ନାଥ ଚେତନାରେ ପ୍ରକୃତି ଓ ମଣିଷ, ସୁଲେଖା, ରଥଯାତ୍ରା ସଂଖ୍ୟା

୧୧୨- ଧୀବର କୁଳେ ଜନ୍ମ ଦେଇ ପାପରେ ଭାଗୀ କଲୁ ତୁହି, ଶ୍ରୀନନ୍ଦିଘୋଷ, ଜୁଲାଇ-୨୦୧୦, ପୃ.୩୮-୪୧

୧୧୩- ସାଂପ୍ରତିକ ଗୀତିକବିତାରେ ଶ୍ରୀଜଗନ୍ନାଥ, ବୋଲେ ହୁଁଟି, ୧୨ବର୍ଷ, ପ୍ରଥମ ସଂଖ୍ୟା, ପୃ.୮-୨୧



ଆଉ କେତେକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ମଧ୍ୟ ପ୍ରକାଶ ପାଇଛି । ସେଗୁଡ଼ିକର ତଥ୍ୟ ମିଳୁ ନଥିବାରୁ ଏଠାରେ ଦିଆଯାଇ ନାହିଁ ।



Digitized by srujanika@gmail.com

# ପାଇଥିବା ପୁରସ୍କାର ଓ ସମ୍ମାନ

| ପୁରସ୍କାର ଓ ସମ୍ମାନର ନାମ | ସଂସ୍ଥା | ବର୍ଷ |
|---|---|---|
| ◆ କିଶୋରଶ୍ରୀ | ମାତୃଭୂମି, କଟକ | ୧୯୭୩ |
| ◆ ସାରସ୍ୱତ ସମ୍ମାନ | ଉତ୍କଳ ସାଂସ୍କୃତିକ ପରିଷଦ ସୁନାବେଡ଼ା | ୧୯୯୨ |
| ◆ ସାରସ୍ୱତ ସମ୍ମାନ | ଓଡ଼ିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦ | ୧୯୯୩ |
| ◆ ସାରସ୍ୱତ ସମ୍ମାନ | ଟୁଉକୁମୂଷି, ପାଳସାହି | ୧୯୯୩ |
| ◆ ସାରସ୍ୱତ ସମ୍ମାନ | ଶିଶୁ ସାହିତ୍ୟ ସଂସଦ,ବ୍ରହ୍ମପୁର | ୧୯୯୩ |
| ◆ ସାରସ୍ୱତ ସମ୍ମାନ | ଜଗତସିଂହପୁର ଜିଲ୍ଲାସ୍ତରୀୟ ଶିଶୁ ସାହିତ୍ୟ ସଂସଦ,ପାରାଦ୍ୱୀପ | ୧୯୯୩ |
| ◆ ସାରସ୍ୱତ ସମ୍ମାନ | ଓଡ଼ିଶା ଶିଶୁ ସାହିତ୍ୟ ପରିଷଦ, ସମ୍ବଲପୁର | ୧୯୯୩ |
| ◆ ସାରସ୍ୱତ ସମ୍ମାନ | ସୁବର୍ଣ୍ଣ ଦୀପ,ବରଗଡ଼ | ୧୯୯୬ |
| ◆ ସାରସ୍ୱତ ସମ୍ମାନ | ଜିଲ୍ଲା ସଂସ୍କୃତି ବିଭାଗ, ମାଲକାନଗିରି | ୧୯୯୬ |
| ◆ ସାରସ୍ୱତ ସମ୍ମାନ | ସତ୍ତା ସାହିତ୍ୟ ସଂସଦ, କୋରାପୁଟ | ୧୯୯୭ |
| ◆ ପୁସ୍ତକମେଳା ପୁରସ୍କାର | ଚତୁର୍ଦ୍ଦଶ ଭୁବନେଶ୍ୱର ପୁସ୍ତକମେଳା ପୁରସ୍କାର | ୧୯୯୮ |
| ◆ ମୀନାବଜାର ପୁରସ୍କାର | ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, | ୧୯୯୮ |
| ◆ କୁସୁମ ରତ୍ନ | ବନକୁସୁମ ଶିଶୁ-ସାହିତ୍ୟ ପରିଷଦ, ବିଷମ କଟକ | ୨୦୦୧ |
| ◆ ପୁସ୍ତକ ମେଳା ଶିଶୁ-ସାହିତ୍ୟ ପୁରସ୍କାର | ଉଦୁଉଦୁମା ୫ମ ରାଜଧାନୀ ପୁସ୍ତକ ମେଳା କମିଟି | ୨୦୦୫ |
| ◆ ମାଣିକ ବିଶ୍ୱନାଥ ସ୍ମୃତି ସମ୍ମାନ | ଶିଶୁ ସାହିତ୍ୟ ପାଇଁ ମାଣିକ ବିଶ୍ୱନାଥ ସ୍ମୃତିନ୍ୟାସ | ୨୦୦୫ |
| ◆ କସ୍ତୁରୀ ପୁରସ୍କାର | ସାମଗ୍ରିକ ଶିଶୁ ସାହିତ୍ୟ ପାଇଁ କୋରେଇ ମଣ୍ଡଳ ସାହିତ୍ୟ ସଂସଦ | ୨୦୦୮ |
| ◆ ସୁଲେଖା ସାରସ୍ୱତ ସମ୍ମାନ | ସାମଗ୍ରିକ ସାହିତ୍ୟ କୃତି ପାଇଁ ସୁଲେଖା ସାହିତ୍ୟ ଓ ସଂସ୍କୃତି ପରିଷଦ, ପୁରୀ | ୨୦୧୦ |
| ◆ ଦାଶରଥି ପଟ୍ଟନାୟକ ସ୍ମୃତି ସମ୍ମାନ | ସାମଗ୍ରିକ ଶିଶୁ ସାହିତ୍ୟ ପାଇଁ ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ, ପୁରୀ | ୨୦୧୦ |



Digitized by srujanika@gmail.com

- ବର୍ଷା ସାହିତ୍ୟ ସମ୍ମାନ ସାମଗ୍ରିକ ଶିଶୁ ସାହିତ୍ୟ ପାଇଁ
  ବର୍ଷା ସାହିତ୍ୟ ସଂସଦ, ଦାମନଯୋଡ଼ି ୨୦୧୧
- ହାଡିବନ୍ଧୁ ସାମନ୍ତରାୟ
  ସ୍ମାରକୀ ସମ୍ପାଦନା ସମ୍ମାନ ସମ୍ପାଦନା ପାଇଁ
  ଶିଶୁ ସାହିତ୍ୟ ଲେଖକ ସମ୍ମେଳନ, କଟକ ୨୦୧୧
- ବୈକୁଣ୍ଠନାଥ ସ୍ମୃତି ସମ୍ମାନ ଗବେଷଣା ଓ ପ୍ରବନ୍ଧ ପାଇଁ
  ନିଖିଳ ଉତ୍କଳ ଶିଶୁମେଳା ସମିତି, ଚଣ୍ଡିଖୋଲ ୨୦୧୧
- ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ
  ଶିଶୁ ସାହିତ୍ୟ ପୁରସ୍କାର-୨୦୧୨ ଶିଶୁ ସାହିତ୍ୟ ପାଇଁ,
  ଗୋକର୍ଣ୍ଣିକା ସାହିତ୍ୟ ସମାଜ, ଜାରକା ୨୦୧୨

**ଏହା ବ୍ୟତୀତ ଆହୁରି ଅନେକ ଅନୁଷ୍ଠାନ ତରଫରୁ ପ୍ରଶଂସା ଓ ସ୍ମୃତି ପତ୍ର ପ୍ରାପ୍ତ**

- ଜନ୍ମ ମସିହା : ୧୯୫୬ (ସରସ୍ୱତୀ ପୂଜା)
- ପ୍ରିୟ ମଣିଷ : ପିତାମାତା
- ଜନ୍ମ ସ୍ଥାନ : କୁସୁପୁର, କଟକ
- ପ୍ରିୟ ଶବ୍ଦ : ଗାଁ ମାଟି ପାଣି ପବନ
- ପାଠ ପଢ଼ା : ଏମ୍.ଏ., ପିଏଚ୍.ଡି
- ପ୍ରିୟ ପୁସ୍ତକ : ପଲ୍ଲୀଶ୍ରୀ
- କଲେଜ ଓ ବିଶ୍ୱବିଦ୍ୟାଳୟ : ଉତ୍କଳ ବିଶ୍ୱ ବିଦ୍ୟାଳୟ
- ପ୍ରିୟ ଭାରତୀୟ ଲେଖକ : ନନ୍ଦକିଶୋର, ଫକୀରମୋହନ
- ପ୍ରିୟ ସ୍ଥାନ : କୁସୁପୁର, ସୁନାବେଡ଼ା
- ପ୍ରିୟ ଅବସର : ଏକୁଟିଆ
- ସମୁଦାୟ ପ୍ରକାଶିତ ବହି : ୩୨ଖଣ୍ଡ
- ପୁନର୍ଜନ୍ମରେ କଣ ହେବେ : କବି
- ପ୍ରିୟ ଇଚ୍ଛା : ନିଜର ସମସ୍ତ ଲେଖାକୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବା
- କଣ ଭଲ ଲାଗେ ବେଶୀ : ଓଡ଼ିଆ ଭାଷା ସାହିତ୍ୟ ପ୍ରସାର, ପ୍ରଚାର ଓ ସମୃଦ୍ଧି ପାଇଁ କାମ କରିବାକୁ
- କେତେବେଳେ ଆଖିକୁ ଲୁହ ଆସେ : ଓଡ଼ିଆ ଭାଷା ସାହିତ୍ୟକୁ କେହି ନିନ୍ଦା କଲେ ।



Digitized by srujanika@gmail.com

ଏମିତିକା ଦରଦୀ ବନ୍ଧୁ ତୁମେ
ରାଷ୍ଟ୍ରବନ୍ଧୁ ସବୁରି,
କାହିଁ କେତେ ଦୂରୁ ଆସୁଛ ଧାଇଁ
ଆପଣା ଜନ ପରି ॥





ଶିଶୁ ସାହିତ୍ୟ ମୋ ପ୍ରାଣମୋ ଚିନ୍ତା ଓ ଚେତନା
ଶିଶୁ ସାହିତ୍ୟର ଉନ୍ନତି ମୋ କାମନା ॥

ଏ ସମୟ ବଡ଼ ଅବିଶ୍ୱାସୀ ନୁହଁଇ
କାହାରି କୁହ ବନ୍ଧୁ, ଛିଡ଼ାଇ ପାରିବ ସତେ
ମମତାର ଡୋରି ॥



Digitized by srujanika@gmail.com

ଓଡ଼ିଆ ଶିଶୁ ସାହିତ୍ୟର ଗର୍ବ
ଓ ଗୌରବ ॥





ତୁମ ସାଥେ ବନ୍ଧୁ ବିତିଗଲା କେତେ କାଳ
ରାସ୍ତା ସରି ଆସେ ବିଦାୟର ବେଳ ॥

ଏକ ମନ ଏକ ପ୍ରାଣ ଆମ ସାହିତ୍ୟ ସେବା
ଜୀବନର ଏଇ କେତୋଟି ଅଭୁଲା ସ୍ମୃତିକୁ
ହୃଦୟରେ ସାଇତି ରଖିବା ॥



Digitized by srujanika@gmail.com




ଯେତେ ସବୁ ସମ୍ଭାବନା
କାନ୍‌ଭାସରେ ଉତୁରି
ଆସଇ ବସନ୍ତରେ ବସନ୍ତର ବୈଭବ
ଖୁସି ଖୁସି ଲାଗଇ ॥



ତୁମ ସାଥେ ମନେ ପଡେ ଆଜି
ବିତିଲା ଦିନର କଥା



ଆମେ ପରା ଗତାୟୁ ସମୟ
ତୁ ଆମ ସାହାରା...

Digitized by srujanika@gmail.com



ମୋ ଅଗଣା ଭରି ଦେଲୁ
କୁଆଁ କୁଆଁ ଡାକରେ
ମାତୃତ୍ୱର ପହିଲି ପୁଲକ
ନୂଆ ଅନୁଭବରେ ।।



ତୁ ଆମକୁ ଦେଲୁ ନୂଆ ପରିଚୟ
ଛଳଛଳ ଆମ ଜୀବନର ସୁଅ ।।



ଇନ୍ଦ୍ରାବତୀ ଜଳ ଆଜି
ନିରବ ନିସ୍ତବ୍ଧ
ଆମେ ଖୋଜୁ ଲୋଡୁ
ହଜିଲା ଅତୀତ

Digitized by srujanika@gmail.com

